ଆନ୍ତର୍ଭାରତୀୟ ପୁସ୍ତକମାଳା

# ବିନ୍ଦୁ ଓ ସାଗର

ଅମୃତଲାଲ ନାଗର

ଅନୁବାଦ

ଚନ୍ଦ୍ରିକା ମହାପାତ୍ର



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ଏହି ପୁସ୍ତକଟି ଛାପାଖାନାରେ ମୁଦ୍ରଣ ହେବାରେ ବହୁବର୍ଷ ସମୟ ଲାଗିଛି । ଫଳସ୍ୱରୂପ ଏଥିରେ ବିଭିନ୍ନ ପ୍ରକାର ରଙ୍ଗର କାଗଜ ବ୍ୟବହୃତ ହୋଇଛି । ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ ପକ୍ଷରୁ ଏଥିପାଇଁ ଗଭୀର ଦୁଃଖ ପ୍ରକାଶ କରାଯାଉଛି । ଆଶା କରାଯାଏ, ପାଠକଗଣ ଏହି ତ୍ରୁଟିଜନିତ ଅସୁବିଧା ଏଇ ଉଚ୍ଚକୋଟିର ଉପନ୍ୟାସ ପାଠ କଲାବେଳେ ଏଡ଼ାଇଯିବେ ।

ISBN-81-237-0437-2

1993 ( ଶକାବ୍ଦ 1915 )



Original Title : BOOND AUR SAMUDRA (*Hindi*)
Oriya Translation : BINDU O SAGAR

ଟ 78.00

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ, ନୂଆ ଦିଲ୍ଲୀ— 110016 କର୍ତ୍ତୃକ ପ୍ରକାଶିତ ଏବଂ ସୁରେଖା ପ୍ରିଣ୍ଟର୍ସ, କଟକଠାରେ ମୁଦ୍ରିତ ।

# ଭୂମିକା

ଶହେ ବା ଶହେ ପଚାଶ ବର୍ଷ ମଧ୍ୟରେ ହିନ୍ଦି ଉପନ୍ୟାସ ବହୁତ ଆଗେଇ ଯାଇଛି ଏବଂ ଏହି ଯାତ୍ରା ନାନା ଦୃଷ୍ଟିକୋଣରୁ ଆକର୍ଷଣୀୟ ଓ ସଂଘର୍ଷପୂର୍ଣ୍ଣ ଥିଲା; ପ୍ରାରମ୍ଭ କାଳରେ ଉପନ୍ୟାସ ମାଧ୍ୟମରେ ସାମାଜିକ କ୍ଷତି ନିବାରଣ କରିବାପାଇଁ ଚେଷ୍ଟା ଏବଂ ତା'ମଧ୍ୟରେ ଜାତୀୟ ଗୌରବ ଓ ଭାବନା ପ୍ରସ୍ଫୁଟିତ କରିବାର ପ୍ରଚେଷ୍ଟା ହୋଇଅଛି । ଶ୍ରୀନିବାସ ଦାସଙ୍କ ଲିଖିତ "ପରୀକ୍ଷାଗୁରୁ", କିଶୋରୀଲାଲ ଗୋସ୍ୱାମୀଙ୍କର "ତ୍ରିବେଣୀ", ସ୍ୱର୍ଗୀୟ କୁସୁମ ତଥା ରାଧାକୃଷ୍ଣ ଦାସଙ୍କର "ନିସହାୟ ହିନ୍ଦୁ" ଆଦି ଉପନ୍ୟାସଗୁଡ଼ିକ ମଧ୍ୟରେ ଏହି ଦୁଇ ପ୍ରକାର ପ୍ରଚେଷ୍ଟାକୁ ଆମେ ଦେଖିବାକୁ ପାଉଁ । ସେହିପରି ସମାନ୍ତରାଳ ଭାବଧାରା ରୂପେ ଦେବକୀ ନନ୍ଦନ କ୍ଷେତ୍ରୀଙ୍କର କେତେକ ଉପନ୍ୟାସରେ କାଳ୍ପନିକ ଭାବଧାରା ଓ ଅତି ମାନବିକ ଘଟଣାଗୁଡ଼ିକର ଚିତ୍ରଣ ଦେଖିବାକୁ ମିଳେ । ହିନ୍ଦି ଉପନ୍ୟାସର ତୃତୀୟ ପର୍ଯ୍ୟାୟରେ ମରାଠୀ ଅଥବା ବଙ୍ଗଳା ଉପନ୍ୟାସର ଅନୁବାଦ ମୁଖ୍ୟସ୍ଥାନ ଗ୍ରହଣ କରିଥିଲା । ଏହା ଶୌର୍ଯ୍ୟ ଓ ପ୍ରେମର ମଧ୍ୟବର୍ତ୍ତୀ ଭାବଧାରାରେ ଭରପୂର । ଏହି ଶ୍ରେଣୀର ରାଜସିଂହ, ସ୍ୱର୍ଣ୍ଣଲତା, ସ୍ୱର୍ଣ୍ଣବାୟୁ, ଯୁଗଳାଙ୍ଗୁରୀୟ, କପାଳ କୁଣ୍ଡଳା ଆଦି ଉପନ୍ୟାସଗୁଡ଼ିକୁ ହିନ୍ଦିରେ ଅନୁବାଦ କରାଯାଇଅଛି ।

ଯାଦୁ ଓ ତିଳିସ୍ମ ବିଦ୍ୟାର ପରିବେଶ, ପ୍ରେମ ଓ ସୌନ୍ଦର୍ଯ୍ୟର ଆବହାଓ୍ୱା ମଧ୍ୟରୁ ହିନ୍ଦି ଉପନ୍ୟାସକୁ ଭାରତୀୟ କୃଷକ ଓ ଜନଜୀବନ ଭିତରକୁ ନେଇ ଆସିଲେ ପ୍ରେମ୍‌ଚାନ୍ଦ । ପ୍ରେମ୍‌ଚାନ୍ଦ ହେଉଛନ୍ତି ପ୍ରଥମ ଔପନ୍ୟାସିକ ଯେ କି ହିନ୍ଦି ଉପନ୍ୟାସକୁ ସାମାଜିକ ପୃଷ୍ଠଭୂମିରେ ପ୍ରତିଷ୍ଠିତ କରିଥିଲେ ଓ ସେହି ସମୟରେ ସଂଘର୍ଷମୟ ଭାରତୀୟ ଜୀବନର ବିବରଣୀ ପ୍ରସ୍ତୁତ କରିଥିଲେ । ଏହା ଚିରନ୍ତନ ସତ୍ୟ ଯେ ପ୍ରେମ୍‌ଚାନ୍ଦଙ୍କ ଯୋଗୁଁ ହିନ୍ଦି ଉପନ୍ୟାସ ସାହିତ୍ୟ ବର୍ଣ୍ଣନୀୟ ବିଦ୍ୟା (ଫୋରମ୍) ରୂପେ ପରିଣତ ହୋଇଥିଲା ।

ପଶ୍ଚିମ ସଂସ୍କୃତି ଓ ସଭ୍ୟତାର ସମ୍ପର୍କ ଆମ୍ଭମାନଙ୍କର ଜୀବନକୁ ଗଭୀର ଭାବରେ ପ୍ରଭାବିତ କରିବାକୁ ଲାଗିଥିଲା, ପଶ୍ଚିମରେ ମନୋବୈଜ୍ଞାନିକ ଉପନ୍ୟାସ ଗୁଡ଼ିକର ବହୁଳ ପ୍ରସାର (ଆନ୍ଦୋଳନ) ହେଉଥିଲା, ହିନ୍ଦିରେ ମଧ୍ୟ ଜୈନେନ୍ଦ୍ର ଓ ଅଜ୍ଞେୟ ପ୍ରଭୃତି ମନୁଷ୍ୟ ମନର ଭାବନାକୁ ବିଶ୍ଳେଷଣ କରିବାକୁ ପ୍ରଯତ୍ନ କରୁଥିଲେ । ଜୈନେନ୍ଦ୍ର ଗାନ୍ଧୀବାଦରୁ ଆତ୍ମପୀଡ଼ା (କୁଚ୍ଛ୍ରତା)ର ସିଦ୍ଧାନ୍ତ ନେଇଥିଲେ, ପଶ୍ଚିମରୁ

ମନୋବିଶ୍ଳେଷଣର ପଦ୍ଧତି ଗ୍ରହଣ କରିଥିଲେ ଏବଂ ସେ ନିଜର ମୌଳିକ ବିଷୟର ଦୃଷ୍ଟିରୁ "ପରଖ" ଏବଂ "ତ୍ୟାଗପତ୍ର" ନାମରେ ଉପନ୍ୟାସ ଲେଖିଥିଲେ । ଅଜ୍ଞେୟଙ୍କର "ସେଖର" ଏକ ଜୀବନୀ ଫ୍ଲେସ୍‌ବେକ୍ ଶୈଳୀରେ ଲେଖା ଗଭୀର ଭାବବୋଧ ଓ ଦୀପ୍ତ ଅଭିବ୍ୟକ୍ତି ଶୈଳୀର ଉପଯୁକ୍ତ ଉଦାହରଣ ଅଟେ । ମନୋବିଜ୍ଞାନର ସମ୍ପୂର୍ଣ୍ଣ ମୂଲ୍ୟ ଇଲାଚନ୍ଦ୍ର ଯୋଷୀଙ୍କର ଉପନ୍ୟାସରେ ମିଳିଥିଲା ଏବଂ ତାଙ୍କର ଉପନ୍ୟାସରେ ମନୋବୈଜ୍ଞାନିକ ବିଶ୍ଳେଷଣ ତଥା ଅସାମାନ୍ୟ ମନୋବିଜ୍ଞାନର ସ୍ପଷ୍ଟ ପ୍ରଭାବ ଦେଖାଯାଏ ।

1936 ପରେ ପ୍ରଗତିଶୀଳ ଲେଖକମାନଙ୍କର ଲକ୍ଷ୍ନୌ ଅଧିବେଶନ ପରେ ହିନ୍ଦି ସାହିତ୍ୟରେ ପ୍ରଗତିବାଦର ଆରମ୍ଭ ହୋଇଥିଲା । ଏହି ଧାରାରେ ଶ୍ରେଷ୍ଠ ଉପନ୍ୟାସକାର ଯଶପାଲ ଅଟନ୍ତି ଯେ କି ମାର୍କସବାଦୀ ଚିନ୍ତାରେ ପ୍ରଭାବିତ ହୋଇ ସାମାଜିକ ବୈଷମ୍ୟ ଓ ରୁଢ଼ିବାଦିତା ବିରୁଦ୍ଧରେ ଅନେକ ଉପନ୍ୟାସ ଲେଖିଥିଲେ । ରାଙ୍ଗେୟ ରାଘବ, ଅମୃତ ରାୟ ଆଦି ଲେଖକମାନେ ଏହି ଧାରାରେ ଯୋଗଦେବା ମହତ୍ତ୍ୱପୂର୍ଣ୍ଣ ହୋଇଥିଲା ।

ହିନ୍ଦିରେ ଏହିସବୁ ଧାରାରେ ଅଧିକ ଉଚ୍ଚକୋଟୀର ଐତିହାସିକ ଉପନ୍ୟାସ ମଧ୍ୟ ଲେଖା ହୋଇଥିଲା । ବୃନ୍ଦାବନଲାଲବର୍ମାଙ୍କର ଉପନ୍ୟାସ ନିଜର ଐତିହାସିକ କଥା ଏବଂ ମଧ୍ୟଭାରତର ଆଞ୍ଚଳିକ ପରିବେଶ ଦ୍ୱାରା ସଂଯୁକ୍ତ ହୋଇ ଐତିହାସିକ ରୋମାନ୍‌ସର ଏକ ଉତ୍ତମ ଉଦାହରଣ ସୃଷ୍ଟି ହୋଇଥିଲା, "ବିରାଟଙ୍କ ପଦ୍ମିନୀ", ଗଡ଼କୁଣ୍ଡାର "ମୃଗନୟନୀ", "ରାଣୀ ଲକ୍ଷ୍ମୀବାଈ" ଇତ୍ୟାଦି ଉପନ୍ୟାସ ଯୋଗୁଁ ହିନ୍ଦି ସାହିତ୍ୟରେ ବୃନ୍ଦାଲାଲ ବର୍ମାଜୀଙ୍କୁ ସେଇ ସମ୍ମାନ ଦିଆଯାଇଥିଲା, ଯାହାକି ଗୁଜୁରାଟରେ ମୁନ୍‌ସୀ ଓ ଧୂମକେତୁଙ୍କୁ ମିଳିଛି । ରାହୁଲ ସାଙ୍କୃତ୍ୟାୟନ ମାର୍କସବାଦୀ ଦୃଷ୍ଟିକୋଣ ଦ୍ୱାରା ପ୍ରଭାବିତ ହୋଇ "ଜୟ ଯୋଧେୟ" ଏବଂ "ସିଂହ ସେନାପତି" ଭଳି ଉପନ୍ୟାସ ଲେଖିଥିଲେ ଯେଉଁଥିରେକି ଅତୀତର ଜୀବନକୁ ଐତିହାସିକ ବିକାଶବାଦୀ ଦୃଷ୍ଟି ଦ୍ୱାରା ଲେଖିବାକୁ ପ୍ରଯତ୍ନ କରିଥିଲେ । ଭଗବତୀ ଚରଣ ବର୍ମାଙ୍କ "ଚିତ୍ରଲେଖା" ଯଦି ଶୁଦ୍ଧରୋମାନ୍‌ସ ( ଶୃଙ୍ଗାର ରସଯୁକ୍ତ ) ର ଉଦାହରଣ ହୁଏ ତେବେ ଯଶପାଲଙ୍କର "ଦିବ୍ୟା" ଏକ ଐତିହାସିକ ଦୃଷ୍ଟିରୁ ଉପଲବ୍ଧ ।

ଏଠାରେ ୧୯୫୦ ମସିହା ପରେ ହିନ୍ଦିରେ ନୂତନ ଧରଣ ଲେଖାର ପ୍ରଚଳନ ହେଲା, ସେଇ ସମୟରେ ହିନ୍ଦିରେ ନାଗାର୍ଜ୍ଜୁନ ଓ ଫଣୀଶ୍ୱରନାଥ ରେଣୁଙ୍କର ଆଞ୍ଚଳିକ ଉପନ୍ୟାସ ସମ୍ବନ୍ଧରେ ବିଶେଷ ଭାବରେ ଚର୍ଚ୍ଚା ହେଉଥିଲା । ବାସ୍ତବରେ

1950 ମସିହାଠାରୁ 1955 ମଧ୍ୟରେ ହିନ୍ଦି କଥା ସାହିତ୍ୟର ମୂଳ ପ୍ରବୃତ୍ତି ଆଞ୍ଚଳିକ ହୋଇ ରହିଥିଲା । ନାଗାର୍ଜୁନଙ୍କର "ବଲ ଚନମା" ଓ ରେଣୁଙ୍କର "ମଇଲା ଆଞ୍ଚଲ"ରେ ମିଥିଲା ଦେଶର ଲୋକମାନଙ୍କର ଜୀବନକୁ ବିଷାଦପୂର୍ଣ୍ଣ ଢଙ୍ଗରେ ପ୍ରକାଶ କରାଯାଇଛି । ଆଞ୍ଚଳିକ ଉପନ୍ୟାସର ଯୁଗ ଶୀଘ୍ର ସମାପ୍ତ ହୋଇଥିଲା ; କାରଣ ଆଞ୍ଚଳିକ ନାମରେ ଜୀବନର ମନ୍ଦ ଓ ଅପୂର୍ଣ୍ଣ ତତ୍ତ୍ୱକୁ ସାହିତ୍ୟରେ ପ୍ରକାଶ କରାଯାଇଥିଲା । ଏହି ଅନ୍ତରାଳରେ ଛଅଗୋଟି ମହତ୍ତ୍ୱପୂର୍ଣ୍ଣ ଉପନ୍ୟାସ ଆମ୍ଭମାନଙ୍କ ଦୃଷ୍ଟିଗୋଚର ହୋଇଥିଲା, ଯଶପାଲଙ୍କର "ଝୁଟାସଚ୍", ନରେଶ ମେହେଟାଙ୍କର "ଓହୋ ପଥ ବନ୍ଧୁଥା" ଏବଂ ଅଜ୍ଞେୟଙ୍କର "ଅପନେ ଅପନେ ଅଜନବି", ଧର୍ମବୀରଙ୍କର "ସୂରଜକା ସାତବା ଘୋଡ଼ା" ଶିଳ୍ପ କ୍ଷେତ୍ରରେ ବ୍ୟବହାର ନିମନ୍ତେ ଉପଯୋଗୀ ଅଟେ । ପରବର୍ତ୍ତୀ ପାଞ୍ଚ ସାତ ବର୍ଷ ମଧ୍ୟରେ ହିନ୍ଦି ଉପନ୍ୟାସର ରୂପ ପରିବର୍ତ୍ତନ ହୋଇଅଛି । ଅନେକାଂଶରେ ଗାଉଁଲି ଭାଷାରେ ବିଭିନ୍ନ ପ୍ରକାର ରଙ୍ଗବିରଙ୍ଗି ପରିପୂର୍ଣ୍ଣ ହୋଇ ବହୁଳ ଭାବରେ ପ୍ରକାଶ କରାଯାଇଅଛି ।

ଶ୍ରୀ ଅମୃତଲାଲ ନାଗର ହିନ୍ଦିରେ ପ୍ରସିଦ୍ଧ ଉପନ୍ୟାସକାର ଅଟନ୍ତି । ଏହାଙ୍କର ବଡ଼ ବିଶେଷତ୍ୱ ଏହିକି ଯେ ସେ ଉଚ୍ଚକୋଟିର ଔପନ୍ୟାସିକ ହେବା ସଙ୍ଗେ ସଙ୍ଗେ ଅଧିକ ଲୋକପ୍ରିୟ ଅଟନ୍ତି, 'ମାସ ମିଡ଼ିଆ"ରେ ଉକ୍ତ କଳାଦ୍ୱୟର ଶ୍ରେଷ୍ଠତା ବିଶେଷ ଭାବରେ ପ୍ରଚାର କରିବାର ଲୋଭ ସମ୍ବରଣ ଦିଗରେ ହତାଶ ହୋଇନାହାନ୍ତି; କିନ୍ତୁ ନାଗରାଜା ପ୍ରାରମ୍ଭରୁ ଏପରି ପ୍ରଯତ୍ନ କରିଥିଲେ ଯେ ତାଙ୍କର ଉପନ୍ୟାସରେ କଳାର ଶ୍ରେଷ୍ଠତା ଜୀବିତ ରହୁ ଏବଂ ଯେତେଦୂର ସମ୍ଭବ ଅଧିକରୁ ଅଧିକ ପାଠକମାନଙ୍କୁ ନିଜ ଆଡ଼କୁ ଆକୃଷ୍ଟ କରିପାରିବ, ଏହିପରି ଭାବରେ ଦ୍ୱିତୀୟ ଉଦ୍ଦେଶ୍ୟକୁ ସାଧନ କରିବା ବଡ଼ କଷ୍ଟସାଧ୍ୟ ; କିନ୍ତୁ ନାଗରାଜା ଏହାକୁ ଉନ୍ନତ କରାଇଛନ୍ତି ଏବଂ ବହୁ-ବାର ଏ ଦିଗରେ ସଫଳତା ଅର୍ଜନ କରିଅଛନ୍ତି । ଏହି ସଫଳତାର ପ୍ରଶଂସାର ଅନ୍ତରାଳରେ ନାଗରାଜା ମନୁଷ୍ୟର ଜୀବନର ଯଥାର୍ଥ ବାଦକୁ ସବୁଠାରୁ ଅଧିକ ମହତ୍ତ୍ୱ ଦେଇଛନ୍ତି ଏବଂ ଜୀବନର ନାନା ପ୍ରକାର ସୁଖ ଦୁଃଖ ଅନୁଭୂତିକୁ ସୁନ୍ଦରରୂପେ ବର୍ଣ୍ଣନା କରି ଉପନ୍ୟାସଟିକୁ ଆକର୍ଷଣୀୟ କରିଛନ୍ତି । ଏହାର ଉଦ୍ଦେଶ୍ୟ ଏଭଳି ନୁହେଁ ଯେ ସେ ଯଥାର୍ଥବାଦୀ ଉପନ୍ୟାସକାର ଅଟନ୍ତି ଏବଂ ଉପନ୍ୟାସର ମୂଳ ରୂପ ଫଟୋଗ୍ରାଫିର ଆଲବମ୍ ଭଳି, ନାଗରାଜା ଚରିତ୍ର ଠିକ୍ ଚିତ୍ରଣ କରି ଏହାର ବ୍ୟକ୍ତିତ୍ୱ ଅଭିବ୍ୟକ୍ତି କରିବାରେ ସିଦ୍ଧହସ୍ତ ଥିଲେ । ପ୍ରାୟ ତାଙ୍କର ଅନେକ ଉପନ୍ୟାସରେ ଚରିତ୍ରକୁ ଜୀବନ୍ତ ଓ ରଙ୍ଗୀନ ରୂପ ଦେଇଥିଲେ । କେତେକ ଚରିତ୍ର ଏତେ ଜୀବନ୍ତ କରିପାରିଥିଲେ ଯେ ପାଠକମାନଙ୍କ ମନରେ ତାହା ଅଲିଭା ହୋଇ

ଉଦ୍ଧୃତଥିଲା ଏବଂ ଏହି ଚରିତ୍ର କେବଳ ଯେ ଆଧୁନିକ କିମ୍ବା ସମସାମୟିକ ତା' ନୁହେଁ, ଏହା ମଧ୍ୟ ନିଜ ଦେଶରେ ଏକ ତତ୍‌କାଳୀନ ଇତିହାସ ସୃଷ୍ଟି କରୁଥିଲା । ଏହା ମଧ୍ୟରେ 'ଶେଠ୍ ବାଙ୍କମଲ୍' ଉଉରେ, ଯେଉଁ ପ୍ରସିଦ୍ଧ କଳାକାର ଥିଲେ ଏଥିରେ ସନ୍ଦେହ ନାହିଁ, ତାମିଲ ମହାକାବ୍ୟ "ଶିଲ୍ପାଦିକାରମ"ର କଥା ଉପରେ ଆଧାରିତ "ସୁହାଗକେ ନୂପୁର"ର ପ୍ରାନ୍ତ କୋଲବନ୍ "କନ୍ନଗୀ ଓ ମାଧବୀ"ରେ ଉତ୍କଟ ପ୍ରେମର ଅଦ୍ଭୁତ ଜୀବନର ପ୍ରମାଣ ଦର୍ଶାଇ ଅଛନ୍ତି । ଇତିହାସର ଆହୁରି ପଛକୁ ଗଲେ "ଏକଦା ନୈମିଷାରଣ୍ୟ" ଇଉନିଭର୍‌ସିଟି ଅଫ ଫିକ୍‌ସନ ଦୃଷ୍ଟିଗୋଚର ହୁଏ ଏବଂ ଆମ୍ଭମାନଙ୍କର ସୋମାହୁତି ଭାର୍ଗବ, ଲଜ୍ୟା ଏବଂ ସର ବର୍ଶିଷ୍ଟଙ୍କୁ ଦେଖୁଛୁ, ଯେଉଁମାନେକି ନିଜର ବ୍ୟକ୍ତିତ୍ୱରେ ଯାଜ୍ଞିକ ସଂସ୍କୃତିର ଶକ୍ତି ଗ୍ରହଣ କରି ମଧ୍ୟ ନାନା ପ୍ରକାରର ମତାନ୍ତର ଓ ସଂପ୍ରଦାୟମାନଙ୍କର ବିଭକ୍ତ ଭାରତୀୟ ସଂସ୍କୃତିକୁ ଏକ ନୂତନ ସମାନତା ପ୍ରଦାନ କରିବାପାଇଁ ଯତ୍ନ କରିଅଛନ୍ତି । "ମାନସର ହଂସ" ରେ ସେ ତୁଳସୀ ଦାସଙ୍କର ଜୀବନକୁ ଏକ ନୂତନ ଦୃଷ୍ଟିରେ ଗ୍ରହଣ କରିଅଛନ୍ତି, "ଅମୃତ ଓ ବିଷ" ତାଙ୍କର ଡବଲ୍ ପ୍ଲଟ୍ ଉପରେ ଆଧାରିତ ଶୈଳୀର ଲେଖା ଏପରି ଏକ ଉପନ୍ୟାସ ଯେ, ଲକ୍ଷ୍ନୌସହରର "କ୍ଲାସସେକ୍‌ସନ"ର ଅତ୍ୟନ୍ତ ସୂକ୍ଷ୍ମ ବିଶ୍ଳେଷଣ କରାଯାଇଅଛି । କିନ୍ତୁ ଏହା ସହିତ ଆମ୍ବାରାମ ରଘୁ-ସିଂହ, ପୁତ୍ତୋରୁରୁ ଏବଂ ହିନ୍ଦୁସ୍ଥାନର ଜୌନବାନମାନଙ୍କର ଦୃଷ୍ଟି ଶକ୍ତିହୀନତାର ଉଦାହରଣ ସ୍ୱରୂପ ଲକ୍ଷ୍ମୁ ଚରିତ୍ର ମଧ୍ୟ ଚିତ୍ରଣ ହୋଇଅଛି । ଏକ ପାର୍ଶ୍ୱରେ ଯେଉଁ ନିଜର ଭଲମନ୍ଦ ଦ୍ୱାରା ଆମ୍ଭମାନଙ୍କର ଅତି ଆପଣାର ହୋଇଯାଏ, ଅନ୍ୟ ପକ୍ଷରେ ଚରିତ୍ରଗୁଡ଼ିକ ଏପରି ବର୍ଣ୍ଣନା କରାଯାଇଅଛି ଯେ ସେଗୁଡ଼ିକ ରହସ୍ୟାବୃତ, ଏହି କାରଣ ଦ୍ୱାରା ଆମ୍ଭମାନଙ୍କର ଆଧୁନିକ ଯୁଗରେ ଦେଖା ଦେଇଥିବା ନାନା ପ୍ରକାରର କ୍ଲେଶ ସମୂହ, ସଂଘର୍ଷ ଏବଂ ଅସଫଳତାର ପ୍ରତୀକ ରୂପେ ଦୃଷ୍ଟିଗୋଚର ହୋଇଛି ।

"ବୁନ୍ଦ୍ ଓ ସାଗର" ନାଗର୍‌ଜୀଙ୍କର ସମ୍ଭବତ ସର୍ବଶ୍ରେଷ୍ଠ ଉପନ୍ୟାସ ଅଟେ, ସେହିପରି ଆଲୋଚକମାନେ "ଅମୃତ ଓ ବିଷ"କୁ ବିଶେଷ ଭାବେ ପୁରସ୍କୃତ ହୋଇଥିବା ଯୋଗୁ ଆଲୋଚନା କରିଛନ୍ତି; କିନ୍ତୁ ଜୀବନର ପରସ୍ପରର ବିରୋଧ ସମ୍ପାଦନକୁ ଉପଲବ୍ଧ କରିବା, ଜୀବନର ସନ୍ଧାନ, ବନ୍ଧନ ଇତ୍ୟାଦି ପ୍ରକାଶ କରିବାରେ "ବୁନ୍ଦ୍ ଓ ସାଗର" ରେ ଯେପରି ଉଦ୍ୟମ କରାଯାଇଅଛି ସେଭଳି ଉଦ୍ୟମ "ଅମୃତ ଓ ବିଷ"ରେ କରାହୋଇନାହିଁ ।

"ବୁନ୍ଦ୍ ଓ ସାଗର"କୁ ଆଲୋଚକମାନେ କ୍ଲାସିକ ଢଙ୍ଗର ଉପନ୍ୟାସ ବୋଲି କହିଛନ୍ତି । ବହୁତ ଚିନ୍ତାପରେ ଶେଷରେ ମୁଁ ଏ ମତରେ ଏକମତ

ହୋଇଅଛି । ଏହା ଏଇ ଧରଣର ଗୌରବକୁ ଗ୍ରହଣ କରିଅଛି; କିନ୍ତୁ ନାଗରଜା କୌଣସି ଗୋଟିଏ ଶୈଳୀରେ ବନ୍ଧା ହୋଇ ଚଳିବା ବ୍ୟକ୍ତି ନୁହନ୍ତି । ସେଇପରି "ବନ୍ଦୁ ଓ ସାଗର"ରେ ଲକ୍ଷ୍ନୌର ଚୌକଦ୍ୱାର ବାହାରର ଘଟଣା ପ୍ରକାଶ ହୋଇଛି । ଗୋମତୀ କୂଳରେ ଥିବା ପାଗଲଖାନା ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ, ସଜ୍ଜନ ଓ ବନକନ୍ୟା ମଥୁରା ଓ ବୃନ୍ଦାବନ ଯାତ୍ରା ମଧ୍ୟ ବର୍ଣ୍ଣନା ଅଛି । ଗୋବର୍ଦ୍ଧନ ପର୍ବତ ଉପରେ ପ୍ରେମାଳାପର ବର୍ଣ୍ଣନା ଅଛି, କିନ୍ତୁ ଏହା ସତ୍ୟ ଯେ ନାଗରଜାଙ୍କ ଉପନ୍ୟାସ ଚୌକରେ କେନ୍ଦ୍ରିତ କରିବା ପାଇଁ ଉପଯୋଗୀ ନୁହେଁ; କାରଣ ଏକ ପକ୍ଷରେ ଲକ୍ଷ୍ନୌର ଚୌକର ଜୀବନ ଗଭୀର ଭାବରେ ଦର୍ଶାଇ ଅଛନ୍ତି । ଅନ୍ୟ ଉପନ୍ୟାସରେ ସଂଯୋଗ ଆଣିବା ନିମନ୍ତେ ଆବଶ୍ୟକ ଦୃଷ୍ଟି ବିସ୍ତାରିତ କରାଯାଏ । ଜୀନୀ ଲୋକ-ମାନଙ୍କର ନାଗରିକ ଜୀବନର ଚିତ୍ରଣ, ଦେଠେଇର ପ୍ରସାଦରେ ଭଡ଼ାଘରବାଲା ପଛରେ ମଧ୍ୟ ଏଇ ରହସ୍ୟ ଅଛି । ନାଗରଜା ନିଜେ ଏହା ସ୍ୱୀକାର କରିଅଛନ୍ତି ଯେ "ଉପନ୍ୟାସର କ୍ଷେତ୍ର ରୂପେ ଲକ୍ଷ୍ନୌ ଓ ସେଥିରେ ସେଇ ସମୟର ଚୌକକୁ ଉପସ୍ଥାପିତ କରିଅଛନ୍ତି, ଏହା ଏଇଥିପାଇଁ କରିଅଛନ୍ତି ଯେ ନାଗରିକ ସଭ୍ୟତାର ପରମ୍ପରା ଦେଖିବାରେ, କଥା କହିବାର ଢଙ୍ଗ ଫୁଟାଇବାରେ ସବୁଠାରୁ ଅଧିକ ଆଶ୍ଚର୍ଯ୍ୟ ଏହାହିଁ ହୋଇଥିଲା । ଚୌକ ନାଗରଜାଙ୍କର ଏହି ଉପନ୍ୟାସର କେନ୍ଦ୍ରବିନ୍ଦୁ ଅଟେ, ଚୌକର ସମୁଦାୟ ଅବସ୍ଥା ଦୃଶ୍ୟାବଳୀ, ଛୋଟ ଛୋଟ ଚରିତ୍ର ଏବଂ ସେମାନଙ୍କର ପ୍ରକୃତ ଗତି କଥାବାର୍ତ୍ତା ଆଦି ଚୌକର ସମୁଦାୟ ଲୌକିକ ରଙ୍ଗକୁ ପ୍ରକାଶ କରୁଅଛି ।

ବ୍ୟକ୍ତି ଓ ସମାଜ ମଧ୍ୟରେ କିପରି ସମ୍ପର୍କ ଅଛି ଏବଂ କିପରି ହେବା ଉଚିତ ଏହାକୁ ଏହି ଉପନ୍ୟାସରେ ପ୍ରାଧାନ୍ୟ ଦିଆଯାଇଅଛି । ବନ୍ଦୁ ବ୍ୟକ୍ତିର ପ୍ରତୀକ ଅଟେ, ସାଗର ସମାଜର । ବ୍ୟକ୍ତି ଓ ସମାଜର ସମ୍ପର୍କର ସୂତ୍ର ରହିନାହିଁ, ସମାଜ ବ୍ୟକ୍ତି ପାଇଁ ସଂଶ୍ଳିଷ୍ଟ ହୋଇଅଛି ଏବଂ ବ୍ୟକ୍ତି ସମାଜ ପାଇଁ ଏପରି ଏକ ତତ୍ତ୍ୱ ହୋଇଅଛି ଯେ ଏହା ସେ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ମନ୍ଦ ବ୍ୟକ୍ତି ଏବଂ ସମାଜ ମଧ୍ୟରେ ଉତ୍ପନ୍ନ ହେଉଥିବା ଅସନ୍ତୋଷର କାରଣ ଯୋଗୁଁ ଏହା ଏପରି ହେଉଅଛି । ମୂଳ କାରଣ ହେଲା ଏହା ଯେ ଦୁହିଁଙ୍କ ମଧ୍ୟରେ ଅବିଶ୍ୱାସର ଭାବନା ପରସ୍ପର ଭିତ୍ତି ରହିଛି । ନାଗରଜା ଏହା ମାନି ନେଇଛନ୍ତି ଯେ ଯଦି ଛୋଟ ବଡ଼ ସବୁ ପ୍ରକାରର ବନ୍ଦୁରେ ସତ୍ୟର ନିଷ୍ଠା ରହିବ ତେବେ ଏକ ପ୍ରକାର ସମରସ ଉତ୍ପନ୍ନ ହୋଇ ରହିପାରିବ । ଏପରି ସମାଜରେ ଯେଉଁଥିରେ କି ମଣିଷ ସମାଜ ମହାସାଗର ଉପମା ପାଉଅଛି, ଯେଉଁଠାରେ ମନୁଷ୍ୟତାର ଅଭେଦ୍ୟ ସ୍ୱୀକାର କରାଯାଉଅଛି ସେଠାରେ ଏପରି ଘରେ ରହିବା କାହିଁକି ଅସମ୍ଭବ ? ଆଦର୍ଶ ଯଦି ମହତ୍ତ୍ୱ ହୁଏ ଏବଂ ସମାଜକୁ

ପାଇଁ ତାହାର ମୂଲ୍ୟ ସମାନ ହୁଏ ତେବେ ଏହା କାହିଁକି ସମ୍ଭବ ହେବନାହିଁ ? ବଡ଼ ବନ୍ଧୁ ହେଉ, ଶ୍ରେଷ୍ଠ ବନ୍ଧୁ ହେଉ ଓ ତାହାଠାରୁ କ୍ଷୁଦ୍ରତର ବନ୍ଧୁ ହେଲେ ମଧ୍ୟ ଏହା ଶ୍ରେଷ୍ଠ ବଡ଼ ନୈତିକ ମାନଦଣ୍ଡ ପାଇଁ କୌଣସି ମୂଲ୍ୟ ରଖେନାହିଁ । ସେହିପାତ୍ର (ନାୟକ) ବନ୍ଧୁରେ ଏହା ଦେଖେ ଯେ ପ୍ରତ୍ୟେକ ଅଣୁରେ ସତ୍ୟର ନିଷ୍ଠା କେତେ ଦୂର ରହିଅଛି । ପ୍ରତ୍ୟେକ ଅଣୁ ଏହି ନିଷ୍ଠାକୁ ନିଜର ନିଷ୍ଠା ଶକ୍ତି ବଳରେ କିଛି ସମସ୍ତ ପର୍ଯ୍ୟନ୍ତ ପ୍ରକାଶିତ କରି ଆଦର୍ଶ ଉପସ୍ଥାପିତ କରିବା ପାଇଁ ସମତା ରଖେ ।

ସତ୍ୟ ପ୍ରତି ନିଷ୍ଠା ଯୋଗୁ ଏହି ଉପନ୍ୟାସର ତିନିଜଣ ପ୍ରଧାନ ପାତ୍ର (ନାୟକ) ସଜ୍ଜନ, ମହୀପାଳ ଏବଂ କଣ୍ଢେଇ ବନକନ୍ୟାର ଝିଉଜ ପ୍ରତି ତାହାର ପିତା ଯାହା ଅତ୍ୟାଚାର କରିଥିଲେ ତାହାର ନିରାକରଣ କରିବା ପାଇଁ ବନକନ୍ୟାକୁ ଉପସ୍ଥାପିତ କରିଛନ୍ତି । ବନକନ୍ୟା ଏକ ଅଦ୍ଭୁତ ଚରିତ୍ର, ଯେଉଁଥିରେ କି ଆଧୁନିକ ଯୁଗର ନାରୀର କାର୍ଯ୍ୟକଳାପ ଦେଖିବାକୁ ମିଳେ । ତାହା ସତ୍ୟର ନାମ ଉପରେ ପ୍ରତିଷ୍ଠିତ । ନାରୀ ଜାତି ଉପରେ ହେଉଥିବା ନିର୍ଯ୍ୟାତନାର ନିରାକରଣର ଉଦ୍ଦେଶ୍ୟ ପାଇଁ ନିଜ ପିତାର ବିରୁଦ୍ଧରେ ସବୁ ପ୍ରକାର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାରେ କୁଣ୍ଠାବୋଧ କରିନାହିଁ । ବନକନ୍ୟା ନାମରୁ ଜଣାଯାଏ ଯେ ସେ ନଗରଠାରୁ ଦୂରବାସୀ ଏବଂ ଏଠାରେ ଆପତ୍ତି କରିବାର କୌଣସି କାରଣ ନାହିଁ ଯେ ନଗରରେ ବ୍ୟାପିଥିବା ଛଳନା, କପଟତା, ପ୍ରତାରଣା ତଥା ଆଡ଼ମ୍ବରରେ ପରିପୂର୍ଣ୍ଣ ତିନିଜଣ ପାତ୍ର (ନାୟକ)ଙ୍କୁ କୌଣସି ନା କୌଣସି ରୂପରେ ପରିବର୍ତ୍ତନ କରିବାକୁ ଚେଷ୍ଟା କରୁଅଛନ୍ତି । କେବଳ ଏହା କୁହାଯିବ ଯେ, ସେ ଯାହାର ସମ୍ପର୍କରେ ଆସିଛନ୍ତି ଶେଷ ପର୍ଯ୍ୟନ୍ତ ନିଜର ସତ୍ୟନିଷ୍ଠ ବ୍ୟବହାର ଯୋଗୁ ଲୋକମାନଙ୍କର ଅଜ୍ଞାନ ଦ୍ୱାରା ଉତ୍ପନ୍ନ ହେଉଥିବା ଘୃଣା, କୁତ୍ସା, କୁବାକ୍ୟ ଇତ୍ୟାଦିକୁ ଦୂରକରି ସେମାନଙ୍କ ପାଇଁ ଉତ୍ତମ କାର୍ଯ୍ୟକରି ଆଶ୍ଚର୍ଯ୍ୟ ହୋଇ ଉଠନ୍ତି । ଏପରି ପବିତ୍ର ଗୁଣ, ଧର୍ମ, ଚରିତ୍ର ବିଷୟରେ ସରଳ ପ୍ରଶ୍ନ ଆଇପାରେ ଯେ ଏହି ଚରିତ୍ରମାନ ସ୍ୱାଭାବିକ ଅଟେ କି ? ନାଗରଜା ସ୍ୱାଭାବିକତାକୁ ଏପରି ଧ୍ୟାନ ଦିଅନ୍ତି ଯେ, ଯେପରି ଯଥାର୍ଥ୍ୟକୁ ପୃଥିବୀ ଉପରେ ଉପସ୍ଥାପିତ କରିବାକୁ ପଡ଼ିଥାଏ, ନଚେତ୍ ସେ ସମ୍ଭାବ୍ୟକୁ ସହଜ କରିବାରେ କିମ୍ବା ମାନିବାରେ ସଙ୍କୋଚ କରନ୍ତି ନାହିଁ ।

ବନକନ୍ୟାଠାରୁ ଠିକ୍ ବିପରୀତ ଚରିତ୍ର ଚିତ୍ରଣ ଦେଠେଇଙ୍କଠାରେ କରାଯାଇଅଛି । ବନକନ୍ୟା ଆଧୁନିକ ସତ୍ୟତାକୁ ପ୍ରତିପାଦନ କରିଅଛି । ନିଜଦ୍ୱାରା ସ୍ୱୀକୃତ ପଥରୁ ସେ ପଦଚ୍ୟୁତ ହୋଇନାହିଁ, ସମାଜର ସବୁ ପ୍ରକାର ବିରୋଧାଚରଣକୁ ସହ୍ୟକରି ମଧ୍ୟ ସମାଜ ପ୍ରତି ଦୃଷ୍ଟି ରଖିଛି ଓ ସମାଜକୁ ସଙ୍ଗଠିତ କରିବାକୁ

ଯତ୍ନ କରିଅଛନ୍ତି । ଅତ୍ୟାଚାରର ବିରୋଧ (ପ୍ରତିବାଦ) କରିବା ସମୟରେ ତିଳେମାତ୍ର ଦୟା ପ୍ରଦର୍ଶନ କରିନାହିଁ । ଯେଉଁଥିରେ କି ଦେତେଇ ନିଜର ସ୍ୱାମୀଙ୍କୁ ଉପେକ୍ଷାର ପ୍ରତିଶୋଧ ନେବା ନିମନ୍ତେ ତାହାର ସମସ୍ତ ବଂଶକୁ ନିର୍ମୂଳ କରିବାପାଇଁ ଚେଷ୍ଟା କରିଛି, ସେ କୁପ୍ରଥା ଓ ନୈତିକତାର ବାହ୍ୟ ଆଡ଼ମ୍ବରକୁ ପ୍ରାଧାନ୍ୟ ଦେଇଅଛି । ସେ ନିଜର ତୀକ୍ଷ୍ଣ ମନ୍ତ୍ରବଳ ଦ୍ୱାରା ପ୍ରତ୍ୟେକ ବିରୋଧୀଙ୍କୁ ଭସ୍ମ କରି ଦେବା ନିମନ୍ତେ ପ୍ରସ୍ତୁତ, ସେ ନୂଆ ଯୁଗର ସନ୍ତ୍ରାସ ଅଟେ ଓ ସେମାନଙ୍କ ଭିତରେ ଆଧୁନିକତା ପ୍ରତି ପ୍ରତ୍ୟକ୍ଷ ବିରୋଧ କରେ, ସେମାନେ ଚିଲ (ଈଗଲ)ର ସନ୍ତାନ ପ୍ରତି ଦୟା ପ୍ରଦର୍ଶନ କରନ୍ତି; କିନ୍ତୁ ମନୁଷ୍ୟଙ୍କୁ କ୍ଷମା ଦେବା ଶିକ୍ଷା ଦେବା ଶିକ୍ଷା କରିନାହାନ୍ତି, କହିବାକୁ ଗଲେ ସମସ୍ତ ଭଲମନ୍ଦର କାର୍ଯ୍ୟରେ ସେମାନେ ପରସ୍ପର ବିରୋଧ ଆଚରଣରେ ଏପରି ଧୂରନ୍ଧର ଯେ ସେହି ଚରିତ୍ରଗୁଡ଼ିକ କେବଳ ଚରିତ୍ର ଭାବରେ ନରହି ପ୍ରତୀକ (ଉଦାହରଣ) ହୋଇ ରହେ । ବନକନ୍ୟାଙ୍କୁ ପଚ୍ଚରିବା ପରେ ସଜ୍ଜନ ତା'ର ପରିଚୟ ଦେଇଛି "ଏ ଭାରତ ଅଟେ" । ଦେତେଇ ଉପନ୍ୟାସର କେନ୍ଦ୍ରୀୟ ବନ୍ଧୁ ଅଟେ । ସେ ଏକ ପକ୍ଷରେ ନିଜର ପତି ରାଜା ସାହେବ ଦ୍ୱାରକା ଦାସ ସହିତ ସମ୍ପୃକ୍ତ ଅଛି; ତେଣୁ ଉଚ୍ଚ ଶ୍ରେଣୀର ସମସ୍ତ ଦୋଷ ଦୁର୍ବଳତା ସହିତ ଚିତ୍ରିତ କରାଯାଇଥିଲେହେଁ, ଅନ୍ୟ ପକ୍ଷରେ ଥିଲେ ଭଡ଼ା ଦେଇବାଲା ସଜ୍ଜନ ଓ ତାହାର ବନ୍ଧୁମାନେ । ମିଷ୍ଟର ଓ ମିସେସ୍ ବର୍ମା ଯେଉଁମାନଙ୍କର କି ଅସବର୍ଣ୍ଣ ବିବାହ ସମ୍ବନ୍ଧ ହୋଇଥିଲା । ନିଜଙ୍କୁ ନିଜର ତଥା କଥିତ ଭାରୁଆ (ଝାଡ଼ଫୁଙ୍କା) ଶକ୍ତିର ପ୍ରଭାବରେ ସେ ପଡ଼ୋଶୀ ବିଭୂତି ସୁନାରୁ ଏବଂ ତା ଘରେ ଚଳଚ୍ଚିତ୍ର ପ୍ରଭାବରୁ ବହି ଆସୁଥିବା (ବେତାର ସଙ୍ଗୀତ) ସହିତ ସମ୍ପୃକ୍ତ ଯାହାଙ୍କ ବଡ଼ଲୋକ ଘରୁ ଦ୍ୱାର ବନ୍ଦ ଡେଇଁବା ପାଇଁ ବାଧକରେ ଓ ଶେଷରେ ସମାଜରୁ ବାହାର କରିଦିଆଯାଏ । ଦେତେଇ ଆଖପାଖ ଘରର ନବଜାତ ଶିଶୁର ମନ ଭୁଲାଇବାରେ ସମର୍ଥ ହୋଇଥାଏ, ଗୋକୁଳ ଦର୍ଓ୍ୟାର ଦ୍ୱାରା, ସଖି ସମ୍ପ୍ରଦାୟର ମୁଖିଆଣୀ, ମିତଭାଆଣୀ, ମୋଣ୍ଡି ନାୟିକାମାନଙ୍କ ଦ୍ୱାରା ତଥା ମନ୍ଦିର ଶାସନ ନୀତି ଓ "ଅତି ଗୋପନ କଥା" ମଧ୍ୟ ଅନ୍ତର୍ଭୁକ୍ତ । ଦେତେଇ ରାଜବାଜିକୁ ନେଇ (ରାଜନୀତି ଦ୍ୱାରା) ହେଉଥିବା ପ୍ରଦର୍ଶନୀ, ପ୍ରଚାର, ନାଟ ତାମସା ଆଶ୍ଚର୍ଯ୍ୟ ଭାବରେ ହଠାତ୍ ଅନ୍ତର୍ଭୁକ୍ତ ହୁଏ ଓ ଶେଷରେ ନିଜର ଅଭିଳାଷକୁ ପୂର୍ଣ୍ଣ କରିବା ପାଇଁ ରାଧା କୃଷ୍ଣଙ୍କର ବିବାହ ଆୟୋଜନ କରିବା ବାହାନାରେ ସେ ପାଗଳଖାନାରେ ବାବା ରାମଙ୍କୁ ସମ୍ବନ୍ଧ ଭାବରେ ନିଏ, ବଡ଼ମା'ର ଚରିତ୍ରକୁ ଯେପରି କଟୁ ଓ ତିକ୍ତ ଭାବରେ ଉପସ୍ଥାପିତ କରିଅଛନ୍ତି, ଏପରି କ୍ୱଚିତ୍ କେଉଁଠାରେ ଦୃଷ୍ଟିଗୋଚର ହୁଏ ।

ସଜ୍ଜନ, କର୍ଣ୍ଣେଲ ଓ ମହୀପାଲ ପାଠପଢ଼ିଥିବା ଲୋକଙ୍କର ପ୍ରତିନିଧି ଅଟନ୍ତି କିନ୍ତୁ ନାଗରାଜା ସେମାନଙ୍କୁ କୌଣସି ଭାବରେ ଚର୍ଚ୍ଚିତ କରିନାହାନ୍ତି । ସଜ୍ଜନ

ସାରା ସହର ପାଇଁ କଳାକାର ଅଟନ୍ତି ; କିନ୍ତୁ ଚନ୍ଦ୍ରର ସମ୍ମୁଖରେ କେବଳମାତ୍ର ଗ୍ରହଣ କରିବାର ବ୍ୟକ୍ତି ଅଟନ୍ତି । ଶୀଲାସିଂହ ପାଇଁ କୃତ୍ରିମ ମିଷ୍ଟାଳାପରେ ବୁର୍ଜୁଆ, ବନକନ୍ୟା ପାଇଁ ଜିଦ୍‌ଖୋର ବ୍ୟକ୍ତି, ତାହାର ନିଜର ପ୍ରେମରେ ଆବେଗରେ ଏପରି ପରିବର୍ତ୍ତନ ହୁଏ ଯେ ନିଜର ସମୁଦାୟ ସମ୍ପତ୍ତିକୁ ସରକାରୀ ବ୍ୟାଙ୍କ ଓ ବାବାରାମର କହିବା ଅନୁସାରେ ଅନ୍ୟ ଲୋକ ହିତକର କାର୍ଯ୍ୟପାଇଁ ଦାନକରି ଦେଇଛି ।

କର୍ଣ୍ଣେଲ କଥା କହିବାରେ ଚତୁର ବ୍ୟକ୍ତି ଯେକି ମିତ୍ରତାର ପ୍ରତ୍ୟେକ ମଧୁ ଆଚରଣକୁ ରକ୍ଷା କରିବାରେ ସିଦ୍ଧହସ୍ତ, ସେ ସଜ୍ଜନ ଓ ମହୀପାଲ ମଧ୍ୟରେ ସେତୁ ସଦୃଶ ; କିନ୍ତୁ ଦୁଇଜଣଙ୍କର ଦୁର୍ବଳତାକୁ କ୍ଷମାକରି ସେମାନଙ୍କର ପ୍ରତ୍ୟେକ କାର୍ଯ୍ୟରେ ସହଯୋଗ ପାଇଁ ତତ୍ପର ରହେ । ଇଏାର ସମତଳତା ସଦୃଶ କହିବାକୁ ଗଲେ ସେ ମହୀପାଳ ଓ ସଜ୍ଜନ ଅଟେ ; କିନ୍ତୁ ବ୍ୟବହାରିକ ଦୁନିଆର ଜ୍ଞାନରେ କର୍ଣ୍ଣେଲ ଦୁଇଜଣଙ୍କର କେବଳ ଯେ ବନ୍ଧୁ ତା ନୁହେଁ, ଓସ୍ତାଦ ମଧ୍ୟ ଅଟେ, ସେ ସଜ୍ଜନ ଓ କନ୍ୟାର ସମ୍ବନ୍ଧ ତଥା ମହୀପାଳ, ଶୀଳା ତଥା କଲ୍ୟାଣୀର ତ୍ରିକୋଣାତ୍ମକ ସଂଘର୍ଷକୁ ଦୂର କରିବାରେ ସମର୍ଥ ହୋଇଛି । ମହୀପାଳର ଅହମିକା ମଧ୍ୟ ସାମାଜିକ ବୈଷମ୍ୟର ଶୀକାର ହୋଇ ନିଜ ଚରିତ୍ରକୁ ଭ୍ରଷ୍ଟ କରିଅଛି ଓ ଯେତେବେଳେ ବିକୃତ ହୋଇ ଆତ୍ମହତ୍ୟା କରିଛି ସେଇ ସମୟରେ କର୍ଣ୍ଣେଲ ନିଜର ପୂର୍ଣ୍ଣ ଶକ୍ତି ବଳରେ ସ୍ୱର୍ଗୀୟ ମିତ୍ରର ସମୁଦାୟ ଦାୟିତ୍ୱଗୁଡ଼ିକକୁ ସଂପୂର୍ଣ୍ଣ କରିଛି, ଯଦ୍ୟପି ଏହି କାର୍ଯ୍ୟରେ ସଜ୍ଜନ ଓ ବନକନ୍ୟା ମଧ୍ୟ ପୂର୍ଣ୍ଣ ଭାବରେ ତା' ସହିତ ସହଯୋଗ କରିଛନ୍ତି ।

ବନ୍ଧୁ ଓ ସାଗରରେ ଅତ୍ୟନ୍ତ ବିସ୍ତାରିତ ମୂଳ କଥା ସହିତ ଅନେକ ଛୋଟ ଛୋଟ ଦୃଶ୍ୟ ମଧ୍ୟ ଅନ୍ତର୍ଗତ ହୋଇଛି, ଆହୁରି ମଧ୍ୟ ହୋଇପାରେ, କଥା ପ୍ରବାହର ଏକ ସୂତ୍ରତା ଅନୁସନ୍ଧାନ କରିବା ପାଠକଙ୍କୁ ଏହି ବିଷୟଗୁଡ଼ିକ ଅନାବଶ୍ୟକ ଓ ଅଯଥା, ଏହା ନାଗରାଜାଙ୍କ ଶୈଳୀର ଏକ ଅଂଶ ଯେ ଲଚ୍ଛୋର କେତେକ ସୂତ୍ର-ମାନ ଏପାଖ ସେପାଖ ହୋଇ ରହି ଯାଇଅଛି ।

ଏହି ସଂକ୍ଷିପ୍ତ ବିଶ୍ଳେଷଣରୁ ଜଣାଯାଏ ଯେ ବନ୍ଧୁ ଓ ସାଗର ଲେଖକ କେତେବଡ଼ ପ୍ରଚ୍ଛଦପଟକୁ ଗ୍ରହଣ କରିଛନ୍ତି । ଆଲୋଚକମାନେ ଠିକ୍ ଭାବରେ କହିଛନ୍ତି ଯେ ପ୍ରେମଚନ୍ଦ୍ରଙ୍କର ରଙ୍ଗଭୂମିର ପରେ ଏତେ ବଡ଼ କ୍ୟାନଭାସ୍‌କୁ ଅନ୍ୟ କୌଣସି ଲେଖକ ଗ୍ରହଣ କରି ନାହାନ୍ତି କିନ୍ତୁ ବଡ଼ କ୍ୟାନ୍‌ଭାସ୍ ହୋଇଗଲେହେଁ କୌଣସି ଉପନ୍ୟାସ ବଡ଼ ହୋଇ ପାରିଛି କି ? କ୍ୟାନ୍‌ଭାସ୍ ଆମ୍ଭମାନଙ୍କର

ସମ୍ମୁଖରେ ଜୀବନର ବଭିନ୍ନତାକୁ ମଧ୍ୟ ଗ୍ରହଣ କରିଥାଏ; ମାତ୍ର ଗମ୍ଭୀରତା ଆଣିବା ନିମନ୍ତେ କେବଳ କ୍ୟାନ୍‌ଭାସ୍ ନୁହେଁ, ଶ୍ରେଷ୍ଠ ବଡ଼ ଚରିତ୍ରଗୁଡ଼ିକକୁ ପ୍ରାମାଣିକତା ଓ ଜୀବନ୍ତ କରିବାରେ ଆବଶ୍ୟକ ଅଟେ । ସଜ୍ଜନର ବିଷୟରେ କୁହାଯାଇଅଛି ଯେ ଯେପରି କର୍ମ ପ୍ରବଣତା ତା'ର ଚରିତ୍ରର ପ୍ରଥମ ଭାଗରେ ଅଛି ; କିନ୍ତୁ ଏହା ଶେଷ ପର୍ଯ୍ୟନ୍ତ ରହିନାହିଁ । ଏହା ସତ୍ୟ ଅଟେ ଯେ ବାବା ରାମଙ୍କର ସେବା ପରାୟଣ ଆଦର୍ଶ ମୂଳକ ବ୍ୟକ୍ତିତ୍ୱର ସମ୍ମୁଖରେ ସେ ଉପାୟଶୂନ୍ୟ ଓ ଶକ୍ତିହୀନ ପରି ଜଣାଯାଏ । ଏଠାରେ ଗୋଟିଏ ଆନ୍ତରିକ ଯୋଜନା ମଧ୍ୟ ଦେଖିବାକୁ ମିଳେ, ନାଗରଜୀ ଜ୍ଞାତସାରରେ କିମ୍ବା ଅଜ୍ଞାତରେ ସଜ୍ଜନର ଚରିତ୍ରକୁ ବନକନ୍ୟା ଓ ବାବା ରାମର ମଧ୍ୟରେ ଉପସ୍ଥିତ କରାଇ ତାହାକୁ ରୂପାନ୍ତରିତ କରାଇ ଅଛନ୍ତି । ଏହା ଏକ ଅଲଗା ପ୍ରଶ୍ନ ଯେ ବାବା ରାମଙ୍କର ଆଦର୍ଶ ଓ ଚରିତ୍ରକୁ ନାଗରଜୀ କ'ଣ ଔପନାସିକ ଦୃଷ୍ଟିକୋଣର ରୂପରେ ଉପସ୍ଥାପିତ କରିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ କି ? ନାଗରଜୀଙ୍କୁ ପ୍ରାୟ ଯଥାର୍ଥବାଦୀ ଉପନ୍ୟାସକାର ହିସାବରେ ରଖା ଯାଇଅଛି, କିନ୍ତୁ ତାଙ୍କର ସମସ୍ତ ଉପନ୍ୟାସ ଏହି ଯୁକ୍ତିର କଥାର ପ୍ରମାଣ ଅଟେ ଯେ ସେ କୌଣସି ରାଜନୈତିକ ମତବାଦ ଉପରେ ଆଗ୍ରହ ରଖନ୍ତି ନାହିଁ । ସେ ସମାଜର ଅନ୍ତରରୁ ପରିବର୍ତ୍ତନ ଚାହାନ୍ତି, ସେ ଦୁର୍ଗନ୍ଧ, ବ୍ୟଭିଚାର, ନିଷ୍କ୍ରିୟତାକୁ ବାହାର କରି ପରିଷ୍କାର ଢଙ୍ଗରେ ବିକଶିତ ହେବାପାଇଁ ଦେଖିବାକୁ ଚାହାନ୍ତି ; କିନ୍ତୁ ଏଇ ସମସ୍ତ ପାଇଁ ତାଙ୍କ ପାଖରେ କୌଣସି ନା କୌଣସି ସମାଧାନର ରାସ୍ତା ବାହାର କରିଥା'ନ୍ତି । ଏହି ଉପନ୍ୟାସରେ ସେ ବାବା ରାମଙ୍କ ଦ୍ୱାରା ଜନସେବା ଆନ୍ଦୋଳନକୁ ଏକ ସମାଧାନର ସୂତ୍ର ହିସାବରେ ପ୍ରସ୍ତୁତ କରିଛନ୍ତି "ଆପଣ ଯଦି କୁଟୀରଶିଳ୍ପ ଜରିଆରେ ସହରର ଯୁବକମାନଙ୍କୁ ଲୋଭ ଓ ବେଇମାନୀରୁ ରକ୍ଷା କରିପାରିବେ ଏବଂ ମହିଳାମାନଙ୍କ ଆର୍ଥିକ ବ୍ୟବସ୍ଥା ପୂର୍ତ୍ତି ନିମନ୍ତେ ମହିଳାଶ୍ରମ ପ୍ରଭୃତି ସଂସ୍ଥାଗୁଡ଼ିକରୁ ସେମାନଙ୍କୁ ବଞ୍ଚାଇବା ସଙ୍ଗେ ସଙ୍ଗେ ନୈତିକ ସ୍ତରକୁ ଉପରକୁ ଉଠାଇ ପାରିବେତ ବହୁତ ବଡ଼ କାମ ହୋଇପାରିବ ରାମଜୀ ।"

ଶ୍ରୀ ଅମୃତଲାଲ ନାଗର ତାଙ୍କ ଉପନ୍ୟାସ "ବୁନ୍ଦ ଓ ସାଗର"ରେ ବ୍ୟକ୍ତି ଓ ସମାଜ ମଧ୍ୟରେ ଉଠୁଥିବା ଦୈନନ୍ଦିନ ସଂଘର୍ଷକୁ ଅତ୍ୟନ୍ତ ଜୀବନ୍ତ ଓ ବ୍ୟାପକ ଭାବରେ ଚିତ୍ରଣ କରିଛନ୍ତି । ନିଜର ବାସ୍ତବବାଦୀ ଦୃଷ୍ଟି ଓ ଦୃଶ୍ୟକୁ ସାକାର କରିବାର ଚିତ୍ରାତ୍ମକତା ଏବଂ ଚରିତ୍ରଗୁଡ଼ିକୁ ପ୍ରାମାଣିକ ଢଙ୍ଗରେ ଉପସ୍ଥିତ କରିବାର କ୍ଷମତା ଯୋଗୁଁ "ବୁନ୍ଦ ଓ ସାଗର" ହିନ୍ଦି ଉପନ୍ୟାସ ସାହିତ୍ୟ ଜଗତର ଏକ ପ୍ରତିନିଧି କୃତି ହୋଇପାରିଛି ।

ଡ଼ାଃ ଶିବପ୍ରସାଦ ସିଂହ

# ଏକ

ଶୀତ ଦିନର ଦ୍ୱିପ୍ରହର, ଘରର ମଥାନ ଉପରେ ଶୀତ ଖରାର ମହୋତ୍ସବ । କାର୍ଯ୍ୟରତା ଘରର ବୋହୂ କେଉଁଠି ସିଲେଇରେ ତ କେଉଁଠି ଗହମ ପାଚୁଡ଼ାରେ ବ୍ୟସ୍ତ ଆଉ କେଉଁଠି କେଉଁଠି ଡାଲିବଡ଼ି ସୁଖୁଛି ତା ସାଙ୍ଗରେ ଶାଗ ମଧ । କେହି କେହି ସେହି ଧୂଆ ମୁଗ ରଙ୍ଗର ଚଳନ୍ତ ଖରାକୁ ଧରି ରଖିବାକୁ ବ୍ୟସ୍ତ । ତା' ଭିତରେ ସ୍କୁଲ୍ ନ ଯିବା ପିଲାମାନଙ୍କର ପାଟିତୁଣ୍ଡ, ପେନ୍‌ସନ୍ ପ୍ରାପ୍ତ ବୁଢ଼ାମାନେ ଦେହରୁ ଗରମ ଲୁଗା ଖୋଲି ହାତରେ ଆଣ୍ଠୁ ଗଣ୍ଠି ଆଉଁସି ପକାଉଛନ୍ତି । ଜାଗ୍ରତ ପୃଥିବୀର କୋଳାହଳ, ଉତ୍‌ଥାନ ପତନ, କ୍ରୋଧ ମମତା, ସ୍ନେହ, ପ୍ରେମ, ଗାମ୍ଭୀର୍ଯ୍ୟ ଏବଂ ହସ ଅଶ୍ରୁରେ ବିଭିନ୍ନ ସ୍ୱର ଗୁଞ୍ଜରି ଉଠି ପୁଣି କେଉଁ ଅତନ୍ଦ୍ର ଆବେଗରେ ଉଭେଇ ଯାଉଥିଲା ।

ଲକ୍ଷ୍ନୌର ଗୋଟିଏ ସାହିରେ ଭଗ୍ନପ୍ରାୟ ସୁନାରଘରର ଦୁଇ ତରୁଣୀ ବୋହୂ ଛାତ ଉପରୁ ନଇଁପଡ଼ି ପଡ଼ୋଶୀ ଘରର ବୋହୂ ତାରା ସହିତ କଥାବାର୍ତ୍ତା ହେଉଥିଲେ । ତଳି ଛାତ ଉପରେ ଭଗ୍ନପ୍ରାୟ ବଣିଆର ଛାତକୁ ଲାଗି କେତେଖଣ୍ଡ ଖାଲି କାଠ ଚାଦଲ ଉପରେ ବସି ତାରା ନିଜ ସାଙ୍ଗମାନଙ୍କ ଛାତ ବାଡ଼ଯାଏ ଉଠି ଗପ କରୁଥିଲା । ବୁଣା କଣ୍ଟା ରଖି ଉଲ୍‌ର ଫାସ ଉପରେ ଆଖି ପକାଇ ପକାଇ ତାରା ଭ୍ରୂକୁଞ୍ଚନ କରି କହିଲା—"ଅନ୍ୟ କାହା ମୁହଁରେ ତାରା ଡାକ ମୋତେ ଭଲ ଲାଗେନାହିଁ । କିଛି ଖରାପ ଭାବିବ ନାହିଁ "ତାରା" ଡାକ କେବଳ ତାଙ୍କର ମୁହଁରୁ ଶୁଣିବାକୁ ମୋତେ ଭଲଲାଗେ ।

ଏ କଥାରେ ବଡ଼ ବୋହୂ ଚମକି ଉଠିଲା । ଆଉ ସେଥିରେ ତା ଡାହାଣ କାନର ସୁନା ଜଡ଼ଉ ଫୁଲର ଝୁମ୍‌କା ଉପରେ ଖରା ପଡ଼ି ନାଲି ରଙ୍ଗରେ ଝଲମଲ କରିଦେଲା । ଚିବୁକ ଉପରେ ଭରା ଦେଇ ସେ ପଚାରିଲା—"ଏ ତ ହେଲା ଏବେ ତମକୁ ଆମେ କେଉଁ ନାଁରେ ଡାକିବୁ ।" "ମିସେସ ବର୍ମା ବୋଲି ଡାକିବ, ମୁଁ ବି ତମକୁ ସେମିତି ଡାକିବି । ସାନବୋହୂର ଚଉଡ଼ା ଓଠ ତଳର ଛୋଟ ଚିହ୍ନ ସଙ୍କୁଚିତ ହୋଇଗଲା । ତା ନାକ ପୁଡ଼ା ଦୁଇଟି ଫୁଲି ଫୁଲି ଉଠିଲା । ନାକର ହୀରା ଫୁଲ ବି ସେଥିରେ ଚକ୍ ଚକ୍ କଲା । ଭ୍ରୂରୁ ଉପରେ ଅଭିମାନର ସାର୍ଥକ ରେଖା ଆଙ୍କି ଗ୍ରୀବା ହଲାଇ କହିଲା "ତେବେ ତମେ କ'ଣ ମିସେସ ସୁନାର ବୋଲି ଡାକିବ ? ନାହିଁ ନାହିଁ ଆମକୁ ଏମିତିକରି ଡାକିବନି । ଆମକୁ ଭଲଲାଗୁନି ।"

ବଡ଼ବୋହୂ କହିଲା "ଏଥିରେ କାହିଁକି ଖରାପ ଲାଗିବନି ? ଯିଏତ ଯେଉଁ ଜାତିର ତାକୁ ସେଇ ନାଁରେ ଡକାହେବ । ଆମେ କ'ଣ କେଉଁ ନୀଚ କୁଳର କି ? ଆମେ ପରା ବୈଶ୍ୟ ।"

ତାର ଇଣ୍ଟରମିଡ଼ିଏଟ୍ ଯାଏଁ ପଢ଼ିଛି । ପୁଣି ଭଲପାଇ ଅସବର୍ଣ୍ଣ ବିବାହ କରିଛି । କେତେଥର ସ୍ୱାମୀ ସାଙ୍ଗରେ ହଜ୍‌ରତ୍‌ଗଞ୍ଜରୁ କ୍ୱାଲିଟି, ସିଲଭର ସ୍ନୋ ରେସ୍ତୁରାଁ, କଫି ହାଉସ ପର୍ଯ୍ୟନ୍ତ ପୃଥିବୀକୁ ଦେଖିବାର ସୁଯୋଗ ପାଇଛି । ନିଜ ଅପେକ୍ଷା କମ୍ ପାଠୋଇ, ଭଦ୍ଭୁତ ସୁନାର ଘରର ବୋହୂମାନଙ୍କ ଆଡ଼କୁ ଚାହିଁ ଆତ୍ମୀୟତା ପୂର୍ଣ୍ଣ କଣ୍ଠରେ କହିଲା, "ଆଲୋ ଭଉଣୀ ! ଆଜିକାଲି ଜାତି କଥା କିଏ ମାନୁଛି ? ମୁଁ ତ ନିଜେ ଜାତି ଅଜାତି ମାନେନାହିଁ ।

ତାର ବଡ଼ବୋହୂ ଦୃଷ୍ଟିରେ ଜଣେ ହିରୋଇନ୍ । ବଡ଼ ବୋହୂ ଉଚ୍ଛ୍ୱସିତ ହୋଇ କହିଲା, "ଆଲୋ ଭଉଣୀ ତମେ ମାନିବ କ'ଣ ତମେତ କରି ଦେଖେଇ ଦେଇଛ ।"

ସେ ହସି ଉଠିଲା । ଏ ଦୁହେଁ ବି ହସିଲେ । ତାର କେବଳ ସାନ ବୋହୂ ଆଖିରେ ନୁହେଁ ତା' ନିଜ ଦୃଷ୍ଟିରେ ମଧ୍ୟ ଜଣେ ହିରୋଇନ୍ ।

ବଡ଼ ବୋହୂ ତାର ସୌମ୍ୟ ଶ୍ୟାମଳ ସୁନ୍ଦର ରୂପଆଡ଼େ ସ୍ନେହଭରା ଦୃଷ୍ଟିରେ ଚାହିଁ ଚଞ୍ଚଳ ହୋଇ କହି ଉଠିଲା "ଆରେ ବାଇ, ଯାହା କହ ପଛେ ଲଭ୍ ମ୍ୟାରେଜ୍‌ରେ ଗୋଟିଏ ଅପୂର୍ବ ଆନନ୍ଦ ଥାଏ । ମୁଁ ଅଷ୍ଟମ ଶ୍ରେଣୀରେ ପଢ଼ିଲାବେଳେ ମୋର ଗୋଟିଏ ପୁଅ ସହିତ ମଧ୍ୟ ପ୍ରେମ ହୋଇଥିଲା ।"

କ୍ଷଣିକ ପାଇଁ ବଡ଼ ବୋହୂ ତାର ପୁରୁଣା ସ୍ମୃତି ପୁରଣା ଆଖି ଭିତରେ ହଜିଗଲା । ଛୋଟ ବୋହୂ ମୁହଁରେ ବିସ୍ମୟର ଏକ ଅପରିଚିତ ଭାବ ଖେଳିଗଲା । ତାର ମେହେନ୍ଦୀ କରା ମହି ଦୁଇ ଆଙ୍ଗୁଳି-ହସ୍ତନ୍ତ ଓଠ ଉପରେ ହଠାତ୍ ରହିଗଲା । ଶ୍ରେଣୀରେ ଫାଷ୍ଟ୍ ହୋଇଥିବା ଛାତ୍ରୀଙ୍କୁ ସାବାସ୍ ଦେଉଥିବା ସମୟରେ ତା'ର ଶିକ୍ଷୟିତ୍ରୀ ହସ ଭଳି ତାର ହସ ବେଗଶୂନ୍ୟ ଥିଲା ।

ସେତିକବେଳେ ତଳପଟ ସ୍ଥିତ ଦୋଳିରେ ବଡ଼ ବୋହୂର ତିନି ମାସର ଝିଅ କାନ୍ଦିଉଠିଲା । ଆଉ ତାର ଛଅ ବର୍ଷର ପୁଅ, ସେ ଘରେ ଜରରେ ଶୋଇଛି, ତାର ପାଖରେ ବସି ଖେଳରେ ହିଙ୍ଗ୍ୱାଷ୍ଟକ ଚୂର୍ଣ୍ଣକୁ ଘୋଟୁ ଘୋଟୁ ଶାଶୁ ଡାକିଲା, "ଆଲୋ ବୋହୂ, ଝିଅ କାନ୍ଦୁଛି ।" ସେପଟେ ତାର ବଡ଼ ବୋହୂକୁ ପଚାରୁଛି "ତୁମର ଲଭର କିପରି ଥିଲା ?" ଝିଅଟି ଗୋଡ଼ ହାତ ବାଡେଇ କାନ୍ଦୁଛି, ତା'ର ବୁଢ଼ୀମା ମନ ଦେଇ ଔଷଧ ଘୋଟିବାରେ ବ୍ୟସ୍ତ, ତା'ର ପିଉସି ତଳେ ଖଣ୍ଡେ ଛେଦା ଲୁଗା ପିନ୍ଧି; ମୁହଁ ଓ ହାତରେ ପାନ ଖଣ୍ଡେ ଯାକି, ଶୀତରେ ଥର ଥର ଉପରକୁ ଆସିଲା । ମିନିଟିଏ ଖଣ୍ଡେ ନହୋ, ମା ପାଖରେ ଚୁପ୍ ହୋଇ ଠିଆହୋଇ କହିଲା "ମୁଁ ବଡ଼ମା'ଙ୍କ ଘରକୁ ଯାଉଛି ।"

ମା' କହିଲା "ସେଠାରୁ ବଡ଼ ବୋହୂକୁ ଟିକିଏ ପଠାଇଦେ । କଥାବାର୍ତ୍ତାରେ ଏପରି ଭୋଳ ହୋଇ ଯାଇଛନ୍ତି ଯେ ଏମାନଙ୍କୁ ନିଜର ପୁଅ ଝିଅଙ୍କ କଥା ବି ମନେ ପଡ଼ୁନାହିଁ ।"

ସତେଇଶ ବର୍ଷ ବୟସରେ ସମସ୍ତ ମାୟାମୋହରୁ ବିରକ୍ତ, ଆଜିକାଲିର ପୁଅ, ଝିଅ ସମବୟସ୍କା ଓ ଘର ସଂସାରରେ ବ୍ୟସ୍ତ ପତିଙ୍କ ସନ୍ତାନବତୀ ନାରୀମାନଙ୍କୁ ଘୃଣା କରୁଥିବା ରୁକ୍ଷ ପ୍ରକୃତି, ବ୍ରତ, ଉପବାସ ନିୟମ ଦ୍ୱାରା କଠୋର, କ୍ଷୀଣ-କାନ୍ତି ନନ୍ଦୋ ଧର୍ମ କରି ପରଛିଦ୍ର ବ୍ରତୀ ବୟସ୍କା ଓ ବୁଢ଼ୀମାନଙ୍କ ଗହଣରେ ହିଁ ନିଜର ପରଲୋକ ନିର୍ମାଣ କରୁଛି । ବଡ଼ମା'ଙ୍କ ଘରକୁ ଯିବା ପାଇଁ ନନ୍ଦୋ ଉପର ଛାତ ଉପରେ ଚଢ଼ିଲା ଯେଉଁଠାରେ ତା'ର ଦୁଇ ଭାଉଜମାନେ ତାରି ସହିତ କଥାବାର୍ତ୍ତା କରୁଥିଲେ । ଗୋଡ଼ ଚପି ଚପି ନନ୍ଦୋ ନିଜ କାନକୁ ଠିକ୍ ରଖି ଶିକାରୀ ବିଲେଇ ପରି ଅତି ସାବଧାନରେ ସେଠାକୁ ଆସୁଥାଏ । ନନ୍ଦୋକୁ ପର ନିନ୍ଦାପାଇଁ ଭଲ ସାମଗ୍ରୀ ମିଳୁଥିଲା, କିନ୍ତୁ ତା'ର ମା' ପୁଣି ସେତିକିବେଳେ ଡାକିଲା "ହେ ବଡ଼ ବୋହୂ ।"

ଦୁଇ ବୋହୂ ହଠାତ୍ ବୁଲିପଡ଼ିଲେ, ଦ୍ୱାରପରି ଠିଆ ହୋଇଥିବା ନଣନ୍ଦକୁ ଦେଖି ଦୁହେଁ ଶଙ୍କିଗଲେ, ଆଉ ନଣନ୍ଦ ମଧ । ନନ୍ଦୋ ଯଥାସମ୍ଭବ ନିଜକୁ ସମ୍ଭାଳି ନେଇ ବଡ଼ମା'ଙ୍କ ଛାତ ଆଡ଼କୁ ଯିବାପାଇଁ ଛାତ ବାଡ଼ଆଡ଼କୁ ଆଗେଇ ଗଲା ।

# ଦୁଇ

ଦେଠେଇ ରାଜା ବାହାଦୁର ସାର୍ ଦ୍ୱାରିକା ଦାସଅଗ୍ରୱାଲଙ୍କ ପ୍ରଥମ ସ୍ତ୍ରୀ ରାଜା ବାହାଦୁର ଲକ୍ଷ୍ନୌ ସହରର ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ନେତା । ଇଂରେଜ ରାଜତ୍ୱରେ ଡେପୁଟି କମିଶନରଠାରୁ ଆରମ୍ଭ କରି ଚିଫ୍ ସେକ୍ରେଟାରୀ ଓ ହୋମ୍ ମେମ୍ବର ପର୍ଯ୍ୟନ୍ତ ଯୁକ୍ତ ପ୍ରଦେଶର ଗଭର୍ଣ୍ଣରଠାରୁ ଆରମ୍ଭକରି ଭାଇସ୍‌ରାୟ (ବଡ଼ଲାଟ୍) ପର୍ଯ୍ୟନ୍ତ ସବୁଆଡ଼େ ତାଙ୍କର ପ୍ରବେଶ ଥିଲା । ତାଙ୍କର ଯଥେଷ୍ଟ ସମ୍ମାନ ଥିଲା । ଦେଶ ସ୍ୱାଧୀନ ହେବା ପରେ ମଧ୍ୟ ଶ୍ରୀ ଦ୍ୱାରିକା ଦାସଙ୍କର ପ୍ରବେଶ ଭାରତର ଯଦିଓ ରାଷ୍ଟ୍ରପତି ଏବଂ ପ୍ରଧାନମନ୍ତ୍ରୀଙ୍କ ପର୍ଯ୍ୟନ୍ତ ନଥିଲା । ତଥାପି ତାଙ୍କର ପ୍ରଭାବ କିଛି କମ୍ ନ ଥିଲା । ନୂଆ ଦିଲ୍ଲୀର ଅନେକ ଉଚ୍ଚ ଅଧିକାରୀ ଏବଂ ଉତ୍ତର ପ୍ରଦେଶର ବଡ଼ ବଡ଼ ମନ୍ତ୍ରୀ ଓ ଅଫିସରମାନେ ଏବେ ମଧ୍ୟ ତାଙ୍କୁ ରାଜା ସାହେବ କହି ସମ୍ବୋଧନ କରନ୍ତି, ତାଙ୍କର କାମ ସରକାରୀ ନିୟମ କାନୁନର ସିଧା ସଳଖ ବାଟରେ ନଯାଇ ପକ୍ଷପାତର ଲିଫ୍ଟ ଦ୍ୱାରାହିଁ ଉପରକୁ ଉଠେ । ରାଜା ବାହାଦୂରଙ୍କର ଦାନ ଏବଂ ଧର୍ମ ନିଷ୍ଠା ସମ୍ବନ୍ଧରେ ବଡ଼ ବଡ଼ ଶଙ୍କରାଚାର୍ଯ୍ୟମାନେ ନିଜ ନିଜର ଦୈବୀ ମତାମତ ଦେଇ ସାରିଛନ୍ତି । ତାଙ୍କ ଘରେ ପ୍ରତିବର୍ଷ ସନ୍ଥ ସମ୍ମିଳନୀ ହୁଏ । ସେ କେତେ ଲକ୍ଷ ଟଙ୍କା ଖର୍ଚ୍ଚ କରି ଲକ୍ଷ୍ମୀ ନାରାୟଣଙ୍କର ମନ୍ଦିର ତୋଳାଇଛନ୍ତି । ସେହି ମନ୍ଦିରଟି ନିଜର ଦେବତାମାନଙ୍କ ନାମରେ ବିଖ୍ୟାତ ନ ହୋଇ ଅଗ୍ରୱାଲ୍ ମନ୍ଦିର ନାମରେ ହିଁ ବିଖ୍ୟାତ । କୁହାଯାଏ ଯେ ତାଙ୍କର ନୂଆ ଉଆସ ଭିତରେ ତାଙ୍କଦ୍ୱାରା ସ୍ଥାପିତ ଲକ୍ଷ୍ମୀଙ୍କ ଚଉତରା ଉପରେ ଯେଉଁ ଅଖଣ୍ଡ ଦୀପ ଜଳୁଛି ତାହାର କଜ୍ଜଳ କଳା ନହୋଇ ହଳଦିଆ ହୁଏ ଏପରି ସ୍ୱାମୀଙ୍କର ସୌଭାଗ୍ୟବତୀ ସ୍ତ୍ରୀ ହୋଇ ଦେଠେଇ ପ୍ରତି ଗଳି ଗଳିରେ ଚୁଁ ଚୁଁ କରି ସମସ୍ତଙ୍କର ଘୃଣା ଓ ଅନାଦରର ପାତ୍ରୀ ହୋଇଛନ୍ତି । ଏହି ବିଷୟରେ ଚିନ୍ତାଶୀଳ ବୃଦ୍ଧମାନେ ପ୍ରାୟ ଭାଗ୍ୟକୁ ହାତ ଦେଖାନ୍ତି ।

ଦେଠେଇ ବାହା ହୋଇ ଆସିଲାବେଳେ ଦ୍ୱାରିକା ଦାସଙ୍କ ଘରେ ଖାଇବାକୁ ସୁଦ୍ଧା ନଥିଲା । ପୈତୃକ ସମ୍ପତ୍ତି ଜେଜେବାପାଙ୍କ ସମୟରୁ ବାଇଜୀ ନାଚରେ ସରିଥିଲା । ଯାହା ଅଳ୍ପ କିଛି ଥିଲା ତାହା ବାପାଙ୍କ ଅମଳରେ ହିଁ ଶେଷ । କରଜ ବହୁତ ଥିବାରୁ ସେ ନିଜର ମାନ ରକ୍ଷା କରିବାକୁ ଗୋମତୀ ନଦୀରେ ବୁଡ଼ି ପ୍ରାଣ ହରାଇଥିଲେ । ପୂର୍ବଜମାନଙ୍କର ଘର (ଯାହାକି ବର୍ତ୍ତମାନ ପୁଣି ଦ୍ୱାରକା ଦାସଙ୍କ ସମ୍ପତ୍ତି ହିସାବରେ ଦେଠେଇଙ୍କ ନାମରେ ରହିଛି ) ପୂର୍ବଜମାନଙ୍କର କରଜ ପରିଶୋଧ ପାଇଁ ନିଲାମ ଡକା ହୋଇଥିଲା । ଦ୍ୱାରକା ଦାସଙ୍କର ମା' ତାଙ୍କୁ

ଓ ତାଙ୍କର ଦୁଇଟି ଅବିବାହିତା ଝିଅଙ୍କୁ ନେଇ ସେହି ଘରକୁ ଲାଗିଥିବା ଗୋଟିଏ ଛୋଟ ଘରେ ବସବାସ କଲେ । ସେତେବେଳେ ଦ୍ୱାରକା ଦାସଙ୍କୁ ଚଉଦ ବର୍ଷ ବୟସ ହୋଇଥାଏ । ସେ ଜଣେ ଆତ୍ମୀୟ ସ୍ୱଜନଙ୍କ ସହିତ ବଣିଆ ଦୋକାନରେ ଦଲାଲି କାମ ଶିଖିବାକୁ ଲାଗିଲେ । ଯେ କୌଣସି ପ୍ରକାରେ ତାଙ୍କର ବଡ଼ ଭଉଣୀର ବିବାହ ହେଲା, ତାଙ୍କର ମଧ୍ୟ । ଦେଠେଇ ହୃତ ବୈଭବର କୁଳଲକ୍ଷ୍ମୀ ହୋଇ ଘରେ ପାଦ ଦେଲେ ।

ଦେଠେଇଙ୍କର ବାପାଘର ହାଥରସରେ, ଯଦ୍ୟପି ସେମାନଙ୍କର ଅବସ୍ଥା ବର୍ତ୍ତମାନ ଖରାପ, ତଥାପି ସେମାନେ ବଡ଼ ଲୋକଥିଲେ । ଦେଠେଇଙ୍କର ବାପା, ମା' ପିଲାଦିନୁ ମରିଯାଇଥିଲେ । ସେ ସମସ୍ତ ପର୍ଯ୍ୟନ୍ତ ନିଜର ବଡ଼ ପରିବାର ଭିତରେ ଏଇ ଏକମାତ୍ର ଝିଅ ହୋଇଥିବାରୁ ବଡ଼ ଗେହ୍ଲା ହୋଇଥିଲେ । ଆଉ ସବୁ କକାମାନଙ୍କର ସନ୍ତାନ ସନ୍ତତି ହେବାରୁ ଏହା ଏହାଙ୍କ ପ୍ରତି ସ୍ନେହ, ଆଦର କମିଯିବାରୁ ଦେଠେଇ ଭୀଷଣ ରାଗୀ ପ୍ରକୃତିର ହୋଇଥିଲେ । ଅତ୍ୟନ୍ତ ଗେଲବସର ହେବା ଭୟରୁ ସର୍ବଦା ପଦାକୁ ବାହାରୁଥିଲା । ଯେପର୍ଯ୍ୟନ୍ତ ବୁଢ଼ା ବାପା ଓ ବୁଢ଼ୀ ମା' ଜୀବିତ ଥିଲେ, ସ୍ୱାଙ୍କୁ କେହି କିଛି କହିପାରୁ ନଥିଲେ । ତା' ପରେ ଦୂର୍ ଦୂର୍ ମାର୍ ମାର୍ । ନିଜର ମୁହଁଖୋର୍ ସ୍ୱଭାବ ହେତୁ ଘରେ ସମସ୍ତଙ୍କର ଚକ୍ଷୁଶୂଳ ହୋଇ ଉଠିଲେ ।

ସେ ମଣିଷମାନଙ୍କଠାରୁ ଦୂରେଇ ଯାଇ ଏକୁଟିଆ ହୋଇଗଲେ । କକାମାନେ ବିନା ଯାନ ଯୌତୁକରେ ଦ୍ୱାରକା ଦାସଙ୍କ ଭଳି ଜଣେ ଫକୀର ସହିତ ବିବାହ ଦେଇ ସବୁଦିନ ପାଇଁ ମୁକ୍ତି ପାଇଗଲେ । ଆଜି କେବେହେଲେ ସ୍ୱାଙ୍କୁ ଭଲ ମନ୍ଦରେ ଡାକିବାର ନାଁ ସୁଦ୍ଧା ଧରିଲେ ନାହିଁ ।

ବିବାହ ପରେ ଦ୍ୱାରକା ଦାସଙ୍କର ଭାଗ୍ୟ କିଛି ଫେରିଗଲା । ଦଲାଲିରେ ଉଜୁଡ଼ି ଯାଇଥିବା ରଜା ରାଜୁଡ଼ାମାନଙ୍କର ଦାମି ଜିନିଷ ସବୁ ଖୁବ କମ୍ ମୂଲ୍ୟରେ ତାଙ୍କର କରଗତ ହେଲା । ସେଇଥିରୁ ତାଙ୍କର ବ୍ୟବସାୟର ସୂତ୍ରପାତ । ସୁନା ରୂପାର ଛୋଟ ଦୋକାନଟିଏ ଆରମ୍ଭ କରିଦେଲେ । ସେଇଦିନୁ ସ୍ତ୍ରୀଙ୍କୁ ତାଙ୍କର ଭାଗ୍ୟଲକ୍ଷ୍ମୀ ବୋଲି ମଣିଲେ ଏବଂ ତାଙ୍କର ଅଜସ୍ର ଗାଳି, ଦୁର୍ବ୍ୟବହାରକୁ ନୀଳକଣ୍ଠ ହୋଇ ପିଇଗଲେ ।

ପ୍ରଥମ ମହାଯୁଦ୍ଧ ପରେ ପରେ ଭାଗ୍ୟଲକ୍ଷ୍ମୀ ଦ୍ୱାରକା ଦାସଙ୍କ ଉପରେ ସୁନା କଳସ ଅଜାଡ଼ି ଦେଲେ । ସେତିକବେଳେ ଗୋଟିଏ ପୁରୁଣା ଘର କିଣି ତାକୁ

ଖୋଳିଲାବେଳେ କିଛି ପୋତା ଧନ ଅକସ୍ମାତ୍ ପାଇଲେ, ଯା' ପରେ ପରେ ଦ୍ୱାରିକା ଦାସଙ୍କର ମହିମା ଦିଗ ଦିଗରେ ବ୍ୟାପିଗଲା । ଏତେ ସବୁ ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ଭିତରେ ସେ ଆଉ ଏକ ସ୍ନେହ ପ୍ରବଣ ସ୍ତ୍ରୀଟିଏ ଲୋଡ଼ି ବସିଲେ ଏବଂ ତା' କୋଳରେ ନିଜର ବଂଶଧରକୁ ଦେଖି ପୁତ୍ରହୀନତାର ଯନ୍ତ୍ରଣାରୁ ମୁକ୍ତି ପାଇବାକୁ ଚାହିଁଲେ ।

ବିବାହର କିଛି ବର୍ଷ ପରେ ଦେଠେଇଙ୍କ ଭାଗ୍ୟ ସମ୍ପୂର୍ଣ୍ଣ ବଦଳିଗଲା; ତାଙ୍କୁ ଘୃଣା କରୁଥିବା ଶାଶୂ ମଧ୍ୟ ତାଙ୍କୁ ଭଲ ପାଇଲେ; କିନ୍ତୁ ଦେଠେଇ ଯେତେବେଳେ ଝିଅଟିଏ ଜନ୍ମକଲେ ସମସ୍ତଙ୍କ ମନ ଭାଙ୍ଗିଗଲା ଏବଂ ସେହି ପୁରୁଣା ଦୁର୍ବ୍ୟବହାର ପୁଣି ଚାଲିଲା, ଏ ସବୁଥିରେ ଦେଠେଇ ଅଜଣାତରେ ଭୟଭୀତ ହୋଇ ସନ୍ଦେହ କଲେ ଯେ ତାଙ୍କର ଝିଅଟିକୁ ଘରର ଲୋକେ ସୁବିଧା ପାଇଲେ ମାରିଦେବେ ।

ଏହି କାରଣରୁ ସେ ନିଜ ସ୍ୱାମୀ, ଶାଶୂ, ନଣନ୍ଦ ଓ ଚାକର ବାକର ସମସ୍ତଙ୍କୁ ସନ୍ଦେହ କଲେ ଏବଂ ପୃଥିବୀ ପ୍ରତି ତାଙ୍କର ତୀବ୍ର ଘୃଣା ଓ ଅବିଶ୍ୱାସ ଜାତ ହେଲା ।

ପ୍ରାୟ ୨୪ ଘଣ୍ଟା ସେ ନିଜ ଘରର ଦୁଆର ବନ୍ଦ କରି ଝିଅଟିକୁ ଗେଲ କରିବାକୁ ଲାଗିଲେ, ସ୍ୱାମୀଙ୍କ ହଜାର କଥାରେ ବି ସେ ବୁଝିଲେ ନାହିଁ । ହଠାତ୍ ଝିଅଟି ଆଠ ମାସର ହୋଇ ପୃଥିବୀର ମାୟା ଛାଡ଼ି ଚାଲିଗଲା । ଦେଠେଇଙ୍କ କରୁଣ କ୍ରନ୍ଦନରେ ସାରା ଘର କାନ୍ଦି ଉଠିଲା । ସମସ୍ତ ଐଶ୍ୱର୍ଯ୍ୟ ଭିତରେ ମଧ୍ୟ ଦ୍ୱାରିକା ଦାସ କେବଳ ମାତ୍ର ଗୋଟିଏ ସନ୍ତାନର ଅଭାବ ଅତିମାତ୍ରାରେ ଅନୁଭବ କଲେ ଏବଂ ଦିନକୁ ଦିନ ସେଇ ଶୂନ୍ୟତା ମନ ଭିତରେ ଯନ୍ତ୍ରଣା ସୃଷ୍ଟି କଲା । ଦ୍ୱାରିକା ଦାସ ଶେଷରେ ନିଜ ପାଖରେ ହାରିଯାଇ ଦ୍ୱିତୀୟ ବିବାହର ଆୟୋଜନ କଲେ ଏବଂ ଯେଉଁଦିନ ସେ ଦ୍ୱିତୀୟଥର ପାଇଁ ବର ବେଶରେ ପାଲିଙ୍କି ଚଢ଼ିଲେ, ସେହିଦିନ ରାତିରେ ଦେଠେଇ କାହାକୁ କିଛି ନ କହି ଘରଛାଡ଼ି ନିରୁଦ୍ଦିଷ୍ଟ ହୋଇଗଲେ ।

ଦେଠେଇ ଘରୁ ଚାଲିଯାଇ ନିଜର କୂଳ ପୁରୋହିତଙ୍କ ଘରେ ଅବାଞ୍ଛିତ କୁଣିଆ ହୋଇ ରହିଲେ । ଆଠଦିନ ପରେ ଦ୍ୱାରିକା ଦାସ ନିଜର ପୈତୃକ ଘରେ ଆଜୀବନ ରହିବାର ସମ୍ମତି ଦେଇ ରାଜି କରାଇଲେ ଆଉ ତା ସହିତ ତୀର୍ଥ ବ୍ରତ ଓ ଭରଣ ପୋଷଣ ପାଇଁ ମାସିକ ଦୁଇଶହ ଟଙ୍କା ଦେବାକୁ ମଧ୍ୟ ପ୍ରତିଶ୍ରୁତି ଦେଲେ ।

ଦୀର୍ଘ ତେଅଶି ବର୍ଷ ହେଲା ଏହି ନିୟମର କିଛି ବ୍ୟତିକ୍ରମ କେବେ ଘଟିନି । ଏହାର ଭିତରେ ଧର୍ମ ସଂରକ୍ଷକ, ବ୍ରାହ୍ମଣ, ପ୍ରତିପାଳକ ଦାନବୀର ରାଜ ବାହାଦୁର ସାର ଦ୍ୱାରିକା ଦାସ ଅଗ୍ରବାଲ କେ.ସି, ଆଇ, ଇଙ୍କର ପ୍ରଥମ ଗୃହଲକ୍ଷ୍ମୀ ସାର୍ବଜନୀନ ଦେଠେଇ, ଡାହାଣୀ ସବାଖାଇ ମନ୍ତ୍ରସିଦ୍ଧା ଆଦି ଉପାଧିରେ ଭୂଷିତ ହୋଇ ଏକ ଘରଜିଆ ହୋଇ ରହିଥିଲେ । *

ସାର୍ବଜନୀନ ଦେଠେଇ ସବାଖାଇ, ଡାଆଣୀ ଗୁଣିଆଣି ଉପାଧିରେ ଭୂଷିତ ହୋଇ ମୃଗ ଯୁଗ ପାଇଁ ଘୃଣ୍ୟ ହୋଇ ରହିଗଲେ । ତାଙ୍କର ଗୁଣି ଗାରେଡ଼ି ବିଷୟରେ ଶହ ଶହ ଲୋକ କାହାଣୀ ଅଛି । ଲୋକମୁଖରୁ ଶୁଣାଯାଏ ଯେ ଦେଠେଇ କିଛିଦିନ ପାଇଁ ରାତି ୧୨ଟା ବାଜିଲେ କୌଣସି ଏକ ମେହେନ୍ତରର ପାଖରୁ ମନ୍ତ୍ର ଶିଖିବାକୁ ଯାଆନ୍ତି । ଖଣ୍ଡେ କଳାସୂତାରେ ଗୋଟିଏ ଶ୍ରେଷ୍ଠ କୁସ ଓ କଇଁଚ ଅଣ୍ଡାସୂତାରେ ବାନ୍ଧି ଗୁଣିଗାରେଡ଼ିର କରାମତି ସବୁ ଦେଖାନ୍ତି । ସେ ବନ୍ଧୁବାନ୍ଧବ ଓ ଗାଇ ପଡ଼ଶାରେ ଅଦ୍ଭୁତ ଭାବରେ ଗୁଣିର କରାମତି ଦେଖାନ୍ତି । କେତେବେଳେ କାହା ପଲଙ୍କର ପଟତଳ ଉପରେ ସିନ୍ଦୁର ବୋଳିଛନ୍ତି ତ କେତେବେଳେ କେଉଁ ବୋହୂରୁ ବାହ ପାଟକାନ କାଟି ନେଇଛନ୍ତି । କେଉଁଠି କାହା ତଳିଆରେ କଳାସୂତା ଗଳେ ଲାଗିଥିବା ଛୁଞ୍ଚି ପୋତିଛନ୍ତି ତ କେତେବେଳେ କାହା ଘରର ବାଳୁତ ଶିଶୁର ଦୋଳିରେ ମନ୍ତୁରା ତେଲ ଟୋପାଏ ମାରି ମାରଣମନ୍ତ୍ର ସାଧନା କରିଛନ୍ତି । କେଉଁ ସମୟରେ ଅବା କେଉଁ ଝିଅର ସୂତା ଉପରୁ କେରାଏ ବାଳକାଟି ନେଇ ତାକୁ ବନ୍ଧ୍ୟା କରିଛନ୍ତି । କାହା ଏରୁଣ୍ଡି ଚନ୍ଦ୍ର ତଳେ ଗ୍ରୁଳଣି ଦିନ ଯାଏଁ ଦୀପ ମନ୍ତୁର ରଖିଛନ୍ତି । କେଉଁ ଝିଙ୍କକରେ କାହାପାଇଁ ଝୁଣା ଧୂପ ଦେଇଥିବା ସବୁ ପଡ଼ିଛି । ଦେଠେଇ ହଜାରଥର ଗୁଣି କରିବା ସମୟରେ ଧରା ପଡ଼ିଛନ୍ତି । ଏଇଥିପାଇଁ ଶହେଥର କଳ, ହଜାରଥର ବାଡ଼ିଆପିଟା । ସେଇ ଦେଠେଇ ପାଇଁ ସମସ୍ତଙ୍କର ଦୁଆର ବନ୍ଦ । ଦେଠେଇ ସତେ କି ପ୍ରତି ଘରପାଇଁ ଅଶୁଭ ସଙ୍କେତ ।

ଦେଠେଇ ଖରାରେ ବାଳ ଶୁଖାଉ ଶୁଖାଉ ପଡ଼ୋଶୀ ଘରର ଛାତ ଉପରେ ଗୋଳମାଳ ଶୁଣିଲେ । ସେ ନିଜର କଞ୍ଚା ପାଚିଲା କଳାବାଳରେ ଖୁବ୍ ଯୋରରେ ଆଙ୍ଗୁଳି ଚଳାଉ ଚଳାଉ ମନେ ମନେ ବିରକ୍ତ ହୋଇ ବକର ବକର ହେଲେ ମଲା, ଏ ବୁଢ଼ାଙ୍କୁ ମରଣ ହେଉନି । କିଆଁ ଲଗା ବୁଢ଼ା, ଯୋଉଠି ବସିବେ ଖାଲି ହାଉ ହାଉ ।"

ଯଦି ଦେଠେଇଙ୍କର ସାରା ଜୀବନର ବିରକ୍ତିକୁ ମପାଯାଏ ତେବେ ଏହା ହନୁମାନର ଲାଙ୍ଗୁଡ଼କୁ ମଧ ବଳିଯିବ । ସାରା ପୃଥିବୀ ବିରୁଦ୍ଧରେ ପ୍ରତି ମୁହୂର୍ତ୍ତି ପାଇଁ ତାଙ୍କର ସଜୀବ ଅଭିଯୋଗ । ତେଣୁ ତାଙ୍କର ବକର ବକର ଶେଷ କିପରି ହେବ ? ଝିମନ ବ୍ୟବସାୟୀର ଛାତ ଉପରେ ହୋ ହୋ ହୋଇ ହସୁଥିବା ଝିଅ ବୋହୂମାନେ ଦେଠେଇଙ୍କର ସାତ ଜନ୍ମର ଶତ୍ରୁ ।

ବୋହୂଆଣୀ ଗୁଡ଼ାଙ୍କ ତଣ୍ଟିକୁ ଧାଇ ବାଉଁଶରେ ମେଲି କରିଛୁ କି କ'ଣ ଯେ ଯେତେବେଳେ ଶୁଣ ସେତେବେଳେ ଖାଲି ଘୋଡ଼ାଙ୍କ ଭଳି ହେଁ ହେଁ ··· । ବେଲି ଉଣ୍ଡି ସେତିକିବେଳେ ଅଲେଖଇଷା କୁଆଟାବ ଝାଡ଼ା ଫେରିଲା । ସେତିକିବେଳେ ପୁଣି ପାଖ ପଡ଼ିଶା ଘରୁ ରେଡ଼ିଓରୁ ଗୀତ ଶୁଭିଲା "ହମ୍ ତୁମସେ ମହବତ୍ କରକେ ସନମ୍" ମଲାରେ ମୋ···ର ସନମ, ଗାତରେ ପଶୁ । ଆରପଟ ଘରୁ ଖନ୍ଟୋ ପୁରାତନୀ ଶାଶୁ ବୋହୂଙ୍କର କାଉଁ କାଉଁ ପାଟିରେ କାନ ଅତଡ଼ା ପଡ଼ିଗଲା··· ଘଣ୍ଟିର ଜିଭ ବୁଡ଼ି ଉନରେ ବି ଖଳଖଳ ହେଉଛୁ, ଲାଲ ଦଲାଲର ପୁଅ ପାଟି କରି ଉଠିଲା—"ଆଲୋ ଚୁଡ଼ଁଲ ସାବୁନ ଟିକେ ଦେଇ ପାରିଲୁନ ? ପାଣି ଅଣ୍ଡା ହେଲାଣିପରା" ଏ କଥାରେ ଦେଠେଇଙ୍କ କାନରେ ସତେ କିଏ ତତଲା ତେଲ ଢ଼ାଳିଦେଲା—"ହେ ଭଗବାନ ଏଗୁଡ଼ାଙ୍କୁ ମରଣ ହେଉନ ସତ୍ୟାନାଶ ହେଉ" ଅବେଳରେ ଗାଧୋଇବେ—ଅଘୋରୀ, ସତ୍ୟାନାଶିଆ ଭଗ୍ନୁତ ଘର ବୋହୂଗୁଡ଼ା ମଣିଷକୁ ଦଣ୍ଡେ ଶାନ୍ତିରେ ବସେଇ ଦେବେନାହିଁ । ରହ ରହ, କାଳସର୍ପ ଗୁଡ଼ାକ ମୋତେ ଯେତିକ କଳବଲ କରିବେ ସାତ ପୁରୁଷ ଯାଏଁ ସେ···ସବୁ ବାରସ୍ତ୍ରୀମା ଅବସ୍ଥା ହେବେ । ଦେହରେ ପାତକ ହେଇଯିବ । ମଲାବେଳେ ପାଣି ଟୋପେ କେହି ଦେବାକୁ ନଥିବେ·· ଛୁଃ ଛୁଃ ଛୁଃ···କାଳି କାନଟା ମୂଷାଟେ ଧରି ଫେରେ ଆସିଲାଣି । ବିଲେଇଟାକୁ ଦେଖି ଦେଠେଇ ବାଡ଼ି ଖଣ୍ଡେ ଧରି ଦଉଡ଼ିଗଲେ । ବିରାଡ଼ିଟି ପାହାଚ ପାଖ ଘରୁ କୁଦାମାରି ଦେଠେଇଙ୍କ ଘ୍ରାତରୁ ଭଗ୍ନୁତ ଘର ଛାତ ଉପରକୁ ଡେଇଁପଡ଼ିଲା । ଠିକ୍ ସେତେବେଳେ ନନ୍ଦୋ ସେପଟୁ ଆସୁଥିଲା, ସାମନାରେ ବିରାଡ଼ିଟାକୁ ଡେଇଁପଡ଼ିବାର ଦେଖି ହଠାତ୍ ଚମକି ପଡ଼ିଲା । ଦେଠେଇ ତାଙ୍କୁ ଦେଖି କହିଲେ—"ତୁ ବଣ୍ଡି ବୁଢ଼ୀ ହେଲୁଣି, ଯାଆ··ବେଗି ଗାଧୁଅ ।" "ନା ମ ଦେଠେଇ, ଦାଅଁଙ୍କ ବାଣ, ସେଇଟା ମୋଠୁଁ କେତେ ଦୂରକୁ ଡେଇଁଥିଲା । ତମେତ ଖାଲି ଠିଆହୋଇ ଦେଖୁଥିଲ । ଇଲେ ମା' ମୁଁ ପୁରା ଡରିଗଲି, ପାଟିରେତ ମୂଷାଟେ ଧରିଥିଲା । ତମରି ଘରୁ ବୋଧେ ନେଇଥିବ । ନୁହଁ ଦେଠେଇ ?" ଉପର ଛାତରୁ ଉନଟା ପାହାଚ ତଳକୁ ଓହ୍ଲାଉ ଓହ୍ଲାଉ ଖଣ୍ଡେ ପାନ ବଢ଼େଇ ଦେଇ କହିଲା "ନିଅ ମ ଖଣ୍ଡେ ପାନ ଖାଅ" ଅଣ୍ଡା ପାନ ଦେଖି ଦେଠେଇଙ୍କ ରାଗ

ହୋଇଗଲା, ବଡାଟିକୁ କାନ୍ଥରେ ଆଉଜା ରଖି ତେଉତରା ଉପରେ ଥିବା କଳସୀରୁ ପାଣି ଟୋପେ ଆଣି ହାତ ଧୋଇଲେ । ଧୋଉ ଧୋଉ ପଗ୍ଭରିଲେ, "ସତକହିଲୁ, ବଲେଇ ତୋତେ ଛୁଇଁନିତ ?

'ଡମଗଣ ଦେଠେଇ' ମୁଁ କ'ଣ ମିଛ କହିବି ··ମୋ ଘରେ ପରା ପାନ ଟିକେ ବି ଅଲଗା ହୋଇ ଦିଅଁଙ୍କ ଘରେ ରହେ ।"

ଦେଠେଇ ଲୁଗା କାନିରେ ହାତ ପୋଛୁ ପୋଛୁ ନିଜ କାନିରେ ପାନ ବାନ୍ଧି ବାନ୍ଧି ଅନୁଚ ସ୍ୱରରେ କହିଲେ—ଜୟ ଶ୍ରୀକୃଷ୍ଣ ଜୟ ଶ୍ରୀକୃଷ୍ଣ । ନନ୍ଦୋ ତା' ଅଣ୍ଟାରୁ ଗୁଣ୍ଡି ବଟୁଆ ବାହାର କରି ଥୋଇଲା । ଖରାଆଡ଼କୁ ପିଠି କରି ଦୁହେଁଯାକ ବସିପଡ଼ିଲେ, ବଟୁଆ ଖୋଲି ନନ୍ଦୋ ଦୁଇଖଣ୍ଡ ଚୂନିରା ଗୁଆ ଆଉ ଟିପେ ଗୁଣ୍ଡି ପାଟିରେ ପକେଇ ବଟୁଆକୁ ଅଣ୍ଟାରେ ଖୋସି ଗୋଡ଼ ଲମ୍ବେଇ ବସିଲା ।

ଦେଠେଇ ତୁମ ମାନଙ୍କ ଦୟାରୁ ମୁଁ ଏପର୍ଯ୍ୟନ୍ତ ମୁଁ ସେଇ ପୁରୁଣା କାଳିଆ ମତରେ ଗ୍ଭଲି ଆସିଛି, ଏଇଟାପରା ଆମର ସନାତନ ଧର୍ମ । ସକାଳୁ ଗୋମତୀ ନଦୀରେ ସ୍ନାନ କରି ସିଧା ଠାକୁରଙ୍କ ଘରକୁ ଗ୍ଭଲିଯାଏ । ମୋର ଘର ସଂସାର କାହାରି ସହିତ ସମ୍ପର୍କ ନାହିଁ, ଦିନ ଦି'ଘଡ଼ି ମୋର ସେବା ପୂଜାରେ ବିତିଯାଏ ।

ତୁମ ଘରେ କେତେ ଦିଅଁ ଅଛନ୍ତି ? ଦେଠେଇ ମୁଣ୍ଡ ଉପରେ ଆଙ୍ଗୁଠି ବୁଲେଉ ବୁଲେଉ ପଗ୍ଭରିଲେ ।

ଆମ ଘରେ ? ଗୋଟିଏତ ରାଧାକୃଷ୍ଣ ଯୁଗଳମୂର୍ତ୍ତି । ତା' ଛଡ଼ା ଲକ୍ଷ୍ମୀ ଠାକୁରାଣୀ, ବାଲମୁକୁନ୍ଦ ମୂର୍ତ୍ତି, ଗଣେଶ, ଲଡ଼ୁଗୋପାଳ ଗଙ୍ଗାଦେବୀ, ବଦ୍ରୀନାଥ ଓ ଜଗନ୍ନାଥଙ୍କର ଫଟୋ, ମହାଦେବ, ଶାଳଗ୍ରାମ—ହଁ ସେତିକି । ବାକି ଆଉ ସବୁ ଫଟୋ ।

"ମୋ ପାଖରେ ଗଣେଶ ନାହାଁନ୍ତି । ପ୍ରଥମେ ଥିଲେ କିନ୍ତୁ ତାଙ୍କୁ ମୂଷା ନେଇଗଲା ।" ଦେଠେଇ ଏକଥା ଓଢ଼ଣା ଟାଣି ଟାଣି କହିଲେ ।

ତେବେ ଆଉ ଗୋଟେ ମଗେଇ ଦେଉନି ଦେଠେଇ । ଦିଅଙ୍କ ଖଟୁଲିରେ ସିଦ୍ଧିଦାତା ଗଣେଷ ପରା ଆଗ ପୂଜା ପାଇବା କଥା ।

"ମୁଁ ସିଦ୍ଧିପିକ ନେଇ କ'ଣ କରିବି ? ଭାଗବତରେ ପରା ଲେଖା ଅଛି ଭଗବାନଙ୍କ ଚରଣରେ ଅଟଳ ଭକତି ରଖ—ତା' ଆଗରେ ମୁକ୍ତି ମଧ ତୁଚ୍ଛ ?"

ହଁ ଦେଠେଇ ଏପରି ଭକ୍ତ ମିଳିଗଲେତ କେତେ ଜନମର ସଂସ୍କାର ସୁଧୁରି ଯିବ । ସେଦିନ ପୁରାଣରେ ଶୁଣିଲି···

"ଆରେ ପୁରାଣ ପଢ଼ା କେଉଁଠି ହେଉଛି ? ଦେଠେଇ କଥା ମଝିରେ ପଚାରିଲେ । ଦେଠେଇ କୌଣସି ପୁରାଣ ପଣ୍ଡା ବା ଗୋମତୀ ଗଙ୍ଗା ଗାଧୋଇବାକୁ ଯାଆନ୍ତି ନାହିଁ । ସେ କୁଆଡ଼େ ଯାଆନ୍ତି ନାହିଁ, ବାସ୍ ସକାଳେ ଓ ସଞ୍ଜରେ ଗୋକୁଳ ଦ୍ୱାରରେ ମଙ୍ଗଳା ଦର୍ଶନ କରିବାକୁ ସେ ଘରୁ ବାହାରିଲେ ତାଙ୍କର ସାତ ଜନମର ଶତ୍ରୁ ଗଳି କନ୍ଦୀ ଖାଇ ପଡ଼ଖାର ପୁଅ ଝିଅ, ଇର୍ଙ୍ଗିଢିଆଳ ଟୋକାମାନେ ଓ ଗାଳି ଖାଇବାକୁ ଇଚ୍ଛୁକ ଦରବୁଢ଼ାମାନେ ତାଙ୍କୁ ଚାରିପଟୁ ଘେରି, "ଦେଠେଇ ଚୁଆଁ ହେଲ" ଚୁଆଁ ହେଲ । ହେଇ ଚୁଆଁ ହେଲ । ଦେଠେଇ 'କହ ଗୋଡ଼ାନ୍ତି, ତୁମେ କେବେ ମରିବ ?" କହି ସବୁବେଳେ ତାଙ୍କ ସହିତ ଲାଗିଥାଆନ୍ତି । ବାଟଯାକ ସେମାନଙ୍କୁ ସୋଧି ବକି ଦେଠେଇ ଅଣନିଶ୍ୱାସୀ ହୋଇଯାଆନ୍ତି । ଦୁନିଆଁକୁ ସେ କଣ ଆଖିରେ ବି ସହିପାରୁ ନାହାନ୍ତି । ବ୍ରହ୍ମାଣ୍ଡଯାକରେ କେବଳ ନନ୍ଦେ । ସହିତହିଁ ତାଙ୍କର ପଟେ । ସେହି ତାଙ୍କ ଆଗରେ ଦୁନିଆଁର ସବୁ ଗପ ଶୁଣାଏ । ନନ୍ଦୋ କହିଲା ବାନର୍ଜୀଙ୍କ ଗଳିରେ କାଶୀରୁ ଜଣେପଣ୍ଡିତ ଆସିଛନ୍ତି, ସେ ଏତେ ସୁନ୍ଦର ପୁରାଣ ବୋଲୁଛନ୍ତି ଯେ ତୁମକୁ କଣ କହିବି । ସେ କହିଲେ ଯେ ସଂସ୍କାର ହିଁ ମଣିଷ ଜନ୍ମକୁ ସାର୍ଥକ କରେ । "ସଂସ୍କାରତ ନଷ୍ଟହିଁ, ଯାହାହେଉ ପଛକେ, ଆଜି କାଲିର ଏ ମଲା ଦୁନିଆଁରେ ସବୁ ସଂସ୍କାର ବିଗିଡ଼ି ଗଲଣି, ଦେଖନା ପାନ୍ନୋର ଝିଅ— ବିଏ ଏମ୍. ଏ. ପଢ଼ି ସରକାରୀ ଅଫିସରେ ଚାକିରୀ କରିବାକୁ ଯାଉଛି, ସେ ସାଇକେଲଟିଏ ବି କିଣିଛି ।"

ଆରେ. ଆଉ ସେ କଥା କହନା ଦେଠେଇ, ଏବର କଳିକାଳ ପରା ଚାରି ଗୋଡ଼ଟେକ ଠିଆହେଲାଣି, କାହାକୁ କ'ଣ କହିବ । ଆମର ଘରେ କ'ଣ କମ୍ ଉତ୍ପାତ ହେଉଛି, ଶଙ୍କର ଓ ତା ବୋହୂ ଆଠଟା ବେଳକୁ ବିଛଣା ଛାଡ଼ନ୍ତି । ଶଙ୍କର ଗୋଟିଏ ଷ୍ଟୋଭ ଆଣିଛି—ତାକୁ ଜଳାଇ ଚା, ଅଣ୍ଡା, ମାଛ ଓ ପାଉରୁଟି— କ'ଣ ସବୁ ତିଆରି ଯେ କରନ୍ତି ତାଙ୍କୁଇ ଜଣା । ଫେର ନିଜ ଘଇତା ସାଥିରେ ବସି ଖିଆପିଆ କରେ । ଏମିତି ସବୁ ସଂସ୍କାର ବିଗିଡ଼ୁଛିନା ? ମଣିଆର ବୋହୂ ସେ ମଧ୍ୟ ସାନବୋହୂ ସାଙ୍ଗରେ ପଡ଼ି ଲୁଚି ଲୁଚି ସବୁ ଖିଆପିଆ କଲଣି । ଏ ଦୁହିଁଙ୍କ ଗୁରୁ କିଏ ଜାଣ ? ସେ ତୁମର ନୂଆ ଭଡ଼ାଟିଆ—କ'ଣ ଆଉ କହିବ ।" ପାପ ବୃଜୁଲାଟାଏ ସେ ସତ୍ୟାନାଶ ହେବ—ବର, ଭାରିଜା ଦୁହେଁ କୋଢ଼ିଆ ହେବେ । ଯାଉଣୁ ଆସୁଣୁ ମୋ ଆତ୍ମା ଏ ଦୁହିଁଙ୍କୁ ସମ୍ଭେ ସବୁବେଳେ ଅଭିଶାପ ଦିଏ ।"

ଦେଠେଇ ନଜର ଭଡ଼ାଟିଆ ମିଷ୍ଟର ଓ ମିଶେସ ବର୍ମାଙ୍କୁ ଭୀଷଣ ଘୃଣା କରନ୍ତି । ମିଷ୍ଟର ଯେତେବେଳେ ନଜର ଅସବର୍ଣ୍ଣ ପ୍ରେମିକାକୁ ବାହାହୋଇ ଆର୍ଯ୍ୟ ସମାଜ ମନ୍ଦିରରୁ ଫେରିଲେ ସେତେବେଳୁ ଦୁହିଙ୍କ ପାଇଁ ଦୁହିଙ୍କ ଘର ଚିରଦିନ ଲାଗି ବନ୍ଦ ହୋଇଗଲା ମିଷ୍ଟର ବର୍ମା ଭଲ ରେଡିଓ ମେକାନିକ୍, ସେ ଗୋଟିଏ ଷ୍ଟୋର ଦୋକାନର ମାଲିକ ଥିଲେ । ସେ ନିଜ ବାପାଙ୍କଠାରୁ ଭିନ୍ନ ହୋଇ ହୋଟେଲରେ ଆଶ୍ରୟନେଲେ ଏବଂ ଘର ଆଲଟ୍ କରିବା କମିଟିର ମେମ୍ବର ମାନଙ୍କ ପାଖକୁ ଧାଁ ଧପଡ଼ କରିବାକୁ ଲାଗିଲେ । ଜଣେ ଜଣାଶୁଣା ବ୍ୟକ୍ତି କହିଲେ ଯେ ତୁମେ ଘର ଖୋଜିନିଅ, ଆମେ ଏଲଟ କରିଦେବୁଁ । ଖୋଜି ଖୋଜି ରାଜା ବାହାଦୁର ସାର ଦ୍ୱାରକା ଦାସଙ୍କର ପୁରୁଣା ଘର ପାଇଲେ । ବୃହତ ମାହାଲ ଘର । କୋଡ଼ିଏ ବର୍ଷ ହେବ ବନ୍ଦ ରହିଥିଲା, ତା'ର ଗୋଟିଏ ପାଖରେ ରାଜା ବାହାଦୁରଙ୍କର ପ୍ରଥମ ସ୍ତ୍ରୀ-ଦେଠେଇ ରହୁଥିଲେ । ଘରଟିରେ ଭୂତ ରହୁଛନ୍ତି ବୋଲି ସମସ୍ତଙ୍କର ଧାରଣା । ଏହି ଘର ସହିତ ରାଜା ବାହାଦୂରଙ୍କର କୌଣସି ସମ୍ପର୍କ ନଥିଲା, ତାହା ଦେଠେଇଙ୍କ ଅଧିକାରରେ ଥିଲା । ଯଦିଓ ଦେଠେଇ ବାହାର ଘର କୁଡ଼ିକୁ, ଦୋକାନ ଏବଂ ପୁରୁଣା ଗୁହାଳ ବାରଣ୍ଡା ସବୁ ଭଡାକୁ ଲଗାଉଥିଲେ । କିନ୍ତୁ ଘର ଭିତରେ କୌଣସି ଭଡ଼ାଟିଆ ରଖିବାକୁ ସେ ରାଜି ହେଉ ନ ଥିଲେ । ମିଷ୍ଟର ବର୍ମା ଏଲଟମେନ୍ଟ କମିଟି ଜରିଆରେ ତା'ର ଗୋଟିଏ ପାଖ ଅଧିକାର କରି ପାରିଥିଲେ । ତେଣୁ , ସେଇ କାରଣରୁ ଦେଠେଇଙ୍କର ବର୍ମା ଦମ୍ପତିଙ୍କ ପ୍ରତି ସବୁବେଳେ ଗାଳି ।

ନନ୍ଦୋ କହିଲା, "ବର୍ତ୍ତମାନ ଗୁରୁ ଓ ଗୁରୁପତ୍ନୀ ଏ ସାଇରେ ଆସି ପହଞ୍ଚିଛନ୍ତି । ଏଠି କେତେ ନାଟ ଲାଗିବ । କ୍ଷତ୍ରୀୟ, ବ୍ରାହ୍ମଣ, ବଣିଆ ସବୁ ଏକାକାର ହୋଇଯିବେ—ତମେ ଦେଖିବ । ଭଲ କହିଲ ଦେଖି । ଏହି ଧର୍ମଭ୍ରଷ୍ଟ ଗୁଡ଼ାଙ୍କ ସାଙ୍ଗରେ ଶଙ୍କର—ମଣିଆର ବୋହୂମାନେ ବସ୍, ଉଠ ଓ ଖିଆପିଆ କରୁଛନ୍ତି—ସେଇଥିପାଇଁତ ତାଙ୍କର ମୁଣ୍ଡ ସବୁ ବିଗିଡ଼ିଯାଇଛି ।

ଠିକ୍ ସେହି ସମୟରେ କେହି ଜଣେ ଦେଠେଇଙ୍କ ଦୁଆର ମୁହଁ ଶିକୁଳି ଖଡ୍‌ଖଡ୍ କଲା ।

ଦେଠେଇ ନନ୍ଦୋକୁ କହିଲେ— ଯା, ଦେଖେତ, କୋଉ ସତ୍ୟାନାଶିଆ ପୁଣି ଆସିଲାଣି ।

ନନ୍ଦୋ ଆସି କହିଲା ଯେ ଜଣେ ଶରଣାର୍ଥୀ ଭଡ଼ାଟିଆ ଗୋଶାଳାର ( ଗୁହାଳର ) ଉପର ଘର ପାଇଁ ନୂଆ ଭଡ଼ାଟିଆ ନେଇକରି ଆସିଛି ।

# ତିନି

ରାଜା ବାହାଦୂର ସାର ଦ୍ୱାରକା ଦାସ ଅଗ୍ରୱାଲଙ୍କର ପୂର୍ବଜମାନଙ୍କର ଗୁହାଳ ବାରଣ୍ଡା ଉପରେ ଗୋଟିଏ ବଖରା ଘର ଓ ଛାତ ଭଡ଼ା ନେବା ପାଇଁ ଆସି ଶିଳ୍ପୀ ସଜ୍ଜନ ଅନୁଭବ କଲା ଯେ ଭାବନା ସ୍ରୋତରେ ସେ ଗୋଟେ ଖିଆଲରେ ଭାସିଯାଇ ସେ ଏକ ମସ୍ତବଡ଼ ଭୁଲ କରିଛନ୍ତି । ସଜ୍ଜନ ଗଳି କନ୍ଦର ସାଧାରଣ ଜୀବନ ସହିତ ପରିଚିତ ହୋଇ ବାହାରି ଚିତ୍ର ଆଙ୍କିବା ଉଦ୍ଦେଶ୍ୟ ନେଇ ଏଠାକୁ ଆସିଥିଲା । ଏମିତି ତ ଶାହାନଜଫ୍ ରୋଡ଼ରେ ତାର ମଧ୍ୟ ଗୋଟେ କୋଠି ଅଛି । ତା'ଛଡ଼ା ଅମିନାବାଦ କେସର ବାଗରେ ତା'ର କେତେଗୁଡ଼ିଏ ଘର ଅଛି । ସେଥିରୁ ପ୍ରାୟ ହଜାରେ ଆଠଶହ ଟଙ୍କା ମାସିକ ଆୟ ହୁଏ । ତା'ର ପୈତୃକ ସମ୍ପତ୍ତି ଚୀନ ଦେଶର ଐତିହାସିକ ପ୍ରାଚୀର ପରି ତାକୁ ସବୁବେଳେ ଅଭାବରୁ ରକ୍ଷା କରି ଆସିଛି । ତେଣୁ ତା'ର ନିରବଚ୍ଛିନ୍ନ କଳା ସାଧନା ମାର୍ଗରେ କୌଣସି ବାଧା ପହଞ୍ଚି ପାରେ ନାହିଁ । ଲ୍ୟାଣ୍ଡସ୍କେପ୍ ଓ ପୋଟ୍ରେଟ ଅଙ୍କନରେ ସଜ୍ଜନ ବିଶେଷ ଭାବରେ ଖ୍ୟାତ, ଅମରନାଥଠାରୁ ଆରମ୍ଭ କରି କନ୍ୟା କୁମାରୀକା ଯାଏ, ଦ୍ୱାରିକାଠାରୁ ମଣିପୁର, ଆସାମ ଯାଏ ସେ ନିଜ ଦେଶର ପ୍ରାଚୀନ ବୈଭବ, ସାହିତ୍ୟ, ଶିଳ୍ପ, ଚିତ୍ରକଳା, ନୃତ୍ୟ ସଙ୍ଗୀତ ଇତ୍ୟାଦି ଦେଖି ଦେଖି ସଜ୍ଜନ ଯେତିକି ପ୍ରଭାବିତ ହୋଇଛି ତା'ଠାରୁ ଅଧିକ ବ୍ୟସ୍ତ ହୋଇ ଉଠିଛି ଆଜିର ସାମାଜିକ ଜୀବନରେ ସେ ସଂସ୍କୃତିର ଅଭାବ ଦେଖି । ଏବେ ତାକୁ ନୂଆ କିଛି ଆଙ୍କିବା ପାଇଁ ପ୍ରେରଣା ମିଳେ ନାହିଁ । ଏହି ଗୋଲକ ଧନ୍ଦା ମଧ୍ୟରେ ସେ ନିଜ ସମାଜର ଦର୍ଶନ ଖୋଜିବାକୁ ଚାହିଁଲା । ଦିନେ କଥା ପ୍ରସଙ୍ଗରେ ତାର ଚିତ୍ରର ଫ୍ରେମ ନିର୍ମାଣକାରୀ କାଠ ମିସ୍ତ୍ରୀ ତାଙ୍କୁ ନିଜ ଘର ପାଖରେ ଗୋଟିଏ ବଖରା ଘର ବୁଝିଦେବାର କଥା ଦେଲେ । ଏ ସମ୍ବାଦରେ ସଜ୍ଜନ ଖୁସି ହୋଇଗଲା । କିନ୍ତୁ କାଠ ମିସ୍ତ୍ରୀ କେଉଁ ଦୁରଭିସନ୍ଧି ନେଇ ତାଙ୍କୁ ଏତେ ସହାନୁଭୂତି ଦେଖାଇଲେ ଶିଳ୍ପୀ ସଜ୍ଜନ ସେ କଥା ବୁଝି ପାରିଲେ ନାହିଁ ।

ଗୁହାଳରେ ଦୁଇଟି ଲମ୍ବା ଲମ୍ବା ବାରଣ୍ଡା ଓ ତଳେ ଦୁଇଟି କୋଠରୀ, ଗୋଟିଏ ବାରଣ୍ଡାର ଛାତ ଉପରେ ଛୋଟ ବଖରାଟିଏ, ତଳପଟ ବାରଣ୍ଡା ଓ କୋଠରୀରେ ଦୁଇଟି ଶରଣାର୍ଥୀ ପରିବାର ରହନ୍ତି । ଜଣେ କାଠ ମିସ୍ତ୍ରୀ ଓ ଅନ୍ୟ ଜଣକ ଠେଲା ଗାଡ଼ିରେ ମସଲା ବିକ୍ରି କରନ୍ତି, ମସଲା ବିକ୍ରେତାର ଜଣେ ଅବିବାହିତ ଶାଳୀ ଛାତ ଉପର ପଟ ବଖରାରେ ରହୁଥିଲେ । ଏହି କାରଣରୁ ଯେ ତାଙ୍କର ପରିବାର ବହୁତ ବଡ଼ । ଆଉ କାଠ ମିସ୍ତ୍ରୀ ଜବରଦସ୍ତି କରି ଅଧିକା ଜାଗା

ମାଡ଼ି ବସିଥିଲା, ଏଣେ ଶଲା ସାହେବ କୌଣସି ପ୍ରେମ ବ୍ୟାପାର ପରେ ମୁଣ୍ଡ ବାଳ କାଟି, ନିଶ ଦାଢ଼ି ଛାଡ଼ି ମୌନ ହୋଇଗଲେ । ତାହାଛଡ଼ା, ତାଙ୍କର ଆୟର ଅଧିକାଂଶ ଯାହା ଭଣଜା ଭଣିଜ ପାଇଁ ଖର୍ଚ୍ଚ ହେଉଥିଲା ତାହା ବାହାରେ କେଉଁ ଆଡ଼େ ଖର୍ଚ୍ଚ ହେବାକୁ ଲାଗିଲା । ଏପରିକି ଦିନେ ସେ ଘର ଛାଡ଼ି ଚାଲିଗଲେ, ମସଲା ବିକ୍ରେତା ଏହା ପରେ ମଧ୍ୟ ଉପର ଘର ଓ ଛାତରେ ନିଜର ଅଧିକାର ସେମିତି ବଜାୟ ରଖିଲେ । ଏଥିରେ କାଠମିସ୍ତ୍ରୀଙ୍କର ଈର୍ଷା ହେବା ସ୍ୱାଭାବିକ । ଥରେ ଏହି କାରଣରୁ ଦୁଇଜଣଙ୍କ ଭିତରେ ଖୁବ୍ କଳି ହୋଇଗଲା । ମସଲା ବିକ୍ରେତା କହିଲେ କୌଣସି ଭଡ଼ାଟିଆ ଆସିଲେ ସେ ଘର ଖାଲିକରି ଦେବେ । କେଜାଣି କି କୁହୁକ ମନ୍ତ୍ର କରି ସେ ଦେଠେଇଙ୍କ ମୁହଁ ବନ୍ଦ କରି ଦେଇଛନ୍ତି, ସେତିକି ନୁହେଁ ତାଙ୍କ କାନରେ ମିସ୍ତ୍ରୀଙ୍କ ବିରୁଦ୍ଧରେ ବହୁ କଥା ଭର୍ତ୍ତି କରିଛନ୍ତି, ଯଦି କେହି ଘର ଭଡ଼ା ନେବା ପାଇଁ ଆସେ ଦେଠେଇ ତାକୁ ପାଠ ପଢ଼ାଇ ବିଦା କରିଦିଅନ୍ତି ।

ବଢ଼େଇ ପରିବାର ପଡ଼ୋଶୀଙ୍କର କୁଟନୀତିର ଶୀକାର ହୋଇ ପ୍ରତିଶୋଧ ନେବାର ସୁଯୋଗ ଖୋଜୁଥିଲେ । ଏହି ସମୟରେ ନଜ୍ଜନ କଥା ପ୍ରସଙ୍ଗରେ ତାଙ୍କୁ ଘରଟିଏ ପାଇଁ କହିଲେ । ବଢ଼େଇଙ୍କୁ ଦେଠେଇ ଆଉ ନିଜର ପଡ଼ୋଶୀ ଉପରେ ପ୍ରତିଶୋଧ ନେବାର ଗୋଟିଏ ଭଲ ସୁଯୋଗ ମିଳିଗଲା । ସେ ଦେଠେଇ ଓ ସଜ୍ଜନର ପ୍ରିୟପାତ୍ର ହୋଇ ପଡ଼ୋଶୀ ମସଲା ବାଲା ଉପରେ ଦାଉ ସାଧିବାକୁ ଚାହିଁଲେ । ସାତଟଙ୍କା ଭଡ଼ା ଜାଗାରେ ସେ ପଚିଶ ଟଙ୍କା ଭଡ଼ା କହିଲେ. ଏ କଥାରେ ସଜ୍ଜନ ମଧ୍ୟ ରାଜି ହୋଇଗଲେ, ତା'ପର ଦିନ ଦ୍ୱିପହରରେ ସଜ୍ଜନଙ୍କୁ ଘର ଦେଖାଇବା ପାଇଁ ଆଣିଲେ । ସେ ସମୟରେ ମସଲା ବିକ୍ରେତା ଘରେ ନଥାଏ । ବିକ୍ରି କରିବା ପାଇଁ ବାହାରକୁ ଯାଇଥାଏ, ତା ସ୍ତ୍ରୀର ଆପତ୍ତିକୁ କର୍ଣ୍ଣପାତ ନକରି କାଠ ମିସ୍ତ୍ରୀ ଭଦ୍ରଲୋକଙ୍କୁ ଘରଟି ଦେଖାଇଦେଲେ ଓ ଦେଠେଇ ସହି ଦେଖା ସାକ୍ଷାତ କରାଇ ଦେଇ ମାସକର ଆଡ଼ଭାନ୍ସ ଭଡ଼ା ଦିଆଇ ଦେଲେ । ତା'ପର ଦିନ ସକାଳେ ସଜ୍ଜନ ତାଙ୍କର ଦୁଇ ବନ୍ଧୁଙ୍କୁ ଘର ଦେଖାଇବାକୁ ଆଣିଲା ବେଳେ ମସଲା ବିକ୍ରେତା ଘର ଫିଟେଇବାକୁ ମନା କରିଦେଲା, ସେ କହିଲା ପରିବାର ଧରି ରହୁଥିବା ଲୋକକୁ ଏ ଘର କେବଳ ଭଡ଼ା ଦିଆ ହେବ, ସଜ୍ଜନ ରାଗିଗଲା, ତା ବନ୍ଧୁଦ୍ୱୟ କର୍ଣ୍ଣେଲ ସାହେବ ଓ ମହାପାଲ ମଧ୍ୟ ସେ ଆଡ଼େ ମିସ୍ତ୍ରୀ ମହାଶୟ ଦେଠେଇଙ୍କ ପାଖକୁ ଯାଇ ତାଙ୍କ ରାଗ ବଢ଼ାଇ ଦେଲେ । ବିଷ୍ଣୁ ସହସ୍ର ନାମ ଛାଡ଼ି ମସଲା ବାଲା ଉପରେ ଗାଳି ବର୍ଷଣ କରୁ କରୁ ବାହାରକୁ ଆସିଲେ । ବାଧ୍ୟ ହୋଇ ମସଲା ବିକ୍ରେତା ଉପର ଘର ଛାଡ଼ି ଦେଲା ।

ଏପରି ପରିବେଶରେ ଏହି ସମ୍ଭ୍ରାନ୍ତ ଭଡ଼ାଟିଆଙ୍କୁ ନେଇ ନାନା ପ୍ରକାର ଚର୍ଚ୍ଚା । ସ୍ୱଭାବିକ, ସେହି ସାହିରେ କେତେକ ଲୋକ ସଜ୍ଜନର ଖ୍ୟାତି ବିଷୟରେ ଅବଗତ ଥିଲେ, ଭଭୂତି ବଣିଆର ସାନ ପୁଅ ଶଙ୍କର ଲାଲ୍ ଏବଂ ତା ନେତୃତ୍ୱରେ ସାହିର ଦୁଇଜଣ ଯୁବକ ତା ସହିତ ଦେଖା କରିବାକୁ ଆସିଲେ, ସେମାନେ ଶିଳ୍ପି ସଜ୍ଜନର ମହାନ୍ ଉଦ୍ଦେଶ୍ୟ ବିଷୟରେ ପ୍ରଚାର କରିବାକୁ ଲାଗିପଡ଼ିଲେ ।

ସାଧାରଣ ଜୀବନର ଚିତ୍ର ଆଙ୍କିବାକୁ ଚାହୁଁଥିବା ଶିଳ୍ପୀଙ୍କର ଉଦ୍ଦେଶ୍ୟକୁ ଏପରି ଭାବରେ ପ୍ରଚାର କଲେ ଯେ ତାହା ଏକ ବିରାଟ ଆକାର ଧାରଣ କଲା । ମସଲା ବାଲା ଏବଂ ସାହିର ଅନ୍ୟ ଲୋକମାନେ କହିଲେ ଯେ ସାହିର ଅନ୍ୟ କୋଠି ଝିଅମାନଙ୍କ ଚିତ୍ର ଆଙ୍କିବାର ପ୍ରଲୋଭନ ଦେଖାଇ ଫୁସୁଲାଇବାହିଁ ଚିତ୍ରକର ଓ ତାର ସାଙ୍ଗମାନଙ୍କର କାମ । ମସଲା ବାଲା ଏବଂ ଅନ୍ୟ ଦୁଇଚାରି ଜଣଙ୍କର ଦସ୍ତଖତରେ ସହରର ଦୈନିକ ସମ୍ବାଦପତ୍ର ମାନଙ୍କରେ ସମ୍ପାଦକଙ୍କୁ ପତ୍ର ଶିରୋନାମାରେ ଏହା ଛପା ହୋଇଗଲା । ସେମାନଙ୍କୁ ଧମକ ଦିଆ ଗଲା ଯେ ଭଦ୍ରଲୋକ ସାହି ମଝିରେ କେତେକ ଧନୀ ଯୁବକମାନଙ୍କ ଏପରି ଆଡ୍ଡା ଯଦି ନ ଭାଙ୍ଗିବ ତେବେ ଆମ୍ଭେମାନେ ଅନଶନ କରିବୁ । ସଜ୍ଜନ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ନିଜର ପରିସ୍ଥିତିକୁ ସ୍ପଷ୍ଟକରି ସେ ନିଜର ବକ୍ତବ୍ୟ ଖବର କାଗଜ ମାନଙ୍କରେ ପ୍ରକାଶ କଲା । ସାହି ଲୋକଙ୍କ ମନରେ ବିଶ୍ୱାସ ଜନ୍ମେଇବା ପାଇଁ ନାନା ଉପାୟ ଚିନ୍ତା କଲା । ମିଥ୍ୟାକୁ ମାନିନେଇ ହାର ମାନିଯିବା ତାର ପ୍ରକୃତି ବିରୁଦ୍ଧ ତେଣୁ ସାହି ଲୋକଙ୍କର ମନ କିଣିବା ପାଇଁ ସେ ପ୍ରାଣପଣେ ଚେଷ୍ଟା କଲା ।

ସନ୍ଧ୍ୟା ହୋଇ ଯାଇଥିଲା । ସଜ୍ଜନର ସିଗାରେଟ ସରିଯିବାରୁ ବଜାରରୁ ଆଣିବା ପାଇଁ ତଳକୁ ଓହ୍ଲାଇ ଆସି ଦେଖିଲା—ରାଜା ବାହାଦୁର ଠିଆ ହୋଇଛନ୍ତି । ସେ ଦୁଇଟି ପରସ୍ପର ବିରୋଧି କାର୍ଯ୍ୟ ତଥା ଏକ ପାଖରେ ଏ କଦର୍ଯ୍ୟ ଗଳି ଓ ଅନ୍ୟ ପାଖରେ ବୈଭବଶାଳୀ ରାଜା ବାହାଦୁରଙ୍କୁ ଦେଖି ହତ୍ଭମ୍ବ ହୋଇ ଗଲା । ଯଦିଓ ସେ, ଦେଠେଇ, ରାଜା ବାହାଦୂର ଏବଂ ଏହି ଗଳିର ସମ୍ପର୍କକୁ ବେଶ ଭଲଭାବରେ ଜାଣିଥିଲା ।

"ଆରେ ଆପଣ ?" ତାଙ୍କୁ ଦେଖି ସଜ୍ଜନ ହଠାତ୍ କହି ପକାଇଲେ, ରାଜା ବାହାଦୂର ଶାହ ନଜଫ୍‌ରୋଡ଼୍‌ରେ ତାର ପ୍ରତିବେଶୀ ଥିଲେ । ଦୁଇଘର ମଧ୍ୟରେ ଆଜି ମଧ୍ୟ ସ୍ନେହ ସମ୍ପର୍କ ରହିଛି । ସଜ୍ଜନ ତାଙ୍କୁ ସାନବାପା ବୋଲି ଡାକେ, କାରଣ ରାଜା ବାହାଦୂର ତାର ସ୍ୱର୍ଗୀୟ ବାପାଙ୍କୁ ଭାଇ ସାହେବ ବୋଲି ଡାକୁଥିଲେ ।

ଦ୍ୱାରକାଦାସ ତାଙ୍କୁ ଦେଖି ଟିକେ ଶଙ୍କିଗଲେ । ସେ ତାଙ୍କର ଜାଣିଥିବା ସ୍ତ୍ରୀ ପାଖରେ ନାତିର ଜୀବନ ଭିକ୍ଷା କରିବାକୁ ଆସିଥିଲେ । ସକାଳେ ତାର ନିର୍ବନ୍ଧ ନିମନ୍ତ୍ରଣ ଦେଠେଇଙ୍କୁ ଦେବାପାଇଁ ଗୋଟିଏ ଚାକର ତାଙ୍କ କୋଠିରୁ ଆସିଥିଲା । ଦେଠେଇ ମିଠେଇତ ଫେରାଇ ଦେଲେ ତା'ଛଡ଼ା ସଉତୁଣୀର ନାତିକୁ ମନଇଚ୍ଛା ଯୋଧାବନ୍ଧା କଲେ । ଦିନ ଥାଉ ଥାଉ ସେହି ନାତିକୁ ଜୋରରେ ଜର ହେଲା । ସମସ୍ତେ ସନ୍ଦେହ କଲେ ଯେ ଦେଠେଇ କିଛି ଗୁଣୀ ମନ୍ତ୍ର କରି ଦେଇଛନ୍ତି । ବୃଦ୍ଧ କଣ୍ଠରେ କିଛି କହି ନ ପାରି ସେ ଆଗକୁ ପାହୁଣ୍ଡେ ପାଦ ପକାଇ ସଜ୍ଜନ କାନ୍ଧରେ ହାତ ପକାଇ ଏପରି ଚାପଦେଲେ ଯେ ମନେ ହେଲା ଧରା ପଡ଼ିଥିବା ଅପରାଧି ସତେକି ଦୟା ଏବଂ ସହାନୁଭୂତି ଭିକ୍ଷା କରୁଛି । କିନ୍ତୁ ପୁଣି ହଠାତ୍ ନିଜକୁ ସଞ୍ଜତ କରି ସେ ପଚାରିଲେ ତୁମେ ଏଠାରେ କିପରି ?" ଆଜ୍ଞା, ମୁଁ ଆଜିକାଲି ଏଇଠି ଏଇ ଉପର କୋଠରିରେ କାମ କରୁଛି । ବସ୍ତି ଜୀବନ ସମ୍ବନ୍ଧରେ ଗବେଷଣା କରୁଛି ।

ତୁମେ ଜାଣିଛ, ଏହି ଘରଟି ମୋର ପୂର୍ବପୁରୁଷଙ୍କର ?

ଆଜ୍ଞା ହଁ, ଏଠାକୁ ଆସିବା ପରେ ପରେ ମୁଁ ଜାଣିଲି । ମୁଁ ତ ନିଜେ ଆପଣଙ୍କ ସାହାଯ୍ୟ ନେବାପାଇଁ ଯାଇଥାଆନ୍ତି । ଏ ଗାଇର ଲୋକେ ମିଛ ଅପବାଦରେ ମତେ ସମ୍ପୃକ୍ତ କରି ହଇରାଣ କରୁଛନ୍ତି ।" ସାହାଯ୍ୟ ପ୍ରାର୍ଥୀ ସଜ୍ଜନ ଜରିଆରେ ସାହାସ ବାନ୍ଧି ରାଜା ବାହାଦୁର ପତ୍ନୀଙ୍କ ଦୁଆର ମୁହଁ ଶିକୁଳି ଖଡ଼ଖଡ଼ କରିବା ପାଇଁ ଆଗେଇଲେ । କିଏ ଏ ସତ୍ୟାନାଶିଆ ? କିଏ ଖଡ଼୍ଖଡ଼୍ କରୁଛି ? ଭିତରୁ ଦେଠେଇଙ୍କ ବିରକ୍ତ ମିଶ୍ରିତ ସ୍ୱର ଶୁଣାଗଲା ।

"କବାଟ ଖୋଲ" ଦ୍ୱାରକା ଦାସଙ୍କର ସହଜ ଆଭିଜାତ୍ୟ ପୂର୍ଣ୍ଣ ଗମ୍ଭୀର ସ୍ୱର ପରିବେଶକୁ ସହଜ କରିବାର ଚେଷ୍ଟାକଲା ।

ଦେଠେଇ ପାଟି କରୁ କରୁ ଆସିଲେ । ଶିକୁଳି ଖୋଲିଲେ । ସାମନାରେ ସ୍ୱାମୀଙ୍କୁ ଦେଖି ଚୁପ ହୋଇଗଲେ । ପ୍ରାୟ ଚଉଦ ବର୍ଷ ପରେ ସ୍ୱାମୀ ସ୍ତ୍ରୀ ପରସ୍ପରକୁ ଏତେ ନିକଟରେ ଦେଖୁଥିଲେ । ପତ୍ନୀଙ୍କୁ ଦେଖି ଦ୍ୱାରକା ଦାସଙ୍କ ମନରେ ମମତା ସୃଷ୍ଟି ହେଲନାହିଁ ବରଂ ଭୟ ଆସିଲା । କିଛି କଥା ଆରମ୍ଭ କରିବା ପାଇଁ ସେ କହିଲ, ଏହି ପିଲାଟିକୁ ଜାଣିଛ ? କନୋ ମଲଙ୍କର ନାତି ।

ହୋଇଥିବ । ମୁଁ କ'ଣ କରିବି ? ଏହା କହି ଦେଠେଇ ଭିତରକୁ ଚାଲିଗଲେ । ଦ୍ୱାରକା ଦାସ ତାଙ୍କ ପଛେ ପଛେ ଚାଲିଲେ । ସଜ୍ଜନ ମଧ୍ୟ କିଛି ନ ଭାବି ତାଙ୍କରି ପଛେ ପଛେ ଚାଲିଲା ।

ସନ୍ତସନ୍ତିଆ ଓ୍ବାଟ ବାରଣ୍ଡା, ସାମନା ଅଗଣାରେ ଲଣ୍ଠନ ଓ କିଛି ଜିନିଷ ରଖାହୋଇଛି । ଡାହାଣ ପାଖ ବାରଣ୍ଡାରେ ଚୁଲିରୁ ନିଆଁ ଧୂଆଁ ଦେଖାଯାଉଛି ।

ଲଣ୍ଠନ ଆଲୁଅ ପାଖ ଦେଇ ଯିବାବେଳେ ଥାଳିରେ ଅଟା ପିତୁଳାଟିଏ ଦେଖି ସାପଟିଏ ଦେଖିଲାପରି ଦ୍ୱାରକା ଦାସ ଚମକି ପଡ଼ିଲେ । ଦେଠେଇ ଥାଳି ଉଠାଇ ସାମନା ବାରଣ୍ଡାରେ ଖୁଣ୍ଟିମୂଳେ ରଖିଦେଲେ, ପୁଣି ଅଗଣାରୁ ଲଣ୍ଠନ ଉଠାଇ ବାରଣ୍ଡାକୁ ନେଇ ଆସିଲେ । ରାଜା ବାହାଦୁର ନିଜ ସୌଭାଗ୍ୟ ବର୍ତ୍ତାଙ୍କର ଝୁଲ ଖଟ ଉପରେ ପଡ଼ିଥିବା ମଇଳା ଓ ଚିକଟା ବିଛଣା ଉପରେ ବଡ଼ ସନ୍ତର୍ପଣରେ ବସିପଡ଼ିଲେ । ସଜ୍ଜନ ତାଙ୍କ ଲାଗି ଖଟଗୋଡ଼ ଆଡ଼କୁ ବସିଲା । ଦେଠେଇ ଖଟ ପାଖରୁ ଘୁଞ୍ଚି ତଳେ ବସୁ ବସୁ ସ୍ୱାମୀଙ୍କୁ ପଚାରିଲେ 'କାହିଁକି ଆସିଛ ? ଦ୍ୱାରକା ଦାସ ମିଥ୍ୟା ହସର ଛଳନା କରି ଉତ୍ତର ଦେଲେ, ତୁମ ସହିତ ଦେଖା କରିବାକୁ ଚାଲିଆସିଲି । ଏଠାରେ ଜାନକୀ ଶରଣଙ୍କ ଥାଳିରେ ଥିବା ଅଟା ପିତୁଳା ସଜ୍ଜନକୁ ବଡ଼ ଆକୃଷ୍ଟ କରୁଥିଲା । ଦେଠେଇ ମଧ୍ୟ ଜଣେ କଳାକାର ଏହା ଭାବି ଆଶ୍ଚର୍ଯ୍ୟ ଓ ପ୍ରଶଂସାଭରା ଅନୁଭୂତିରେ ସଜ୍ଜନ ପିତୁଳାଟିକୁ ହାତରେ ଧରି ଦେଖିବାକୁ ଉଦ୍ୟତ ହେଲେ ।

ଦେଠେଇ ରାଗରେ ଜଳିଗଲେ । ଦ୍ୱାରକା ଦାସଙ୍କ କଥା ଯେଉଁଠି ଥିଲା ସେଇଠି ଅଟକିଗଲା । ସଜ୍ଜନ ଏଭଳି କଦର୍ଯ୍ୟ ଗାଳି ଶୁଣିବାରେ ଅଭ୍ୟସ୍ତ ନ ଥିଲା । ଦ୍ୱାରକା ଦାସ ତାଙ୍କୁ ବୁଝାଇବା ଉଦ୍ଦେଶ୍ୟରେ କିଛି କହିବାକୁ ଚେଷ୍ଟାକରି ବି କିଛି କହିପାରିଲେ ନାହିଁ ।

ସଜ୍ଜନ ଏମିତି ଚଣ୍ଡୀ ସ୍ତ୍ରୀ ଏବଂ ନମ୍ର ସ୍ୱାମୀଙ୍କ ମଧ୍ୟରୁ ଖୁବ୍ ଶୀଘ୍ର ଚାଲିଗଲା ।

ଦ୍ୱାରକା ଦାସ ଅଟକି ରହିଲେ । ସେ ନିଜ ପତ୍ନୀଠାରୁ ପରିଚୟ ଓ ନାତିର ପ୍ରାଣ ରକ୍ଷା ପାଇଁ ବର ମାଗିବାକୁ ଆସିଥିଲେ । ଅଟା ପିତୁଳାଟି ଦେଠେଇଙ୍କର ଅମାନୁଂଷୀ ପ୍ରାଣ ହନ୍ତା ଶକ୍ତିର ପ୍ରତୀକ ହୋଇ ଗଭର୍ଣ୍ଣର, ହାକିମ ଏବଂ ବଡ଼ ବଡ଼ ଲୋକଙ୍କ ଦ୍ୱାରା ସମ୍ମାନିତ, ହଁ। ହଜୁର ହୋଇ ସମସ୍ତଙ୍କ ଶୀର୍ଷ ଦେଶରେ ବସିବା ବ୍ୟକ୍ତିଙ୍କୁ ବିକଳ ହୋଇ ଭିକ୍ଷା ମାଗିବାକୁ ବାଧ୍ୟ କରୁଥିଲା ।

ବଜାରରୁ ସିଗାରେଟ୍ କିଣି ସଜ୍ଜନ ନିଜ ଘରେ ପଶି ଦେଖେତ କର୍ଣ୍ଣେଲ ସାହେବ ଓ ମହିପାଳ ବସିଛନ୍ତି । ଶ୍ରୀ ନବୀନଚନ୍ଦ୍ର କର୍ଣ୍ଣେଲ ସାହେବ ନାମରେ

ପ୍ରସିଦ୍ଧ । ସେ ଲକ୍ଷ୍ନୌର ଗୋଟିଏ ପୁରୁଣା ଓ ନାମଯାଦା ବିଦେଶୀ ଔଷଧ ଦୋକାନର ମାଲିକ । ସମାଜ ହିତକର କାର୍ଯ୍ୟରେ ସେ ମନ ଖୋଲି ଟଙ୍କା ପଇସା ଗୁନ୍ଦା ଦେବାରେ ସହରରେ ବିଶେଷ ରୂପରେ ଖ୍ୟାତି ଲାଭ କରିଛନ୍ତି । ଛ, ସାତ ବର୍ଷ ପୂର୍ବରୁ ମହିପାଲ ଶୁକ୍ଳଙ୍କ ଲାଗିହିଁ ସଜ୍ଜନ ସହିତ ତାଙ୍କର ପରିଚୟ ହେଲା । ଏହି ପରିଚୟ ବର୍ତ୍ତମାନ ଘନିଷ୍ଠ ବନ୍ଧୁତାରେ ପରିଣତ ହୋଇଛି । ସଜ୍ଜନ, କର୍ଣ୍ଣେଲ ଓ ମହିପାଲ ବର୍ତ୍ତମାନ ଅଭିନ୍ନ ହୃଦୟ ଲେଖକ ମହିପାଲ ଏମାନଙ୍କ ଅପେକ୍ଷା ଅଧିକ ଗରିବ ହେଲେହେଁ ବଡ଼ ପରିଶ୍ରମି, ସଚ୍ଚୋଟ ଏବଂ ବନ୍ଧୁପ୍ରେମୀ ।

ସଜ୍ଜନ ପହଞ୍ଚିବା ମାତ୍ରେ କର୍ଣ୍ଣେଲ ପଚାରିଲେ ତୁମର ମହାକବି ବୋରଙ୍କର ସହି ଦେଖା ହୋଇଛି ?

"ନା ସେ କ'ଣ ଏଠାକୁ ଆସିଥିଲେ ?"

"ହିଁ ମୁଁ ତାଙ୍କୁ ସ୍ନାଡ଼ୁସିଆଡ଼ୁ କହି ବିଦା କରିଦେଲି ।"

'ଶାଳା ଏଠାକୁ ମଧ ନିଜ ଗୁଣ ପ୍ରକାଶ କରିବାକୁ ଚାଲିଆସୁଛନ୍ତି ।"

ମହିପାଲ କହିଲି "ଏଇ ଶାଇ ଲୋକମାନେ ତୁମ ବିରୁଦ୍ଧରେ ଖବର କାଗଜରେ ନାନା ଅଭିଯୋଗ ଛପାଇ ଯାହା ଷଡ଼ିତ କଲେ କଲେ, କିନ୍ତୁ ଏହି ସିନେଟ ଆଡ୍‌ଡ଼ାକୁ ଯେ ପଦାରେ ପକାଇଦେଲେ । ଭାରି ଖରାପ ହେଲା । କବି ମହାଶୟ ବଡ଼ ମୁଶ୍‌କିଲ୍‌ରେ ଏଠାରୁ ଯାଇଛନ୍ତି ।

ସିଗାରେଟ ଲଗାଇ ଗରମ ଚାଦର ଖଣ୍ଡିଏ ଦେହରେ ଭଲଭାବରେ ଘୋଡ଼ାଇ ସଜ୍ଜନ ନୀରବରେ ବସିପଡ଼ିଲା । କର୍ଣ୍ଣେଲ ତା ଆଡ଼କୁ ନୟନରେ ଚାହିଁ କହିଲି—କଓ ? ଆଜି କ'ଣ ପୁଣି କିଛି ନୂଆକଥା ଘଟିଛି କି ? ନା ସେମିତି କିଛି ନାହିଁ । ଦ୍ଵାରକା ଦାସ ଏଠାକୁ ଆସିଛନ୍ତି ।" ଦ୍ଵାରକା ଦାସଜୀ ? ରାଜା ବାହାଦୁର୍ ହିଁ, ବର୍ତ୍ତମାନ ନିଜର ପାଟରାଣୀଙ୍କ ଉଆସରେ ଅଛନ୍ତି । ବାବା ଏ ସ୍ତ୍ରୀ ଲୋକ ବଡ଼ ବିଚିତ୍ର ପ୍ରକୃତିର । ପୁଣି ମନ୍ଦ କରି ପିତୁଲା ତିଆରି କରୁଛି ।

ଅଳ୍ପ ସମୟ ଆଗରୁ ଘଟିଥିବା ସବୁ ଘଟଣା ସଜ୍ଜନ ତାଙ୍କୁ ଶୁଣାଇ ଦେଲା । କର୍ଣ୍ଣେଲ ବଡ଼ ବ୍ୟସ୍ତହୋଇ ପଡ଼ିଲେ । ତୁମେ ସେହି ପିତୁଳାଟି ଛୁଇଁ ଭଲ କଲନାହିଁ ।

"ମୁଁ କ'ଣ ଜାଣିଥିଲି, ମୁଁ ଭାବିଲି ଦେଠେଇ ଏକୁଟିଆଟା ହୋଇ ଏହିପରି ମନୋରଞ୍ଜନ କରୁଛନ୍ତି । ତୁମେ ବିଶ୍ଵାସ କର ମହିପାଲ, ମୁଁ ଭାରି ଖୁସି ହୋଇଗଲି,

କଲୁ—"ସଜ୍ଜନ ହସିବାକୁ ଲାଗିଲା ଆଷ୍ଟ୍ରେଆଡ଼କୁ ହାତ ବଢ଼ାଇ ସିଗାରେଟ ଝାଡ଼ୁ ଝାଡ଼ୁ କହିଲା—ମୁଁ ମୋର ବଡ଼ ପଣରେ ଏପରି ଟ୍ରାଡ଼ିଶ୍‌ନାଲ ଇଣ୍ଡିଆନ ଷ୍ଟାଇଲରେ ସିଧାସଳଖ ଗାଳି ଶୁଣିଲି ଯେ କ'ଣ କହିବ ।"

ଛାତ ଉପରେ କାହାର ଛାଇ ପଡ଼ିବାର ଜଣାଗଲା । ସଜ୍ଜନ ସେ ଆଡ଼କୁ ଚାହିଁଲା । ରାଜା ବାହାଦୁର ଦ୍ୱାରକା ଦାସ ଦୁଆର ମୁହଁରେ ଠିଆ ହୋଇଥିଲେ ।

ସଜ୍ଜନ ଭଦ୍ର ଭାବରେ ଠିଆ ହୋଇଗଲା । କର୍ଣ୍ଣେଲ ସାହେବ ବିନମ୍ରତା ସହକାରେ ହାତ ଯୋଡ଼ିଲେ । ମହିପାଲ ସେହିପରି ବସିରହିଲା ।

ରାଜା ବାହାଦୁର କାହାରିକୁ ଚାହିଁଲେ ନାହିଁ କେବଳ ହାତରେ ଠାରି ସଜ୍ଜନକୁ ପାଖକୁ ଡାକିଲେ—ଏଠାକୁ ଆସ ।

ସଜ୍ଜନ ସାଙ୍ଗେ ସାଙ୍ଗେ ଉଠି ବାହାରକୁ ଆସିଲା, ତା' କାନ୍ଧ ଉପରେ ହାତ ରଖି ପାହାଚ ଆଡ଼କୁ ଯାଉ ଯାଉ ଦ୍ୱାରକା ଦାସ କହିଲେ "ଆଜିର କଥା ଗୁଡ଼ାକ କାହାରି ଆଗରେ କହିବ ନାହିଁ ।"

"ଆଜ୍ଞା କେବେ ନୁହେଁ, ଆପଣ ବିଶ୍ୱାସ ରଖନ୍ତୁ ।"

"ତାଙ୍କର ମୁଣ୍ଡ ଟିକିଏ ଖରାପ ଅଛି ।"

"ଆଜ୍ଞା , ମୁଁ ଜାଣିଛି ।"

"କ'ଣ କହିବ । ସବୁ ଭାଗ୍ୟ ଦୋଷ ।" ଯାହାହେଉ, ତୁମେ କାହାରିକୁ କିଛି କହିବ ନାହିଁ । ନିଜର ଅତି ଅନ୍ତରଙ୍ଗ ବନ୍ଧୁମାନଙ୍କୁ ମଧ୍ୟ—ମୁଁ ଲାଲା ଜାନକୀ ଶରଣଙ୍କୁ କହିଦେଇ ଯାଉଛି ଯେ ଏଠାରେ ଯେପରି ତୁମର କୌଣସି ଅସୁବିଧା ନ ହୁଏ ।

ସଜ୍ଜନ ତାଙ୍କୁ ରାସ୍ତା ଛକଯାଏ ଛାଡ଼ିବାକୁ ଗଲା । ଦ୍ୱାରକା ଦାସଙ୍କର ଦର୍ପ ପୂର୍ଣ୍ଣ ମୁଖମଣ୍ଡଳରେ ଚିନ୍ତା ଓ କ୍ଳାନ୍ତିର କାଳିମା ଛାଇଥିଲା । ଫେରୁ ଫେରୁ ସଜ୍ଜନ ଭାବିଲା, ଏମାନେ କ'ଣ ସୁଖୀ ?



# ଚାରି

ନନ୍ଦୋ, ଲଲେ ଦାଲାଲ୍ ଏବଂ ତାର ସ୍ତ୍ରୀକୁ ମାରିବା ପାଇଁ ଦେଠେଇଙ୍କ ଦ୍ୱାରା ଗୁଣୀ ସାଧିଥିଲା । ଛ' ବର୍ଷ ପୂର୍ବେ ମଣିଆର ବିବାହ ପାଇଁ ଆୟୋଜନ ହେବା ସମୟରେ ଭଲୁଡ଼ ବଣିଆ ଘରୁ ଗହଣା ଚୋରି ହୋଇଥିଲା । ସୁନାର ଅଣ୍ଟାସୂତା, ତାବିଜ, ହାର, ମାଳିସବୁ ପାଲିଶ୍ ଓ ମରାମତି କରିବା ପାଇଁ ମା ସବୁ କାଢ଼ି ଅଲଗା ଡବାରେ ରଖିଥିଲା । ରାତାରାତି ଡବାଟି କେଉଁଆଡ଼େ ଉଭେଇଗଲା । ତା' ପରଦିନ ସକାଳୁ ଚାକରଟି କେଉଁଆଡ଼େ ଉଭାନ୍ । ଫାଟକର ଶିକୁଳି ଖୋଲା । ତେଣୁ ସବୁ ଦୋଷ ତାହାର ଉପରେ ଲଦା ହୋଇଗଲା । ବ୍ୟବସାୟ ଦୃଷ୍ଟିରୁ ଭଲୁଡ଼ ବଣିଆ ଏ ବିଷୟରେ ପୋଲିସ୍‌ରେ ଇତଲା ଦେଲାନାହିଁ । ମା' ହାୟ ହାୟ କରି ରହିଲେ । ଚୋରି କରାଯାଇଥିବା ଅଣ୍ଟାସୂତା ଚାକର ସହିତ ସମ୍ପୃକ୍ତ ନନ୍ଦୋ, ଭାଗରେ ପଡ଼ିଲା । ସେ ସମୟରେ ଲଲେ ଦାଲାଲ୍‌ର ସ୍ତ୍ରୀ ସହିତ ତାର ଭଲ ପଡ଼ୁଥିଲା । ନନ୍ଦୋ ତାଙ୍କୁ ହିଁ ଏ ଅଣ୍ଟାସୂତାଟା ବିକ୍ରୀ କରିବାକୁ ଦେଇଥିଲା । ଏଣୁ ତେଣୁ ବାହାନାରେ ଏତେ ବର୍ଷ ବିତିଗଲା, ନନ୍ଦୋ ହାତକୁ କାଣି କଉଡ଼ିଟାଏ ମଧ୍ୟ ଆସିଲା ନାହିଁ, ସେ ତାଙ୍କ ସହିତ ଖୋଲା ଖୋଲି ଭାବରେ ମଧ୍ୟ ଝଗଡ଼ା କରିପାରୁ ନଥିଲା । ଚାରି ପାଞ୍ଚ ଦିନ ପୂର୍ବେ ଗୋମତୀ ନଦୀ କୂଳରେ ସକାଳୁ ଦୁହିଁଙ୍କ ଭିତରେ ଝଗଡ଼ା ହୋଇଗଲା । ଲଲେର ବୋହୁ ଘାଟରେ ସବୁ ସ୍ତ୍ରୀ ଲୋକଙ୍କ ସାମନାରେ ନନ୍ଦୋକୁ ଚୋରଣୀ, ଚଣ୍ଡାଳୁଣୀ କହି ତା' ଘରର ପୁରୁଣା ଚୋରିର ସବୁ ରହସ୍ୟ ପ୍ରକଟ କରିଦେଲା । କିନ୍ତୁ ନନ୍ଦୋ ତାଙ୍କୁ ଓଲଟି ତାଙ୍କ ଚୋରି ବିଷୟରେ ପ୍ରକାଶ୍ୟରେ ଦୋଷୀ କରି ପାରିଲା ନାହିଁ । ନନ୍ଦୋର ଶତ୍ରୁକୁ ମାରିବା ପାଇଁ ଦେଠେଇ ପିତୁଳା ଗଢ଼ିଥିଲେ, ଯେଉଁ ପିତୁଳାକୁ ଦ୍ୱାରକା ଦାସ ଓ ସଜ୍ଜନ ଦେଖି ନେଇଥିଲେ ।

ଦ୍ୱାରକା ଦାସଙ୍କ ଯିବା ପରେ ପରେ ଦେଠେଇ ପୁଣି ପିତୁଳା ଗଢ଼ିବାରେ ମନ ଦେଲେ । ନନ୍ଦୋ ଦେଠେଇଙ୍କର ଉପର ମହଲାର ସିଡ଼ି ପାହାଚ ଉପରେ ଲୁଚି ସ୍ୱାମୀ ସ୍ତ୍ରୀଙ୍କର କଥାବାର୍ତ୍ତା ଶୁଣୁଥିଲା, ଦ୍ୱାରକା ଦାସଙ୍କ ଯିବା ପରେ କିଛି ନ ଜାଣିଲା ପରି ଆସିଲା, ସତେକି ସେ ଏଇକ୍ଷଣି ଘରୁ ଆସିଛି । ଦେଠେଇ ଦ୍ୱାରକା ଦାସଙ୍କ ଖୋସାମଦରେ ନିଜକୁ ବିଜୟିନୀ ବୋଲି ଭାବିଲେ ଓ ଖୁବ୍ ସନ୍ତୁଷ୍ଟ ଓ ପ୍ରସନ୍ନ ଥିଲେ । ଏହି ପ୍ରସନ୍ନତାର ଆବେଗରେ ସେ ହିଂସାତ୍ମକ କାର୍ଯ୍ୟରେ ଅଧିକ ମନଦେଲେ । ଦେଠେଇ ଅଧିକ ଉତ୍ସାହିତ ହୋଇ ନନ୍ଦୋର କାର୍ଯ୍ୟ ଶିଘ୍ର ସମାପନ କରିବାକୁ ଚାହିଁଲେ । ଲଲେ ଓ ତା'ର ସ୍ତ୍ରୀର ମାର୍କ ସିଙ୍କି କଲା । ମିଷ୍ଟର ଓ ମିସେସ୍ ବର୍ମାଙ୍କ ଭିତରେ କଳି ମଞ୍ଜି ବୁଣିବା ପାଇଁ ସେ ବାଟ ଖୋଜିବସିଲେ । ଲଲ୍

ଜାନକୀ ଶରଣଙ୍କର ଏତିକି ମାତ୍ର ଦୋଷ ଯେ ଆଜି ସନ୍ଧ୍ୟାରେ ଦ୍ୱାରିକା ଦାସ ତାଙ୍କ ଘରକୁ ଆସିଥିଲେ । ଲାଲା ଜାନକୀ ଶରଣଙ୍କ ଘରେ ରୋଗ ବ୍ୟାଧି ସୃଷ୍ଟି କରିବା ଉଦ୍ଦେଶ୍ୟରେ ତାଙ୍କ ଦୁଆର ବନ୍ଧରେ ଛିଟା ହେବାପାଇଁ କଳା ରସି ପୁଡ଼ିଆ ବାନ୍ଧିଲେ ଓ ସଜ୍ଜନର ଅପରାଧର ଦଣ୍ଡ ପାଇଁ ସଜ୍ଜନର ପିତୁଳା ମଧ୍ୟ ତିଆରି କଲେ । ପେଶାଦାର ହତ୍ୟାକାରୀ ପରି ଜଣ ଜଣଙ୍କ ପାଇଁ ଆସୁରିକ କ୍ରିୟା କଳାପରେ ସେ ଅପ୍ରତିରୁଦ୍ଧ ଆନନ୍ଦ ପାଉଥିଲେ ।

ନନ୍ଦୋ ଦ୍ୱାରା ସମସ୍ତଙ୍କର ବ୍ୟବସ୍ଥା କରାଇ ତାଙ୍କୁ ବିଦାକଲେ ଓ ନିଜେ ଗାଧୁଆ ପାଧୁଆ ସାରି ଶୋଇବାକୁ ଗଲାବେଳେ ଥାନା ଘଣ୍ଟା ଢଂ ଢଂ କରି ବାରଥର ବାଜିଉଠିଲା ।

ବଡ଼ କଷ୍ଟରେ ଘଣ୍ଟାଏ କି ଦେଢ଼ଘଣ୍ଟା ଶୋଇଥିବେକି ନାହିଁ ଦୁଇଟି ବିରାଡ଼ି କଳି କରି ତାଙ୍କର ନିଦରେ ବ୍ୟାଘାତ ସୃଷ୍ଟି କଲେ । ଦୁଇହଳ ଆଖି ଅନ୍ଧାରରେ ଚକ୍‌ଚକ୍ ହୋଇ ଦେଠେଇଙ୍କୁ ଡରାଇଲା । ବିରାଡ଼ି ଦୁହେଁ ପରସ୍ପର ପ୍ରତି ଫୁଁ ଫୁଁ ହେଉଥାନ୍ତି । ପ୍ରତିହିଂସାରେ ଘୁଂ ଘୁଂ ହେଉଥିବା କ୍ରୋଧ ତୀବ୍ର ଆକ୍ରମଣରେ ପରିଣତ ହେଲା । ଦେଠେଇଙ୍କର ଗୁଣିଗାରେଡ଼ି ଭରା ଆଖି ଦୁଇଟିରେ ଭୟର ସଂକୋଚ । ଏହି ଶୀତ ଭିତରେ ତାଙ୍କୁ ବିରାଡ଼ି ଦୁହିଙ୍କର ଆକାର କମ୍ ବେଶି ଜଣାଗଲା । ବେଳେବେଳେ କଳି କରୁଥିବା ବିଲେଇ ଦୁହିଙ୍କର ମୁହଁ ତାଙ୍କ ଆଡ଼କୁ ବୁଲିଗଲେ ତାଙ୍କ ଆଖିର ଚମକ ବୁଦ୍ଧିମନ୍ଦିର ମଜୁରିଥିବା ଛୁଞ୍ଚିପରି ତାଙ୍କ କଲିଜା ଭିତରେ ଗଳି ଯାଉଥିଲା । ତାଙ୍କର ବୃଦ୍ଧ ବୟସର ଶିଥିଳତା ଭୟରେ ଥରି ଉଠୁଥିଲା । ହୃଦୟର ଉଷ୍ଣତା ତାଙ୍କ କଣ୍ଠକୁ ଅବରୋଧ କଲା । ଦେଠେଇଙ୍କୁ ଲାଗିଲା ଯେ ଦୁଇଟି ବିଶାଳକାୟ ହିଂସ୍ର ଜୀବ ତାଙ୍କ ସ୍ଥିତିକୁ ଅବମାନନା କରୁଛନ୍ତି । ବିରାଡ଼ି ଦୁହେଁ ପ୍ରବଳ ଯୁଦ୍ଧରେ ମାତି ଦେଠେଇଙ୍କ ଖଟ ପାଖକୁ ଚାଲି ଆସିଥିଲେ । ଭୟଙ୍କର ଘୁରୁଁ ଘୁରୁଁ ଖାଉଁ ଖାଉଁ ଶବ୍ଦରେ ଦେଠେଇଙ୍କର ହିଃ ହିଃ ହିଃ ହିଃ ଶବ୍ଦଟି ଦୀର୍ଘ ହୋଇଗଲା । ସେ ଆତ୍ମରକ୍ଷା କରିବାପାଇଁ ତକିଆ ଉଠାଇ ଜୋରରେ ବିଲେଇଙ୍କ ଉପରକୁ ଫିଙ୍ଗିଲେ—ବିଲେଇ ମାରିଲେ ସ୍ୱର୍ଗରେ କେତେ ସୁନା ବିଲେଇ ଜମା କରିବାକୁ ହେବ । ଏହି କଠୋର ଧାର୍ମିକ ନିୟମ ସେ ସେତେବେଳେ ଭୁଲି ଯାଇଥିଲେ । ବିଲେଇଙ୍କର ମହାଯୁଦ୍ଧର ଅବସାନ ଘଟିଲା । ଦେଠେଇଙ୍କ ବଜ୍ର ପ୍ରହାରରେ ସେ ଦୁହେଁ ଅଗଣା ଆଡ଼କୁ ଦୌଡ଼ିଗଲେ । ବର୍ତ୍ତମାନ ଦେଠେଇଙ୍କ ଦେହରେ ପ୍ରାଣ ଫେରି ଆସିଲା । ଖଟ ଆରପାଖେ ଆଉଜା ହୋଇଥିବା ଲାଠିକୁ ଧରି, ହାତ ଉଞ୍ଚାଇ ଫଡ୍ ଫଡ୍ କରି ଭୟାର୍ତ୍ତ ବିଲେଇପରି ଅଗଣାଆଡ଼କୁ

ଝପ୍‌ଟିଗଲେ । ଗୋଟିଏ ବିଲେଇ ସିଧା ଅଗଣାରେ ଓ ଦ୍ୱିତୀୟଟି ଏପଟ ସେପଟ ହୋଇ ସେପେଇ ଘର ବାରଣ୍ଡାରୁ ଫେରି ଉପର ଘର ପାହାଚଆଡ଼କୁ ପଳାଇଲା । ଦେଠେଇ ପାହାଚଆଡ଼କୁ ଦୌଡ଼ି ଯାଇ ଉପର ପର୍ଯ୍ୟନ୍ତ ଉଠିଗଲେ ।

ନୀରବ ନିଥର ରାତି ସତେଜ ଗଳାର କୋଳାହଳରେ ପୂର୍ଣ୍ଣ ହୋଇଗଲା । ଶୀତରେ ନିଶ୍ଚିନ୍ତରେ ଶୋଇଥିବା ଛୁଆଟି ସତେଜ ନିଦରୁ ଉଠି ଅଳସ ଭାଙ୍ଗୁଥିଲା । ନୀରବ ରାତି ସେହି ଗୋଳମାଳରେ ଏପରି ବିରକ୍ତ ହେଲା ଯେପରି ଶୀତ ଦିନର ଗରମ ରେଜେଇ ଘୋଡ଼ାଇ ହୋଇ ଶୋଇଥିଲାବେଳେ କିଏ ସେ ରେଜେଇଟାକୁ ଦେହ ଉପରୁ ହଠାତ୍ ଟାଣିନିଏ । ବକ୍‌ବକ୍ ହୋଇ ଦେଠେଇ ତଳକୁ ଓହ୍ଲାଇଲେ । ସିଢ଼ି ଘର ଝିକୁଳି ଦେଲେ । ବନାବନ୍ଧ ଓ ଧଇଁସଇଁ ହୋଇ ଦେଠେଇ ନିଜ ଶୋଇବା ବାରଣ୍ଡାରେ ପହଞ୍ଚିଲେ, ହଠାତ୍ ସେ ପାଦରେ କ'ଣ ଗୋଟିଏ ଓଦା ଲଟପଟିଆ ଜିନିଷ ମାଡ଼ି ପକାଇଲେ, ବୁଢ଼ା ଆଙ୍ଗୁଠି ତଥା ଅନ୍ୟ ଆଙ୍ଗୁଠି ଗୁଡ଼ିକ ଲଟପଟ ହୋଇଗଲା । ସେ କିପରି ଏକ ଅପକାରି ଭାବ ଅନୁଭବ କଲେ । ତୀବ୍ର ଘୃଣା ଓ ବିରକ୍ତ ଆସିଲା । କିନ୍ତୁ କେବଳ 'ଉହୁଁ' ଶବ୍ଦ ମଧ୍ୟରେ ରକ୍ତର ଶବ୍ଦ ହଠାତ୍ ଥମିଯାଇଥିଲା । ନିଜକୁ ନିଜେ ଅପରାଧୀ ମନେ କରି, କାନ୍ଧିକି ବିଲେଇ ପଛରେ ମରିଥିଲା, ଭାବି ପାଦ ଟେକି ଗୋଇଠି ସାହାଯ୍ୟରେ ଚାଲି ଚାଲି ଆସି ଖଟ ପାଖରେ ଥିବା ଲଣ୍ଠନ ପର୍ଯ୍ୟନ୍ତ ଆସିଲେ । ଲଣ୍ଠନ ତେଜି ପୁଣି ସେହିପରି ପାଦ ଟେକି ଚାଲି ଘଟଣାସ୍ଥଳ ପର୍ଯ୍ୟନ୍ତ ଆସି ଦେଖିଲେ ଯେ ଗୋଟିଏ ସଦ୍ୟଜାତ ବିଲେଇଛୁଆ । ମୁଣ୍ଡ ନ ଥିଲା ତା'ର । ଘରେ ଗର୍ଭବତୀ ବିଲେଇଟିଏ ବୁଲୁଥିବାର କଥା ମନେ ପଡ଼ିଗଲା । ଚୂଲିକି ଯାଉ ରାଣ୍ଡି, ମୁହଁ ଫିଟିଲେ ଗାଳି । ମନେପଡ଼ିଲା ବିଲେଇ ଛୁଆଟିକୁ ଭୁଆ ଖାଇଯିବାରୁ ହିଁ କଳି ଲାଗିଥିଲା ।

ଗୋଡ଼ ଟେକି ଟେକି ସେ କୁଣ୍ଡ ପର୍ଯ୍ୟନ୍ତ ଯାଇ ଗୋଡ଼ ଧୋଇଲେ । ଲଣ୍ଠନ ଧରି ଦାଅଙ୍କ ଘରକୁ ଯାଇ ପଙ୍ଖା ବାହାରକଲେ । ବିଲେଇ ଛୁଆର ଶବକୁ ପଙ୍ଖା ଉପରେ ରଖି ବାହାରକୁ ଫିଙ୍ଗିଦେବା ଉଦ୍ଦେଶ୍ୟରେ ଯାଉ ଯାଉ ଦେଠେଇଙ୍କର ହିଂସାତ୍ମକ ବୁଦ୍ଧି ଚେଇଁ ଉଠିଲା, ସିଢ଼ି ଘରୁ ନିଜର ଗୁଣୀ ମନ୍ତ୍ର ବାକ୍‌ସ ବାହାର କରି, ସେଥିରୁ କିଛି ସିନ୍ଦୁର ଓ କିଛି କଳା ରାଶି ଦେଇ ଗୁଣୀମନ୍ତ୍ର କରିବା ପାଇଁ ଅଲଗା ରଖାହୋଇଥିବା ଅଟା ଡିବାରୁ ଅଟା କାଢ଼ି ଦୀପ ତିଆରି କଲେ । ପଙ୍ଖା ଉପରେ ବିଲେଇ ଛୁଆର ମୁଣ୍ଡ କଟା ଶବ ରାଶି ଓ ସିନ୍ଦୁର ଛିଞ୍ଚି ରଖିଲେ ଓ ଦୀପ ଜଳାଇ ଦେଠେଇ ତାଙ୍କ ଡାଗ ଦୁଆର ମୁହଁରେ ରଖିଦେଇ ଆସିଲେ ।

ଘଣ୍ଟି, କେତେ ପେଟ କରି ବୁଲୁଛୁ । ଏହାପରେ ଛୁଣ୍ଟି ପଡ଼ିଯିବ । ଶବଟି ଏହାପରେ ଘରୁ ବାହାରିଗଲା ଓ ଦେଓଠେଇଙ୍କ ଦୃଷ୍ଟିକୋଣରୁ ତା'ର ସଦୁପଯୋଗ ମଧ୍ୟ ହୋଇଗଲା ।

ବାରଣ୍ଡା ଧୋଇବାବେଳେ ଦେଓଠେଇ ଦେଖିଲେ, ତାଙ୍କ ଖଟତଳେ ଛଅଟି ସଦ୍ୟଜାତ ବିଲେଇଛୁଆ ପଡ଼ିଛନ୍ତି । ସେ ରାଗରେ ଥରିଗଲେ ।

"ସତ୍ୟାନାଶିଆଗୁଡ଼ା ମତେ ଖାଲି କଲବଲ କରି ମାରୁଛନ୍ତି । କଆଁ ଲଗା ସ୍ତ୍ରୀଆଡ଼େ ଗଳାକାନ୍ଧ ବୁଲି ବୁଲି ଆଉ କୋଉଠି ମିଳିଲାନି ଯେ ଶେଷରେ ମୋର ଘରେ ପିଲା ଜନମ କରିବାକୁ ଆସିଲା । ତା' ଦେହରେ ପୋକ ପଡ଼ୁ । ଶୀତ ରାତିରେ ମତେ ଦୌଡ଼ାଇ ମାରିଲା" ହାତରେ ଝାଡ଼ୁଖଣ୍ଡି ମୁଠା ଧରି ଦେଓଠେଇ ଖଟ ଖୁରା ପାଖରେ ବସିପଡ଼ିଲେ । ଗାଳି ଦେଉ ଦେଉ ଏ ବିଲେଇଛୁଆ ଗୁଡ଼ିକୁ କେଉଁଥିରେ ଉଠେଇ ବାହାରେ ପକେଇବେ – ମୁଣ୍ଡରେ ସେହି ଚିନ୍ତା । ଡାଲାଟାଏ ଅଛି । ମନେ ପଡ଼ିଲା । ପୁଣି ଭାବିଲେ—ଏବେ ପଙ୍କାଟିଏ ନଷ୍ଟ କରିଛୁ ପୁଣି ଡାଲାଟାକୁ ଫୋପାଡ଼ିବାକୁ ପଡ଼ିବ । ଲୁଗାତ ଯେମିତିହେଲେ ଧୂଆହେବ, ଏହା ଭାବି ଦେଓଠେଇ ଛଅୋଟିଯାକ ଛୁଆକୁ ଅଣ୍ଟିରେ ପୁରାଇଦେଲେ । ଓଦା ହାତରେ ଧରିବାରୁ ଛୁଆଗୁଡ଼ାକ କୁଂ କୁଂ ହେଲେ । ଛଅଥରଯାକ ସେ ସେହି ସ୍ପର୍ଶ ଅନୁଭବ କଲା । ଶୀତରେ ଜାକିଯୁକି ଆଖି ନ ଫିଟିଥିବା ଛଅୋଟି ଛୁଆଙ୍କ ଅଣ୍ଟି ଭିତରେ ତାଙ୍କ ପେଟକୁ ଲାଗିଗଲେ । ଛଅୋଟି ଜୀବନ୍ତ ବିଲେଇଛୁଆ ତାଙ୍କ ପେଟ ପାଖରେ ସୁଲୁ ସୁଲୁ ହେଲେ । ଦୁଆର ବନ୍ଧ ପର୍ଯ୍ୟନ୍ତ ଯାଉ ଯାଉ ତାଙ୍କ କୋଳରେ ଖେଳୁଥିବା ଝିଅଟିର କଥା ହଠାତ୍ ମନେ ପଡ଼ିଗଲା । ସେ ଅଟକିଗଲେ । ପୁଣି ବିରକ୍ତ ହୋଇ ଗୋଡ଼ ଆଗକୁ ବଢ଼ାଇଲେ କିନ୍ତୁ ପୁଣି ଦୁଆର ମୁହଁରେ ଅଟକିଗଲେ । ଝିଅଟିର କଥା ତୀବ୍ର ଭାବରେ ମନେ ପଡ଼ିଲା ।

ବିଲେଇ ଛୁଆ ସେଇ ଘରେ'ଇ ରହିଗଲେ ।

+ + +

ଭୋର ହୋଇଆସୁଥିଲା । ପୂଜା ଉପକରଣମାନ ଧରି ଗୋମତୀକୁ ଯିବାପାଇଁ ଲାଲେ ଦଲାଲର ସ୍ତ୍ରୀ ଦୁଆର ଖୋଲିଲା । ଘରୁ ବାହାରିବା ମାତ୍ରେ ଚଉକାଠ ବାହାରେ ଦୁଇପାଖେ ରଖାହୋଇଥିବା ପିତୁଳା ଦୁଇଟି ଉପରେ ନଜର ପଡ଼ିଲା । ଭୟରେ ଭିତରକୁ ପଛେଇଗଲା ଓ ବାହାର ଲାଇଟ ସୁଇଚ୍ ମାରିଦେଲା । ନିଜ ଘରପାଇଁ କରାଯାଇଥିବା ମାରଣ ପ୍ରୟୋଗକୁ ବିଜୁଳି ଆଲୁଅରେ ଅତି ପରିଷ୍କାର

ଖବରରେ ଦେଖି ତା'ର ଛାତି ଭୟରେ ଥରଉଠିଲା । ସେ ହଠାତ୍ ପାଟି କରି କହିଲା, କିଏ ଏମିତି କାମ କରିଛି । "ଏ ବୋଉ···ଏ ବୋଉ···ଭିତରୁ କାଶୁ କାଶୁ ବୃଦ୍ଧାଙ୍କର ସ୍ୱର ଶୁଣାଯାଉଥିଲା ।

"ଆଲେ ବୋହୂ କ'ଣ ହେଲା ?"

"ଆରେ, ଶୀଘ୍ର ଆସ, ଦେଖିଯାଅ କ'ଣ ହେଇଛି । କହୁ କହୁ ଶ୍ରୀମତୀ ଲାଲେ ନିଜର ସ୍ଥିର ମହଣିଆ ଓଜନର ଶରୀରରେ ନିଃଶ୍ୱାସ ପ୍ରଶ୍ୱାସକୁ ଆୟତ୍ତ କରି ଭଗ୍ନ ସ୍ୱରରେ ପ୍ରାର୍ଥନା କରିବାକୁ ଲାଗିଲେ—ହେ ସତ୍ୟନାରାୟଣ ମହାପ୍ରଭୁ, ତୁମରୁ ପାଲା କରିବି, ହେ ହନୁମାନଜୀ—ତୁମପାଇଁ ପାଞ୍ଚଟଙ୍କାର ଭୋଗ କରିବି—ହେ ମା' ଠାକୁରାଣୀ, ରକ୍ଷାକର ··ରକ୍ଷାକର···ହୁଁ···ହୁଁ···ହୁଁ ।

"ଆଲେ ବୋହୂ କଅଣ ହେଲା ?" ଶୀତରେ ଥରି ଥରି ବୁଢ଼ୀ ଆସିଲେ ।"

"ବୋଉ, ଟିକିଏ ଦେଖତ, କେଉଁ ନିର୍ମୂଳୀ ରାଣ୍ଡ ମୋ ଦୁଆର ମୁହଁରେ ଏ ପିତୁଳାଗୁଡ଼ାକ ରଖିଦେଇ ଯାଇଛି, ଯିଏ ମୋପାଇଁ ଏମିତି ସବୁ ପାଞ୍ଚୁଛି—ହେ ପ୍ରଭୁ ତା ବଂଶ ବୁଡ଼ୁ । ଛିଣ୍ଡାଳ· ·ସ୍ୱୈରଣୀ, ଏକାମ ସେଇ ନନ୍ଦୋ ରାଣ୍ଡିର । ସେହି ବଦମାସ ଦେଠେଇଙ୍କୁ କହି ଏସବୁ କରାଇଛି ।

ସେହି ରାକ୍ଷାସୁଣୀ ଉପରେ ବଜ୍ରପଡ଼ୁ । ତା'ରି ତ ଜୀବନ ସାରା ଏଇ କାମରେ ଗଲା । ଦୁଆରକୁ ଲାଗି ଠିଆହୋଇ ମୁହଁ ଓ ନାକରେ ଲୁଗା ମାଡ଼ି ବୁଢ଼ୀକୁ କହିଲା" ବୋଉ ଏଗୁଡ଼ିକ ନେଇ ଟିକିଏ ଛକ ଯାଗାରେ ପକାଇ ଦିଅନ୍ତୁ—ମୋର ଗାଧୋଇବା ଏତେ ଡେରି ହେଲାଣି ।

ଶୀତ ଓ ବାର୍ଦ୍ଧକ୍ୟଯୋଗୁଁ ଥରୁଥିବା ବୁଢ଼ୀଟି ଭୟରେ ଆହୁରି କମ୍ପିବାକୁ ଲାଗିଲା ସେ କହିଲା, "ବୋହୂ, ଯାକୁ ମେହେନ୍ତର ଆସିଲେ ଉଠାଇବ । ଯଦି ମଝିରେ କୌଣସି ଗାଈଫାଇ ଆସି ଖାଇଦିଏତ ତେବେ ଭଲ, କହି ବୁଢ଼ୀ ଭିତରକୁ ଚାଲିଗଲେ ।

ଲାଲେର ଘରଣୀ ଦେହ ନିଆଁପରି ଜଳି ଉଠିଲା, କହିଲା ତତା ନିକଟକୁତ ଆସିଲଣି, ଆଜି ମଲେ କାଲିକି ଦୁଇଦିନ ।

ବୁଢ଼ୀ ଦୁଆର ବନ୍ଧରେ ଅଟକିଗଲେ, ଲାଲେର ଘରଣୀ ତାଙ୍କଆଡ଼କୁ ନ ଦେଖି ପୁଣି ଅପିଲ୍ କଲା "ଆରେ, ବୁଢ଼ୀମାନଙ୍କୁ ଯନ୍ତ୍ର ମନ୍ତ୍ର କାଟୁ କରିପାରେ ନାହିଁ । ଟିକିଏ ଉଠାଇ ଦିଅ । ଗାଧୋଇ ଯିବାକୁ ମୋର ଡେରି ହେଉଛିପରା ।"

ସନ୍ତୋ ସ୍ତମ୍ଭ ଉପରେ ଠିଆହୋଇ କହିଲା ''ମା' ମୁଁ ଆସିବି ? ତୁ ଆସି କ'ଣ କରିବୁ ? ନହୋ, ରାକ୍ଷସୁଣୀ ମୋ ସାଙ୍ଗରେ ଏମିତି ଲାଗିଛି । ଭଗବାନ କରନ୍ତୁ ତା'ର ବାପ ମା' ରାତି ଅଧରେ ମରନ୍ତୁ । ଭଗବାନ କରନ୍ତୁ ତା'ର ବଇଁଶ ବୁଡ଼ିଯାଉ । ଓ ହୋ' ମୋର ବେଳ ହୋଇଯାଉଛି—ମଣିଷ ପାଖ ପଡ଼ଶାରେ ଭଡ଼ାଟିଆ ରଖେ କାହିଁକି ? ସମୟ ବେଳେ ଯଦି ସାହାଯ୍ୟ ନ କଲେ, ତାଙ୍କୁ ଭଡ଼ା ରଖି କି ଲାଭ ? ବୁଢ଼ୀ, ଆମଘର ଆଜି ଖାଲି କରିଦେବ । ଆମେ ଏମିତି ଭଡ଼ାଟିଆ ରଖିବୁ ନାହିଁ । ତାଙ୍କର ପାଟିରେ ନିଦରେ ଶୋଇଥିବା ଶାଇ ପଡ଼ଶା ଚମକିପଡ଼ି ଉଠିଲେ । ଦୋ ତାଲାରୁ ସ୍ୱାମୀ ଓ ଝିଅ, ତଳ ତାଲାରୁ ପୁଅ—ସମସ୍ତେ ଏକା ସାଙ୍ଗରେ ପଚାରିଲେ, କ'ଣ ହେଲା ? ଆମେ ଯିବୁଁ ? କହି ରହିଗଲେ ମାତ୍ର କେହି ତଳକୁ ଓହ୍ଲାଇଲେ ନାହିଁ । ଲଲେର ସ୍ତ୍ରୀ ଦୁମଦୁମ୍ ହୋଇ ଦୁଆର ବନ୍ଧ ପାଖରେ ପହଞ୍ଚିଲା ।

କ୍ରମେ ଖବର ମାଡ଼ିଆସିଲା । ରାସ୍ତାଘାଟ ସବୁ ଗହଳି ହୋଇଗଲା । ପଡ଼ଶା ଘରର ସ୍ତ୍ରୀ ଲୋକମାନେ ଲଲେର ସ୍ତ୍ରୀ ସହିତ କେତେ ଚର୍ଚ୍ଚା ଆରମ୍ଭ କରିଦେଲେ; ପରନିନ୍ଦା ଚାଲିଲା । ଉପରୁ ଲଲେ ସନ୍ତୋ ଓ ସିମ୍ଫୁ ମଧ୍ୟ ଓହ୍ଲାଇ ଆସିଲେ । ସ୍ତମ୍ଭ ଓ ଦୁଆରମାନଙ୍କରେ ଠିଆ ହୋଇ ପୁରୁଷ ଲୋକଙ୍କ ଭିତରେ ମଧ୍ୟ ଏ ସମ୍ପର୍କରେ ନାନା କଥା ଚାଲିଲା । କାଲିର ଜଘନ୍ୟତା ବିଷୟରେ ଚର୍ଚ୍ଚା ହେଲା । ଗଳିରେ ରାମଲୋଚନ ମହାରାଜଙ୍କର "ଚାହା, ଗରମ ବିସ୍କୁଟ୍ ଗରମ" ସ୍ୱର ଶୁଭିଲା । ଶାହାଙ୍କର ଚପା ଗଳାର "ଝୁରୁ କହିଥିଲେ ମୋର ଝୁଲା ମୁଣି ଭର୍ତ୍ତିକରି ଆଣିବୁରେ" ସକାଳ ପବନରେ ଭାସି ଆସିଲା । ପାଖରେ ଗଳି ମୋଡ଼ ଉପରେ ଦେଠେଇ ନେ, ନେ ଦେଠେଇ ଛୁ ଛୁ ଶବ୍ଦ ମଧ୍ୟ ଠିକ୍ ସମୟରେ ଶୁଣାଗଲା । କିନ୍ତୁ ଏପର୍ଯ୍ୟନ୍ତ ମେହେନ୍ତରର ଦର୍ଶନ ମିଳିଲା ନାହିଁ । ସିମ୍ଫୁ ସାମନା ଘରର ଭୋଲକୁ ଭୋଲା ଗଳିର ସାମନା ଘରେ ସିଂକଣନଙ୍କୁ ଡାକି କହିଦେଲା ଯେ ମେହେନ୍ତର ଆସିବାମାତ୍ରେ ତାଙ୍କୁ ସାଙ୍ଗେ ସାଙ୍ଗେ ଏଠାକୁ ପଠାଇ ଦେବ । ରାସ୍ତାରେ ଯାଉଥିବା ଲୋକଙ୍କ ମଧ୍ୟରେ ଚର୍ଚ୍ଚା ଚାଲିଲା ଯେ ଲଲେ ଦଲାଲ ଘରେ ଜାଦୁ ମନ୍ତ୍ରର ପିତୁଳା ରଖାହୋଇଛି, ଷ୍ଟ୍ରିଟ ଗଳିରେ ଚାରିରୁ ଛ' ଜଣଙ୍କ ଭିଡ଼ ଖୁବ୍ ବେଶି ମନେ ହେଉଥିଲା । ସେମାନେ ହଣା ହୋଇଥିବା ଲାସକୁ ଦେଖିଲାପରି ପିତୁଳା ଦୁଇଟିକୁ ଦେଖୁଥାଆନ୍ତି । ବହୁତ ସମୟ ଚର୍ଚ୍ଚା ହୋଇ ଯିବାପରେ ମେହେନ୍ତର ଆସିଲା ।

ପିତୁଳା କଢ଼ାଯିବା ମାତ୍ରେ ଲଲେର ଘରଣୀ ଦୁଆରେ ପାଣି ଢାଳି ତୋପ ମୁହଁରୁ ତୋପ ଛୁଟିଲା ପରି ସିଧା ସଳଖ ଛୁଟିଲେ ।

ନନ୍ଦୋ ଘରେ ତା'ର ବାପା ବିଭୂତି କଳ ପାଖରେ ବସି ହାତ ମାଟି କରୁଥିଲେ, ମଣିଆଁର ପୁଅ ଉପର ଖିଡ଼କି ପାଖରେ ଠିଆହୋଇ ଜେଜେମାର କାନ ଟାଣି ଜିଲପି ଖାଇବାକୁ ଜିଦ୍ କରୁଥିଲା । ଜେଜେମା ତାକୁ ବୁଝାଉ ଥାଆନ୍ତି ଯେ ଜର ଛାଡ଼ିଗଲେ ତାକୁ ଜିଲପି ଦିଆଯିବ । ସେ ଯେପର୍ଯ୍ୟନ୍ତ ଚୁପ୍ କରି ତା' ଖଟରେ ନ ଶୋଇଛି ସେପର୍ଯ୍ୟନ୍ତ ତା'ର ଜର ଛାଡ଼ିବ ନାହିଁ । ଘର ଭିତରେ ବଡ଼ ବୋହୂ ନିଜ ଛୋଟ ଝିଅକୁ ଗୋଡ଼ରେ ବସାଇଥିଲେ । ମଣିଆ ରହିଯେଇ ଭିତରୁ ବାଁ ହାତ ସାହାଯ୍ୟରେ ମୁଣ୍ଡ ଉପରକୁ ଟେକି ସିଗାରେଟ ଟାଣୁଟାଣୁ ଝିଅକୁ ହସାଉଥିଲା ।

ପିଲାର ପାକୁଆ ପାଟିର ହସରେ ବେକଟା ପାଉଥିଲା । ତା'ର ଗୋଡ଼ରେ ଥିବା ପାଉଁଜି ଓ ହାତରେ ସୁନା ଖଡୁର ଘାଗୁଡ଼ି ସାନ ଦେହଟିର ହଲଚଲରେ ବାଜି ଉଠୁଥିଲା । ବଡ଼ ବୋହୂଙ୍କର ମନ ଆନନ୍ଦରେ ତା' ଆଡ଼କୁ ଚାହିଁଥାଏ— ଆଉ ଶଙ୍କର ଘରେ ଏପର୍ଯ୍ୟନ୍ତ ରାତି ପାହି ନ ଥାଏ । ନନ୍ଦୋ ଗୋମତୀରୁ ଗାଧୋଇ ଫେରି ଆସିବାର ବେଳ ହୋଇ ଯାଇଥାଏ । ଚୁକର ମଝି ମାହାଲ ପ୍ରାୟ ଓଳାଇ ସାରିଥାଏ ।

ଲଲେର ଘରଣୀ ହଠାତ୍ ମଝି ଅଗଣାରେ ଏଟମ୍ ବମ୍ ପରି ଫାଟିପଡ଼ି ଭିଭୂତିର ଘରକୁ ହିରୋସିମାରେ ପରିଣତ କରିଦେଲା । କଳପାଖେ ବସିଥିବା ଘରର ମୁରବୀଙ୍କୁ ଶୁଣାଇ ଲଲେର ସ୍ତ୍ରୀ କହିଲା—ସେ ରାଣ୍ଡି ଗଲା କୁଆଡ଼େ ? ତୁମ ଗେଲବସର ଝିଅ ? ଆମଘରେ ଯାହା କାରବାର କରି ଆସିଛି—ଦେଖ, କହୁ ଯାଉଛି—ଆଉ କେବେ ଯଦି ଆମ ଘରେ ଗୁଣୀ ମନ୍ତ୍ର କରାଇବ ତା' ବଂଶ ଆଗ ବୁଡ଼ିବ । ଦେଖ ଆଜି ମୋର ମନ ପାଞ୍ଚୁଛି । ମୁଁ କେବେ କାହାର କ'ଣ ଯେ ମଙ୍ଗଳ କରିଛି ଭଲ । ଦେଢେଇଙ୍କୁ ଶିଖେଇ ପିତୁଳା ଗଢ଼ି ଆମରି ଘରେ ରଖି ଆସିଲା ? ଏଣୁ ତେଣୁ ଚୁକରବାକରଙ୍କ ସଙ୍ଗେ ସଲା ହୋଇ ଚୋରି କରାଇଲା, ଆଉ ଏବେ ମୁଁ ତା'ର ସୁନା ଅଣ୍ଟା ସୂତାକୁ ବନ୍ଦୀକରାଇ ଦେବାକୁ ରଖିଲି ନାହିଁ ବୋଲି ମୋରି ଉପରେ ଯନ୍ତ୍ର ମନ୍ତ୍ର ଚଳେଇଛି । ଆରେ, ମୁଁ କାହିଁକି କାହାର ଚୋରି ମାଲ୍ ରଖିଥାନ୍ତି । ସେସବୁ ମୋ ଘରେ ଚଳିବନି । ଯାହାଘରେ ଚୋରିମାଲ୍ ନିତି ପଶେ ତାଙ୍କରି ଘର ଝିଅ ନିଜ ଘଇତା ଛାଡ଼ି ସମସ୍ତଙ୍କୁ ଘଇତା କରନ୍ତି । ଉପରେ ଭଲେଇ ହେଉଛି । ଚୋରଣୀ କୋଉଠିକାର ?

ଏଟମ୍ ବମ୍ ଆଗ ଫୁଟିସାରିଲା ପରେ ମାରି ମେସିନ ଗନ୍ ପଟ୍ ପଟ୍ କଲେ ଆଉକି ଲାଭ ? ଭିଭୂତି କାନରେ ତେଲ ପକାଇ ଚୁପ୍ ଚାପ୍ ଦାନ୍ତ ଘଷୁଥାଏ ।

ମଣିଆ ଓ ତା'ର ବୋହୂ ଉନ ଡାଲର ଝରକାରୁ ଉଇଁପଡ଼ି ଦେଖୁଥାଆନ୍ତି । ଫେର ନନ୍ଦୋ ଯେମିତ ରଣ କ୍ଷେତ୍ରରେ ଉପସ୍ଥିତ ହୋଇ ଗାଣ୍ଡିବ ଧନୁ ଟଙ୍କାରିଲା, ଶଙ୍କର ଓ ତା' ବୋହୂ ମଧ୍ଯ ଘର ଭିତରୁ ବାହାରି ଆସିଲେ । ନନ୍ଦୋ ବଡ଼ ବଡ଼ ବ୍ରହ୍ମାସ୍ତ୍ର ପ୍ରୟୋଗ କଲା । ମାଙ୍କର ଫଟ୍ ଫଟ୍ ଶବ୍ଦ ଦବି ଯାଉଥାଏ ତଥାପି ଆଧୁନିକ ବୈଜ୍ଞାନିକ ଯୁଗର ଆବିଷ୍କୃତ ଅସ୍ତ୍ର, ଗାଣ୍ଡିବ ଓ ବ୍ରହ୍ମାସ୍ତ୍ରକ ଏକ ସାଧାରଣ ଖେଳନା ରୂପରେ ପ୍ରମାଣିତ କଲାପରି ଲାଗେ ସ୍ତ୍ରୀ ନନ୍ଦୋକୁ ଦାବିଦେଲା ।

ଅପରାଧି ମନଦେଇ ନନ୍ଦୋ ନିଜକୁ ଉଗ୍ରତାର ନାଟକରେ ସହଜରେ ପ୍ରକାଶ କରିପାରିଲା ନାହିଁ । ମଣିଷ ଭିତରେ ପର ଆପଣା ଭାବ, ତା' ପ୍ରତି ଘୃଣା ଓ ନିଜ ପ୍ରତି ନ୍ୟାୟର ନିଷ୍ଠାନେଇ ଗୃଉଁ ଗୃଉଁ ଝାଉଁ ଝାଉଁ ଶବ୍ଦ ଉଚ୍ଚ ସ୍ୱରରେ ଗୁଞ୍ଜରି ଉଠିଲା । ଉନ ମହଲାଉପରୁ ମଣିଆ ମଧ୍ଯ ଲାଗେ ଦଲାଲକୁ ବେଇମାନ ଭାବି ତଳକୁ ଓହ୍ଲାଇ ଆସିଲା । ଶଙ୍କର ତା'ର ପକେଟରେ ହାତ ପୁରାଇ ତାମସା ଦେଖିବାକୁ ଚାଲିଆସିଲା । ବୋହୂମାନେ ଛାତ ଉପରେ ପାଖକୁ ଲାଗି ଠିଆହୋଇ • ତଳେ ହେଉଥିବା ଘଟଣା ବିଷୟ ଫୁସ୍‌ଫାସ୍ ହେବାକୁ ଲାଗିଲେ । ସାନବୋହୂ କହିଲା, ଦେଖ, ସନ୍ତୋର ମା' କଳି କରିବାରେ କି ଧୁରନ୍ଦର । ଖାଲି ମାଡ଼ପଡ଼ୁଛି । ବଡ଼ ବୋହୂ କହିଲା, ଆଲୋ ହେ ସତ । ତୋର ମୋର ଯଦି କେହି ମନ୍ଦ କରିବାକୁ ବସେ ତେବେ ଆମେ କ'ଣ ରାଗିବାନି ? ଇଏ ନନ୍ଦୋ ଦେବୀଖଣ୍ଡିକ ଏମିତି ସେମିତି ଜଣେ ନୁହେଁ । ସମସ୍ତଙ୍କୁ ହିଂସା କରିବା ଆଉ ସମସ୍ତଙ୍କର ମନ୍ଦ ପାଞ୍ଚିବା—ସ୍ୱାର କାମ—ବାରବୁଲି— ।

ତାରି ସ୍ୱରପରି ନିଜ ଛାତ ଉପରୁ ଜିଆଁମାରି ଉଭୁଡିଙ୍କ ଛାତ ଉପରକୁ ଆସିଲା । ସାନ ଓ ବଡ଼ ବୋହୂକୁ ହାତ ଠାରି ପାଖକୁ ଡାକିଲା, କଳିର କାରଣ ଜାଣି ତାରି କହିଲା, ଆମଘର ଦୁଆର ମୁହଁରେ ମଧ୍ଯ ରଖାହୋଇଥିଲା । ମୁଁ ଦୁଧ ନେବାପାଇଁ ଆସି ଦୁଆର ବାହାରେ ଦେଖି ଚମକି ପଡ଼ିଲି । ଦୁଧବାଲା ମଧ୍ଯ କେତେ କ'ଣ କହି ମତେ ଡରାଇ ଦେଇଗଲା ।

"ଆଲୋ ଇଏତ ଡରାଇବା କଥା । ତୁମର ଆଠମାସ ଚାଲୁଛି । ଆଉ— ବଡ଼ବୋହୂର କଥା ଶେଷ ନ ହେଉଣୁ ତାରି କହିଲା—" "ଆମର ସେତ କହିଲେ ଯେ ଏଗୁଡ଼ାକ ବେକାର ଅନ୍ଧବିଶ୍ୱାସ । ଏସବୁରେ ମନ ଦେବା ଉଚିତ ନୁହେଁ । ମୁଁ ମଧ୍ଯ ମନେ ମନେ ଭାବିଲି ଯେ ଆଜକାଲି ଯୁଗରେ—"

ତଳେ ହେଉଥିବା ଗୋଳମାଳ ତାର ପୂର୍ବ ରେକର୍ଡ ଟପି ଆହୁରି ବିରାଟ ଆକାର ଧାରଣ କଲା । ଗ୍ରେଟ ଓ ବଡ଼ ବୋହୂ ଦୁହେଁ ଧାଇଁ ଯାଇ ଝରକା ପାଖରେ

ଲଢ଼ିପଡ଼ି ଚାହିଁଲେ । ତାରା ଉପର ଛାତରେ ବସି ବଡ଼ କୌତୁହଳରେ ବୋହୂ ଦୁହିଁଙ୍କ ମୁହଁକୁ ଅନାଇ ରହିଲା । ତଳେ ଲଲେର ସ୍ତ୍ରୀ ଝପଟି ଯାଇ ନନ୍ଦୋର ତଣ୍ଟିକୁ ଧରି ପକାଇଲା । ନନ୍ଦୋ ଗଁ ଗଁ ହୋଇ ନିଜର ଦୁଇ ହାତରେ ଶ୍ରୀମତୀ ଲଲେଙ୍କ ମୁହଁ ଚାପି ପୂରା ଦମ୍‌ରେ ତାକୁ ପଛକୁ ଠେଲି ଦେବାପାଇଁ ଚେଷ୍ଟା କରିବାକୁ ଲାଗିଲା । ଭରତ, ମା, ମଣିଆ, ଶଙ୍କର ସମସ୍ତଙ୍କର ଚିତ୍କାର ସ୍ୱର ଏକ ହୋଇ ଭୟଙ୍କର ରୂପ ଧାରଣ କଲା । ମଣିଆଁ ବଡ଼ କଷ୍ଟରେ ନିଜ ଭଉଣୀକୁ ଛଡ଼ାଇଲା । ଲଲେର ସ୍ତ୍ରୀ ମଣିଆ ଉପରେ ଆକ୍ରମଣ କରିବାରୁ ସେ ତାଙ୍କୁ ମାରିବାକୁ ଧାଇଁଲା । ଭରତ ଚଟକରି ଆଗକୁ ଆସି ନିଜ ପୁଅର ହାତ ଧରିପକାଇଲା ଏବଂ ତାକୁ ପଛକୁ ପେଲି ଲଲେର ସ୍ତ୍ରୀକୁ କହିଲା, ବୋହୂ, ଆମେ ତୁମକୁ ହାତ ଯୋଡ଼ୁଛୁ । ଯାହା ଭୁଲ ହୋଇଛି, କ୍ଷମାକର । ନନ୍ଦୋ-ଯା ଏଠାରୁ, ମଣିଆଁ ଏକୁ ଉପରକୁ ନେଇଯା । ଡାହାଣୀ ଚୁପ୍ ହେଉନାହିଁ । ବକ ବକ କରି ଚାଲିଛି ।

ଲଲେର ସ୍ତ୍ରୀ କୌଣସି ପ୍ରକାର ଅନିଷ୍ଟ ଗ୍ରହପରି ଘୁଞ୍ଚିଗଲେ । ସାନ ଓ ବଡ଼ ବୋହୂ ଦୁହେଁ ପୁଣି ରିପୋର୍ଟ କରିବାକୁ ଉପର ଛାତକୁ ଆସିଲେ ।

ଫୁସ୍‌ଫାସ୍ କଥା ଲହଜରେ ସାନ କହିଲା, ଯଦି ଲଲେର ସ୍ତ୍ରୀ ନନ୍ଦୋର ତଣ୍ଟି ଚିପିବାରେ ନନ୍ଦୋ ମରିଯାଇଥାଆନ୍ତା ତେବେ ମୁଁ ଭାରି ଖୁସି ହୋଇଥାଆନ୍ତି । କହିବାକୁ ସିନା ଭଉଣୀ, କିନ୍ତୁ ଆମର ସେ ତାକୁ ଭୀଷଣ ଘୃଣା କରନ୍ତି । ବର୍ତ୍ତମାନ ଦେଢ଼ଶୁର ମଧ୍ୟ ତାଙ୍କପ୍ରତି ବିରକ୍ତ ।

"ଆଉ, ଏ ଅଣ୍ଡାପୂତା ଚୋରି ହେବାକଥା କ'ଣ ? ତାରା ପଚାରିଲା । ବଡ଼ ବୋହୂ କହିଲା" ମୋ ବାହାଘର ପୂର୍ବରୁ ଏଠାରେ ମସ୍ତବଡ଼ ଚୋରି ହୋଇଥିଲା । ମା କହୁଥିଲେ ଯେ ଚାକର ଚୋରି କରି ପଳାଇଥିଲା । ବର୍ତ୍ତମାନ ଦେଖ ଏତେ ବର୍ଷ ପରେ କଥାଟା ବାହାରିଲା—ଏଇଟା ମଧ୍ୟ ନନ୍ଦୋ ମହାରାଣୀଙ୍କର କାମ ।"

ତେବେ କ'ଣ ଚାକର ସହିତ ତାଙ୍କର ? ତାରାର ରହସ୍ୟ ପୂର୍ଣ୍ଣ କଥାର ଖିଅଧରି ସାନ ବୋହୂ କହିଲା, ହୋଇପାରେ ଯେ ନିଜ ହଜ୍‌ବ୍ୟାଣ୍ଡ ( ସ୍ୱାମୀ )କୁ ତ୍ୟାଗ କରିପାରେ, ଘରେ ଚୋରି କରାଇପାରେ ସେ ଆଉ କ'ଣ ନ କରିପାରେ ।

"ବଡ଼ବୋହୂ ମୁଣ୍ଡ ହଲାଇ କହିଲା," ମୁଁ ବୁଝି ପାରୁନାହିଁ ମରଦମାନଙ୍କୁ ଯେଉଁମାନେ ଘୃଣା କରନ୍ତି ଏ ସେହି ସ୍ତ୍ରୀ, କାହିଁକି ନା ଆମ ସ୍କୁଲରେ ଜଣେ ଦିଦି ଅବିକଳ ଏମିତି ଥିଲେ ।

ତଳେ ଘରର ଦ ତାଲରେ ଆଉ ଗୋଟିଏ ଯୁଦ୍ଧ ଆରମ୍ଭ ହୋଇ ସାରିଥିଲା । ଛଅ ବର୍ଷ ତଳର ସ୍ମୃତିର କ୍ଷତ, ମା' ହୃଦୟରେ ମମତାଠାରୁ ଅଧିକା ଆଘାତ ଦେଉଥାଏ । ମଣିଆ ଧନହାନି ଓ ଅପମାନ ବହ୍ନିରେ ଜଳୁଥାଏ । ଶଙ୍କର ମଧ୍ୟ ନନ୍ଦୋ ପକ୍ଷରେ ନ ଥାଏ । ନନ୍ଦୋ ଏକା ସମଗ୍ର ପରିବାର ବିରୁଦ୍ଧରେ ଜୁଝୁଥାଏ ।

ଏହି ସମୟରେ ମିଷ୍ଟର ବର୍ମା ନିଜ ଷ୍ଟ୍ରିଟ ଉପରେ ବୁଲୁଥିଲେ । ବଡ଼ବୋହୂ ଅଳ୍ପ ଓଢ଼ଣା ଟାଣି ଘୁଞ୍ଚିଆସିଲା । ଶ୍ରେଷ୍ଠ ବୋହୂ କହିଲା—ନାନୀ, ନାନୀ ଦେଖ ତାଙ୍କ ଘରେବ ପିଉଲା ରହିଛି ।

ବଡ଼ବୋହୂ ଚିବୁକରେ ଆଙ୍ଗୁଠି ରଖି କହିଲା, "ହାୟ ହାୟ ଏ ସଇତାନ ଦେଠେଇ ବୁଢ଼ୀକି ସମସ୍ତଙ୍କୁ ଖାଇବ ।

# ପାଞ୍ଚ

ଛୁଣ୍ଡା ବୁଢ଼ୀଆଣି ଜାଲ ଚଟେଇବସା, ଛୁଣ୍ଡା ଘୁଡ଼ି ଚଢ଼େଇ ଓ ଘୁଣ୍ଡୁଚି ମୂଷାମାନଙ୍କର ଆଶ୍ରୟସ୍ଥଳ ଏହି ଓସ୍ତଗଛଟି ବିରାଟ ଜଗତର ଅସଂଖ୍ୟ ଦୋଦୁଲ୍ୟମାନ ମନପରି ଫଳ, ଫୁଲ ଓ ସବୁଜ ପତ୍ରରେ ଭର୍ତ୍ତିହୋଇ ସେହି ସାହିର କେତେ ଯୁଗର ସାକ୍ଷୀଭଳି ଠିଆହୋଇ ରହିଛି । ଏବେକାର ବୃଦ୍ଧମାନଙ୍କ ପିଲାବେଳୁ ଏ ଗଛ ଗଙ୍ଗି ଭୁଈଆର ଓସ୍ତଗଛ ନାଁରେ ପରିଚିତ, କିନ୍ତୁ ଯେଉଁ ପାଚେରୀଟି ଦିନେ ଗଙ୍ଗା ଭୁଈଆର ସମ୍ପତ୍ତି ଥିଲା ଆଜି ତାହା ଛେଦୀଲାଲ ଇନ୍‌ସିଓରେନସ୍ ଏଜେଣ୍ଟର ସମ୍ପତ୍ତି । ମ୍ୟୁନିସିପାଲ୍‌ଟି ରେଜିଷ୍ଟର ଅନୁସାରେ ସେ ଘରର ନମ୍ବର ଚୁରଶିହ କୋଡ଼ିଏ ଏହି ଗଛର ତଳପାଖେ ରାଜା ସାହେବଙ୍କର ବଂଶଧର କେହି ପକ୍‌କା ଚଉତରା ନିର୍ମାଣ କରାଇ ପଥର ମଣ୍ଡପରେ ମହାବୀରଙ୍କର ପ୍ରତିମୂର୍ତ୍ତି ସ୍ଥାପନ କରିଥିଲେ । ଧର୍ମପ୍ରାଣ ଭକ୍ତମାନେ ମୂର୍ତ୍ତିର ସେହି ସିନ୍ଦୁର ବୋଳା ଦେହକୁ ଏମିତି ସୁନା ପାତିଆରେ ମଣ୍ଡିତ କରିଦେଇଛନ୍ତି ଯେ ପ୍ରତ୍ୟେକ ଭକ୍ତର ମନ ଅଜାଣାରେ ସେହିଆଡ଼େ ଢଳିଯାଏ ।

ମଣ୍ଡପର ଡାହାଣ କଡ଼ଆଡ଼ୁ ଭିତରକୁ ଯାଇଥିବା ଗଳି ମୁଣ୍ଡରେ ଏହି ଚଉତରାଟି ଚୌପାଢ଼ୀର କାମ ଦିଏ । ଏହି ଜାଗା ଅପେକ୍ଷାକୃତ ଉଚ୍ଚ ହୋଇ ଥିବାରୁ ଖରା ସେଠି ଖୁବ ଭଲଭାବରେ ପଡ଼େ । ସାଇର ଗୋଟିଏ ଦୁଇଟି ହୁକା, ନିମ୍ବ ଦାନ୍ତକାଠି, ଖଣ୍ଡେ ଦିଖଣ୍ଡ ଖବର କାଗଜ, ପରିବା ଓ ଫଳ ଡାଲା, କୁଲଫୀ ବରଫ, ଜିଲପି, ଗଜା, ମୁଆଁ ଗିଲିଲଡ଼ୁ ଓ ଚିନାବାଦାମ ପସରାମାନ ବିଭିନ୍ନ ଲୋକଙ୍କ ଚାହିଦା ମୁତାବକ ଜିନିଷ ଏହି ଚଉତରା ଉପରେ ସମୟ ସମୟରେ ଦେଖିବାକୁ ମିଳେ ।

ମଣ୍ଡପର ବାଁ ପାଖ ସାମନା ଗଳିରେ ପଶୁ ପଶୁ ଚୁହାଳ ଘରର ଛୋଟ ଫାଟକଟିଏ ଆଖିରେ ପଡ଼େ । ଚଉତରାର ଏହି ଅଂଶଟି ପୁରା ନିଛାଟିଆ । ମଙ୍ଗଳବାର ହାଟ ଦିନରେ କେବଳ କୋଳାହଳ ପାଟିତୁଣ୍ଡ ଶୁଣାଯାଏ । ସେହି ଗାଁର ମାଳୀ ବସନ୍ତ ଫୁଲହାର, ଫେଣି, ବେଶନର ସାନ ବଡ଼ ଲଡ଼ୁ ଓ ପେଡ଼ା ନେଇ ପସରା ମେଲି ବସେ । କିଛି ବର୍ଷ ହେଲା ଜଣେ ବୁଢ଼ା ନିଜର ଛୋଟ ପସରା ମେଲାଇ ବସୁଛି । ଓସ୍ତଗଛ ତଳେ ସେହି ମଣ୍ଡପର ହନୁମାନ ଜୀବନ୍ତ ଭଳି ଲାଗେ । ମନେହୁଏ ସତେ ଯେପରି ଜୀବନ୍ୟାସ ପାଇ ପାଇ ମୂର୍ତ୍ତି ହୋଇଯାଇଛନ୍ତି ।

ସକାଳେ ସାଢ଼େ ନଅଟାରେ ଖରା ମଣ୍ଡପ ତଳକୁ ଖସିଲାଣି । ହନୁମାନଜୀଙ୍କର ତେଜୋମୟ ମଣ୍ଡପର କିଛି ଦୂରରେ ସୂର୍ଯ୍ୟଙ୍କର ଉତ୍ତାପ ବେଶ୍

ଅନୁଭୂତ ହେଲାଣି । ଚଉତରାରେ ବନ୍ଧା ଯାଇଥିବା ସ୍ତୁପର ଉପରେ ବସି ଲାଲା ମୁକୁନ୍ଦମଇ ହୁକା ଗୁଡ଼ୁ ଗୁଡ଼ୁ କରି ଟାଣୁଥାଆନ୍ତି । ଦେହରେ ତାଙ୍କର ଥାଏ ଢିଲା ଜାମା ଓ ମୁଣ୍ଡରେ ଢିଲା ଟୁପି ଟୋପି, ଆଖିରେ ସୁନା ଫ୍ରେମ ଚଷମା—ଆଙ୍ଗୁଠିରେ ରୂପା ମୁଦିରେ ନୀଳା, ବେକରେ ମଫଲର ଗୁଡ଼ାଇ ବସିଥାଆନ୍ତି । ଚଉତରାକୁ ଲଗାଇ ଗୋଟିଏ ଆରାମ ଚେୟାରରେ ସେକେଣ୍ଡାରୀସ୍କୁଲର ଜଣେ ସୁପରିଣ୍ଟେଣ୍ଡେଣ୍ଟ ଗୁଲାବ ଚନ୍ଦ୍ର ବସିଛନ୍ତି । ତାଙ୍କ ପାଖକୁ ଲାଗି ରାମ ସ୍ୱରୂପବାବୁ ବସି ଖବର କାଗଜ ପଢ଼ୁଥାଆନ୍ତି । ମହାବୀରଙ୍କ ମଣ୍ଡପକୁ ଲାଗି ବସିଥିବା ଭଗବାନ ଦାନ ଘିଅବାଲା ଲାଲା ମକୁନ୍ଦୀ ମଲଙ୍କ ଘର ବଡ଼ ଥାଳ ଉପରେ ପାଏଲେଖାଁ ଏ ଓଜନର ଘିଅ ସାତୋଟି ଟିଣାରେ ଭର୍ତ୍ତି କରିସାରି ଅଷ୍ଟମଟିକୁ ନକଟ ଉପରେ ରଖୁଥାଏ ।

ଲାଲା ମୁକୁନ୍ଦୀ ମଲଙ୍କର ଦୃଷ୍ଟି ସେହି ନକଟ ଉପରେ ଥାଏ । ଭଗବାନ ଦାନ୍ ଟିଣାରୁ ଚମୁଚାଏ ଘିଅ ବାହାର କରି ନିଜ ଘଡ଼ିରେ ପକାଇବାକୁ ଗଲାବେଳେ ଲାଲା କହିଲେ, ଧାତ୍ ଏ ଶଳାମାନେ ଚମୁଚାଏ ଚମୁଚାଏ କରି ନିଜର ଲାଭ ମାରିବାରେ ବ୍ୟସ୍ତ । ପକା ଟିଣାରେ :" ଭଗବାନ ଦାନ ଅଳ୍ପ ହସି ଘିଅ ଚମୁଚଟା ପୁଣି ଟାଟିଆରେ ପକାଇ ଦେଉ ଦେଉ କହିଲା, ଆହେ ଲାଲାଜୀ, ଆମକୁ ତ ଲାଭରେ କେବଳ ଚମୁଚାଏ ଘିଅ ମିଳେ କିନ୍ତୁ ବଡ଼ ଲାଭ ତ ଆପଣ ବଡ଼ ଲୋକମାନଙ୍କର । ଦେଖ, ଦେଖ ଶଳା ଖାଲି ଯୁକ୍ତିତର୍କ କରୁଛି । ଗାନ୍ଧିଜୀ ଏମିତି ସ୍ୱାଧୀନତା ଦେଇ ଯାଇଛନ୍ତି । ସାନ ବଡ଼ ଯାହାକୁ ଦେଖ—ମୁହଁରେ ଜବାବ । ଆବେ, ଲାଭ, ଏମିତି ହୁଏନି । ଗରାଖକୁ ଖୁସିକଲେ ହୁଏ ।

ଲଲେ ଦାଲାଲ—ରେଜେଇ ଘୋଡ଼ାଇ ହୋଇ ଭିତର ଗଳିରୁ ଆସିଲେ । ଚଉତାରେ ବସିଥିବା ତିନିମୂର୍ତ୍ତିଙ୍କ ଭିତରେ ଜୟ ରାମଜୀଙ୍କ ଜୟ ହେଲା । ବାବୁ ଗୁଲାବ ଚନ୍ଦ୍ର କହିଲେ ତୁମ ଘରେ ଆଜ ସକାଳୁ ସକାଳୁ କଣ ହୋଇଥିଲା କି ?

ହଁ ଶୁଣିଥିଲୁଁ ଯେ ଦେଠେଇ କିଛି ଗୁଣୀ ମନ୍ତ୍ର କରି ଯାଇଛନ୍ତି । ବାବୁ ରାମ ସ୍ୱରୂପ ଗୁଲାବ ଚନ୍ଦ୍ରଙ୍କ ପ୍ରଶ୍ନରେ ବି ନିଜ ପ୍ରଶ୍ନ ଯୋଡ଼ି କହିଲେ, ଆହେ' କଣ କହିବ, ମୁଁ ଘରେ ହଜାରେଥର ମନାକରିଥିବି ଯେ ଛୋଟ ଲୋକଙ୍କ ସହିତ ରାଗଦ୍ୱେଷା ଭାବ ରଖନାହିଁ । ଗୁରି ପଇସା ରୋଜଗାର କଲେ କେହି ଭଲ ଲୋକ ହୋଇ ଯାଏନାହିଁ । ଲାଲା ମୁକୁନ୍ଦୀମଇ—କଣ ମୁଁ କିଛି ମିଛ କହୁଛି ।"

"ଆହେ ଗୋଲାପଚନ୍ଦ୍ର ବାବୁ, ଆପଣ କିଛି ଶୁଣିଛନ୍ତି କି ?" ବାବୁ ଛେଦାଲାଲ ହଠାତ୍ ବାହାରୁ ଆସି କହିଲେ ।

ଲୋକମାନଙ୍କ ଦୃଷ୍ଟି ଛେଦା ଲାଲବାବୁଙ୍କ ଉପରେ ପଡ଼ିଲା । ବାବୁ ଛେଦାଲାଲ, ବାବୁ ଗୋଲାପଚାନ୍ଦଙ୍କ ଚଉକି ଉପରେ ହାତ ରଖି ଠିଆ ହୋଇ କହିଲେ, ଆଜି ସକାଳେ କମ୍ପାନି ବଗିଚାରେ ଯେଉଁ ପିଲାର ଲାସ ମିଳିଥିଲା—

ଲାସ ? ଲାଲା ମୁକୁନ୍ଦୀମଲଙ୍କ କଥାରେ ସମସ୍ତଙ୍କର ଭ୍ରୁରୁ ତୀର୍ଯ୍ୟକ ହୋଇଗଲା ବାବୁ ଛେଦାଲାଲ ସମସ୍ତଙ୍କର ପ୍ରଶ୍ନବାଚୀ ଚେହେରା ଉପରେ ଦୃଷ୍ଟି ବୁଲାଇ କହିଲେ—ହେଁ ଆପଣମାନେ ଜାଣିନାହାନ୍ତି । ଏତେବଡ଼ ପାଲା ଲାଗିଗଲା । ଗୋଟେ କଅଁଳା ପିଲାର ପେଇଟା । ମହାଶୟ ଜଗଦମ୍ବା ସହାୟ । ମାଷ୍ଟର ଓ ତାଙ୍କର ପୁତୁରାର ବିଧବା ବୋହୂ ଏଥିରେ ଧରାପଡ଼ିଛନ୍ତି । "ଜଗଦମ୍ବା ସହାୟ, ଏ ଜାଜ—"

ହଁ ହଁ ଭୈରୋଞ୍ଜି ଗଳିରେ ଯିଏ ରୁହନ୍ତି, ତାଙ୍କର ସେହି ଛତରା ପୁଅ—କମ୍ୟୁନିଷ୍ଟ—ସେହି ଶଳା ନିଜର ପୁତୁରା ବୋହୂ—ସୀମଟପି ଗଲା—ବାବା, ବାବୁ ଗୋଲାପଚାନ୍ଦଙ୍କ ପ୍ରଶ୍ନର ଉତ୍ତର ଦେଇ ବାବୁ ଛେଦାଲାଲ ଚଉତରା ଉପରେ ବସି ପଡ଼ିଲେ ।

ବାବୁ ଗୋଲାପଚାନ୍ଦ ତାଙ୍କଆଡ଼କୁ ଦେଖିବା ପାଇଁ ଚଟ୍‌କରି ଚଉକି ତାଙ୍କ-ଆଡ଼କୁ ବୁଲାଇଦେଲେ ।

ଲାଲ ମୁକୁନ୍ଦୀମଲ ହାଇ ମାରି କହିଲେ—"ଆହେ, ଆଉ ହେବ କ'ଣ ? ଆଜିକାଲି ଦୁନିଆରେ ଧର୍ମ କର୍ମତ କିଛି ନାହିଁ ।" କିନ୍ତୁ ଭାଇ ମୁଁତ କହୁଛି ଯେ ପୋଲିସ୍ ତାଙ୍କୁ ଶୀଘ୍ର ଧରିଲା" "ଶାଳୀ ସକାଳେ ଜନ୍ମକଲା ଆଉ—"

"ଆରେ ବାବୁ ଶାଳୀ ଗ୍ରାମ ଧରାଇ ଦେଇଛନ୍ତି । ଛେଦାଲାଲ କହିଲେ । "ଆଚ୍ଛା" ବାବୁ ରାମ ସ୍ୱରୂପ ମୁଁହକୁ ଟିକେ ଗୋଲ କରିବାକୁ ଚେଷ୍ଟା କରି ବେକ ହଲାଇଲେ । "ଇଏ ଶଳା ନେତାଙ୍କର କାମ, କିନ୍ତୁ ନିଜେ କେଉଁ ଗଙ୍ଗାରେ ଗାଧୋଇଛନ୍ତି । ବେଇମାନ, ରିପୁଞ୍ଜିଃମାନଙ୍କୁ ଏହିପରି ହଇରାଣ କରିବାକୁତ ଦୁଇଥର ଯୋତାରେ ମାଡ଼ ଖାଇଛି ।" ହଁ, ତାପରେ ତା'ର କଣ ହେଲା । ଛେଦାଲାଲ ? "ସେହି ଜଗଦମ୍ବା ବୋହୂର ସହାୟକ ?" ବାବୁ ଗୋଲାପଚାନ୍ଦ ପଚାରିଲେ ।

ପୋଲିସ ଡାକ୍ତରଙ୍କୁ ସାଙ୍ଗରେ ନେଇ ଆସିଛି । ବର୍ତ୍ତମାନ ଭୈଂରୋଜି ଗଲୀରେ ଅସମ୍ଭବ ଭିଡ଼୍ । ଛେଦା ଲାଲ୍ କହିଲେ ।

ଶୁଭ୍ର କଣିଆ ଟୋପି, ଚଉଡ଼ା କପାଳରେ ଚନ୍ଦନର ଗୋଲ ଟିପା ରୂପା ଫ୍ରେମର ନୀଳ କାଚ ଚଶମା, ହାଲୁକା ବସନ୍ତ ଚିହ୍ନ ଓ ବଡ଼ବଡ଼ ଦାଗଥିବା ଶ୍ୟାମଳ ଚିନ୍ତାଶୀଳ ମୁହଁ, ଲମ୍ବା ଚଉଡ଼ା ଦେହରେ ପଶମ ଜାମା, ଜରି ଲାଲ ଜରିଧଡ଼ି ଧୋତି, ପାଲିସ କରାଯାଇଥିବା ଚକ୍‌ଚକ୍ ଯୋତା, ମୋଟି ଓ ପୋହଳା ମୁଦିଆ ଥିବା ହାତରେ ରୂପା ବେଣ୍ଟଥିବା ବାଡ଼ିଧରି ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କର ଗୁରୁ ଗମ୍ଭୀର ମୂର୍ତ୍ତି ଗଳି ଭିତରକୁ ପ୍ରବେଶ କରିବାର ଦେଖାଗଲା ।

"ଆସନ୍ତୁ ମହାରାଜ, ପ୍ରଣାମ, ଲାଲା ମୁକୁନ୍ଦୀମଲ ତାଙ୍କୁ ଦୂରରୁ ଦେଖି କହିଲେ । ଚଉତରାରେ ବସିଥିବା ସବୁ ଲୋକମାନଙ୍କର ହାତ ତାଙ୍କୁ ଦେଖି ଯୋଡ଼ି ହୋଇଗଲା ।

"ଆନନ୍ଦରେ ରହନ୍ତୁ । ଶାସ୍ତ୍ରୀଜୀ ଆଗକୁ ମାଡ଼ିଆସି ସମସ୍ତଙ୍କର ଅଭିବାଦନର ଉତ୍ତର ଦେଇ କହିଲେ । ପଣ୍ଡିତ ମହାଶୟ ? ରାଜା ସାହେବଙ୍କ ଘର ପାଠ କରି ଆସିଲେ ।

"ହଁ"

"ବର୍ତ୍ତମାନ ତାଙ୍କ ନାତିଙ୍କ ଦେହ କିପରି ଅଛି ? କାଲିତ ଅବସ୍ଥା ଖୁବ୍ ଖରାପଥିଲା ?

"ନା, ସେମିତି କିଛି ନୁହେଁ, କିନ୍ତୁ ଜର ଅଛି" କହି ଶାସ୍ତ୍ରୀଜୀ ନିଜ ଘର ଆଡ଼କୁ ଯିବାପାଇଁ ପାଦେ ଆଗେଇଲେ ।

ଲାଲା ମୁକୁନ୍ଦୀମଲ ପୁଣି ପଚାରିଲେ "ରାଜା ସାହେବ କାହା ପକ୍ଷରେ ? କଂଗ୍ରେସ ନା ଜନସଂଘ ?"

ଶାସ୍ତ୍ରୀଜୀ ଖୁଲପଡ଼ି କହିଲେ—"ମୁକୁନ୍ଦୀମଲ କଥାଟା ହେଉଛି ଯେ ଧନୀ ପୁରୁଷ ଓ ବେଶ୍ୟା ଯେଉଁମାନଙ୍କଠାରୁ ସ୍ୱାର୍ଥ ହାସଲ କରନ୍ତି ସେଇଠାରେ ସେମାନେ ରହିଯାଆନ୍ତି ।

ସମସ୍ତେ ହସି ଉଠିଲେ । ବାବୁ ଗୋଲପଚାନ୍ଦ ଚଉକିରୁ ଉଠି କହିଲେ— ବିରାଜମାନ କରନ୍ତୁ, ପଣ୍ଡିତ ମହାଶୟ ।

ଚଷମାର ନୀଳ କାଚ ଭିତରୁ ଚଉକି ଆଡ଼କୁ ଅନାଇ ଶାସ୍ତ୍ରୀଜୀ କହିଲେ ବର୍ତ୍ତମାନ ଘରକୁ ଯିବ ।

"ଆଜ୍ଞା, ଟିକଏ ବସନ୍ତୁ ନା । ଲଲ ମୁକୁନ୍ଦୀମଲ ଜୋରଦେଇ କହିଲେ । ପୁଣି ନିଜ ଘରଆଡ଼କୁ ଅନାଇ ବଡ଼ପାଟିରେ କହିଲେ" ଭଗୌଟ, ଆରେ ଭଗୌଟ ହାତ ଧୋଇ ଆଠ ଦଶଖଣ୍ଡ ପାନ ଆଣିଲୁ । କାହା ହାତରେ ଶୀଘ୍ର ଚଲମ, ଧୂଆଁ ପ୍ରନ ପଠା । ପୁଣି ଚଉକି ଉପରେ ବସି ଶାସ୍ତ୍ରୀଜୀଙ୍କୁ କହିଲେ, "କଥାତ ଆପଣ ଲକ୍ଷେ ଟଙ୍କାର କହିଲେ ଶାସ୍ତ୍ରୀଜୀ । କିନ୍ତୁ କେବଳ ଧନୀ ଲୋକ କାହିଁକି ସମସ୍ତେ ନିଜ ନିଜର ସ୍ୱାର୍ଥ ଭଜନା କରୁଛନ୍ତି ।

ସ୍ୱାର୍ଥକୁତ ମଧ୍ୟ ଜ୍ଞାନୀ, ଯୋଗୀ ମାନେହିଁ ଭଜୁଛନ୍ତି । ଅନ୍ୟ ସବୁ ଯାହା ଅଛି ତାହା ସ୍ୱାର୍ଥ ନୁହେଁ ଅନର୍ଥ । ଆଉ—ନମସ୍କାର ବାବୁ, ଆସନ୍ତୁ—ଆସନ୍ତୁ । ନିଜର କୋଠରୀ ଭିତରକୁ ଯାଉଥିବା ସଜ୍ଜନଙ୍କୁ ରାମସ୍ୱରୂପ ଖୁବ୍ ଦୃଢ଼ତାର ସହ ଡାକିଲେ ।

ଏମିତିତ ସଜ୍ଜନ ସେହି ଚଉତରାର ସବୁ ମୁହଁ ସହିତ ପ୍ରାୟ ପରିଚିତ ଥିଲା । ତଥାପି ବ୍ୟକ୍ତିଗତ ପରିଚୟ କାହାର ସହିତ ନଥିଲା । ବାବୁ ରାମସ୍ୱରୂପ ତାକୁ ଡାକ ଦେବାରୁ ସେ ବଡ଼ ହଡ଼ବଡ଼େଇ ଗଲା । ଟିକେ କୃତ୍ୟ କୃତ୍ୟ ହୋଇ ଆନନ୍ଦ ମଧ୍ୟ ଅନୁଭବ କଲା । ବିନମ୍ର ସହକାରେ ଯୋଡ଼ ହସ୍ତରେ ସେ ଆଗକୁ ଆସିଲା । ସମସ୍ତେ ତା' ଆଡ଼କୁ ଅନାଇଲେ । ବାବୁ ସ୍ୱରୂପ ହସି ହସି କହିଲେ— "ଆଜି ପେପରରେ ଆପଣଙ୍କ ବିଷୟରେ ଆର୍ଟିକଲ ବାହାରିଛି । ବାବୁ ରାମସ୍ୱରୂପ ତାକୁ ଡାକିବାରୁ ତା' ମନରେ ଖିଆଲ ହେଲାଯେ କାଲି ସନ୍ଧ୍ୟାରେ ବୋଧେ ରାଜାସାହେବ ତା ବିଷୟରେ ଲୋକମାନଙ୍କୁ କିଛି କହିଛନ୍ତି, କିନ୍ତୁ ନିଜେ ନିଜ କୀର୍ତ୍ତି ଶୁଣି ସେ ମନେ ମନେ ଗର୍ବ ଅନୁଭବ କଲା ଓ ପ୍ରକାଶ୍ୟରେ ନମ୍ରଭାବେ ଦେଖାଇ କହିଲା, ଆଜ୍ଞା । ସେଇଟାତ—"

ଲାଲେ କୌତୁହଳ ପୂର୍ଣ୍ଣ ଦୃଷ୍ଟିରେ, ବାବୁ ଗୋଲାପଚନ୍ଦ୍ର ଶାନ୍ତନମ୍ର ମୂର୍ତ୍ତୀ ହୋଇ ଓ ବାବୁ ଛେଦାଲାଲ ତାର୍ଯିକ ଚାହାଣିରେ ତାକୁ ଚାହିଁ ରହିଲେ । ଶାସ୍ତ୍ରୀଜୀଙ୍କର ନୀଳ ଚଷମା ଯଣକ ପାଇଁ ତା' ଚେହେରା ଉପରେ ବୁଲିଯାଇ ଗମ୍ଭୀର ମୁଖମଣ୍ଡଳରେ କ୍ରମଶଃ ମ୍ଳାନ ହୋଇଗଲା । ଲଲ ମୁକୁନ୍ଦୀମଲଙ୍କର ମୋଟା ଚଶମାଟି ବରାବର ତା ଚେହେରା ଉପରେ ଲାଗି ରହିଲା ।

ତା'ପରେ ରୂପା ଥାଳିଆରେ ପାନ ଆସି ପହଞ୍ଚିଲା ।

ବାବୁ ରାମ ସ୍ୱରୂପ ଚଟ୍ ପଟ୍ ପାନ ଥାଳିଆ ଆଡ଼କୁ ନଜର ପକାଇ କହିଲେ—ଶାସ୍ତ୍ରୀଜୀ, ଏ ମହାଶୟ ଆମ ଭାରତ ବର୍ଷର ଜଣେ ବିଶିଷ୍ଟ ଚିତ୍ରକର,

ଶ୍ରୀମାନ ସଜ୍ଜନ ବର୍ମା । ଆଜିକାଲି ଇଏ ଆମର ପଡ଼ାରେ—କୌତୂହଳରେ ଏକାଗ୍ର ଚିତ୍ତ ମୁକୁନ୍ଦୀମଲଙ୍କ ଗ୍ରୀବା ହଲିଗଲା । ସେ କହିଲେ ଆଚ୍ଛା, ଆଚ୍ଛା ତୁମେ କନ୍ହେମଲଙ୍କର ନାତି ? କାଲି ରାଜା ସାହେବ ଜାନକୀ ଶରଣଙ୍କ ଘରେ ଏକଥା ପକାଇଥିଲେ ।”

ଶାସ୍ତ୍ରୀଜୀଙ୍କ ନୀରବତା ଏହି କନ୍ହେମଲ ନାମ ଶୁଣି ଭାଙ୍ଗିଗଲା । ନୀଳ ଚଷମା ପୁଣି ସଜ୍ଜନ ଚେହେରା ଉପରେ ଅଟକି ରହିଲା । କହିଲେ କନ୍ହୋମଲ ଆମର ସାଙ୍ଗମାନଙ୍କ ଭିତରୁ ଜଣେ ଥିଲା । ଲାଲା ମୁକୁନ୍ଦୀମଲ ଉଠିପଡ଼ି କହିଲେ “ଆମର ତାଙ୍କ ସହିତ ବନ୍ଧୁ ବେଭାର ଥିଲା । ବିଚରା ବହୁତ ସାନ ବୟସରୁ ମରିଯାଇଛନ୍ତି । ମୋର ମନେ ହେଉଛି ତାଙ୍କର ମରିଯିବାର ପଚାଶ ବର୍ଷ ହୋଇଯିବଣି ନା ଶାସ୍ତ୍ରୀଜୀ ?”

ଆଜ୍ଞା ହଁ, ସନ ଦୁଇରେ ତାଙ୍କର ମୃତ୍ୟୁ ହୋଇଥିଲା “ସଜ୍ଜନ କହିଲା । ମୁକୁନ୍ଦୀ ମଲ କହିଲେ ଯୁବକ ଅବସ୍ଥାରେହିଁ ତାଙ୍କର ମୃତ୍ୟୁ ହେଲା, ତାଙ୍କ ପୁଅ ମଧ୍ୟ କମ୍ ଆୟୁଷ ପାଇଥିଲା । ତାଙ୍କୁତ ମଦ ଶେଷ କରିଦେଲା ।

ସ୍ୱର୍ଗୀୟ ପିତାଙ୍କ ସମ୍ବନ୍ଧରେ ଲଜ୍ୟାଜନକ ଗାଳିମାନ ଶୁଣି ସଜ୍ଜନ ଲଜ୍ୟା ଓ ସଂକୋଚରେ ନୀରବ ହୋଇଗଲା । ଶାସ୍ତ୍ରୀଜୀ କହିଲେ ବିଦ୍ୟାଳୟରେ କନ୍ହୋମଲ ମୋର ସହପାଠୀ ଥିଲେ । ମୋ ଠାରୁ ବର୍ଷେ ଦେଢ଼ବର୍ଷ ବଡ଼ହେବେ । ତାଙ୍କର ପିତା ସେ ସମୟରେ ଏହି ଛକରେ ରହୁଥିଲେ । ନିଜ ସମୟର ସେ ଥିଲେ ଜଣେ ବାଦ୍‌ଶା ।”

“ଆରେ ସେ ମସ୍ତବଡ଼ ଲୋକ । ଏଠାରୁ ସେ ଜଣେମାତ୍ର ଲୋକ ସର୍ବ ପ୍ରଥମେ ବିଲାତକୁ ଯାଇଥିଲେ । ପ୍ରାୟଶ୍ଚିତ ମଧ୍ୟ କଲେନାହିଁ । ଶାହନଜଫ ନିକଟରେ ବିରାଟ କୋଠି ତିଆରି କଲେ । ବଡ଼ ବଡ଼ ଗୋରା ହାକିମମାନେ ତାଙ୍କ ଘରକୁ ଆସନ୍ତି, ଲାଟସାହେବଙ୍କ ଘରେ ତାଙ୍କୁ ଚଉକି ଖୁବ୍ ନାଁ କଲେ ବାବୁ ।”

ବାବୁ ରାମସ୍ୱରୂପ ଦେଖିଲେ ଯେ ସମସ୍ତ ଆତ୍ମୀୟତା ଏହି ପ୍ରତିଷ୍ଠିତ ବୁଢ଼ା ଦୁଇଜଣ କରଗତ କରି ନେଉଛନ୍ତି, ତାଙ୍କର ଡାକବାଟ ଅକାରଣ ହୋଇଯାଉଛି, ହଠାତ୍ ମଝିରେ ସେ କହି ପକାଇଲେ “ଆରେ, ଇଏତ ନିଜ ପୂର୍ବପୁରୁଷଙ୍କ ଅପେକ୍ଷା ଆହୁରି ବେଶି ନାମ କମେଇଛନ୍ତି । ଯାଙ୍କ ବିଷୟରେ ପେପରମାନଙ୍କରେ ଆର୍ଟିକଲ ବାହାରୁଛି । ମୁଁ ଇଲ୍‌ସ୍ଟ୍ରେଡ୍ ଉଇକ୍ଲିରେ ଯାଙ୍କର ଫଟ ଦେଖିଛି । ଲାଲେ କହିଲା—ତେବେ କ'ଣ ବାବୁ ଆପଣ ଫଟୋଗ୍ରାଫର ନା ପେନ୍‌ସିଲ ସ୍କେଚ୍ କରନ୍ତି ?

ନିଜ କଳାକୃତି ସମ୍ବନ୍ଧରେ ଏପରି ଦ୍ୱିବିଧ ପ୍ରଶ୍ନ ଶୁଣି ସଜ୍ଜନ ଟିକିଏ ଅପ୍ରସ୍ତୁତ ହୋଇଗଲେ ।

ଲାଲ ମୁକୁନ୍ଦୀ ମଲଙ୍କ ହୁକାରେ ତାଜା ଚିଲମ ଆସି ପହଞ୍ଚିଗଲା । ଲାଲାଜୀ ଚାକରକୁ ହୁକା ଘୁଞ୍ଚାଇବା ପାଇଁ ଓ ନଳୀ ନୁଆଁଇବା ପାଇଁ ଆଦେଶ ଦେବାକୁ ଲାଗିଲେ । ସେହି କଥା ପ୍ରସଙ୍ଗରେ ସଜ୍ଜନ ନିଜର ସଂକୋଚଭରା ଓ ସଜ୍ଜନଭରା ସ୍ୱର ଡବଲ ଲାଇନ୍‌ପରି ଟାଣିଦେଲା ।

"ଆଜ୍ଞା, ମୁଁ ପେନ୍‌ସିଲ ସ୍କେଚ୍ ଆଙ୍କେ ।"

ଲାଲ ମୁକୁନ୍ଦୀ ମଲ ଚିଲମରୁ ପ୍ରଥମ ଧୂଆଁକୁ ଆରମ୍ଭ କରିବାର ମୋହଛାଡ଼ି କହି ପକାଇଲେ ଆରେ ପେନ୍‌ସିଲ ସ୍କେଚ୍ ଚିତ୍ର ତ ଆମର ଏଠାରେ ପଣ୍ଡିତ ରାମନାଥ ଗୋସେଇଁ କରୁଥିଲେ । ବାଃ, ବାଃ, ହାତ ଦାନ୍ତ ଉପରେ ସେ ଯେପରି ସୁନ୍ଦର ଚିତ୍ର ଆଙ୍କିଛନ୍ତି—କେହି କରିପାରିବେ ନାହିଁ । ଲାଲା ଚୁପ୍ ହେଲେ ଓ ତାଙ୍କର ହୁକା ଜଳବ ରେ ଲାଗିଲା । ସଜ୍ଜନ ଏହି ଅପରିଚିତ ସମାଜରେ ଏମିତି ପରିଚୟକୁ ଯଥେଷ୍ଟ ଭାବି ସେଠାରୁ ଯିବାକୁ ଚାହିଁଲା ।

ଏପରି ପରି ଆପଣା ପରିବେଶ ଭିତରେ ଅଣନିଶ୍ୱାସୀ ହୋଇଗଲା । ଲାଗିବାରୁ ଶାସ୍ତ୍ରୀଜୀଙ୍କୁ ହାତ ଯୋଡ଼ି କହିଲା "ବର୍ତ୍ତମାନ ଯିବାପାଇଁ ଆଦେଶ ଦିଅନ୍ତୁ । ମୁଁ ପରେ ଦେଖାକରିବି ।"

କଥାଟି ଶେଷ ହେଉ ହେଉ ସମସ୍ତଙ୍କୁ ପ୍ରଣାମ କରି ଉଦ୍ୟତ ହେଲା । ଶାସ୍ତ୍ରୀଜୀ କହିଲେ, ହଁ, ନିଶ୍ଚୟ ଦେଖାକରିବ । ମୁଁ ଖୁବ୍ ଖୁସି ହେବି । ଆୟୁଷ୍ମାନ ହୁଅ । ଯଶସ୍ୱୀ ହୁଅ । ଶାସ୍ତ୍ରୀଜୀଙ୍କର ଗମ୍ଭୀର ସ୍ୱରରେ ସଜ୍ଜନ ଗଭୀର ଆତ୍ମୀୟତା ଅନୁଭବ କଲା, ଯାଉ ଯାଉ ସେ ହଠାତ୍ ଅଟକି ଯାଇ ଶାସ୍ତ୍ରୀଜୀଙ୍କର ପାଦସ୍ପର୍ଶ କଲା । ମା' ବ୍ୟତୀତ ସେ ଆଉ କାହାରି ପାଦସ୍ପର୍ଶ କରି ନ ଥିଲା ।

ଶାସ୍ତ୍ରୀଜୀ ନୀଳ ଚଷମା ଭିତରୁ ତାକୁ ଛାତ ଆଡ଼କୁ ଯାଉଥିବାର ଦେଖି ଚଉତରା ଉପରେ ବସିଥିବା ଭଦ୍ର ଲୋକମାନଙ୍କୁ ପଚାରିଲେ "ଏ ପିଲାଟି ଏଠାରେ କ'ଣ କରିବା ପାଇଁ ଆସୁଛି ?

ବାବୁ ଗୋଲାପଚାନ୍ଦ କହିଲେ "ଆପଣ ଜାଣି ନାହାଁନ୍ତି ଆଜ୍ଞା ଯେତେ-ବେଳେ ସେହି ଶରଣାର୍ଥୀଗଣ ତାଙ୍କ ବିରୁଦ୍ଧରେ ଲେଖା ପ୍ରକାଶ କଲେ ସେତେବେଳେ ଯାଙ୍କର ଷ୍ଟେଟ୍‌ମେଣ୍ଟ୍‌ରେ ପ୍ରକାଶିତ ହୋଇଥିଲା ଯେ ସେ ଏହି

ଗଳିର ସାଧାରଣ ଜୀବନର ଚିତ୍ର ଆଙ୍କିବାକୁ ଆସିଛନ୍ତି ବୋଲି । ସେ ଭାରତୀୟ ଟ୍ରେଡିଶନ୍ ଦେଖିବାକୁ ଚାହାଁନ୍ତି । ଦେଠେଇଙ୍କ ଘରେ ଭଡ଼ାରେ ରହୁଛନ୍ତି । ଲାଲେ ଉଠୁ ଉଠୁ ହସି ହସି କହିଲେ" ପଡ଼ା ଭିତରେ ଦେଠେଇଙ୍କର ଚିତ୍ର ଅଙ୍କନ ଏ ପର୍ଯ୍ୟନ୍ତ କରିଛନ୍ତି କି ନାହିଁ ?

ବାବୁ ଛେଦାଲାଲ ମଧ୍ୟ ଉଠୁ ଉଠୁ ହସି କହିଲେ । ଯେଉଁଦିନ ଇଏ ଦେଠେଇଙ୍କର ଚିତ୍ର ତିଆରି କରିନେବେ ସେଦିନ ମୁଁ ଏ ଶାଇବାଲାଙ୍କ ତରଫରୁ ସ୍ୱାଙ୍କୁ ଗୋଟାଏ ମେଡାଲ୍ ପୁରସ୍କାର ଦେବି ।

"ଆରେ, କୁଆଡ଼େ ଚାଲିଲ ଭାଇ, ତୁମଲାଗି ଆମେ ଶାସ୍ତ୍ରୀଜୀଙ୍କୁ ବସାଇଲୁଁ ଆଉ ତୁମେ ଉଠିଲ । ବସ ବସ । ବର୍ତ୍ତମାନ କହ ଯେ ଭୋଟ୍ କାହାକୁ ଦିଆଯିବ ?" ନିର୍ବାଚନ ଚର୍ଚ୍ଚା ଗରମ ହୋଇ ଉଠିଲା, କିନ୍ତୁ ସମସ୍ତ ପରେ ହାତରେ ପିତୁଳା ଥାଳିଆ ଧରି ସେହି ବାଟଦେଇ ସଜ୍ଜନ ଯାଉଥିଲା । ଲାଲେ ଦଲାଲର ଦୃଷ୍ଟି ସେହିଆଡ଼େ ପଡ଼ିବାରୁ ସେ ହସି ହସି କହିଲେ; ଆଚ୍ଛା, ଆପଣଙ୍କ ଘରେ ମଧ୍ୟ ଏ ଜାଦୁ ମନ୍ତ୍ର କରାଯାଇଛି ବାବୁ ? ଆରେ ଆମ ଘରେ ଯଦି ଏପରି ହେବ—

ସଜ୍ଜନ ପ୍ରତି ସମସ୍ତଙ୍କର ଦୃଷ୍ଟି ପଡ଼ିଲା ଲାଲା ମୁକୁନ୍ଦୀମଲ ହସି କହିଲେ, କ'ଣ ଭାଇ ? ଘର ମାଲିକାଣୀଙ୍କର ପ୍ରଭାବ ତୁମ ଉପରେ ବି ପଡ଼ିଲାଣି । କାହାଘରକୁ ନେଇ ଯାଉଛ ?

ସଜ୍ଜନ ହସି ହସି କହିଲା, "ପଚାରନ୍ତୁ ନାହିଁ । ମୁଁ ସେଠାରେ ପହଞ୍ଚିଲା ବେଳକୁ କୁଆ ଜମାଟ ବାନ୍ଧି ବସୁଛନ୍ତି । ସେଠାରେ ଥିବା ରିଫ୍ୟୁଜି ସ୍ତ୍ରୀ ଲୋକମାନେ କହିଲେ ଏହାକୁ ଘୁଞ୍ଚାଇଦିଅ । କୁଆମାନେ ଅଇଁଠା ପକାଉଛନ୍ତି । ସେ ସମସ୍ତେ ଡରୁଥାନ୍ତି । ମୁଁ କହିଲି, ଆଣ ମୁଁ ଫିଙ୍ଗିଦେଇ ଆସିବି ।" ବାବୁ ଆପଣତ ନାସ୍ତିକ ପରି ମନେ ହେଉଛନ୍ତି ସେଇଥିପାଇଁ ଡରିଲେ ନାହିଁ । ଆମ ଏଠାରେ ତ ସକାଳୁ—"

"କ'ଣ ବାବୁ ଛେଦିଲାଲ ଏହାହିଁ ଆପଣଙ୍କ ଇଣ୍ଡିୟାନ୍ କଲ୍‌ଚର ନା ? ଯାହାକୁ ରକ୍ଷା କରିବାକୁ ଆପଣମାନେ ଏତେ ବ୍ୟସ୍ତ ?

ବାବୁ ଗୋଲାପଚାନ୍ଦଙ୍କ କଥା ଶୁଣି—ବାବୁ ରାମସ୍ୱରୂପ ହଃ ହଃ ହଃ ଶବ୍ଦକରି ବାବୁ ଛେଦାଲାଲଙ୍କୁ ବିଦ୍ରୂପ କରିବା ଭଙ୍ଗୀରେ ଚାହିଁଲେ । ସଜ୍ଜନ ମଧ୍ୟ ଅଦ୍ରୁଖିଆ

ପିରୁଲା ଉପରେ ନଜର ପକାଇ ହସିଲା । ବାବୁ ଛେଦାଲାଲ ଜୋରୁ ଦେଇ କହିଲେ, "ଆମେ ଏହା କଦାପି କହୁନାହୁଁ ଯେ ଆମ ଧର୍ମରେ ପ୍ରବେଶ କରିଥିବା ମନ୍ଦ କଥାଗୁଡ଼ିକ ଦୂର କରିବୁ ନାହିଁ । କିନ୍ତୁ ଆମର ପ୍ରକୃତ ଧର୍ମର ରକ୍ଷା ହେବା ନିତାନ୍ତ ଆବଶ୍ୟକ ।"

"ଠିକ୍‌କଥା" ଲାଲେଦଲାଲ ଚେହେରାରେ ଧର୍ମଭାବ ଖେଳିଗଲା । କହିଲେ "ସବୁ ପ୍ରକାର ପରିସ୍ଥିତିରେ ଧର୍ମ ରକ୍ଷା ହେବା ଉଚିତ । ଆମେତ ଭାଇ ଶାସ୍ତ୍ର ସମ୍ମତ କଥା କହୁଛୁ ।" ଏ ବାବୁଙ୍କର ସାହସ ଦ୍ୱାରା ଆମେ ମଧ୍ୟ ଗୁଣୀ ମନ୍ତ୍ର କରି ହୋଇଥିବା ଥଳିଆ ଉଠାଇ ଫୋପାଡ଼ି ଦେବାପାଇଁ ସାହସ ପାଇଲୁ ।

"ଶୁଣିଲେ ବାବୁ ଛେଦାଲାଲ ?" ବାବୁ ଗୋଲାପଚନ୍ଦ୍ର କୁହାଟ ମାରି କହିଲେ, "ଆମ ଭାଗ୍ୟକୁ ଏଠାରେ ଶାସ୍ତ୍ରୀଜୀ ଉପସ୍ଥିତ ଅଛନ୍ତି—କହନ୍ତୁ ଆଜ୍ଞା, କେଉଁ ଶାସ୍ତ୍ରରେ ଏପରି ଧର୍ମ ଲେଖା ହୋଇଛି ?"

ଶାସ୍ତ୍ରୀଜୀଙ୍କର ନୀଳ ଚଶମା ଉପରକୁ ଉଠିଲା, ବଡ଼ ବଡ଼ ପାକଲା ଦାଢ଼ି ଭିତରୁ ମୁରୁକି ହସି କହିଲେ, "ଲାଲେଶାସ୍ତ୍ର କଥାତ କିଛି କହୁନାହାନ୍ତି, ସେ କେବଳ ଶାସଡ଼ାଙ୍ଗ କଥା କହୁଛନ୍ତି ।"

ସମସ୍ତେ ହସି ଉଠିଲେ । ମୁକୁନ୍ଦୀଲାଲ୍‌ର ଧୂଆଁଖିଆ ଦାନ୍ତ ହଃ ହଃ ହଃ କରି କହି ଉଠିଲା—ବାଃ ମହାରାଜ—ବଢ଼ିଆ ଅର୍ଥ ବାହାର କଲେ । ହଃ ହଃ ହଃ;

ଲାଲର ଦଲାଲ୍ କିଛି ଆଶ୍ଚର୍ଯ୍ୟ ଓ ଅପମାନିତ ହେଲାପରି ଠିଆ ହୋଇ ରହିଲେ । ବାବୁ ଛେଦାଲାଲ ଦୁଇ ଆଣ୍ଠୁକୁ ହାତରେ ଭିଡ଼ି ଧରି ବସି ଥାଆନ୍ତି । ତାଙ୍କ ଆଖି ଡୋଳାରେ ଜୟ ପରାଜୟର ତୀକ୍ଷ୍ଣ ଗ୍ରହଣୀ ହୀରାପରି ଚକ୍ ଚକ୍ କରୁଥାଏ, ବାକି ଅଂଶ ସ୍ଥିର ଥାଏ । ବାବୁ ଗୋଲାପଚନ୍ଦ୍ର ଓ ବାବୁ ରାମସ୍ୱରୂପ ଦୁହିଁଙ୍କର ଚେହେରା ନିଜ ପକ୍ଷର ପ୍ରବଳତା ଅନୁଭବ କରି ଚକ୍ ଚକ୍ କରୁଥାଏ । ଶାସ୍ତ୍ରୀଜୀ ଲାଲେଙ୍କ ଆଡ଼କୁ ଚାହିଁ କହିଲେ "ଆମେ ତୁମର ଉଚ୍ଚାରଣ ଦୋଷକୁ ଥଟ୍ଟା କରି ଉଡ଼େଇ ନେଇନୁ ଭାଇ । କିଛି ମନେ ! ତୁମ କଥାର ବଢ଼ିଆ ଅର୍ଥ ବାହାରି ପଡ଼ିଲା । ଏ ଦେଶରେ ଗୋଟିଏ ଧର୍ମ ତ ନାହିଁ । ଅନେକ ଧର୍ମ । ଯେତେ ସେତେ ଶାଶୁ, ସେତିକି ପ୍ରକାର ଧର୍ମ । ଶାଶୁ, ଗୁରୁ, ଓ ବୋହୂ ଚେଲା କ୍ରମେ ଚଳନରେ ପରିଣତ ହେଲା ପୁରୁଷାନୁକ୍ରମେ ଯେତେ ବୋହୂ ହୋଇ ଆସିଲେ ସେତିକି ଶାଶୁ ଧର୍ମର ପ୍ରଚାର ହେଲା ।

"ହସର ସୁଅ ଛୁଟିଲା । କିନ୍ତୁ ଶାସ୍ତ୍ରୀଜୀଙ୍କର ବାକ୍ୟ ପ୍ରବାହର ଜୋରରେ ତାହା ଅସଜ୍ଜିତ ନ ହୋଇ ସମସ୍ତଙ୍କ ଚେହେରାରେ ଖେଳିଗଲା । ଶାସ୍ତ୍ରୀଜୀ କହୁଥାଆନ୍ତି "ଆଉ ବାକି ରହିଲା ଚଢ଼ିବା ତରା ହିନ୍ଦୁମାନଙ୍କ ଭିତରେ ଖ୍ରୀଷ୍ଟ ଦେବଦେବୀମାନଙ୍କର ଚର୍ଚ୍ଚା ରହିଛି । ପୀର୍ ଇଲାହୀ ଓଝା, ମଲ୍ଲ ସମସ୍ତେ ନିଜ ନିଜ ଆସନ ଜମାଇ ବସିଛନ୍ତି । ଏବେ ମୁଁ ଗୋଟିଏ ବହିରେ ଦେଖିଲି ଯେ ବମ୍ବେରେ ଗୋଟିଏ ଖ୍ରୀଷ୍ଟ ଦେବୀ ମାଉଂଟ୍ ମେରି ନାମରେ ଅଛନ୍ତି । ହିନ୍ଦୁମାନେ ତାଙ୍କୁ ମୌତମାଓ୍ୱାଲୀ ବୋଲି ପୂଜା କରୁଛନ୍ତି । ମୁସଲମାନ ଶାସନ ପ୍ରଭାବରେ ଏଠାରେ ଆଲ୍ଲୋପନିଷଦର ରଚନା ମଧ୍ୟ ହୋଇଗଲା । କେତେକ ମନ୍ତ୍ର ପ୍ରୟୋଗରେ ମୁସଲମାନଙ୍କର ପ୍ରଭାବ ପଡ଼ିଲା । ଗୋଟିଏ ଚେତ୍ରାମୀ ସମ୍ପ୍ରଦାୟ ବାହାରିଲା, ସେ ଏକ ଅଜବ ମତ ପ୍ରତିପାଦନ କଲା ଯେ ଚତୁର୍ମୁଖୀ ବ୍ରହ୍ମା କାର୍ଯ୍ୟରୁ ଇସ୍ତଫା ଦେଲେ ଓ ତାଙ୍କ ସ୍ଥାନରେ ଏକ ମୁଖ ଆଲ୍ଲା ଏବଂ ନିମୁଖ ଦଭ୍ରାୟେସୁ ଉପବିଷ୍ଟ ହେଲେ । ଏପରି ଭାବରେ ଏକ ନୂତନ ଚତୁର୍ମୁଖୀ ସୃଷ୍ଟି ସ୍ରଷ୍ଟା ସୃଷ୍ଟି କଲେ । ପରମେଶ୍ୱର ଶବ୍ଦକୁ ବିଷ୍ଣୁଙ୍କ ପର୍ଯ୍ୟାୟ ବୋଲି ଗ୍ରହଣ କଲେ ଏବଂ ଶିବ ଖୋଦାଙ୍କ ହାତରେ ସଂହାର କାର୍ଯ୍ୟ ସମର୍ପଣ କରି ଭାଙ୍ଗ ଘୋଟିବାକୁ ଚାଲିଗଲେ । ଚାରିଆଡ଼େ ହସର ସ୍ରୋତ ଛୁଟିଲା । ହସରେ ଭୋଳହୋଇ ସଜ୍ଜନ ପିତୁଳା ଥାଳିଆଟିକୁ ଚଉତରା ଉପରେ ରଖିଦେଲା । ତାକୁ ଭାରି ମଜା ଲାଗୁଥିଲା ।

ଲାଲେ ଦାଲାଲଙ୍କ ଦୃଷ୍ଟି ହଠାତ୍ ପିତୁଳା ଥାଳିଆ ଉପରେ ପଡ଼ିଲା । ତତ୍‌କ୍ଷଣ କହିଲେ "ଆହେ ବାବୁ, କ୍ଷମାକରନ୍ତୁ, ଏ ମହାବୀରଙ୍କର ସ୍ଥାନ ।"

କ୍ଷମାକରନ୍ତୁ ଆଜ୍ଞା, ଭୁଲ ହୋଇଗଲା । "କହି ଶୀଘ୍ର ଥାଳିଆଟିକୁ ଉଠାଇନେଲା ଓ ଯାଉ ଯାଉ କୈଫତ ଦେଇ କହିଲା," ମୁଁ ଏହାକୁ କୌଣସି ଛକ ଯାଗାରେ ରଖିଦେବି ଯେଉଁଠି କାହାର କିଛି ଆପତ୍ତି ନ ଥିବ । "ହଁ ହଁ, ଆଗକୁ ଯେଉଁ ଛକଟା ଅଛି, ସେହିଠାରେ ରଖି ହାତ ଧୋଇଦେବ ।"

କୁଆଖିଆ ପିତୁଳା ଥାଳିଆଟାକୁ ହାତରେ ଧରି ସେହି ରାସ୍ତାରେ ଯିବାକୁ ସଜ୍ଜନ ସଙ୍କୋଚ ବୋଧ କରୁଥିଲା । ନିଜେ ନିଜ ଦୃଷ୍ଟିରେ ହାସ୍ୟାସ୍ପଦ ହେଉଥାଏ । ଗଳିରେ ଯାଉଥିବା ଓ ଘର ଦୁଆର ମୁହଁରେ ଏବଂ ଖିଡ଼ିକିରେ ଚାହିଁଥିବା ଲୋକମାନଙ୍କ ଦୃଷ୍ଟି ତା' ପାଇଁ ବଡ଼ ଅସହ୍ୟ ହେଉଥିଲା । ଭାବିଲା, ତା' ପାଖରେ ଚାକରଟିଏ ରହିବା ନିତାନ୍ତ ଆବଶ୍ୟକ । (ସାଇ ପଡ଼ିଶା)ଙ୍କ ବ୍ୟବହାରରେ ସେ କେତେ ପର ଆପଣା ଭାବ ଅନୁଭବ କରୁଛି ।

ମହିପାଲ ଠିକ୍ କଥା କହେ, ଶାଇ ପଣ୍ଡିତ ଓ ନିଜ ଦେଶର ସମାଜକୁ ସେ ଗୋଟିଏ ଚିଡ଼ିଆଖାନା ପରି ମନେ କରେ, ନିଜକୁ ହରାଇ ସେ ତା ଭିତରେ ମିଶି ପାରୁ ନାହିଁ । କିନ୍ତୁ ଏହା ଦନକର କାମ ତ ନୁହେଁ । ସେ ମଧ୍ୟ ଏ ସମାଜରେ ପୂର୍ଣ୍ଣ ରୂପରେ ସାମିଲ ହେବାକୁ ଇଚ୍ଛା କରୁନାହିଁ । ଆମକୁ ଅହଂକାର ଏବଂ କୁସଂସ୍କାର ବିରୁଦ୍ଧରେ ଲଢ଼ିବାକୁ ହେବ । ସେ ଗୁଡ଼ିକୁ ଭଲ ଭାବରେ ବୁଝିବାକୁ ହେବ । ବର୍ତ୍ତମାନ ସମାଜର ରୂପରେଖ ବଦଳାଇ ତାର ନୂତନ ଦିଗ ଦେଖାଇବାକୁ ହେବ । ପୁଣି ମନେ ପଡ଼ିଗଲା "ଶାସ୍ତ୍ରୀଜୀଙ୍କର ବିଚାର ଧାରା କେତେ ଉନ୍ନତ ? ସେ ତାଙ୍କର ପାଦ ଛୁଇଁ ଥିଲା ।" ହଠାତ୍ ଏଇ ଚନ୍ଦ୍ରା କାହିଁକି ମନରେ ଆସିଲା । ଯାହାହେଉ, ସେ ଏହି ଜିଜର୍ଭ ଚନ୍ଦ୍ରାକୁ ସମ୍ମାନ କରନ୍ତୁ । ସେ ତାଙ୍କ ସହିତ ଦେଖା କରିବ । ମହିପାଲ୍‌ର ଧାରଣା ସବୁ ଭୁଲ୍ । ଧୀରେ ଧୀରେ ସେ ସମସ୍ତଙ୍କ ସହିତ ମିଶିଯିବ ।

ଏ କଥା ଭାବି ଭାବି ସଜ୍ଜନ ଛକ ଆଡ଼କୁ ପାଦ ବଢ଼ାଇଲା ।

# ଛଅ

ନିର୍ବାଚନର ନାମ ଚିହ୍ନ ଓ ସ୍ଲୋଗାନ, ମା ଭଉଣୀଙ୍କୁ ନେଇ ଗାଳି, ଯୌନ ବିକୃତି ନେଇ ଅଶ୍ଳୀଳ ଇଙ୍ଗିତ, ବିଡ଼ି, ଯାଦୁ ଲୋଶନ, ଅଖଣ୍ଡ ସଂକୀର୍ତ୍ତନ ସିନେମା, ମେହ ପ୍ରଦର ପ୍ରଭୃତି ରୋଗର ଔଷଧ ବିଜ୍ଞାପନ, ପାନପିକ ଇତ୍ୟାଦି ଜନ ଜୀବନର ବିଭିନ୍ନ ଭାବ ସମ୍ବଳିତ କାନ୍ଥ ସଂମ୍ବାଦ ପତ୍ରକୁ ଅତିକ୍ରମ କରି ସଜ୍ଜନ ଗଳିମୋଡ଼ ନିକଟସ୍ଥ ପାଣି କଳ ପାଖରେ ପହଞ୍ଚିଲା ।

ସାମାନାରେ ବଜାର ଆଡ଼କୁ ଯାଇଥିବା ଗଳି ଭିତରୁ ଚାରିଟା କନେଷ୍ଟବଲ୍ ବଡ଼ ଫୁର୍ତ୍ତିରେ ଆସୁଥିବାର ଦେଖାଗଲେ । ତାଙ୍କ ପଛେ ପଛେ ଭିଡ଼ ମଧ୍ୟ ଦେଖାଗଲା ପୋଲିସବାଲା ଛକ ମାନଙ୍କରେ ଡ୍ୟୁଟି କଲେ, ଥାନାରେ, ପଡ଼ିଆରେ ପ୍ୟାରେଡ୍ କଲେ । ବଡ଼ ବଡ଼ ବାହା ଘରରେ ବ୍ୟାଣ୍ଡ ବଜାଉଥିବା ବେଳେ, ଘୋଡ଼ାଗାଡ଼ି, ରିକ୍ସାବାଲାଙ୍କୁ ହାତଠାରି ଡାକିବାର ଦେଖିଲେ କିଛି ଆଶ୍ଚର୍ଯ୍ୟ ଲାଗେ ନାହିଁ କିନ୍ତୁ ଗଳି, ସଡ଼କରେ ଚାରି ଜଣିଆ ଦଳ ବାନ୍ଧି ଚାଲିଲେ, ପୋଲିସମ୍ୟାନ୍‌ର ମହତ୍ତ୍ୱ କିଛି ବିଶେଷ ଧରଣର ଜଣାପଡ଼େ । ସେ ଶାସନ ଓ ଶୃଙ୍ଖଳାର ପ୍ରତୀକ । ମନୁଷ୍ୟର ନିଜସ୍ୱ ନ୍ୟାୟ, ବୁଦ୍ଧି ଏହି ପ୍ରତୀକକୁ ନିର୍ମାଣ କରିଛି । ଏହି କଥାକୁ ସଜ୍ଜନ ବର୍ତ୍ତମାନ ବୁଝି ପାରିଲା । ପୋଲିସବାଲା ଡାହାଣ ପଟ ଗଳିରେ ରହୁଥିବା ଜାନକୀ ଶରଣ, ବର୍ମା, ପ୍ରଭୃତି ଘର ଆଡ଼କୁ ମୁହାଁଇଲେ ଯେଉଁଠାରେ ଲାଲେ ଦଲାଲ୍ ।

ସଜ୍ଜନ ହାତରେ ଥିବା ଆଳିଆ କଥା ଭୁଲିଯାଇ ପୋଲିସ ଓ ଭିଡ଼ର ଦୃଶ୍ୟରେ ନିଜକୁ ହଜାଇ ଦେଲା । ସେହି ସମୟରେ ମିଷ୍ଟର ବର୍ମା ଓ ରାଧାଶ୍ୟାମ ଆସିଲେ । ମିଷ୍ଟର ରାଧେଶ୍ୟାମ ଏହି ବର୍ଷ ବି: ଏ: ପାଶ କରିଛନ୍ତି ଏବଂ ସରକାରୀ ଚାକିରୀ ପାଇଁ ନିକଟରେ ପବ୍ଲିକ୍ ସର୍ଭିସ୍ କମିସନ୍‌ର ପରୀକ୍ଷା ମଧ୍ୟ ଦେଇଛନ୍ତି । ସେ ନିଜକୁ ଜଣେ ସୋସାଲିଷ୍ଟ୍ ଓ ଉଚ୍ଚ ଚିନ୍ତାଶୀଳ ବ୍ୟକ୍ତି ବୋଲି ମନେ କରନ୍ତି । ଥରେ ବହୁତ ଆଗରୁ ରାଧେଶ୍ୟାମ ଶଙ୍କର ଲାଲଙ୍କ ସହିତ, ସଜ୍ଜନ ସହିତ ଦେଖାକରି ଯାଇଛନ୍ତି । ତେଣୁ ଶୀଘ୍ର ଆସି ସଜ୍ଜନଙ୍କୁ ନମସ୍କାର କଲେ । ମିଷ୍ଟର ବର୍ମା ମଧ୍ୟ ବଡ଼ ଶ୍ରଦ୍ଧାରେ ହାତଯୋଡ଼ି ନମସ୍କାର କଲେ ।

ସଜ୍ଜନ ହାତରେ ଥିବା ଆଳିଆର କଥା ଟିମନେ ପଡ଼ିଗଲା । ମନ ଭିତରର ସଙ୍କୋଚ ମୃଦୁ୍ୟହାସ୍ୟର ଅଭିନୟ କଲା , କହିଲା, ଏ ସାଇରୁ ଏଇ ମୋର ପ୍ରଥମ ବିଷୟ ବନ୍ଧୁ । କିନ୍ତୁ କଥା କ'ଣ ? ଏ ଗଳିରେ ଏତେ ଭିଡ଼ ଓ ପୋଲିସ ସିପେଇ ମାନେ··

ରାଧେଶ୍ୟାମ ତତ୍‌କ୍ଷଣାତ୍ ହାତ ଉଠାଇ ଉଚ୍ଚ ସ୍ୱରରେ କହିଲି 'ସାହେବ ଜଗଦମ୍ବା ସହାୟ ବୋଲି ଜଣେ ଶିକ୍ଷକ, ଜଣେ ପର୍ଭିଟ ବଦମାସ୍"

ସଜ୍ଜନ ହାତରେ ଥିବା ଆଲୁଅ କଥା ପୁଣି ମନେ ପଡ଼ିଗଲା । କହିଲା କ୍ଷମା କରିବେ, ମୁଁ ଟିକିଏ ଏହି ଛକ ଉପରେ ଏହାକୁ ରଖିଦେଇ ଆସୁଛି ।

ମିଷ୍ଟର ବର୍ମା କହିଲେ "ଆରେ ନାହିଁ । ଏଇ ନାଳରେ ପକାଇ ଦିଅନ୍ତୁ ।"

"କେହି ଆପତ୍ତି କରିବେ ନାହିଁ" ପାଣିକଳ ପାଖରେ ଲୁଗାକାଚୁଥିବା ଜଣେ ଲୋକ ଆଡ଼କୁ ଦୃଷ୍ଟି ପକାଇ ସଜ୍ଜନ ପଚାରିଲା ।

ନାଁ ନାଁ ସାର, ନର୍ଦ୍ଦମାରେ ପକାଇ ଦିଅନ୍ତୁ । ସଜ୍ଜନ ଭଙ୍ଗା ନାଲ ସୁହଁରେ ଆଲୁଆଟି ପକାଇଦେଇ କଳ ପାଖରେ ହାତ ଧୋଇଲା । ପୁଣି ପାଖକୁ ଆସି ପଚାରିଲା, "ମୁଁ ତା'ପରେ ଘଟଣାଟା କ'ଣ ?

ମୁଁ ତାଙ୍କର ପୁତୁରା ବୋହୂ, ବିଚାରି ଯୁବାବସ୍ଥାରୁ ବିଧବା, ତିନି ବର୍ଷ ପୂର୍ବେ ତାର ବାହାଘର ହୋଇଥିଲା କିନ୍ତୁ ବିବାହର ମାତ୍ର ବର୍ଷେ, ଛମାସ ଭିତରେ ତା'ର ସ୍ୱାମୀର ମୃତ୍ୟୁହେଲା । ମାଷ୍ଟର ଜଗଦମ୍ବା ସହାୟଙ୍କ ଘରେ ସେ ଆଶ୍ରୟ ନେଇଥିବାରୁ ସେ ତା' ଉପରେ ସବୁପ୍ରକାର ଆଧିପତ୍ୟ ବିସ୍ତାର କଲେ । ଆମ ସମାଜରେ ଏଇତ ଟ୍ରାଜେଡ଼ି, ହାଃ ।"

କହୁ କହୁ ରାଧେଶ୍ୟାମ କ୍ରୋଧ ମିଶ୍ରିତ କରୁଣାରେ ଭାବାବିଷ୍ଟ ହେଲେ । ସଜ୍ଜନ ପଚାରିଲା "ଏ ଫେର କ'ଣ ହେଲା ?"

ମିଷ୍ଟର ବର୍ମା କଥାର ଖିଅ ଧରି କହିଲେ "କାଲି ରାତିରେ ତା'ର ପୁଅଟିଏ ହେଲା । ଇଏ ତାର ବେକ ମୋଡ଼ି ତାକୁ କମ୍ପାନୀ ବାଗର ନାଳରେ ପକାଇଦେଲେ ଆଜ ସକାଳୁ ପୋଲିସ ଜାଣିବାରୁ ଏଠାରେ ହାଜର ।"

"କିନ୍ତୁ ପୋଲିସ୍‌କୁ କିଏ ଖବର ଦେଲା ଯେ—" ସଜ୍ଜନ ପଚାରିଲା । ବାବୁ ରାଧେଶ୍ୟାମ ଭୃକୁଞ୍ଚନ କରି କହିଲେ, ଏ ଦେଶର ଘରେ ଭେଦୁଆ ତ ଲଙ୍କା ବିନାଶ କରାଇଥିଲା । ମହାଶୟ ଏ ସେହି ଟୋଲା ଶାଲ ଗ୍ରାମର କୃତାର୍ଥ । ଜଗଦମ୍ବା ସହାୟର ଟିଅ କମ୍ୟୁନିଷ୍ଟ । ତାଙ୍କ ଘରେ ବର୍ତ୍ତମାନ ପାର୍ଟିର ଡ୍ରାମା ରିହେଲ୍‌ସାଲ ଚାଲିଛି । ଶାଳଗ୍ରାମ ନିଜ ଘରେ ସାପ କାହିଁକି ? ଏହି ଓ୍ୱାର୍ଡର ଓ୍ୱାଡ଼ମେମ୍ବରଙ୍କ ଘରର ଟିକିନିଖି ଖବର ତା ପାଖେ ପହଞ୍ଚିଯାଏ । ସେଥିରେ ପୁଣି ନିଜର ଶତ୍ରୁ, ଘରର

ଭେଦ ତାକୁ ପୁଣି ଅଛପା ରହିବ ? ଏଇତ କଂଗ୍ରେସର ଗେଷ୍ଟାପୋ ବାବା, ଆସନ୍ତା ଇଲେକ୍‌ସନରେ ଯଦି ଜନତା ଏହି ଜାଲକୁ ନ ଛିଣ୍ଡାଇଲାତ, ମୁଁ କହିବ ଯେ—

ଗଳିରେ ବେଶ୍ ଗହଳ ଚହଳ ଆରମ୍ଭ ହୋଇ ଯାଇଥାଏ । ପାଣି କଳକୁ ଗୋଟାଏ ମିନଟ୍ ହେଲେ ବିଶ୍ରାମ ନାହିଁ । ଗଳି ଭିତରୁ ଆସୁଥିବା ମିଷ୍ଟର ବର୍ମାଙ୍କର କେହି ଜଣେ ଚାକ୍ଷୁଲୋକ କହିଲ "ସେ ନିଆଁରେ ପୋଡ଼ି ହୋଇ ଯାଇଛି, ବର୍ମାଜୀ ।"

"ହେଁ କିଏ ? ସଜ୍ଜନ, ରାଧେଶ୍ୟାମ ଓ ବର୍ମା ସମସ୍ତଙ୍କର ଏହି ପ୍ରଶ୍ନ ।" ସେହି ସ୍ତ୍ରୀ ଲୋକ, ତାକୁ ଡାକ୍ତର ମାଇନା ପାଇଁ ଡକରା ହେଲା ମାତ୍ରେ ସେ କେଉଁ ଛଟକରେ ଉପରେ ବେଷ୍ଟେଇ ଘରକୁ ଯାଇ ପିପିରେ୍‌, କିରାସିନୀ ତେଲ ଯାହା କିଛି ପାଇଲା ଆଉ ବେଶି ଶୁଣି କଣ କରିବେ । ଇଏ ବଦମାସ, ଦୁଷ୍ଟ ଜଗଦମ୍ବା ସହାୟକୁ ଫାସି ହେବା ଉଚିତ, ତାର ସ୍ତ୍ରୀ, ତାର ବିଧବା ବଡ଼ ଭାଉଜ ଅର୍ଥାତ ଏହି ବିଧବାଟିର ଶାଶୁ ।

"କିନ୍ତୁ ସେହି ସ୍ତ୍ରୀ ଲୋକଟିର କ'ଣ ହେଲା ?" ସଜ୍ଜନ ଟିକିଏ ଜୋର୍ ଦେଇ କହିଲା । ସେ ଅଳ୍ପ କ୍ଷଣରେ ଜଳି ଉଠିଲା, ଘରଆଡ଼ ଧୂଆଁ ଗନ୍ଧ ବ୍ୟାପିଗଲା । ପୋଲିସ ଦୁଆର ଭାଙ୍ଗି ଦେଲେ ପଶୁ ପଶୁ ସେ ଅଚେତା । ପୋଡ଼ିଯାଇ ମାଂସ ପିଣ୍ଡୁଳା ହୋଇ ସାରିଥିଲା । ତା'ର ସବୁ ଲୁଗାପଟା ଜଳିଯିବାରୁ ଏକଦମ୍ ଉଲଗ୍ନ—"

"ଆପଣ ନିଜେ ଦେଖିଛନ୍ତି ? ସଜ୍ଜନ ପଚାରିଲା ।"

ହଁ ମୁଁ ନିଜେତ—କଥାଟି ଶୁଣାଇଲେ ଜଣେ ଝେଟା ଓକିଲ ନନ୍ଦନ । ସଜ୍ଜନ ବୁଝିପାରିଲା ଯେ କଥାଟି ଶୁଣାଇଲାବାଲା ସେହି ସ୍ତ୍ରୀ ଲୋକ ବିଷୟରେ ବଖାଣିବାକୁ ନିଜ ଭିତରେ ଏକ ଗୋପନ ଆନନ୍ଦ ପାଉଥିଲେ । ଏ କଥା ଭାରି ଖରାପ ଲାଗୁଥିଲା । ସେ ରାଧେଶ୍ୟାମକୁ କହିଲା "ଆପଣ ଥରେ ମତେ ସେଠାକୁ ନେଇ ଚାଲନ୍ତୁ ।"

"ହଁ, ହଁ, ରାଧେଶ୍ୟାମଙ୍କ ଆଗରୁ ବର୍ମା ହଁ ଭରିଲେ । ରାଧେଶ୍ୟାମ ମଧ୍ୟ ରାଜି ହୋଇଗଲେ ।"

ରାଧେଶ୍ୟାମ ଯାଉ ଯାଉ କହିଲେ । ସେଠାରେତ ଖୁବ୍ ଭିଡ଼ ହୋଇଥିବ, ଆପଣ କ'ଣ ଦେଖି ପାରିବେ ?

"କିଛି ନାହିଁ । ଲୋକମାନଙ୍କର ହାବ ଭାବ ହେଲେ ଟିକିଏ ଦେଖିବା । ତାଙ୍କର କଥା ଶୁଣିବା । ସଜ୍ଜନ କହିଲା ।

ଅନ୍ଧାରିଆ ଏବଂ ଅପରିଷ୍କାର ଅଣଓସାରିଆ ଗଳି । ସେଥିରେ ଅଣ ନିଶ୍ୱାସି ହୋଇ ରହୁଥିବା ଲୋକମାନଙ୍କ ଜୀବନ । ସେ ସମ୍ପର୍କରେ ରାଧେଶ୍ୟାମଙ୍କ ଗପ, ମହାବୀରଜୀଙ୍କର ସିନ୍ଦୂର ଆସ୍ଥାନ, ଧଉଳା ହୋଇଥିବା ସୈୟଦ ବାବାଙ୍କ ଆସ୍ଥାନ, ଗୁଲି ଓ ନଟୁ ଖେଳୁଥିବା ଧୂଳି ଧୂସରିତ ପିଲାମାନଙ୍କୁ ଦେଖିଦେଖି ଗାଈ ଓ ରାସ୍ତାରେ ଗୁଲୁଥିବା ଲୋକମାନଙ୍କୁ ଆଡ଼େଇ ତିନି ଗୁରିଟା ଛୋଟ ଛୋଟ ଗଳି ପାରି ହୋଇ ସଜ୍ଜନ, ଭିଡ଼ ଜମିଥିବା ଗୋଟିଏ ଖୋଲା ଯାଗାରେ ପହଞ୍ଚିଲେ ।

ସାମ୍ନାରେ ପୁରୁଣା ବଡ଼ ଘରଟିଏ । ତାର ଦୁଆର ମୁହଁରେ ପୋଲିସ ଠିଆ ହୋଇ ଭିଡ଼କୁ ନିୟନ୍ତ୍ରଣ କରୁଥାଆନ୍ତି । ବାଁ କଡ଼ରେ ସଡ଼କକୁ ଲାଗିଥିବା ଗୋଟିଏ ଖୋଲା ପଡ଼ିଆ ଅଛି । ସେହିଠାରେ ପୋଲିସର ପିକ୍ଅପ୍ ମଟରଗାଡ଼ି ଠିଆ ହୋଇଥିବାର ଦେଖାଗଲା । ପଡ଼ିଆଟିରେ ଅନେକ ଲୋକ ଜମି ଥାଆନ୍ତି ।

ଠିକ୍ ଏହି ସମୟରେ ଦୁଆର ମୁହଁରୁ ଦାରୋଗା ବାବୁ ବାହାରି ଜଣେ ସିପେଇକୁ କ'ଣ କହିଲେ । ସେ ପିକ୍ଅପ୍ ଆଡ଼କୁ ଦୌଡ଼ିଗଲା । ଦାରୋଗାବାବୁ ଲୋକମାନଙ୍କୁ ଅନାଇ ଗର୍ଜି ଉଠିଲେ । ଏଠାରେ କ'ଣ ମିଠେଇ ବଣ୍ଟା ହେଉଛି ? ଯାଆନ୍ତୁ ଏଠାରୁ ? ଆଃରେ ଆପଣ ମଧ୍ୟ ଆସିଛନ୍ତି ? ସଜ୍ଜନଙ୍କୁ ଦେଖି ଦାରୋଗା ବାବୁ କହିଲେ ।

ସଜ୍ଜନ ପାଖକୁ ଯାଇ ତାଙ୍କ ସହିତ କରମର୍ଦ୍ଦନ କଲେ (ହାତ ମିଳାଇଲେ) ରାଧେଶ୍ୟାମ ଓ ବର୍ମାବାବୁ ମଧ୍ୟ ତା ପଛେ ପଛେ ସେଠାରେ ପହଞ୍ଚିଗଲେ । ସଜ୍ଜନ ପଚାରିଲେ "କ'ଣ ହୋଇଛି ?"

ଦାରୋଗାବାବୁ କହିଲେ—ନିୟମ ଅନୁସାରେ ତାଙ୍କୁ ଡାକ୍ତରଖାନାରେ ଭର୍ତ୍ତି କରି ଦେବାକୁ ହେବ କିନ୍ତୁ ସେ ବଞ୍ଚିବା ଅସମ୍ଭବ ।

"ବହୁତ ବେଶୀ ପୋଡ଼ି ଯାଇଛି ?"

"ଆଜ୍ଞା, ହଁ, ଜଳିଛି ଯାହା କିନ୍ତୁ ତାର ଭୀଷଣ ଶକ୍ ହୋଇଛି । ବର୍ତ୍ତମାନ ତାକୁ ଇଞ୍ଜେକ୍ସନ୍ ଫୋଡ଼ା ଚାଲିଛି କିନ୍ତୁ ମନେ ହେଉଛି ଯେ ସେ ସିଙ୍କ କରିଯିବ;" କହି ଦାରୋଗା ବାବୁ ଭିତରକୁ ଗଲେ, ସଜ୍ଜନ ଅଟକିଯାଇ କହିଲେ, ମୁଁ—"

"ଆସନ୍ତୁ ଆସନ୍ତୁ" ଦାରୋଗା ବାବୁ ତାଙ୍କ ହାତ ଧରି ନେଇଗଲେ । ଫାଟକ ଭିତରେ ଗୋଟିଏ ଛୋଟ ହତାଟିରେ ଛଅକୋଠି ଘର ଅଛି । ମାଷ୍ଟର ଜଗଦମ୍ବା ସହାୟକଙ୍କ ପୂର୍ବ ପୁରୁଷଙ୍କ ବୈଭବ ବର୍ତ୍ତମାନ ଧ୍ୱଂସପ୍ରାପ୍ତ । ଇଟା ଜୋଡ଼

ଗୁଡ଼ିକ ମେଳା ହୋଇଗଲାଣି । ସାମନା ଘରେ ସ୍ୱୟଂ ଘର ମାଲିକ ରହନ୍ତି । ଖୋଲାଣ ଥିବା ବାରଣ୍ଡା, ତା ବାଁ କଡ଼କୁ ଯାଇଁଲା କବାଟଥିବା ସଦର ଦୁଆର ଓ ଡାହାଣ କଡ଼ରେ ବଡ଼ ହଲ୍ ଘର ।

ବାରଣ୍ଡା ଓ ଘର ଭିତରେ ପୂରା ପୋଲିସ୍ । ସାରା ଘରଟା ପୋଲିସ ଅକ୍ତିଆରରେ । ପୋଲିସମାନେ ଏହି ଅବସରରେ ହିଁ ଅଚି କମ୍ୟୁନିଷ୍ଟ ବୋଲି ସନ୍ଦେହ କରି ଘରର ପୂରା ଖାନ୍‌ତଲାସ୍ କରିନେଲେ । କୌଣସି ବିଶେଷ ଜିନିଷର ସନ୍ଧାନ ପାଇପାରିଲେ ନାହିଁ ।

ଏମାନେ ଘରୁ ବାହାରିବା ସମୟରେ ଜଣେ ପୋଲିସବାଲା ପ୍ରବେଶ କଲା । ଦାରୋଗା ବାବୁ ତାକୁ ଦେଖି ବାରଣ୍ଡାରେ ଠିଆ ହୋଇଗଲେ । କନେଷ୍ଟବଲ୍ ପାଖକୁ ଆସି ସଲାମ୍ ପକାଇ କହିଲା । ହଜୁର, ଥାନାକୁ ଓ୍ୟାରଲେସ୍ କରି ଦିଆ ହୋଇଛି । ମିର୍ଜା ଆଟେଣ୍ଡ କରୁଥିଲେ । ସେ ମେସେଜ୍ ଦେଲେ ଯେ ଡାକ୍ତରଖାନା ଗାଡ଼ି ପଠାଉଛନ୍ତି । "ଠିକ୍‌ଅଛି" ଦାରୋଗା ବାବୁ କହିଲେ "ଆଉ ଶୁଣ, ଦୁଇଖଣ୍ଡ ଚଉକି ଆଣି ଖଟରେ ପକାଇ ଦିଅ ।"

ସିପେଇଟି ହଲ୍ ଆଡ଼କୁ ଚାଲିଗଲା, ଦାରୋଗା ବାବୁ ସଜ୍ଜନକୁ କହିଲେ "ଆଜି ସକାଳୁ ଗୋଟିଏ ଚିକିଏ ଚୁଙ୍ଗା ପିଇନାହିଁ । ଆପଣ ବିଶ୍ୱାସ କରନ୍ତୁ । ଇଏ ଶଳା ପୋଲିସ୍ ଚାକିରି, ସକାଳୁ ଉଠି ଟିକିଏ ଖବର କାଗଜ ଉପରେ ଆଖି ପକାଇଥିଲି —ଆପଣଙ୍କ ଆର୍ଟିକିଲ୍ ଉପରେ ମଧ୍ୟ ଆଖି ବୁଲାଉଥିଲି ଶାଳଗ୍ରାମ ବାବୁ ଆସି ପହଞ୍ଚି ଗଲେ । ଇଲେକସନ୍ ସମ୍ପର୍କରେ ତାଙ୍କର କଣ ଜରୁରି କଥା । ସେତିକି- ବେଳେ ଲାଶର ରିପୋର୍ଟ ଆସିଲା । ବାବୁ ଶାଳଗ୍ରାମ କହିଲେ ଯେ ସନ୍ଦେହ କରି ଜଗଦମ୍ବା ସହାୟର ଘର ଘେରାଉ କରିଦିଅ । ତାଙ୍କର ଧାରଣା ଥିଲା ଯେ ଏହି ଘରେ କମ୍ୟୁନିଷ୍ଟମାନଙ୍କର ପ୍ରଚୁର ସାମଗ୍ରୀ କରୁଥିବ । ତା ପରେତ ଆପଣ ବୁଝି ପାରିବେ—କି ଚା, କି ଜଳଖିଆ ।"

ଚଉକି ପଡ଼ିଲା, ବସୁ ବସୁ ସଜ୍ଜନ ତା ପକେଟରୁ ସିଗାରେଟ୍ କେସ୍‌ଟି ବାହାର କଲା । ହାତି ଦାନ୍ତର ଏହି ଗୋ ପୁରମ୍ ଡ଼ିଜାଇନ୍‌ର ସିଗାରେଟ୍ କେସ୍‌ଟି ସେ ମଣ୍ଟେଶ୍ୱରରୁ ଅର୍ଡର ଦେଇ ମଗାଇଥିଲା । ତା ମଝିରେ ଗୋଟିଏ ସୁନ୍ଦର ନଟରାଜ ମୂର୍ତ୍ତି ଖୋଦିତ ହୋଇଥିଲା । ସଜ୍ଜନ ସିଗାରେଟ କେଶ୍ ବାହାର କରୁ କରୁ ଶୁକ୍ଳଜୀ ତା ହାତରୁ ସେଇଟା ନେଇଗଲେ ଓ କିଛି ସମୟ ଦେଖି ସାରିବା ପରେ ତାହା ଖୋଲି ସଜ୍ଜନଙ୍କ ହାତକୁ ବଢ଼ାଇଦେଇ କହିଲେ "ମୈଥିଲୀଶରଣଙ୍କର

ସେହି ଲାଇନ୍ କଣଟି ? ହାଇସ୍କୁଲରେ ପଢିଥିଲୁ ତୁମଠାରୁ ପାଇଥିବା ବସ୍ତୁ, ତୁମକୁ କିପରି ଅର୍ପଣ କରିବୁ ?"

ସଜ୍ଜନ ଗୋଟିଏ ସିଗାରେଟ୍ ବାହାର କଲି ଏବଂ ପକେଟରୁ ସିଗାରେଟ ଲାଇଟର ମଧ୍ୟ ଶୁକ୍ଳାଜୀ ନିଜ ପାଇଁ ଖଣ୍ଡିଏ ସିଗାରେଟ ବାହାର କରି, କେଶ୍‌ଟାକୁ ଭଲରୂପେ ବନ୍ଦକରି ତାର କାରୁକାର୍ଯ୍ୟକୁ ନିରେଖି ଦେଖି କହିଲେ "ଆପଣ ଆର୍ଟିଷ୍ଟମାନେ କେଜାଣି କେଉଁଠାରୁ ଏପରି ସୁନ୍ଦର ସୁନ୍ଦର ଜିନିଷ ଯୋଗାଡ଼ କରନ୍ତି ।

"ଯେ ଯାହା ଖୋଜେ ସେ ତାହା ପାଏ । ସିଗାରେଟ ଜଳାଇ ସଜ୍ଜନ କହିଲି ।"

ଶୁକ୍ଳାଜୀ ଦୁଆର ପାଖରେ ଠିଆ ହୋଇଥିବା କନେଷ୍ଟବଲକୁ ଡାକିଲେ "ଶେର୍ ଅଲି" ।

"ଆଜ୍ଞା ହଜୁର କହି ଶେର୍ ଅଲି ପାଖକୁ ଆସିଲି ।"

"ଆଚ୍ଛା ଭାଇ ଟିକିଏ ଯାଇ ଭିତରେ ଦେଖତ ସେ ଶାଳୀ ମଲାଣିକି ନାହିଁ" ।

ଶେର୍ ଅଲି ଚାଲି ଗଲି । ସଜ୍ଜନ କହିଲି "କହିଲି ଚାକିରିରେ ମଣିଷର ଦୟା ମାୟା ମଧ୍ୟ ମରିଯାଏ ।"

"ଆରେ ବାବୁ କ'ଣ କରିବ, ପ୍ରତିଦିନ ଏହିପରି କେତେ ତାମ୍‌ସା ଦେଖିବାକୁ ପଡ଼ୁଛି । ସଜ୍ଜନ ବାବୁ, କେବେ ନା କେବେ ଆପଣ ମାନିବେ ଯେ, ଏହି ପୋଲିସଚାକିରିରେ ରହି ଏପରି ମନେ ହୁଏ ଯେ ମଣିଷ ଭିତରେ ମନୁଷ୍ୟତା ବୋଲି କିଛି ଜିନିଷ ନାହିଁ । ପୋଲିସ ଡାଏରି ଉଠାଇ ଦେଖିଲେ ବୁଝି ପାରିବେ ଯେ ଏହାହିଁ ବାସ୍ତବିକ ସତ୍ୟ, ମନ୍ଦିର, ମସ୍‌ଜିଦ୍ ଓ ଅନ୍ୟାନ୍ୟ ଯାହା କିଛି ଧର୍ମ କର୍ମ ସବୁ ରହିଛି ସେ ସବୁ କେବଳ ମିଥ୍ୟା । ହଜାର ହଜାର ବର୍ଷରୁ ଏ ସବୁ ମଣିଷ ଉପରେ କୌଣସି ପ୍ରଭାବ ବିସ୍ତାର କରି ପାରିନାହିଁ ।...ହୁଁ, କ'ଣ ?"

ଦାରୋଗା ବାବୁଙ୍କ କଥାବାର୍ତ୍ତା ହେବା ଦେଖି ଶେର୍ ଅଲି ଭିତରୁ ଆସି ଚୁପ୍‌କରି ଠିଆ ହେଲି । ଦାରୋଗା ବାବୁ ପଚ୍ଚରିବାରୁ କହିଲି" ଡାକ୍ତର ବାବୁ କହୁଛନ୍ତି ଯେ ବର୍ତ୍ତମାନ କିଛି କହି ହେବ ନାହିଁ ।"

" ମାର ପକାଇଲା ଶାଳୀ—ଆଜିବ ଉପାସ ରଖିବ ବଦମାସ "

"ଗାଳି ଦେବାର ଅଧିକାର ତୁମକୁ କିଏ ଦେଲା ?"

ପଛପଟେ ହଲର ଦୁଆର ମୁହଁରେ ଠିଆ ହୋଇଥିବା ଜଣେ ଗୌରବର୍ଣ୍ଣର ଯୁବତୀ ପଚାରିଲେ ।

ଶୁଭ୍ରାଙ୍ଗୀ ଭ୍ରୂକୁଞ୍ଚନ କରି ପଛ ଆଡ଼କୁ ବୁଲି ଏପରି ଚାହିଁଲେ ଯେ ମନେ ହେଲା ତାଙ୍କର ଅଧିକାର ଉପରେ ଆକ୍ଷେପ କରାଯାଇଛି । ସଜ୍ଜନ ବସି ଥିବା ଚଉକିରୁ ସେହି ମହିଳାଟିର ଚେହେରା ଠିକ୍ ସିଧା ସଳଖ ଦେଖାଯାଉଥିଲା । ସଜ୍ଜନ ଏହି ଚେହେରାଟିକୁ କେତେ ଥର ଦୁଇ ଚାରି ଜଣଙ୍କ ମେଳରେ ଦେଖିଥିଲା । ତା ସହିତ କଥାବାର୍ତ୍ତା କେବେ ହୋଇଥିଲା ମନେ ମନେ ପଡ଼ିଲା, କିନ୍ତୁ ପରିଚୟ ନ ଥିଲା । ସେହି ଯୁବତୀର ଗୋଲ୍ ଗାଲ୍ ଚେହେରା ଏବଂ ଆଖିରେ ଏକ ଆବେଗର ତେଜ ଝଲସୁଥାଏ ।

ଦାରୋଗା ବାବୁ ମୁରୁକି ହସି କହିଲେ "କ'ଣ କରିବା ସାହେବ, ପ୍ରଥମେ ଆମର ଇଂରେଜ ମାଲିକମାନେ ଗାଳି ଦେଉଥିଲେ । ବର୍ତ୍ତମାନ ଏ ନୂଆ କଂଗ୍ରେସିଆମାନେ ମଧ୍ୟ ଗାଳି ଦେବାରେ ବେଶ୍ ଧୁରନ୍ଧର । କିନ୍ତୁ ଯେତେବେଳେ ଆପଣମାନଙ୍କର ଅର୍ଥାତ୍ କମ୍ୟୁନିଷ୍ଟ ମାନଙ୍କର ରାଜତ୍ୱ ହେବ, ସେତେବେଳେ ଅବା ଏ ଗାଳି ଅଚଳ ହେବ ।

ସେହି ଯୁବତୀଟି ପରିଚିତ ଦୃଷ୍ଟିରେ ସଜ୍ଜନ ଆଡ଼କୁ ଅନାଇ ଦମ୍ଭର ସହିତ ଦାରୋଗା ବାବୁଙ୍କୁ କହିଲା ।

"ସେତେବେଳେ ଆପଣମାନଙ୍କୁ ପିଟି ପିଟି ଏହି ଅଭ୍ୟାସ ଛଡ଼ାଇ ଦିଆଯିବ ।" କହି ହଲ ଭିତରକୁ ଚାଲିଗଲା ।

ଦାରୋଗା ବାବୁ ନିଜର ରାଗ ସମ୍ଭାଳି ସଜ୍ଜନକୁ ଚାହିଁ ମୁରୁକି ହସି ଜୋରରେ କହିଲେ "ଆରେ ଏଇଥି ପାଇଁ ତ ଆମେ କମ୍ୟୁନିଷ୍ଟ ରାଜୁତି ଆସିବାକୁ ଦେବୁ ନାହିଁ, କି—ଓ ସାଇବ ?"

ସଜ୍ଜନ ଆସ୍ତେ ଆସ୍ତେ କହିଲା "କ୍ଷମା କରିବେ" ଏପରି ଗାଳିଦେବା ଅଭ୍ୟାସ ମତେ ବି ଖରାପ ଲାଗୁ ଛି ।

ହଁ, ଏହା ଭଲ ନୁହେଁ ଅବଶ୍ୟ କିନ୍ତୁ କ'ଣ କରାଯିବ । ଏ ପୋଲିସ ବିଭାଗ ଗାଳି ଦେବା ବିନା କାମ କରି ପାରିବ ନାହିଁ ।"

ବାହାରରୁ କନେଷ୍ଟବଲ୍ ଆସି କହିଲା "ଡାକ୍ତରଖାନା ଗାଡ଼ି ଆସିଲାଣି ହଜୁର୍"

ଦାରୋଗା କହିଲେ " ଆସିଲାଣି ତ କ'ଣ କରିବ ? ଡାକ୍ତରଙ୍କୁ ପଚାର, ଯେ, ରୋଗୀ ଯିବା ଅବସ୍ଥାରେ ଅଛିତ ? ଆଚ୍ଛା ରହ, ମୁଁ ନିଜେ ତାଙ୍କ ସହିତ କଥାବାର୍ତ୍ତା କରି ଆସେ । ଆପଣ ଏହିଠାରେ ଟିକିଏ ବସି ଥାଆନ୍ତୁ, ସଜ୍ଜନ ବାବୁ ।"

"ଆଜ୍ଞା ହଁ, ବସିଛି—ବରଂ ମୁଁ ଚାଲିଯାଏ ।

"ଆରେ ରହନ୍ତୁନା, ମୁଁ ଏହିକ୍ଷଣି ଆସୁଛି"

ଦାରୋଗା ବାବୁ ଭିତରକୁ ଗଲେ, କନେଷ୍ଟବଲ ମଧ୍ୟ ତାଙ୍କ ପଛେ ପଛେ ଗଲା ।

ସଜ୍ଜନ ନିଜ ପକେଟରୁ ସିଗାରେଟ୍ କେଶ୍‌ଟି ବାହାର କଲା । ସେ ଭାବିଲା, ଅଯଥା ଗୋଟାଏ ଝଂଜଟ୍‌ରେ ପଡ଼ିଗଲା । ପୁଣି ଭାବିଲା, ରୋଗୀ କିପରି ଅବସ୍ଥାରେ ଅଛି । ନିଜ ଦେହରେ ନିଆଁ ଲଗାଇବାକୁ ସେ ପଛଘୁଞ୍ଚା ଦେଲାନାହିଁ । ଓଃ, କି ଭୟଙ୍କର ମୃତ୍ୟୁ ! ଏହି କଳ୍ପନାରେ ସଜ୍ଜନର ଲୋମ ଟାଙ୍କୁରି ଉଠିଲା ।

ସେ ନାରୀ ଯୁବତୀଟି ପୁଣି ଆସିଲା ଓ ଖାଲି ଚଉକି ପାଖରେ ଠିଆ ହୋଇଗଲା; ସଜ୍ଜନ ଅତି ଭଦ୍ର ଭାବରେ ଉଠି ଠିଆହେଲା "ଆସନ୍ତୁ ।"

"ଆପଣ ଏଠାକୁ କ'ଣ ପାଇଁ ଆସିଛନ୍ତି ?"

ଇଂରାଜୀରେ ପଚରାଯାଇଥିବା ଏହି ରୁକ୍ଷ ପ୍ରଶ୍ନକୁ ଶୁଣି ସଜ୍ଜନ ଚମକିପଡ଼ିଲା । ତା' ଠାରୁ ଉତ୍ତର ପାଇବା ପୂର୍ବରୁ ହିଁ ଯୁବତୀ ପୁଣି ପ୍ରଶ୍ନକଲା ।

"ଆପଣ ପୋଲିସବାଲାଙ୍କର ସାଥି କେଉଁ ଦିନଠାରୁ ହେଲେଣି ? କ୍ଷମା କରିବେ, ମୁଁ ବ୍ଲଣ୍ଟ୍ ପ୍ରଶ୍ନ ଗୁଡ଼ିକ ପଚାରୁଛି ।"

ସଜ୍ଜନ ଗମ୍ଭୀର ସ୍ୱରରେ ଉତ୍ତର ଦେଲା । ଅନେକ ଲୋକଙ୍କଠାରୁ ଖବର ଶୁଣି ମୁଁ ଆସିଥିଲି । ଏ ମିଷ୍ଟର ଶୁକ୍ଳା ମତେ ଭିତରକୁ ନେଇ ଆସିଛନ୍ତି । ଏହାଙ୍କ ସହିତ ମୋର ପୂର୍ବରୁ ଜଣାଶୁଣା ଥିଲା ।

ତେବେ ପୋଲିସ ସହିତ ପରିଚିତ ହେବାଇ ଆପଣ କାହାର କ'ଣ ଲାଭ ଉଠାଇବେ ? ସ୍ୱରଟା ଅତ୍ୟନ୍ତ ରୁକ୍ଷ ଏବଂ ତୀକ୍ଷ୍ଣ ଥିଲା ।

ସଜ୍ଜନ ମୁଣ୍ଡପୋତି କହିଲା "ମୋର ଭୁଲହେଲା, କ୍ଷମାକରନ୍ତୁ, ମୁଁ ଯାଉଛି ।"

ମୁଁ ଆପଣଙ୍କୁ ଯିବାପାଇଁ କହୁନାହିଁ, ଯୁବତୀର ସ୍ୱର ନରମ ହୋଇ ଆସିଲା, ଅନ୍ୟ ସମୟରେ ଆସିଥିଲେ ମୁଁ ନିଜର ସୌଭାଗ୍ୟ ବୋଲି ମନେ କରିଥାଆନ୍ତି— ଆପଣ କ'ଣ ଜାଣିଛନ୍ତି ଯେ ଅପରାଧୀ ମୋର ପିତା ଏବଂ ମୋର ଭାଉଜ—"

ମୁଁ ଏହା ଜାଣି ନଥିଲି । ପ୍ରକୃତରେ ଆପଣ ଖରାପ ଭାବବେ ନାହିଁ ମୁଁ ଆପଣଙ୍କୁ ମଧ୍ୟ ଜାଣେନାହିଁ । ହଁ ଏମିତି କେତେଥର ଦେଖିଛି । ଆପଣ ବୋଧହୁଏ କମ୍ୟୁନିଷ୍ଟ ପାର୍ଟିରେ କାମ କରନ୍ତି ।

ନା, ଆଜ୍ଞା, ମୁଁ କମ୍ୟୁନିଷ୍ଟ ନୁହେଁ । କିନ୍ତୁ ପାର୍ଟିବାଲାଙ୍କ ସହିତ ମୋର ସମ୍ପର୍କ ଅଛି । ଯୁବତୀ ଉତ୍ତର ଦେଲା ।

"ଆପଣ ବୋଧହୁଏ ଜାଣନ୍ତି ନାହିଁ ଯେ ଆପଣଙ୍କ ଯୋଗୁଁ ହିଁ ଆପଣଙ୍କ ଘରେ ଏ ବିପଦ ପହଞ୍ଚିଛି । ସଜ୍ଜନ କହିଲା ।"

ଯୁବତୀ ତା' ଆଡ଼କୁ ଅନାଇଲା । ସଜ୍ଜନ କହିଲା—ଆପଣଙ୍କ ଘରେ କମ୍ୟୁନିଷ୍ଟ ପାର୍ଟିର ଲୋକେ ଜମା ହୁଅନ୍ତି । ଏହି କାରଣରୁ ପୋଲିସ ସବୁବେଳେ ନଜର ରଖିଥାଏ, ଯାହା ଦ୍ୱାରା ଆପଣଙ୍କ ଘରର ଅପରାଧ ।

ଅପରାଧ କାହାର ? ମୋ ବାପାଙ୍କର—ନା—ଭାଉଜର ?

ଏହି ପ୍ରଶ୍ନ ଶୁଣି ସଜ୍ଜନ କ୍ଷଣକେ ପାଇଁ ଅଟକିଗଲା ପୁଣି କ'ଣ ଭାବି କହିଲା, "ଦୁହିଁଙ୍କର" କିନ୍ତୁ ଆପଣଙ୍କର ଭାଉଜ ଯଦିଓ ବର୍ତ୍ତମାନ—"

ସେ ମୋ ବାପାଙ୍କ ଅପରାଧ ପାଇଁ ଦଣ୍ଡ ପାଉଛନ୍ତି ? ଏହାକହି ଯୁବତୀଟି ଯିବାକୁ ବାହାରିଲା । ପୁଣି କିଛି ଭାବି ପଚାରିଲା ଭାଉଜର ଅପରାଧ କ'ଣ ଥିଲା ? ଯୁବାବସ୍ଥାରେ ବିଧବା ହେବା—ନା—ମା ହେବା ? ସଜ୍ଜନ ବୁଝିପାରିଲା ଯେ ଯୁବତୀଟି ଭାବାବେଶରେ କହି ଚାଲିଛି । ତାକୁ ସାନ୍ତ୍ୱନା ଦେବା ଉଦ୍ଦେଶ୍ୟରେ ମଧୁର ଭାବରେ କହିଲା "ଯେ ମୋ ଦୃଷ୍ଟିରେ ଏଥିପାଇଁ ଅପରାଧିନୀ ନୁହନ୍ତି । ହଁ, ପିଲାଟିର ହତ୍ୟାକୁ ମୁଁ ନିଶ୍ଚୟ—"

"ତାହା ମୋର ବାପା କରିଛନ୍ତି । ସେ ଭାଉଜ ଉପରେ ସବୁ ପ୍ରକାର ଜବରଦସ୍ତି (ଜୋର ଜୁଲମ) କରିଛନ୍ତି, ମୁଁ ଜାଣିଛି ଓ କହୁଛି । ଯୁବତୀର ଗୋରା ଚେହେରା ଭାବାବେଶରେ ପୁଣି ଦପ୍ ଦପ୍ କରି ଉଠିଲା । ପୁଣିଥରେ ଯିବାପାଇଁ ପାଦ

ବଢ଼ାଇଲା, ଟିକିଏ ଅଟକିଯାଇ ମନକୁମନ "ଭାଉଜର ଅପରାଧର କାରଣ ସେ ଜଣେ ନାରୀ ଏବଂ ସେ ଅର୍ଥନୈତିକ ଦିଗରେ ପରାଧୀନ ।

ଭୂମି ଉପରେ ଦୃଷ୍ଟି ନିକ୍ଷେପ କରି ଯୁବତୀ ଠିଆହୋଇ ରହିଲା, ସଜ୍ଜନ ଚୁପ୍ ହୋଇ ତାକୁ ଚାହିଁଥାଏ, ତା' ମନରେ ସେହି ଅଜଣା ଦଣ୍ଡିତା ପ୍ରତି ସହାନୁଭୂତିରେ ଭରିଯାଇଥାଏ, ଯୁବତୀଟିର ଅସ୍ତବ୍ୟସ୍ତ କେଶରାଶି, ଦୁଃଖରେ ମ୍ଳାନ ଆଖି, ଏବଂ ଭାବାବେଗରେ ଜ୍ୱଳନ୍ତ ସେଇ ଅଗ୍ନିମୟୀ ମୂର୍ତ୍ତିକୁ କରୁଣ ଓ ସ୍ନିଗ୍ଧ ଦୃଷ୍ଟିରେ ଚାହିଁ ଚାହିଁ ସଜ୍ଜନ ତାକୁ କେତେବେଳେ ଭଲପାଇ ବସିଲା । କିନ୍ତୁ ତା' ପର ମୁହୂର୍ତ୍ତରେ ନିଜ ପ୍ରତି ଭୀଷଣ ଲଜ୍ଜା ଘୃଣାରେ ଦୃଷ୍ଟି ତଳକୁ କରିନେଲା ।

"ଆପଣ ଆମର ଟିକିଏ ଦୟା କରିବେ କି ? ପୋଲିସଙ୍କୁ ଏଠାରୁ ଶୀଘ୍ର ଚାଲିଯିବାକୁ କହନ୍ତୁ ।" ମନଖୋଲି କାନ୍ଦିବାକୁ ହେଲେ ଟିକିଏ ସମୟ ପାଉ ।" ଏତିକି କହୁ କହୁ ବଡ଼ ବଡ଼ ଦୁଇଟି ଆଖି ଲୋତକରେ ପୂର୍ଣ୍ଣ ହୋଇଗଲା । ନାକ ପୁଡ଼ା ଆଉ ଓଠ କମ୍ପି ଉଠିଲା । ସଜ୍ଜନ ତାଙ୍କୁ ଚାହିଁ ପୁଣି ତଳକୁ ଅନାଇଲା ।

"ଛିଃ, ନାରୀ କ'ଣ କେବଳ ଉପଭୋଗର ବସ୍ତୁ ? ସେ ନିଜେ ନିଜକୁ ପ୍ରଶ୍ନ କଲା । ଯୁବତୀଜଣକ ହଠାତ୍ ଦ୍ରୁତଗତିରେ ହଲ୍ ଭିତରକୁ ଚାଲିଗଲେ ।"

# ସାତ

"ସ୍ୱେ ଅଲ୍ ଇଣ୍ଡିଆ ରେଡ଼ିଓ, ଲକ୍ଷ୍ନୌ, ଏଲାହାବାଦ୍, ପାଟଣା ।" ଆପଣଙ୍କର ଅନୁରୋଧରେ ପ୍ରୋଗ୍ରାମ ସମାପ୍ତ । ତାରା ଉଠି ଲାହୋର ସେଣ୍ଟର ଲଗାଇଲା ।

"ଛମ୍ ଛମ୍ ବାଜେ ପାୟଲ ମେରା—

ଆଜା ସ୍ୱେର ସ୍ୱେର, ଆଜା ସ୍ୱେର ସ୍ୱେର ।"

ଭାରତର ଛନ୍ନ ତନ୍ତ୍ରୀକୁ ପାକିସ୍ଥାନ ରେଡ଼ିଓର ଫିଲ୍ମ ପ୍ରୋଗ୍ରାମରେ ସଂଯୁକ୍ତ କଲା, ଶୁଣିବା ଲୋକେ ଆନନ୍ଦ ଅନୁଭବ କଲେ । ତାରା ପୁଣି ପଲଙ୍କ ଉପରେ ଆସି ଆନ୍ଙ୍କି ବସିଲା । ସାନ ବୋହୂ ଖଟ ଗୋଡ଼ଆଡ଼କୁ ମୁଣ୍ଡକରି ହାତ ଉପରେ ମୁଣ୍ଡ ରଖି ଶୋଇଥିଲା । ବଡ଼ ବୋହୂ କାର୍ପେଟର ଆରାମ ଚଉକିକୁ ପଲଙ୍କ ପାଖକୁ ଘୁଞ୍ଚାଇ ବସିପଡ଼ିଲା । ତାରା ବସିପଡ଼ିବା ମାତ୍ରେ ସାନ ବୋହୂ କଥା ଖିଅ ଧରି କହିଲା, ମୁଁ ନନ୍ଦୋ ଦେବୀଙ୍କ (ସ୍ୱାମୀ) ହଜ୍‌ବେଣ୍ଡଙ୍କୁ ଦେଖିଛି । ମୋ ମାଉସୀର ବଡ଼ ଜାଆଙ୍କ ଝିଆରୀ ସହିତ ତାଙ୍କ ଦ୍ୱିତୀୟ ବିବାହ ହୋଇଛି । ସେ ପୁରୁଣା କାଳିଆ ଲୋକ ହେଲେ କ'ଣ ହେଲା ସେ ଭାରି ଭଲଲୋକ । ଦେଖିବାକୁ ମଧ୍ୟ ଭାରି ସୁନ୍ଦର ।

ଆମ୍ଭ ସ୍ୱାଙ୍କ ପାଇଁ ସାକ୍ଷାତ୍ କାମଦେବ ଆସିଲେ ବି କିଛି ନୁହନ୍ତି ।

ଡାହାଣୀଟା ଏଡ଼—ହେ ତୁମକୁ ଗୋଟେ କଥାତ କହିନ ? ବଡ଼ ବୋହୂ ବିଜୁଳୀ ଗତିରେ ଆରାମ ଚଉକିରୁ ଉଠିଆସି ପଲଙ୍କ ଉପରେ ବସିପଡ଼ିଲା । ବଡ଼ ବୋହୂର କଥାଶୁଣି ସାନ ବୋହୂ ଉଠି ବସିଲା ।

ନାରୀ ଦେହର ସୌନ୍ଦର୍ଯ୍ୟକୁ କଦର୍ଯ୍ୟ କରି ସୃଜନ ସୌନ୍ଦର୍ଯ୍ୟ ଦ୍ୱାରା ତାର ମାନସପଟକୁ ଦୀପ୍ତକରି ସୌଭାଗ୍ୟବତୀ ତାରା, ତା'ର ଆଠ ମାସରେ ଯେତିକି ଯାକିଯୁକ୍ତ ହୋଇ ବସିବାପାଇଁ ସମର୍ଥ ଥିଲା, ସିଧା ହୋଇ ବସି ନିଜର ବ୍ୟଗ୍ରତା ପ୍ରକାଶ କଲା ।

ବାଁ ଗୋଡ଼ରେ ଚକା ପକାଇ ଡାହାଣ ଗୋଡ଼ର ଆଣ୍ଠୁ ଟେକି ଆଙ୍ଗୁଳି ହଲାଇ ବଡ଼ ବୋହୂ ଚୁପ୍ ହୋଇ କହିଲା । ନନ୍ଦୋ ଦେବୀଙ୍କ ବାକ୍ସରୁ କେତେ ଗୁଡ଼ାଏ ଫଟୋ ମିଳିଛି । ପ୍ରାୟ ଡଜନ ଖଣ୍ଡେ । ସେଟ୍‌କୁ ସେଟ୍ । ଆରେ, କି ଫଟୋ ସବୁ ? ସାନ ବୋହୂର ଅସ୍ଥିରତା ବଢ଼ିଗଲା, ତାରାର ଆଖିରେ ମଧ୍ୟ ।

ବଡ଼ ବୋହୂ ସେହି ସମୟରେ କହିଲା "ଆରେ, ବଜାରରେ ଯେଉଁ ଅଶ୍ଳୀଳ ଫଟୋ ସବୁ ଆସେନା—ଓଃ, ସେ ସବୁ ଦେଖିଲେ ମୋ ଦେହ କଣ ହୋଇଯାଉଛି" ବଡ଼ ବୋହୂର ସ୍ୱର ଥର ଥର ହେଲା, ଦେହରେ ଶିହରଣ ଖେଳିଗଲା ଆଖି ଦୁଓଟି ଆବେଗରେ ଭରିଉଠିଲା ।

ତାର ପଚାରିଲା "ତୁମେ ସେ ଫଟୋ ଗୁଡ଼ିକ ଦେଖିଛ ? "ହଁ ମ, ଆଜି ସକାଳେ ଆମର ସେ ନନ୍ଦୋ ଦେଖାଙ୍କର ଗୋଟି ଗୋଟି ହୋଇ ଜିନିଷ ତଲାସ ହେଲା । କାଳେ ଆଉ କିଛି ଚୋରି କରିଥିବ । ଘର ଝକ୍ ଝକ୍ ହେଲା । ସାନ ବୋହୂକୁ ପଚାରି ଆମ ବାବୁଙ୍କର ମିଂଜାସ ତ ତୁମେ ଜାଣିଛ । ଯେତେବେଳେ ବିଗିଡ଼ି ଯାଏ, ସେତେବେଳେ ସେ ଲାଟ୍ ସାହେବଙ୍କୁ ମାନନ୍ତି ନାହିଁ ।

ବଡ଼ ବୋହୂର ସ୍ୱାମୀ ମଣିଆ ଜଣେ ରସିକ ଲୋକ । ସେଥିପାଇଁ ପ୍ରଥମେ ସେ ଆଦର, ସ୍ନେହ କରେ ତା ସ୍ତ୍ରୀକୁ ମନାଏ କିନ୍ତୁ ସେ ରସିକ ପଣ କ୍ଷଣିକ ଏବଂ ଏହା ମଣିଆ ଇଚ୍ଛାରେ ଦେଉଥିଲା । ବୋହୂ କିନ୍ତୁ ମଣିଆକୁ ଖୁବ ଡରେ । ଅବିବାହିତ ଦିଅର ଶଙ୍କରଲାଲ ତାକୁ ଭଲ ଲାଗେ । ନନ୍ଦେ ତ ଗୋଟିଏ ବିଷ ପୁଡ଼ା ନିଜ ଭାଇ ଆଗରେ ଚୁଗୁଲି କରି ବଡ଼ ବୋହୂକୁ ବହୁତ କଷ୍ଟ ଦେଇଛି, ଏପରିକି ମାଡ଼ ବି ଖୁଆଇଛି । ନିଜ ବଶରେ ରଖିବାକୁ ମଣିଆକୁ ସନ୍ତୋ ବୋହୂ ସହିତ ଜୁଟାଇଲା । ଏଇଥି ପାଇଁ ନନ୍ଦୋକୁ ମାଡ଼ ଦେବାରୁ ସେ ଖୁବ୍ ଖୁସି ହୋଇଥିଲା । କଥା ସରିଲା ଥାଏ ବାହାରେ ଧଠ ତ୍ ତାର ଓ ମିଷ୍ଟର ବର୍ମାଙ୍କର ସ୍ୱର ସହିତ । ନିଜ ସ୍ୱାମୀଙ୍କର ସ୍ୱର ଶୁଣି ସାନ ବୋହୂ ଚମକି ପଡ଼ିଲା । ଖୁସି ମଧ୍ୟ ହେଲା । ଆରାମ ଚଉକିରୁ ଉଠି ଦୁଆର ମୁହଁକୁ ଆସିଲା । ହାତ ଯୋଡ଼ି ମିଷ୍ଟର ବର୍ମାଙ୍କୁ ନମସ୍କାର କଲା ଓ ନିଜ ସ୍ୱାମୀଙ୍କ ଆଡ଼କୁ ଅନାଇ କିଛି ପଚାରିବାକୁ ଯାଉଥିଲା, ମିଷ୍ଟର ବର୍ମା କହିଲେ "ଦେଖନ୍ତୁ, ଆପଣଙ୍କର ଫେରାର କଏଦୀକୁ ଧରି ଆଣିଛି । ସାନ ବୋହୂ ଲାଜ ପାଇ ମୁରୁକେଇ ହସିଲା । ତାର ତାକୁ ଅନାଇ ହସିଲା । ଶଙ୍କରଲାଲ ବର୍ମାଙ୍କୁ କହିଲା " ଆହେ, ଏପରି କୁହନ୍ତୁ ଯେ ଦୁଇଟି ଫେରାର ବ୍ୟକ୍ତି ପରସ୍ପରକୁ ଧରି ଆଣି ହାକିମଙ୍କ ଆଗକୁ ଆସିଛନ୍ତି । ଚାରି ଜଣଙ୍କର ହସ ଏକାଠି ମିଶିଗଲା ।

ଘର ଭିତରେ ଖଟ ଗୋଡ଼କୁ ଆଉଜି ବାହାର କଥାକୁ କାନଡେରି ବସିଥିବା ବଡ଼ ବୋହୂ ମନରେ ଭୀଷଣ ଉତ୍ସୁକତା ସୃଷ୍ଟି ହେଲା ଯେ ଏମାନେ କିପରି ଭାବରେ କଥା ବାର୍ତ୍ତା ହେଉଛନ୍ତି । ତାର, ସାନ ବୋହୂ—ସାନ ଜାଆ ହିସାବରେ ତା ପ୍ରତି ସାମାନ୍ୟ ହିଂସା ଭାବ ଥିଲେ ସୁଦ୍ଧା ସେ ତାଙ୍କ କଥା ପ୍ରତି ହିଂସା କରୁ ନ ଥିଲା । ସାନ ବୋହୂ ଓ ତାର ଦୁହେଁ ନିଜର କୌଣସି ଅସ୍ତିତ୍ୱ ନ ଥାଇ ବଡ଼ ବୋହୂ ରସ ସୃଷ୍ଟିର ମାଧ୍ୟମ ହୋଇ ଥାଆନ୍ତି ।

ଏହି ସମୟରେ ଢଅରଙ୍କ କଥା ଜଣାଗଲା ସ୍କୁଲ୍ ସ୍ୱରୂପ, ଘରକୁ ଯାଇ ଶୀଘ୍ର ପ୍ରସ୍ତୁତ ହୁଅ—ଫେର ·

ଟିକଏ ରହନ୍ତୁ, ସ୍ନ ଖାଇ କର ଯିବେ। "ତାଗ୍ୱର ଶବଦ୍ ଶୁଣାଗଲା। ନାଇଁ ମ, ଅଭ ବୃଥା କଷ୍ଟ" ପଙ୍କର କଥା ମଝିରେ ମିଷ୍ଟର ବର୍ମା କହିଲେ" ଟିକଏ ବସନ୍ତୁନା। ଆପଣଙ୍କ ଆଲରେ ମତେ ବ କପେ ସ୍ନ ମିଳିଯିବ, ନ ହେଲେ ଇଏ ମତେ ସେମିତ ଠକ ଦେବେ।

"ଶୁଣୁଛନ୍ତି ମିସେସ୍ ବର୍ମା, ଆପଣଙ୍କ ନାଁରେ ଚୁଗୁଲି ହେଉଛି"

"ଆପଣ ହିଁ ଶୁଣନ୍ତୁ, ଦଗା ଢଆଙ୍କ କଥା କେତେ କଏ ଶୁଣିବ ?

ତାଗ୍ୱର ସ୍ୱର ଦୂରେଇ ଗଲା । ମିଷ୍ଟର ବର୍ମାଙ୍କର କଥା ଶୁଣାଗଲା। ସେ ତାର ଢଅରକୁ ପଗ୍ୱରଲେ,·· କ'ଣ ପିକଚର ଯିବାର ପ୍ରୋଗ୍ରାମ ଅଛି ?

"ଆଜ୍ଞା ହଁ, ସେ ଆମର ଜଣେ ବନ୍ଧୁ—ବୋଧହୁଏ ଆପଣ ତା'ଙ୍କୁ ନାମ ଶୁଣି ଥିବେ—ବରେଜାଜୀ, ସେ "ବାହାର ଆଇରେ" ପିକ୍‌ଚରରେ ସଙ୍ଗୀତ ରଚନା କରଛନ୍ତି।

ହଁ ହଁ ଆଜିକାଲି ସେହି ପିକ୍‌ଚର ଗ୍ୱଲଛି । କେମିତ ହୋଇଛି, ମିଃ ବର୍ମା ପଗ୍ୱରଲେ। "ଶୁଣ" ଦୂରରୁ ତାଗ୍ୱର ଶବ୍ଦ ଶୁଣାଗଲା। ବଡ଼ ବୋହୂ ଅନୁମାନ କଲା ଯେ ତାଗ୍ ଗ୍ୱେଷେଇ ଘରେ ଅଛି।

ମିଷ୍ଟର ବର୍ମାଙ୍କର ଶବ୍ଦ ମଧ୍ୟ ଶୁଣାଗଲା—"ଶଙ୍କର ବାବୁ ଏଇକ୍ଷଣି ଆସୁଛି।"

ଶୁଣନ୍ତୁ, ମିଷ୍ଟର ବର୍ମା, ଶଙ୍କରଲାଲ କହିଲା," ବସନ୍ତୁ କେଉଁ ଆଡ଼େ ଯିବା ଦରକାର ନାହିଁ।"

ଆଜ୍ଞା କଛି ନାହିଁ । ଏହିକ୍ଷଣି ଆସୁଛି। ମିଷ୍ଟର ବର୍ମାଙ୍କର ଜଳଖିଆ ଆଣିବାକୁ ଯାଇଥିବେ। "ବଡ଼ ବୋହୂ ଭାବଲା। ଶଙ୍କରଲାଲ ତାଗ୍‌କୁ କହୁଥିଲେ "ଆପଣ ବ ସେମିତ ମିସେସ୍ ବର୍ମା, ଅଯଥା ତାଙ୍କୁ ଦୌଡ଼ାଇଲେ।"

"ଆରେ ବାଃ ବାହବଣା ହୋଇ କେବେ କେମିତ ଆମ ଘରକୁ ଆସିନ। ହେ ସାନବୋହୂ, ମୋହିମାକୁ ଡାକ। ସେ ଭିତରେ ଅଭିମାନ କର ବସିଛି।"

"ଭାଉଜ କ'ଣ ଏହିଠାରେ ଅଛନ୍ତି ?" ଭାଉଜ, "ଶଙ୍କରଲାଲ ଡାକଲା, ଡାକ ଡାକ ଖବରକାଗଜର ପୃଷ୍ଠା ଓଲଟାଇଲା। ବଡ଼ବୋହୂ ବଡ଼ ସଂକୋଚରେ

ଘର ଦୁଆର ମୁହଁରେ ଆସି ଠିଆ ହେଲା । ବାରଣ୍ଡା ସୋଫା ଉପରେ ଶଙ୍କରଲାଲ ବସିଥିଲା । ତାଙ୍କୁ ଦେଖି ଟିକିଏ ମୁରୁକି ହସି କହିଲା—"ତୁମେ ତ ଏପରି ଲୁଚି କରି ବସିଛ—ଯେମିତି କେହି କାହା ଭିତରେ ଲୁଚି ଥାଏ" ମୁଁ ଘରେ ଖୋଜି ଖୋଜି ଥକି ଗଲିଣି ।

"ଇଏ ରେଡ଼ିଓ ପାକିସ୍ଥାନ—ଫିଲମ୍ ରେକର୍ଡ—"

ମୋହିନୀ, ଟିକିଏ ରେଡ଼ିଓ ବନ୍ଦ କରି ଦିଅନା ।" ତାରି ସ୍ୱେଷେଇଘର ବାରଣ୍ଡାରେ ଖୁଣ୍ଟକୁ ଆଉଜି କହିଲା । ସାନବୋହୂ ଷ୍ଟୋଭରୁ ଗ୍ର କେଟିଲ୍ ଓହ୍ଲାଇ ଦୁଧ ଡେକଚି ବସାଉଥିଲା । ବଡ଼ବୋହୂ ନିଜ ଦିଅର କଥାରଉତ୍ତର ଦେଇ ରେଡ଼ିଓ ବନ୍ଦ କରିବା ପାଇଁ ଭିତରକୁ ଗଲା । ସେ କହିଲା "ଯେ ହୃଦୟରେ ଲୁଚିଛି ତାଙ୍କୁହିଁ ତ ଖୋଜି ଖୋଜି ଏଠାକୁ ଆସିଛି । ମତେ କାହିଁକି କହୁଛ ?"

ରେଡ଼ିଓ ବନ୍ଦ ହୋଇଗଲା । ବାରଣ୍ଡାରୁ ଶଙ୍କର ଲାଲ ଉତ୍ତର ଦେଲା, ଆରେ ଇଏ ହୃଦୟରେ କେଉଁଠି ଅଛନ୍ତି ? ଇଏ ତ ରନ୍ଧାଘର । ହୃଦୟରେ ତ ତୁମେ ଲୁଚି ବସିଛ ।

ବଡ଼ ବୋହୂ ମୁରୁକି ହସି ବାହାରକୁ ଆସିଲା । ଶଙ୍କର ଲାଲ ତାଙ୍କୁ ଦେଖି ନିଜ କଥା ଶେଷ କଲା । "ମୋ ହୃଦୟରେ ନ ହେଉ ଭାଇଙ୍କ ହୃଦୟ ହେଲା, ଏକା କଥା ।"

ବଡ଼ବୋହୂ ଦେଖିଲା ଯେ ତାରି ଓ ସାନବୋହୂ ଦୁହେଁ ମୁରୁକି ମୁରୁକି ହସୁଛନ୍ତି । ବଡ଼ବୋହୂ ସେମାନଙ୍କୁ ଦେଖି ଅଭିମାନରେ ତାରିଙ୍କୁ କହିଲା "ଶୁଣୁଛ ଯାଙ୍କ କଥା" ମିଛ କହିବାରେ ଏମ୍. ଏ. ପାସ କରିଛନ୍ତି । ଆମ ଦିଅର । ଆଉ ଓଲଟା ଶୁଖିଲା ହୃଦୟ କଥା କହି ହେଉଛନ୍ତି । ଏହା କହି ସ୍ୱେଷେଇ ଘର ବାରଣ୍ଡା ଆଡ଼କୁ ଗଲା । ଶଙ୍କର ଉତ୍ତର ଦେଲା "ଭଦ୍ରଜମାନଙ୍କୁ ନିମନ୍ତ୍ରଣ କରାଯାଏ ନାହିଁ । ସେମାନେ ନିଜେ ଦେକରେ ଫୁଲ ନିମନ୍ତ୍ରଣ ଦିଅନ୍ତି । ମୁଁ ଭାବୁଛି ମିସେସ୍ ବର୍ମା ମୋ କଥାକୁ ସମର୍ଥନ କରୁଛନ୍ତି ।"

ସେତିକିବେଳେ ମିଷ୍ଟର ବର୍ମା ହାତରେ ଠେଙ୍ଗା ଧରି ଘର ଭିତରେ ପ୍ରବେଶ କଲେ । ସାନବୋହୂ ଚେହେରେ ସ୍ତ ସଜାଡ଼ୁଥାଏ । ବଡ଼ବୋହୂ ପାଖରେ ବସିଥାଏ ଓ ମୁଣ୍ଡ ଉପରକୁ ଓଢ଼ଣାକୁ ଟାଣିନେଲା । କାନ୍ଥରେ ଠେଙ୍ଗା ଦେଇ ବର୍ମା ଶଙ୍କର ଲାଲଙ୍କୁ ପଚାରିଲେ— 'କେଉଁ କଥାକୁ ସମର୍ଥନ କରୁଥିଲେ ଆପଣ ?"

"କିଛି ନାହିଁ, ଜଣେ ଭଦ୍ରଜନଙ୍କ କଥାକୁ ଆଉ ଜଣେ ଭଦ୍ରଜନଙ୍କ ଆଗରେ ଫଇସଲା କରୁଥିଲି ।"

ବର୍ମା ସୋଫା ଉପରୁ ମୁଣ୍ଡ ବୁଲାଇ ରୋଷେଇ ଘର ବାରଣ୍ଡା ଆଡ଼କୁ ଚାହିଁ କହିଲା, "ଆଜ୍ଞା, ଆପଣଙ୍କ ଭାଉଜ ମଧ୍ୟ ଏଠାରେ ଅଛନ୍ତି । କିନ୍ତୁ ଆପଣ ଯାହାଙ୍କୁ ଫଇସଲା କରିବା ପାଇଁ ଅଧିକାର ଦେଇଛନ୍ତି ତାଙ୍କର ଯୋଗ୍ୟତା ବିଷୟରେ ଜାଣନ୍ତି ତ ।"

ମିଷ୍ଟର ବର୍ମା ସ୍ତ୍ରୀ ଲୋକମାନଙ୍କୁ ଅଯୋଗ୍ୟ କହନ୍ତି ନାହିଁ । ଭାରତୀୟ ସମ୍ବିଧାନରେ ସେମାନଙ୍କୁ ସମାନ ଅଧିକାର ଦିଆଯାଇଛି ।

ତାରା ଗ୍ଲ ଟ୍ରେ ଟାକୁ ଆଣି ଗୋଲ ଟେବୁଲ ଉପରେ ରଖି ରଖି କହିଲା "ଏ ସବୁ କଥା କଲ୍‌ଚର୍ଡ଼ ଲୋକମାନେ ସିନା ବୁଝନ୍ତି—ମୂର୍ଖମାନଙ୍କ ଆଗରେ କହି କି ଲାଭ । କହି ତାରା ମାନ ଅଭିମାନଭରା ଦୃଷ୍ଟିରେ ନିଜ ସ୍ୱାମୀ ଆଡ଼କୁ ଚାହିଁଲା । ବର୍ମା ଓ ଶଙ୍କର ଓଠରେ ସ୍ମିତହାସ୍ୟ ଖେଳିଗଲା । ଶଙ୍କର କହିଲା "ବାସ୍, ମୁଁ ବର୍ତ୍ତମାନ ହାରୁଛି ମିସେସ୍ ବର୍ମା ।"

ସାନବୋହୂ ମିଠା ଓ ନିମକି ପ୍ଲେଟ ଧରି ପହଞ୍ଚିଲା । ତାକୁ ଦେଖି ଶଙ୍କର କଥାରେ ନୂତନ ଉତ୍ସାହ ଆସିଲା । କହିଲା, ଯଦି ସ୍ୱରୂପ ମତେ ଗାଉଁଲି କରି ଦେଲାତ ।

ଯେ ଯେପରି ହେବ ତାକୁ ତାହାହିଁ ତ ସୁହାଯିବ । ସାନବୋହୂ କଥାରେ ତାରା ଓ ବର୍ମା ଦୁହେଁ ଠୋ ଠୋ ହୋଇ ହସି ପକାଇଲେ । ଶଙ୍କରର ହସ ମଧ୍ୟ ସେଥିରେ ମିଶିଗଲା ।

ରୋଷେଇ ଘରେ ଠିଆ ହୋଇ ବଡ଼ବୋହୂ ବଡ଼ ରସପୂର୍ଣ୍ଣ ହାସ୍ୟ କହିଲା । ସେ ଅନ୍ଧାରରେ ବି ନିଜ ସ୍ୱାମୀକୁ ମୂର୍ଖ କହିପାରେ ନାହିଁ । ତାରା ସାମନାରେ ଠିଆ ହୋଇ ତାଙ୍କୁ ଡାକିଲା । ଆଖିଠାରରେ ବଡ଼ବୋହୂ ଉତ୍ତର ଦେଲା "ନା ମୋତେ ଲାଜ ମାଡ଼ୁଛି ।"

ଶଙ୍କର ଲାଲ ଉଠି ତାରାକୁ କହିଲା, "ଆସନ୍ତୁ, ବସନ୍ତୁ ।"

"ନିଜ ଭାଉଜକୁ ଡ଼ାକନା, ତାଙ୍କୁ ଲାଜ ମାଡ଼ୁଛି, କହି ତାରା ବଡ଼ବୋହୂ ଆଡ଼କୁ ହସି ଚାହିଁଲା ।"

ବଡ଼ବୋହୂ ତାରାକୁ ରାଗି ଚାହିଁଲା । ଶଙ୍କର କହିଲା "ଭାଉଜ" ତାରା ଶଙ୍କର ଲାଲ ପାଖରେ ସୋଫା ଉପରେ ବସି ପଡ଼ିଲା । ସାନବୋହୂ ପିଆଲାରେ ଚାହା ଛାଣୁଥାଏ ।

ଶଙ୍କରଲାଲ ଉଠି ସାମନାକୁ ଆସିଲା—ବଡ଼ ବୋହୂ ଲାଜ ଲାଜ ହୋଇ ତାକୁ ଚାହିଁଲା । ପୁଣି ମୁଣ୍ଡରେ ଲୁଗା ସଜାଡ଼ି ଆସ୍ତେ ଆସ୍ତେ ପାଦ ପକାଇ ଅଗଣା ପାର ହେବାକୁ ଲାଗିଲା । ଶଙ୍କରଲାଲ ତା ଆଡ଼କୁ ଚାହିଁ କହିଲା "ଆମ ଭାଉଜଙ୍କ ଢଙ୍ଗ ଆପଣ ଜାଣନ୍ତି ନାହିଁ । ଭାଇ ତାଙ୍କୁ ଅତିଶୟ ଖୋସାମଦ ପ୍ରିୟ କରି ଦେଇଛନ୍ତି ।" ବଡ଼ ବୋହୂ ବାରଣ୍ଡାକୁ ଆସିଲା । ମିଷ୍ଟର ବର୍ମା ଠିଆହୋଇ ହାତ ଯୋଡ଼ିଲେ । ବଡ଼ ବୋହୂ ମଧ୍ୟ ଲାଜ ସର ସର ହୋଇ ହାତ ଜୋଡ଼ି ତାରି ପାଖରେ ଆସି ବସି ପଡ଼ିଲା । ତାରି ମିଠା ପ୍ଲେଟ୍‌ଟା ଶଙ୍କର ହାତକୁ ବଢ଼ାଇଦେଲା । ସାନ ବୋହୂ ବର୍ମାଙ୍କୁ କପ୍ ଧରାଇ ଦେଲା ।

ସ୍ତ୍ରୀ, ପୁରୁଷମାନଙ୍କ ଭିତରେ ଏକାଠି ବସି ଚା ଖାଇବାର ଏ ସୁଯୋଗ ଅନେକ ବର୍ଷପରେ ଦ୍ୱିତୀୟ ଥର ପାଇଁ ବଡ଼ ବୋହୂ ପାଇଥିଲା । ସ୍କୁଲ ଯିବା ବୟସରେ ଖ୍ରୀଷ୍ଟିୟାନ୍ ଦାଦାଙ୍କ ଘରେ ତାଙ୍କର କେଉଁ ଆତ୍ମୀୟ ବନ୍ଧୁ ଦମ୍ପତିଙ୍କ ସହିତ ସେ ଚା ଖାଇଥିଲା । କିନ୍ତୁ ସେତେବେଳର କଥାବାର୍ତ୍ତା ଭିନ୍ନ । ସେ ଥିଲା ଅବିବାହିତା । ଏତେ ବେଶି ବନ୍ଧନରେ ବାନ୍ଧି ହୋଇ ନଥିଲା । ତାରି ଏବଂ ସାନ ବୋହୂର ଏପରି ଖୋଲା (ଫ୍ରି) ବ୍ୟବହାର ଦେଖି ସେ ନିଜକୁ ହୀନ ମନେ କରୁଥାଏ । ସାନ ବୋହୂ ସମସ୍ତଙ୍କୁ ଚା ଦେଇ ନିଜ କପ୍‌ଟି ଧରି ତା ପାଖରେ ଆସି ବସିଲା ।

ବର୍ମା ଦମ୍ପତିଙ୍କ ଚା ଜଳଖିଆ ନିମନ୍ତ୍ରଣ ରକ୍ଷା କରି ବଦଳରେ ଶଙ୍କରଲାଲ ଦମ୍ପତି ସେମାନଙ୍କୁ ପିକ୍‌ଚର ଦେଖିବା ପାଇଁ ନିମନ୍ତ୍ରଣ କଲେ । ବର୍ମା କହିଲେ, ଆପଣମାନଙ୍କ ସଙ୍ଗୀତ ରାଇଟର ବାବୁଙ୍କ ପାଶ ବର୍ମାଙ୍କର ଆଉ କିଛି ବାହାନା ଶୁଣିବା ଆଗରୁ ଶଙ୍କରଲାଲ କହିଲା ନା ପାସ୍ ଫାସ୍ କିଛି ନାହିଁ । ତାଙ୍କର ବଡ଼ ଆଗ୍ରହ ଥିଲା । ମୁଁ ବି ଭାବିଲି ଯେ ଆଜି ରବିବାର, କୌଣସି ପିକ୍‌ଚର ଦେଖିବା କଥା ନିଶ୍ଚୟ । ଆସନ୍ତୁ, ଚାଲନ୍ତୁ ମିସେସ୍ ବର୍ମା । ଆମ ତରଫରୁ ନିମନ୍ତ୍ରଣ ରହିଲା ।

ମିଷ୍ଟର ଓ ମିସେସ୍ ବର୍ମା ଆଖି ଦ୍ୱାରା ପରସ୍ପରର ଅନୁମତି ନେଇ ରାଜି ହୋଇଗଲେ । ଶଙ୍କରଲାଲ ବଡ଼ ବୋହୂକୁ କହିଲା । ଚାଲ ଭାଉଜ, ଆଜି ତୁମକୁ ବି ବୁଲାଇ ଆଣିବି । ବ୍ୟସ୍ତ ହୁଅନାହିଁ । ମୁଁ ଭାଇକୁ ଲେଖି ଅନୁମତି ମଗାଇ ନେବି । ଅନୁମତି ମଗାଇଦେବା କଥା ଶୁଣି ବଡ଼ ବୋହୂ ଭୀଷଣ ଲାଜରେ ସଢ଼ିଗଲା । ତାକୁ ଲାଗିଲା ଯେ ଦୁଇଯୋଡ଼ା ଦମ୍ପତି ତା ଆଡ଼କୁ ସହାନୁଭୂତିର ଆଖିରେ ଚାହିଁଛନ୍ତି । ଆହା, ମୁଁ କେତେ ହତଭାଗୀ । ବଡ଼ ବଡ଼ ସୋସାଇଟି ବାଲାଙ୍କ ଦୃଷ୍ଟିରେ ମୁଁ ଅତ୍ୟନ୍ତ ହୀନ । ନିଜ ସ୍ୱାମୀ ଲାଗିସିନା ।

ବଡ଼ ବୋହୂର ଦୃଷ୍ଟି ଉପରକୁ ଉଠିଲା ନାହିଁ । ସମସ୍ତେ ଚାଲିଲେ । ସେ ସମସ୍ତଙ୍କ ପଛରେ ଚାଲିଲା ।

# ଆଠ

ମାଟିନୀ ସୋ ଶେଷ ହେବା ପରେ ସିନେମା ହଲ୍‌ରୁ ମଣିଷର ସୁଅ ଛୁଟିଥାଏ । ସେହି ସମୟରେ ଶଙ୍କର ଓ ବର୍ମା ପରିବାରମାନଙ୍କର ଘୋଡ଼ାଗାଡ଼ି ଅଟକିଲା । ଶଙ୍କର ଘୋଡ଼ାଗାଡ଼ି (ଟାଙ୍ଗା)ରୁ ଓହ୍ଲାଇ ଭଡ଼ା ଦେବାପାଇଁ ନିଜ ପର୍ଶ ଖୋଲିବାକୁ ଲାଗିଲା । ତାକୁ ଦେଖି ଆଉ ଗୋଟିଏ ଟାଙ୍ଗାରୁ ନିଜ ପତ୍ନୀ ଓ ବଡ଼ ବୋହୂ ସହିତ ଓହ୍ଲାଇ ଠିଆ ହୋଇଥିବା ମିଷ୍ଟର ବର୍ମା କହିଲେ "ମୁଁ ଦୁଇଟିଯାକର ପେମେଣ୍ଟ କରି ଦେଇଛୁ, ମିଷ୍ଟରଲାଲ୍" ପୁଣି ଶଙ୍କରର ଟାଙ୍ଗାବାଲାକୁ କହିଲେ "ସ୍ୟାଙ୍କଠାରୁ ନିଜ ପଇସା ନେଇନେବ ।"

ଶଙ୍କର ପାର୍ଶ ବନ୍ଦକରି ହସି ହସି କହିଲା, "ଆପଣ ଖିପଣ ସ୍କୁଲିକ ଲୋକ, ଆଚ୍ଛା, ମୁଁ ଟିକେଟ କିଣିଆଣେଁ ।"

ମୁଁ ଯାଉଛୁ । ବର୍ମା ଆଗେଇ ଆସିଲେ ତାକୁ ଅଟକାଇ ଶଙ୍କର କହିଲା "ମିଷ୍ଟର ବର୍ମା, ପ୍ଲିଯ୍" ଶଙ୍କର ତର ତର ହୋଇ ଆଗେଇଗଲା । ବର୍ମା ତିନୋଟି-ଯାକ ସ୍ତ୍ରୀ ଲୋକମାନଙ୍କ ସହିତ ଆଗକୁ ଚାଲିଲେ । ତାରି, ସାନ ଓ ବଡ଼ ବୋହୂ ପୁରୁଷମାନଙ୍କ ଦୃଷ୍ଟିକୁ ଏଡ଼େଇ ସ୍ତ୍ରୀ ଲୋକଙ୍କ ଫେସନ୍ ଆଡ଼କୁ ଚାହିଁ ଧିରେ ଧିରେ ଆଗେଇଲେ ।

ଲମ୍ବା କୁଞ୍ଚକୁଞ୍ଚିଆ ବାଳ, ଚଷମା ଥିବା ଛୋଟ ଛୋଟ ଆଖି, ଉଲ୍ କାମା, ଚୁଡ଼ିଦାର ପାଯ୍ଜାମା, ମୋଜା, ପେଶାଓ୍ୟାରି ଜୋତା, ବାଁ ହାତରେ ଚେଷ୍ଟର ଓ ଡାହାଣ ହାତରେ ଫାଇଭ୍, ଫାଇଭ୍, ଫାଇଭ୍'ର ଟିଣଟିଏ ଧରିଥିବା ଜଣେ ଭଦ୍ର ଲୋକଙ୍କୁ ସାଙ୍ଗରେ ନେଇ ଶଙ୍କରଲାଲ ସେଠାକୁ ଆସିଲା । ଜୋରରେ ପାଟିକରି ପରିଚୟ କରାଇଦେଲା ।

ମିଷ୍ଟର ବର୍ମା, ଇଏ ହେଉଛନ୍ତି ପ୍ରସିଦ୍ଧ କବି ବିରେଣ୍ଣଜୀ ଯେ କି ଏହି ପିକ୍‌ଚରର ଗୀତ ଲେଖିଛନ୍ତି । ଆଉ ଏ ହେଉଛନ୍ତି ମିଷ୍ଟର ତ୍ରିଭୁବନ ନାଥ ବର୍ମା, ବେସଂବୋଗରେ ଥିବା ଅଜନ୍ତା ରେଡ଼ିଓ ଇଞ୍ଜିନିଆରିଙ୍ଗ ଓ୍ୟାର୍କସ, ଏହାଙ୍କର । ଇଏ ହେଉଛନ୍ତି ମିସେସ୍ ତାରି ବର୍ମା, ଇଏ ମୋର ଭାଉଜ ମିସେସ୍ ମୋହନଲାଲ୍ ଆଉ ଇଏ ଯାହାକୁ ଆପଣ କବିମାନେ ସଉକରେ କେତେ ପ୍ରକାରରେ ଡାକନ୍ତି—ମୋର ସେହି ମିସେସ୍ ସ୍ୱରୂପ କୁମାରୀ ଲାଲ୍ ।

ତାଙ୍କ ଅତି ରଞ୍ଜିତ ହୋଇ, ସାନ ବୋହୂ ଉତ୍ଫୁଲ୍ଲ ହୋଇ ଓ ବଡ଼ ବୋହୂ ଲଜ୍ଜ୍ୟା ଆଢୁଆଳରେ ନିଜ ହୃଦୟର ଆବେଗକୁ ଲୁଚାଇ ବିର ହେଷଣଜୀଙ୍କୁ ନମସ୍କାରକଲେ । ବିରହେଶଜୀଙ୍କର ପ୍ରତି ନମସ୍କାର ଲେଖକ, କଳାକାର, ନେତା, ଉପନେତା ଦ୍ୱାରା ପେଟେଣ୍ଟ କରାଯାଇଥିବା ଫର୍ମ୍ମୁଲା ଅନୁସାର ଥିଲା—ଯେତେଦୂର ପାରିଥିଲେ ନିଜର ବତିଶ ଦାନ୍ତ ଲୁଚାଇ ମୃଦୁକ ହସ ଓ କୋମଳ ଭାବ ପୂର୍ଣ୍ଣ ହାତ ଯୋଡ଼ା ।

ମିଷ୍ଟର ବର୍ମା ମଧ୍ଯ ବିରହେଶଜୀଙ୍କୁ ଦେଖି ଧନ୍ୟ ଧନ୍ୟ ହୋଇ ପଡ଼ୁଥିଲେ । ବିରହେଶଜୀ ଜଣେ ସେହି ବର୍ଗର ଦେବତା ଯାହାଙ୍କୁ ପାଇବାପାଇଁ ବାଳବୃଦ୍ଧ ସମସ୍ତେ ବାବୁ ଓ ପିଲାମାନେ ସବୁବେଳେ ଆଶାସ୍ପୀ । ଆଉ ଶେଷରେ ବିଚାରି ସ୍ତ୍ରୀ ଲୋକମାନେତ ସେହି ବାବୁ ମାନଙ୍କର ଚିଅବୋହୂ—ସକାଳୁ-ପ୍ରଭାତ ବଦଳରେ—ବେଇମାନ ବଇମାସ୍ତା, ବଇମାସ୍ତା,—ବଇମା ଯା ଯା ରେକର୍ଡ଼ ଶୁଣିବା ଓ ଗୁଣୁ ଗୁଣୁ ହେବାକୁ ପସନ୍ଦ କରନ୍ତି । ସିନେମାଷ୍ଟାର ମାନଙ୍କର ବାପ ଅଜା ତିନି ପୁରୁଷ ଇତିହାସ ତା ଠାରୁ ବୁଝିନିଅନ୍ତୁ । କେଉଁ ଷ୍ଟାଇଲର କେଉଁ ଷ୍ଟାର ସହିତ ଲଭ୍ ଚାଲିଛି କାହାର ପ୍ରେମ କାହା ପାଖରେ କେତେ ଗୁଣା ହୋଇଗଲା—ଇତ୍ୟାଦିର ସମସ୍ତ ଅପ୍-ଟୁ-ଡେଟ୍ ହିସାବ ଆପଣଙ୍କୁ ତାଙ୍କ ପାଖରେ ମିଳିଯିବ । ସିନେମା ଜଗତ ସମ୍ପର୍କରେ ଥିବା ଅନେକ ପ୍ରୋଡ୍ୟୁସର, ଡାଇରେକ୍ଟର, ପ୍ଲେ ବ୍ୟାକ ସିଙ୍ଗର, ମ୍ୟୁଜିକ ଡାଇରେକ୍ଟର କେମେରାମ୍ୟାନ ଲେଖକ, ଗୀତ ରଚୟିତା ଓଗେର ଗର୍ବ କରି ପାରିବେ ଯେ ତାଙ୍କ ବିଷୟରେ ଅନ୍ତତଃ ଏଇ ବାବୁଆଣିମାନଙ୍କ ଭିତରୁ ଉଦ୍‌ଗାର ହୋଇଯାଉଛି । ସହରର ଶତକଡ଼ା ଅଶିଟି ଯୁବ ଜନସଂଖ୍ୟାର ପ୍ରଧାନ ଲକ୍ଷ୍ୟ ହେଲା ସିନେମା ।

ଶଙ୍କରଲାଲ କହିଲା—"କେବଳ ମୋରଯୋଗୁଁ ବର୍ତ୍ତମାନ ଇଏ ଏଠାରେ ଠିଆ ହୋଇଥିଲେ ।"

"ଆଜ୍ଞା ହଁ, ମତେ ଆଜି ଦୁଇ ତିନିଜଣ ଅଫିସର ଫ୍ରେଣ୍ଡସ୍ ଜବରଦସ୍ତି ନିଜ କାର୍‌ରେ ବସାଇ ଏହି ମ୍ୟାଟିନି ଶୋକୁ ନେଇ ଆସିଛନ୍ତି ଯେ—ବିରହେଶଜୀ, ଆମେ ତୁମ ସାଙ୍ଗରେ ବସି ସିନ୍‌ରେ ତୁମର ନାମ ଦେଖିବୁ ବୋଲି ବାଧ୍ୟହୋଇ ଆସିଛୁ । ଫେର୍ ମୁଁ ସେମାନଙ୍କୁ କହିଲି ଯେ ଭାଇ ମୁଁ ବର୍ତ୍ତମାନ ଏହିଠାରେ ଅପେକ୍ଷା କରିବି କାରଣ ମୋର ବନ୍ଧୁ ଶଙ୍କରଲାଲ ଆସିବେ । ମୁଁ ତାଙ୍କ ସହିତ ପିକ୍‌ଚର୍ ଦେଖିବାକୁ ପ୍ରମିସ୍ କରିଛି, ନହେଲେ ମୁଁ ସେମାନଙ୍କ ସାଙ୍ଗରେ ହିଁ କାର୍‌ରେ ଚାଲି ଯାଇଥାଆନ୍ତି । ଏତକ ପ୍ରବଚନ ସାରି ବିରହେଶଜୀ ମହାରାଜ ସବୁ

ଭକ୍ତମାନଙ୍କୁ ନିଜର ଦର୍ଶନ ମତରେ କୃତାର୍ଥ କରିଦେଲେ । ଶଙ୍କରଲାଲ୍ ହାତ ବଢ଼ାଇ କହିଲା—ଆସନ୍ତୁ ଯିବା ।”

ଗୋପ ଗୋପୀମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ବରହେଶଙ୍କ ଆଗକୁ ଗ୍ଲଲେ ।

କର୍ଣ୍ଣେଲ ଲାଇନ ଭିତରେ ଗାଡ଼ି ପାର୍କ କଲେ । କର୍ଣ୍ଣେଲ ଓ ସଜ୍ଜନ ନିଜ ନିଜ ପାଖରେ କାଚ ବନ୍ଦ କରି ଗାଡ଼ି ଲକକରି ତଳକୁ ଓହ୍ଲାଇ ବାହାରେ ଠିଆ ହେଲେ । କର୍ଣ୍ଣେଲ କାରର ଷ୍ଟବ ବନ୍ଦ କରିବା ପାଇଁ ଷ୍ଟବ ପେଣ୍ଟା ବାହାର କଲେ । ସଜ୍ଜନ ଗାଡ଼ି ଆରପଟେ ଅନାଇଲେ—ଗ୍ଲରିଆଡ଼େ ଅସଂଖ୍ୟ ଲୋକଭିଡ଼ ଗହଳି ଓ ତାରି ଭିତରେ ମହାକବି ବୋର । ସଜ୍ଜନର ହଜଲା ନିଷ୍ପ୍ରଭ ଆଖି ଦୁଇଟି ହଠାତ୍ ଜଳି ହୋଇଗଲା ।

ସେ କହିଲା—“କର୍ଣ୍ଣେଲ, ଗ୍ଲଲ ଫେରିଯିବା, ଏଠି ଆଉ ଠିଆ ହେବା ନାହିଁ···ମନ ତାର ଖରାପ ହୋଇ ଯାଇଥିଲା ସେତେବେଳକୁ ।

“କାହିଁକି ? କର୍ଣ୍ଣେଲ ଚଢ଼ା ସ୍ୱରରେ ପଗ୍ଲରିଲା ।

“ଉହୁଁ । ଦେଖିବ ନାହିଁ । ବିରକ୍ତ ଦୁଇଗୁଣା ବଢ଼ିଯିବ । ସଜ୍ଜନ ଲୁଆଙ୍ଗ-ପରି ଖନେଇଲା । କର୍ଣ୍ଣେଲ କାରର ତାଲା ବନ୍ଦକରି ଷ୍ଟବର ରିଙ୍ଗ ପକେଟରେ ରଖି ଆଗେଇଲା । ସଜ୍ଜନ ବିରକ୍ତ ହୋଇ କହିଲା ।” ଗୋଟିଏ କଥା ହେଲା ବମ୍ବେର ଫିଲ୍ମ (ସିନେମା) ଏସ୍‌ଥେଟିକ୍ ଡେଷ୍ଟରେ ସଢ଼ି ଯାଇଥିବା ଅମୃତଭଣ୍ଡା । ଦ୍ୱିତୀୟତଃ ତୁମର ପସନ୍ଦ, ତୃତୀୟରେ ମହାକବି ବୋରଙ୍କୁ ମଧ୍ୟ ଦର୍ଶନ ପାଇଲଣି ।”

ବୋରର ନାମ ଶୁଣି କର୍ଣ୍ଣେଲଙ୍କୁ ହସ ମାଡ଼ିଲା, ସାମନାକୁ ଗ୍ଲହିଁଲେ । ବୋରଙ୍କୁ ଦେଖି ନପାରି ପଗ୍ଲରିଲେ—“ସେ କେଉଁଠି ଠିଆ ହୋଇଅଛନ୍ତି କି ?”

“ହେଇ ଆଗରେ ସିଢ଼ିରେ ଉଠୁଛନ୍ତି । ଭାଗ୍ୟଖରାପ, ତା’ଠାରୁ ବହୁତ କଷ୍ଟ । ଗ୍ଲଲ ବନ୍ଧୁ ପାଖରେ ଗୋମତୀ ନଦୀର କୂଳରେ ବରଂ ଏକୁଟିଆରେ ବସି ଗଢ଼ିବା । ସଜ୍ଜନ ସ୍ୱରରେ କ୍ଲାନ୍ତିଥିଲା ।”

ଆଜି ତୁମେ ନିଜେ ବୋର କରୁଛ । ମୋ ମନ ହେଉଛି ଦେଖିବାକୁ । ବା—ଆଉ ଏଠାକୁ ଆସିଛୁ, ଦେଖିବା ପାଇଁ, ଦେଖିବୁ । ଶଳା ବୋରକୁ ପାଖରେ ପୂରେଇବୁ ନାହିଁ ।

ସ୍ଲମ ଦେଖିବ ।

ସଜ୍ଜନ ଏବଂ କର୍ଣ୍ଣେଲ ସିନେମା ହଲର ଦର୍ଜା ପାଖରେ ପହଞ୍ଚି ଯାଇଥିଲେ । ଟିକେଟ୍ ଚେକର ଠାରୁ ନିଜ ଟିକଟର ଅଧା ଛିଣ୍ଡାଇ ରଖିବା ବେଳେ ବୋରକୁ ଦେଖି ସଜ୍ଜନ ଅଟକି ଗଲେ ।

ବିଦେଶ ଦଳର ସମସ୍ତେ ନୂତନ ଚମକର ସହିତ ସଜ୍ଜନଙ୍କୁ ଦେଖିବାକୁ ଲାଗିଲେ । ମଧ୍ୟମ ଧରଣର ସ୍ୱାସ୍ଥ୍ୟ ଗୌରବର୍ଣ୍ଣର ସୁଠାମ—ଚେହେରା ବଳିଷ୍ଠ ବାହୁ, ପଶମ କନାର ସାର୍ଟ, ଢିଲା ପାଇଜାମା ପିନ୍ଧି ହାତରେ ଓଭର କୋଟ ଧରି ସଜ୍ଜନ କବାଟ ପାଖରେ ଠିଆ ହୋଇଥିଲା । ସମସ୍ତେ ନମସ୍କାର କଲେ । ସଜ୍ଜନ ବେଖାତିର ଭାବରେ ପ୍ରତି ନମସ୍କାର କଲା ଏବଂ ହଲ୍ ଭିତରକୁ ଯିବାକୁ ଉଦ୍ୟତ ହେଲା । ବୋରୁ ଶୀଘ୍ର ଆଗେଇ ଆସିଲେ । ଶଙ୍କର ଲାଲ ଏବଂ ବର୍ମା ମଧ୍ୟ ଆଗେଇ ଆସିଲେ । ତାର ନିଜ କୋଟ ଉପରେ ପଡ଼ିଥିବା କେକ୍‌ର ଗୁଣ୍ଡକୁ ଝାଡ଼ିଲା ଏବଂ ପୁଣି ବେଞ୍ଚ ଉପର କପ୍ ଉଠେଇ ଶୀଘ୍ର ଶୀଘ୍ର ନିଜର କଫି ଶେଷକଲା, ସାନବୋହୂ ସେତିକି ସମୟ ଭିତରେ ନିଜର ମୁଣ୍ଡର ଲୁଗା ସମ୍ଭାଳି ନେଲା ଟିକେ । ପୁଣି ଆସ୍ତେ କାନି ଗୋଟା ଆଙ୍ଗୁଳିରେ ଧରିଥିବା ହଳଦିଆ ରୁମାଲ ସହ ହାତକୁ ମୁହଁ ପର୍ଯ୍ୟନ୍ତ ଉଠାଇଲା । କିନ୍ତୁ ଲିପ୍‌ଷ୍ଟିକ ଓଠକୁ ଆଉ ପୋଛିପାରିଲା ନାହିଁ । ଚୁପ୍ ହୋଇଗଲା । ବଡ଼ ବୋହୂ ହାତଯୋଡ଼ି ସାରିଲା ପରେ ସାନ ବୋହୂ ଆଡ଼କୁ ଟିକେ ବୁଲିଗଲା ଏବଂ ଶୀଘ୍ର ଶୀଘ୍ର ନିଜର କେକ୍ ଶେଷ କରିବାକୁ ଲାଗିଲା । ବଡ଼ ବୋହୂ ପାଇଁ ଆଜିର ସନ୍ଧ୍ୟା ସ୍ୱର୍ଗ ଲୋକରେ କଟିଲାଭଳି ଲାଗୁଥିଲା । ନରଗିସ୍, ସୁରେୟା, ରାଜକପୁର, ଦିଲ୍ଲିପକୁମାର, ଦେବାନନ୍ଦ, ନସୀ, ପ୍ରେମନାଥ, ଆହୁରି ମଧ୍ୟ ଯେତେ ପରିଚିତ ନାମ ଅଛି । ସେ ଏ ସମସ୍ତଙ୍କର ପ୍ରିୟମିତ୍ର କବିବର ବିରହିଣଙ୍କ ସହିତ ବସି ସିନେମା ଜଗତର କଥା ଶୁଣିବା ତାଙ୍କର ଗୀତ ଶୁଣିବା, ଏତେବଡ଼ ସୌଭାଗ୍ୟ ବଡ଼ ବୋହୂକୁ ଆଶ୍ଚର୍ଯ୍ୟ ଆନନ୍ଦରେ ଅଧିର କରିଦେଲା । ଅତ୍ୟଧିକ ଉତ୍ସାହରେ ସେ ଆକାଶର ପକ୍ଷୀଥିଲା । ବୋର କହିଲା" ଆରେ ତୁମେ—ଆପଣ ଯାହାହେଉ କଥା ରଖିଲ, ବନ୍ଧୁ-ମିଃ ସଜ୍ଜନ ଏବଂ କର୍ଣ୍ଣେଲ ସାହେବଙ୍କୁ ଦେଖି ମୁଁ ବହୁତ ବହୁତ ଖୁସି ।

ଶଙ୍କର ଆଗକୁ ଆସି ସଜ୍ଜନଙ୍କୁ କହିଲା "ମହାଶୟ, ମୋର ପରିବାରର ଲୋକେ ଆପଣଙ୍କ ସହିତ ଦେଖା କରିବାପାଇଁ ଇଚ୍ଛୁକ ।

ଏହା କହି ସେ ସାନ ବୋହୂ ଇତ୍ୟାଦିକୁ ଆସିବାପାଇଁ ସଙ୍କେତ ଦେଲା । ଏହା ଶୁଣି ସଜ୍ଜନ ଶୀଘ୍ର ବାହାରକୁ ବାହାରି ଆସିଲେ । ସମସ୍ତଙ୍କ ସହିତ ପରିଚିତ ହୋଇ "ଖୁବ୍ ଖୁସି ହେଲି" କହି, ସଜ୍ଜନ ପୁଣି ଫେରିଗଲେ ।

ମିଷ୍ଟର ବର୍ମା କହିଲେ, ମୋର ସ୍ତ୍ରୀ ଏବଂ ଏ ଶ୍ରୀମତୀ ଲଲ୍ ଆପଣଙ୍କ ପେଣ୍ଟିଂ ଦେଖିବାକୁ ଚାହିଁଛନ୍ତି । ଆଜି ସକାଳେ ଆମ୍ଭେମାନେ ଆର୍ଟିକାଲ୍···"ଆଜ୍ଞା" ଯେତେବେଳେ କହିବେ ସେତେବେଳେ ତାଙ୍କୁ ପେଣ୍ଟିଂ ଦେଖାଇଦେବ, ବରହେଣ ନିଜର ପିଙ୍ଗଳ ରଙ୍ଗରେ କେଶ ଉପରେ ହାତ ବୁଲାଉ ବୁଲାଉ କହିଲା ଏବଂ ପୁଣି ଆଉ କିଛି କହିବାକୁ ଯାଉଥିଲା "ବୋରେଣ" ?

ଏହି ନାମ ଶୁଣି ବରହେଣ ସଙ୍କୁଚିତ ହୋଇଗଲା । ସଜ୍ଜନ ମିଷ୍ଟର ବର୍ମାଙ୍କୁ ଶାନ୍ତ ସ୍ୱରରେ କହିଲେ "ଆପଣ ସେମାନଙ୍କୁ ନେଇ ଯେ କୌଣସି ଦିନ ମୋ ପାଖକୁ ଚାଲି ଆସିବେ କିନ୍ତୁ ଦୟାକରି ମୋତେ ପୂର୍ବରୁ ଜଣାଇ ଦେବେ । ଆସ କର୍ଣ୍ଣେଲ ।"

ଦୁଇଜଣ ଭିତରକୁ ଚାଲିଗଲେ ।

ନିଜର ଟିକେଟ୍ ଦେଇ ଭିତରକୁ ଯିବା ସମୟରେ ଶଙ୍କରଲାଲ ବରହେଣ ଇତ୍ୟାଦି ଦେଖିଲେ, କର୍ଣ୍ଣେଲ ଏବଂ ସଜ୍ଜନ ଗୋଟିଏ ବକ୍ସରେ ବସୁଛନ୍ତି ।

ବରହେଣର ବାଲକୋନିରେ ବସିବାରେ ଇଚ୍ଛା ନ ଥିଲା, କିନ୍ତୁ ଅନ୍ୟମାନଙ୍କ ଆଗ୍ରହ ଯୋଗୁ ସେ କିଛି କହିପାରିଲା ନାହିଁ । ବଡ଼ ବୋହୂ, ତାରି ଏବଂ ସାନ ବୋହୂ ପରେ ଗୋଟିଏ ସିଟ୍ ଛାଡ଼ି ଶଙ୍କର ଏବଂ ବର୍ମା ବସିଲେ । ସାନ ବୋହୂ ପୁଣି ନିଜର ସ୍ଥାନ ବଦଳି କରି ନିଜ ସ୍ୱାମୀଙ୍କର ପାଖରେ ଥିବା ଖାଲି ସ୍ଥାନରେ ଆସି ବସିଲେ । ବର୍ତ୍ତମାନ ତାରି ପାଖରେ ଥିବା ସ୍ଥାନଟି କବି ବରଙ୍କ ପାଇଁ ଖାଲି ହୋଇଗଲା । ମାଜି କବିବର ଆସୁ ଆସୁ ରହିଗଲେ ।

ବର୍ତ୍ତମାନ ଆସୁଛି, କହି ବରହେଣ ସଜ୍ଜନଙ୍କ ପାଖକୁ ଗଲା ।

ସଜ୍ଜନ ଏବଂ କର୍ଣ୍ଣେଲ ବୋରଙ୍କୁ ଭିତରେ ଆସିବା ଦେଖି ରାଗି ଉଠିଲେ ।

ବରହେଣ କହିଲେ, ହେ, ହେ, ଆପଣମାନେ ଆସିବାରୁ ମୋର—

ସଜ୍ଜନ କର୍ଣ୍ଣେଲର ଜଙ୍ଘ ଚିମୁଟିଲା, କର୍ଣ୍ଣେଲ ଚିଡ଼ିକରି କହିଲା "ବୋରେଣ ଏଠାରୁ ଯାଅ, ଆମକୁ ଡିଷ୍ଟର୍ବ କରନାହିଁ । ଯାଅ ।"

ଯାଉଛି ବର୍ତ୍ତମାନ, ଯାଉଛି କହି କହି ବରହେଣ ପଛ ସିଟ୍‌ରେ ବସିଗଲା ଏବଂ ଦୀନତା ସହିତ ବସି କହିଲା "ସଜ୍ଜନ ଭାଇ, ଏହି ଛବିରେ-ମାନେ ଏହି ସିନେମାରେ ମୋର ଗୀତ ରହିଛି ।" ଓହୋ ! ଏହି ସିନେମାରେ ଅଛି ··"ସଜ୍ଜନ ବିରକ୍ତ ହୋଇ ତାକୁ କହିଲା ।"

କର୍ଣ୍ଣେଲ କହିଲା, ଏହା ଜଣାଥିଲେ ଆମେ କେବେ ଆସି ନଥାନ୍ତୁ । ଆଚ୍ଛା ବର୍ତ୍ତମାନ ଆପଣ ଏଠାରୁ ଶୀଘ୍ର ଯାଆନ୍ତୁ ।

"ହଁ, ହଁ, ଏଥର ଯାଉଛି. ଏଥିରେ ମିଉଜିକ୍ ଡାଇରେକ୍ଟର, ମୋର ଟିଉନ୍—"

'ବୋରେଣ" କର୍ଣ୍ଣେଲ ପୁଣି ଆଖି ଦେଖାଇଲା । ବରହେଣ ହାତଯୋଡ଼ି କହିଲେ, ଆପଣ ସମସ୍ତଙ୍କ ସାମନାରେ ମୋତେ ଏହିପରି ଡାକନ୍ତୁ ନାହିଁ କର୍ଣ୍ଣେଲ ସାହେବ । ମନ ହେଉଛିତ ଏକୁଟିଆରେ ଶହେ ଜୋତା—

"ଆଚ୍ଛା ତାହାହେଲେ ଶୀଘ୍ର ଚାଲିଯାଅ"

"ହଁ-ହଁ"

"ବା"

ବୋରେଣ ଚାଲିଗଲା । ତୃତୀୟ ଘଣ୍ଟା ବାଜିଲା । ରେକର୍ଡ ବାଜିବା ବନ୍ଦ ହେଲା, ବରହେଣ ନିଜର ସ୍ଥାନକୁ ଆସିଲା । ଚାରି ଜୋଡ଼ା ଗୋଡ଼ରେ ମୋତେ "ମାଫ୍ କରିବେ, ଧନ୍ୟବାଦ" କହିକରି ଆସି ବରହେଣ ବଡ଼ ବୋହୂ ପାଖରେ ଠିଆ ହୋଇଗଲା । ନିଜର ଖାଲି ରହିଥିବା ସ୍ଥାନକୁ ଦେଖାଇ ତାଙ୍କୁ କହିଲା । "ପ୍ଲିଜ୍ ମିସେସ୍, ହଁ, ମୁଁ ଟିକେ ଏଠାରେ ବସିବି, ସ୍କ୍ରିନ୍କୁ ଏଠାରୁ ଦେଖିବା ପାଇଁ ଭଲ ଆଙ୍ଗେଲ ହେବ । ଆପଣଙ୍କର କିଛି ଅସୁବିଧା ନାହିଁତ ? ଆପଣଙ୍କୁ ।"

ବରହେଣ ବସୁ ବସୁ ତାଙ୍କ ଏବଂ ବଡ଼ ବୋହୂଙ୍କୁ ବଡ଼ ବିନମ୍ର ଭାଷାରେ ପଚାରିଲା, ଗୋଡ଼ରେ ଓଭର କୋଟ ଏବଂ ତା ଉପରେ ସିଗାରେଟ୍ର ଟିଣ ରଖି ସେ ଶଙ୍କରକୁ କହିଲା "ଆପଣମାନେ ବହୁତ ଦୂରରେ ବସିଲେ ।"

ସବୁଠାରୁ ଅଧିକ ଦୂର ଶ୍ରେଷ୍ଠ ବୋହୂକୁ ବ୍ୟସ୍ତ ଲାଗୁଥିଲା । ବରହେଣ ତାହାର ସ୍ୱାମୀର ବନ୍ଧୁ ଏବଂ ସେ—ତାଙ୍କର କଥା ଶୁଣିପାରିବେ ନାହିଁ । ନିୟୁଜ୍ ରିଲ୍ ଆରମ୍ଭ ହୋଇଯାଇଛି । ବରହେଣ ଆସ୍ତେ ଆସ୍ତେ ତାଙ୍କୁ କହିବାକୁ ଆରମ୍ଭ କରିଦେଲେ । ପିକ୍‌ଚରରେ ଗୋଟିଏ ଯାଗାରେ ମୁଁ କାମ କରିଛି । ଆପଣ ଚହ୍ନିବେ ।

"ସତରେ ? ତାଙ୍କ ଖୁସିରେ ଚମକି ଉଠି କହିଲା" କ'ଣ, କ'ଣ ? ଶ୍ରେଷ୍ଠ ବୋହୂ ତାଙ୍କୁ ପଚାରିଲା ତାଙ୍କ ତାଙ୍କୁ କହିଲା "ମିଷ୍ଟର ବରହେଣ ମହାଶୟ ନିଜେ ଏହି ଫିଲ୍ମରେ ଏକ୍ଟିଂ କରିଛନ୍ତି ।

"ଆଚ୍ଛା ।" ଗ୍ଲେଟ ବୋହୂ ଖୁସି ହୋଇ ଏହି ସମ୍ବାଦ ନିଜ ସ୍ୱାମୀଙ୍କୁ ଶୁଣେଇଲା, ସେ ବର୍ମୀଙ୍କୁ । ସମସ୍ତେ ନିଜର ସୌଭାଗ୍ୟ ପାଇଁ ଗର୍ବିତ ହେଲେ । ବଡ଼ ବୋହୂ ଶୁଣିବାକୁ ଚେଷ୍ଟାକରି ମଧ୍ୟ କିଛି ଶୁଣିପାରି ନଥିଲା । ଏବେ, ବିରହେଶଙ୍କୁ ସିଧା ବସିବା ଦେଖି ହଠାତ୍ ତାଙ୍କୁ ପଚାରିଲା, ଆପଣ ଏମାନଙ୍କୁ କଣ କହିଲେ କି ?

ବିରହେଶ ନିଜ ମୁଣ୍ଡ ତା' ଆଡ଼କୁ ନୁଆଁଇ ହସିକରି କହିଲେ, ମୁଁ ଏଥିରେ ଗୋଟିଏ ଯାଗାରେ ଅଳ୍ପ ଏକ୍ଟିଂ ମଧ୍ୟ କରିଛି । ସେହି ଡାଇରେକ୍ଟର ଏବଂ ଅନ୍ୟମାନେ ବହୁତ ବାଧ୍ୟକଲେ—ତେଣୁ ମୁଁ ଗୋଟିଏ ଗ୍ଲେଟ ଅଭିନୟ କଲି । ବଡ଼ ବୋହୂ ପୁଣି ଆଗ୍ରହରେ କହିଲା "ଶୁଣନ୍ତୁ, ଯେତେବେଳେ ଆପଣଙ୍କ ଆକ୍ଟିଂ ଆସିବ, ସେହି ଯାଗାରେ ଆମକୁ କହିଦେବେ ।"

ତାହାହେଲେ ଆପଣ ଚହ୍ନିପାରିବେ ନାହିଁ ? କହି ବିରହେଶ ତାଙ୍କଆଡ଼କୁ ଚାହିଁଲେ ।

ଅନ୍ଧାରରେ ଅତି ନିକଟରେ ବସିଥିବା ବିଖ୍ୟାତ ଲୋକକୁ ବଡ଼ ବୋହୂ ଲଜ୍ଜ୍ୟା ପୂର୍ଣ୍ଣ ଆଖିରେ ନିରେଖି ଦେଖିଲା ଏବଂ ପଚାରିଲା । "ସେଥିରେ କ'ଣ ଆପଣ ଠିକ୍ ଏମିତି ଦେଖାଯିବେ ?"

ହଁ ଆଜ୍ଞା, ପ୍ରାୟ ସେମିତି । ବଡ଼ ବୋହୂର ଗୋରା ସତେଜ ମୁହଁ ଏବଂ ଏହି ସରଳ ପ୍ରଶ୍ନ ଶୁଣି ବିରହେଶଙ୍କୁ ଖୁବ୍ ହସମାଡ଼ିଲା । ବଡ଼ ବୋହୂ ଲଜ୍ଜିତ ହୋଇଗଲା ।

ନ୍ୟୁଜ୍ ରିଲ୍‌ରେ ପଣ୍ଡିତ ଜବାହରଲାଲ ନେହେରୁ କ୍ରୀଡ଼ା ପ୍ରତିଯୋଗିତା ଉଦ୍‌ଘାଟନ କରୁଛନ୍ତି । ଯେତେବେଳେ "ବାହାର୍ ଆଇରେ"ର ସେନ୍‌ସର ସାର୍ଟିଫିକେଟ୍ ଆସିଲା ସେତେବେଳେ ସମସ୍ତଙ୍କ ଦୃଷ୍ଟି ପର୍ଦା ଉପରେ । ବିରହେଶର ନାମ ବାଛିବା ପାଇଁ ଏପରି ଲାଗିଗଲେ ଯେପରି ଅର୍ଜୁନର ଦୃଷ୍ଟି ଚଢ଼େଇର ମୁଣ୍ଡ ଉପରେ ଲାଗିଥିଲା ।

ପର୍ଦା ଉପରେ ବିରହେଶର ନାମ ଆସିଲା । ତାହାର ପ୍ରଶଂସକ ଦଳ ଧନ୍ୟ ଧନ୍ୟ ହୋଇ ଉଠିଲେ । ବିରହେଶ ନିଜେ ତା ନାମକୁ ଦେଖାଇ ହଠାତ୍ ହାତ ତଳକୁ ପକାଇ ଦେବାରୁ ସିଗ୍ରେଟ୍ ଅଗ୍ନିକ ଭାବରେ ବଡ଼ ବୋହୂର ହାତରେ ଲାଗିଗଲା । ବିରହେଶ ଏବଂ ବଡ଼ ବୋହୂ ନିଜ ନିଜର ହାତ ଘୁଞ୍ଚାଇନେଲେ, ବିରହେଶ ନଇଁପଡ଼ି ଆସ୍ତେ ପଚାରିଲା "ଚିଆଁ ଲାଗିନାହିଁତ"—"ନାହିଁ" ଆନନ୍ଦରେ

ଉତ୍ଫୁଲ୍ଲ ହୋଇ ବଡ଼ ବୋହୂ କହିଲା, ଏହି ସମୟରେ ବିରହେଶ ଯଦି ତାଙ୍କୁ ସତରେ ପୋଡ଼ି ଦେଇଥାନ୍ତା ତାହାହେଲେ ମଧ୍ୟ ସେ ଏହା ହିଁ କହନ୍ତା— "ନାହିଁ ।"

ଜଜର ସିନ୍ ଆସିବା ପୂର୍ବରୁ ବିରହେଶ ତାକୁ ଚେତାଇଦେଲା । ପୁଣି ବଡ଼ ବୋହୂକୁ କହିଲା, ତାପରେ ସେପାଖେ ସୂଚନା ଦେଲା । ସମସ୍ତେ ଏକ ପ୍ରକାର ନିଶ୍ୱାସ ବନ୍ଦକରି ପ୍ରସ୍ତୁତ ହୋଇଗଲେ । ଯେପରି ତାଙ୍କ ସାମାନାରେ ସଂସାରର ଅଷ୍ଟମ ଆଶ୍ଚର୍ଯ୍ୟ ଆସୁଛି ।

ହିରୋଇନ୍‌ର ବିବାହ ପାର୍ଟିରେ ଅନେକ ଲୋକଙ୍କ ମଧ୍ୟରେ ବିରହେଶ ଆସୁଛନ୍ତି । ହିରୋଇନ୍‌କୁ ଉପହାର ଦେଇ ଚଉକିରେ ବସୁଛନ୍ତି । ଏହାପରେ ଦୁଇ ତିନଥର ତାଙ୍କର ଛବି ଦେଖାଯାଉଛି ।

ଜଜ ସିନ୍ ଆସିବା ସମୟରେ ବିରହେଶ ବଡ଼ ବୋହୂକୁ ଆସ୍ତେ ଆସ୍ତେ କହିଲେ "ବର୍ତ୍ତମାନ ଚିହ୍ନି ପାରିବେ ଆପଣଙ୍କ ଅଧମକୁ ।"

ଇଣ୍ଟରଭାଲ୍ ହେବାପରେ ବଡ଼ ବୋହୂ ସହିତ ବିରହେଶର ଆଖି ମିଶିଗଲା ଓ ସେ ଜଜକୁ ଧନ୍ୟ ମନେକଲା ।

# ନଅ

ସଜ୍ଜନ ଏବଂ କର୍ଣ୍ଣେଲ ସିନେମା ହଲ୍‌ରୁ ବାହାର ହଜରତ୍‌ଗଞ୍ଜରେ ପହଁଞ୍ଚିଲେ । ହଠାତ୍ ଆଧୁନିକ ସୌଧଗୁଡ଼ିକୁ ଛାଡ଼ି କର୍ଣ୍ଣେଲଙ୍କ ଗାଡ଼ି ସଡ଼କର ଡାହାଣ ପାଖରେ ରହିଲା । ମନେ ହେଉଛି ଛକ ଦ'ପଟେ ମଟର ଗାଡ଼ିର ଧାଡ଼ି ପାର୍କ ହୋଇ ଯେପରି ବିଶ୍ରାମ ନେଉଛି । ଯପରଙ୍ଗର ଆଲୋକର ଲାଲ ଫେଶନ ଧାଉଥିବାଲା ଷ୍ଟାଇଲ୍ ବୃକ୍ଷ-ବନିତା, ଯୁବକ-ଯୁବତୀର ଅସଂଖ୍ୟ ଗହଳି ଏବଂ ରଙ୍ଗ ସୁଗନ୍ଧରେ ଚମକୁଥିବା ହଜରତ୍‌ଗଞ୍ଜର ଗହଳି ସେହି ପ୍ରବଳ ଶୀତ ରାତିରେ ଅସ୍ତ ହୋଇ ଯାଇଥିଲା କେବଳ ମେଫେୟର ସିନେମାର କୋଳାହଳ ହଠାତ୍ ବାଧିବା ହୋଇଥିବା ନାରୀର ଦେହରୁ ଖୋଲି ଯାଉଥିବା ସୌଭାଗ୍ୟ ଚିହ୍ନର ଅବଶିଷ୍ଟ ଚିହ୍ନପରି ଦେଖାଯାଉଥିଲା । ଲାଲବାଗ ଆଡ଼କୁ ଗାଡ଼ି ଚଲାଇ ଚଲାଇ କର୍ଣ୍ଣେଲ କହିଲେ "ଡ୍ରାଇ କ୍ଳିଣ୍ ପାଇଁ ଯେଉଁ କୋଟ ଦେଇଥିଲି ନେଇଯିବି, ମୁଁ ସେଠାରୁ ଫେରିବା ପର୍ଯ୍ୟନ୍ତ ତମେ ଦୋକାନ—"

"ମୋତେ ଏଠାରେ ଛାଡ଼ିଦିଅ, ତୁମେ ସେଠାରୁ କାହିଁକି ପୁଣି ଫେରିବ ସେଠାରୁ ବରଂ ଚାଲିଯିବ । ହଠାତ୍ ସଜ୍ଜନ କହିଲା ।

କାହିଁକି—କାହିଁକି ?

"ମୁଁ ଚାଲିଚାଲି ଯିବି । ଗାଡ଼ି ରଖ, ରଖ ଗାଡ଼ି "ଗାଡ଼ି ରହିଗଲା । କର୍ଣ୍ଣେଲ କହିଲ, "ତେବେ ମୁଁ ତୁମକୁ ଛାଡ଼ି ଆସୁଛି, କୋଟ ନହେଲେ କାଲି ଆଣିବା ।

ନାହିଁ, ବର୍ତ୍ତମାନ ମୁଁ ପାଦରେ ଚାଲି ଚାଲି ଯିବି, ଯିବି । କାରରୁ ଓହ୍ଲାଇ ସଜ୍ଜନର ଦୃଷ୍ଟି ଫୁଟ୍‌ପାଥ ଉପରେ ପଡ଼ିଲା ।

କର୍ଣ୍ଣେଲ ତାର ଉଦାସ ଚେହେରା ଦେଖି କହିଲା "ଶୁଣ, ଆଜି ଦିନସାରା ତୁମକୁ କେମିତି ଉଦାସ ଦେଖୁଛି କ'ଣ ହୋଇଛି କି, ନା ?"

"ନା ସେମିତି କିଛି ହୋଇ ନାହିଁ । ପରେ ତୁମକୁ କହିବି ।"

ସଜ୍ଜନ ଜୋରରେ ଚାଲିବାକୁ ଆରମ୍ଭ କଲା । ଆଜି ସକାଳୁ ତା' ମନରେ ଝଡ଼ର ସୃଷ୍ଟି ହୋଇଛି । ତା'ର ସମ୍ବେଦନଶୀଳ ମନ ଉପରେ ଆଘାତ ଲାଗିଛି । ସଜ୍ଜନର ପ୍ରଶଂସାରେ ଛପା ହୋଇଥିବା ଲେଖା ଦେଖି, ଇର୍ଷାରେ ମହିପାଳ ଯାହା ପାରେ ତା' ଶୁଣେଇଲା, ତା'ପରେ ମନ ଖରାପ । ପୁଣି ହଠାତ୍ ନଜର କୋଠରୀରୁ ପିତୁଳା ନେଇ ଗଳାରେ ଗୋଟିଏ ହାସ୍ୟାସ୍ପଦ ବିଷୟବସ୍ତୁ ହୋଇଯିବାରେ ମନେ

ମନେ ରାଗ ଓ କ୍ଷୋଭରେ ସେ କୁହୁଳୁଥିଲା । ଜଗଦମ୍ବା ସହାସ୍ୟର ପ୍ରଗତିଶୀଳ ଝିଅ ତାଙ୍କୁ କେମିତିପରି ଦୁଇ ଘର କଥା ଶୁଣାଇଲା । ସେହି ଯୁବତୀ ପାଇଁ ନିଜ ମନରେ କାମ-ବିକାର ଜାଗ୍ରତ ହେବାର ମାନସିକ ଦ୍ୱନ୍ଦ୍ୱ ମଧ୍ୟ ଆରମ୍ଭ ହୋଇଛି । ଏହି ଅବସ୍ଥାରେ ଚନ୍ଦା ତାର ଚରିତ୍ରର ଭଲମନ୍ଦ ଦୁଇ ଦିଗ ଆଙ୍କି ତା' ସାମ୍ନା ଧରି ରଖିଛି ।

ବତିଶ ବର୍ଷ ବୟସ ପର୍ଯ୍ୟନ୍ତ ଅବିବାହିତ ରହିବାରୁ ତାର କାମ ଜୀବନ ଅନିୟମିତ ଥିଲା । ନାରୀର ଅନ୍ତରଙ୍ଗ ସମ୍ପର୍କର ସୁଯୋଗ କେବେ ଦୁଇ—ତିନି ମାସରେ ଥରେ ମିଳିଲେ ମିଳେ ନଚେତ୍ ନାହିଁ ଏବଂ କେବେ ଯଦି ଏପରି ସୁଯୋଗ ଆସିଯାଏ ତେବେ ତାହା ଅତିଶକ୍ତ ହୋଇଯାଏ । ତା' ଜୀବନରେ ତିନି ପ୍ରକାର ନାରୀ ଆସିଛନ୍ତି । ପ୍ରଥମ ସେ ପଇସା ଦେଇ ଆନନ୍ଦ କିଣି ଉପଭୋଗ କରୁଥିଲା । ଦ୍ୱିତୀୟରେ ପ୍ରେମ ଉପହାର କରିଆରେ ଉପରିଆ ଆନନ୍ଦ ପାଉଥିଲା, ତୃତୀୟରେ ଯେଉଁସବୁ ସ୍ତ୍ରୀଲୋକ ଥିଲେ ଯାହାଙ୍କ ସହିତ ତା'ର ସମ୍ପର୍କ କେବଳ ବାହ୍ୟ ଶିଷ୍ଟାଚାରରେ ସୀମିତ । ମା' ହିଁ ଏକମାତ୍ର ନାରୀ ଯାହାଙ୍କ ପାଇଁ ତା' ମନରେ ଗଭୀର ଶ୍ରଦ୍ଧା ଭରି ରହିଛି । ନାରୀପ୍ରତି ଏହି ଶ୍ରଦ୍ଧା ଆଜି ତାଙ୍କ ମନକୁ ତିଳେ ତିଳେ ଦଗ୍ଧ କରୁଛି । ଏହି ମୁହୂର୍ତ୍ତରେ ତାର ମାଆଙ୍କ କଥା ମନେପଡ଼ୁଛି ।

ସଜ୍ଜନର ମା ଏଗାର ବର୍ଷ ହେଲାଣି ସ୍ୱର୍ଗାରୋହଣ କରିଛନ୍ତି । ସଜ୍ଜନର ପିତା ଶ୍ୟାମ ମନୋହର ବର୍ମା ବହୁତ ବିଳାସୀ ଥିଲେ । ବିଲାତରୁ ବାରିଷ୍ଟର ଡିଗ୍ରୀ ହାସଲ କରିଥିଲେ ମଧ୍ୟ ଦିନେ ହେଲେ କଚେରୀ ଯାଇ ନାହାନ୍ତି । ନାଚ, ବାଈଜୀ, ମଦ ଏଥିରେ ସେ ଆଠ ଦଶଲକ୍ଷ ଟଙ୍କା ନଷ୍ଟ କରିଥିଲେ । ଘରକୁ ସେ କେବେ କେବେ ଆସୁଥିଲେ ଏବଂ ଯେତେବେଳେ ଆସୁଥିଲେ, ସେତେବେଳେ ଚାକର, ପୂଜାରୀଙ୍କୁ ଏପରିକି ମା' ମଧ୍ୟ ବ୍ୟାକୁଳ ହୋଇପଡ଼ୁଥିଲେ । ସଜ୍ଜନ ତାର ପିତାଙ୍କୁ ଘୃଣା କରୁଥିଲେ । ତାଙ୍କ ବାପା କଥା କଥାରେ ତା ମାଆଙ୍କ ସହିତ କଳି କରୁଥିଲେ । ଗାଳିଗୁଲଜ ଦେଉଥିଲେ । ବେଳେ ବେଳେ ତାଙ୍କୁ ମାଡ଼ ମଧ୍ୟ ଦେଉଥିଲେ । ସଜ୍ଜନର ମା ବଡ଼ ଗମ୍ଭୀର ଏବଂ ଶାନ୍ତ ସ୍ୱଭାବର ଥିଲେ । ବ୍ରତ, ନିୟମ, ଉପବାସ ପର କଠୋର ଜୀବନ ମଧ୍ୟରେ ଏହି ଅତ୍ୟାଚାରକୁ ନୀରବରେ ସହି ନେଉଥିଲେ । ସେ କେବେ ମାଆଙ୍କୁ ଦାନ୍ତ ଏରୁଣ୍ଡି ଟପିବାର ଦେଖି ନାହିଁ । ଥରେ ସେ କହିଥିଲେ—ମରିବା ସମୟରେ ତାଙ୍କ ଶାଶୁ ତାଙ୍କୁ କହିଥିଲେ ଘର ସମ୍ଭାଳିବୁ, ଭଣ୍ଡାର ଘର ଚାବି ନିଜ କଲିଜାପରି ପାଖେ ପାଖେ ରଖିବୁ ଏବଂ

ଘରର ଦୁଆର ବନ୍ଦ ତେଇଁ କେବେ ବାହାରକୁ ଯିବୁ ନାହିଁ । ସଜ୍ଜନର ମା ଏହି ଛୋଟିଆ କଥା ମରିବା ପର୍ଯ୍ୟନ୍ତ ପାଳନ କରିଥିଲେ ।

ସଜ୍ଜନର ପିତାମହ ରାୟବାହାଦୁର କନ୍ନୋମଲ ୧୯୦୬ ସନରେ ବତିଶ ବର୍ଷ ବୟସରେ ମରି ଯାଇଥିଲେ । ଶ୍ୟାମ ମନୋହର ସେହି ସମୟରେ ବର୍ଷକର ଶିଶୁ । ଇଲାକା କୋର୍ଟ-ଅଫ ଓ୍ୱାର୍ଡ଼ସ୍ ହୋଇଗଲା । ଶ୍ୟାମ ମନୋହର ସାବାଳକ ହେବା ପର୍ଯ୍ୟନ୍ତ ଖାଇବା ଲୋକ ଲକ୍ଷ ଲକ୍ଷ ଟଙ୍କା ଖାଇଗଲେ । ସଜ୍ଜନର ଜେଜେମା ଢଶୁର ଅଳ୍ପ ବୟସ୍କା ମହିଳା, ନିଜ ଘରର ଆଖି ସାମ୍ନାରେ ଲୁଣ୍ଠନ ଦେଖି ମର୍ମାହତ ହେଉଥିଲେ । କେବଳ ତାଙ୍କର ଏତିକ ସନ୍ତୋଷ ଥିଲା ଯେ ତାଙ୍କ ପୁଅ ବାପର ଉପଯୁକ୍ତ ଦାୟାଦ ହୋଇଛୁ । ଶ୍ୟାମ ମନୋହର ହଠାତ୍ ବାରିଷ୍ଟର ପଢ଼ିବା ପାଇଁ ବିଲାତ ଚାଲିଗଲେ ! ତାପରେ ଜେଜେମାଙ୍କ ଦେହାନ୍ତ ହେଲା । ସଜ୍ଜନ ଏ ପର୍ଯ୍ୟନ୍ତ ତାଙ୍କୁ ମନେ ରଖିଛୁ ।

ବିଲାତରୁ ଫେରି ଶ୍ୟାମ ମନୋହରଙ୍କ ମତିଗତି ଅନ୍ୟ ପ୍ରକାର ହୋଇଗଲା । ମନ ଉପରେ ପ୍ୟାରିସର ନାଇଟ୍ କ୍ଲବର ନକ୍ସା ଅଙ୍କା ଯାଇଥିଲା, ଧନର ଅଭାବ ନଥିଲା, ଯୌବନକୁ ସେ ଲଗାମଛଡ଼ା ଘୋଡ଼ାପରି ଛାଡ଼ି ଦେଇଥିଲେ ।

ନିଜ ପିତା ଲାଲା କନ୍ନୋମଲ ପରି ବାବୁ ଶ୍ୟାମ ମନୋହରଙ୍କର ମଧ୍ୟ ବତିଶ ବର୍ଷ ବୟସରେ ମୃତ୍ୟୁ ହେଲା, ସଜ୍ଜନ ସେହି ସମୟରେ ଜୁନିୟର କେମ୍ବ୍ରିଜରେ ପଢ଼ୁଥିଲା । ତେର ବର୍ଷ ବୟସରେ ନିଜ ଭିତରେ ଜନ୍ମ ହେଉଥିବା ନୂତନ ମଣିଷର ଜିଜ୍ଞାସୁ ମନ ସଜ୍ଜନକୁ ମଧ୍ୟ ବ୍ୟସ୍ତ କରୁଥିଲା । ଜୀବନ ମରଣ, ଭଗବାନ, ଧର୍ମ, ସ୍ୱାଧୀନତା, ଗୋଲାମୀର ରାଜନୀତି, ଭାରତ ଦେଶ ଏବଂ ନ ଜାଣିଥିବା ବହୁ ଜିଜ୍ଞାସା ସହିତ ଯୌବନର ଲୁଚିଥିବା ଅର୍ଥକୁ ଉଜାଗର ହୋଇ ଦେଖିବାକୁ ତା ମନ ଚଞ୍ଚଳ ହେଉଥିଲା ।

ପିତାଙ୍କ ମୃତ୍ୟୁପରେ ମା ସଜ୍ଜନକୁ ବିବାହ ଦେବାପାଇଁ ବ୍ୟସ୍ତ ହୋଇ ଉଠିଲେ । ସଜ୍ଜନ ନାନା ପ୍ରକାର ବାହାନା କରି ଏଡ଼େଇ ଦେଉଥିଲା । ସେ ଏତେ ଛୋଟ ବୟସରେ ବିବାହ କରିବାକୁ ଚାହୁଁ ନଥିଲା । ତାର ମନରେ ବଡ଼ ହୋଇ ନିଜ ପସନ୍ଦରେ ବିବାହ କରିବାକୁ ଇଚ୍ଛା ଥିଲା । ସେ ନିଜ ମା'କୁ ସିଧାସଳଖ କହିବାକୁ ସେ ସଙ୍କୋଚ କରୁଥିଲା ଯେ ତାଙ୍କ ଦ୍ୱାରା ଠିକ୍ ହୋଇଥିବା କୌଣସି ସମ୍ବନ୍ଧକୁ ସେ ପସନ୍ଦ କରୁ ନାହିଁ । ତିନ ବର୍ଷପରେ ଆଉ ଟିକିଏ ବଡ଼ ହୋଇ ସେ ଭାବୁଥିଲା, ମା'ଆଙ୍କ ଦ୍ୱାରା ପସନ୍ଦ କରାଯାଇଥିବା ସୁନ୍ଦର ସୁନ୍ଦର ଝିଅମାନେ ତା'

ଜୀବନ ସଙ୍ଗୀନୀ ହେବା ପାଇଁ ଯେ ଗ୍ୟ ନୁହନ୍ତି । କାରଣ ସେ ରୂପ ସହିତ ସୁଗନ୍ଧ ମଧ୍ୟ ଚାହୁଁଥିଲା । ସୁଗନ୍ଧର ପରିଭାଷା ତା ର ନିଜର ଥିଲା । ସେ ବ୍ରତ-ନିୟମ ସଂଯମରେ କଠୋର ଏବଂ ସୁଗୃହିଣୀମାନେ ବହୁତ ତା ଦୃଷ୍ଟିରେ ନାପସନ୍ଦ ଥିଲେ । ସେ ଶିକ୍ଷିତା, ଆଧୁନିକ ରୁଚି ସମ୍ପନ୍ନା ଚତୁର ଏବଂ ପ୍ରତିଭାଶାଳିନୀ ସ୍ତ୍ରୀ ଚାହୁଁଥିଲା । ଏହାଛଡ଼ା ବିବାହ ପୂର୍ବରୁ ସେ ରୋମାନ୍ସ (ପୂର୍ବରାଗ) ଚାହୁଁଥିଲା ।

ଗୋଟିଏ ଦିନର କଥା, ମା' ଦିନେ ତାର ପାଦ ଧରି ଅଶ୍ରୁଳ ଆଖିରେ କହିଥିଲେ, ପୁଅ, ଗୋଟିଏ ଭିକ୍ଷା ଅଛି—ନିଜ ବାପଭଳି ଅଦାଟରେ ଯିବୁ ନାହିଁ । ଜୀବନସାରା ମୋର ଆତ୍ମା କଷ୍ଟ ପାଇ ବଢିଛି—ତୁ ମୋତେ ଆଉ କଷ୍ଟ ଦେବୁ ନାହିଁ ।

ମା'କୁ ସଜ୍ଜନ ଖୁବ୍ ଭଲ ପାଉଥିଲା । ଆଶ୍ଚର୍ଯ୍ୟର କଥା ଯେ ଯେଉଁ ବିଷୟ ସେ ନିଜ ସ୍ତ୍ରୀ ମଧ୍ୟରେ ଦେଖିବା ପସନ୍ଦ କରୁ ନଥିଲା ଠିକ୍ ସେଇ ଗୁଣ ପାଇଁ ସେ ତାର ମା'ଆଙ୍କୁ ବହୁତ ଶ୍ରଦ୍ଧା କରୁଥିଲା । ଚରିତ୍ରହୀନ ପିତାର ଠିକ୍ ବିପରୀତ ନିଜ ମା'ଆଙ୍କ ଚରିତ୍ରରେ ସବୁବେଳେ ଶକ୍ତି ନିହିତ ଥିବାର ଦେଖାଯାଉଥିଲା । ପିତାଙ୍କ ଅତ୍ୟାଚାର ନୀରବରେ ସହ୍ୟ କରିଥିବା ସହନଶୀଳା, ମମତାମୟୀ ମା'ଆଙ୍କ ସାମନାରେ ସବୁବେଳେ ସେ ତା'ର ପିତାଙ୍କୁ ଜଘନ୍ୟ ଏବଂ ଘୃଣ୍ୟ ଭାବୁଥିଲା । ତାର ପିତାଙ୍କ ଛଡ଼ା ଆଉ ଯେକୌଣସି ବ୍ୟକ୍ତି ତାଙ୍କ ସମ୍ପର୍କରେ ଆସୁଥିଲେ ସେ ଆନ୍ତରିକତା ସହ ତାଙ୍କୁ ଆଦର କରୁଥିଲେ । ତାର ମା ସମସ୍ତଙ୍କ ଦୁଃଖ ସୁଖରେ ଭାଗ ନେଉଥିଲେ । ସେହିପରି ବଡ଼ ଶୁଚିମନ୍ତ ମଧ୍ୟ ଥିଲେ । ଅଥଚ ସଜ୍ଜନ ତାଙ୍କୁ ଘରର ସବୁ କାମ ଏପରିକି ଘରର ଏକ ଚାକରର ଯକ୍ଷ୍ମା ରୋଗଗ୍ରସ୍ତ ସ୍ତ୍ରୀର ଛେପ ଖଙ୍କାର ପର୍ଯ୍ୟନ୍ତ ସଫା କରିବାର ସେ ଦେଖିଛି । ସଜ୍ଜନର ମନ ଉପରେ ତାର ମା'ର ଏକ ଅତୁଟ ଛାପ ପଡ଼ିଛି । ପିତାଙ୍କ ବାହାରେ ନ ବୁଲିବାର ପ୍ରତିଶ୍ରୁତି ମା'ଆଙ୍କୁ ଦେଇ ନିଜ ପାଇଁ ସେ ଏକ ଅନ୍ତର୍ଦ୍ୱନ୍ଦ୍ୱକୁ ଗ୍ରହଣ କରି ନେଇଥିଲା । ଏଇଥିପାଇଁ ଶିଶୁ ଅବସ୍ଥାରୁ ତାର ଚିତ୍ରାଙ୍କନ ପ୍ରତି ଆଗ୍ରହ ବଢ଼ିଯାଇଥିଲା ।

ସେଇଥିପାଇଁ ସିନିୟର କେମ୍ବ୍ରିଜ ପାଶ କରିବା ପରେ ସେ ଆର୍ଟ ସ୍କୁଲରେ ନାମ ଲେଖାଇ ନେଲା ।

ପିତାଙ୍କ ମୃତ୍ୟୁର ଛଅ ବର୍ଷ ପରେ ମା' ମଧ୍ୟ ଚାଲିଗଲେ । ତା ପରଠାରୁ ସଜ୍ଜନର ମନ ଶୂନ୍ୟତାରେ ଭରିଯାଇଛି । ସେହି ମାନସିକ ମୃତ୍ୟୁରୁ ମୁକ୍ତି ପାଇବା ପାଇଁ ଛବି ଆଙ୍କିବା ବାହାନାରେ ବୁଲିଯିବା ତାର ଗୋଟିଏ ନିଶା ହୋଇଗଲା ।

ନିଜ ମାଙ୍କୁ ଦେଇଥିବା କଥା ଅନୁସାରେ ସଜ୍ଜନ ତା ଜୀବନ ସମ୍ବନ୍ଧ ଏକ ସୁପ୍ତ ବୁଝାମଣା କରି ନେଇଛୁ । ପିତାଙ୍କପରି ସେ ବାଜେ ଖର୍ଚ୍ଚ ନ କରିବାକୁ ପ୍ରତିଜ୍ଞା କରିଥିଲା । ପିଲାଦିନୁ ମଧ୍ୟ ପିତାଙ୍କ ବିପରୀତ ଗୁଣମାନ ତାଠାରେ ଫୁଟି ଉଠିଥିଲା । ସମ୍ପତ୍ତି, ଜମିଦାରୀ ସମ୍ଭାଳିବା, ହିସାବପତ୍ର ଠିକ୍‌ରେ ରଖିବାର ଅଭ୍ୟାସ ମଧ୍ୟ ତାର ଥିଲା । ଚାକର, ଗୁମାସ୍ତାଙ୍କ ଉପରେ ନଜର ରଖି କାର୍ଯ୍ୟ କରାଇ ଦେବା କ୍ଷମତା ମଧ୍ୟ ଥିଲା ତା ଚରିତ୍ରରେ । ସମ୍ପତ୍ତି ବଢ଼ାଇବା କିମ୍ବା ଗଚ୍ଛିତ କରିବା ଇଚ୍ଛା ନଥାଇ ମଧ୍ୟ ସେ ଗଚ୍ଛିତ ସମ୍ପତ୍ତିକୁ ସୁରକ୍ଷିତ କରିବାର ସେ ସିଦ୍ଧହସ୍ତ ଥିଲା । ସବୁଥିରେ ଏତେ ସଂଯମୀ ହୋଇ ମଧ୍ୟ ସେ ନାରୀ ପାଖରେ ଦୁର୍ବଳ ହୋଇପଡ଼ିଲା ।

ପାଞ୍ଚ ବର୍ଷ ଆର୍ଟ ସ୍କୁଲରେ ପଢ଼ି ସାରି ଡିପ୍ଲୋମା ନେଲା ପରେ ସେ ବହୁତ ବୁଲିଛି; ବହୁ ଅନୁଭୂତି ସଞ୍ଚୟ କରିବା ପରେ ଶେଷରେ ଠିକ୍ କରିଥିଲା ଆପାତତ ବିବାହ ବନ୍ଧନରେ ବାନ୍ଧି ହେବାର ସମୟ ତାର ଆସିନି, ପ୍ରୟୋଜନ ହେଲେ ତିରିଶ ବର୍ଷ ବୟସ ପରେ ହୋଇପାରେ, କିନ୍ତୁ ଶିଳ୍ପୀ ଭାବରେ ବିଖ୍ୟାତ ହୋଇ ସେ ବ୍ୟକ୍ତି କେନ୍ଦ୍ରିକ ହୋଇଗଲା ଏବଂ ନିଜର ସୀମିତ ବୁଦ୍ଧିରେ ନାରୀକୁ କେବଳ ଦୈହିକ ବ୍ୟବହାର ସାମଗ୍ରୀ ତଥା ମନୋ ରଞ୍ଜକର ସାମଗ୍ରୀ ବୋଲି ଭାବିଲା । ଅଥଚ ନିଜ ଲୁକାୟିତ ବିବେକ ଦ୍ଵାରା ହିନ୍ଦୀ ବିଳାତ ସଂସ୍କୃତିର ତ୍ରିଣ୍ଡିମ ପିଟି ସେ ମଧ୍ୟ ନାରୀକୁ ବହୁ ବଡ଼ ବଡ଼ ଉପମାରେ ସଜ୍ଜିତ କରୁଥିଲା । ଆଜି ସେହି ଭିତ୍ତିହୀନ ସଂସ୍କୃତି ମୂଳରେ କୁଠାରଘାତ ଫଳରେ ସେ ଧାରଣା ତୁଟି ଗଲା । ଗୋଟିଏ ସ୍ତ୍ରୀ ଉପରେ ହୋଇଥିବା ଅତ୍ୟାଚାର ଏବଂ ତାର କରୁଣାତ୍ମକ ମୃତ୍ୟୁ ସଜ୍ଜନ ମନରେ କିଛିକ ମମତା ଆଣିଲା ଦୃଢ଼ ପଦକ୍ଷେପ ନେବାକୁ ଏବଂ ଏହି ବିଶ୍ଵାସର ଉଦୟରେ ସେ ଯେତେବେଳେ ଜଗଦମ୍ବା ସହାୟର ସୁନ୍ଦରୀ କନ୍ୟା ପ୍ରତି ଅନୁରକ୍ତ ହେବାର ଦେଖି ନିଜେ ନିଜକୁ ଘୃଣା କରିବାକୁ ଲାଗିଲା ।

ମଣିଷ ପ୍ରଥମେ ଗୋଟିଏ ଭୁଲ୍ କରିସାରିବା ପରେ ନିଜେ ନିଜେ ବହୁ ଯୁକ୍ତି ବାଢ଼ି ବସେ । ଆଉ ନିଜ ଚତୁରତା ପାଇଁ ଗର୍ବ ଅନୁଭବ କରେ କିନ୍ତୁ ଯେତେବେଳେ ସେହି ଚତୁରତା ଭୟର କାରଣ ହୁଏ ସେତେବେଳେ ସେ ପଳାୟନ ବାଦକୁ ସ୍ଵୀକାର କରେ । ସେହି ଭୟ ଯେତେବେଳେ ଉନ୍ମତ୍ତ ହୋଇ ପାଗଳ ଷଣ୍ଢ ପରି ଆକ୍ରମଣ କରେ ସେତେବେଳେ ନିଜକୁ ରକ୍ଷା କରିବା ପାଇଁ ପଳାଇ ଯାଉଁ ଯାଉଁ ନିଜର ସ୍ଵରୂପକୁ ପ୍ରକାଶ କରିଦିଏ । ଆଉ ସେହି ଛୋଟ ଛୋଟ ଭୁଲକୁ କେନ୍ଦ୍ର କରି ଦିନେ ସେ ହଠାତ୍ ପାଗଳ ହୋଇଯାଏ । ଏହିପରି ଚେଇଁ ଆସୁଥିବା ପାଗଳାମିକୁ ସୁପ୍ତ ଅବସ୍ଥାରେ ରଖିବାର ପ୍ରୟାସୀ ହୋଇ ନିଜର ଚେତନ

ବୁଦ୍ଧିକୁ ଜଡ଼ କରିଦିଏ ସେ । ଠିକ୍ ସେମିତି ଦୈହିକ ଗତିବେଗ ଥାଇ ମଧ୍ୟ ସଜ୍ଜନର ମନ ସ୍ଥିର, ଜଡ଼ ହୋଇଯାଇଛି । ସେଥିରୁ ସେ ମୁକ୍ତ ହେବାକୁ ଚାହୁଁଥିଲା । ଅନ୍ୟମନସ୍କତାରେ ଚାଲିଲେ ମଧ୍ୟ ସେ ବାଟ ଭୁଲ କରୁ ନଥିଲା । ଶୀତ ଅନୁଭବ କରିବାକୁ ସ୍ୱେଟର କାଢ଼ି ପିନ୍ଧିଲା, ଶାହନ୍‌ଜଫ ରାସ୍ତାର ଦୁଇ କଡ଼ରେ ଧାଡ଼ି ଧାଡ଼ି ଠିଆ ହୋଇଥିବା ନିସ୍ତବ୍ଧ ବଙ୍ଗଳା ଏବଂ ନିର୍ଜନ ପଥରେ ଚାଲୁ ଚାଲୁ ସଜ୍ଜନର ମନେହେଲା ସତେ ଯେପରି ତାର ସମସ୍ତ ବ୍ୟକ୍ତିତ୍ୱ ସେହି ନିସ୍ତବ୍ଧତାରେ ମିଳେଇ ଯାଉଛି ।

ସାମ୍ନାରେ ଆସୁଥିବା ଗାଡ଼ିର ଲାଇଟ ତା ଉପରେ ପଡ଼ିଲା ସେ ଚମକିପଡ଼ି ହଜିଲା ଆଖିରେ ଗାଡ଼ିକୁ ଚାହିଁ ପୁଣି ସଡ଼କର ବାଁ । ଦିଗରେ ଆଗେଇଲା ମୁଣ୍ଡ ନୁଆଁଇ ଚାଲିବାକୁ ଲାଗିଲା । ଗାଡ଼ି ହଠାତ୍ ତା ପାଖରେ ଆସି ରହିଗଲା, ଆଉ ତା ଭାବନାର ଖିଅ ବି ଛିଣ୍ଡିଲା ଗାଡ଼ିରେ ବସିଥିବା ଜଣେ ମହିଳାଙ୍କ ପାଟିରେ ।

ଏ ଶୀଲା "ପିଣ୍ଡରେ ଟିକେ ପ୍ରାଣ ପଶିଲା, ନିଜ ଦୃଷ୍ଟି ନିଜଉପରେ ପଡ଼ିଲା । ଗାଡ଼ିରେ ମହିପାଲ ଏବଂ ଡାଃ ଶୀଲା, ସିଂଙ୍ଗ ଆସୁଥିଲେ । ମାନସିକ ଯନ୍ତ୍ରଣାରେ ଛଟପଟ ହେଉଥିବା ସମୟରେ ଏହି ଦୁଇ ବନ୍ଧୁଙ୍କୁ ଦେଖି ପ୍ରକୃତିସ୍ଥ ହେଲା । ସେ ଅତ୍ୟଧିକ ଆନନ୍ଦିତ ହେଲା ।

କେଉଁଠାରୁ ଚାଲି ଆସିଛନ୍ତି ମହାଶୟ ? ବାହାରେ ହାତ ବାହାର କରି ଶୀଲା ତାଙ୍କର ଓଭରକୋଟର କଲର ଟାଣି ଉନ୍ମୁକ୍ତ ପ୍ରଶ୍ନ କରିଥିଲା ।

ସଜ୍ଜନ ନିଜ ହିଜାମନକୁ ଆୟତ୍ତାଧୀନ କରିଥିଲେ ଏବଂ ସେଇ ପ୍ରଶ୍ନକୁ ସେ ଦୋହରାଇ ପଚାରିଲେ "ଆରେ ଆପଣମାନେ କେଉଁଠାରୁ ଆସୁଛନ୍ତି ?"

"ଶୈତାନର ସ୍ୱର୍ଗଠାରୁ" ମହିପାଲ ହସି ହସି କହିଲେ । ଡାକ୍ତର ଶୀଲା ସିଂଙ୍ଗ ମହିପାଲର ହାତ ଉପରେ ଯୋରରେ ଆଘାତ କରି, ହସି କହିଲେ "ଆପଣ ଗୋପନ ସ୍ୱର୍ଗର ଠିକଣା ଏହି ଦୁନିଆର ଲୋକଙ୍କୁ ବୁଝନ୍ତୁ ନାହିଁ । ୟୁ ଫୁଲ୍, ନଚେତ୍ ଏମାନେ ଈଶ୍ୱରଙ୍କ ବଗିଚାରେ ସେଓ ଗଛ ମଧ୍ୟ ଲଗେଇ ଦେବେ ।

ଭଗବାନଙ୍କ ବଗିଚାର ସେଓ ଏହି ସମୟରେ ସଜ୍ଜନଙ୍କ ଗଳାରେ ଅଟକି ରହିଥିଲା । ମଜା କଥାରେ ସେ ଫିକା ହସ ହସି କହିଲେ, ଆସନ୍ତୁ ଆପଣମାନେ ମୋ ସହିତ କିଛି ସମୟ କଟାନ୍ତୁ । କଫି ଖୁଆଇବ ଏବଂ ଚାହିଁବତ ତୁମ ମୁହଁରୁ ବାହାରୁଥିବା ଗନ୍ଧକୁ ଦ୍ୱିତୀୟଥର ପାଇଁ ନୂଆ କରି ପାଇପାରିବେ ।

ବହୁତ ଡେରି ହୋଇଯିବ ବନ୍ଧୁ, କ'ଣ ଡାକ୍ତର, ସମସ୍ତ କେତେ ? ସମସ୍ତ ଠିକ୍ ଏଗାରଟା ବାଜି କୋଡ଼ିଏ, ବର୍ତ୍ତମାନ ସେମିତି କିଛି ଡେରି ହୋଇନାହିଁ । ଆସ ଦୁର୍ଜନ, ଆମ୍ଭେ ତୁମ୍ଭଙ୍କୁ ଓଦ୍‌ଲଇୟ୍ କରିବା ।

ନାହିଁ ବନ୍ଧୁ ଆଉ ପୁଣି କେବେ । ଶୀଲା ବାବାଙ୍କର ମିଆଁ ନାହିଁ ଯେ ତାଙ୍କୁ ଏକ୍ସପ୍ଲାନେସନ୍ ଦେବାକୁ ପଡ଼ିବ, ମାତ୍ର ମୋର ସ୍ତ୍ରୀତ ଯକ୍ଷିଣୀ ଭଳି ମୋର ବାଟ ଚାହିଁ ବସିଥିବ ।

ସଜ୍ଜନ ଗାଡ଼ିରେ ବସି ସାରିଥିଲା, ମହିପାଳର କଥା ନ ଶୁଣିଲା ଭଳି ଶୀଲା ଷ୍ଟାଣ୍ଡ ବେକର୍ ଗାଡ଼ିଟିକୁ ପଛକୁ ମୋଡ଼ିବାକୁ ଲାଗିଲା ।

ସଜ୍ଜନ ମହିପାଳକୁ କହିଲା 'ତୁମକୁ ଧନେ ନା ଧନେ କଷ୍ଟସ୍ତ ଆଙ୍କିବ, ମହିପାଳ । ତୁମେ ସେହି ଲୋକ ଭଳି ଯିଏ ଅଗ୍ନି ଆଉ ସମୁଦ୍ରର ମଝିରେ ଦରଜଳା ଓ ଅର୍ଦ୍ଧସିକ୍ତ ଅବସ୍ଥାରେ ରହିଛ ।

ଶିଳାର ଲେଗ୍ ପୁଲିଙ୍ଗ କରନାହିଁ, ସଜ୍ଜନ । ସ୍ୱେ' ହଜାର ସେଣ୍ଟିଗ୍ରେଡ୍ ପର୍ଯ୍ୟନ୍ତ ଗରମ ନୁହଁକି—ଫ୍ରିଜିଙ୍ଗ ପଏଣ୍ଟ ପର୍ଯ୍ୟନ୍ତ ଥଣ୍ଡା ନୁହଁ ।

ବାସ୍, ଟିକେ ଅନୁକମ୍ପା ହେଉ । ମୋ' ପାଇଁ ଓକିଲାତି କରିବା ଦରକାର ନାହିଁ । ସେ ମୋ ଉଦ୍ଦେଶ୍ୟରେ କିଛି କହିନାହାନ୍ତି । କ'ଣ ଏକଥା ସତନୁହଁ ଦୁର୍ଜନ ?

ସଟନ୍ଲି—ନଟ୍ । ତୁମେ ଜାଣିଛ ଯେ ଫେଅରସେକ୍ସଙ୍କ ପ୍ରତି ମୁଁ କେତେ ଶ୍ରଦ୍ଧାବାନ "କହି" ସଜ୍ଜନ ଚମକି ଉଠିଲା, ଜଗଦମ୍ବା ସହାୟଙ୍କର ଝିଅ ଓ ଚନ୍ଦ୍ରା କଥା ତା'ର ମନେ ପଡ଼ିଗଲା ।

ସଜ୍ଜନର କୋଠିର ଫାଟକ ପାଖରେ ପହଞ୍ଚି କାରର ହର୍ଣ୍ଣ ବାଜିଉଠିଲା । ମହିପାଳ କହିଲା, ଇନ୍ ଅଲ୍ ଫେୟାରନେସ୍, ମୁଁ ଶିଳା ବିଷୟରେ ଏକଥା କହିବି ତା'ର ମନ କଳାକାରଙ୍କ ପରି ଗରମ ଅଟେ, ଏବଂ ମସ୍ତିଷ୍କ ବୈଜ୍ଞାନିକଙ୍କ ପରି ଥଣ୍ଡା ।

ମହିପାଳର କଥା ଶିଳାକୁ ଖୁବ୍ ଭଲ ଲାଗିଲା, ସେ କହିଲା "ମୋର ସ୍କେଚ୍ଚ ଏହାହିଁ ରହୁଁଛି । ଆର୍ଟ ପ୍ଲସ୍ ସାଇନ୍ସ ।"

ତୁମେ ମୋତେ ଉତ୍ସାହ ଦେଉଛ ଶୀଳା । ଆଜକାଲ ନବେ ପ୍ରତିଶତ ଡାକ୍ତର ଶଳା ଜହ୍ଲାଦ ଏବଂ କଂଗ୍ରେସ କଂସେଇ ଅଟନ୍ତି । ଏବଂ ନ୍ୟାୟପାଇଁ— ଥଲ୍‌ଦୋ ଅନ୍‌କାଙ୍କଶଳା, ଆଇ ନୋ— ତୁମ୍ଭେ ମଧ୍ୟ କହୁଛ ଅଟ ।

ଚୌକିଦାର ଦୌଡ଼ିଆସି ଫାଟକ ଖୋଲିଦେଲା ।

× × ×

ଅଧ ରାତ୍ରିରେ ସଜ୍ଜନ ମାଷ୍ଟର ଜଗଦମ୍ବା ସହାୟର କଳଙ୍କ ଗାଥା ଶୁଣୁଥିଲା । ସ୍ନାର୍, ହ୍ୱିସ୍କି ତାର କଥାରେ ଏବଂ ଶୀଳା ମହିପାଲର ହୃଦୟରେ କରୁଣାର ସ୍ରୋତ ଖୋଲାଇ ଦେଇଛି । ମହିପାଲର ଆଖିରେ ଲୁହ ଜକେଇ ଆସିଲା ।

ସଜ୍ଜନ କହିଲା ତା ପାଇଁ କାନ୍ଦିବାର ପ୍ରୟୋଜନ ନାହିଁ, ମହିପାଲ । ମୋର ପୂର୍ଣ୍ଣ ବିଶ୍ୱାସ ଅଛି ଯେ ସେ ଜଳି ଜଳି ଟିକେ ମଧ୍ୟ କଷ୍ଟ ପାଇ ନଥିବ । ସେ ସେହି ସମୟରେ ସେଲ୍‌ଫ ପୋଜେସ୍‌ଡ୍—ଗୋଟିଏ ଆଦେଶରେ—"

ଆତ୍ମହତ୍ୟାର ଆଦେଶ ଲୋକଙ୍କର ଶକ୍ତି ନେଇ, ଜାଗ୍ରତ ହୁଏ, ସଜ୍ଜନ । କାହାକୁ ଏପରି ମୃତ୍ୟୁ ଭଲ ଲାଗେ ? ମଣିଷ ଶିଶୁ ଏହି ପୃଥିବୀରେ ଜନ୍ମହୋଇ, ତାର କୋଳରେ ବଢ଼ି ମଧ୍ୟ ନୃଶଂସତାରେ ଅନେକଶ୍ୱାସୀ ହୋଇ ମରେ । ଏହି ସମ୍ବାଦକୁ ଆମେ କ'ଣ ଦେଖି, ଶୁଣି ସହ୍ୟ କରି ନେଉଥିବା ?

ଶଙ୍ଖମଲ୍ଲର ଗୋଲ ମେଜ ଉପରେ ଜୋରରେ କରାଘାତ କରି ମହିପାଲ ଉଠି ଠିଆହେଲା ଏବଂ ହଲ୍‌ମଧ୍ୟରେ ପଦ ଚାଳନା କରିବାରେ ଲାଗିଲା । ତାହାର ରାଗ ସହଜ ଏବଂ ସ୍ୱାଭାବିକ ଥିଲା । ନିଶା ତା' ମନରେ ବିଜୁଳି ଭରି ଦେଇଥିଲା, ଥରକୁ ଥର ତା'ର ହୃଦୟରେ କମ୍ପନ ସୃଷ୍ଟି ହେବାକୁ ଲାଗିଲା, ଯେଉଁ ଦେହରେ ଗୋଟିଏ ଛୋଟ କଣ୍ଟାର ଆଘାତ କଷ୍ଟ ଦେଉଥିଲା ସେହି ଦେହକୁ ମଣିଷ ନିଜ ହାତରେ ନିଆଁ ଲଗାଇ—ଜଳି ଜଳି ମାରିପାରେ ? ( ମହିପାଲ ଫୁଲି ଫୁଲି କାନ୍ଦିବାକୁ ଲାଗିଲା ) ଭଗବାନ, ଏହିପରି ମନ ଆଉ କାହାକୁ ଦିଅନାହିଁ—କାହାକୁ ଦିଅନାହିଁ, କାହାକୁ ନାହିଁ ।

ଜଳୁଥିବା ଲୋକର କଲବଲରେ ମହିପାଲର ମନ ବିକଳ ହୋଇଥିଲା । ଯେପରି ଲୋତକ ପୂର୍ଣ୍ଣ ଆଖିରେ ନରମ ଶିଶୁର କୋମଳ ଗ୍ରୀବା ଉପରେ କାହାର ନିଷ୍ଠୁର ହାତର ଚିହ୍ନ ଆଙ୍କି ହୋଇ ଯାଇଛି । ମହିପାଳର ଶୋକ, ବର୍ତ୍ତମାନ ନ୍ୟାୟପାଇଁ ଏବଂ ଏହା କ୍ରୋଧରେ ପରିଣତ ହୋଇଗଲା ।

ମହିପାଳର କଥାର ପ୍ରଭାବ ସଜ୍ଜନ ଉପରେ ମଧ୍ୟ ପଡ଼ିଲା, ସକାଳେ ଖବର ଶୁଣିକି କିଛି ସମୟ ପର୍ଯ୍ୟନ୍ତ କ୍ରୋଧ ଏବଂ କରୁଣାର ସ୍ରୋତ ତାକୁ ଭସାଇ ନେଇ ଯାଇଥିଲା, ତାହାର ସ୍ପର୍ଶ ସଜ୍ଜନକୁ ଏହି ସମୟରେ ପୁଣି ମିଳିଲା । ସାରା ଜୀବନରେ ପ୍ରଥମ ଥର ନିଜ ମନର ଗଣ୍ଡୀ ଘରୁ ବାହାରି ତାହାକୁ ଆଉ କାହାପାଇଁ ମଧ୍ୟ ଭାବିବାର ସ୍ପର୍ଶ ମିଳିଲା, ଯେପରି ତାର ସୁସଂସ୍କୃତ ବୁଦ୍ଧି ଉପରୁ ଏକ ବଡ଼ବୋଝ ହଟିଗଲା । ତାର ଧାରଣା ହେଲା ଯେ ଏହି କୋମଳତାର ଜାଗୃତିରୁ ତାହାର ଅନ୍ତରର ଅପରାଧ କିଛି ଲାଘବ ହୋଇଯାଇଛି । ଏହି କୋମଳ ସ୍ପର୍ଶ ଜାତର ମୁହୂର୍ତ୍ତିକୁ ମୂଳଧନ କରି ସଜ୍ଜନ ମନେ ମନେ ହିସାବ କଲା "ବାସ୍ତବିକ ମୁଁ ଏତେ ଖରାପ ନୁହେଁ, ଏତେ ଖରାପ ନୁହେଁ ।"

ମହିପାଲ ମେଜରୁ ଉଠିବା ପରଠାରୁହିଁ ଶିଲ୍‌ ସିଂଙ୍କର ନଜର ବରାବର ତା ଉପରେ ରହିଛି, ତାହାର ମନ ଶବ୍ଦ ଦ୍ୱାରା ବନ୍ଧା ନ ହୋଇ ପ୍ରଶ୍ନର ଧାରାରେ ବହିଚାଲିଛି । ତା ପାଖରେ ଏପରି ଅନେକ 'କେଶ୍‌' ଆସେ ଯେଉଁଥିରେ ସେ ମଣିଷର ଜୀବନ ଏବଂ ମୃତ୍ୟୁର ସନ୍ଧିକ୍ଷଣରେ ଜୁଟିଛି । ଜୀବନ ରକ୍ଷାକରିବା ଦରକାର—ଏହା ମନର ସିଦ୍ଧାନ୍ତ ଏବଂ ଏହି ସମୟରେ ସେଥିରେ ହାର୍ଦ୍ଦିକ କରୁଣାର ସଂଯତ ସ୍ରୋତ ମଧ୍ୟ ପ୍ରବାହିତ ହେଉଥାଏ ।

ମହିପାଳ ନିଜ ଅସନ୍ତୋଷକୁ ପୁଞ୍ଜି କରି ଝର୍କା ପାଖରେ ଗୋଟିଏ ଗୋଡ଼ ଉପରକୁ ରଖି, ହାତ ମୁଠାକରି ବାହୁ ଉପରେ ରଖି, ଦ୍ୱାରହିଜା ଦୃଷ୍ଟିରେ ନିଦ୍ରା ଯାଇଥିବା କମାଉଣ୍ଡରଙ୍କ ବଗିଚାକୁ ଦେଖିବାରେ ଲଗିଲା—କେତେ ଦୂରନ୍ତ ସେ ଦୃଷ୍ଟି । ତାହାର ସବୁ ଭାବନା ଏହି ସମୟରେ ଏକତ୍ର ହୋଇ କୌଣସି ସିଦ୍ଧାନ୍ତରେ ଉପନୀତ ହେବାକୁ ବାଟ ଖୋଜୁଥିଲା ।

ପଛରୁ ଶିଲ୍‌ କହିଲା, ଏହା ସତ ଯେ ଏପରି ଟ୍ରାଜେଡ଼ି ହଜାର ହଜାର ସଂଖ୍ୟାରେ ହୁଏ ମାତ୍ର କିଏ କରାଯିବ ? ଏହାର ପ୍ରତିକାରର ଉପାୟ କ'ଣ ?

ସଜ୍ଜନ ଚିନ୍ତାଶୂନ୍ୟ ମନରେ, ଚିନ୍ତା କରିବାର ଅଭିନୟ କରି କହିଲା, ଏସବୁ ଅଶିକ୍ଷାର କୁପ୍ରଭାବ । ଆମ ଲୋକମାନେ ଭାରି ବ୍ୟାକ୍‌ୱାର୍ଡ ।

ଶିକ୍ଷା କିଏ ? କିପରି ଶିକ୍ଷା ? ସମାଜକୁ କିଭଳି ଶିକ୍ଷା ଦିଆଯିବ ଯେଉଁଥିରେ କି ଏପରି କ୍ରାଇମ୍‌ସ ଏକଦମ୍‌ ବନ୍ଦ ହୋଇଯିବ । ଡାକ୍ତର ଶୀଲା ଏହାକହି ଚିନ୍ତା କରିବାକୁ ଲାଗିଲେ ।

ଗଭର୍ଣ୍ଣମେଣ୍ଟ ତାଙ୍କୁ ଏଜୁକେଶନ୍ ଦିଅନ୍ତୁ । ସେମାନେ ମାନବତାର ଅର୍ଥ କଣ, (ହ୍ୟୁମାନ ଭେଲ୍ୟୁଜ) ଜାଣିବା ଦରକାର ।

ମାତ୍ର ଆପଣ ତାଙ୍କୁ ବୁଝାଇବେ କିପରି ? ଆପଣଙ୍କ ପାଖରେ ଉପାୟ କାହିଁ ? ଝରକା ନିକଟରୁ ଆସୁ ଆସୁ ମହିପାଳ ସଜ୍ଜନର କଥାରେ ପ୍ରତିବାଦ କଲା ।

"କାହିଁକି ? ଗଭର୍ଣ୍ଣମେଣ୍ଟ ଟିଚର୍ସ ଆପଏଣ୍ଟ କଲେ, ଆର୍ଟ ଏବଂ କଲ୍‌ଚରାଲ୍ ଫଙ୍କ୍‌ଶନ୍‌ସ କରିଲେ, କିଛି ଏପରି ସ୍ତ୍ରୀ-ପୁରୁଷ ମଧ୍ୟ ରଖାଯାଇ ପାରିବେ ଯିଏ ଘର ଘର ଯାଇ ଲୋକଙ୍କୁ ପରିଷ୍କାର ହେବା, ସୁସ୍ଥଭାବରେ ବଞ୍ଚି ରହିବାର କାଇଦା ବୁଝାଇବେ ।" ମାନସିକ ବିକାଶ ହେବ ।

"କେବଳ ଏ ପ୍ରକାର କାମରେ ମୋର ବିଶ୍ୱାସ ନାହିଁ ସଜ୍ଜନ" ସଜ୍ଜନର କଥା ଉପରେ "ହୋପଲେଶ୍ କେଶ" କହିବାର ମୁଖଭଙ୍ଗୀ କରି ଡାକ୍ତର ଶିଳା କହିଲା "ଆଚ୍ଛା, ନାଓ କମ୍ ଅନ୍" ମୋତେ ତୁମର ବନ୍ଧୁ କହିଲେ, ମୁଁ କଂସେଇ ଅଟେ । ମୁଁ ଏହା ନିଶ୍ଚୟ ମାନୁଛି ଯେ ଲୋକଙ୍କ ଜୀବନ ବଂଚେଇବାଠାରୁ ଦୁନିଆରେ ବଡ଼ କାମ କିଛି ନାହିଁ, ଏବଂ ସେହି କାମ ମୋର ଟଙ୍କା ଆମଦାନି କରିଥାଏ । ମୁଁ ଭାବୁଛି ଯେ ଯେଉଁ କାମକୁ ଶିଖିବା ପାଇଁ ମୁଁ ଏତେ କଷ୍ଟ, ଏତେ ଟଙ୍କା ଖର୍ଚ୍ଚ କରିଛି, ସେ କାମରୁ ଲାଭ ଉଠାଇବି ନାହିଁ କାହିଁକି । ଜଣେ ଲୋକର ଜୀବନ ତା ପାଇଁ ଯଦି ଅତି ମୂଲ୍ୟବାନ ତେବେ ସେହି ଜୀବନ ରକ୍ଷା ପାଇଁ ସେ କାହିଁକି— ପଇସା ଖର୍ଚ୍ଚ ନ କରିବ । ଆଉ ମୁଁ କାହିଁକି ପଇସା ନେବି ନାହିଁ । ମୁଁ ସୁଖ ଏବଂ ଆରାମ ଜୀବନ ଚାହେଁ । ମୁଁ ଆପଣଙ୍କୁ କହି ଦେଉଛି—ଖ୍ରୀଷ୍ଟିୟାନ୍, ଗାଂଧିୟାନ୍ ବା ରାମକୃଷ୍ଣ ମିଶନ ବାଲାଙ୍କ ପରି ସନ୍ୟାସୀ ହୋଇ ଲୋକଙ୍କ ଜୀବନ ବଞ୍ଚେଇବା କାର୍ଯ୍ୟ ମୁଁ କରିପାରିବି ନାହିଁ ।" କହି ଶିଳା ଚୁପ୍ ହେଲା । ଗୋଟିଏ ପ୍ରଶ୍ନବାଚକ ଦୃଷ୍ଟିରେ ମହିପାଳକୁ ଚାହିଁଲା, ଏବଂ ତା ମନର ଭାବ ଜାଣିବାକୁ ଚେଷ୍ଟା କଲା । ମହିପାଳ ମୁଣ୍ଡ ନୁଆଇଁ ଚିନ୍ତାଧାନରେ ବସି ରହିଥିଲା ।

ସଜ୍ଜନ ମଧ୍ୟ ଭାବିବାକୁ ଲାଗିଲା—ସତରେ ଏ ଗୋଟିଏ ଅଦ୍‌ଭୁତ ପ୍ରଶ୍ନ, ନିଜ ସ୍ୱାର୍ଥ ଦେଖିବା ସ୍ୱାଭାବିକ, ହ୍ୟୁମ୍ୟାନ୍ ନେଚର—ଏହା କିଛି ଅସ୍ୱାଭାବିକ କଥାନୁହେଁ, ବଡ଼ ବଡ଼ ମନସ୍ୱୀ ହୁଏତ ବ୍ୟତିକ୍ରମ, ତାଙ୍କ କଥା ଛାଡ଼ - ମାତ୍ର ସାଧାରଣ ଲୋକେ ବାସ୍ତବରେ ସମସ୍ତେ ଏହିପରି । ଆମେ ପ୍ରଥମେ ନିଜର ସ୍ୱାର୍ଥ ଦେଖିବା ପରେ ଅନ୍ୟର କଥା ଚିନ୍ତା କରିଥାଉଁ ଏବଂ ଅନ୍ୟ ଭାବରେ ଦେଖିଲେ

ଯଦି ମଣିଷର ଏହି ପ୍ରକୃତି ନ ବଦଳେ ତେବେ ମାନବିକତାର ସମସ୍ତ ସ୍ଲୋଗାନ ଏବଂ ତାର ଆଧାର ଉପରେ ଠିଆ କରାଯାଇ ଥିବା ଥ୍ୟାଲୁଜ୍ ସବୁ ଭୁଲ ହୋଇଯିବ। ବୁଝି ପାରୁନାହିଁ କିପରି ମନୁଷ୍ୟର ମନ ବଦଳି ପାରିବ ? କୁହି କୁହି ସଜ୍ଜନର କଣ୍ଠ ଥରି ଉଠିଲା—ତା' ମନରେ ଚନ୍ଦା ଏବଂ ଜଗଦମ୍ବା ସହାୟର ଝିଅକୁ ନିଜର ଅପରାଧି ଆତ୍ମା ଦେଖିନେଲା, ସଜ୍ଜନ ସେଥିରେ ବିଚଳିତ ହୋଇଗଲା।

"ବଦଳି ପାରିବ, ମହିପାଲ ଆଖି ବୁଲାଇ ସଜ୍ଜନକୁ ଚାହିଁ କହିଲା" ଅତ୍ୟାଚାର—ଅନ୍ୟଙ୍କୁ କଷ୍ଟ ଦେଇ ଫାଇଦା ଉଠାଇବା ବନ୍ଦ କର ଏବଂ ତୁମେ ଯଦି ସିଧା ଭାବରେ ନ କରିବ, ତାହାହେଲେ ମନେରଖ, ମାରି ମାରି ତୁମର ଅକଲକୁ ଠିକ୍ କରି ଦିଆଯିବ।

"ତୁମେତ ଯେମିତି କହୁଛ ମୁଁ ଯେମିତି ଜଣେ ଅତ୍ୟାଚାରୀ" ମହିପାଲର କଥାରେ ସଜ୍ଜନ ଆଘାତ ପାଇଲା। ନିଜର ବ୍ୟସ୍ତତାକୁ ଫାଙ୍କା ହସରେ ଲୁଚାଇଦେଇ ସେ ମହିପାଲକୁ ଉତ୍ତର ଦେଲା। ଶିଳାକୁ ମଧ୍ୟ ଭାରି ହସମାଡ଼ିଲା, ମହିପାଲ ଉପରେ ହସର କୌଣସି ପ୍ରଭାବ ପଡ଼ିଲା ନାହିଁ। ସେ କହିଲା—ତୁମେ, ମୁଁ, ସମସ୍ତେ ଅତ୍ୟାଚାରୀ ବନ୍ଧୁ। ସମସ୍ତେ ଶୋଷଣକାରୀ। କୌଣସି ଲୋକକୁ ବ୍ୟକ୍ତିଗତ ଭାବେ ଦାୟୀ କରୁନାହୁଁ ସମ୍ପୂର୍ଣ୍ଣ ସମାଜ ଉପରେ ଶୋଷିତ ଏବଂ ଶୋଷଣର ସିଦ୍ଧାନ୍ତ ଆମେମାନେ ନେଇଥାଉଁ। ମାତ୍ର ଯେଉଁ ଲୋକ ଶୋଷଣର ଶିକାର ହେଉଛି, ଏପରି ଦିନ ଆସିବ ସେ ନିଜ ବଳରେ ଶୋଷଣକାରୀର ତଣ୍ଟି ଚିପିଦେବ ଏବଂ ଦେଖିନେବ। ଆଉ ସେ ଦିନ ଆସିବାକୁ ବେଶୀ ଡେରିନାହିଁ ସଜ୍ଜନ।

"ତାହାହେଲେ କଣ ତୁମେ ଭାବୁଛ ଭାରତରେ କମ୍ୟୁନିଷ୍ଟଙ୍କ ପ୍ରଭାବ ବଢ଼ିଯିବ। ସେମାନେ ଖାଲି ମାରପିଟ କରିବେ, ଶିଳା ଦୁଇ ହାତରେ ଆଙ୍ଗୁଳି ଛନ୍ଦି ଗୋଡ଼ ହଲାଇ ପଚାରିଲା।"

"ମୁଁ ଜାଣେନାହିଁ, କେଉଁ ପାର୍ଟିର ଜୋର ବଢ଼ିବ। ମୁଁ ରାଜନୀତିର ସତର୍କ ବିଦ୍ୟାର୍ଥୀ ନୁହେଁ। ମାତ୍ର ମୁଁ ଏହା ନିଶ୍ଚୟ ମାନୁଛି ଯେ ମାର୍କ୍ସଙ୍କ ସିଦ୍ଧାନ୍ତ ଏବଂ ରୁଷିଆ, ଇଟାଲି ଚିନ୍‌ର ନୂତନ ନିର୍ମାଣରେ ଦୁନିଆର ପ୍ରତ୍ୟେକ ବିଷୟ ତଥା ବିଚାର ଧାରାରେ କ୍ରାନ୍ତିକାରୀ ପରିବର୍ତ୍ତନ ହୋଇଛି। ଯେତେ ମଜ୍‌ଦୁର, ଯେତେ ସର୍ବହରା ଅଛନ୍ତି, ସେମାନେ ବର୍ତ୍ତମାନ ଆଘାତ ପାଇଥିବା ନାଗସାପ ପରି ଫୁଲି ଉଠୁଛନ୍ତି। ଏହିଥର ତାଙ୍କୁ କେହି ଅଟକାଇ ପାରିବେ ନାହିଁ ଏବଂ ଆମ ସମାଜର ସ୍ତ୍ରୀ ମଧ୍ୟ ସର୍ବହରା। ସେମାନେ ସୀମାହୀନ କଷ୍ଟ ଭୋଗିଛନ୍ତି—ସେ କଷ୍ଟ ଅସୀମ।

ସଜ୍ଜନର ତା ମା' କଥା ମନେ ପଡ଼ିଗଲା ସେ କେତେ ଅତ୍ୟାଚାର ସହିଥିଲେ ।

ଶିଳା କହିଲା—ସ୍ତ୍ରୀ ମାନଙ୍କ ବିଷୟରେ ତୁମେ ବଡ଼ ରୋମାଣ୍ଟିକ ଭାବରେ ଭାବୁଛ ମହିପାଲ । ବର୍ତ୍ତମାନ ସ୍ତ୍ରୀ ମାନେ ପାଠ ପଢ଼ି କଲ୍‌ଚର୍ଡ଼ ଏବଂ ଆଗ ଅପେକ୍ଷା ଅପେକ୍ଷା ସ୍ୱାଧୀନ । ମୁଁ ଦେଖୁଛି ଯେ ନାରୀମାନଙ୍କ ଏଜୁକେଶନ ଦେଇଁ ବଢ଼ୁଥିବା କ୍ରୋଧକୁ ଅଟକାଇ ମଧ୍ୟ ମହିପାଳ ନିଜର ଭାଷାର ତୀକ୍ଷ୍ଣତାକୁ ଲୁଚିପାରିଲା ନାହିଁ । କହିଲା, ମୁଷ୍ଟିମେୟ ସ୍ତ୍ରୀ ସ୍ୱାଧୀନ ଅଟନ୍ତି ତାଙ୍କ ଭିତରେ ତୁମେ ଜଣେ ଯିଏକି ବଡ଼ଶ ଟଙ୍କା ଫିସ୍ ନେଉଛ । ମାତ୍ର ବେଶୀ ଭାଗ ସ୍ତ୍ରୀ ଲୋକଙ୍କୁ ବାଧହୋଇ ଜାଳିପୋଡ଼ି ମରିବାକୁ ହୋଇଥାଏ ।

"ବର୍ତ୍ତମାନ ତୁମର ଜିଦ ଲାଗିଛି ମହିପାଳ । ଶିଳା ମଧୁର ସ୍ୱରରେ କହିଲା"—ପାଞ୍ଚ ଦଶଟା କେଶ୍ ଏପରି । ସେ ଅଲଗା କଥା ।"

"ଅନ୍ୟ ନୁହେଁ" ପ୍ରଥମ କଥା । ଏହା ପ୍ରଥମ ଏବଂ ପ୍ରଧାନ କଥା । ଶତକଡ଼ାରେ ୫/୧୦ଟି ଘର ଛାଡ଼ିଦେଲେ ବାକି ଭାରତର ପ୍ରତ୍ୟେକ ଘର ସ୍ତ୍ରୀମାନଙ୍କ ପାଇଁ କଂସେଇଖାନା ।

"ତୁମ୍ଭ ଘର ମଧ୍ୟ ?" ସଜ୍ଜନ ଅଟକି କହିଲା ।

ଏହା ଶୁଣି ମହିପାଳ ଟିକେ ରହିଗଲା. ତାର ମୁହଁ ଫିକା ପଡ଼ିଗଲା, ଫେର୍ ସଂଯତ ସ୍ୱରରେ କହିଲା "ହଁ, ମୁଁ ମଧ୍ୟ ଗୋଟିଏ କଂସେଇ ।"

"କାହିଁକି ?" ସଜ୍ଜନ ଏହିପରି ଭାବରେ ପଚାରିଲା ଜିଜ୍ କୌଣସି ଅପରାଧୀକୁ ପ୍ରଶ୍ନ ପଚାରେ । ଅନ୍ୟର ଅପରାଧର ଆଢୁଆଳରେ ତାହାର ଅପରାଧୀ ହୃଦୟ ବେଶ୍ ଶକ୍ତ ହୋଇଗଲା ।

ମହିପାଲ କହିଲା, ମୋର ବିବାହ ଅସଫଳ ହୋଇଛି । ମା, ବାପାଙ୍କ ଦ୍ୱାରା ଠିକ୍ ହୋଇଥିବା ବିବାହ ସାଧାରଣ ଭାବରେ ଯେପରି ହୋଇଥାଏ । ଆମ୍ଭମାନଙ୍କ ଅଶୀପ୍ରତିଶତ ବିବାହ ଜୀବନର ଏକ କରାରପତ୍ର ମାନିନେବାକୁ ହୋଇଥାଏ । ଫଳରେ କେଉଁଠାରେ ସ୍ୱାମୀ, କେଉଁଠାରେ ସ୍ତ୍ରୀ ପୁଣି କେଉଁଠାରେ ସ୍ୱାମୀ-ସ୍ତ୍ରୀ ଦୁଇଜଣ ମଧ୍ୟରୁ ଜଣେ ଅନ୍ୟ ଜଣକେ ଅନ୍ତରାଳରେ ବ୍ୟଭିଚାର କରିଥାଏ ।

"ଠିକ୍ ଏପରି ବିବାହରେ କାହିଁକି, ଲଭ୍ ମେରେଜରେ ମଧ୍ୟ ଏହାହିଁ ହେଉଛି । ଯେ ପର୍ଯ୍ୟନ୍ତ ନୂଆ ନୂଆ ରୋମାନ୍ସ ଏବଂ ଜୁଲିଏଟ୍ ପର୍ଯ୍ୟାୟରେ ଆଆନ୍ତି

ସେ ପର୍ଯ୍ୟନ୍ତ ଦୁଇଜଣଙ୍କ ଭିତରେ ଖୁବ୍ ପ୍ରେମ ରହିଥାଏ, ତା ପରେ ହୁଏତ ଛାଡ଼ପତ୍ର ବା ବିଶ୍ୱାସ ଘାତକତା ଆରମ୍ଭ ହୋଇଯାଏ । ଏହାତ ପ୍ରାପ୍ତ ହେଉଛି ।

ମୋର ଦୃଢ଼ ମତ ଯେ ବିବାହର ପଦ୍ଧତି ମନୁଷ୍ୟ ମଧ୍ୟରେ ଠକା-ଠକି, ମିଥ୍ୟାଚାର ଏବଂ ଅତ୍ୟାଚାରକୁ ଜଗାଇଛି । ଏହାକୁ ହଟାଇଦିଅ, ସ୍ତ୍ରୀ ମାନଙ୍କୁ ଆର୍ଥିକ ସ୍ୱାଧୀନତା ଦିଅ; ତାପରେ ଦେଖ, ସ୍ତ୍ରୀ ଏବଂ ପୁରୁଷର ସମ୍ପର୍କ କେତେ ଶୀଘ୍ର ନିର୍ମଳ ହୋଇଯିବ, "ଶୀଲା କହିଲା ।"

ପୁଣି ସ୍ତ୍ରୀ-ପୁରୁଷ ମଧ୍ୟରେ ସମ୍ପର୍କ କଣ ରହିବ ? କେବଳ ଦୈହିକ ଭୋଗ ଛଡ଼ା' ମହିପାଲ ରାଗିକରି କହିଲା । କିନ୍ତୁ ଏବେ ହେଉଛି କ'ଣ, ନାଇଂଟି ନାଇନ୍ ପର୍ ସେଣ୍ଟ ପଏଣ୍ଟ ନାଇନ୍ ରେକରିଙ୍ଗ କେସରେ ସ୍ତ୍ରୀ-ପୁରୁଷ ପରସ୍ପରକୁ କଣ ବ୍ୟବହାର କରିବା ଦୃଷ୍ଟିରେ ଦେଖୁନାହିଁ ?" ସଜ୍ଜନ ମେଜ୍ ଉପରୁ ସିଗାରେଟ କେଶ୍ ଉଠାଇ କହିଲା ।"

ଆରେ ମୁ ତୁମକୁ କହୁଛି ମୋ ସାମନାରେ ତ କେତେ ଘରର ପର୍ଦ୍ଦା ଫିଟି ଯାଇଛି । ପ୍ରଥମେ ମୁଁ ଏପରି ଆଚରଣ କେଶ୍ କରୁ ନଥିଲି । ପୁଣି ଭାବିଲି ଏଥିରେ କଣ ଦୋଷ ଅଛି । ଯେଉଁ କାମକୁ କେବଳ ମନୁଷ୍ୟ ନୁହେଁ, ପଶୁ ପକ୍ଷୀ ପର୍ଯ୍ୟନ୍ତ ପ୍ରକୃତିର ତାଡ଼ନାରେ କରୁଛନ୍ତି, ତାହାକୁ ଯଦି ଆଦାମ ଏବଂ ଇଭ୍‌ର ସନ୍ତାନମାନେ ବିବାହ ଏବଂ ତାହାର ମୋରାଲ୍ କୋଡ଼ ଦ୍ୱାରା ଗର୍ହିତ ଭାବୁଛନ୍ତି ତାହାହେଲେ ମୁଁ କାହିଁକି କେହି ବୋକାଙ୍କଠାରୁ ଲଭ ନ ଉଠାଇବି ? ଏହା କହି ଶୀଲା ଯେପରି ସାତ୍ତ୍ୱିକ ଉତ୍ତେଜନାରୁ ଉଦ୍ଧାର ପାଇବା ପାଇଁ ଗ୍ଲାସ ଓଠରେ ଲଗାଇଲା ।

ସଜ୍ଜନକୁ ପ୍ରେରଣା ମିଳିଲା, ନିଜ ଗ୍ଲାସ ଆଡ଼କୁ ହାତ ବଢ଼ାଇ ବଢ଼ାଇ କହିଲା "ତୁମେ ଏକବାର ଠିକ୍ କହୁଛ । ବିବାହ ଏବଂ ତାହାର ସମ୍ପର୍କ ସମାଜକୁ ଉନ୍ନତ କରୁନାହିଁ ବଂର ନିମ୍ନଗାମୀ କରାଉଛି । ଏହାକୁ ଶେଷ କରିଦେବା ଉଚିତ ।

ଆରେ, ଆପେ ଆପେ ତାର ସମାପ୍ତି ଆସିବ । ଯେତେବେଳେ ସ୍ତ୍ରୀ ଏବଂ ପୁରୁଷ ଦୁହେଁ ଉଚ୍ଚ ଶିକ୍ଷା ପାଇବେ, ଦୁଇଜଣଯାକ ରୋଜଗାର କରିବେ ସେହିଦିନ ଏହି ଝୋଟା-ପଗ୍ନ ନିୟମ ମଧ୍ୟ ଶେଷ ହୋଇଯିବ ।

ଆଚ୍ଛା ବର୍ତ୍ତମାନ ଟେଷ୍ଟଅପ , ଯଷ । ଶୀଳା ମହିପାଲକୁ କହିଲା "ଘଡ଼ି ଦେଖ, ତୁମର ବରହଣି ରାସ୍ତା ପର୍ଯ୍ୟନ୍ତ ଆସି ଠିଆହୋଇ ରହିଥିବେ ।"

ଦୁଇଯୋଡ଼ା ଆଖି ନୀରବରେ ହସି ଉଠିଲା । ମହିପାଲ ଶୀଘ୍ର ଆଖି ଫେରାଇ ଘଡ଼ି ଦେଖିଲା "ଗୋଟାଏ ବାଜି ତ୍ରିଶ ମିନିଟ୍ ହୋଇଗଲାଣି ।"

## ଦଶ

ରାସ୍ତା ଉପରେ ଶୀଲାର ଗାଡ଼ି ଫୁଟ୍ ପାଥକୁ ଲାଗି ଠିଆ ହୋଇଗଲା । ଗାଡ଼ିର ଦର୍ଜା ଖୋଲୁ ଖୋଲୁ ମଦ୍ଦପାଲକୁ ଶୀଲା କହିଲା—"ଏଣ୍ଡ ଦ ନାଇସ ଟୁ ଇୟୋର ମିସେସ୍ ଡାର୍ଲିଂ, ଆଜି ସତରେ ତୁମର ବହୁତ ଡେର ହୋଇଗଲା ।"

"ହଁ, ଓ୍ୱାନ୍ସ ଇନ୍ ଏ ବ୍ଲୁ ମୁନ୍, କିଛି କ୍ଷତି ନାହିଁ । ଦେଖାଉର ସ୍ୱରରେ ମିଛ କଥା କହି ମଦ୍ଦପାଲ ହସିଲା, କହିଲା—"ଯଦି ମୁଁ ଚିତ୍ରକର ହୋଇଥାନ୍ତି ତାହାହେଲେ ନିଜ ଚିତ୍ରକୁ ଅଦ୍ଭୁତ ରଙ୍ଗରେ ରଙ୍ଗେଇ ଆଆନ୍ତି । ବାସ୍ ସ୍ଥିତିର କମ୍ପନ ଉଜ୍ଜ୍ୱଳ ହେଲା, ହୃଦୟ ହଁ, ହୃଦୟ ମଧ୍ୟ ଉଜ୍ଜ୍ୱଳ ହୋଇ ଯାଇଛି, ମାତ୍ର ସମସ୍ୟା ଘେରି ରହିଛି । · ତୁମେ ମୋର କ୍ଳାନ୍ତର ବନ୍ଧୁ । କଲ୍ୟାଣୀ ମୋର ଜୀବନର ନିଷ୍ଠା । ମୁଁ ତୁମ ଦୁହିଁଙ୍କଠାରୁ ଅଲଗା ହୋଇ ପାରିବ ନାହିଁ, ।"...

ମଦ୍ଦପାଲ କ୍ଳାନ୍ତ ପରାଜିତ ଭଳି କରୁଣ ଦୃଷ୍ଟିରେ ଶୀଳାକୁ ଚାହିଁଲା, ଶୀଲା ସ୍ନେହରେ ତାର ଗାଲ ଉପରେ ହାତ ରଖି କହିଲା—ତୁମେ କେତେ ସୁନ୍ଦର ? ନାଂଓ ଟେକ କେୟାର ଅଫ୍ ଇୟୋର ହେଲ୍ଥ ଡିଅର । ନିଜ ଆତ୍ମାର ଏହି ଦରଦ ନିଜ ସାହିତ୍ୟକୁ ଦେଇଦିଅ ।...ଏବଂ ଆଉ ସବୁ ଭୁଲିଯାଅ ।

ଦୁହିଁଙ୍କ ମୁଣ୍ଡ ପରସ୍ପର ଦିଗରେ ନଇଁ ପଡ଼ିଲା । ଅନ୍ଧାରରେ ନେଇଁ ଆସିଥିବା ଦୁଇ ଆଖିର ମିଳନରେ ଗୋଟିଏ ତେଜ ତେଜଆନ ହୋଇଉଠିଛି—ତା ଆଖିରେ ହୀରାର ଜ୍ୟୋତି ହୋଇ ଏବଂ ମଦ୍ଦପାଲର ଆଖିରେ ମଉଳା ଗୋଲାପ ଫୁଲର ପାଖୁଡ଼ା । ଶୀଲାର ଚେହେରାରେ ସ୍ୱରର ସ୍ପର୍ଶଥିଲା । ମାତ୍ର ତେଜ ନଥିଲା ।" କାଲି ଦେଖାହେବ ?" ଶୀଲା ଉଠି ପଚାରିଲା । "କିଛି ଲେଖିବାକୁ ଚାହୁଁଛି ।" ମଦ୍ଦପାଲ ବାହାର ଆସ୍ତେ ଆସ୍ତେ କହିଲା ।

"ମୋ ପାଖରେ ବସି ଲେଖିବ । ଏମିତି ବଂଗ୍ର କର, ମଧ୍ୟାହ୍ନ ଭୋଜନ ପରେ ମୋ ପାଖରେ—" "ସମାଧି ନେବା ପରେ ଯୋଗୀ ନିଜ ଆସନକୁ ତ୍ୟାଗ କରେନାହିଁ—ମାତ୍ର ସଂଧ୍ୟାବେଳକୁ ଯଦି ଇଚ୍ଛାକର ତାହେଲେ ତମେ ଫୋନକଲେ ମୁଁ ଆସିବି ।" ମଦ୍ଦପାଲ କହିଲା ।" ନାହିଁ, କାଲି ତୁମକୁ ନିଶ୍ଚୟ ଆସିବାକୁ ପଡ଼ିବ । ଏକ୍ସମାସ୍ର ସନ୍ଧ୍ୟା ।"

"ଓହୋ, ମୁଁ ଭୁଲିଯାଇଛି ।—ଆସିବି—କାଲି—ମୁଁ—ପ୍ରାୟ ସାତଟାରେ ତୁମ୍ଭ ପାଖରେ ପହଞ୍ଚିବ । ବାଏ, ବାଏ ।"

"ବାଏ ବାଏ ।" କାର ଆସ୍ତେ ଆସ୍ତେ ଚାଲିଗଲା । ଗାଡ଼ିର ନାଲି ଆଲୁଅ ମଧ୍ୟ ଆଖିରୁ ଦୂରେଇଗଲା । ମହୀପାଳ ନୀରବରେ ଘରକୁ ଫେରିଆସିଲା ।

ଫୁଟ୍‌ପାଥର ଭଙ୍ଗା ଇଟାର ସିଡ଼ିରୁ ଓହ୍ଲାଇ ସନ୍ତସନ୍ତିଆ ଗଳିରେ ପ୍ରବେଶ କରୁକରୁ ଗଳିର ନିଜ ନିଜତା ମହୀପାଳର ଶୂନ୍ୟତାକୁ ପୁଣି ଜଗେଇଦେଲା । ବନ୍ଦ ହୋଇଥିବା ନିସ୍ତବ୍ଧ ଘର ଗୁଡ଼ିକୁ ଅତିକ୍ରମ କଲାବେଳେ ମହୀପାଳର ଖିଆଲ ନିଜ ଭିତରୁ ବାହାରି ବ୍ୟାପ୍ତ ଖୋଜିଗଲା । ଦୀର୍ଘ ନିଶ୍ୱାସ ପକାଇ ସେ ଆଗକୁ ଚାଲିଲା । ପ୍ରାଚୀର ଉପରେ ପୌଷର ରାତି ଶୀତର ଦେହଲି ସୃଷ୍ଟି କରିଥିଲା ।

"ପୃଥିବୀ କେତେ ବ୍ୟାପ୍ତ ହୋଇଯାଇଛି ।" ମହୀପାଳ ଭାବିବାକୁ ଲାଗିଲା । "ଏହି ତାରଗୁଡ଼ିକ ନିଜ ବ୍ୟାପକତାରେ—କେତେ ବ୍ୟକ୍ତି, ଗୃହ, ଗ୍ରାମ, ଦେଶ—ବିଦେଶକୁ ନିଜ ଝଲକରେ ବାନ୍ଧି ରଖିଛନ୍ତି ।"

ଗୋଟିଏ ଗାଈ ଗଳିର ମଝି ଛକରେ ଶୋଇ ପାକୁଳି କରୁଛି, ଗଳିରୁ କୁକୁରଙ୍କର ଚିତ୍କାର ଶୁଣାଯାଉଛି । ମହୀପାଳକୁ ଏହି ଚିତ୍କାର ନିଝୁମ ରାତିର ଗୋଟିଏ ଅଂଶ ବୋଲି ମନେ ହେଲା । ପ୍ରାୟ ଏହି ସମୟରେ ତା ସାମ୍ନାରେ ଅଳ୍ପ ତଫାତ୍‌ରେ କୌଣସି ଘର ଭିତରୁ କୌଣସି ଜିନିଷ ଗଳିରେ ପଡ଼ିଲା । ମହୀପାଳ ଚମକି ଉଠିଲା, ଏହି ସମୟରେ କିଏ ଚେଇଁଛି ? କଣ ପଡ଼ିଲା ? ଗଳିର ଆଲୋକରେ ତାକୁ ଧଳା କଳାରେ ଗୁଡ଼ିଆ ହୋଇଥିବା ପୁଟୁଳିଟିଏ ଦେଖାଗଲା । ତାର ମନ ହଠାତ୍ ଚହଲି ଉଠିଲା ହଠାତ୍ କୌଣସି ଅପରାଧ କୌଣସି ଅବୈଧ ପିଲାର ଲାଶ ବୋଲି କଳ୍ପନା କରିନେଲା । ଛାତିର ଧଡ଼ପଡ଼ ସହିତ ଗୋଡ଼ ମଧ୍ୟ ଜୋରରେ ଚାଲିଲା; ପାଖରେ ପହଞ୍ଚି ଦେଖିଲା ଗୋଟିଏ ଚିରା ପୁରୁଣା ମଇଳା ତକିଆ; ଯାହାର କିଛି ତୁଳା ଗଳିରେ ବିଛୁଡ଼ି ହୋଇ ଯାଇଛି । ଏହା ଦେଖି ତାହାର ସାହାସ ଆସିଲା । ହସ ମଧ୍ୟ ମାଡ଼ିଲା । ଏ ଅସମୟରେ ଏହାକୁ କିଏ ତଳକୁ କାହିଁକି ଫୋପାଡ଼ିଲା ? ପୁଣି ଭାବିଲା ସାଇକଥା; ହରେକ ପ୍ରକାର ମଣିଷ ଓ ମଣିଷର ମନ । ରାତି ହୋଇଗଲା ବୋଲି କ'ଣ ଜୀବନର ଗତି ଅଟକିଯିବ ? ଠିକ୍ ସେହିପରି ଚାଲିବ । ନିଜ ନିଜ ସମସ୍ୟାର କାହାଣୀ ନେଇ ଆଗେଇ ଚାଲିବ । ଭାବିବାକୁ ଲାଗିଲା । ପ୍ରତ୍ୟେକ ଗୃହ କାନ୍ଥର ଘେରା ଘର ଭିତରେ ବନ୍ଦ ହୋଇ କେତେ ମନର କାହାଣୀ ସୋଇଛି କି ଚେଇଁଛି କିଏ କହିବ ?

ମହୀପାଳ କଳ୍ପନାରେ ପ୍ରତ୍ୟେକ ଘରର ବନ୍ଦ କବାଟ ଖୋଲିଯାଇଛି । କୋଠରୀରେ ବିଛା ଯାଇଥିବା କୁଟା ଓ ଭଙ୍ଗା ଖଟିଆରୁ ଆରମ୍ଭ କରି ଦାମୀ ପଲଙ୍କ

ପର୍ଯ୍ୟନ୍ତ, ଚୁଣ୍ଡା କନ୍ଥା—ଗନ୍ଧ ଏବଂ ଚଦରରୁ ଆରମ୍ଭକରି ରେଶମ କମ୍ବଳ ପର୍ଯ୍ୟନ୍ତ ଜିନିଷର ଅସ୍ପଷ୍ଟ ଝଲକ ତା' ଆଖି ଆଗରେ ନାଚିଗଲା । କେତେଜଣ ଜାଗି ରହିଥିବେ । ଏକୁଟିଆ ଝିଅହରେ ବା ଦୁଇଜଣ ଆନନ୍ଦରେ । କେହି ସଂସାରର ମାୟାରେ ମଶଗୁଲ ହୋଇଥିବେ । ଏହି ଘର ମାନଙ୍କରେ କେତେ ଜଗଦମ୍ବା ସନ୍ନ୍ୟାସୀ ମଧ୍ୟ ଥିବେ, କେତେ ଏହିପରି ଅସହାୟ ମହିଳା ମଧ୍ୟ ଥିବେ । ଯିଏ ଆଜିର ପେଟିହିର ଭୁଖର ଜ୍ୱାଳା କମେଇବା ପାଇଁ ନିଜ ଦେହରେ ନିଆଁ ଲଗାଇ ଜୀବନକୁ ଶେଷ କରିବାକୁ ମଧ୍ୟ ପଛୁଉ ନାହାଁନ୍ତି ।

ମହିପାଲର ଲୋମ ଟାଙ୍କୁରି ଉଠିଲା । ତାକୁ ଜୋରରେ ଶୀତ ଲାଗିଲା । ଏହି ଜୀବନ ମଧ୍ୟ ଗୋଟିଏ ଅଜବ ସମସ୍ୟା ଏ ଜାନା, ଗଳି, ସଡ଼କ ଓ ବଜାରର ଲୋକ ଏବଂ ଇତିହାସ ହୋଇ ଯାଇଥିବା ସହସ୍ର ଯୁଗ ଏହି ଜଟିଳ ସମସ୍ୟା ଜାଲରେ ଛନ୍ଦିହୋଇଛନ୍ତି । ଏଥିରେ ମଣିଷ ଏବଂ ଅମଣିଷ ଏକାଠି, ଏବଂ ବିନା ଭେଦଭାବରେ ସବୁବେଳେ ସ୍ଥାନ ପାଇଛନ୍ତି । ଧନୀ ଏବଂ ନଗର ସେଠଙ୍କ ବିରାଟ ଅଟ୍ଟାଳିକା ସହିତ ଗରିବ ମଣିଷର ମୁଷାଗାତପରି ବସା ଏଇ ସାଇର ନାମ ଠିକଣାର ସମାନ ଅଧିକାରୀ ହୋଇଛି । ସତ୍ୟନିଷ୍ଠ ମଣିଷ ତଥା ଚୋର ଖଣ୍ଡା ବଦମାସ, ଗୁଣ୍ଡା ମଧ୍ୟ ଏହି ସାଇରେ ରହିଛନ୍ତି ।

ଯୁଗ ବଦଳୁଛି ତା ସହିତ, ସମସ୍ୟା ବଦଳି ଯାଉଛି । ଘର ଭାଙ୍ଗୁଛି, ନୂଆ ତିଆରି ହେଉଛି ।···ସ୍ଥାନ ସର୍ବଦା ନୂଆ ହେବାର ଆଶା ନେଇ ଧ୍ୱଂସ ହୋଇଥାଏ, ଏହି ମଣିଷ କେବେ ଶେଷ ନ ହେବାର ସ୍ୱପ୍ନଦେଖେ ।

*　　*　　*

ଘରେ ପହଞ୍ଚି ମହିପାଲକୁ ଝଞ୍ଜିର ହଲାଇବାକୁ ଟିକେ ସଙ୍କୋଚ ଲାଗିଲା । ଭାବିଲା ମୁହଁରୁ ମଦର ଗନ୍ଧ ନିଶ୍ଚୟ ବାହାରୁଥିବ । ପୁଣି ଭାବିଲା ନ ବାହାରି ମଧ୍ୟ ପାରେ ଅନେକ ସମୟ ହେଲା ପିଇଛି ।

ଦେ । ଦେ । ପାଞ୍ଚ ହେଉ ହେଉ ଗୋଟିଏ ମିନିଟ ବିତିଗଲା । ଶେଷରେ ସେ ଝଞ୍ଜିର ହଲାଇଲା ।

କିଛି ସମୟ ପରେ କଲ୍ୟାଣି ପାଟି ଶୁଣାଗଲା କିଏ ?

ମୁଁ, କହିବାରୁ ମହିପାଲର ମନର ଚକ୍ରା ଘୂରିଗଲା, କବାଟ ଫିଟିଗଲା । ଲାଇଟର ଆଲୋକ ମହିପାଲ ଉପରେ ପଡ଼ିଲା । ସ୍ୱାମୀ ସ୍ତ୍ରୀ ଦୁଇଜଣ ଦୁହେଁ ଦୁହିଁକୁ

ଦେଖିଲେ । ସ୍ୱାମୀ ଆଖି ଫେରାଇନେଲା । ଭିତରେ ଯାଇ ନିଜର ମୁହଁ ବନ୍ଦକରି ବୈଠକଖାନାର କବାଟ ଖୋଲିଲା ଏବଂ ସୁଇଚ୍ ଟିପିଲା ।

ବାହାର କବାଟ ବନ୍ଦକରି କଲ୍ୟାଣୀ ଧୀର ସ୍ୱରରେ କହିଲା—"ବର୍ତ୍ତମାନ ପଢ଼ିବ ?" "ଲେଖିବ ।" ଗମ୍ଭୀର ସ୍ୱରରେ ଉତ୍ତର ଦେଇ ମହିପାଲ ଟେବୁଲ ଲ୍ୟାମ୍ପ ଜଳେଇଲା ଏବଂ ଟେବୁଲର କାଗଜପତ୍ର ଏପରି ଭାବରେ ଓଲଟେଇବାକୁ ଲାଗିଲା ଯେପରି କୌଣସି ଜରୁରି କାଗଜ ଖୋଜୁଛି । ବ୍ୟସ୍ତ ହେବାର ବାହାନା କରି ସ୍ତ୍ରୀ ଆଡ଼କୁ ପଛକରି କହିଲା—ମୋତେ ଦୁଇଟି ପାନ ଦେଇଯିବ ।

"ପାନ ଡବାରେ ଅଛି" ସ୍ତ୍ରୀ କଥାଶୁଣି ମହିପାଲ ଶୀଘ୍ର କାଗଜ ଛାଡ଼ି ପାନ ଡବା ଉଠାଇନେଲା ଏବଂ ମୁହଁରେ ଗୁରିଟା ପାନ ପୂରାଇ ଏପରି ନିଶ୍ଚିନ୍ତ ହେଲା ଯେପରି ଚୋର ମାଲ ନେଇ ଯାଉଥିବା ଚୋର ଭୟଙ୍କର ସ୍ଥାନ ଛାଡ଼ି ନିଜ ସ୍ଥାନରେ ପହଞ୍ଚି ଯାଇଛି ।

ତା ସ୍ତ୍ରୀ କବାଟ ପାଖରୁ ଗ୍ଲଲିଗଲାଣି । ନିଶ୍ଚିନ୍ତରେ ନିଶ୍ୱାସ ପକାଇ ମହିପାଲ ପାନ ଛେପ ପକାଇଲା ।

ଦୁଇଦିନହେଲା ସ୍ୱାମୀ ସ୍ତ୍ରୀ ମଧ୍ୟରେ ଖୁଟ୍‌ଖାଟ୍ ଗ୍ଲଲିଛି । କାଲି ଦ୍ୱିପହରେତ ଖୁବ୍ ଜୋରରେ ଲାଗିଗଲା । ଆଜି ମଧ୍ୟ କଳହରୁ ପ୍ରଭାତ ଆରମ୍ଭ ହୋଇଛି । କଳିଟା ଖର୍ଚ୍ଚ ନେଇ ହୋଇଥିଲା । ଦେଢ଼ମାସ ହେଲା ତାହାର ରୋଜଗାର ଏପାଖ ସେପାଖ ହୋଇଯାଇଛି । ସେପ୍‌ଟେମ୍ବରରେ ମହିପାଲ ବଡ଼ଝିଅର ଡବଲ ନିମୋନିଆ ହୋଇ ଯାଇଥିଲା । ମୃତ୍ୟୁ ମୁହଁରୁ ବଞ୍ଚିଗଲା ମାତ୍ର ଯାହା ଭାଗ୍ୟରେ ଥିଲା ହେଲା, ଶୀଳା ଏବଂ କର୍ଣ୍ଣେଲ ପାଇଁ ଔଷଧ ଖର୍ଚ୍ଚ ତାହାର ବେଶୀ ପଡ଼ିଲା ନାହିଁ । ମାତ୍ର ମାନସିକ ଅଶାନ୍ତି ହେତୁ ସେ ସେହି ଦିନରୁ କିଛି ଲେଖିପାରୁନାହିଁ ।

ପ୍ରତିଦିନ କାମ କରି ଚଳୁଥିବା ଲୋକଙ୍କ ପକ୍ଷରେ ଦିନେ ବସିଗଲେ ଅସୁବିଧା ହୋଇଯାଏ । ମହିପାଳର ନଭେମ୍ବରଠାରୁ କଷ୍ଟ ଆରମ୍ଭ ହୋଇଗଲା । ଆଶା କରିଥିଲା ଡ଼ିସେମ୍ବରରେ ବହି ରଫାଲିଟିରୁ ଦେଢ଼ ହଜାର ଟଙ୍କା ମିଳିବ, ତେଣୁ କିଛିଦିନ ପୂର୍ବରୁ ମହିପାଲ ତାଗଦା ହେବାପରେ ପ୍ରକାଶିକ ଚିଠି ଲେଖିଲେ ଯେ, ବଜାର ମାନ୍ଦା ହେତୁ ତାଙ୍କ ହାତରେ ବର୍ତ୍ତମାନ ଟଙ୍କା ନାହିଁ, ଟଙ୍କା ଫେବୃୟାରୀ ବା ମାର୍ଚ୍ଚ ମାସରେ ପଠାଇଦେବେ ।

ସାଧାରଣ ଖାଇବା ପିଇବା ପାଇଁ ନଅଜଣଙ୍କ ପରିବାରରେ ଅତି କମ୍‌ରେ ସାଢ଼େ ତିନିଗ୍ଲରିହେ ଟଙ୍କାତ ନିହାତି ଦରକାର । ମହିପାଳର ଦୁଇପୁଅ ହର୍ଷବର୍ଦ୍ଧନ

ଓ ଶ୍ରୀବର୍ଦ୍ଧନ ଏବଂ ଭଣିଜ ଶକୁନ୍ତଳା ବର୍ତ୍ତମାନ ଇଂନ୍‌ଟର ମିଡ଼ିଏଟ୍‌ର ଦ୍ୱିତୀୟ ବର୍ଷରେ ପଢ଼ୁଛନ୍ତି । ପନ୍ଦର ବର୍ଷର ଝିଅ ରାଜଶ୍ରୀ ନବମ ଶ୍ରେଣୀରେ । ଏବଂ ସିଦ୍ଧାର୍ଥ ସପ୍ତମ ଶ୍ରେଣୀରେ । ତପୋଧନକୁ ସାତ ବର୍ଷ । ସେ ଦ୍ୱିତୀୟ ଶ୍ରେଣୀରେ ପଢ଼ୁଛି । ଏବଂ ଅନାମିକା ବର୍ତ୍ତମାନ ଏକ ବର୍ଷର ଦୁଧ ଖାଇଲା ପିଲା ।

ରେଡ଼ିଓ ପାଇଁ ନାଟକ—ଖବର ଏବଂ ମାସିକ ପତ୍ର ପତ୍ରିକା ମାନଙ୍କରେ ଗଳ୍ପ, ଲେଖା ଇତ୍ୟାଦି ଲେଖିବା ଛଡ଼ା ମହିପାଳ ପାଖ ଛ' ମାସ ହେଲା ଗୋଟିଏ ସ୍ଥାନୀୟ ଦୈନିକ ପତ୍ରିକା ପାଇଁ ପ୍ରତିଦିନ ହାସ୍ୟରସାତ୍ମକ ରଚନା ଲେଖିବାକୁ ମଧ୍ୟ ଆରମ୍ଭ କରିଛି । ଏହି ହାସ୍ୟରସାତ୍ମକ ରଚନା ପାଇଁ ଧରା ବନ୍ଧା ଦେଢ଼ଶହ ଟଙ୍କା ପାଏ ବାକି ସବୁ ଅନ୍ୟାନ୍ୟ କାମରୁ ମିଳେ । ସବୁ ମିଶି ତାଙ୍କର ଏଗାର ଖଣ୍ଡି ବହି ଛପିଛି, କିନ୍ତୁ ଟଙ୍କା ବେଶୀ ନାହିଁ । ମହିପାଳର ଉପନ୍ୟାସରେ ରୋମାଞ୍ଚର ଯଥେଷ୍ଟ ଅଭାବ । କିନ୍ତୁ ଆଜିକାଲି ( ପ୍ରକାଶକଙ୍କ କଥାନୁସାରେ ) ଏହିସବୁ ବହିର ବେଶୀ ଚାହିଦା ଅଛି । ପ୍ରଗତିଶୀଳ, ସାମାଜିକ, ବସ୍ତୁରଶୀଳ ଉପନ୍ୟାସ ବର୍ଜିତ ନିଷ୍ଠୁର ହେଉଛି ମାତ୍ର··· । ଏହି "ମାତ୍ର" ପରେ ଆଉରି ଗୋଟିଏ "ମାତ୍ର" ମଧ୍ୟ ଯୋଡ଼ାହୁଏ, ଯେଉଁମାନଙ୍କ ରଚନା ଗୁଡ଼ିକ ଚମକପ୍ରଦ, ହାହାକାରର ପୂର୍ତ୍ତି ସମାଲୋଚନା, "ଏକ ଅଧ୍ୟୟନ" କିମ୍ବା ଦୁଇଟି ସମୀକ୍ଷା ଅଥବା ଆଉରି ଦଶପ୍ରକାର ଦୃଷ୍ଟି କୋଣ ପ୍ରକାଶିତ ହୋଇ ମାସିକ ସାହିତ୍ୟ ପତ୍ରିକା ପଢ଼ୁଥିବା ପାଠକଙ୍କୁ ବଡ଼ ମନ୍ଦିର ସାମନାରେ ବସିଥିବା ଭିକାରୀ ମାନଙ୍କ ପରି ନ ଘେରିଛନ୍ତି ତେବେ ତାହାର ଲେଖକଙ୍କ ରୋଜଗାର ଆଉରି କମ୍ ହୋଇଯିବ । ମହିପାଳର ଲେଖା ଗୁଡ଼ିକ ଏହି ସୌଭାଗ୍ୟରୁ ପ୍ରାପ୍ୟ ବଞ୍ଚିତ । ଏକଥା ସେ ବୁଝିଛି ଯେ ଯେଉଁ ବହିର ଲେଖକ ରାଜନୈତିକ ବା ସାହିତ୍ୟିକ ଗୋଷ୍ଠି ସହିତ ସମ୍ପର୍କ ରଖିଛନ୍ତି ସେମାନଙ୍କ ବହିର ଚାହିଦା ଅଧିକ ହେଉଛି । ଯେଉଁ ଗୋଷ୍ଠିର ଯେତେ ସଂଗଠନ ଅଛି ତାହାର ଲେଖକ ମାନଙ୍କର ସେତେ ପବ୍ଲିସିଟି ହେଉଛି ଏବଂ ସେହି ଅନୁସାରେ ତାଙ୍କର ଉପାର୍ଜନ ମଧ୍ୟ ବଢ଼ୁଛି । ମହିପାଳ ନିଜକୁ କୌଣସି ଗୋଷ୍ଠି ସହିତ ସାମିଲ କରିନାହିଁ ।

ଏପରିକି ନିଜ ଜାତିର ଲୋକଙ୍କଠାରୁ ସେ ପୃଥକ, ଏହିପରି ନିଃସଙ୍ଗ ଜୀବନଯାପନ କରି ଦିନକୁ ଦିନ ସେ ମାନସିକ ଯନ୍ତ୍ରଣାରେ ଜଳି ପୋଡ଼ି ମରୁଛି । ଅଭାବର ତାଡ଼ନାରେ କେବେ ସୌଭାଗ୍ୟ ଲକ୍ଷ୍ମୀ ଓ ବିଳାସ ବ୍ୟସନରେ କଳ୍ପନା କରି ମନକୁ ପ୍ରବୋଧ ଦିଏତ କେବେ ମିଥ୍ୟା କଳ୍ପନାର ଦୃଢ଼ନିଷ୍ଠାରେ ନିଜକୁ ଅଭିସମ୍ପାତ କରି ରାମ, ବୁଦ୍ଧ, ମହାବୀର, ଖ୍ରୀଷ୍ଟ, ଗାନ୍ଧୀ ଏବଂ ପ୍ରାଚୀନ ଭାରତର ଋଷି ସନ୍ଥ ମାନଙ୍କର ତ୍ୟାଗ ଏବଂ ତପୋ ନିଷ୍ଠାର ପ୍ରେରଣା ନେଇ ଲେଖା ପଢ଼ା

କାମରେ ଲାଗିଯାଏ । ଭଜନ ଗୃହ କାମ କରି ମଧ୍ୟ ତାର ଅଭାବ ମେଣ୍ଟେନାହିଁ । ଭଗବାନ ଏବଂ ଐଶ୍ୱର୍ଯ୍ୟ ମଝିରେ ରହି ଦୁଇଆଡ଼କୁ ହାତ ବଢ଼ାଇ ମଧ୍ୟ ସେ ସବୁବେଳେ ଭୁପାଣି ।

ବୈଠକ ଘରୁ ସ୍ତ୍ରୀ ଗଲାପରେ ମହିପାଳର ମନରେ ଅନୁତାପ ଜାତହେଲା, ତାର ମନେହେଲା ଅଢ଼ତିରିଶ ବର୍ଷ ବୟସରେ କଲ୍ୟାଣୀ ମୁଣ୍ଡରେ ପାଚିଲା ବାଳ ଦେଖାଗଲାଣି, ମୁହଁରେ ଦୁଶ୍ଚିନ୍ତାର ରେଖା ପଡ଼ିଛି, ତାଠାରୁ ତାକୁ ପାଞ୍ଚ-ସାତ ବର୍ଷ ବଡ଼ ଦେଖାଯାଉଛି । କଲ୍ୟାଣୀର ଏହି ଅବସ୍ଥା ପାଇଁ ସେ ନିଜକୁ ଦାୟୀକଲା । ଏକଥା ସତ ଯେ ସେ କଳା ସାହିତ୍ୟ ଇତ୍ୟାଦି କିଛି ବୁଝେନାହିଁ । ଆଦାବ କାଇଦାରେ କଥା କହିପାରେନା, ସବୁବେଳେ ଟଙ୍କା ପଇସାର ହିସାବ କରେ । ଦେବା ନେବା ବିଷୟରେ ହିଁ ଚିନ୍ତାକରେ ମାତ୍ର ତାହାର ଜୀବନ ଏପରି ଏକ-ନିଷ୍ଠା ଯେ ତାହା ଆଜିକାଲି ବିରଳ । ଅନ୍ୟକୁ ଖୁସି କରିବା ପାଇଁ ସେ ପ୍ରାଣମୂର୍ଚ୍ଛା ଖଟେ । ନିଜର ଜୀବନ ମଧ୍ୟ ଦେଇପାରେ । ଏହି ବିଶେଷତ୍ୱ ମହିପାଳ ଅନ୍ୟ ସ୍ତ୍ରୀଙ୍କ ନିକଟରେ ଦେଖିପାରେ ନାହିଁ ମହିପାଳ ଆନ୍ତରିକ ଭାବରେ ତାକୁ ଶ୍ରଦ୍ଧା କରୁଛି ।

କଲ୍ୟାଣି ଗୋଟିଏ ହାତରେ ପାଣିଗ୍ଲାସ ଏବଂ ଅନ୍ୟ ହାତରେ ପଥରର ଥାଳିଆ ନେଇ ଘର ଭିତରକୁ ଆସିଲା । ମହିପାଳ ଚମକି ପଡ଼ିଲା । ଯଦି ଆଗରୁ ଟିକେ ଜାଣିପାରିଥାନ୍ତା ତାହାହେଲେ ଲେଖିବା ବା ପଢ଼ିବାର ଛଳନା କରନ୍ତା । କିନ୍ତୁ ସେ ବର୍ତ୍ତମାନ କାଗଜ କଲମ ଓ ବହିଠାରୁ ଦୂରରେ ରହି ଖଟ ଉପରେ ନିଜକୁ ଆଜି "ପ୍ରାୟଶ୍ଚିତ" କରୁଛି । ମାତ୍ର ଏହି ପ୍ରାୟଶ୍ଚିତ—ସ୍ତ୍ରୀ ପ୍ରତି ତାର ସହାନୁଭୂତି ଭରି ଚିନ୍ତାର ଛବି ସେ ନିଜ ସ୍ତ୍ରୀକୁ କହିପାରିବ ନାହିଁ ଯେ, ଦେଖ ତୁମ ପଛରେ ମଧ୍ୟ ମୁଁ ତୁମର ଚିନ୍ତାରେ ଗୌରବ ଅନୁଭବ କରୁଛି । ତେଣୁ କଲ୍ୟାଣିର ହଠାତ୍ ପ୍ରବେଶ ତା' ଚିନ୍ତାଧାରା ବ୍ୟାହତ କଲା ।

କଲ୍ୟାଣି ମେଜ ଉପରେ ଗ୍ଲାସ ରଖି କୋଣରେ ଥିବା ଟୁଲଉପରୁ ଗୋଟିଏ ପୁରୁଣା ଖବର କାଗଜ ଉଠାଇ ପଚାରିଲା, ଏଟା ବଛେଇବି ? ନା ତୁମର କ'ଣ ଦରକାର ଅଛି ।

"ଛାଡ଼ିଇ ଦିଅ । ଏ କଣ, ହାଲୁଆ ?" ହାଲୁଆ ଦେଖି ତାକୁ ଲୋଭ ଲାଗିଗଲା ।

ସୁଜିର ହାଲୁଆ ତରକାରୀ ଏବଂ ଦହିବରା ରଖି କଲ୍ୟାଣୀ କହିଲା "ବଡ଼ପୁଅ କେତେଦିନ ହେଲା କହୁଛି ମା ହାଲୁଆ କର, ହାଲୁଆ କର—ସେଥିପାଇଁ ମୁଁ ଆଜି

କଳ୍ପନା।" ତମେ ମଧ୍ୟ ଦହିବରାକୁ ଭଲପାଅ। ଗରମ ଅଛି, ବାଃ...ବଢ଼ିଆ କରି ତିଆରି କରିଛ।"

କଲ୍ୟାଣୀ କହିଲା, ଇଲେକ୍ଟ୍ରିକ୍ ଷ୍ଟୋଭରେ ବର୍ତ୍ତମାନ ଗରମ କରିଛି। ତୁମେ ସକାଳେ ଅଫିସ ଚାଲିଗଲ। ମୋର ଦିନ କିପରି କଟୁଛି...। କଥା ପୂରା ହେଲାନାହିଁ କଲ୍ୟାଣୀ ଆଖି ଲୋତକ ପୂର୍ଣ୍ଣ ହୋଇଗଲା, ଓଠ ଥରିବାକୁ ଲାଗିଲା।

ମହିପାଳର ଦୟା ହେଲା, ସେ ହସିହସି କହିଲା ଆଚ୍ଛା। ବଡ଼ପୁଅ ନାଁଟା ବାହାନା।

କଲ୍ୟାଣୀର ସୁଖିଲା ମୁହଁ ଉପରେ ହସ ଉକୁଟି ଉଠିଲା, ମହିପାଳ କହିଲା—ତଥାସ୍ତୁ। ମୁଁ ସନ୍ତୁଷ୍ଟ ହୋଇଛି, ନିଅ...

ମହିପାଳ ଚାମୁଚରେ ହାଲୁଆ ଭରି କରି ତା ଆଡ଼କୁ ବଢ଼ାଇଲା, କଲ୍ୟାଣୀ କହିଲା—ନାହିଁ ମୁଁ ଖାଇବିନାହିଁ।

କାହିଁକି, କଣ ଛୁଆଁ ହୋଇଗଲ ଦେବୀ, ଆରେ ମୁଁ ଜାଣେ ତୁମେ ଖାଇ ନଥିବ। ବସ, ବସି ଖାଇନିଅ, କଣ ଖରାପ ହୋଇଯିବ କୁହ ?

"ମୁଁ ତୁମକୁ କହୁଛି ତୁମେ ଖାଅ, ପରେ ମୁଁ ଖାଇବି।"

ସେକଥା ହେବନାହିଁ। ଖାଅ, ଛୁଆଙ୍କୁ ଶାସନ କଲାଭଳି ମହିପାଳ ଚାମୁଚ ତା ଓଠରେ ଲଗେଇଦେଲା। କଲ୍ୟାଣୀ ଶୀଘ୍ର ମୁହଁ ବୁଲେଇ ପଛେଇ ପଛେଇ ହାତଯୋଡ଼ି କ୍ଷମାମାଗିବା ଭଙ୍ଗିରେ କହିଲା—"ନାହିଁ-ନାହିଁ।"

ମହିପାଳ ଟିକେ ରାଗିଗଲା, କିନ୍ତୁ ତାକୁ ପ୍ରକାଶ ନକରି ଗମ୍ଭୀର ସ୍ୱରରେ କହିଲା—"ସ୍ୱାମୀ ବିବେକାନନ୍ଦ କହିଛନ୍ତି ଜାଣିଛ ସ୍ୱାମୀ ବିବେକାନନ୍ଦଙ୍କୁ ? ହଁ-ହଁ ଛବିଦେଖିଛ ତାଙ୍କର।"

"ଆଚ୍ଛା ହଁ, ସେ କହିଛନ୍ତି କି, ଆମର ହିନ୍ଦୁ ଜାତିର ଧର୍ମ—ଜାଣିଛ କେଉଁଠି ରହେ ? ରୋଷେଇଆ ବ୍ରାହ୍ମଣ ପାଖରେ। ଆଉ ଆମର ଭଗବାନ ? କହିଛନ୍ତି ଯେ ଆମର ଭଗବାନ ହେଉଛନ୍ତି ଦରିଦ୍ର ନାରାୟଣ, ଆଉ ଆମରି ଧର୍ମ କିପରି, କହିଲ ?

କଲ୍ୟାଣୀ କିଛି ଉତ୍ତର ଦେଲାନାହିଁ, ତୃଷ୍ଣ କାତରା ଏକ ଦୃଷ୍ଟିରେ ତାକୁ ଚାହିଁଥାଆନ୍ତି।

ଆମର ସନାତନ ଧର୍ମ ଗୋଟେ ନମ୍ବୁସକ ଧର୍ମ— । ଯିଏ ନାକ ଉପରେ ଆଙ୍ଗୁଳି ରଖି ନିଜକୁ ମାନୁଥିବା ଲୋକଙ୍କୁ କହନ୍ତି ହେ ସତ୍ୟାନଶିଆ ସବୁ, ମୋତେ ଛୁଅଁ ନାହିଁ, ମୁଁ ବଦ୍ଧୁତ ପବିତ୍ର ।

ଧର୍ମର ଏହି ପ୍ରକାର କଥାଶୁଣି କଲ୍ୟାଣୀ ଉତ୍ପ୍ରଭିତ ହୋଇଗଲା । ମହିପାଳ କଥା ବନ୍ଦ କରି ଚୁପହେଲା । ହାଲୁଆର ଅଧାଠାରୁ ବେଶି ପ୍ଲେଟରେ ରଖିଦେଲା । ଏବଂ ପଥୁରଟା ଉଠାଇ ଉଠାଇ ନିଜ କଥାର ପ୍ରତକିସ୍ୟା ଦେଖିବାକୁ ଲଗିଲା । କଲ୍ୟାଣୀ ଅତଳ ସ୍ୱରରେ କହିଲା—ଦେଖ, ଆମେ ସବୁ ଗୃହସ୍ଥ ପିଲା ଛୁଆର ମାଁ, ତୁମେ ଦୟାକରି ଧର୍ମ, ଭଗବାନଙ୍କୁ ନେଇ ସେପରି କୁହନାହିଁ । ପାପ ହେବ ।

ପାପ ତୁମ ଶ୍ୱଶୁର ଏବଂ ଛୁଆଁ ଛୁତ ତୁମ ମା । ଏଠାଛୁଆଁ, ସେଠାଛୁଆଁ-- ରାମ ରାମ ।—ଆଚ୍ଛା ତାହାହେଲେ ତୁମେ କୁହ ତୁମ ଚୁଲାରେ ହାଲୁଆ କାହିଁକି ତିଆରି କରୁଛ ? ଏଠାରେ ବସି ଏହାକୁ ଖାଉଛ—ପରସୁଛ ? ତୁମର ବଗୃର ବଦେକରୁ ତ ଏହା ମଧ୍ୟ ଛୁଆଁ ହେବା ଦରକାର ।

କାହିଁକି ? କଲ୍ୟାଣି ଚମକି ପଚାରିଲା ।

"କାହିଁକି ? ଆରେ ଏହା ଆରବ ଦେଶର ଭୋଜନ ଖାଦ୍ୟଖାସ୍ ମୁସଲମାନଙ୍କ ଭୋଜନ ଖାଦ୍ୟ ।" ହଉ ହୋଇଥିବ, ମୋର ସେଥିରେ କଣ ଅଛି ? ଆରେ ମୁସଲମାନଙ୍କ ନିଜ ଘରେ ମା ତିଆରି କରନ୍ତି । ଆମେ ପାଞ୍ଚଜଣ ମଧ୍ୟ ନିଜ ଘରେ ସେଇଥାକରୁ ।" "ସେଇ କଥାତ ମୁଁ ପଚାରୁଛି କାହିଁକି କରୁଛ । ଆରେ ତୁମେ ଏହି ପଞ୍ଚ ଶବ୍ଦ ଅକ୍ଷରର ପବିତ୍ରତା—ଅପବିତ୍ରତା ସୁଧାରିବା ଲୋକ ।"

"ନାହିଁତ"—କଲ୍ୟାଣି କିଛି କହିପାରିଲା ନାହିଁ କିମ୍ବା ଚୁପ ରହିପାରିଲା ନାହିଁ । ଘାବରେଇ ଯାଇ ଏତିକି କେବଳ କହିଲା । ମହିପାଳ ତାର କଥା ବନ୍ଦକରି ପୁନର୍ବାର ଆରମ୍ଭକଲା "ନୁହେଁତ ଆଉ କଣ ?" ଶବ୍ଦ ଅପବିତ୍ର ନ ହୋଇଥିଲେ ତୁମେ ଗାଜର, କୋବି, କାହିଁକି ଖାଅନାହିଁ । କାରଣ ସେଥିରେ ଗାଇ ଶବ୍ଦର ଆଦ୍ୟାକ୍ଷର ଗାଓଗୋ ରହିଛି । ତୁମେ ଏ ବରା ମଧ୍ୟ ଖାଅନାହିଁ । ଏଥିରେ ମଧ୍ୟ ଗା-ଗୋ ଶବ୍ଦ ଅଛି । ( ଉତ୍ତେଜନାରେ ଅଧାବରା ଖାଇକରି ) ବାଃ ଖୁବ୍ ବଢ଼ିଆ ହୋଇଛି । କିନ୍ତୁ ଏଥିରେ ଭଲ । ଗା-ଗୋ ଶବ୍ଦ ଆସିଲାକୁଆଉ ?" ବରା ପ୍ରଶଂସାରେ କୃତାର୍ଥ ହୋଇ କଲ୍ୟାଣୀ କହିଲା ।

"ତେଲୁଗୁ ଭାଷାରେ ବରାକୁ ଗାରୁ କୁହାଯାଏ । ଆରେ ବାବା ତୁମେ ଖାଇବା ନ ଖାଅ ମୋ ପାଇଁ ଆଉ ଦୁଇଟି ବରା ନେଇଆସ ।"

କଲ୍ୟାଣି ଏହାଶୁଣି ଖୁସି ହୋଇ ନିଜ ଦେହ ହଲାଇ ହସିକରି କହିଲା । "ବର୍ତ୍ତମାନ ଖାଅନାହିଁ ବହୁତ ରାତି ହୋଇଯାଇଛି, ତମେ ମୋ କଥା ଯଦି ନ ମାନିବ ତେବେ ମୁଁ ନେଇଆସିବ । ଅବେଳରେ ଖାଇଲେ ତୁମ ଦେହ ଖରାପ ହେବ ସକାଳେ ଖାଇବ ।" "ଓକେ ଟଫ୍" କହି ମହିପାଲ ଗ୍ରୁମଟରେ ପାଚିରୁ ଦହିଲେଇ ଖାଇବାକୁ ଲଗିଲା । ତାର ସ୍ତ୍ରୀକୁ ଚମୁକାଇବାପାଇଁ ହଠାତ୍ ତା ମନକୁ ଗୋଟିଏ ଉପାୟ ଆସିଲା—

ହାଲୁଆ ବିଦେଶୀ ଜିନିଷ, ତଥାପି ଆମ ଦେଶ ଖାଦ୍ୟର ଗୋଟିଏ ଅଙ୍ଗ ହୋଇଯାଇଛି । ଏହିପରି ଖାଇବା ପିଇବା, ପିନ୍ଧିବା ଜିନିଷ ଶବ୍ଦ, ଗୀତ ନାଟର ବହୁଲ ବିଶେଷଣ ପରସ୍ପରରେ ଆଦୃତ ହୋଇ ଗୃହିତ ହୋଇ ଶେଷରେ ଜନ ଜୀବନରେ ମିଶିଯାଉଛି । ଏ ବିଷୟ କେଜାଣି ଭାରତର କେଉଁ ପୁରୁଷ ବା ସ୍ତ୍ରୀ ସର୍ବ ପ୍ରଥମେ କରିବାର ଉପାୟ ବାହାର କଲା, ପ୍ରାୟ କେତେ ସ୍ଥାନରେ ଅଲଗା-ଅଲଗା ପାକ ପ୍ରଣାଳୀ ପ୍ରୟୋଗ କରି ଏହାକୁ ପ୍ରସ୍ତୁତ କରାଯାଏ । ପୁଣି ଏହା ମଧ୍ୟ ଠିକ୍ ଯେ ଗୋଟିଏ ଅନ୍ୟଦ୍ୱାରା ଗୃହିତ ହୋଇ ଆଜିକାଲି ପ୍ରାୟ ସବୁ ଦେଶର ଭୋଜନ ସାମଗ୍ରୀ ସହିତ ଯୋଡ଼ାଯାଇଛି । —କିପରି ଜିନିଷ ଗୁଡ଼ିକ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନରେ ପହଁଚୁଛି ? କିପରି ସଂସ୍କୃତିର ପ୍ରସାର ହେଉଛି ଦେଶ କାଳ ମଧ୍ୟରେ, ବସ୍ତୁ ଏବଂ ବିଷୟର କିପରି ସଂସ୍କାର ରୂପରେ ଧରି ନିଆଯାଉଛି । ବାଃରେ ମାନବ ଜୀବନ । କେତେ ଜଟିଳ ଏବଂ ସରଳ—ପୁଣି ଏକାନ୍ତ ।

କଲ୍ୟାଣି କଥା ଆରମ୍ଭ କଲା । ମହିପାଲର ଧ୍ୟାନ ଅନ୍ତର୍ମୁଖୀରୁ ବହିର୍ମୁଖୀ ହେଲା । କଲ୍ୟାଣି କହିଲା ଆଜି ସଂଧ୍ୟାରେ ପାର୍ବତୀର ମା ଆସିଥିଲା । ଆରେ ବହୁତ ଖରାପ ଅବସ୍ଥା ତା ଘରର ଶୁଣି ମୋର ହୃଦ ଥରଉଠିଲା ।

'କଣ ହୋଇଛି' ପଚାରି ମହିପାଲ ହାଲୁଆ ପ୍ଲେଟ ଉଠାଇଲା । ପାର୍ବତୀର ବାପ ମହା ଆରାମରେ ଦିନ କଟାଉଛି । ଆରେ, ନିଜର ପୁଅ ଝିଅଙ୍କୁ ଭୋକରେ ମାରି ନିଜେ ଏପରି ଆରାମ କଲେ ଭଗବାନ ତାକୁ ସାତଜନ୍ମ ନରକରେ ଘାଣ୍ଟିବେ ।

ପାର୍ବତୀ ପଡ଼ିସାରେ ରହୁଥିବା ଗୋଟିଏ ଦପ୍ତରୀ ବାପାର ବଡ଼ଝିଅ । ଅଠର ବର୍ଷର ହୋଇଯାଇଛି । ବିବାହ ହୋଇନାହିଁ, କି ପଢ଼ି ପାରିନାହିଁ । ତାହାର ଆହୁରି ପାଞ୍ଚଭାଇ ଭଉଣୀ ଅଛନ୍ତି । ତାଙ୍କ ଘରକୁ ଲାଗି ପାର୍ବତୀର ମାଉସି ଏବଂ ତାର ଛୁଆମାନେ ଅଛନ୍ତି । ପାଞ୍ଚବର୍ଷ ହେଲା ମଉସା ଟ୍ରାନ୍ସଫରହେଇ ଏକଲା

ଜଳନ୍ଧରରେ ରହିଛନ୍ତି । ସେଠାରୁ ଖର୍ଚ୍ଚ ପଠାନ୍ତି । ପାର୍ବତୀର ବାପାଙ୍କର ରୋଜଗାରର ଅଧିକାଂଶ ଭାଗ ମାଉସିର ସିନ୍ଦୁକ ଭିତରେ । ପାର୍ବତୀର ମା ନିଜ ଝିଅଙ୍କ ସହିତ ନିଜ ଭଉଣୀ ପାଇଁ ଅନାଥ ବିଧବା ଭଳି ଏବଂ ଅର୍ଥ ଅଭାବଗ୍ରସ୍ତା ଏବଂ ଚାକରାଣୀ ଭଳି ମାଡ଼-ଗାଳି ଖାଇ ଜୀବନ କଟାଉଛି । ସାରା ଗଳିରେ ଶାଳୀ-ଭଉଣୀଙ୍କ ସମ୍ପର୍କରେ ନାନା ପ୍ରକାର କଥା ଶୁଣାଯାଉଛି । ମହିପାଲ ଖାଲି ପ୍ଲେଟ ଖବର କାଗଜ ଉପରେ ରଖିରଖି ଗ୍ଲାସଆଡ଼କୁ ହାତ ବଢ଼ାଇ କହିଲା—"କଣ ନୂଆ କଥା ହେଇଛି ?"

"ଆରେ, ବର୍ତ୍ତମାନ ସ୍ତ୍ରୀଭଳି କାପୁରୁଷ ଆଉ ମୁଁ ଦେଖିନାହିଁ । ପାର୍ବତୀର ମା ମୋ ସାମନାରେ ଫୁଲି ଫୁଲି କାନ୍ଦିଲା କହିଲା କି ଭଉଣୀ ସବୁ ସହିପାରିବ କିନ୍ତୁ ଝିଅଁକୁ ସବୁଦିନ ଶୋକରେ କଳବଳ ହେବା ଦେଖି କିପରି ସମ୍ଭାଳିବ ?

ମହିପାଳର ମନ ଖବରକୁ ଜଡ଼ କରି ପୁଣି ନିଜ ଭିତରେ ଲୀନ ହୋଇଗଲା ।

କଲ୍ୟାଣୀ ଥରିଲା ସ୍ୱରରେ କହିଲା—" ମତେ କହିଛି ଯେ ଭଉଣୀ, ପଣ୍ଡିତ ବଡ଼ ବଡ଼ ଲୋକଙ୍କୁ ଜାଣିଛନ୍ତି, କେଉଁଠାରେ ମୋର ଗୋଟିଏ ପୁଅକୁ ରଖିଦେବେ । ମୋର କିଛି ଦରକାର ନାହିଁ । କେବଳ ତାହାକୁ ଦିବେଳା ଦିମୁଠା ପେଟକୁ ଓ ଛିଣ୍ଡା ପୁରୁଣା ··

ଆଖିରୁ ଲୋତକ ଧାରା ବହି ଚାଲିଲା. ନିମିଷକ ମଧ୍ୟରେ କଲ୍ୟାଣିର କଣ୍ଠସ୍ୱର ଅଶ୍ରୁରେ ବୁଡ଼ିଗଲା । ମହିପାଳ ଆଶ୍ୱାସନା ଶୁଣାଇଲା । ଭାବାବେଗକୁ ଟିକେ ସମ୍ଭାଳି ନିଜ ଲୁଗା କାନିରେ ଲୁହ ପୋଛି ପୋଛି କଲ୍ୟାଣୀ କହିଲା— "ଏହିକଥା ଶୁଣି ମୋ ହୃଦୟ ଫାଟିଗଲାପରି ଲାଗିଲା ।" କେଉଁ ମା ନିଜ ପୁଅକୁ ଘରରୁ ବାହାରେ ପରଘରେ ଚାକରୀ କରିବାକୁ ଛାଡ଼ିବ ?

ସେ ପୁଣି କାନ୍ଦିବାକୁ ଲାଗିଲା । ନିଶ୍ୱାସ ପକାଇ ମହିପାଳ କହିଲା— "ପେଟ, ପାପି ପେଟ, ଏହାପାଖରେ ହାରି ମାଁ ମଧ୍ୟ ନିଜ ଛାତି ଉପରେ ପଥର ଭାରି ସହେ— ମନ ହେଉଛି ଏହି ଶଳା ଦିପନାରାୟଣକୁ ଯାଇ ଖୁବ୍ ପିଟିବି—ପିଟି ପିଟି ଶଳାର ଦମ୍ ବି ବାହାର କରିଦେବି—"

ଏତେ କରୁଣା ଭିତରୁ ଗୃହିଣୀର ଆଦେଶପୂର୍ଣ୍ଣ ସ୍ୱର ତୀର ଭଳି ଆଗେଇ-ଗଲା—"ଖବରଦାର ତୁମକୁ କହିଦେଉଛି, ଦୁନିଆସାରା କାପୁରୁଷ ବାଂଗାଳୀ ଆଉ

କିଛି ପାଇବ ନାହିଁ । ଆମକୁ କଣ ମିଳିବ ? ଆରେ ମୋର ଯାହା କର୍ତ୍ତବ୍ୟ ତାହା ମୁଁ କରିଦେଲି । ତୁମେ କାହିଁକି ଅଯଥା ସୃଷ୍ଟି କରିବ କହି କଲ୍ୟାଣୀ ଉଠି ଭିତରକୁ ଚାଲିଗଲା । ମହିପାଳ ଭାବିବାକୁ ଲାଗିଲା—ମୁଁ କ'ଣ ସାପନାଗ୍ରସ୍ତ ଭଲ ନର ନୁହେଁ ? ନିଜ ସ୍ତ୍ରୀକୁ କଷ୍ଟ ଦେଉଛି, ଠକୁଉଛି । ଏହା ଠିକ୍ ଯେ ମୁଁ ବାଜେ ଖର୍ଚ୍ଚ କରୁନାହିଁ, ପୁଣି ମଧ୍ୟ ନିଜ ଝିଅଁକୁ ଠିକ୍ ରକମ ଖୁଆଇ ପିନ୍ଧାଇ ପାରୁନାହିଁ ।... ଆଉ କାଲି ନିଁ ସମାସ ତ, ଶୀଳା ପାଖକୁ ଯିବାକୁ ହେବ । ତାହାକୁ କିଛି ପ୍ରେଜେଣ୍ଟ ମଧ୍ୟ ଦେବାକୁ ହେବ । ...ଘରେ ପାଞ୍ଚଟଙ୍କା ଅଛି ଏବଂ ପହିଲାର ମଧ୍ୟ କୌଣସି ଆକର୍ଷଣ ନାହିଁ । "ଲୋକସଭା"ଙ୍କ ଠାରୁ ତ ପଇସା ଆଠ ଦଶ ଜାନୁୟାରୀ ପୂର୍ବରୁ ମିଳିବା ଅସମ୍ଭବ । କିପରି ଚଳିବ ଏତେଦିନ ? କିପରି ଚଳିବ ?

କଲ୍ୟାଣୀ ଲୋଟାରେ ପାଣିନେଇ ଆସିଲା । ପିକଦାନି ଉଠାଇ ସ୍ୱାମୀର ହାତ ମୁହଁ ଧୋଇବାକୁ ଲାଗିଲା । ପାଖରେ ଥାଇ ମୁହଁରୁ ବାହାରୁଥିବା ଗନ୍ଧ ଜାଣି ପାରିଲା । କଲ୍ୟାଣୀ ନ କ ଟେକିଲା, ସ୍ତ୍ରୀର ଲୁଗାରେ ହାତ ପୋଛୁ ପୋଛୁ ମହିପାଳ ତାର ସଙ୍କୋଚ ଦେଖିନେଲା । ବୁଝି ମଧ୍ୟ ଗଲା, ସ୍ୱୈର ଧରା ପଡ଼ିଯିବାର ଭୟ ଏବଂ ଲାଜ ମଧ୍ୟ ଲାଗିଲା, କହିଲା—"ଆଜି ଟିକେ ପିଇଦେଇଛି ମ୍ୟାଡାମ୍ । ସଜ୍ଜନର ଘରେ" ସେ ଜୋର କଲା ।

ପିକଦାନୀକୁ କୋଣରେ ରଖି ବାଁ । ହାତରେ ପାଣି ଢାଳୁ ଢାଳୁ କହିଲା... ସେ ବଡ଼ଲୋକ ତାଙ୍କର କ'ଣ ଅଛି ଟଙ୍କା ପାଉଛନ୍ତି ଖାଉଛନ୍ତି । ସେଇଥିପାଇଁ ତୁମେ —ଦେଖୁନ କେତେକଷ୍ଟ—

ଆରେ, କଣ ମୁଁ ସବୁଦିନ ପିଉଛି ? ହଁ କାଲି ଏବଂ ପରଦିନ ଦୁଇଦିନ ପିଇବ । ନିଁ ସମାସ ପୂର୍ବରୁ ତ ପିଇବାକୁ ହୁଏ, ଖରାପ ଭାବନାହିଁ ।

ମେଜରୁ ପାନ ଡବା ଏବଂ ତମାକୁର ଡବା ଉଠାଇ ଦେଉ ଦେଉ କଲ୍ୟାଣୀ କହିଲା—କିଛି ଭାବିବ ନାହିଁ ମୁଁ ଗୋଟିଏ କଥା କହିବ ।

"କୁହ ।"

"ଛାଡ଼, କହିବ ନାହିଁ" ଦୁଇଦିନ ପରେ ବର୍ତ୍ତମାନ ତୁମର ମୋର ବେଳ, ଗ୍ରହ ନକ୍ଷତ୍ର ଠିକ୍ ଜାଗାରେ ରହିଛନ୍ତି । ହସି ପାନ ଡବାରୁ ଦୁଇଟି ପାନ ବାହାର କରି ମୁହଁରେ ପୁରାଇ ଡବା ବନ୍ଦକଲା । ମହିପାଳ ତମାଖୁ ଡବା ତା ଆଡ଼କୁ ବଢ଼ାଇ ହସିକରିକହିଲା—"ସଙ୍କୋଚ କରନାହିଁ ମହାରାଣୀ, ମୁଁ ଅଭୟ ଦାନ କରୁଛି ।"

ଆରେ ଶକୁନ୍ତଳାକୁ ବିବାହ ଦେବାର ଚିନ୍ତାକର । ଭଲ କାହାକୁ ଦେଖାଯାଏ ନାହିଁ, ଖରାପ ହେବାକୁ କେତେ ସମୟ । ପାଖରେ ଥିବା ଚୌକି ଉପରେ ବସୁ ବସୁ କଲ୍ୟାଣୀ କହିଲା ।

ତକିଆ ଉପରେ ଭରି ଦେଇ ଦେଇ ମହିପାଳ ଆକଟି କରି କହିଲା—ଆରେ ଆମେ ହେଲୁ ଅହିନବାଲାର ଶୁକ୍ଳ ବଂଶ । କିଏ ଏମିତି ଲୋକ ଅଛି ଯେ ମୋ ଆଡ଼କୁ ଆଙ୍ଗୁଳି ଉଠାଇବ ?

କଲ୍ୟାଣୀ ହସିଦେଲା—ବର୍ତ୍ତମାନ ତୁମ ବାଲ୍ୟ ଶୁକ୍ଳବଂଶ ଗାରିମାର ଢୋଲ ଏପରି ଦେଖେଇବ ଯେପରିକି ବିରାଟ ମହାଲର ଜମୀଦାରୀ ତୁମ ହସ୍ତଗତ ହୋଇଛି, ( ପୁଣି କ୍ରମଶଃ ଗମ୍ଭୀର ହୋଇଗଲା )—ଯଦି ଲକ୍ଷ ଦୁଇ ଲକ୍ଷର ସମ୍ପତ୍ତି ଆମର ଥାନ୍ତା ସେତେବେଳେ ଆମ ଆଡ଼କୁ ଭଲା କିଏ ଆଙ୍ଗୁଠି ଉଠାନ୍ତା । ଗୁଡ୍ଡୁ ବଡ଼ ଲୋକ ହୋଇଯାଇଛି । ସେ ଚାହିଁଲେ ଯାହା ପାରିବ କରିବ । ମୋତେ ଶୁଣାଇ ମୁନ୍ନିର ମା' ସମସ୍ତଙ୍କ ସାମନାରେ କହିଲା ହଁ—ନାମୀ ବ୍ୟକ୍ତି ନିଶ୍ଚୟ କିନ୍ତୁ ବଡ଼ ଲୋକ ନୁହେଁ । ତା ପାଖରେ କଣ ଅଛି ଯେ ଝିଅଣେଇକୁ ଯୌତୁକ ଦେବ ?

ମହିପାଳର ମନ ମୁନ୍ନିର ମା' ତଥା ସାରା ମାନବ ସମାଜ ପ୍ରତି ଘୃଣାରେ ପୂର୍ଣ୍ଣ ହୋଇଗଲା । ଗୁଡ୍ଡୁ ( ତାହାର ଜ୍ୟେଷ୍ଠ ଭାଇ, ଲକ୍ଷ୍ନୌର ଧନମାନ ଚିକିତ୍ସକ ଡାଃ ଯଶପାଲ ଶୁକ୍ଳ )ଙ୍କର ସାଂସାରିକ ସଫଳତାର ପ୍ରକାଶରେ ନିଜର ସାଂସାରିକ ଅସଫଳତାର ଚିହ୍ନ ତା ଛାତିରେ ନାଗଫେଣିଆ କଣ୍ଟାପରି ଭୁଷିଦେଲା । ଆର୍ଥିକ ଅସମର୍ଥତାର ବ୍ୟାଘ୍ର ପଞ୍ଜା ଉଠାଇ ଏପରି ଆକ୍ରମଣ କଲା ଯେ ତାର ସାହିତ୍ୟିକ ବୈଭବ ଏତେ ଟିକିଏ ହୋଇଗଲା । ତାହାର ମନ କଣ ହୋଇଗଲା, ଉତ୍ତେଜନାରେ ସିଧାହୋଇ ବସିଗଲା, କ୍ରୋଧ ମିଶ୍ରିତ ସ୍ୱରରେ କହିଲା—ମୁଁ ମଧ୍ୟ ଦେଖିବି ଦଶବର୍ଷପରେ କିଏ ବଡ଼ ଲୋକ ହେବ ? ଗୁଡ୍ଡୁ ନା ମୁଁ ? ଏହି ପଇସାର ଦୁନିଆ ବେଶିଦିନ ପର୍ଯ୍ୟନ୍ତ ରହିବ ନାହିଁ, ଆଜିର ସମାଜର ଶାସନ ହିଁ ବେଇମାନ ଏବଂ ଲୁଟୁଥିବା ଲୋକଙ୍କ ହାତରେ । ମଣିଷ ଜୀବନର ମାନ୍ୟତା ସେଠାରେ ଅଛି ଯିଏ ତାହାକୁ ଚଳାଏ । ଯିଏ ଏହି ଗ୍ରହଣବଶ କରି ସମାଜର ସୌଭାଗ୍ୟ ବୋଲି ନିଜର ଅଚଳ ଅଧିକାର ଚରାଇଛନ୍ତି, ସେମାନେ ଭୁଲି ଯାଉଛନ୍ତି ଯେ କୋଟି କୋଟି ରୋଗୀଣା, ଲେକଲା ଏବଂ ଲଙ୍ଗଳା ମଣିଷ ଜୀବନ ମରଣର ସନ୍ଧିକ୍ଷଣରେ ପହଞ୍ଚି କରିବୁ ଅବା ମରିବାର ସିଦ୍ଧାନ୍ତ ନେଇ ପାଗଳ ଭଳି ଆଗେଇ ଆସୁଛନ୍ତି । ସେମାନେ ଏହି ମୁଷ୍ଟିମେୟ ଲୋକଙ୍କୁ ଜଳେଇ ପାଉଁଶ କରିଦେବେ ତା' ପରେ ମୋର

ଝିଅମାନଙ୍କ ସହିତ ଜ୍ଞାନରୂପି ଯୌତୁକ ଯିବ—ଏବଂ ତାହାହିଁ ସବୁଠାରୁ ମୂଲ୍ୟବାନ୍ ହେବ । ସ୍ୱେର ଶଳା ବଦମାସ୍ । ମୋର ଦାରିଦ୍ର୍ୟକୁ ଉପହାସ କରୁଛନ୍ତି ।”

ଉତ୍ତେଜନାବଶତଃ ହୁଁକାର ଦେଇ ମହିପାଲ ଖଟରୁ ଓହ୍ଲାଇପଡ଼ି ଘରେ ଟହଲ ଦେବାକୁ ଲାଗିଲା ।

କଲ୍ୟାଣୀ ତା କଥା ନ ବୁଝି ମଧ୍ୟ ତା କଥାର ଆବେଗରେ ନରମି ଗଲା । କେବଳ ଗରିବ ଏବଂ ପଇସାର ଅଭାବରେ ଯୁଝୁଥିବାରୁ ସେ ମଧ୍ୟ ବଡ଼ଲୋକଙ୍କୁ ଘୃଣା କରୁଥିଲା । ସେ ଜାଣିଥିଲା ଏବଂ ଅନୁଭବ ମଧ୍ୟ କରୁଥିଲା ଯେ ଆଜିକାଲି ଦୁନିଆରେ । ସାଧାସିଧା ଓ ସରଳ ବିଶ୍ୱାସୀଙ୍କର ମରଣ ଅନିବାର୍ଯ୍ୟ, ବେଇମାନଙ୍କ ଉନ୍ନତି । କିନ୍ତୁ କିପରି ଏମାନେ ସବୁ ବଦଳିବେ ? ସବୁବେଳେତ ଏହା ହୋଇ ଆସୁଛି । ଭଗବାନଙ୍କର ମଧ୍ୟ ଏହା ଇଚ୍ଛା ।

ପୁଣି ତାହାର ନିଜ ସ୍ୱାମୀ ପ୍ରତି ଦୟା ହେଲା । ବିଚରା ମର୍ମାହତ ହୋଇ ଯାଉଛନ୍ତି । ଏତେ କଷ୍ଟ କରି ମଧ୍ୟ ତାଙ୍କୁ ସୁଖ ମିଳୁନାହିଁ । ମସ୍ତିଷ୍କ ପରିଶ୍ରମ କରି ମଧ୍ୟ ବିଚରାଙ୍କୁ ଟୋପାଏ ଘିଅ ମିଳୁନାହିଁ, କେତେ ଝଡ଼ିଯାଇଛନ୍ତି । ମାନସିକ ପରିସ୍ଥିତି ଅଡୁଆ ହୋଇ ଗୋଟିଏ ମିନିଟ ସମସ୍ତ ବ୍ରହ୍ମାଙ୍କ ଏକକଳ୍ପ ସମସ୍ତ ପରି ମନେ ହୁଏ । ଏହାର ଦୁଇଗୁଣ ସମସ୍ତ ସାରା ଘରେ ନୀରବତା ବିରାଜମାନ କଲା, କେବଳ ମହିପାଲର ପାଦଶବ୍ଦ ହିଁ ଶୁଣା ଯାଉଥିଲା ଯାହାକି ଏ ନୀରବତାକୁ ଆହୁରି ଗମ୍ଭୀର କରୁଥିଲା ।

ଆସ୍ତେ ଆସ୍ତେ କଲ୍ୟାଣୀ ସାମନାରେ ଠିଆ ହୋଇ ମହିପାଲ କହିଲା— ଦେଖ, ମୁଁ ଠିକ୍ କରି ନେଇଛି ଯେ ଶିବଚରଣ ଦୁବେର ପୁଅ ସହିତ ପକ୍କା କରିଦେବି । ତାଙ୍କ ବିସ୍ତର ଏବଂ କାମ ଦୁଇଟି ଖୁବ୍ ଭଲ, ତାଙ୍କର ପୁଅ ମଧ୍ୟ ଖୁବ୍ ମାର୍ଜିତ, ଏହିବର୍ଷ ଇଞ୍ଜିନିୟରିଂ ପାସ କରିବ । କିଣ ବୁଝିଲ ?

ମହିପାଲର ରାଗ ଦେଖି ମଧ୍ୟ କଲ୍ୟାଣୀ ଆସ୍ତେକରି କହିଲା—ଶିବଚରଣ ତ ନୀଚ ଦୁବେ ବ୍ରାହ୍ମଣ ଆମେ ନୀଚ ବ୍ରାହ୍ମଣ ଘରେ କରିବୁ ନାହିଁ ।

କାନ୍ୟକୁବ୍ଜ ବ୍ରାହ୍ମଣ ସମାଜରେ ମଧ୍ୟ ଅନ୍ୟ ସମାଜ ଭଳି ଅନେକ ଉପଜାତି ଅଛି । ଏହି ଉପଜାତିଗୁଡ଼ିକ ଅନେକ ଗୁଡ଼ିଏ ଗୋତ୍ରରେ ବଣ୍ଟାଯାଇଛି ଏବଂ ଗୋତ୍ର ଅନେକ କୁଳରେ ବାଣ୍ଟି ଦିଆଯାଇଛି । କୁଳ ପ୍ରଧାନତଃ ତିନି ଭାଗରେ ବିଭକ୍ତ—ଷଟକୁଳ ମଧ୍ୟମ ଏବଂ ଧାକର । ଷଟକୁଳବାଲା ନିଜକୁ ସର୍ବୋଚ୍ଚ ମାନନ୍ତି

ଏବଂ ଧୀବରମାନଙ୍କୁ ( ନିଜ ସମାଜରେ ) ହୀନ ଦୃଷ୍ଟିରେ ଦେଖନ୍ତି । ବାପ୍ପ ନାମରେ ପ୍ରସିଦ୍ଧ ପୂର୍ବଜଙ୍କ କୂଳରେ କୋଡ଼ିଏ ଗୁଣ "ମର୍ଯ୍ୟାଦା" ନେଇ ଜନ୍ମ ହୋଇଥିବା ମହୀପାଳ ଶୁଳ୍କ ଷଟ୍‌କୁଳର ଥିଲେ । ତାଙ୍କ ଗୃହିଣୀଙ୍କର ପିତୃକୁଳ ମଧ୍ୟ ଛଚାକୂଳର । ସେ କୋଡ଼ିଏ ବିଶ୍ୱା ମରକାବାହାଡ଼ି ମନ୍ଦି ଗ୍ରାମର ମିଶ୍ର ।

ମହୀପାଲ ଡେଇଁପଡ଼ି କହିଲ "ତାହା ହେଲେ ଖୋଜ ଆଣ୍ଟନା ଲକ୍ଷ୍ନୌର ବାଜପେଇର ପୁଅ, ଯିଏ ସତ୍ୟର ସମର୍ଥକ ହେବ—ଯୌତୁକ ମାଗିବ ନାହିଁ ।"

ତାହାହେଲେ କଣ ଶିବଚରଣ ଯୌତୁକ ନବନାହିଁ । "ନାହିଁ । ଶିବଚରଣ ଭଲ ଲୋକ । ମୁଁ ତାଙ୍କୁ ଏବଂ ତାହାର ଚନ୍ଦ୍ରାଧାରକୁ ପରଖ କରି ସାରିଛି ।"

ଦୀର୍ଘ ନିଶ୍ୱାସ ପକେଇ କଲ୍ୟାଣି କହିଲ— ଦୁନିଆ କଣ କହିବ ? ଆଜି ଯଦି ସକୁନ୍ତଲାର ବାପା ବଞ୍ଚିଥାଆନ୍ତେ ତାହାହେଲେ, ମନ୍ଦିଗାଁର ମିଶ୍ରଙ୍କ ଝିଅର ଧିକର—ବନର ଘରେ ପ୍ରସ୍ତାବ ପଡ଼ିଥାନ୍ତା !

"ତାହାହେଲେ ଆଣ, ବାହାର କର ପନ୍ଦର କୋଡ଼ିଏ ହଜାର ଟଙ୍କା । ଏହି ଲୋକମାନେ ଝିଅ—ପୁଅର ବିବାହ ଖାଲି କରନ୍ତିନାହିଁ, ଲକ୍ଷ୍ମୀ ଏବଂ ଅହଂକାରକୁ ହାତଗଣ୍ଠି ପକାନ୍ତି । ନିଚ, ଶ୍ରେଷ୍ଠଲୋକ ସେହି—ସେହି ଛଓ୍ୟାଗ୍ରେ— କୁଆଡ଼ର ବଡ଼ ଲେଖକ, ବିଗ୍ଧରକ, କଲେଜର ପ୍ରିନସିପାଲ୍, କନ୍ଦ୍ର ଜନ୍ମପତ୍ର ମାଗିବାକୁ ଯାଅ ତାହାହେଲେ ନଗଦ ପଚଶ ହଜାର ଟଙ୍କା ମାଗିବ । ଅନ୍ୟକଥା ନିଜ ଶ୍ରଦ୍ଧା ଓ ସମ୍ମାନକୁ ଦେଖି । —ଏହିଲୋକ ପୁଣି ସଭ୍ୟ, ଶିକ୍ଷିତ ? ଛିଃ ଛିଃ ।"

ମହୀପାଲର ଗୋଡ଼ରେ ପୁଣି ତେଜ ଆସିଗଲ୍ଲ । ଅଳ୍ପ ଜାଗାରେ ମଧ୍ୟ ଯଥା ସମ୍ଭବ ପାଇଚ୍ଚର କରୁଥିଲ । ପୁଣି ଆସି କଲ୍ୟାଣିର ଚୌକି ପାଖରେ ରହିଯାଇ ତା' କାନ୍ଧକୁ ଧରି ଚଢ଼ା ଗଳାରେ କହିଲ—"କାନ ଖୋଲି ଶୁଣ, ଶକୁନ୍ତଲାର ବିବାହ ଶିବଚରଣ ଦୁର୍ବେର ପୁଅ ସହିତ ନିଶ୍ଚୟ କରିବ ।" ଏବଂ ଜାତକ ମିଳେଇବ ନାହିଁ । ଏବଂ ଯଦି ବେଶୀ କଥା କହିବ ତାହାହେଲେ ତାର ବିବାହ ଅନ୍ୟ ଜାତି ସହିତ କରେଇଦେବ । ମୁ ଜାତିପାତି ମାନେନାହିଁ । ମୋର ଏମାନଙ୍କ ପ୍ରତି ଘୃଣା ଅଛି— ଖୁବ୍ ଘୃଣା । ଶୁଣିଲ ? ଶୁଣିଲକି ନାହିଁ ?"

କଲ୍ୟାଣି ଉତ୍ତର ଦେବାକୁ ଡରୁଥିଲ । ସ୍ୱାମୀଙ୍କୁ ଏହି ପ୍ରକାର ଉତ୍ତେଜିତ ଦେଖି ସେ ଶୀଘ୍ର ଠିକ୍‌କରି କଥାର ଉତ୍ତର ଦେଲା । 'ତୁମର ଝିଅଁଙ୍କର ବିବାହ ତୁମର ଯେପରି ଇଚ୍ଛା ସେପରି କରିପାରିବ ମାତ୍ର ଶକୁନ୍ତଲା ପରର ଝିଅ । ତା ବାପ ବଞ୍ଚିଥିଲେ ଏହି ପରାମର୍ଶ ତାଙ୍କ ସହିତ କରି ଧିକରବନ କି—

ପୁଣି ତମେ ଧାନ୍ଦର ମାନଙ୍କୁ ଶ୍ରେଷ୍ଠ କରୁଛ ? ମୁଁ କହୁଛି କେହି ଶ୍ରେଷ୍ଠ ବଡ଼ ନାହାନ୍ତି । ହେଉ ବା ନ ହେଉ । ମୁଁ ବିଷ ଖାଇଦେବି ଯଦି ଶକୁନ୍ତଲାର ବିବାହ ଏପରି ସେପରି କୂଳରେ କର ।

"କିନ୍ତୁ ଟଙ୍କା କେଉଁଠୁ ଆଣିବ ?"

"ତୁମେ କଣ ଏକୁଟିଆ ଘଠକୂଳ ବାଲା ଗରିବ ଅଛ ? ଅନେକ ଗ୍ରନ୍ଥ ପିଟୁଛନ୍ତି, କିନ୍ତୁ କାହାର କାମ କେବେ ଅଟକୁନାହିଁ ଗରିବ ହେଲେ କଣ ହେଲା ।"

ଏହି ଗ୍ରନ୍ଥ ପଟିଲବାଲର ଦୁନିଆ ହିଁ ଅସଲ ଦୁନିଆଁ ଏବଂ ସେ ବର୍ତ୍ତମାନ ଶ୍ରେଷ୍ଠା ହୋଇ ପଡ଼ିଛି । ଜାଣ ଲୋକେ ବିଶ୍ୱଦର କିପରି କରନ୍ତି ? ଜୀବନର ମଙ୍ଗଳ ସଂସ୍କାର ଏବଂ ଉତ୍ସବ ଲୋକମାନେ କିପରି ମନାନ୍ତି ? କରଜକରି । ନିଜକୁ ଚିନ୍ତା, ଅପମାନ ଏବଂ ଅଶ୍ରୁରେ ସଂପୂର୍ଣ୍ଣ ରୂପେ ବୁଡ଼ାଇ ରଖି । ଏତେ ଚିନ୍ତା ଭିତରେ କୌଣସି ସୁଧଖୋର ମହାଜନର ଦାଉ ସମ୍ଭାଳିବାର ଶକ୍ତି କିମ୍ବା ସାମର୍ଥ୍ୟ ମୋ ଭିତରେ ନାହିଁ । ମୁଁ ଏହା କେବେ କରିପାରିବି ନାହିଁ ।

କଲ୍ୟାଣୀ ସ୍ୱାମୀର ବ୍ୟଥାରେ ବ୍ୟଥିତ ହେଲା, ସଙ୍ଗେ ସଙ୍ଗେ ତାର ନାସ୍ତିକ ମାନଙ୍କପର ଯୁକ୍ତିରେ ବିରକ୍ତ ମଧ୍ୟ ହେଲା । ମହିପାଲର ସବୁ ପ୍ରକାର ଖିଆଲକୁ ସେ ବୁଝିପାରୁଥିଲା । ସେତେବେଳେ ସେ ତା' ଉପରେ ଖୁବ୍ ରାଗି ଯାଉଥିଲା, ତାର ଅପମାନ କରୁଥିଲା, ସେତେବେଳେ ତାକୁ ବିଶେଷ ଅସୁବିଧା ଅନୁଭବ କରୁନଥିଲା । ପ୍ରତ୍ୟେକ ଘରେ ସବୁବେଳେ ପୁରୁଷ ସ୍ତ୍ରୀକୁ ଶାସନ କରି ଆସୁଛି, ଏଇଟା ଯେପରି ସଂସାରର ଏକ ନିୟମ । ଏହି ବାତାବରଣରେ ଧନି ଗରିବ ମଧ୍ୟବିତ୍ତ ପ୍ରକାରର— ସମସ୍ତଙ୍କ ଘର ଏହା ଅନ୍ତର୍ଭୁକ୍ତ । ମହିପାଳ ଚରିତହୀନ ଅଟେ, କଲ୍ୟାଣି ତାର ଏହି ରୂପକୁ ମଧ୍ୟ ବୁଝିପାରିଛି । ସେ ବଡ଼ ବଡ଼ ରକ୍ଷଣଶୀଳ ପରିବାରର ପୁରୁଷଙ୍କୁ ମଦ୍ୟପ, ବ୍ୟଭିଚାରୀ ଏବଂ ସବୁ ପ୍ରକାରରେ ବିକୃତ ରୁଚିର ଦେଖିଛି ଓ ଶୁଣିଛି । କିନ୍ତୁ ମହିପାଲର ଏ ଧରଣର କଥା ସେ କେବେହେଲେ ବରଦାସ୍ତ କରିପାରିବ ନାହିଁ । ନିଜର ଚବିଶ ବର୍ଷର ବୈବାହିକ ଜୀବନରେ ନିଜ ସ୍ୱାମୀର ଜୀବନ ଦର୍ଶନ ଓ ଯୁକ୍ତିକୁ ସେ କେବେ ଖୋଲା ମନରେ ଗ୍ରହଣ କରି ପାରିନାହିଁ । ମନରେ ବର୍ଷେହେଲା ଆଶଙ୍କା ରହିଛି, ତା ସ୍ୱାମୀର ଏବଂ ବିଧ ନାସ୍ତିକ ତଥା ଅଧାର୍ମିକ କଥାର ପ୍ରଭାବ ଯୋଗୁଁ ଲୋକେ କଣ ତା' ସ୍ୱାମୀକୁ ସମ୍ମାନ ଦେଉଛନ୍ତି । ଏହି ବିଷୟରକୁ ଲେଖିଲେ କଣ ତାଙ୍କୁ ବଡ଼ ଲେଖକ ବୋଲି କୁହାଯିବ ? ଏତେ ବର୍ଷ ହେଲା ଇଏ ଏହିପରି କଥା କହୁଛନ୍ତି ଏବଂ ଲେଖୁଛନ୍ତି, ଛପାଉଛନ୍ତି ଏବଂ ସମାଜ ତାଙ୍କୁ ମାନ ସମ୍ମାନ ଦେଉଛି, ତଥାପି ସଂସାର ନିଜର ସମାତନ ରୀତିରେ ଚାଲୁଛି । ତାଙ୍କ କଥାକୁ କିଏ

ଯୁଗର ମତବାଦୀ ସମର୍ଥନ କରିବେ, ସେଥିରେ କିଛି ଭୟ କରିବାରେ କାରଣ ନାହିଁ । ଦୁନିଆରେ କୁଳ ମର୍ଯ୍ୟାଦା, ଧର୍ମ-କର୍ମ ରୀତି-ନୀତି ଏହିସବୁ ଭଗବାନଙ୍କ ଦ୍ଵାରା ତିଆରି ହୋଇଥିବା କାରଖାନା, କପରି ଲୋପ ପାଇଯିବ । ଦୁନିଆ ବର୍ତ୍ତମାନ ପର୍ଯ୍ୟନ୍ତ ଯେଉଁ ଢଙ୍ଗରେ ଚାଲିଆସିଛି ସେହିପରି ଚାଲିବ । ସମସ୍ତେ କରଜ ନେଇ ନାନା ଉପାୟ କରି ନିଜ ଝିଅ ପୁଅଙ୍କୁ ବିବାହ ଦେଉଛନ୍ତି । ଏହା ଜଣାଶୁଣା କଥା ।

କଲ୍ୟାଣି ଚଉକି ଉପରେ ଦକ୍ଷିଣ ପାଦ ଉଠାଇ ରଖିଲି ଏବଂ ଚଉକି ବାଡ଼ ଉପରକୁ ହାତ ଟେକି ଆଙ୍ଗୁଠି ଫୁଟାଇ ଫୁଟାଇ ଚିତ୍କାର କହିଲି···କରଜକର ବା ଯେ କୌଣସି ଉପାୟ କର କିନ୍ତୁ ଶକୁନ୍ତଳା ଆମର ଷଟ୍‌କୁଳରେ ଯିବ । ତୁମେ ପୁଅ ଝିଅଙ୍କର ବିବାହ ଚାହିଁଲେ ମେହେନ୍ତରର ଘରେ କରିପାର, ଚାହିଁଲେ ଚମାର ସଙ୍ଗେ ମୁଁ କିଛି କହିବି ନାହିଁ—ମୁ ଗଙ୍ଗା କୁଳକୁ ଚାଲିଯିବି କିନ୍ତୁ ଶ୍ରେଷ୍ଠ ନଣନ୍ଦଙ୍କ ଝିଅର ବିବାହ ସନାତନ ଧର୍ମରେ କରିବା ଦରକାର, ଇଚ୍ଛାହେଲେ ଏ କାନରେ ଶୁଣି ସେ କାନରେ ବାହାର କରିଦିଅ । ଏହା କହି କଲ୍ୟାଣି ଯିବା ପାଇଁ ଠିଆହେଲା ।

ମହିପାଲ ଶକୁନ୍ତଳାର ବିବାହ, ଯୌତୁକ ଏବଂ ସ୍ତ୍ରୀର ଜିଦ ସହିତ ନିଜ ମନର ଅସ୍ଥିର ଭାବ ଚିନ୍ତାରେ ସଙ୍କୁଚିତ ହୋଇଯାଇଛି । ସ୍ତ୍ରୀର ଚଉକି ପାଖରେ ଠିଆହୋଇ ସେ ଚିନ୍ତାକରିବାକୁ ଲାଗିଲା । ଏହି ସଂସାରରେ ସ୍ତ୍ରୀ ଲୋକ ମଧ୍ୟ କେତେ ମଜାର ଜିନିଷ । ଇତିହାସର ଆଦିମକାଳରୁ ସ୍ତ୍ରୀ ଲୋକହିଁ ପୁରୁଷ ପାଇଁ ସବୁଠାରୁ ବଡ଼ ସମସ୍ୟା ହୋଇ ରହିଆସିଛି । ଏହି ପୃଥିବୀରେ ନାରୀର ଗୋଟିଏ ଅଜବ ସାମାଜିକ ସ୍ଥିତି ରହିଛି । ଅନ୍ୟ ଦେଶଠାରୁ ଆମ ଦେଶରେ ଏହି ବିଚିତ୍ରତା ଆହୁରି ମଧ୍ୟ ସ୍ପଷ୍ଟହୋଇ ଉଠିଛି । ସାଧାରଣତଃ ନାରୀ ଏହି ସମୟରେ ଆମ୍ଭମାନଙ୍କ ଘରେ, ମର୍ଯ୍ୟାଦା ଶୂନ୍ୟ ଅସମ୍ମାନ ଜନକ ଜୀବନ ବିତାଉଛି । ଶ୍ରେଷ୍ଠଲୋକଙ୍କ କଥାତ ଛାଡ଼ ବଡ଼ ବଡ଼ ସଭ୍ୟ ଶୁଶିକ୍ଷିତ ଏବଂ ପଣ୍ଡିତଙ୍କ ଘରେ ମଧ୍ୟ ସ୍ତ୍ରୀ ଉପରେ ଦମନଲୀଳା ଚାଲିଛି, ନାନା ରୂପରେ ତାଙ୍କର ଅପମାନ ହେଉଛି । ଆମେ ଜାଣୁ ଯେ ସ୍ତ୍ରୀ ଜାତିର କର୍ତ୍ତବ୍ୟ ସମସ୍ତଙ୍କ ସେବା କରିବା ଏବଂ ପୁରୁଷର ଭୋଗର ବସ୍ତୁ ହେବାଛଡ଼ା ଆଉ କିଛି ନୁହେଁ । ହଁ, ତାହାର ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାମ ହେଲା ସେ ସନ୍ତାନ ସମ୍ଭବ କରିବା ଯନ୍ତ୍ର । ସନ୍ତାନଙ୍କୁ ଲାଳନ ପାଳନ କରିବା ପାଇଁ କଷ୍ଟ ଦରକାର; ତେଣୁ ତାହାର ଉତ୍ପାଦକର ମଧ୍ୟ ଗୁରୁତ୍ୱ ଅଛି—କିନ୍ତୁ ଏତେ ଅସମ୍ମାନ—ଅମାନୁଷିକ ବ୍ୟବହାର କରି ମଧ୍ୟ ପୁରୁଷ ପାଇଁ ନାରୀଠାରୁ ବଡ଼ ଆଉ କୌଣସି ବସ୍ତୁ ନାହିଁ । ବର୍ତ୍ତମାନ ପୁଙ୍କା ସମସ୍ତେ ଜାଣନ୍ତି ଯେ ନାରୀ ସମାଜର ଇଜ୍ଜତ—ପୁରୁଷ ସମାଜ ନିଶ୍ଚିନ୍ତ ରୂପରେ ଏହା ଜାଣେ ଯେ ନାରୀ ବ୍ୟତୀତ ପୁରୁଷ ଅସମ୍ପୂର୍ଣ୍ଣ ।

ଏହି ବିରୋଧୀ ଭାବ ଦ୍ୱାରା ଆମ ସମାଜର ମୂଳଦୁଆ ପଡ଼ିଥିବାରୁ ତାହା ବଙ୍କା ହୋଇଯାଇଛି । ଏବଂ ଏହି ବଙ୍କା ମୂଳଦୁଆ ଉପରେ ହିଁ ମଣିଷ ସମାଜ ସ୍ୱତନ୍ତ୍ର ତିଆରି ହୋଇଛି ସଂସ୍କୃତି, ଧର୍ମକର୍ମ, ଜଗତର ବିଭିନ୍ନ ପ୍ରକାର ବ୍ୟବହାର ତିଆରି ହୋଇଛି । ତେବେ ପୁଣି କାହିଁକି ସବୁକିଛି ଓଲଟ ପାଲଟ ହେଉଛି ?

କଲ୍ୟାଣି ଉଠିବାରୁ ମହିପାଲ ପଚାରିଲା—"କଣ ? ଯାଉଛ ?"

ଏତେ ସରଳ ପ୍ରଶ୍ନ ଶୁଣି କଲ୍ୟାଣି ନିଜର ସବୁ ବିରୋଧ ରଖି ମଧ୍ୟ ମହିପାଲ ସହିତ ଆଖି ମିଳେଇ ନ ହସି ରହି ପାରିଲାନାହିଁ । କହିଲା ହଁ, ବର୍ତ୍ତମାନ ମୁଁ ଯାଉଛି । ତୁମେ ରାଗିଗଲେ ଗର୍ଜିବ ଯେ—ଶୋଇଥିବା ଲୋକ ଉଠିପଡ଼ିବ । ମହିପ ଲଙ୍କୁ ହସ ଲାଗିଲା ।

କଲ୍ୟାଣି ଅଭିମାନ କରି କହିଲା—" ତୁମର କଣ ? ତୁମେତ ନିଜେ ପ୍ରାଣି ତୃଣ କରି ଚାଲିଯାଉଛ, ସାଇ ପଡ଼ିଶାର ଲୋକେ ମୋତେ ଥଟ୍ଟା କରୁଛନ୍ତି—ସେ ପଣ୍ଡିତଙ୍କ ମୁଣ୍ଡରେ ମାନେ ପନ୍ଦର ଦିନରେ କେଉଁ ଭୂତ ଚଢ଼ିଛି ?

ମହିପାଲ ଅନେଇଲା, ହସି ମଧ୍ୟ ରାଗିଲା, ପଚାରିଲା "ତୁମର ପଡ଼ିଶା ମୋତେ ଥଟ୍ଟା କରୁଛନ୍ତି ?"

କଲ୍ୟାଣି ଜୋରରେ ହସି ଉଠିଲା, ପଣତରେ ଦାନ୍ତ ଲୁଚାଇ ପୁଣି କହିଲା—ମୋର ପଡ଼ିଶା କଣ, ତୁମର ପୁଅ-ଝିଅ ମଧ୍ୟ ତୁମ କଥାନେଇ ହସୁଛନ୍ତି । ମୋତେ କହୁଛନ୍ତି ଚୁପରହ ନ ହେଲେ ବାପା ଏଟମ୍ ବମ୍ ବର୍ଷଣ କରିବା ଆରମ୍ଭ କରିବେ ।

ମହିପାଲ ମଧ୍ୟ ଜୋରରେ ହସି ଉଠି କହିଲା—ସତରେ ମୁଁ ତୁମକୁ ଅନେକ କଷ୍ଟ ଦେଇଛି । କିନ୍ତୁ କଲ୍ୟାଣି ମୋର ଈଶ୍ୱର ଜାଣନ୍ତି, ତୁମକୁ କଷ୍ଟ ଦେଇ ମୁଁ ନିଜକୁ କଷ୍ଟ ଦିଏ । ତୁମଛଡ଼ା ମୋର ଗତିନାହିଁ—କଲ୍ୟାଣି ଛଡ଼ା ମହିପାଲ ନୁହେଁତ ।

କଲ୍ୟାଣି ନିଷ୍ଠା ଏବଂ ଶାନ୍ତିର ପ୍ରତିମୂର୍ତ୍ତି ହୋଇ ଠିଆହୋଇଛି ।

ସେତେବେଳେ ଉପରକୁ ଛୋଟ ଝିଅର କାନ୍ଦ ଶୁଭିଲା, କଲ୍ୟାଣି ଶୀଘ୍ର ଅଇଁଠା ବାସନ ଉଠାଇ ଉଠାଇ କହିଲା, କିଛି କାମ ହୋଇନି ତୁମେ ଉପରକୁ ଚାଲିଆସ, ମୁଁ ଜାଣେପରା ନଅଟା ବାଜିଲାଣି ।

ମହିପାଲ କହିଲା—"ବର୍ତ୍ତମାନ ନିଦ ଲାଗୁନି ତୁମେ ଯାଅ ।"

# ଏଗାର

'ବଡ଼ ଦିନ' ସକାଳ । କର୍ଣ୍ଣେଲ ସହିତ ସଜ୍ଜନ ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କ ଘରକୁ ଯାଇଥିଲା । ଦୁହେଁ ସେଠାରୁ ଫେରୁଥିଲେ । ସକାଳ ନଅଟାର ସୁନେଲି ଖରାରେ ଆକାଶ ସୁନେଲି ହୋଇ ଯାଇଥାଏ ମଧ୍ୟ ଗଳିଗୁଡ଼ିକର ସନ୍ତସନ୍ତିଆ ହୋଇ ରହିଥାଏ ।

କର୍ଣ୍ଣେଲ କହିଲେ—ଭାଇ, ଆଜି ଭୀଷଣ ଶୀତ । ବୋଧହୁଏ ଆଖପାଖରେ କେଉଁଠି ବରଫ ପଡ଼ୁଛି ।

ପାଗ ବିଷୟରେ କଥାବାର୍ତ୍ତାରୁ ସଜ୍ଜନର ଧ୍ୟାନ ଭଗ୍ନ ନ ହେବାରୁ କର୍ଣ୍ଣେଲ 'ଇନ୍‌ଟେଲେକ୍‌ଚୁଏଲ' କଥା ଆରମ୍ଭ କଲେ । ଯାହା କହ, ଜ୍ୟୋତିଷ ବିଦ୍ୟା ଭାରି ସତ । କିନ୍ତୁ କହିବାଲୋକ ଠିକ୍ ହେବା ଦରକାର । ମୁଁ ତ ଆଜି ଶାସ୍ତ୍ରୀଜୀଙ୍କ ଭକ୍ତ ହୋଇଗଲି ।

ଏଥିରେ ସନ୍ଦେହ ନାହିଁ, ଲୋକଟି ବେଶ ଉଦାର ଓ ଜ୍ଞାନୀ, ସଜ୍ଜନ କହିଲା, ଆଜି ମହର୍ଷି ବ୍ୟାସଙ୍କ ପାପ ପୁଣ୍ୟର ବ୍ୟାଖ୍ୟା ଶୁଣି ମୋର ସମସ୍ତ କନ୍‌ଫ୍ୟୁଜନ୍ ସ ଦୂର ହୋଇଗଲା । କେତେ ସିଧା କଥା ଯେ ପରୋପକାର କରିବା ହେଲା ପୁଣ୍ୟ ଏବଂ ଅନ୍ୟମାନଙ୍କୁ କଷ୍ଟ ଦେବାହିଁ ପାପ ।—ପ୍ରକୃତରେ ଭାରି ବଢ଼ିଆ ଲୋକ ।

ଆରେ, ଦୋକାନରୁ ଜ୍ୱେଲ୍ସ ସିବା କଥା, ଲବ୍‌ବୁ ସହିତ ଆମ୍ଭର ଭାଗବଣ୍ଟା କଥା, ମୋର ଓ୍ୱାଇଫ୍‌ଙ୍କ ଟେନ୍‌ସନ୍—ସବୁକିଛି ତ କହିଗଲା । ତେବେ ଜ୍ୟୋତିଷ ଉପରେ ବିଶ୍ୱାସ କରିବନି କିମିତି ? କର୍ଣ୍ଣେଲ ନିଜ ଦୃଷ୍ଟିରେ ଶାସ୍ତ୍ରୀଜୀଙ୍କ ମହିମାଗାନ କରୁଥିଲେ ।

ସଜ୍ଜନ ହସିଦେଇ ଧୀରେ କହିଲେ—'ମୋ ବିଷୟରେ ତ ସେ ବିଚାରି ଭବିଷ୍ୟବାଣୀ କଲେ ।'

କର୍ଣ୍ଣେଲ କାନ୍ଧରେ ତାର କାନ୍ଧକୁ ଧକା ଦେଇ ହସିଲା ଆଉ କହିଲା—'ବିଚାରି କଣରେ ଭାଇ, ତୁମର କେବଳ ବଦନାମ ନୁହେଁ, ସର୍ବନାଶ ହେବା କଥା ତୁମ ଦୁଇଜଣଙ୍କର । ମହିପାଲ ଏବଂ ତୁମର ।

ତେବେ ମୋର ଅପମାନରେ ଆପଣ ଖୁସିହେବେ ? ଆଉ ଆପଣ ଆମ ଦୁହିଁଙ୍କର ଘନିଷ୍ଠ ମିତ୍ର । କ'ଣ ?'

'ବନ୍ଧୁ ହେଲିବୋଲି କଣ ଖରାପ କାମରେ ବି ସାଥୀ ହେବ ?' କର୍ଣ୍ଣେଲ ଉତ୍ତର ଦେଲେ ।

"କିନ୍ତୁ ସେତ କହିନାହାନ୍ତି ଯେ କୌଣସି ଖରାପ କାମ ଯୋଗୁଁ ମୋର ନିନ୍ଦା ହେବ ।"

'ହଁ, ବରଂ କହିଲେ ଯେ ନିନ୍ଦାଟାକୁ ସହିଗଲେ ତୁମର ଖୁବ୍ ସୁନାମ ହେବ ।'

ହାଲୁକା ନିଶ୍ୱାସ ଛାଡ଼ି ପକେଟରୁ ସିଗାରେଟ କେସ୍ ବାହାର କରୁ କରୁ ସଜ୍ଜନ କହିଲେ—'କବି ନରେନ୍ଦ୍ରଙ୍କର କଣ ଗୋଟାଏ କବିତା ଅଛି—' ମୁଦ୍ରିତ କଳିକା ସମ ଅବରୁଦ୍ଧ ତୁମ ବାଷ୍ପ ।

କର୍ଣ୍ଣେଲ ଆଡ଼କୁ ସିଗାରେଟ୍ କେସଟିକୁ ଦେଖାଇ ନିଜେ ଖଣ୍ଡେ ସିଗାରେଟ ବାହାର କରି ଏବଂ ତାକୁ ଓଠରେ ଚିପିଧରି କହିଲା—'ଏଥିପାଇଁ ମୁଁ କୋଷ୍ଟି ଦେଖାଇବାକୁ ପସନ୍ଦ କରେନାହିଁ । ଭବିଷ୍ୟତକୁ ନ ଜାଣିବା ଭଲ । ଆଗାମୀ କାଲିର ଚିନ୍ତାରେ ଆମର ଆଜି ଫିକା ପଡ଼ିଯାଏ ।'

ସିଗାରେଟ୍, ଲଗାଇବାକୁ ସେମାନେ ଗୋଟିଏ ଜାଗାରେ ରହିଲେ । ସିଗାରେଟ୍ ଲଇଟ୍‌ର ପକେଟରେ ରଖି ସଜ୍ଜନ ଓ କର୍ଣ୍ଣେଲ ଆଗକୁ ଯିବାକୁ ଉଦ୍ୟତ ହେବା ସମୟରେ ମଳିମୁଣ୍ଡିଆ ଲୋକଆସି ପଚାରିଲା' ଆଜ୍ଞା, ଏଇ ଗଳିରେ ଡାକ୍ତର ବାବୁଙ୍କ ଦୋକାନ କେଉଁଠି ?

କର୍ଣ୍ଣେଲ ପଚାରିଲା—'କେଉଁ ଡାକ୍ତର ?'

'ଆଜ୍ଞା—ସିଏ ଦନ୍ତ ବିକନ୍ତି ।'

ଏହା ଶୁଣି ସଜ୍ଜନ ଓ କର୍ଣ୍ଣେଲ ଦୁହେଁ ଚମକିପଡ଼ିଲେ । କର୍ଣ୍ଣେଲଙ୍କୁ-ଏ କଥାରେ ବିରକ୍ତି ଆସିଲା ଯେ ଜଣେ ସାଧାରଣ ଲୋକ ତା' ସାଙ୍ଗରେ ଥଟ୍ଟା ଖେଳୁଛି । କହିଲା—'ବଦ୍‌ମାସ୍, ଥଟ୍ଟା କରୁଛୁ । ନା ।'

'ନା ଆଜ୍ଞା ।' ପଚାରିବା ଲୋକଟି ଦି କାନ ଧରି ହାତ ଯୋଡ଼ି କହିଲା—'ମୁଁ ତ ନିଜେ ବଡ଼ ହଇରାଣରେ ପଡ଼ିଲି । କିନ୍ତୁ ଆମ ମାଲିକ କହିଲେ ଯେ ଡାକ୍ତରଙ୍କ ଦୋକାନରୁ ଦନ୍ତ ଆଣ । ମୋରକଣ ଦୋଷ—'

'ତୁମ ମାଲିକ ବଡ଼ ବୋକା । ଡାକ୍ତର ଦୋକାନରେ କେବେ ଦୁଧ, ଦହି ମିଳେ ?' କର୍ଣ୍ଣେଲ କହିଲା ଓ ଆଗକୁ ଚାଲିଲା ।

ଜଣେ ବଣିଆ ସେବାଟେ ଯିବାବେଳେ ଏକଥା ଶୁଣିପାରି କହିଲା—ଡାକ୍ତର ବୁଢ଼ାଆଙ୍କ କଥା ପଚାରୁଛ ? ସେଇ ବାଆଁପଟେ ତାର ଦୋକାନ ।'

ଚାକରଟି ଶୂନ୍ୟ ଦୃଷ୍ଟିରେ ଡାକ୍ତର ବୁଢ଼ାଆଙ୍କ ଦୋକାନ ଆଡ଼କୁ ଦେଖିବାକୁ ଚେଷ୍ଟାକଲା । ବଣିଆ କହିଲା—ଆବେ ସେଇ—ଗୁହାଳ ଦୋକାନ ପରେ ଯେଉଁ ମନୋହରୀ ଦୋକାନ ଦେଖାଯାଉନାହିଁ—ହଁ ଠିକ୍ ତାକୁ ଲାଗି—'

କର୍ଣ୍ଣେଲ ଏବଂ ସଜ୍ଜନ ଆଗକୁ ଚାଲିଲେ । କର୍ଣ୍ଣେଲ କହିଲେ– 'ଆଚ୍ଛା ମଜାତ । ବୁଢ଼ାଆଟାର ନାଆଁ କ'ଣ ଡାକ୍ତର ।'

ସଜ୍ଜନ କହିଲା—ଯଦି ଜଣେ ଔଷଧ ଦୋକାନୀର ନାଆଁ କର୍ଣ୍ଣେଲ ହୋଇପାରେ । ତେବେ—'

'ମୁଁ ଜାଣିଥିଲି ଯେ ତୁମେ ଏହା କହିବ ।' ଲଜ୍ଜରେ (ଅପ୍ରତିଭ) ହୋଇ କର୍ଣ୍ଣେଲ କହିଲେ ।

ଡାକ୍ତରନାମକ ବୁଢ଼ାଆକୁ ଦେଖିବାର କୌତୁକପୂର୍ଣ୍ଣ ଦୃଷ୍ଟିରେ ସଜ୍ଜନ ଗଳିର ଦୁଇପାଖ ଦୋକାନ ଗୁଡ଼ିକୁ ଅନାଇ ଅନାଇ ଚାଲିଲା । କୁକୁର, ଆଉ ଗାଈଙ୍କର ଏକ ପତଳା ଭିଡ଼ ମଧ୍ୟରେ ସାଇକଲ ଚଢ଼ାଳିର କଟିଙ୍ଗ ଦେଖାଇ କେତେପ୍ରକାର କଥାବାର୍ତ୍ତା ଏବଂ ସ୍ତ୍ରୀ ପୁରୁଷମାନଙ୍କ ଯିବା ଆସିବା ଦ୍ୱାରା ଗଳିଟିର ବଜାର ଭିଡ଼ ହୋଇଥାଏ । ଏଇ ଗଳିରେ ଶାସ୍ତ୍ରୀଜୀଙ୍କ ଗଳି ଅପେକ୍ଷା ଖରା ବେଶି ମାଡ଼ିଆସିଥାଏ । ବାଆଁ ପାଖ ଅଟାକଲର ମଜୁରିଆ ଉପରେ ଅଟା ଗୁଣ୍ଡ ପଡ଼ି ଧଳା ଦେଖାଯାଉଥାଏ । ଭାରି ହସ ଲାଗିଲା । ଡାହାଣପଟେ ଗୋଟିଏ ସଙ୍କୀର୍ଣ୍ଣ ଗଳି, ପୁଣି ଦରଜି ଦୋକାନର—ମେସିନ ଗୁଡ଼ିକର ଚକ୍‌ଚକ୍ ଶବ୍ଦ, ସେଠି ମେହେନ୍ଦୀକରା ଦାଢ଼ି ରଖିଥିବା ଖଲିଫା କବାଟକୁ ଆଉଜି ହୁକ୍କା ଚଳାଉଥିଲେ । ଦରଜି ଦୋକାନପରେ ମାଟି ତିଆରି ହୁକ୍କା ଦୋକାନ, ତା'ପରେ ମନୋହରୀ ଦୋକାନ, କବାରୀ ଦୋକାନ ଇତ୍ୟାଦି । ବାଆଁପାଖେ ପରେ ପାଣି କଳ ପରେ ବହୁତ ବଡ଼ ଗୁହାଳ ଦୋକାନ । ଏହାପରେ ରାଜ ବୈଦ୍ୟ ପଦବୀ ଯୁକ୍ତ ସାଇନବୋର୍ଡ ତଳେ ପଗଡ଼ିଧାରୀ ବୈଦ୍ୟରାଜ ତାଙ୍କର ଦୋକାନରେ ଏକା ବସିଥିବାର ଦେଖାଗଲେ । ପୁଣି ପାନ ଦୋକାନରେ ଦାଢ଼ୀବାଲା, ଧୋତି ପିନ୍ଧା ଜଣେ ବୁଢ଼ା ପାନ ଭାଙ୍ଗୁଥିଲା । ତାପରେ

ଗୁଡ଼ିଆଙ୍କ ଶିରୋମଣି ଡାକ୍ତର ଦୋକାନ ଆସିଲା । ଦୋକାନଟି ବଡ଼, ଗଦି ଉପରେ ଗଣେଶଙ୍କ ପରି ରଙ୍ଗରେ ନିଗ୍ରୋଙ୍କଠାରୁ ମଧ୍ୟ ଚାରିଗୁଣ ବେଶି, କଳା ଉଲର କାନ ଟୋପିରେ ମୁହଁ ଢାଙ୍କି ଡାକ୍ତର ସାହେବ ଜିଲପି ଛାଣୁଥିଲେ । ତାଙ୍କୁ ଦେଖି ସଜ୍ଜନ ହସି ପକାଇଲା । କର୍ଣ୍ଣେଲକୁ କହିଲା—'ସ୍ୱା ପାଖରୁ ନିଶ୍ଚୟ କିଛି କିଣିଲେ ହୁଅନ୍ତା ଭାଇ, ଏ ମଣିଷ ନୁହେଁ ଯେ ଖାସା ଜାପାନୀ ତୋପର ଗୋଳା ।'

ପିତଳ ଜାଲି ଲଗା ଥାକରେ ମିଠେଇ ଥାଳି ସଜା ହୋଇଥାଏ । ଶିବ, ହନୁମାନ, ଗାନ୍ଧି ନେହରୁ, ନେତାଜୀ, ଶିବାଜୀ ଓ ରାଣାପ୍ରତାପଙ୍କ ଏମିତି କେତେ ଫଟୋ ଟଙ୍ଗାହୋଇଛି । ଶିବଙ୍କ ଚିତ୍ର ଉପରେ ଫୁଲହାର । ବାହାରେ ପିତଳ ଝିଞ୍ଜିର ଦେହରେ ଦୁଇଟା କଡ଼ା ଲଗିଥାଏ । ସେତେବେଳେ ଦୋକାନରେ ଭିଡ଼ ଖୁବ୍ ସାଧାରଣ । କର୍ଣ୍ଣେଲ କହିଲେ -- ଜିଲପି କିଣିବା ।'

କାନ ଟୋପିର ବାଟଦେଇ ଡାକ୍ତର ସାହେବଙ୍କ ଚେପ୍‌ଟା ନାକ, କଳା ଦାଗଭଳି ଦେଖାଯାଉଥିବା ଆଖି ଉପରେ ରୁପାଫ୍ରେମର ଚଶମା, କଣ୍ଢା ପାଚିଲା ଜଣ ଆଉ ସେଥିରେ ପାନପିକ ବୋହି ଯାଉଥିବା ମୋଟା ଓଠ ତାର ଦେଖାପଡ଼ୁଥିଲା । ପାଞ୍ଚ ଛଅଜଣ ଗ୍ରାହକ । କିନ୍ତୁ ଭାରି କୋଳାହଳ ଥିଲା । ଡାକ୍ତରଙ୍କ ହାତ ନ ଦିନରେ ଅଟେଇ କୋସ ଷ୍ଟୁଡ଼ରେ ଗୁଳିଥାଏ ଏବଂ ଯୌବନ ତାକ ଗାଢ଼ ହୋଇଥାଏ । ସଜ୍ଜନ ଜିଲପି, ଆଳୁଭଜା ଓ ଶିମ୍ବ ମଞ୍ଜି ପାଇଁ ଅର୍ଡର ଦେଲେ ।

ଗଳିର ଆରପାଖ ଘର ସାମନା ଚଉପାଢ଼ୀ ଉପରେ ଖଟ ପୋହୁଁ ପୋହୁଁ ଜଣେ ବୁଢ଼ା କ ହାକୁ କହୁଥାଏ—'ଆରେ ଯୌବନକୁ ଅବସ୍ଥାକୁ ସମସ୍ତେ ସମସ୍ତେ ମଜାରେ ଶଉକରେ କାଟିଦିଅନ୍ତି । ହେଲେ ବୁଢ଼ା ବେଳଟା କଟେଇବା ହେଉଛି ପ୍ରକୃତ ମରଦର କାମ । ଦାନ୍ତ ନାହିଁ, କାନକୁ ଶୁଭୁନାହିଁ, ଆଖିକୁ ଦେଖାଯାଉନାହିଁ, ହାତ ଗୋଡ଼ରେ ସବୁଠି ଦରଜ, ଏମିତି ଯେ ସଳା ବାପ-ମା ଚଉଦପୁରୁଷ ମନେ ପଡ଼ୁଛନ୍ତି । ଆଉ କେହି ପାଣିଟିକେ ଦେବାକୁ ନାହିଁ—ବୁଢ଼ା ବୟସଟା କଟେଇବା ଭାରିକଷ୍ଟ । ସମସ୍ତେ ଚଳିପାରିବେ ନାହିଁ ବାବୁ । ମୋର ବୟସହେଲା ତେସ୍ତାନବେ । ଭଗବାନଙ୍କ ପାଖରେ ମୋର ଆୟୁଷ ଦଣ୍ଡାଯାଇଛି । ଖୁଁ-ଖୁଁ-ଖୁଁ ।

ସଜ୍ଜନ ଶୁଣୁଥାଏ । ଅନଭ୍ୟାସରେ ତା' ମନ ଉପରେ ଏହି କଥାଗୁଡ଼ିକର ପ୍ରଭାବ ପଡ଼ୁଥାଏ । ଦିନେ ସେ ମଧ୍ୟ ବୁଢ଼ାହେବ । ହୁଏତ ଏମିତି ବୁଢ଼ା ହୋଇଯିବ । ସତରେ ଏଇ ବୁଢ଼ା ଏକ କଥା-କୁହା ବୁଢ଼ା ବୟସରେ ଦିନ କାଟିବା ବଡ଼ କଷ୍ଟ ।

'ଆରେ ବାବୁ ସେଦିନ ଛଅଣା ପଇସା ରବଡ଼ି ବାବଦର ପଇସା ଦେଲେନାହିଁ ।'

'ସ୍ୱାଙ୍କୁ କହୁଛ ?' ସଜ୍ଜନଆଡ଼କୁ ଇଙ୍ଗିତ କରି କର୍ଣ୍ଣେଲ ପଚାରିଲେ। ସଜ୍ଜନ ଚମକିପଡ଼ି ସେଆଡ଼େ ଚାହିଁ କହିଲା—ମୁଁ ? ମୁଁ ତ ଆପଣଙ୍କ ଦୋକାନକୁ ଆଗରୁ କେବେ ଆସିନାହିଁ।

'କଣ ହେଲା, ତୁମେପରା ନେଇଥିଲ ଚାବଡ଼ି। ଏଇ ପରଦିନ କଥା। ଭାବିବ ନାହିଁ ଯେ ଡାକ୍ତରର କିଛି ମନେ ରହେନାହିଁ। ହୁଁ।'

ଏଇ ଅପ୍ରତ୍ୟାଶିତ ଘଟଣାରେ ସଜ୍ଜନ ରାଗ ତମ ତମ ହୋଇଗଲା। ପାଖରେ ଆଖିରେ ସୁରମା ଲଗାଇ, ମୁହଁରେ ପାନ ପୁରାଇ, ତୁଲାର କାନ ଟୋପି ପିନ୍ଧି ଜଣେ ଗୋରା ରଙ୍ଗର ସେଠ 'ଭଦ୍ରଲୋକ' ଭଳି ଦେଖାଯାଉଥିବା ସଜ୍ଜନଙ୍କ ଚେହେରାରୁ ମନକଥା ଜାଣିପାରି ଡାକ୍ତରଙ୍କୁ ଶୁଣାଇଲେ—'ଡାକ୍ତର, ବୁଦ୍ଧି ଖସିଲାଣିକି ହୋ। କଉ ଲୋକ ଚିହ୍ନି ପାରୁନା, କି ? ଅଫିମ ନିଶାତ।'

ସଜ୍ଜନ ତାଙ୍କଆଡ଼କୁ ଚାହିଁ ନିଜର କୈଫିୟତ ଦେବାକୁ ଲାଗିଲା – 'ମୁଁ ଆଜି ପ୍ରଥମଥର ଏଠାକୁ ଆସିଛି।'

'ପହିଲାଥର, ଆରେ ସବୁଦିନତ ଆମ ଏଇଠୁ ଉଧାର ନେଇଯାଅ।'

କର୍ଣ୍ଣେଲ ହସି କହିଲେ—'ଆରେ ଭାଇ, ଆପଣଙ୍କୁ ଆଉ କାହାକୁ ସନ୍ଦେହ ହେଉଥିବ ଡାକ୍ତରବାବୁ। ସ୍ୱାଙ୍କ ନାଡ଼ୀରେ ଚାବଡ଼ି ନାହିଁ, ପୂଡ଼ିଙ୍ଗ ଅଛି। କ'ଣ ବୁଝିଲ ?'

ସୁକରଟି ଡାକ୍ତର ପାଖରେ ଗରମ ଜଳପି ଥାଳୀକୁ ରଖୁ ରଖୁ କହିଲା—କାହିଁକି ଟାଲି ଦେବାର ହାଲ କରୁଛ। ଇଏ ନୂଆଲୋକ।

ହାତ ଛୁଟକାଇ ଡାକ୍ତର ସୁକର ଉପରେ ଚଢ଼ିଯାଇ କହିଲା—'ବାଃ, ମୋତେ ମୁରଖ ବୋଲି ଚିହ୍ନାଉଛୁ ? ଇଏ ଖାମା ବାଲାର ପୁଅ ନୁହେଁ ?'

ସେଠଜୀ ହସି କହିଲେ—'ଆରେ ଡାକ୍ତର, ଇଟାରେ ଚଶମା ଲଗାଅ। ତୁମଭଳି ଅଫିମଖୋରଙ୍କ ପଥର ଚଶମାରେ କାମ ଚଳିବନି।'

ପୁଣି ହସି ହସି ସଜ୍ଜନ ଏବଂ କର୍ଣ୍ଣେଲକୁ କହିଲେ—'ସ୍ୱାଙ୍କର ପୁରୁଣା ସ୍ୱଭାବ ଏବାକୁ ଭାବିଲେ ଅଫିମ ନିଶାରେ କାହାକୁ କାମ ଓଜନ ହୁଅନ୍ତି କାହାକୁ ଦେଖି। ରାତିରେ ସ୍ୱାଙ୍କଠୁ କିଏ ଉଧାରନିଏ ସକାଳୁ ଆଉ ଇଏ କାହାରକୁ

ଛାଗଦା କରନ୍ତି । ସବୁଦିନ ଏଠି ନିକର ନିକର ଲାଗିଥାଏ । ଆରେ ଡାକ୍ତର, ତୁମ୍ଭଭଳି ଲୋକ ଏ ସହରରେ ବିରଳ ।

ଆଗକୁ ପାଦ ବଢ଼େଇ ସଜ୍ଜନ କର୍ଣ୍ଣେଲଙ୍କୁ କହିଲେ—'ମୋତେ ଏକ ଢଗରେ ଦୁଃଖ ଲାଗେ ଯେ ମୁଁ ଏତେବର୍ଷ ଧରି ଗୋଟିଏ ଭୁଲ ଦୁନିଆଁରେ ଜୀବନ ବିତେଇଦେଲି ।' ପ୍ରକୃତରେ 'କେରେକ୍ଟାରସ୍'ତ ଏହି ଗଳି—ଏହି ସାଙ୍ଗରେ ସବୁ କିସମର ଲୋକ ଭର୍ତ୍ତି ହୋଇଛନ୍ତି । ଜୀବନର ବିବିଧ ରୂପର ପ୍ରକାଶ ଏଇଠି ।

କର୍ଣ୍ଣେଲ ହସି କହିଲା—'ହଁ-ହଁ ମୋତେ ବେଶି ଆର୍ଟିଚିଷ୍ଟଗିରି ଦେଖାଇ ହୁଅନାହିଁ । ଶଳା ସବୁଯାକର ଗନ୍ଧିଆ ନର୍କକୁଣ୍ଡ ଏଇଠି । ବାବୁ ଖୋଜୁଛନ୍ତି କେରେକ୍ଟର ।'

ସଜ୍ଜନଙ୍କୁ କର୍ଣ୍ଣେଲ କଥା ବାଧିଲା । କିନ୍ତୁ କଥାଟା ସତ । ତାକୁ ପ୍ରତିବାଦ କରିବାକୁ ସଜ୍ଜନର ନଥିଲା । କିଛିବାଟ ଦୁହେଁ ଚାଲିଲେ । କର୍ଣ୍ଣେଲ କହିଲେ—କାଲଠୁଁ ମହିପାଳର ଦେଖାନାହିଁ । କାଲି କ'ଣ ମୋରତ ତା' ସହିତ ପରଦିନ ଖରାବେଳଠୁ ଦେଖା ସାକ୍ଷାତ ହୋଇନାହିଁ ।

'ପରଦିନ ରାତିରେ ଆମ ଘରକୁ ଆସିଥିଲେ । ବଡ଼ ବ୍ୟସ୍ତ ହେଉଥିଲେ ବାବୁ ଫେରିବାକୁ ।' ହଁ-ହଁ, ମୁଁ ବି ସେକଥା ଜାଣେ । 'ବଡ଼ଦିନର ଉତ୍ସବ କରୁଥିବେ ଶୁକ୍ଳଜୀ ମହାରାଜ । ତେଣୁ ସକାଳୁ ଡେରଯାଏଁ ଶୋଇଥିବେ ।' 'ଶୁଅନ୍ତୁ ହେ'—ସଜ୍ଜନ କହିଲା—'ମନୁଷ୍ୟର ବ୍ୟସ୍ତମନ ଯଦି କିଛିସମୟ ପାଇଁ ନିଦରେ ଶୋଇରହେ ତେବେ ଦୁନିଆର ଯାଏ ଆସେ କେତେ ? ବିଚାରିଟା ଭାରି କଷ୍ଟ ପାଉଛି ।'

ନିଜ ଗଳିକୁ ଆସି ଦେଖିଲେ ଚଉପାଢ଼ୀ ଉପରେ ଲୋକଙ୍କ ଭିଡ଼ । ଆଜି ମଙ୍ଗଳବାର ବୋଲି ବସନ୍ତଆମାଳି ଫୁଲ, ଚନ୍ଦନ ଧରି ବସିଛି । ସେଇଠି ପଣ୍ଡିତ ମହିପାଳ ଶୁକ୍ଳ ମଧ୍ୟ ଚକାପକାଇ ବସିଛନ୍ତି । ଗପ ଚାଲିଛି ବାବୁ ଛେଦୀଲାଲ ଏ ଦୁହିଙ୍କୁ ଦେଖି ପାଟିକଲେ—ଆସନ୍ତୁ-ଆସନ୍ତୁ—ଆପଣମାନଙ୍କୁ ଆମ୍ଭେମାନେ ଅପେକ୍ଷା କରୁଥିଲୁ ।

ସଜ୍ଜନ ସମସ୍ତଙ୍କୁ ନମସ୍କାର କଲା । କର୍ଣ୍ଣେଲ ହସି ହସି ବାବୁ ଗୋଲାପ-ଚନ୍ଦ୍ରଙ୍କ ଚଉକି ପଛରେ ଛିଡ଼ାହୋଇ ତାଙ୍କ ଟୋପି ଉପରେ ଗୋଟିଏ ଠଣାମାରି କହିଲା—'କୁହନ୍ତୁ ସୁପରଟେଣ୍ଡେଣ୍ଟ ବାବୁ, କମିତି ଚାଲିଛି ? ତମେ ଜାଣିଛ ସଜ୍ଜନ, ଗୋଲାପ ମୋର ଗାଳି ଦେବାରୁ ବନ୍ଧ ।

ଗୋପାଳଚନ୍ଦ୍ର କିଛି ଉତ୍ତର ଦେବା ପୂର୍ବରୁ ଲାଲା ମୁକୁନ୍ଦମଲ ହୁକ୍କା ଛାଡ଼ି କହିଲେ—'ଆରେ ଭାଇ ନଗୀନଚନ୍ଦ୍ର ।'

'ଆଜ୍ଞା, ସେଠ୍ ସାହେବ । 'କର୍ଣ୍ଣେଲ କହିଲେ ।

ଏକଥା ମଝିରେ ରାଧେଶ୍ୟାମବାବୁ ଛେଦାଲାଲଙ୍କୁ ଦୁଇଟି ଚୌକି ଆଣିବାକୁ କହିଲେ । ଛେଦାଲାଲ ନିଜ ଘରକୁ ଡାକପକାଇଲା ।

ସେଠଜୀ କର୍ଣ୍ଣେଲଙ୍କୁ ପଚାରିଲେ—'ବିଜୟଲକ୍ଷ୍ମୀ ପଣ୍ଡିତଙ୍କୁ ସ୍ୱାଗତ କରିବାକୁ କେମିତି ଗଲନାହିଁ ? ତୁମେତ ହେଇଛୋ କଂଗ୍ରେସର ବଡ଼ ଭକ୍ତ ।'

'ହଁ ବାବୁ, ପ୍ରଥମେ ଭାବିଥିଲି । ପୁଣି ଭାବିଲି ଜନସଂଘ ପଟରୁତ ଏମିତିଆ ନାମୀ ମାଇକିନାଟାଏ ଆସିବ ନାହିଁ । ତେଣୁ ଆମେ ଗଲେ ଆପଣଙ୍କୁ ଖରାପ ଲାଗିବ ।'

ସଜ୍ଜନ ମହାବୀରଜୀଙ୍କ ମଣ୍ଡପ ପାଖକୁ ଲାଗି ମହୀପାଳ ପାଖରେ ବସି ଯାଇଥାଏ । ମହୀପାଳ ତା କାନରେ କଣ କହିଲା । 'ହାତରେ କଣ ଅଛି ?'

'ଜାଲପି କାଲି ସଂଧ୍ୟାଟା ଶୀଲା ଘରେ କଟେଇଲ ? ସଜ୍ଜନ ଅତି ଧୀର ସ୍ୱରରେ ପଚାରିଲା ।

ମହୀପାଳ ହସି ହସି ମୁଣ୍ଡ ହଲାଇଲା । ସଜ୍ଜନ ମଧ୍ୟ ମୁରୁକି ହସିଲା । ସେତେବେଳେ ସେଠ ମୁକୁନ୍ଦଲାଲ କର୍ଣ୍ଣେଲର ଅଟାର ଉତ୍ତର ଦେଉଥିଲେ--'ଆରେ ଆମକୁ କାହିଁକି ଖରାପ ଲାଗିବ ଭାଇ, ଆମ ଜନସଂଘରେ ନଥାଉ ପଛକେ, ଆମ ଓ୍ୱାର୍ଡରେତ ଏଭଳି ମାଇପିଟାଏ ବାହାରିଛି । କମ୍ୟୁନିଷ୍ଟଙ୍କ ଭିତରେ । ଘର ଅନ୍ଧାର ହେଲାରେ—

ସଜ୍ଜନର କାନରେ ଏକଥା ବାଜିଲା । ସେଠ ମୁକୁନ୍ଦମଲ ଛେଦାଲାଲ ଆଡ଼କୁ ଚାହିଁ କହିଲେ—ଆରେ ଭାଇ, ସେ କାଗଜଟି କେଉଁଠି ଅଛି—ରହସ୍ୟ ଉଦ୍‌ଘାଟନ କାଗଜ ।

'କଣ କମ୍ୟୁନିଷ୍ଟଙ୍କ ପ୍ରଚାରପତ୍ର ବାହାରିଛି ନା କଣ ?' କର୍ଣ୍ଣେଲ ବ୍ୟଗ୍ରହୋଇ ପଚାରିଲେ ।

ଛେଦାଲାଲ ପକେଟରୁ ଖଣ୍ଡିଏ କାଗଜ ବାହାର କଲା । ରାଧେଶ୍ୟାମବାବୁ କହିଲେ—'ଆରେ ଶାଳଗ୍ରାମର ଏ ବଦମାସି । ଇଲେକ୍‌ସନ୍ ପାଇଁ ଦୋଷାକୁ ଛାଡ଼ି ନିର୍ଦ୍ଦୋଷ...'

'ଏ କଣ କହୁଛନ୍ତି ଆପଣ ?  ଆଜ୍ଞା ଗରିବ  ସ୍ତ୍ରୀ ଜଣକ ନିଜେ ଷ୍ଟେଟମେଣ୍ଟ ଦେଇଛି । କାଗଜଟାକୁ ଫିଟାଉ ଫିଟାଉ ଛେଦାଲାଲ କହିଲେ ।

'ଷ୍ଟେଟମେଣ୍ଟ, ସେ—ବେକାର—ବେକାର ।'

ଛେଦାଲାଲଙ୍କ ଚାକର ଦୁଇଟି ଫୋଲ୍ଡିଙ୍ଗ ଚଉକି ଆଣିଲା । ସେଠ ମୁକୁନ୍ଦଲାଲ କଥା ଭାଙ୍ଗି କହିଲେ—ଗୋଲାପଚନ୍ଦ୍ର ତୁମେ ପଢ଼ । ତୁମେ ଭଲ ଶୁଣାଇ ପାରିବ ।

ଗୋଲାପଚନ୍ଦ୍ର କହିଲେ—'ପଣ୍ଡିତଜୀଙ୍କୁ ଦିଅ । ସେ ଏତେବଡ଼ ଲେଖକ ଜଣେ । ମୁଁ କଣ ପଢ଼ିବି ?'

'ହଁ-ହଁ ମହୀପାଲ ପଢ଼ । ତୁମେ ପଢ଼ ।' ଚଉକି ଉପରେ ବସୁ ବସୁ ବ୍ୟଗ୍ର ସ୍ୱରରେ କର୍ଣ୍ଣେଲ କହିଲେ ।'

ସେଠ ମୁକୁନ୍ଦମଲ ନିଜ ଘର ଆଡ଼କୁ ମୁହଁକରି ପାଟିକରି ଉଠିଲେ—ଆରେ ଭଗଢଆ—ପାନ ଆଣିଲୁ । ହଁ ପଣ୍ଡିତେ—ଶୁଣାନ୍ତୁ । ଶୁଣାନ୍ତୁ ।

ମହିପାଲ ପଢ଼ିବାକୁ ଲାଗିଲା—"ରହସ୍ୟୋଦ୍‌ଘାଟନ ।" ଋଷିଆ ଏଜେଣ୍ଟମାନଙ୍କ କଳା କାର୍ଯ୍ୟକଳାପ । ଜନତା କମ୍ୟୁନିଷ୍ଟଙ୍କଠାରୁ ସାବଧାନ । ଗତ ରବିବାର ତା ୨୩ ଡିସେମ୍ବର ଦିନ କମ୍ପାନୀ ବାଗ ପାଖରେ ବାଦଶାହୀ ନାଳରେ ଗୋଟିଏ ସଦ୍ୟଜାତ ଶିଶୁର ଶବ କୁକୁର ଓ ବିଲୁଆମାନଙ୍କ ଦ୍ୱାରା ଖାମ୍ପୁଡ଼ା-କାମୁଡ଼ା ହୋଇଥିବା ମୃତ—ଅବସ୍ଥାରେ ମିଳିଛି, ଏହି ଖବର ଓ୍ୱାର୍ଡର ଲୋକେ ଏହା ଭଲଭାବରେ ଜାଣିପାରିଥିବେ । ଆମର ରାଷ୍ଟ୍ରୀୟ ସରକାରଙ୍କ କର୍ତ୍ତବ୍ୟନିଷ୍ଠ ପୋଲିସ କେଡ଼େ ତତ୍ପରତା ସହ ଏହି ଅମାନୁଷିକ ନିର୍ମମ ହତ୍ୟାକାଣ୍ଡର ଖବର ପାଇଲେ । ଏକଥା ମଧ୍ୟ ଏପର୍ଯ୍ୟନ୍ତ କାହାରିକୁ ଅଛପା ନାହିଁ । ଆମ ଓ୍ୱାର୍ଡର ସୁଯୋଗ୍ୟ ଏବଂ ସୁପରିଚିତ ଅଧ୍ୟାପକ ଶ୍ରୀ ଜଗଦମ୍ବା ସହାୟଙ୍କ ଯୁବତୀ ବିଧବା ପୁତୁରା ବୋହୂ ଯଶୋଦା ଦେବୀ ( ଯେ କି ନିଜର କଳଙ୍କ—କାଳିମାକୁ ଲୁଚାଇବା ପାଇଁ ଦୁର୍ଭାଗ୍ୟ-ବଶତଃ ଆତ୍ମହତ୍ୟା କଲେ ) ଏହି ପାପର ଭାଗୀଦାର ଥିଲେ, ଏକଥା ମଧ୍ୟ ଲୋକେ ଭଲଭାବେ ଜାଣିସାରିଛନ୍ତି । ଏହି କଳଙ୍କିତ କାହାଣୀ ସହିତ ଭ୍ରମବଶତଃ ଜନତା ଆଦରଣୀୟ ମାଷ୍ଟର ଜଗଦମ୍ବା ସହାୟଙ୍କ ନାମ ଯୋଡ଼ି ଦେଇଛନ୍ତି । ଆମେ ଜନତାକୁ ଏହା ଜଣାଇବାକୁ ପରମ କର୍ତ୍ତବ୍ୟ ବୋଲି ଭାବୁ ଯେ···ପୂଜ୍ୟ ମାଷ୍ଟର ସାହେବଙ୍କୁ ମିଛରେ ବଦନାମ କରାଯାଉଛି ।

ଦେବଗୁଲ୍ଲି ଅଧ୍ୟାପକ ଜଗଦମ୍ବା ସହାୟଙ୍କ ସହିତ ଏହି କଳଙ୍କ ଚରିତନ ପାଇଁ ଯୋଡ଼ି ହୋଇ ଯାଇଥିଲା । ଏଥିରେ ଟିକିଏ ହେଲେ ସନ୍ଦେହ ନାହିଁ । କିନ୍ତୁ ଭଗବାନ ମଧ୍ୟ ଭଲଲୋକପାଇଁ ଭଲ କରନ୍ତି । ଆମ ସହରର ମହାନ୍ ନେତା, ଆମ ଓ୍ୱାର୍ଡର ରତ୍ନ, ଲୋକସେବା—ବ୍ରତଧାରୀ ବାବୁ ଶାଳଗ୍ରାମ ଜୟସଓ୍ୱାଲଙ୍କ ଅପୂର୍ବ ବୁଦ୍ଧି, ଆମର ରାଷ୍ଟ୍ରୀୟ ପୋଲିସର କାର୍ଯ୍ୟପଟୁତାକୁ ଧନ୍ୟବାଦ ଯେ ଆମର ସରଳ ନିଷ୍କପଟ ଜନତା ଜଣେ ନିର୍ଦ୍ଦୋଷ ଆତ୍ମାକୁ କଳଙ୍କିତ କରିବାରୁ ରକ୍ଷା ପାଇଗଲେ ଏବଂ ପ୍ରକୃତ ଅପରାଧୀ ଧରାପଡ଼ିଗଲା । କ’ଣ ଜନତା ଜାଣନ୍ତି ନାହିଁ ଯେ ସେ ଦୁଷ୍ଟ ପାତକୀ କିଏ ? କିଏ ସେହି ନୀଚ ଯେ ଡବଲ ପାପକରି ଆମର ଧର୍ମପ୍ରାଣ ଜନତାକୁ ନିଜର ଜଘନ୍ୟ ପାପାଗ୍ନିର ଦ୍ୱାରା ଗ୍ରସ୍ତ କରିଅଛନ୍ତି ? ଏ ବିଷୟରେ ନିଜ ତରଫରୁ କିଛି ନ କହି ଆମେ ସ୍ୱର୍ଗୀୟା ଯଶୋଦା ଦେବୀଙ୍କର ବକ୍ତବ୍ୟ ଯାହାକି ସେ ପୋଲିସ ଆଗରେ ମରିବା ପୂର୍ବରୁ ଦେଇଯାଇଥିଲେ—ପ୍ରକାଶିତ କରିଅଛୁଁ—ପାପ ଜ୍ୱାଳାରେ ଦଗ୍ଧ ହିନ୍ଦୁ ମହିଳା ନିଜର ଅନ୍ତିମ ସମୟରେ ଦୁଃଖର ପଦରେ ପୋଲିସକୁ କହିଥିଲେ—‘ଭଲ୍ଲାବାବୁ ମୋର ନଣନ୍ଦର ସାଙ୍ଗ । ଦୁହେଁ ଗୋଟିଏ ପାର୍ଟି ( ଅର୍ଥାତ୍ କମ୍ୟୁନିଷ୍ଟପାର୍ଟି, ଯାହାକି ଦେଶର ବିଶ୍ୱାସଘାତକଙ୍କର ସଂସ୍ଥା )ରେ କାମ କରୁଥିଲେ । ଭଲ୍ଲା ବାବୁ ଏଠାକୁ ଅନେକ ସମୟରେ ଆସନ୍ତି । ଦିନେ ସେ ଓ ମୋର ନଣନ୍ଦ ବନକନ୍ୟା ମୋତେ ଫାଶରେ ପକାଇଦେଲେ । ସେହିଦିନଠାରୁ ଭଲ୍ଲା ବାବୁ ମୋତେ ଡରାଇ ଧମକା ଧମକି କରି ନିଜ ଆୟତ୍ତରେ ରଖିଛନ୍ତି । ମୋର ଗର୍ଭ ରହିବାରୁ ଘରର ଲୋକେ ମଧ୍ୟ ଜାଣିଲେ । କିନ୍ତୁ ସମସ୍ତେ ମର୍ଯ୍ୟାଦାକୁ ଡରୁଥିଲେ । କାଲି ସଂଧ୍ୟାରେ ଯେତେବେଳେ ମୋର ପାପ ଜନ୍ମଲାଭ କଲା, ମୋର ଦେବଗୁଲ୍ଲି କକାଶୁର ଭଲ୍ଲା ବାବୁଙ୍କୁ ଡାକି ତାଙ୍କୁ ପିଲାଟିକୁ ନେଇଯିବାକୁ କହିଲେ । ମୋର ପିଲାଟିକୁ ଭଲ୍ଲାବାବୁ ମାରି ଫୋପାଡ଼ି ଦେଇଛନ୍ତି । ମୁଁ ନିଜ ଲାଜରେ ନିଜେ ପୋଡ଼ି ମରୁଅଛି ।’

‘ଏହି ବକ୍ତବ୍ୟକୁ—ଦୀନ ଅବଳାର ଏଇ କରୁଣ ଡାକକୁ—ଶୁଣି ମନରେ ବିଶ୍ୱର କଳ୍ପପରେ ନ୍ୟାୟପରାୟଣ ଜନତା ମନରେ କି ବିଚାର ଆସୁଛି ? —ଏଇ ଯେ ବିଦେଶୀ ସଭ୍ୟତାର ପାଣିପବନରେ ପାଳିତ ଈଶ୍ୱର, ଧର୍ମ-କର୍ମ, ପାପ-ପୁଣ୍ୟର ବିବେକ ରଖି ନ ଥିବା ଅର୍ଦ୍ଧ ଇଂରେଜ ଶୂଦ୍ର କମ୍ୟୁନିଷ୍ଟ ନିଜର ସ୍ୱାର୍ଥ ପାଇଁ ନୀଚରୁ ନୀଚକାର୍ଯ୍ୟ କରିପାରନ୍ତି । ଏଇ କାଗଜଟି ଇଲେକ୍ସନ୍ ପ୍ରଚାରପତ୍ର ହିସାବରେ ଛପାଯାଇନାହିଁ, ଜନତା ଏ କଥାଟିକୁ ଭଲଭାବରେ ବୁଝିନେବା ଦରକାର । ବରଂ ଏହି କାଗଜ ଖଣ୍ଡିକୁ ଆମ ଓ୍ୱାର୍ଡର ଏକମାତ୍ର ଲୋକପ୍ରିୟ ରାଷ୍ଟ୍ରୀୟ ନେତା ବାବୁ ଶାଳଗ୍ରାମ ଜୟସଓ୍ୱାଲଙ୍କ ହୃଦୟର କରୁଣ ଡାକକୁ ଶୁଣାଇବାପାଇଁ ବଣ୍ଟାଯାଉଅଛି । ଓ୍ୱାର୍ଡରେ ଏହି ଶୋକପୂର୍ଣ୍ଣ ଦୁର୍ଘଟଣା ହେଲାଦିନୁ ପୂଜ୍ୟ ଶାଳଗ୍ରାମ ବାବୁ

ସଦାସର୍ବଦା ମର୍ମାହତ ଏବଂ ସେ ବିଷୟରେ କଠୋର ପ୍ରତିଜ୍ଞା କରିଛନ୍ତି ଯେ ସେ ଆଜିଠାରୁ ଏହି ଓ୍ୱାର୍ଡ ରେ ସ୍ନ ୪୬ ର ବିଶ୍ୱାସଘାତକମାନଙ୍କୁ ସୁଯୋଗ ଦେବେ ନାହିଁ । ଜନତାଙ୍କୁ ଅନୁରୋଧ ପ୍ରିୟ ନେତାଙ୍କର ପ୍ରତି ପୂର୍ଣ୍ଣ କରିବାରେ ସାହାଯ୍ୟ କରନ୍ତୁ ।

ପଢିସାରି ମହାପାଳ କାଗଜଟିକୁ ମୋଡ଼ା ମୋଡ଼ି କରି ଥୋଇଲେ । ସଜ୍ଜନଙ୍କୁ ପୁଣି କାଗଜଟା ଭିତରେ ଗୋଟିଏ କଥା ଆକୃଷ୍ଟ କଲା । ଜଗଦମ୍ବା ସହାୟଙ୍କ ଝିଅ ନାଆଁ ବନକନ୍ୟା ମିସ୍ ବନକନ୍ୟା ସେ ଭଳି କହୁଥିଲେ-ହତ୍ୟା ମୋ ଦ୍ୱାରା କରିଛନ୍ତି । ମୁଁ ଜାଣେ । ମୁଁ କହୁଛି ମୋର ଭାଉଜଙ୍କ ଅପରାଧ ହେଲା ସେ ସ୍ତ୍ରୀ ଏବଂ ଆର୍ଥିକ ଦୃଷ୍ଟିରୁ ସ୍ୱତନ୍ତ୍ର ନୁହନ୍ତି । ସଜ୍ଜନ ଆଗରେ ବନକନ୍ୟାର ଗୋରା ଓ ସୁନ୍ଦର ଚେହେରାଟି ନାଚ ଉଠୁଥିଲା । ଏଇ ପରିସ୍ଥିତିରେ ତାର ଚରିତ୍ର ଉପରେ ମିଥ୍ୟାଦୋଷ ଲଦା ଯାଇଛି । ଏଟା ସମ୍ପୂର୍ଣ୍ଣ ଭାବରେ ମିଥ୍ୟା ।

ଏ କାଗଜ ମଧ୍ୟ ମିଥ୍ୟା । ସଜ୍ଜନ ଆଉ କାହାକୁ କହିଲା ଭଳି କହିଲା । ମହାପାଳଠାରୁ କାଗଜଟି ନେଇ ନିଜ ପକେଟରେ ରଖିଥିବା ବେଳେ ଛେଦିଲାଲ ବାବୁଙ୍କ ତୀକ୍ଷ୍ଣ ଦୃଷ୍ଟି ସଜ୍ଜନ ଉପରେ ପଡ଼ିଥାଏ । ସେଠ ମୁକୁନ୍ଦ ଲାଲଙ୍କ ହୁକା ବନ୍ଦ ହୋଇଗଲା । ଗୋପାଳଚନ୍ଦ୍ର ବାବୁ କହିଲେ'-ଏଥିରେ ତ ସନ୍ଦେହ ନାହିଁ ଯେ'- ।

'ଆଜ୍ଞା ମୁଁ ନିଜେ ଜଗଦମ୍ବା ସହାୟଙ୍କ ଘରକୁ ଯାଇଥିଲି । ସବ୍-ଇନ୍ସପେକ୍ଟର ଶୁକ୍ଳ ମୋତେ ସବୁ ତଥ୍ୟ କହିଥିଲେ । ପୁଣି ଆଉ ଗୋଟିଏ କଥା-ପ୍ରାୟ ସାଢ଼େ ଏଗାରଟା-ବାରଟା ଯାଏଁ ତ ସେଇ ସ୍ତ୍ରୀ ତାଙ୍କ ନଁ । କଣ ଯଶୋଦା ଦେବୀ-ର ଚେତା ଫେରିନଥାଏ । ଏବଂ ଡାକ୍ତରଙ୍କ ମଧ୍ୟ ଆଶା ନଥିଲା ଯେ ସଞ୍ଜ ଫେରି ଆସିବ । ବରଂ ମୁଁ କହୁଛି ଯେ ଶୁକ୍ଳବାବୁ ନିଜ ବ୍ୟସ୍ତ ହେଉଥିଲେ ଯେ ଡ୍ରାଇଭିଙ୍ଗ୍ କ୍ଲାରେଶନ୍ ମିଳି ପାରିବ ନାହିଁ ବୋଲି ।

'ହୋଇପାରେ ଏଥିରେ କେତେ ମିଛ କଥା ଅଛି ।' ସେଠ ମୁକୁନ୍ଦ ଲାଲ କହିଲେ । 'ଆରେ ବାବୁ, ଇଲେକ୍ସନ୍ ଟାଇମ୍ ପ୍ରୋଗ୍ରାମ ବେଳେ ମିଛ କି କୁହାଯାଏ । ହେଲେ ଏକଥାର କଣ ପ୍ରମାଣ ଅଛି ଯେ ଘଟଣାଟା କମ୍ୟୁନିଷ୍ଟଙ୍କର ନୁହେଁ ?

ରାଧେଶ୍ୟାମବାବୁ ରାଗିଗଲେ-' ଆଜ୍ଞା, ଆପଣ କମ୍ୟୁନିଷ୍ଟଙ୍କୁ କାହିଁକି ବଦନାମ କରୁଛନ୍ତି ? ଶଳା ଜଗଦମ୍ବାସହାୟଙ୍କୁ ସମସ୍ତେ ଜାଣନ୍ତି । ବଡ଼ ବ୍ୟଭିଚାରୀ ତାଙ୍କୁ-

ଲେଖାଯାଇଛି ଦେବବୃକ୍ଷ ବୋଲି । ଶାଳଗ୍ରାମର ମହିମା ବର୍ଣ୍ଣନା ହୋଇଛି । ଆଉ ଆପଣ କହୁଛନ୍ତି –'

'ଆପଣ ବୃନ୍ଦାବନ୍ତ ଏଥିରେ କି ରଙ୍ଗ ଅଛି'—କର୍ଣ୍ଣେଲ ଶାନ୍ତ ଭାବେ କଥା ଆରମ୍ଭ କଲେ–' ହଜ୍ଜା ବାବୁଙ୍କ ହାତରେ ମେହେନ୍ତର—ମୋଟ ଓ ଚକ୍‌ସା ମୁନସ୍ପନର ସଲିଡ୍ ଦୁଇହଜାର ଭୋଟ—ଶାଳଗ୍ରାମ ଭଳି ଚଉର ଲୋକ ତାକୁ ଛାଡ଼ିବ ? ଏଇ କାଗଜଟିରେ କମ୍ୟୁନିଷ୍ଟଙ୍କୁ ବଦ୍‌ନାମ କରି ସେ ସେହି ଭୋଟ ମାରି ନେବାକୁ ବସିଛି ।

'ଆପଣଙ୍କ ପଏଣ୍ଟ ଏକବାରେ ଠିକ୍ କର୍ଣ୍ଣେଲବାବୁ । କିନ୍ତୁ ଏ ଭୋଟ ଆଉ କମ୍ୟୁନିଷ୍ଟଙ୍କୁ ମିଳିବ ନାହିଁ କି କଂଗ୍ରେସକୁ ବି ମିଳିବନି । ଆପଣ ଦେଖିବେ ।' ଛେଦାଭାଇ ଏତିକି କହି ଫୁଙ୍କିକ ମାରି ସିଗାରେଟର ପାଉଁଶ ଝାଡ଼ି ଦେଲେ ।

ଦୂରଦର୍ଶିତା ଦେଖାଇ ମୁକୁନ୍ଦ ଦା ମଇ ବେକ ହଲାଇ କହିଲେ —' ଠିକ କୁହେ ଛେଦାଇ, ସବୁ ଭୋଟ ଏଣିକି ଜନସଂଘ ପାଇବ ।'

'ଆପଣ କଣ ଭାବୁଛନ୍ତି ଆଜ୍ଞା, ମେହେନ୍ତର ଭିତରେ ମୁସଲମାନ ଅଛନ୍ତି । ଶକ୍‌ସାବାଲଙ୍କ ଭିତରେ ବି ମୁସଲମାନ ଅଛନ୍ତି । ତାଙ୍କର ଭୋଟ ସଂଘକୁ କେମିତି ମିଳିବ ? କେମେତି ଏଇ ଭୋଟ ତ—ଆପଣ ଠିକ୍ ଜାଣନ୍ତୁ—କମ୍ୟୁନିଷ୍ଟ ନେଇ-ଆସନ୍ତେ ନହେଲେ ଏବେ କଂଗ୍ରେସବାଲା ନେବେ । ଶାଳଗ୍ରାମ ଠିକ୍ ବେଳରେ ଏଇ କାଗଜଟି ବାଣ୍ଟିଦେଇ ନିଜ କାମ ହାସଲ କରିନେଇଛି । ଆପଣ ଏବେ ତାକୁ ଯାହା କୁହନ୍ତୁ ।' କର୍ଣ୍ଣେଲ ନିଜର ମନ୍ତବ୍ୟ ଦେଲା ।

'ମୁଁ କହିବି—?

ବାବୁ ଗୋଲ୍ଲାପଚନ୍ଦ୍ରଙ୍କ କଥାରେ ପ୍ରତିବାଦ କରି ମସ୍ତାପାଲ କହିଲା—ମୁଁ କହୁଛି ଗୋଲପଚନ୍ଦ୍ର, ଏଇ ଇଲେକ୍‌ସନ୍ ତ ଦିନକଥା କଥା । କିନ୍ତୁ ଏଇ ସମାଜର ଏତେ ବଡ଼ ପାପ ଯେ ଲୁଚିଯିବା କଥାକୁ ଆପଣମାନେ ପାରିବେ କିପରି ?'

'ଆରେଁ ଭାଇ ପଣ୍ଡିତେ, କି କଥା କହୁଛନ୍ତି ? ସେଠ ମକ୍କୁସାମଲ ଆରମ୍ଭ କଲେ—ଏ ମଧ୍ୟରେ ତାଙ୍କ ଘର ପାନ ଥାଳିଆ ଆସିଗଲା । ଭୁକର ଆଗ ପାଖ ଚଉନ୍ତରେ ବସିଥିବା କର୍ଣ୍ଣେଲ ଆଡକୁ ପାନଥାଳିଆ ବଢ଼ାଇଲା । ମୁକ୍କୁସାମଲ କଥା ଚଲେଇଛନ୍ତି—ଇଏ ତ ସଂସାର ବାବୁ । ତାର ସେ ଚାଲିଛି ଏ କ'ଣ କିଛି ନୂଆ କଥା ? ମୁଁ ତ ଏସବୁ ଦେଖି ଦେଖି ବୁଢ଼ା ହେଲିଣି ।'

' କିନ୍ତୁ ଆଉ କେତେ ଶୁଣିବେ ? ସମାଜରେ ଏମିତି ପାପ'ଗୁଡ଼ାଏ ଚାଲିଥିଲେ ଏତେସବୁ ଆପଣଙ୍କର ଇଲେକ୍‌ସନ୍ ଆଉ ପାର୍ଟି ସବୁ ବେକାର । ମୂଲ୍ୟହୀନ ।

'ବେକାର ନିଶ୍ଚୟ ଆଜ୍ଞା, ମୁଁ ମଧ୍ୟ ସେଇକଥା କହୁଛି । ଘୋର ଘାରମୂଳକ ତାର । ଯେ କେହି ପାର୍ଟି ଆସୁ ସୁଶାସନ ଏମିତି ଚାଲିବ । ଆମେ ବି ଏମିତି ଭକୁଆ ହୋଇ ରହିଁଥିବୁ । ପାପ ରହିବ ପୁଣ୍ୟ ବି ରହିବ । ଏସବୁ ତ ଈଶ୍ୱରଙ୍କ ଖେଳ । ସେ'ଙ୍କୁ କିଏ ବଦଳାଇଦେବ ? ଏତେ ଏତେ ଋଷି ମୁନି ଗଲେ, ରାମଚନ୍ଦ୍ର ଆଉ ଶ୍ରୀ କୃଷ୍ଣଙ୍କ ଭଳି ଅବତାର ଗଲେ ତଥାପି ଦୁନିଆ' ବଦଳି ଯାଇ ନାହିଁ । ଆଉ ଏବେ କିଏ ବଦଳିବ ?

'ବୋଲ ନାଲି ଲଂଗୋଟବାଲାଙ୍କ ଜୟ । ଝୁମ୍‌ପି ଘଣ୍ଟା ବାଲାର ଜୟ ।

ବଜରଙ୍ଗ ବୁଦ୍ଧ ସହାୟ ସ୍ୱାମୀ । ଶୀତରେ ଖୋଲା ଦେହ, ପଇତାରେ ଗୁଡ଼ାଏ ବଡ଼ ନେଳ୍ଠା ଟାଙ୍କି କାନ୍ଧ ଉପରେ ପକାଇ, ଛତି, ବେକ ଓ ଆଉ କେଉଁ ଟାଣି ଜଣେ ଭକ୍ତରାଜ ଆସି ନିଜର ଚଢ଼ା ସ୍ୱରରେ ଭଜନ ଆରମ୍ଭ କଲେ ।

ଭକ୍ତଙ୍କ ଭଜନରୁ ନିଜର କଥାପାଇଁ ଜୋର ମାଗି ଓ ଥାଳିଆରୁ ପାନ ଖଣ୍ଡିକ ଉଠାଇ ବାବୁ ରାଧେଶ୍ୟାମ କହିଲେ—' ବଦଳିବ ବାବୁ, ବଦଳିବ, ଏଣିକି କମ୍ୟୁନିଷ୍ଟ ଆସି ବଦଳାଇ ଦେବେ । ଏଇ ପୁଞ୍ଜିବାଦୀ ଖେଳ ଆଉ ବେଶି ଦିନ ଚାଲିପାରିବ ନାହିଁ । '

ଗୋଲାପଚନ୍ଦ୍ର ହସି ହସି କହିଲେ-ତୁମେ ତ ଦିନକୁଦିନ କମରେଡ୍ ଷ୍ଟାଲିନ୍ ହୋଇ ଯାଉଛ । ଆରେ ନିଜ ପିଲା ଛୁଆଙ୍କ କଥା, ଋଳିଶି—ବାଳିଶି କଥା ଖିଆଲ ରଖ । କଂଗ୍ରେସ ସରକାର ଚାଲିଛି । '

'ଯୋଉ ସରକାର ହେଉ ବାବୁ ଗୋଲାପଚନ୍ଦ୍ର ଜଳିଯାଇଥିବା ହୃଦୟରୁ ବାହାରିବ 'ହାୟ' ଏହା କାହା ଦ୍ୱାରା ବନ୍ଦ ହେବନାହିଁ । ମହୀପାଳ କହିଲେ—'ମୁଁ କମ୍ୟୁନିଷ୍ଟ ନୁହେଁ । ଆପଣ ବିଶ୍ୱାସ କରନ୍ତୁ ଯେତେବେଳେ ଶୁଣେ ଯେ ଋଷିଆରେ ବେକାର ଜମା ନାହାନ୍ତି, ସବୁ ଲୋକ କାମ ଆଉ ରୋଟି ପାଉଛନ୍ତି ସେତେବେଳେ ମୋର ମନହୁଏ ଭାରତରେ ବି କମ୍ୟୁନିଷ୍ଟ ଆସି ଯାଆନ୍ତା କି । '

ଏହିକିବେଳେ ପଛ ଗଲୀରୁ ଜଣେ ସ୍ତ୍ରୀ ଲୋକ ଦଉଡ଼ି ଦଉଡ଼ି ପହଞ୍ଚିଲା । ବୟସ ଅଠେଇସି ତିରିଶ ହେବ । ଚେହେରା ଆଉ ଆଖିର କଳା ଗାର ଗୁଡ଼ିକରେ

ଯୁବତୀ ପଣ ଥିଲେ ମଧ୍ୟ ସୌନ୍ଦର୍ଯ୍ୟ ଯୋଗୁଁ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲା । ଯୁବତୀ ଜଣକ ଏମାନଙ୍କୁ ଦେଖି ଅଟକିଗଲା । ପଛ ଗଲୀ ଆଡ଼ୁ ଶୁଭୁଛି—'ଧର, ଧର ।' ଯୁବତୀ ସେଠ ମୁକୁନ୍ଦମଲ ପାଖରେ ଆସି ଛିଡ଼ା ହେଲେ । ସେଠଙ୍କ କାନ ଟୋପିରେ ମୋଟା କାଚର ଚଷମାଲଗା, ଧଳା ଜଣଥିବା ଶ୍ରୀଯୁକ୍ତ ଚେହେରା ସଙ୍କୋଚ ହୋଇ ଯୁବତୀ ତାଙ୍କ ମୁହଁ ଉପରକୁ ଚଅଟ୍‌କମ ଛେପ ଲେଣ୍ଡାଏ ପକାଇ ଅନ୍ୟ ଆଡ଼େ ମୁହଁ ବୁଲେଇ ଘର ଆଡ଼େ ଦଉଡ଼ ଧାପଡ ଆରମ୍ଭ ହୋଇଗଲା । ସଜ୍ଜନ ଚୌକିରୁ ଉଠି ତା ଆଡ଼କୁ ଧାଇଁଲା । ଅଣାଅଣୀ ବର୍ଷର ସେଠଙ୍କ ମର୍ଯ୍ୟାଦା ହାନି ହେବାରୁ ସେ କ୍ରୋଧରେ ଅନ୍ଧ ହୋଇଗଲା । ଛଟପଟ ହୋଇ ମଫଲରରେ ମୁହଁ ପୋଛୁ ପୋଛୁ ଉଠି ଛିଡ଼ା ହେଲା ବେଳେ ଶମ୍ବାଦ ଭଳି ହୁକାଟି ତଳେ ପଡ଼ିଥିଲା ।

ସଜ୍ଜନ ପାଖକୁ ଆସିଲା ମାତ୍ରେ ଯୁବତୀଟିର ଆଖି ତା ଉପରେ ପଡ଼ିଲା । ଗଳିରୁ ଧରି ସରି ଓ ଦଉଡ଼ୁଥିବା ପାଦର ଶବ୍ଦ ଶୁଭୁ ଥିଲା । ଯୁବତୀ ପଛକୁ ମୁହଁ ବୁଲାଇ ଦେଖିଲା । ସଜ୍ଜନ ମଧ୍ୟ ଦେଖିଲା । ଜଣେ ପଅଁଷଠି ସତୁରୀ ବର୍ଷର' ଏଣ୍ଡ୍ରୋଭେଟ୍' ଚେହେରାବାଲା ଜଣେ ଭଦ୍ର ଲୋକ ଧାଇଁ ଆସୁଥିଲେ— ।' ଧରନ୍ତୁ ମାଇ ଡ଼ଅର । ଧଇଲେ । ଥ୍ୟାଙ୍କ୍ ୟୁ ଥ୍ୟାଙ୍କ୍ ୟୁ ।'

'ମାଇ ଡ଼ିଅର' କହି ଯୁବତୀ ସଜ୍ଜନ ସାଙ୍ଗରେ ଲଢ଼ିବାକୁ ଲାଗିଲା । ସଜ୍ଜନ ସାବଧାନ ଥିଲା । ଦୁଇ ହାତକୁ ଧରି ନେଇ ସେ କହିଲା 'ଖବରଦାର' ।

ଆଉ କରିବ ନାହିଁ । ଆଉ ଛେପ ପକେଇବ ନାହିଁ । ପ୍ଲିଜ୍ ଏକ୍ସକ୍ୟୁଜ୍ ମି । ମୋତେ ଛାଡ଼ ଦଅ । ମତେ ମାର ଦଅ ନାହିଁ ।

ବୃଦ୍ଧ ମହାଶୟ' ଆସି ଛିଡ଼ା ହୋଇଗଲେ । ସେ ଦୁହେଁ ଧରି ସରି ହେଉଥାନ୍ତି । କର୍ଣ୍ଣେଲ, ଗୋଲପଚନ୍ଦ୍ରଙ୍କ ମଣ୍ଡପ ପାଖରେ ଆଉ ଛେଦୀ ଲାଲ ଚଉତରା ଉପରେ ନିଜ ଘର କାନ୍ଥ ଉପରେ ଆଉଜି ଛିଡ଼ା ହୋଇଥିଲେ, ରାଧେଶ୍ୟାମ ମଧ୍ୟ ତାଙ୍କ ପାଖକୁ ଥିଲେ, ମହିପାଲ ନିଜ ଘାଗାରେ ବସି ଥାଏ , ଏବଂ ଲୋଗ ଥାଳୀ ଓ ଫୁଲଡାଲା ଉପରେ ଦୁଇହାତ ରଖି ବସନ୍ତୁ ମାଳୀ ବ୍ୟତିବ୍ୟସ୍ତ ହୋଇ ବେଙ୍ଗ ବସିଲା ଭଳି ବସି ଥାଏ ।

ବୁଢ଼ା ଭଦ୍ରଲୋକଙ୍କୁ ଦେଖି ମୁକୁନ୍ଦ ମଲ କହିଲେ—' ଓକଲ ବାବୁ ଏଇ ଏଇ ଆପଣଙ୍କ ପାଗଳୀ ବୋହୂ ।'

'ଜେଣ୍ଟଲମ୍ୟାନ, ୟୁ ଆର୍ ମାଇ ଫାଦର, ମାଇ ବ୍ରଦର, ମାଇ ଏଭ୍ରିଥିଙ୍ଗ୍ ସଜ୍ଜନର ପାଖରେ ଅସହାୟ ହୋଇ ଠିଆ ହୋଇଥିବା ସ୍ତ୍ରୀଟି ଛଳ ଛଳ ଆଖି ଓ

କମ୍ପିତ ସ୍ୱରରେ କହିବାକୁ ଲାଗିଲା" ମୋତେ ମୋର ରାଜେଶ ପାଖରେ ପହଞ୍ଚାଇ ଦିଅ । ରାଜେଶ, ମାଇ ଡ଼ାର୍ଲିଙ୍ଗ୍ । ଫ୍ଲେବର ଅଫ୍ ମାଇ ହାର୍ଟ । ମୋର ଛାତି ଜଳିଯାଉଛି । ଏଇଠି···ଏଇଠି ମୋରହାତ ଛୁଇଁ ଦିଅ । ମୁଁ ଦେଖାଇ ଦେବି କୋଉଠି ଜଳୁଛି । ଶ୍ମଶାନ କେମିତି ଲହ ଲହ ହୋଇ ଜଳୁଛି ।

'ହଉ—ହଉ, ଘରକୁ ଚାଲ୍ ମା—'ତାର ଶଶୁର ଓକିଲ ବାବୁ କହିଲେ । ତୋର ଲୁଗାପଟା ବନ୍ଧାବନ୍ଧି କରିବା । ତେବେତ ରାଜେଶ ପାଖକୁ ଯିବୁ ।'

'ନା—ମୁଁ ଏଇଠୁ ଯିବି । ମାଇ ଡ଼ିଅର ହଜ୍‌ବେଣ୍ଡ ଇଜ୍ କେପ୍‌ଟେନ୍ । ମୁଁ ରାଜେଶ ପାଖକୁ ଯିବି ।' ଯୁବତୀଟି ସଜ୍ଜନ ନିକଟକୁ ଧୁଇଁଗଲା । ସଜ୍ଜନ ତା'ର ହାତ ଦୁଇଟିକୁ କାଢ଼ିଦେଇ କହିଲା—ଘରକୁ ଚାଲନ୍ତୁ ।

'ନା, ମୋତେ ସେଠାକୁ ନିଅନାହିଁ । ୟୁ ଆର ଏ ଯେଣ୍ଟଲ ମ୍ୟାନ । ହେଲ୍‌ପ ମି । ସେଠି ଅଛି ଗୋପୁ । ସେ ତାର ଓ୍ୱାଇଫ୍‌କୁ ରାତିରେ ଆଣିଜାଏ । ତାଙ୍କୁ କିସ୍‌କରେ । ମୋତେ ପାଇଖାନା ଭିତରେ ବନ୍ଦକରିଦିଏ । ଆଉ ଏଇ ବୁଢ଼ା, ମୋର ଶଶୁର, ମୋତେ ବାପା ମାଆ କହେ । ଶାଶୁ ମଧ୍ୟ ମିଠା କଥା କହେ । ମୋ' ଝିଅ ମୋ ରାଣୀ ବୋଲି କହନ୍ତି । ତାଙ୍କର ଦୟାନାହିଁ । ରାତିରେ ବୁଢ଼ାବୁଢ଼ି ଦିହେଁ ଭିତରେ ପଶି—'

ସଜ୍ଜନ ହାତ ଛାଡ଼ିଦେଇ ଚଟ୍‌କିନା ।' ଗାଲରେ ଚଟକଣା ବସାଇଦେଲା । ଯୁବତୀ ଡରିଯାଇ କାବୁସ୍ତ ହୋଇଗଲା । ସଜ୍ଜନ ନିଜ ଆବେଗକୁ ଚାପି ଟିକିଏ ଲାଜେଇ ଯାଇ ଓକିଲ ବାବୁଙ୍କୁ କହିଲା—'କ୍ଷମାକରିବେ ଆଜ୍ଞା ।'

'ନା-ବାପ—( ନୋ-ନୋ ) ।' ଓକିଲ ବାବୁ ଉପକୃତ ଭାବ ଦେଖାଇଲେ ।'

'ଘରକୁ ଚାଲନ୍ତୁ ।' ସଜ୍ଜନର କଥା ଶୁଣିବା ମାତ୍ରେ ଯୁବତୀଟି ଚୁପ୍‌କିନା କାନ୍ଦି କାନ୍ଦି ଗୁଣୁ ଗୁଣୁ ହୋଇ ନିଜ ଘରଆଡ଼େ ଚାଲିଲା । ଓକିଲ ବାବୁ କାହାକୁ କିଛି ନ କହି, ମୁଣ୍ଡ ପୋତି, ଥକା ଓ ଅନ୍ୟମନସ୍କ ଭାବେ ଆଗକୁ ଚାଲିଲେ ।

କନ୍‌ଷ୍ଟେବଲ୍ କହିଲା—'ସଜ୍ଜନ, ମୁଁ ତୁମ ସାଙ୍ଗରେ ଯିବି ।'

'ନା—ଏଇନେ ଫେରିଆସୁଛି ।' ସଜ୍ଜନ ମୁହଁ ନ ବୁଲାଇ ଚାଲିଗଲା ।

# ଚାରି

ଫେରିବା ସମୟରେ ଚିଠିଟିଏ ଖାଲି ପଡ଼ିଥିବାର ଦେଖି ସଜ୍ଜନ ନିଜ କୋଠରୀଆଡ଼େ ଗଲା । ଦେଖିଲା—କବାଟ ଖୋଲା ଅଛି । ଭିତରକୁ ପଶିଲା । ବନକନ୍ୟା ଥମସ୍ ଜୋବନ୍‌ରେ ( ଦ ଷ୍ଟୋରି ଅଫ୍ ପେଣ୍ଟିଂ ) ପଢୁଥିଲା । ତାକୁ ଦେଖି ସଜ୍ଜନର ହୃଦୟ ହଠାତ୍ ଉଛଳ ହୋଇଗଲା । ପୁଣି ଦେଖିଲା ନା କର୍ଣ୍ଣେଲ ନା ମହିପାଲ କେହି ସେଠାରେ ନାହାନ୍ତି । ଜଲପି ଓ ସେଉ ପୁଡ଼ିଆ ବନ୍ଧାହୋଇ ଆଗରେ ଥୁଆହୋଇଛି ।

ସଜ୍ଜନ ଖୁସି ହୋଇ ନିଜର ଅସ୍ତିତ୍ୱ ଭୁଲିଯାଇ ହାତ ଯୋଡ଼ିଲା । ବନକନ୍ୟା ମୁରୁକି ହସି ହାତ ଉଠାଇଲା । ଆଉ କହିଲା—'

ସଜ୍ଜନ ମୁରୁକି ହସିଲା—'ପ୍ରତିଟି ଶିରା ପ୍ରଶିରାରେ ବିଦ୍ୟୁତ ଭଳି ଗତି ଖୁସି ଖୁସି ମୁହଁ ଉପରେ ଫୁଟି ପୁଣି ମିଳେଇ ଯାଉଛି—'ବଦ୍‌ମାସ୍, ଶଳା ।'

ଲଫାଫା ଖୋଲିଲା । ପୁରୁଣା ନିମନ୍ତ୍ରଣ ପତ୍ର ଉପରେ ମହିପାଳ ଲେଖିଥିଲା- ଜଲପିର ଗୁଣ, ଏଇ ବ୍ରାହ୍ମଣ ବର୍ତ୍ତମାନ ବିରଷ ମନରେ ଯାଉଛି । ଆଜିକାର ମୋର ଏଇ ଜଲପି ତ୍ୟାଗଟାକୁ ଡାଇରୀରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିବ । କର୍ଣ୍ଣେଲ ମଧ୍ୟ ସ୍ୱାଦେନ୍ଦ୍ରିୟକୁ ଜୟ କରି ଜୈନ ହେବାର ପରିଚୟ ଦେଇଅଛି । ଏଇ ନୂତନତ୍ୱ ଏବଂ ନିର୍ଜନତା ତୁମକୁ ବଡ଼ଦିନର ଉପହାର ସ୍ୱରୂପେ ଦେଇଗଲୁ । କାକାମାନଙ୍କର ଉପକାର କରିବ । ସୌଜନ୍ୟତା ଦେଖାଅ । ତୁମର ସ୍ୱତନ୍ତ୍ର ଅଧିକାର ପାଇଁ ଏଇ ଆଶୀର୍ବାଦ କରୁଛୁ ।

ତା' ତଳକୁ କର୍ଣ୍ଣେଲର କଡ଼ା ଲେଖା— 'ବାବୁ, କେମିତି ନଷ୍ଟ ହେବନାହିଁ ।'

ଉଚ୍ଛଳ ଆନନ୍ଦକୁ ପ୍ରକାଶ କରି, ଚିଠିଟିକୁ ପକେଟରେ ରଖୁ ରଖୁ ସଜ୍ଜନ ବନକନ୍ୟା ଆଡ଼କୁ ଚାହିଁଲା । ଏକ ପ୍ରକାର ସୌନ୍ଦର୍ଯ୍ୟର ସୀମା ଛୁଇଁଥିବା ସୁଠାମ ଚେହେରାର ବଳିଷ୍ଠ ବ୍ୟକ୍ତିତ୍ୱ ବନକନ୍ୟାର ବିଶେଷତ୍ୱ । ସଜ୍ଜନର ଆଖିରେ ସେଇ ସୌନ୍ଦର୍ଯ୍ୟର ପ୍ରଭାବ ପଡ଼ିବାର ଜଣାଗଲେ । ସେ ବିରକ୍ତି ମିଶ୍ରିତ ସ୍ୱରରେ କହିଲା, ମୋର ଏଇ ବନ୍ଧୁ ଦିଜଣକ ଏମିତି ମୂର୍ଖ ଯେ କ'ଣ କହିବ । ଜରୁରୀ କାମରେ ଯାଉଛୁ ବୋଲିତ ଲେଖିଛନ୍ତି କିନ୍ତୁ କେଉଁଠି ଦେଖାହେବ ଲେଖିନାହାନ୍ତି । ମୋର ଛୁଟି ସମୟଟାକୁ ଖରାପ କରିଦେଲେ ।

ଏହା କହୁ କହୁ ସଜ୍ଜନ କନ୍ୟା ପାଖରେ ଗୋଟିଏ ସୁଶକୋଣିଆ ଉକଆରୁ ଆଉଜି ବସିପଡ଼ିଲା, ବନକନ୍ୟା କହିଲା—ଆଉ ଭଦ୍ରଲୋକ ଜଣକ ମଧୁପାଳ ବାବୁଙ୍କୁ ନେଇ ଗ୍ଳଲଗଲେ । ବରଂ ମୁଁ ଖୁଜୁଁଥିଲି ମଧୁପାଳବାବୁ କୁହନ୍ତୁ ।

ପ୍ରେମିକର ହୃଦୟରେ ଏକ ଝଙ୍କାର ସୃଷ୍ଟି ହେଲା । ସଜ୍ଜନ ପଗ୍ଭରିଲା—ମଧୁପାଳ ସହିତ କିଛି ବିଶେଷ କାମ ଥିଲା ଆପଣଙ୍କର ?

'ନା । ମୁଁ ତାଙ୍କର ଗୁଡ଼ିଏ ବହି ପଢ଼ିଛି । ସେ ମୋର ପ୍ରିୟ ଲେଖକ ।'

ସଜ୍ଜନ ମନକୁ କଥାଟି ପାଇଲା ନାହିଁ । କିନ୍ତୁ ସେ ସନ୍ତୁଷ୍ଟ ମୁହଁରେ ବସି ସବୁ ଶୁଣୁଥାଏ ।

କନ୍ୟା ସ୍ମିତହସ ହସି କହିଲା—'ଏମିତ କେତେଥର ଭାବିଛି—ତାଙ୍କ ସହିତ ସାକ୍ଷାତ କରିନିଏ । ପୁଣି ଭାବେ ଅନେକ ଅଜଣା-ଅପରିଚିତ ଲୋକ ପ୍ରତିଦିନ ଆପଣମାନଙ୍କ ଭଳି ଲେଖକ—କଳାକାରମାନଙ୍କ ପାଖକୁ ଆସି ପହଞ୍ଚନ୍ତି, ବୃଥାଟାରେ ଆପଣମାନଙ୍କର ଗର୍ବ ବଢ଼ିଯାଏ । ତେଣୁ ଦେଖା କରିନାହିଁ । ଆଜି ସଂଯୋଗରୁ ଏଠାରେ ତାଙ୍କ ସହିତ ଦେଖାହେଲା ତେଣୁ—'

'ସେଥିରେ କଣ ଅଛି । ଯେତେବେଳେ ଆପଣଙ୍କର ଇଚ୍ଛା ହେବ ଆପଣଙ୍କ ପ୍ରିୟ ଲେଖକର କାନ ଧରି ହାଜର୍ କରିଦେବି । ଗ୍ଳଲନ୍ତୁ, ଏଇନେ ଯିବା ତାଙ୍କ ଘରକୁ । ସେ ବୋଧେ ଘରକୁ ଯାଇଥିବେ ।'

ବନକନ୍ୟା ବଡ଼ ସଂଯତ ଭାବରେ କହିଲା—'ଗୋଟିଏ କାମ ନେଇ ଆପଣଙ୍କ ପାଖକୁ ଆସିଛି ।'

ଶୁଣିଲା ମାତ୍ରେ ସଜ୍ଜନର 'ମୁଡ' ସଚେତ ହୋଇଗଲା । ବିଷୟଟିକୁ ନଜେ ବୁଝିନେଇ କହିଲା—'ଏବାଉଟ୍ ଦେଟ୍ ପାର୍ମିଲେଟ୍ ?'

"ସେଦିନ ଆପଣ ହଠାତ୍ ମୋ ଘରେ ପହଞ୍ଚି ଯାଇଥିଲେ—"

"ତେଣୁ ଆପଣ ଆଜି ମୋତେ ଚମକାଇ ଦେଲେନା ?" ସଜ୍ଜନ ମନ୍ଦି କୋଠରୀରେ ଛିଡ଼ା ହୋଇଥିଲା, ଆଉ ମୋର ବେକାର ବନ୍ଧୁ ଦୁହେଁ କୁଆଡ଼େ ଗଲେ ?

ଆପଣତ ତାଙ୍କୁ ଏଠି ଭେଟିଥିବେ ।"

'ଜଣଙ୍କୁ' ଦେଖିବା ମାତ୍ରେ ଆଶା-ଅଭିଳାଷ ବଢ଼ି ଯାଇଥିଲା । ଆନନ୍ଦ ବାନେ ଭଥା ଭିତରେ ସାଙ୍ଗ । କେବାଗଆ ହୋଇ ଉଡ଼ିଗଲେ, ଏହା କ'ଣ କମ୍ ସୌଭାଗ୍ୟର କଥା ?"

"ହଁ, ସେମାନଙ୍କ ଭିତରୁ ମହୀପାଳ ବାବୁଙ୍କୁ ମୁଁ ତ ଜାଣେ । ଆଉ ଜଣେ ମହାଶୟ ମଧ୍ୟ ଥିଲେ । ମୁଁ ଆସିଲାବେଳେ ଦୁହେଁ ଏଇଠି ଥିଲେ ।

"କୁଆଡ଼େ ଗଲେ ? ଆପଣଙ୍କୁ କିଛି କହିଛନ୍ତି ।

ଡ୍ରେସିଂ ଟେବୁଲ୍ ଆଡ଼କୁ ଆଙ୍ଗୁଳି ଦେଖାଇ ବନକନ୍ୟା କହିଲା—କ'ଣ ଚିଠି ଲେଖି ଯାଇଛନ୍ତି ।

ସଜ୍ଜନ ତାକୁ ଦେଖିଲା । ବମ୍ବେ ଆର୍ଟ ସୋସାଇଟିର ଖଣ୍ଡିଏ ପୁରୁଣା ନିମନ୍ତ୍ରଣ ପତ୍ରର ବୁକ୍‌ପୋଷ୍ଟ ଲଫାପା କାଟକରି, ଛପା ଠିକଣା ଉପରେ ମହୀପାଳର ହାତ ଲେଖା—"ମେନି ହାପି ରିଟର୍ଣ୍ଣସ୍ ଅଫ୍ ଦ ଡେ ।" ( ଏଇ ଖୁସି ଦିନଟି ବାରମ୍ବାର ଆସୁ । ) Please see 117a. after 117b. "ହଁ ।"

"ମୁଁ ଏଇନେ ସାହିବାଲାଙ୍କ ପାଖରୁ ଶୁଣିଲି । ସେଇ କାଗଜ ଖଣ୍ଡିକୁ ଯତ୍ନରେ ରଖିବା ଦରକାର । ତାଙ୍କୁ ପଢ଼ି ଆଗାମୀ ପୁରୁଷ ଆମ ଜେନେରେସନ ଉପରେ ଛେପ ପକାଇବ ।"

"ହଉ, ଆଗାମୀ ପୁରୁଷର କଥା ଛାଡ଼ନ୍ତୁ । ମୋର ତ ବର୍ତ୍ତମାନର ସମସ୍ୟା ।"

କନ୍ୟା କହୁ କହୁ ନିଜର ବସ୍ତ୍ରର ମଗ୍ନ ମୁଣ୍ଡଟିକୁ ନୁଆଁଇ ଦେଲା । ପାଦ ଦୁଇଟିର ବୁଢ଼ା ଆଙ୍ଗୁଠି ଓ ଅନ୍ୟ ଆଙ୍ଗୁଠି ଗୁଡ଼ିକ କଇଁଚ ଭଳି କରି ଖେଳିବାକୁ ଲାଗିଲେ । ତାର ଦେହେସିକୁ ଭଲ ଭାବରେ ଦେଖିବାର ସୁଯୋଗ ପାଇଲା ସଜ୍ଜନ । କହ୍ଲିଆ ରଙ୍ଗର ଦୁଇଟି କୁଞ୍ଚିତ ଅଳକ ଦୁଇ କାନ ପାଖରେ ଝୁଲୁଥାଏ—ବଡ଼ ସୁନ୍ଦର—କେତେ କଷ୍ଟରେ ପଡ଼ିଛି ବିଚାରୀ । ମୋ ପାଖକୁ ଆସିଛି ତାର କଷ୍ଟ ଲାଘବ କରିବା ପାଇଁ । କେତେବଡ଼ ଭରସାରେ –

ଟିକିଏ ଆବେଗ ଭରା କଣ୍ଠରେ ସଜ୍ଜନ କହିଲା ।—" ଆପଣ ତାଙ୍କ ପାଇଁ କି ମୁଁ ଏଇ ବର୍ତ୍ତମାନତ ସାହିବାଲାଙ୍କଠାରୁ ଶୁଣିଥିଲି । ଏଇମାନେ ସତ୍ୟ ଗୋପନ କରିବାକୁ ଚାହୁଁଛନ୍ତି । ଏଇମାନେ ଆମ ଭବିଷ୍ୟତ ବଂଶଧରଙ୍କୁ ଦୁର୍ବଳ କରି ଗଢ଼ିବାକୁ ଚାହୁଁଛନ୍ତି ।

ଆରେ । ସେ ଭବିଷ୍ୟତ କଥା ଛାଡ଼ନ୍ତୁ । ସମସ୍ୟାଟାତ ବର୍ତ୍ତମାନର । ଏହା କହି କନ୍ୟା ନିଜର ଚିନ୍ତାଗ୍ରସ୍ତ ମୁଣ୍ଡକୁ ତଳକୁ କଲା । ଦୁଇପାଦର ଆଙ୍ଗୁଠିଗୁଡ଼ିକ ଭୂଇଁ ଉପରେ ଗାର କାଟୁଥିଲା । ଏତେବେଳେ ତାକୁ ପ୍ରାଣଭରି ଦେଖିବାର ସୌଭାଗ୍ୟ ସଜ୍ଜନକୁ ମିଳିଲା । କାନରେ ଦୁଇଟି ଝୁମୁକା ତାକୁ ବେଶ୍ ମାନୁଥିଲା । ଏଇ ସୁନ୍ଦରୀ । ବିଚାରୀ କେତେ କଷ୍ଟ ପାଉଛି ? ସେ ସେଇ କଷ୍ଟରୁ ଉଦ୍ଧାର ପାଇବା ପାଇଁ ମୋ ପାଖକୁ ଆସିଛି । କେତେବଡ଼ ଆଶା ନେଇ ଆସିଛି ।

ହଁ । Please See — ! ସେ ଉତ୍ସାହର ସହ କହିଲା ଆପଣ କାର୍ଯ୍ୟାନୁଷ୍ଠାନ କରିବାକୁ ଯାଉଛନ୍ତି ତ ? ମୁଁ ହୃଦୟର ସହିତ ଆପଣଙ୍କୁ ସାହାଯ୍ୟ କରିବି ।

ତା କାନରେ ଶାସ୍ତ୍ରୀଜୀଙ୍କ ଉପଦେଶ ଶୁଣାଯାଉଥିଲା 'ପରୋପକାରଃ ପୁଣ୍ୟାୟ ପାପାୟ ପରପୀଡ଼ନଂ ।'

ବନକନ୍ୟା ମୁଣ୍ଡ ଟେକିଲା । ଆଖିରେ ଆଖି ମିଶିଯିବାରୁ ସେ କହିଲା— ନିଜର ବଦନାମ ପାଇଁଯାଇ ଚିନ୍ତା ନାହିଁ । ମୋ ଭଳି ଭାଇଙ୍କ ପାଇଁ ନ୍ୟାୟ ବିଚାର ଲୋଡ଼େ ।

ପାମ୍ପଲେଟରେ ଦିଆ ଯାଇଥିବା ଡ୍ରାଇଙ୍ଗ୍ ଡିକ୍ଲାରେସନ୍ ... ।

କନ୍ୟା ବିଦ୍ରୂପ ହସି ହସି କହିଲା—"ବାବୁ ଶାଳଗ୍ରାମ ଉପରେ ଯାଉଥିବା ଦୁଧରୁ ଲାଭ ଉଠାଉଛନ୍ତି । ମୋର ବାପାଙ୍କୁ ବା କାହିଁକି ଭଲ ଲାଗନ୍ତା ନାହିଁ । ଖୁନ୍ କରି ମଧ୍ୟ ଖୁନି ଫାସିକାଠରୁ ଓହ୍ଲାଇ ଫାସିର ଡୋର ନ ଲାଗି ଫେରିଆସିଲା । ଏଇତ ଆମର ସ୍ୱରାଜ୍ୟର ନ୍ୟାୟ ।

ସଜ୍ଜନ ଚିନ୍ତା ମଗ୍ନ ହେଲା । କନ୍ୟା ପୁଣି କହିଲା—"ମୃତ୍ୟୁ ସମୟରେ ମଧ୍ୟ ଭାଇଜଙ୍କ ଠାରୁ ଆଉ ଏକ ଫାଇଦା ଉଠାଗଲା । ଷ୍ଟେଟମେଣ୍ଟ ଉପରେ ଯୋରକରି ଦସ୍ତଖତ କରାଇ ନିଆଗଲା । ସେ ଦିନର ଅନୁଭବ—କେବେ ଭୁଲି ପାରିବି ନାହିଁ । ଜଣେ ମାଜିଷ୍ଟ୍ରେଟ୍, ପୋଲିସ ଇନ୍‌ସପେକ୍ଟର, ଜଣେ ଡାକ୍ତର ଆଉଜଣେ ସମ୍ମାନିତ ନେତା—ଏମାନେ ଆମର ନ୍ୟାୟର ପ୍ରତୀକ ନା ? କିନ୍ତୁ ନ୍ୟାୟକୁ ଏମାନେ ହତ୍ୟା କରୁଥିଲେ । ଅନ୍ତିମ ବିଦାୟି ଆତ୍ମା ମୃତ୍ୟୁକୁ କେତେ ବାଜେ ଅନୁଭବ ନେଇ ନ ଥିବ ! ଶେଷ ସମୟରେ ମଧ୍ୟ ତା ଠାରୁ ଜବରଦସ୍ତ ଫାଇଦା ଉଠାଗଲା ।

"ସ୍କାଉଣ୍ଡ୍ରାଲ୍ସ"

"ଇଲେକ୍ସନର ଗୋଟିଏ ସ୍କୁଲ୍ ପାଇଁ ମାନବିକତାକୁ ବଳି ଦିଆଯାଉଛି । ଏଇ ଆମ ସଭ୍ୟତାର ପ୍ରତ୍ୟକ୍ଷ ନମୁନା ।

ମିନିଟିକ ପାଇଁ କୋଠରୀ ଭିତରେ ନୀରବତା ଖେଳିଗଲା । କନ୍ୟା ପୁଣି କହିଲା—ଏମାନେ ତ ଛୋଡ଼ ଜାଣିଶୁଣି ନୀଚସ୍ଥାନ । କିନ୍ତୁ ଆଜି ପାର୍ଟିର ଲୋକଙ୍କ ବ୍ୟବହାର ଦେଖି ମୋତେ ଯେଉଁ ଦୁଃଖ ହେଉଛି ତାହା କହିପାରିବି ନାହିଁ ।

ସଜ୍ଜନର ଆଖିରେ ପ୍ରଶ୍ନ । କନ୍ୟା କହିବାକୁ ଲାଗିଲା—"ଏଇ ପାମ୍ଫଲେଟଟି ସହିତ ଆଜି ସକାଳେ ଭଲେବାବୁ ଓ ଆଉ ଦୁଇ ତିନିଜଣ ସାଥୀ । ଆଉ ଖଣ୍ଡିଏ ପାମ୍ଫଲେଟର ବିଷୟ ମୋ ପାଖକୁ ଆଣିଥିଲେ । ସେଥିରେ ମଧ୍ୟ ଏଇ ଅନ୍ୟାୟ ଅପେକ୍ଷା ପାର୍ଟି ଓ ଭଲେବାବୁଙ୍କ ମର୍ଯ୍ୟାଦା ବଢ଼ାଇବାର ଫନ୍ଦି ମୁଖ୍ୟ ରୂପ ନେଇଥିଲା । ମୋର ଦସ୍ତଖତ ଚାହୁଁଥିଲେ । ମୁଁ ମନା କରିଦେଲି । —ମୁଁ ପଚାରୁଛି କ'ଣ ଏଇ ସ୍ତ୍ରୀର ମର୍ଯ୍ୟାଦା । କୌଣସି ପାର୍ଟି ଓ ରାଷ୍ଟ୍ରର ମର୍ଯ୍ୟାଦା ଠାରୁ କମ୍ ? ଏଇ ଅନ୍ୟାୟ କ'ଣ ସମ୍ପୂର୍ଣ୍ଣ ସମାଜ ପ୍ରତି ଅନ୍ୟାୟ ନୁହେଁ । ସଜ୍ଜନ ନିଜେ ତା'ର ହୃଦୟକୁ ଅଣ୍ଡାଳିବାକୁ ଲାଗିଲା । "ସମସ୍ତେ ନିଜର ସ୍ୱାର୍ଥ ଦେଖୁଛନ୍ତି ସଜ୍ଜନବାବୁ, ମୋର ତ ମଣିଷ ଜାତି ଉପରୁ ସମ୍ପୂର୍ଣ୍ଣ ବିଶ୍ୱାସ ତୁଟିଯାଉଛି ।"

ସଜ୍ଜନ କିଛି କହିଲା ନାହିଁ । ତାର ମୌନତିି ସମ୍ମତି ସୂଚକ ଥିଲା । କନ୍ୟା ନିଜର ପର୍ଶ ଖୋଲି ଖଣ୍ଡିଏ କାଗଜ ବାହାର କରୁ କରୁ କହିଲା—ମୁଁ ଗୋଟିଏ ଛୋଟ ଲେଖାଟିଏ ଲେଖିଛି । ଆପଣଙ୍କଠାରୁ ଏତିକି ସାହାଯ୍ୟ ଚାହୁଁଛି ଯେ ଆପଣ ତାକୁ କୌଣସି ଖବର କାଗଜରେ ଛପାଇଦେବେ ।

ସଜ୍ଜନ ଫୁଲସ୍କେପ୍ ସାଇଜର ଚାରିପୃଷ୍ଠା ଲେଖା ପଢ଼ିବାରେ ଲାଗିଗଲା । ବିନ କନ୍ୟାର ଦୃଷ୍ଟି କୋଠରୀ ଭିତରେ ଏପଟ ସେପଟ ହୋଇ ମଝିରେ ମଝିରେ ସଜ୍ଜନର ମୁହଁର ପ୍ରତିବିମ୍ବ ଲକ୍ଷ୍ୟ କରୁଥାଏ ।

ପଢ଼ିସାରି ସଜ୍ଜନ ଲମ୍ବା ନିଶ୍ୱାସ ଛାଡ଼ି କହିଲା—ଆପଣ ଖୁବ୍ ଭଲ ଲେଖିଛନ୍ତି । —କିନ୍ତୁ ମୋର ମତ ଯେ ଏହାକୁ ଖବର କାଗଜରେ ଛପନ୍ତୁ ନାହିଁ । ଇଲେକ୍ସନ୍ ଧନ୍ଦାରେ ଏଇ ଲେଖାଟା ଛପିଯିବ । ଏ ତ ପାମ୍ଫଲେଟର ଯୁଗ ।

"କିନ୍ତୁ ମୋର ତ ଆଉ କିଛି ଉପାୟ ନାହିଁ ।"

ମୁଁ କର୍ଣ୍ଣେଲଙ୍କୁ କହିବ । ସେଇ ଯେ ମହିପାଳ ସାଙ୍ଗରେ ଆପଣଙ୍କ ଏଇଠି ଦେଖା ହୋଇଥିଲା । ଅମୀନାବାଦରେ ଭିକ୍ଟୋରିଆ ମେଡ଼ିକାଲ ଷ୍ଟୋର୍ସ ଅଛି ନା—ସେ ତା'ର ପ୍ରୋପାଇଟର । ଇଲେକ୍‌ସନ ଧନ୍ଦା ତାଙ୍କୁ ଭଲଭାବେ ଜଣା । ଆମେ ବର୍ତ୍ତମାନ ଯିବା—ମୁଁ, ଆପଣ ମୁଁ କର୍ଣ୍ଣେଲ, ମହିପାଳ ସମସ୍ତେ ବସି ଗୋଟାଏ କିଛି ସ୍ଥିର କରିବା । ମୋର କହିବାର କଥା ହେଉଛି ଯେ ଇଲେକ୍‌ସନ ଧନ୍ଦା ଭିତରୁ ଏଇ ଲେଖାଟି ଉପରକୁ ଉଠି ନ ଆସି ପାରିଲେ ପବ୍ଲିକ୍ ଉପରେ ତା'ର ପ୍ରଭାବ ଠିକ୍‌ଭାବେ ପଡ଼ିବ ନାହିଁ ।

ମୁଁ ସାରାଜୀବନ ପାଇଁ ଆପଣଙ୍କ ପାଖରେ କୃତଜ୍ଞ ରହିଲି ।

ସଜ୍ଜନଙ୍କୁ କଥାଟା ଖୁବ ଭଲ ଲାଗିଲା । ପୁଣି ଏଇ ଭଲ ଲାଗିବା ଭିତରେ ନିଜର ଗୋପନ ଇଚ୍ଛାର ଭଗ୍ନାଂଶ ଦେଖି ଲଜ୍ଜା ମଧ୍ୟ ଲାଗିଲା । କହିଲା—ମତେ କିଛି ଖରାପ ଭାବବେ ନାହିଁ । ଏଇ କାମ ଆପଣଙ୍କର ଯେତିକ ମୋର ମଧ୍ୟ ସେତିକ । ଏହା ପ୍ରତ୍ୟେକ ନ୍ୟାୟବାନ ବ୍ୟକ୍ତିର, ତେଣୁ କିଏ କୃତଜ୍ଞତା ଦେବ, କିଏ ବା ଗ୍ରହଣ କରିବ ?

ବନ କନ୍ୟାର ଆଖି ଦୁଇଟି ଶଙ୍କା ଓ ଏବଂ ସ୍ନେହ ମିଶ୍ରିତ ହୋଇ ଝରଝରେ ତଳକୁ ନଇଁଗଲା । ଚୂପ୍ ଚାପ୍ ନଇଁ ଆସିଲା ।

ଜଳଖିଆ ଉପରେ ସଜ୍ଜନର ଦୃଷ୍ଟି ପଡ଼ିଲା ପୁଡ଼ିଆ ଖୋଲୁ ଖୋଲୁ ସେ କହିଲା—ଆସନ୍ତୁ ଟିକେ ଜଳଖିଆ କରିବା । ଜିଲପି ବୋଧହୁଏ ଥଣ୍ଡା ହୋଇ-ଯିବଣି ତଥାପି— । ଶେଷରେ···

ପୁଡ଼ିଆ ଗୁଡ଼ିକ ଫିଟାଉ ଫିଟାଉ ଖବର କାଗଜର ସ୍ୱରଶବ୍ଦ ଶୁଭାଗଲା । ସଜ୍ଜନ ପୁଣି ପଚାରିଲା—ସ୍ୱା' ସହିତ ଚ୍ୱା' ନିହାତ ଦରକାର । ନା ?

ମୁଁ ତିଆରି କରୁଛି । କହି କନ୍ୟା ଉଠିଗଲା । କୋଣରେ ଷ୍ଟୋଭ ଟେବୁଲ ଉପରେ ଚ୍ୱା'ର ସମସ୍ତ ସରଞ୍ଜାମ ରଖାଯାଇଥିଲା ।

ସଜ୍ଜନ ଦୁଧ ଆଣିବାକୁ ବଜାରକୁ ଗଲେ । କର୍ଣ୍ଣେଲ ଘରୁ ସିଧା ଶାସ୍ତ୍ରୀଙ୍କ ଘରକୁ ଯିବାହେତୁ ସେ ଦୁଧ ବୋତଲ୍‌ଟିକୁ ସାଙ୍ଗରେ ଆଣି ପାରି ନ ଥିଲେ ।

ଚ୍ୱା' ପିଉ ପିଉ ସଜ୍ଜନ କଥା ଆରମ୍ଭ କଲା—ଆପଣଙ୍କର ଏଠିକି ଆସିବା ଟିକିଏ ପୂର୍ବରୁ ମୋର ଗୋଟିଏ ସୋଶିଏଲ ସାର୍ଭିସର ଅନୁଭୂତ ହେଲା । ଏଇ ଗଳୀ ଆଗକୁ ଜଣେ ଓକିଲବାବୁ ରହନ୍ତି ପ୍ରବୀଣ ଲୋକ । କଥାବାର୍ତ୍ତାରେ ବଡ଼

ଇଣ୍ଟେଷ୍ଟିଙ୍ଗ୍ ଜଣା ପଡ଼ୁଛନ୍ତି । ହୁଁ, ତାଙ୍କର ଶ୍ରେଷ୍ଠ ପୁଅର ବୋହୂଟି ପାଗଳୀ । ଆଜି ହଠାତ୍ ଗଳି ଭିତରକୁ ଚାଲି ଆସି ଖୁବ୍ ଉତ୍ପାତ କଲା । ପରିସ୍ଥିତି ସମ୍ଭାଳିବାକୁ ଯାଇ ମୁଁ ତା ଗାଲରେ ଗୋଟେ ଚଟକଣା ବସାଇଲି ।

ଜାଣିଶୁଣି ପ୍ରଥମଥର ଜଣେ ସ୍ତ୍ରୀଲୋକ ଉପରକୁ ହାତ ଉଠାଇଲି । ...ଅନେକ ସମୟ ଧରି ମୁଁ ସେଇ ଅନୁଭୂତିକୁ ମୋ ହାତରେ ଅନୁଭବ କରୁଥିଲି ।

"ସେ ପାଗଳ କେମିତି ହେଲା ?"

"ଆପଣଙ୍କର ଖାଉଜ ଏକପ୍ରକାରର ଅତ୍ୟାଗ୍ରହ ସହିଥିଲା—ଆଉ ଗୋଟିଏ ପ୍ରକାରର । ଅନ୍ତିମ ଫଳ ଯଦିଓ ଏକାଭଳି ତଥାପି ତାର ପ୍ରକାଶର ରୂପ ଅଲଗା । —ବାସ୍, ଏତିକି ତଫାତ୍ । ସଜ୍ଜନର ସ୍ୱରରେ ବେଦନା ଓ ବସ୍ତୁର ଗଭୀର ସ୍ପର୍ଶ ଥିଲା । କନ୍ୟା ତାକୁ ନିର୍ନିମେଷ ନୟନରେ ଦେଖୁଥିଲା ।

ସଜ୍ଜନ ଟିକିଏ ରହି ପୁଣି ନୂତନ ଉତ୍ସାହ ନେଇ କହିଲା—"ଓକିଲ ସାହେବଙ୍କର ତନୋଟିଯାକ ପୁଅ ଏମିତି ଭାଗ୍ୟବାନ ହୋଇ ଉଠିଲେ ଯେ ଏଣିକି ସେମାନେ ନିଜ ବାପ ମା ଠାରୁ ସମ୍ପର୍କ ତୁଟେଇ ସାରିଲେଣି । ବଡ଼ପୁଅ ଡାକ୍ତରୀ ପଢ଼ିବାକୁ ଇଂଲଣ୍ଡ ଯାଇଥିଲା, ସେଇଠି ଗୋଟାଏ କାଉଣ୍ଟିରେ ପ୍ରେକ୍ଟିସ୍ କରି ରହିଗଲା । ନିଜର ପିଲାପିଲିଙ୍କି ମଧ୍ୟ ସେଠାକୁ ନେଇଗଲା । ଆଜିକାଲି ତ ତା' ସହିତ ଆଉ କୌଣସି ସମ୍ପର୍କ ନାହିଁ । ବର୍ଷକେ—ଛ' ମାସରେ ଚିଠି ଖଣ୍ଡିଏ ଆସିଲେ ହେଲା । ଦ୍ବିତୀୟଟି ଆଇ, ସି, ଆସ, । ସେ ବି ଆଉ ଏଇ ଗଳି—ସାହି ଏବଂ ପୁରୁଣା କାଳିଆ ବାପ—ମାଙ୍କ ସହିତ ସମ୍ପର୍କ କାହିଁକି ରଖିବ ? ହୁଁ ଟଙ୍କା ପଇସାରେ ସାହାଯ୍ୟ କରେ । ତୃତୀୟ ବାବୁ ଜଣକ ମିଲିଟାରୀରେ । ମାନେ ମିଜାଜରେ ମଧ୍ୟ ମିଲିଟାରୀ ବନ୍ଧୁକର ମାଲିକ—କେପ୍ଟେନ ସୋ-ଏଣ୍ଡ-ସୋ । ତାଙ୍କର ନିଜର କଲାଟିଁଅ ଭଉଣୀ ସହିତ ସେମିତିଓ ଜୁଲିଏଟର ସମ୍ପର୍କ ଥିଲା । ବଢ଼ି ବଢ଼ି ବିବାହର ରୂପ ନେଲା । ଆଉ ଏଇ ସ୍ତ୍ରୀଟି ପ୍ରାପ୍ତ ସାତ—ଆଠବର୍ଷ ହେଲା କଣ୍ଡେମ୍ନେସଡ଼ ମାଲ ଭଳି ଏଇଠି ପଡ଼ିଛି । ଓକିଲ ବାବୁ ନିଜ ପୁଅର କାର୍ଯ୍ୟ କଳାପରେ ଏତେ ଡରି ଯାଇଛନ୍ତି ଯେ ସେ ଓ ତାଙ୍କ ବୁଢ଼ୀ ସବୁବେଳେ ବଡ଼ ନର୍ଭସ ହୋଇ ବୋହୂ ଉପରେ କଡ଼ା ନଜର ରଖିଲେ । ଫଳ ହେଲା ଏଇ ଯେ ମନର ଇଚ୍ଛାଗୁଡ଼ିକ ସପ୍ରେସ୍ ହୋଇଯାଇ ଶେଷକୁ ଏଇ ଅବସ୍ଥାରେ ପହଞ୍ଚିଛି । କହିସାରି ଦୁଇମିନଟ୍ ଚିନ୍ତାମଗ୍ନ ଦୃଷ୍ଟିରେ ସଜ୍ଜନ ବନକନ୍ୟା ଆଡ଼କୁ ଚାହିଁ ଏକ ଢୋକରେ ଅଣ୍ଡା ସ୍ଲ'କୁ ଶେଷକରି କପ୍‌ଟିକୁ ଥୋଇଦେଲେ ।

କନ୍ୟା ଅତି ସରଳ ଭାବରେ ପ୍ରଶ୍ନକଲା—"କିନ୍ତୁ କ'ଣ ହେବ ? ଏସବୁ କେତେଦିନ ଚାଲିବ ? ସ୍ବାର୍ଥର କ'ଣ ଶେଷ ନାହିଁ ?

" ହେବ , ନିଶ୍ଚୟ ହେବ ।। "

" କେମିତି ହେବ, ମୁଁ ବୁଝି ପାରୁନାହିଁ ।। ଆଜି ସକାଳୁ ମୋତେ ଗୋଟିଏ ନୂଆ ଚିନ୍ତା ଘାରୁଛି ।।······ମୁଁ ଜାଣେ ନା ଆପଣଙ୍କର ପଲିଟିକାଲ ଭ୍ୟୁଜ୍ କଣ ? କିନ୍ତୁ ମୋର କମ୍ୟୁନିଜିମ୍ ସହିତ ବୈର୍ଦ୍ଧିକ ସମ୍ପର୍କ ଅଛି ।। ତା'ତ ଆପଣ ଜାଣନ୍ତି ।। "

" ହୋଇଥିବ ।। ମୁଁ ଇଜିମ୍‌ର ଦୃଷ୍ଟିରେ କୌଣସି ସ୍ତ୍ରୀ ପୁରୁଷଙ୍କୁ ଦେଖେ ନାହିଁ ।। "

" ମୁଁ ଏଥିପାଇଁ କହିଲି ଯେ ଆଜିକାଲି ନିଜେ କହିବା ଏକ ଭୟଙ୍କର କଥା ।। ଯଦିଓ ସେଥିରେ ମଧ୍ୟ ଶହ ଶହ ହଜାର ହଜାର ଆପଣ ଓ ଆମ ଭଳିଆ ଲୋକ ଅଛନ୍ତି ।। ଆଚ୍ଛା, ଭଲ ବାବୁଙ୍କୁ ମୁଁ ତିନି ଚାରି ବର୍ଷ ହେଲା ଜାଣେ ।। ସେ ଏତେ ବେଶି ପାଠଶାଠ ପଢ଼ି ନାହାନ୍ତି ।। ତଥାପି ସେ ଜଣେ ପଲିଟିକାଲ ଓ୍ୟାର୍କର ।। ଆଉ ମୁଁ ସତ କହୁଛି - - ଲୋକ ଯାହା କହନ୍ତୁ ପଛକେ—ସେ ଜଣେ ସଚ୍ଚୋଟ ଲୋକ ।। ମୁଁ ତାଙ୍କର ମତବାଦକୁ ଆଦର କରେ ।।····· କିନ୍ତୁ ଆଜି ସକାଳୁ ତାଙ୍କ କଥା ସବୁ ଶୁଣି ମୋତେ ଜଣେ ନୂଆ ଲୋକକୁ ଦେଖିଲାଭଳି ଲାଗୁଛି ।। "

ସଜ୍ଜନ ବଙ୍କ ବ୍ୟକ୍ତିଙ୍କ ଭଳି ହସିଲା - - କହିଲା - - " ମୁଁ ଆପଣଙ୍କ ପଲିଟିକାଲ ଭ୍ୟୁଜ୍ ଉପରେ ଆଘାତ କରିବାକୁ ଚାହୁଁ ନଥିଲି ।। କିନ୍ତୁ ଏଥିରେ ତିଳେ ମାତ୍ର ସନ୍ଦେହ ହେଉ ନାହିଁ ଯେ କମ୍ୟୁନିଷ୍ଟ ମାନେ ଦାୟିତ୍ୱ ବାନ ହୋଇ ପାରନ୍ତି ନାହିଁ ।

"ଆପଣ ମାନଙ୍କର ଲଜିକ ଭୁଲ୍" ବନକନ୍ୟାର ସଲଖ ଆକ୍ଷେପ ଶୁଣି ସଜ୍ଜନର ମନରେ ଆଘାତ ଲାଗିଲା ।। ସେ ପ୍ରକୃତିସ୍ଥ ହେଲା ।। କନ୍ୟା କହିଲା - -" ଅନେକ ଦିନ ହେଲା ମୋ ମନରେ ଯେଉଁ କଥା କଷ୍ଟ ଦେଉଥିଲା ଆଜିର ଘଟଣାରେ ତାର ସମାଧାନ ହୋଇଗଲା ।। ଆଜି ମୋତେ ହଠାତ୍ ଜଣାଗଲା ଯେ ଫୁଟବଲ ମ୍ୟାଚ ପରି ରାଜନୈତିକ ଦଳ ଗୁଡ଼ିକର ସଙ୍ଘର୍ଷ ମଧ୍ୟ ଚାଲିଛି । ଜନତା ହେଉଛି ଫୁଟବଲ୍ ।। ମ୍ୟାଚ ତା'ର ନାଆଁରେ ଚାଲିଛି ।। ପଲିଟିକାଲ ପାର୍ଟି ଗୁଡ଼ିକର

ଖେଳାଳୀ ମାନେ ତାକୁ ହିଁ ଗୋଇଠା ମାରୁଛନ୍ତି ।। ଏହି ଇଲେକ୍‌ସନ ଆମ ଗଣ-ତାନ୍ତ୍ରିକ ସମାଜ—ବ୍ୟବସ୍ଥାର ଏଇ ରୂପଟି ଦେଖାଉଛି ।।

ସଜ୍ଜନ ମନ ଧ୍ୟାନ ଦେଇ ଶୁଣୁଥାଏ ।।

କନ୍ୟା କହି ଚାଲିଛି - -" ଉଣ୍ଟେ ବାବୁ ଯେଉଁ ଷ୍ଟେଟ ମେଂନ୍‌ଟି ତିଆରି ତିଆରି କରି ଆଣିଥିଲେ ସେଥିରେ ମୋ'ର ପିତାଙ୍କର ପାପ ଓ ଭାଉଜଙ୍କର ମୃତ୍ୟୁ ମଧ୍ଯ ପ୍ରକାଣ୍ଡ ଭାବରେ ଉଲ୍ଲିଖିତ ହୋଇଥିଲା ।। ସେଥିରେ କେବଳ କମ୍ୟୁନିଷ୍ଟ ପାର୍ଟି ଓ ଇଲେକ୍‌ସନର ମହତ୍ତ୍ୱ ଥିଲା ।। ଏହା ବିରୁଦ୍ଧରେ ମିଥ୍ୟା ପ୍ରଚାର କାହିଁକ ? ହୋଇଛି, ତାହାମଧ୍ଯ ସଫା ସଫା ବଖାଣି ଦିଆଯାଇଥିଲା ।। - - ମୁଁ ପଚାରିଲି—ଠିକ୍ ଏଭଳି ଉତ୍ସାହ ଆପଣଙ୍କ ଜଣେ ସ୍ତ୍ରୀ ଉପରେ ଅତ୍ୟାଚାର ହେଉଥିବା ବେଳେ ଆସିଲା ନାହିଁ କାହିଁକ ? କହିଲେ ପାର୍ଟି ଏହି ଆଦର୍ଶଗୁଡ଼ିକ ନେଇ ଚାଲିଛି ।। ଯେତେବେଳେ ପାର୍ଟି ଜିଣିବ, ସମାଜ ମଧ୍ଯ ବଦଳିବ ।। ଆପଣଙ୍କୁ ସତ କହୁଛି ମୋ ମନରେ ଶାନ୍ତି ଆସିଲା ନାହିଁ ।। ମୋତେ ଜଣାଗଲା ଏମାନେ ସମାଜକୁ ଗୋଟିଏ ବଡ଼ ଜେନେରାଲ ଟର୍ମସରେ ଦେଖୁଛନ୍ତି ।। ଯେଉଁ ବ୍ୟକ୍ତିର ଯନ୍ତ୍ରଣାର ସାମୂହିକ ରୂପ ଦେଖି ଏଇ ରାଜନୈତିକ ସିଦ୍ଧାନ୍ତ ତିଆରି ହୋଇଛି, ତା'ର ବେଦନା ମଧ୍ଯ ଆମେ ଆଜି ଭୁଲି ଯାଉଛୁ ।। ଆମର ଦୃଷ୍ଟି ମଧ୍ଯ ବର୍ତ୍ତମାନ କେବଳ ପଲିଟିକାଲ୍ ହୋଇ ରହିଯାଇଛି ।। କେବଳ ପଲିଟିକାଲ୍ ଘଣା ବଳଦ ଭଳି ନିଜର ସ୍ୱଭାବ ନେଇ ଉଦ୍ଦେଶ୍ୟହୀନ ଭାବରେ ଘୂରୁଛି । କାମ କିଛି ନାହିଁ ।।

"ଆପଣ ଠିକ୍ କହୁଛନ୍ତି ।। ଏକବାରେ ମୋର ମନକଥା କହୁଛନ୍ତି ।। ମୁଁ ପଲିଟିକ୍‌ସକୁ ଘୃଣାକରେ ।। 'କହୁ କହୁ ସଜ୍ଜନ କେଟଲି ଉଠାଇ ଦେଖିଲା ।। କହିଲା—କଥାବାର୍ତ୍ତାରେ ଚା 'ଏକବାର ଥଣ୍ଡା ହୋଇଗଲାଣି ।। ଆଉ ଥରେ ତିଆରି କରିବ ?"

"ଆପଣଙ୍କ ପାଇଁ କରିବ - - ମୁଁ ତ ବର୍ତ୍ତମାନ- - -"

'ହିଁ, ମନ ମୋର ବି ଖରାପ ହୋଇଗଲା ।।······ଦେଖନ୍ତୁ ଏଇ ଚା -- କଫି ସିଗାରେଟ ସବୁ ଫୁରସତ ବେଳର ସଙ୍ଗୀ ।। ମୁଣ୍ଡଟାରେ କୌଣସି ଚିନ୍ତା ଖେଳୁ ଥିବାବେଳେ ଏଇ ସବୁର ପ୍ରୟୋଜନ ହୁଏନାହିଁ ।। "କହୁ କହୁ ସଜ୍ଜନ ସିଗାରେଟ କୋସ୍ କାଢ଼ିବାକୁ ପକେଟ୍‌ରେ ହାତ ପୂରାଇଲା ।

କନ୍ୟା ଚଟକନା ମନାକଲା···'ହାତ ଧୁଅନ୍ତୁ ।। ଜିଲପି ଖାଉଥିଲେ ପରା ଅଠା ହାତରେ ଲାଗି ନଥିବ ?

ସଜ୍ଜନ ଅପ୍ରତିଭ ହୋଇ ତା' ଆଡକୁ ଚାହିଁଲ ଏବଂ ବାଆଁ ହାତରେ ସିଗାରେଟ କେସ ବାହାର କରି କନ୍ୟାକୁ କହିଲ' ।। ଆଉ, ଇଫ୍ ୟୁ ଡୋଣ୍ଟ ମାଇଣ୍ଡ—ତା' କଣ ଉଆର କରି ନଅନ୍ତୁ ।। ··ଆରେ ଆରେ—ଖାଆନ୍ତୁ ନା ।। ପୁଣି ଧୀରେ ଧୀରେ ଗୁ ' ଉଆର ହେଉଥିବ ।

'ନା, ଖାଇ ସାରିଲିଣି ।

'ନା—ନା, ସେକଥା ହେବନି ।। ଅନ୍ୟାୟକୁ ହଟାଇବାକୁ ଚାହାଁନ୍ତି ଯଦି ନଜେ ଅନ୍ୟାୟୀ ହୁଅନ୍ତୁନାହିଁ ।। ପୁରୁଷମାନଙ୍କ ସହିତ ସମାନ ହେବାକୁ ଚାହାନ୍ତି ତ ବାକି ଅଧା ଜଳଖିଆ ଶେଷ କରନ୍ତୁ ।।' ସଜ୍ଜନ ଆଖି ନଚାଇ ଅଭିନୟ ଭଙ୍ଗୀରେ କହିଲେ ।

କନ୍ୟା ହସିଲ ।। କହିଲ—ନଜ ସୁବିଧାରେ ନ୍ୟାୟ ଚାହୁଁଛନ୍ତି ନା ମୁଁ କେବେ ଯଦି ନ୍ୟାୟ ଚାହେଁ ତେବେ ଆପଣ ବୋଧହୁଏ ମନା କରିଦେବେ ।

"କହୁ କହୁ ତା'ର ସ୍ୱରରେ ନାରୀର ସୁଲଭ ଅଭିମାନ ରହିଗଲ ।"

ସଜ୍ଜନ ପୁଣି ଥରେ ଖୁସି ହୋଇଗଲେ । ସେବ କନ୍ୟାର ମନୋଭାବ ଏକ ସରଳ ରେଖା ରୂପରେ ପ୍ରକାଶିତ ହୋଇ ବନ୍ଧୁରେ ସଚେତ ଲୀନ ହୋଇଯାଉଥିଲ ତାର ସମସ୍ତ ରଙ୍ଗ ସଫେଦ୍ କିନ୍ତୁ ସତେଜ ।

ସଜ୍ଜନ ମୁରୁକି ହସି କହି ବନା ପରୀହାରେ ଆପଣ ମୋ' ଉପରେ ଏକ ତରଫା ଡ଼ିଗ୍ରୀ - - -

ନଜର ଅକସ୍ମାତ୍ ଭୁଲକୁ ମାନଯାଇ କନ୍ୟା କହିଲ—" ପର୍ଟିକୁଲାର ଆପଣଙ୍କୁ କହୁନାହିଁ ।। ମୋର ମନ୍ତବ୍ୟ ସମସ୍ତ ପୁରୁଷମାନଙ୍କ ପ୍ରତି - -"

"ଦେଖନ୍ତୁ ଆଜ୍ଞା, ଆପଣ ଯଦି ନାରୀବାଦ ବାହାର କଲେଣି ତେବେ ମୋର—ଆଉ ଆପଣଙ୍କର ନିଶ୍ଚୟ ଝଗଡ଼ା ହୋଇଯିବ ।। ସ୍ତ୍ରୀ କ'ଣ କମ ହତ୍ୟା କାରିଣୀ ? ଆଜ୍ଞା, ସ୍ତ୍ରୀ ମାନେ ସ୍ୱାମୀଙ୍କୁ ପୂଜା ନଜ ପାଦୁକାରେ ସ୍ୱାମୀମାନଙ୍କୁ ପୂଜା କରିବାର ମୁଁ ଦେଖିଛି,

କନ୍ୟା ହସିଲ ।।

"ଏଇ କିଛି ଦିନ ତଳେ ଖଣ୍ଡିଏ ଉର୍ଦ୍ଦୁ ନଭେଲ୍ "ଉମାରିବଜାନ ଅଦା" ପଢ଼ିଥିଲି । ସେଥିରେ ଜଣେ ବୁଢ଼ା ମିସ୍ତାଙ୍କ କଥା ଅଛି । ତାକୁ ତାଙ୍କର

ଉଲେଭେଡ଼ ନଜର ଅନ୍ୟ ପ୍ରେମୀମାନଙ୍କୁ ଖୁସି କରିବାକୁ ତାଙ୍କୁ ବାରମ୍ବାର ଗଛରେ ଉଠିବା ପାଇଁ ଆଦେଶ ଦେଉଥିଲେ ।"

କନ୍ୟା ପୁଣି ହସିଲା । ହସି ହସି କହିଲା—"ସେ ଅପ୍ସରାକୁ ଏଇଥିପାଇଁ ଯୋଗ୍ୟ । ହେଉ, ଆପଣଙ୍କ କଥା ମାନୁଛି । ବେଳେବେଳେ ସ୍ତ୍ରୀମାନେ ବଡ଼ ଅତ୍ୟାଚାରିଣୀ ହୋଇଉଠନ୍ତି ।"

କଲେଜିଆ ପର୍ବ ଶେଷହେଲା । ପଢ଼ା କାଗଜ ସବୁ ଓ୍ୱେଷ୍ଟପେପର ବକ୍ସରେ ପକାଇଲା । କେଟଲୀ ସଫାହୋଇ ପୁଣି ପାଣି ବସିଲା ।

ସଜ୍ଜନ ଗଦି ଉପରେ ସୁସ୍ଥହୋଇ ବସି ସିଗାରେଟ ବାହାରକରି ଲଗାଇଲା ଏବଂ ଦୀର୍ଘ ନିଶ୍ୱାସ ପକାଇଲେ । ଏତେବେଳେ ସଜ୍ଜନ ମନରେ ବିଚିତ୍ର ଉତ୍ସାହଥିଲା ବନକନ୍ୟାର ଉପସ୍ଥିତିରେ ସେଇ ଶ୍ରେଷ୍ଠ କୋଠରିଟି ଏକ ବିରାଟ ସଂସାର ହୋଇଉଠିଥିଲା । ଇଜେଲ ଉପରେ ରଖାହୋଇଥିବା ଅଧାଗଢ଼ା ଚିତ୍ରଟିକୁ ଦେଖୁଥିଲା ।

ହଠାତ୍ ସଜ୍ଜନ ପ୍ରଶ୍ନ କରିଥିଲା, ଏଇ ବନକନ୍ୟା ନାଆଁଟି ଆପଣ ନିଜେ ରଖିଛନ୍ତି ନା ଆପଣଙ୍କ ପେରେଣ୍ଟସ । କନ୍ୟା ଟିକେ ହସିଲା—'କାହିଁକି ପଚାରିଲେ ?"

ସଜ୍ଜନ ଓଠରେ ସିଗାରେଟ ଚାପିରଖି ବେଖାତି ଭାବେ ଉତ୍ତର ଦେଲା—ଏଭଳି ନାଆଁ ଆମର ଏଠାରେ କମନ ନୁହେଁ ।—କେବେ ବଦଳାଇଲେ ଆପଣ ? ହାଇସ୍କୁଲର ଫର୍ମ ଫିଲପ୍ କଲାବେଳେ ?"

"ଆପଣ ତ ଜ୍ୟୋତିଷ ହୋଇ ଗଲେଣି ।"

"ଆପଣ ନିଜେ ଭାବିଥିଲେ ନା ଆଉକିଏ—"

"ମୁଁ ନିଜେ ଭାବିଥିଲି ଆପଣଙ୍କୁ ଏ ନାଆଁଟା ଲାଗୁଛି ?"

"ହଁ-ହଁ, ଭଲ ସାଧାରଣ ଭାଷାରେ କହିଲେ ହେବ ଜଙ୍ଗଲୀ ଝିଅ ।" ଦୁହେଁ ହସିଲେ ।

କନ୍ୟା ଚିତ୍ରଟିକୁ ଦେଖି ପଚାରିଲା— "ଏଇଟା ସତ୍ୟନାରାୟଣ କଥାର ଚିତ୍ର ନା ? ଭଲ ହୋଇଛି । ଇଏତ ମହାରାଷ୍ଟ୍ରୀ ପରିସ୍ଥିତି । କେଉଁଠି ସ୍କେଚ କରିଥିଲେ ।"

"କୋହ୍ଲାପୁରରେ ।"

"ଆପଣଙ୍କୁ ଏଇ 'ସୋନାଲୁ' ଗନ୍ଧବ ଲୋକଙ୍କ ସାଙ୍ଗରେ ବସିବାରେ ସଙ୍କୋଚ ହୁଏନାହିଁ । ଜାଣି ବହୁତ ଖୁସି ଲାଗୁଛି ।"

"କ୍ଷମାକରିବେ । ଆପଣଙ୍କ ଖୁସିରେ ବାଧାଦେଲି । ମୋତେ ସଙ୍କୋଚ ଲାଗେ ।"

"ତେବେ ?"

"ବେଳେବେଳେ ମନ ହେଲେ ସଙ୍କୋଚକୁ ଭାଙ୍ଗିଦିଏ ।"

"ଯଦି ଆପଣ ଏଇ ସଙ୍କୋଚକୁ ସବୁଦିନପାଇଁ ଭାଙ୍ଗିଦେଇ ପାରନ୍ତି ତେବେ ମୋ ସହିତ ଆସନ୍ତୁ । ଅଜନ୍ତା—ଏଲୋରା ତ ବହୁତ ଅଙ୍କାସରିଛି । ଏଣିକି ଏଇ ଜୀବନ୍ତ ଗୁମ୍ଫା ଗୁଡ଼ିକର ଚନ ଉଦ୍ଧାର କରନ୍ତୁ । ଏଇ ଯେ ଆମର ମହାନ୍ ନେତା ସବୁ ଅଛନ୍ତି—ଯେ ଦ୍ରାବିଆକୁ ସ୍ୱାଧୀନ କରିଦେବାକୁ ଅଯଥା ଗର୍ବ ଦେଖାନ୍ତି, ତାଙ୍କୁ ଜଣାଇ ଦିଆଯାଉ ଯେ ତାଙ୍କର ଜନତାର ପ୍ରକୃତ ରୂପ କ'ଣ ? ତା ମୁହଁରେ ଆବେଗର ଦୀର୍ଘ ଚିହ୍ନ ଉଜ୍ଜ୍ୱଳି ଉଠୁଥିଲା ।

ତା' କଥା ଶୁଣି ସଜ୍ଜନର ମନ ପୁଲକି ଉଠିଲା । କହିଲା—ଆପଣ ମୋତେ ଇନସ୍ପାୟାର କରୁଛନ୍ତି କନ୍ୟା ମହାଶୟ, ମୁଁ ଏଇ ମିଶନ୍ ନେଇ ଏଠାକୁ ଆସିଛି । କିନ୍ତୁ ମୁଁ ଆପଣଙ୍କର ଏଇ ପ୍ରୟୋଜନୀୟ କଥା ସହିତ ଏକମତ ହୋଇପାରୁ ନାହିଁ । ଯେ ଅଜନ୍ତା—ଏଲୋରାର ଚନ ଉଦ୍ଧାର କରିବାର ଆବଶ୍ୟକ ନାହିଁ ।"

"ମୁଁ ତା' କହୁନାହିଁ ।"

'ଅଜନ୍ତା—ଏଲୋରାକୁ ଦେଖି ଯଦି ଠିକ୍‌ଭାବେ ଇନ୍‌ସ୍ପିରେସନ ନିଆଯାଏ ତେବେ ତାହା ସମଗ୍ର ଜୀବନକୁ ସୁନ୍ଦର ଓ ଉପଯୋଗୀ କରି ଗଢ଼ି ତୋଳିବାରେ ସମର୍ଥ—"

"ମୁଁ"

"ସତ କହୁଛି, ଯେତେବେଳେ ମୁଁ ଏଇ ଗୁମ୍ଫାଗୁଡ଼ିକୁ ଦେଖୁଥିଲି, ହଠାତ୍ ମୋ ଆଗରେ ମିଶରର, ପିରାମିଡ଼ ଗୁଡ଼ିକର ଛବି ଭାସି ଉଠିଲା । ଦେଖନ୍ତୁ ଏ ଦୁହିଁଙ୍କର କଣ୍ଟ୍ରାଷ୍ଟ ଗୋଟିଏ ଆଡ଼େ ଆମର ଇଜିପ୍ସିଆନ ପୂର୍ବପୁରୁଷମାନେ ପାହାଡ଼ ଉପରେ ପାହାଡ଼ ଠିଆକରି ଦେଇଛନ୍ତି, ନିଜର ଶକ୍ତି ଓ ପ୍ରତିଭା ଦ୍ୱାରା

ସେଗୁଡ଼ିକ ଆଜି ମଧ୍ୟ ଆମର ନଜର ବୁଦ୍ଧିକୁ ସୂତୀକ୍ଷ୍ଣ କରୁଛି । କିନ୍ତୁ ଏଇ କୃତ୍ରିମ ପାହାଡ଼ ଗୁଡ଼ିକର ବ୍ୟବହାର କେଉଁଥି ପାଇଁ କରାଯାଇଛି ? ମୃତ ବ୍ୟକ୍ତିର ଶବପାଇଁ । ଆରପାଖରେ ଆମର ଭାରତୀୟ ପୂର୍ବପୁରୁଷମାନେ ଉଚ୍ଚ ଉଚ୍ଚ ପାହାଡ଼ ଗୁଡ଼ିକରେ ପୋଲ୍‌କରି ସେ ଗୁଡ଼ିକୁ ନିଜର ସୌନ୍ଦର୍ଯ୍ୟରେ ଭରି ଦେଇଛନ୍ତି । ଆଉ ସବୁଠୁଁ ବଡ଼କଥା ଏହି ଯେ ସେଗୁଡ଼ିକୁ ପଢ଼ିବା—ପଢ଼ାଇବା ଦିଗରେ ବ୍ୟବହାର କରାଯାଇଛି । କୌଣସି ରାଜା—ବାଦ୍‌ସାର ଆରାମ ପାଇଁ କି ଲାସ ପୋଡ଼ିବାକୁ ନୁହେଁ । ଏଇ ଦୁଇଟି କଲଚରଲ ଦୃଷ୍ଟି କୋଣରେ କି ବିରାଟ ପାର୍ଥକ୍ୟ ଆମେ ଏଇଠି କଳାକୁ ନିଜ ଜୀବନ ସହିତ ଜଡ଼ିତ ଥିବା ଦେଖୁଛୁ । ଆମର କଳାରେ ଖୁବ୍ ଚମତ୍କାରିତା ଅଛି । କିନ୍ତୁ ତାହା ଆମକୁ ଚମକାଇ ଦିଏ ନା, ବରଂ ମନକୁ ଆଲୋକିତ କରିଏ । ସେଇ ସୌନ୍ଦର୍ଯ୍ୟ ଆମକୁ ନିଜ ନିକଟକୁ ଟାଣିନେଇ ଯାଏ । ଏବଂ ସେଗୁଡ଼ିକ ସେତିକି ସୁନ୍ଦର କରି ତୋଳେ ।

ସଜ୍ଜନର କଥା ଗୁଡ଼ିକର ପ୍ରଭାବ କନ୍ୟାର ଚେହେରା ଉପରେ ଚନ୍ଦ୍ରଭଳି ଅଙ୍କିତ ହୋଇ ଯାଉଥିଲା । ନିଜେ ସଜ୍ଜନ ମଧ୍ୟ ନିଜ କଥାର ପ୍ରବାହରେ ବନ୍ଧାହୋଇ ଚୁପହୋଇ ବସିଗଲା ।

ଟିକିଏ ପରେ କନ୍ୟା କହିଲା—"ଆପଣ ଠିକ୍ କହୁଛନ୍ତି । ନିଜର ଅନୁଭବ ଗୁଡ଼ିକୁ ଶୁଣାଇ ଆପଣ ଆଜି ମୋତେ ଗୋଟିଏ ଉଚ୍ଚ ସ୍ତରର ଚିନ୍ତାରେ ପହଞ୍ଚାଇ ଦେଇଛନ୍ତି । ଆଇଶେଲ୍ ନେଭର ଫରଗେଟ୍ ଇଟ୍‌ସ । କିନ୍ତୁ ମୁଁ ଗୋଟିଏ କଥା ବୁଝିପାରୁନ । ଏଇ ଦେଶରେ ଗୋଟିଏ ପଟେ ତ ଉଚ୍ଚ ଦର୍ଶନ, ସାହିତ୍ୟ, ଶିଳ୍ପ-କଳା ଏଇ ସବୁର ନିରବଚ୍ଛିନ୍ନ ଶୃଙ୍ଖଳା ଲାଗିରହିଛି—ଆଉ ଅନ୍ୟପଟରେ ଅଛି ଆମ ଘରଗୁଡ଼ିକର ଏଇ ସତ୍ୟ, ଏଇ ମିଥ୍ୟା ରୀତି—ପ୍ରଥା, ମୋର ଭାଉଜ ଏବଂ ସେଇ ପାଗଳୀ ସ୍ତ୍ରୀ, ମୋର ପିତା, ମୋର ଭାଇ—

"ଆପଣଙ୍କ ଭାଇ କ'ଣ ? ଆପଣଙ୍କ ଭାଇ କ'ଣ କଲେ ?"

ସଜ୍ଜନର ପ୍ରଶ୍ନରେ କନ୍ୟାର କଥାର ପ୍ରବାହ ହଠାତ୍ ବନ୍ଦ ହୋଇଗଲା । ଅନିଚ୍ଛାର ସ୍ମିତହାସ୍ୟ କରି ଧୀର ସ୍ୱରରେ ସେ କହିଲେ - "ମୋ' ଘରଟି ମୋ ପାଇଁ ପୂରା ପୂରି ଗୋଟିଏ ମ୍ୟୁଜିଅମ୍ ଟି—କ'ଣ କହିବି ? ମୋର ଭାଇ ଏକ ବିଚିତ୍ର ଧନ୍ଦାରେ ପଡ଼ିଛନ୍ତି । କିମିତି ଆପଣଙ୍କୁ କହିବି—(ଚେହେରାରେ ଲଜ୍ଜାର ଲାଲିମା, ତଳକୁ ହୋଇ ଆସିଲା, ପୁଣି ସାହାସ ବାନ୍ଧି ଆଖିକୁ ଆଖି ଦେଖି) ହେଉ ଯେହେତୁ ଆପଣ ସମାଜକୁ ଦେଖିବାକୁ ବାହାରି ଆସିଛନ୍ତି—ତେଣୁ ଗୋଟିଏ କେସ ଭଳି ନିଃସଂକୋଚ ରେ ଶୁଣନ୍ତୁ ମୋର ଏ ଭାଉଜଟି 'ପରି'

କନ୍ୟାର ମୁହଁର ଭାବଭଙ୍ଗୀ ଦେଖି ସଜ୍ଜନ ଆହୁରି କିଛି ଶୁଣିବାକୁ ଆଶା କରିଥିଲେ ଓଲଟା ଦ୍ୱିତୀୟ ଭାଉଜ ବିଷୟରେ କ୍ଲୀବ—ତା' ଏବଂ ଏକ ବିଚିତ୍ର ଶବ୍ଦ ଶୁଣି ଚମକି ପଡ଼ିଲେ ପଚାରିଲେ—"ପଇ ମାନେ ?"

କନ୍ୟା ଖୁବ୍ ସମ୍ଭାଳି ସମ୍ଭାଳି କହିଲେ—"ପ୍ରକୃତିର ଏକ ପରିହାସ, ସେଭଳି ସ୍ତ୍ରୀ ଉପରୁ ସ୍ତ୍ରୀ ଭଳି ଜଣାଗଲେ ମଧ୍ୟ ପ୍ରକୃତରେ ସ୍ତ୍ରୀ ନୁହେଁ ।"

"ଓଃ-ହୁଁ-ମାନେ-ମାଇଚା— ।"

ଆଜ୍ଞା, ତଫାତ୍ ଏତିକି ଯେ, ତାଙ୍କର ଉପର ଚେହେରାଟି ନର୍ମାଲ ସ୍ତ୍ରୀମାନଙ୍କ ଭଳି ପୂରା ପୂରି ଡେଭଲପଡ଼ ।

'ତେବେ ଏଇ ବିବାହଟି ହେଲା କିମିତି ?

ଯେମିତି ଅନେକ ଠକାମି ହୁଏ ।

ବାପା-ମାଙ୍କୁ ଦଶହଜାର ଯୌତୁକ ମିଳିଗଲା । ଭାଇ କିଛି ନ ପାଇ ଭାଉଜଙ୍କର ହାତ କାମୁଡ଼ୁଛନ୍ତି । ଆପଣଙ୍କୁ କ'ଣ କହିବି ଆଜ୍ଞା—ଭାଉଜଙ୍କ କଷ୍ଟ ସହି ହେଉ ନାହିଁ । ଏଥିରେ ସନ୍ଦେହ ନାହିଁ ଯେ ଭାଇଙ୍କୁ ଜେନୁଇନ୍ ସକ୍ ଲାଗିଛି । ସେ ବଡ଼ ସାଧାସିଧା ଓ ଭଲ । କିନ୍ତୁ ଏଇ ଯେ ତାଙ୍କର ଫିଟ୍‌ସ ହୁଏ । ଆଉ ଫିଟ୍‌ସ ଆସିଲେ ଯେ ବେହୋସ ହୋଇ ଉଠନ୍ତି । ଦିନେ ରାତିରେ ଭାଉଜ ଶୋଇଥିବାବେଳେ ଇଏ ତାଙ୍କ କେଶରେ ନିଆଁ ଲଗାଇଦେଲେ । ଦିନେ ଭୋରରୁ ତାଙ୍କୁ ଗାଧୋଇବାକୁ ଗୋମତୀକୁ ନେଇ ଚାଲିଗଲେ । ସେଠି ତାଙ୍କୁ କହିଲେ—ଚାଲ ଦିହେଁ ଲଣ୍ଡା ହେବା, ପୁଣି ଦିହେଁ ଏକ ସାଙ୍ଗରେ ଗୋମତୀରେ ବୁଡ଼ି ମରିବା ।

"ଆରେ ।"

ସେଇଠି ସେ ଗୋଟିଏ ତାମସା ଆରମ୍ଭ କରିଦେଲେ । ଭାଉଜ ମନା କରିବାରୁ ସେ ରାଗି ଉଠିଲେ । ଭାଉଜ ସାଙ୍ଗେ ସାଙ୍ଗେ ବୁଦ୍ଧିର କାମ ଦେଖାଇଲେ । ପ୍ରଥମେ ତୁମେ ଲଣ୍ଡା ହୁଅ । ତାପରେ ମୁଁ ହେବି । ସେ ବାରିକ ପାଖରେ ବାଳକାଟିବା ସମୟରେ ଇଏ ଚୁପ୍ କରି ଉଠି ଚାଲିଆସିଲେ । ବାଟରେ କେଉଁଠି ଶିକ୍ସାକରି ଅଣନିଶ୍ୱାସୀ ହୋଇ ଘରେ ପହଞ୍ଚିଲେ ।

"ଚ୍ ଚ୍ ଚୀ ।"

"କ'ଣ କହିବି । ତାଙ୍କପାଇଁ ଘରେ କେତେ ଗଣ୍ଡଗୋଳ ଲଗେ । ଆଉ ସତ କହୁଛି—ବଡ଼ ଲଜ ଲାଗୁଛି—ମୋ ଘରେ ଏମିତି ଗୋଟିଏ ଇଡ଼ିପସ୍ ସାର୍କଲ ଚାଲିଛି ଯେ—ମୋର ବଡ଼ ମାଆ ଓ ମାଆଁଙ୍କ ଭିତରେ ସଉତୁଣୀ ସମ୍ପର୍କ । ନିଜପକ୍ଷ ମଜଭୁତ କରିବାପାଇଁ ମୋର ବଡ଼ମାଆ ଭାଇଙ୍କ ପାଇଁ ଇଲେଇ ହୋଇ ନିଜର ବିଧବା ବୋହୂଟିକୁ ତାଙ୍କସହିତ ସମ୍ପର୍କ କରାଇବାକୁ ଚାହିଁଲେ । ମୋ ଭାଇ ବେଳେ ବେଳେ ବଡ଼ ଧାର୍ମିକ ନିଷ୍ଠାପର ଲୋକ କିନ୍ତୁ ସେ ସଙ୍କୋଚର ସହିତ ବିବାହ ପ୍ରସ୍ତାବ ନେଇ ଆଗେଇ ଚାଲୁଥିଲେ । ଏଥିରେ ମୋର ଭାଉଜଙ୍କର ମଧ୍ୟ ଇଚ୍ଛାଥିଲା । ଇନ୍ ଦ ମିନ୍ ଟାଇମ୍—ମୋର ମାଆଁଙ୍କୁ ବଡ଼ ମାଆଁଙ୍କ ଚାଲକ ଜଣା ପଡ଼ିଗଲା । ମାଆ ଚରିତ୍ର ଦୃଷ୍ଟିରେ ସଫା କିନ୍ତୁ ପାଓ୍ୱାର ପାଇଁ ବଡ଼ ଅନ୍ଧ । ସେଇ ମୋର ବାପାଙ୍କୁ ଉକ୍ସାଇ ଜବରଦସ୍ତି ଏଇ କାମଟି କରାଇଦେଲେ । କେବଳ ଆଉ ବଡ଼ ମାଆଙ୍କୁ ପାଠ ଶିଖେଇବାକୁ—ନିଜର ପ୍ରତିଶୋଧ ନେବା ପାଇଁ ।

ଦୀର୍ଘ ନିଶ୍ୱାସ ନେଇ ସଜ୍ଜନ କହିଲା—ମିସ୍ କନ୍ୟା ଆଇ ସିମ୍ ପାଥାଇଜ ଉଇଥ ଇୟୁ ।

"ଧନ୍ୟବାଦ । କିନ୍ତୁ ମୋତେ ସହାନୁଭୂତି ଦରକାର ନାହିଁ । ମୁଁ ନିଜପାଇଁ ନିଜେ ଲଢ଼ିପାରେ । ମୋର ଏସବୁ କହିବା ଅର୍ଥ ଏତିକି ଯେ—ଗୋଟିଏ ଆଡ଼େ ଯେଉଁଠି ଆମ ସଂସ୍କୃତି ଏଇ ଅଜନ୍ତା, ଏଲୋରା ଆଜି ବଡ଼ ପାହାଡ଼ ପଥରରେ ଚେତନତା ଖୋଦେଇ କରିଛି, ସେଇଠି ଅନ୍ୟଆଡ଼େ କୌଣସି ସିଷ୍ଟମ୍ ଖରାପ ହୋଇଥିବା ଯୋଗୁଁ ଚେତନା ଲୋକକୁ ପଥର କରିଦେଉଛି । ଆମର ଏତେ ଭଲ ଆଦର୍ଶ ସବୁ ସମାଜର ଗୋଟିଏ ସ୍ତର ପର୍ଯ୍ୟନ୍ତ ପ୍ରଭାବ ବିସ୍ତାର କରିପାରିଥିଲେ ମଧ୍ୟ ନୂତନ ଶକ୍ତି ସଞ୍ଚାର କରିପାରୁ ନାହିଁ । କାରଣ କ'ଣ ? ବ୍ୟକ୍ତିର ସତ୍ୟ ନିଷ୍ଠା ଥିଲେ ମଧ୍ୟ ଆମର ଜାତୀୟ ଚରିତ୍ର ତିଆରି ହୋଇପାରୁ ନାହିଁ ।

ସଜ୍ଜନକୁ ଖରାପ ଲାଗିଲା । କହିଲା—ମୁଁ ଏକଥା ସ୍ୱୀକାର କରିପାରିବି ନାହିଁ ଯେ ଆମର ନେସନାଲ କରେକ୍ଟର ନାହିଁ । ଯେଉଁ ନେସନ୍‌ର ଚରିତ୍ର ବଳ ନଥାନ୍ତା । ସେଠାରେ ବ୍ୟାସ ସବାଲୀକ, କାଳିଦାସ ଭଳି ପୋଏଟ୍ ହୋଇ ନଥାନ୍ତେ । ଶିଳ୍ପ କଳାର ଏଇ ଯେ ଚମତ୍କାର ନମୁନା ଦେଖାଯାଉଛି—ତାହା ନଥାନ୍ତା । ଆମ ଇତିହାସରେ ଅଶୋକ ଭଳି ରାଜା—ବୁଦ୍ଧ, ମହାବୀର, ଗାନ୍ଧୀ ଭଳି ପର୍ସନାଲିଟି ଅଛନ୍ତି । ବୋଧ ହୁଏ ଆପଣଙ୍କୁ ନିଜର ଘରର ପରିସ୍ଥିତି ଯୋଗୁଁ ସମଗ୍ର ଭାରତ ଖରାପ ଦେଖାଯାଉଛି । ମୁଁ ତାହାମାନେ ନା ମୋ ଆଗରେ ମୋର

ମାଆଁଙ୍କ ଉଦାହରଣ ଅଛି । ଆଉ ବି ଦୁନିଆଁରେ କେତେ ଲୋକ ଅଛନ୍ତି । ବରଂ ଆଜି ସକାଳେ—ଏଇଠି ପୁନ୍ନୋ ମଲଙ୍କ ହତାଭିତରେ ପଣ୍ଡିତ ଶିବନାଥ ଶାସ୍ତ୍ରୀ ରହନ୍ତି—ବହୁତ ବଡ଼ ସ୍କଲର । ତାଙ୍କ ସହିତ ଦେଖା କରିବାକୁ ଯାଇଥିଲେ । ତାଙ୍କଠାରୁ ଆମର ଟ୍ରେଡ଼ିସନ ବିଷୟରେ ଯେତିକି କଥା ଶୁଣିଲି ମୁଗ୍ଧ ହୋଇଗଲି । ବୁଝି ପାରୁନି କେମିତି ଆପଣଙ୍କ କଥାକୁ ସତ୍ୟବୋଲି ସ୍ୱୀକାର କରିନେବି ।

ଚା' କପ୍ ଧରାଇ ଦେଇ କନ୍ୟା କହିଲା—"ମୁଁ ଏହାକୁ ଅସ୍ୱୀକାର କରୁନାହିଁ । କିନ୍ତୁ ଏତିକି ନିଶ୍ଚୟ କହିବି ଯେ—ଆମର ସାମାଜିକ ଜୀବନରେ ନିଶ୍ଚୟ ଏଭଳି ଗୋଟିଏ ବିରୋଧୀ ଶକ୍ତି ରହିଛି ଯାହା ଏଇ ସମସ୍ତ ନୈତିକ ସୌନ୍ଦର୍ଯ୍ୟକୁ ଶେଷ କରିପକାଉଚି । ଚିନି କମ୍ ଲାଗୁନାହିଁ ତ ?"

"ନୋ—ଥ୍ୟାଙ୍କ୍ସ । ବରଂ ଟିକିଏ ବେଶିଅଛି ଆପଣ ବୋଧହୁଏ ଦୁଇ-ଚାମଚ ଦେଇଛନ୍ତି । ହେଉ "ମିଠାକୁ ଏନଯ୍ୟ କରୁଛି ।"

ପରିହାସକୁ ବୁଝି ମଧ୍ୟ କନ୍ୟା ସେ ଆଡ଼େ ଦୃଷ୍ଟି ଦେଲା ନାହିଁ । କହିଲା—"ଦେଖନ୍ତୁ—ଏଇ ସତ୍ୟାନାରାୟଣ କଥା । ଏଥିରେ ଅଛି କ'ଣ ? କୋଟି କୋଟି ଘରେ ବଡ଼ ଶ୍ରଦ୍ଧାରେ ଏଇକଥା ପଢ଼ାଯାଏ । ଏଥିରେ କି ମୋରାଲ ଅଛି କହିଲେ ? ମୁଁ ତ କଥାଟିକୁ ପଢ଼ିଛି । ସେଥିରେ ନା ଅଛି ସତ୍ୟ—ନା ନାରାୟଣ ।

ସଜ୍ଜନ କୃତ୍ରିମ ବିରକ୍ତି ପ୍ରକାଶ କରି କହିଲା ଭାଇ, ସବୁବେଳେ ଏଇ କମ୍ୟୁନିଜିମ ମୋତେ ଭଲ ଲାଗେ ନା । ("ହଠାତ୍ କିଛି ମନେ ପଡ଼ିବାରୁ) "ଓଃ ଆପଣ ତ ଏ ଯାଏଁ କିଛି ଖାଇ ନ ଥିବେ ।"

"କାହିଁକି ? ଏଇନେ ପରା ଜଳଖିଆ ହେଲା ?"

"ଆରେ, ସେଥିରେ କ'ଣ ହେଲା ? ଦୁଇଟା ବାଜିଲାଣି । ଏତେବେଳ ଯାଏଁ ଆପଣ ଖାଇନାହାଁନ୍ତି । ଘରେ ବିରକ୍ତ ହେବେ ।

ଚା' ପିଇବା ବାହାନାରେ କନ୍ୟା ତୁନି ରହିଲା । ତେହେରା 'କଠୋର ହୋଇଆସିଲା ପୁଣି ଗମ୍ଭୀର ହୋଇ କହିଲା—ଆଗ ବିରକ୍ତ ହେଉଥିଲେ । ପରିବାନଠାରୁ ଘରସହିତ ମୋର ସମ୍ପର୍କ ନାହିଁ ।"

ସଜ୍ଜନ ଆଖିରେ ପ୍ରଶ୍ନବାଚୀ ।

କନ୍ୟା କହିଲା—"ମୋତେ ଘରୁ ବାହାରିବାକୁ ପଡ଼ିଛି ।"

"କେବେ ?"

"ପରହିନ ।"

"କିଛି ବିଶେଷ ଘଟଣା ହୋଇଛି କି ?"

"ହଁ । ବିଶେଷ ଘଟଣା ତ ନିଶ୍ଚୟ । ବାବୁ ଶାଳିଗ୍ରାମଙ୍କ ପରାମର୍ଶରେ ନିଜର ବକ୍ତବ୍ୟରେ ମୋର ଘରର ସବୁଲୋକେ ମୋ' ବାପାଙ୍କ ଚରିତ୍ରକୁ ଦେବତୁଲ୍ୟ କହିଲେ । ସମସ୍ତେ ଭଲେବାବୁ ଓ ଷ୍ଟିଭେନଙ୍କ ଉପରେ ଦୋଷ ଲଦିଲେ । ମୁଁ ପୋଲିସ ନିକଟରେ ଏଭଳି ବକ୍ତବ୍ୟ ଦେବାକୁ ମନା କରିଦେଲି ।

"ସ୍କାଉଣ୍ଡ୍ରେଲ— । ତେବେ ଆପଣ ଏବେ ରହୁଛନ୍ତି କେଉଁଠି ? କମ୍ୟୁନିଷ୍ଟ ପାର୍ଟି ।

"ନା ଆଜ୍ଞା । ପରହିନ ସ୍ତିତରୁ ଭାଲି ଖବର ବେଲଯାଏ ମୋର ଜଣେ ବନ୍ଧୁଙ୍କ ପାଖରେ ଥିଲେ । ପୁଣି ତାଙ୍କର ଘର ଲୋକମାନେ ମୁଁ ରହିବାରେ ଆପତ୍ତି କଲେ । ସେଠାରୁ ଜଣେ ଇଷ୍ଟ (ଇଣ୍ଡିଆନା ପୁକୁଲସ୍ ଥିଏଟର)ର ସାଙ୍ଗ ଘରକୁ ଆସିଯାଇଛି । ଦେଖନ୍ତୁ ପୁଣି କୁଆଡ଼େ ଯାଉଛି । କ'ଣ ହେଉଛି । ବର୍ତ୍ତମାନ ତ ସବୁ ଅନ୍ଧକାର ।" ଲୁଚି ରଖିବାକୁ ଚେଷ୍ଟା କରି ମଧ୍ୟ ଦୀର୍ଘ ନିଶ୍ୱାସଟିଏ ବାହାରି ପଡ଼ିଲା ।

ସଜ୍ଜନ ଭାବୋଦ୍ରେକିତ ହୋଇ କହିଲା—'ନା, ଆପଣ କଷ୍ଟ ଭୋଗିବେ କାହିଁକି ? ମୋର ତ ଏତେ ଘର ଅଛି ।

"କିନ୍ତୁ ଆପଣଙ୍କ ଘରେ ରହି ପାରିବିନି ।"

"କାହିଁକି ।"

'କଥାଟି ବଡ଼ ଗମ୍ଭୀର ।' କନ୍ୟା ଦୃଢ଼ତାର ସହିତ କହିଲା ।

ସଜ୍ଜନ ଗମ୍ଭୀର ହୋଇ ଉଠିଲା । କହିଲା—"ମୁଁ ଆପଣଙ୍କର ମାନସିକ ଅବସ୍ଥା ବୁଝୁଛି । ଆପଣ ଆଜିଯାଏ ଯାହାକିଛି ଦେଖିଛନ୍ତି ସେଥିରେ ପ୍ରତ୍ୟେକ

ଚରିତ୍ରବତୀ, ବୁଦ୍ଧିମତୀ ସ୍ତ୍ରୀର ପୁରୁଷମାନଙ୍କ ପ୍ରତି ସନ୍ଦେହ ଓ ଘୃଣା କରିବାର ଅଧିକାର ରହିଛି । ମୁଁ ଜଣେ ପୁରୁଷ । ମନ୍ଦ ବି । କିନ୍ତୁ—ଉଇଥ୍ ୟୋର ପରମିସନ୍ ମିସ୍ ବନକନ୍ୟା, ମୋ ଭିତରେ ଗୋଟେ ଭଲ ମଣିଷ ମଧ୍ୟ ବାସ କରୁଛି ।

ତଳକୁ ହୋଇଥିବା ପଲକ ଉଠାଇ ଥରେ ତା' ଆଡ଼କୁ ଚାହିଁଦେଇ ବନକନ୍ୟା ଟିକେ ହସିଲା । କହିଲା—"ତାହା ବୁଝି ନ ଥିଲେ ଆଜ ଆପଣଙ୍କର ସାହାଯ୍ୟ ମାଗିବାକୁ ଆସି ନଥାନ୍ତି ।"

"ଆଚ୍ଛା—ଚାଲନ୍ତୁ ଯିବା ।"

"କାହିଁକି ।"

"ମୋ ଘରକୁ । ଆଜି ମହାତ୍ମା ଯୀଶୁଙ୍କ ଜନ୍ମଦିନ । ମୋ ଘରେ ଆପଣଙ୍କ ପାଇଁ ବ୍ରେକଫାଷ୍ଟର ନିମନ୍ତ୍ରଣ ।"

ମୁ ଏବେ ଖେଳ...ର ପ୍ରଦର୍ଶନୀ ଦେଖିବାକୁ ଯିବି ।

ସଜ୍ଜନ କହିଲା—ହଁ-ହଁ-ମୁଁ ବି ସାଙ୍ଗରେ ଯିବି । ବରଂ ମହୀପାଲ ଓ କର୍ଣ୍ଣେଲଙ୍କୁ ମଧ୍ୟ ଡାକନେବା ।"

"ସଜ୍ଜନ ବାବୁ, ମୁଁ ।"

"ଦେଖନ୍ତୁ । ମୁଁ କିଛି ଶୁଣିବି ନାହିଁ । ଆଜିର ବ୍ରେକଫାଷ୍ଟ ତ ଆପଣ ନିଶ୍ଚୟ ଯୋଗଦେବେ ଆପଣ ଏ ଯାଏଁ ପୁରୁଷମାନଙ୍କ ସହିତ ଖୋଲା ମନରେ ଉଠାବସା କରୁ ନ ଥିଲେ, ତେବେ— ? —ତା' ଛଡ଼ା ଆପଣଙ୍କୁ ଏଇ ପାର୍ମାନେଣ୍ଟ୍ ପାଇଁ କର୍ଣ୍ଣେଲ ସହିତ ଦେଖା କରିବା ଦରକାର ।

କନ୍ୟା ସହିତ ବାହାରକୁ ଯିବାବେଳେ ସଜ୍ଜନ ଯେଉଁ ସନ୍ତୋଷ ଅନୁଭବ କଲା ତାହା ଅନେକ ସ୍ତ୍ରୀଙ୍କ ସାହାଯ୍ୟ ପରେ ମଧ୍ୟ ତା ପାଇଁ ନୂଆ ଥିଲା । ପ୍ରଥମକରି ସେ ନାରୀକୁ ଆଦର କରିବାକୁ ଶିଖୁଥିଲା ।

# ତେର

ନୂଆ ବର୍ଷର ଖାତାରେ ସନ୍ ୫୯ର ଗୋଟିଏ ଖବର " ଶ୍ରୀ ଗ୍ରେକର୍ଡ ବାକ୍ସୀ" ଭଳି ଆସିଲା । ୱେଷ୍ଟର ଝମେଲା ରେ ମଧ୍ୟ ଆଧୁନିକ ଡ଼େମୋକ୍ରେଟ୍ ସମାଜର ଏଇ ଶାଶ୍ୱତ' ଖବରଟି ୩୧ ଡ଼ିସେମ୍ବର ର ଖବର କାଗଜ ମାନଙ୍କରେ ଛପା ଯାଇ ଲକ୍ଷ୍ନୌ ସହର ର ଗର୍ଭାଂଗରତାକୁ ବିବ୍ରତ କରି ଦେଇଥିଲା ।

ନଗରରେ ଶେଷ ପ୍ରାନ୍ତରେ, ରେଳ ଲାଇନ କଡ଼ରେ ଗୋଟିଏ ଶବ ପୋଡ଼ା ହୋଇଥିବା ଅବସ୍ଥାରେ ମିଳିଛି । କୁକୁର ମାନେ ତାକୁ ଅଧ ବିବସ୍ତ୍ର ଭାବରେ ଟାଣୁଥିଲେ । ସେଇ ହୃଦୟ ବିଦାରକ ଦୃଶ୍ୟ ଉପରେ ଯେତେବେଳେ ଲୋକଙ୍କର ଦୃଷ୍ଟି ପଡ଼ିଲା, ସେତେବେଳେ ସାରା ସହରରେ କଥାଟା ପ୍ରଚାର ହୋଇଗଲା । ଏହି ଲାସ୍‌ଟି ପ୍ରାୟ ପଚଶ ବର୍ଷର ଜଣେ ଯୁବତୀର । ଆକାଶୀ ରଙ୍ଗର ଭଏଲ ସାଢ଼ି ଓ ପ୍ଲାଷ୍ଟିକ୍ କାଚ ପିନ୍ଧିଛି ପଲାସ ଦେହରୁ ଦୁର୍ଗନ୍ଧ ବାହାରୁଛି । ବୋଧହୁଏ ଦୁଇ ତିନି ଦିନ ଆଗରୁ ପୋଡ଼ା ହୋଇଥିଲା । ତା'ର ପାଦର ଗୋଟିଏ ଧଳା ସେଣ୍ଡେଲ ମଧ୍ୟ ତା ପାଖରେ ପଡ଼ିଥିଲା ।

ନୂଆ ବର୍ଷ ପୂର୍ବରୁ ଏଇ ସଢ଼ା ଯୌବନର ଚର୍ଚ୍ଚା ସହରର ଗଳି—ବଜାରରେ ଚାଲିଥାଏ । ସ୍ଥାନେ ସ୍ଥାନେ ହତ୍ୟା, ଲୁଟ୍ ବଳାତ୍କାରର ଅନେକ କାଣ୍ଡ ଜନତାର ଦୃଷ୍ଟିକୁ ବାରମ୍ବାର ଆସିଛି । ତେଣୁ ୱେଷ୍ଟବେଳେ ଏଇ ଖବରଟି କଂଗ୍ରେସ ସରକାର ବିରୁଦ୍ଧରେ ଅମରଲତା ଭଳି ପଲ୍ଲବିତ ହୋଇଗଲା । ସେ ଯୁବତୀ ଜଣକ କିଏ ବୋଲି, ଏ ଯାଏ ପୋଲିସ ଖବର ପାଇ ନଥିଲା । କେହି ତାକୁ ହିନ୍ଦୁ କହୁଥିଲା, କେହିବା ମୁସଲମାନ କହୁଥିଲା । କେହି କହୁଥିଲା ଯେ ସ୍ତ୍ରୀଟି ଏଇ ସହରର, କେଉଁଟି ଅନୁମାନ କରାଯାଉଥିଲା ଯେ ରେଳଗାଡ଼ିରେ ତଳେ ଚାପି ବିଷ ଖୁଆଇ ତାକୁ ମାରି ଦିଆଯାଇଛି । ହତ୍ୟାର କାରଣ ବିଷୟରେ ମଧ୍ୟ ଅନୁମାନ ଚାଲିଛି । ଲୋକ ଜଣକୁ କଥାଟିଏ । ବାସ୍, କଥା ଚାଲିଛି ଆଉ କାମ ନୂତନ ବର୍ଷର ନୂତନ କରି ମଧ୍ୟ ପୁରଣ । ବର୍ଷ ଗୁଡ଼ିକର ପ୍ରତ୍ୟେକ ଦିନ ଭଳି ପ୍ରତ୍ୟେକ ବ୍ୟକ୍ତିର ଛାତି ଉପରେ ସାପଭଳି ଲହ ଲହ କରୁଛି । ଜନ ସାଧାରଣର ଜୀବନ ଆର୍ଥିକ ମାଡ ଖାଇ ଖାଇ ଧୂଳି ଭଳି ଚୂର୍ଣ୍ଣ ହୋଇ ପଡ଼ିଛି । ଲାଭ ଖୋର ଲୋକେ ୧୯୫୬ ର ନୂଆ ଦିନରେ ମଧ୍ୟ ବାଲିରୁ ତେଲ ବାହାର କରିବାକୁ ସେମିତି ଲାଗି ପଡ଼ିଛନ୍ତି, ଯେମିତି ଆଜିଯାଏଁ ଲାଗି ଥିଲେ । ସବୁଆଡ଼େ ଲୁଣ ତେଲ ପାଇଁ ହୁରି ପଡ଼ିଛି । ତା'ର ଉପରେ ୱେଷ୍ଟର ସବୁ ଗରମ ବାତାବରଣ । ପ୍ରତି ଓ୍ୱାର୍ଡ ଓ ଗଳିରେ ପଲିଟିକାଲ ପାର୍ଟି ଗୁଡ଼ିକର ଲିଡ଼ର୍ମାନେ ନିଜ ନିଜ ସଭାଗୁଡ଼ିକରେ

ପ୍ରାଟିକଣ କାନର ପର୍ଦ୍ଦା ଫଟାଇ ଦେଉଛନ୍ତି । ମୁଁ ତୁମେ—ସେ ସମସ୍ତେ ପରସ୍ପରକୁ କାଦୁଅ ଫୋପାଡ଼ିବାର ପବିତ୍ର କାମରେ ପ୍ରାଣପଣେ ବ୍ୟସ୍ତ ।

କୌଣସି ଅନୁତପ୍ତ ବେଶ୍ୟା ଯିଏକି ନିଜର ମାନସିକ ପୀଡ଼ାକୁ ମନରେ ରଖି ପେଟ ପାଇଁ ଗରାଖ ପାଇବା ଉଦ୍ଦେଶ୍ୟରେ ପଣପାଟୀ ପୂର୍ଣ୍ଣ ବେଶ ଭୂଷାକରି ଛାତ ଉପରେ ପ୍ରତୀକ୍ଷା କଲା ପରି ନୂତନ ବର୍ଷର ନୂତନ ଦିବସର ସ୍ୱାଦ ଜଣାଯାଉଥାଏ ।

ଛକର ଘର ପାଖରେ ବସ୍, ଟ୍ରକ, ଟାଂଗା—ଘୋଡ଼ାଗାଡ଼ି, ରିକ୍‌ସା, ସାଇକେଲ ଓ ପାଦରେ ଚାଲିଥିବା ଲୋକଙ୍କ ଭିଡ଼ ଅନବରତ ଚନ୍ଦା ହୋଇ ଏଭଳି ଗତିମାନ ହୋଇଛି ଯେ ଜଣାଯାଉଛି ସତେ ଯେମିତି ଜଣେ ଦିଆନିଆ ସାହୁକାରର ମିଲ ଚାଲିଛି । ମିଲ୍‌ର ଗର୍ଜନରେ ବାହାର ର ଲୋକଙ୍କର ଅନୁମାନ ହୁଏ ଯେ, ନୂଆ ଉତ୍ପାଦନ ଚାଲିଛି । ନୂତନ ନିର୍ମାଣ ଚାଲିଛି, କିନ୍ତୁ ଭିତରେ ବହୁତ କମ୍ ଉତ୍ପାଦନ ହୋଇ ଅଧିକାଂଶ ଶକ୍ତି ଇନ୍‌ଷ୍ଟ କରାଯାଉଛି । କେବଳ ସେଠଦାଙ୍କ ମର୍ଯ୍ୟାଦା ବଜାୟ ରଖିବାକୁ । କିନ୍ତୁ ଢୋଲର ପୋଲ ନେଇ ପୁଞ୍ଜିବାଦର ବିକାଶର ଏଇ ଲକ୍ଷ୍ୟହୀନ ନିୟମ କେତେ ଦିନ ଆଉ ଚାଲିବ ? ଏବେ ସେଥିରେ ଆଉ ଦମ୍ ବା କେତେ ଅଛି ?

ଜଳଖିଆ ଦୋକାନ, ଗୁଡ଼ିଆ ଓ ପାନବାଲା ଦୋକାନରେ ରେଡ଼ିଓରୁ ଖବର ପଢ଼ିବାର ଶୁଣାଯାଉଛି । ବଜାରର ସଡ଼କରେ ଏବଂ ଘରପାଖ ସଡ଼କ ଗୁଡ଼ିକରେ କ୍ରମାଗତ ଭାବରେ ବୃଦ୍ଧି ପାଉଥିବା ରେଡ଼ିଓର ସ୍ୱର ଅତ୍ରୁଟଭାବେ ଶୁଣିବା —ଲୋକଙ୍କ କାନରେ ପହଞ୍ଚୁଛି । କୌଣସି କୌଣସି ସଡ଼କରେ ଗୋଟିଏ ମୁଣ୍ଡରୁ ଆଉଗୋଟିଏ ମୁଣ୍ଡଯାଏ ପ୍ରତି ପାହୁଣ୍ଡରେ ପ୍ରତ୍ୟେକ ଘର ଭିତରୁ ଆସୁଥିବା ରେଡ଼ିଓର ସ୍ୱର ସମାଜର'ଏକସ୍ୱର' ଭଳି ଗୁଞ୍ଜରି ମିଶିଯାଉଛି । ଖେଳ ଖବର ଆସୁଛି । "କଲିକତାରେ ହେଉଥିବା ଭାରତ ଓ ଇଂଲଣ୍ଡର ତୃତୀୟ ମ୍ୟାଚ୍‌ର ଆଜି ତୃତୀୟ ଦିନ । ଗାସ୍କ, ଉମିରକର ହଜାରେ କେବଳ ଅଠାଇଶ ରନ୍ କରି ଘଣ୍ଟାକ ଭିତରେ ଆଉଟ୍ ହୋଇଗଲେ । ମଞ୍ଜେରକର ଅଠଚାଳିଶ ରନ୍ କରି ଆଜିର ମନ୍ଥର ଖେଳରେ ସାମାନ୍ୟ ଉତ୍ସାହ ଆଣିଲେ । ବର୍ତ୍ତମାନ ପାଣି ପାଗର ଖବର...... ।"

ରେଡ଼ିଓରେ ଗ୍ରିନ୍‌ବିଚ୍ ସମୟ—ସଙ୍କେତର ଶବ୍ଦ ଆସୁଛି । ନୂଆ ପ୍ରୋଗ୍ରାମ ଶୁଣିବାର ଅପେକ୍ଷାରେ, ସଜ୍ଜନର ଡ୍ରଇଂ ରୁମରେ ପାଖ ପାଖ ହୋଇ

ବସିଥିବା ସଜ୍ଜନ ଓ କନ୍ୟା ପରସ୍ପରକୁ ଅପଲକ ନେତ୍ରରେ ଦେଖୁଛନ୍ତି । ଚାରି ପାଞ୍ଚ ଦିନରେ ଦୁହିଁଙ୍କ ଆଖିରେ ଯଥେଷ୍ଟ ଖୋଲାଭାବ ଆସିଲାଣି । ରେଡ଼ିଓ ସୂଚନା ଦେଲା - - -" ଆକାଶ ବାଣୀ, ଲକ୍ଷ୍ନୌ, ଏଲାହାବାଦ୍, ପାଟଣା ।

"ପରାଗ—ଏହି ସାହିତ୍ୟ ପୋଗ୍ରାମ ଦ୍ୱାରା ଆଜି ଆପଣ ମହୀପାଲ ଶୁକ୍ଳଙ୍କ ଠାରୁ ତାଙ୍କର ନୂଆ ଗଳ୍ପ ଶୁଣିବେ । 'ଯେତେବେଳେ ନୂତନ ଯୁଗ ଆସେ,'— ଶ୍ରୀ ମହୀପାଲ ଶୁକ୍ଳ‥ …'

ସଜ୍ଜନ ସୋଫା ଉପରେ ମୁଣ୍ଡ ରଖି ଆଖି ବନ୍ଦ କଲା । କନ୍ୟା ସିଧା ରେଡ଼ିଓ ଆଡକୁ ଚାହିଁ ରହିଥିଲା, ଯେପରି କି ସ୍ୱରରୁ ସେ ମହୀପାଲର ରୂପ ଦେଖିବା ପାଇଁ ଚେଷ୍ଟା କରୁଥିଲା । ମହୀପାଳର ସ୍ୱର ଅନ୍ତରରୁ ବାହାରୁଛି ସେଥିରେ ତେଜ ଏବଂ ମଧୁରତା ମଧ୍ୟ ରହିଛି, ଶବ୍ଦ ଗୁଞ୍ଜରିତ ହୋଇ ବାହାରୁଛି କିନ୍ତୁ ସ୍ୱରରେ ଆଳସ୍ୟ ପୂର୍ଣ୍ଣ ରହିଛି । ସେ ଜୋରରେ କହୁଥିବାର ରେଡ଼ିଓରେ ଗର ଗର ଶବ୍ଦ ହେଉଥିଲା ।

ଆଖି ଖୋଲି ସଜ୍ଜନ କନ୍ୟାକୁ କହିଲା—ଟିକେ ରେଡ଼ିଓ ସାଉଣ୍ଡ କମେଇ ଦେବ ?'

'ଧନ୍ୟବାଦ'

ମହୀପାଲ ନିଜର ଗଳ୍ପ ଶୁଣାଉଛି । ଗଳ୍ପର ବିଷୟ ହେଲା, ଆଦିମ ଯୁଗରେ ସତ୍ତା ଏବଂ ଶ୍ରେଷ୍ଠତା ପାଇଁ ସ୍ତ୍ରୀ ଏବଂ ପୁରୁଷର ସଂଘର୍ଷ, ଗଳ୍ପ ଶେଷ ହେଲା ।

'ଆପଣମାନେ ବର୍ତ୍ତମାନ ମହୀପାଲ ଶୁକ୍ଳଙ୍କ ଠାରୁ ତାଙ୍କ ଗଳ୍ପ ଶୁଣୁଥିଲେ । ଏହା ଅଲ—ଇଣ୍ଡିଆ ରେଡ଼ିଓ……ଗୋଟିଏ ନାରୀ କଣ୍ଠର ଶଙ୍କରାର ଖିଆଲ ଆରମ୍ଭ ହେଲା ।

'କିପରି ଲାଗିଲା ଗଳ୍ପ ? ସଜ୍ଜନ ଉଠି ଫୋନ ପାଖକୁ ଯାଉ ଯାଉ କନ୍ୟାକୁ ପଚାରିଲା, ସେ ତଳକୁ ଚାହିଁ କହିଲା—'ଖୁବ୍ ସୁନ୍ଦର' କନ୍ୟା ସେ ପର୍ଯ୍ୟନ୍ତ ଗଳ୍ପ ବିଷୟରେ ଭାବୁଥିଲା ।

ସଜ୍ଜନ ରେଡ଼ିଓ ଷ୍ଟେସନକୁ ଫୋନ କରି ସେଠାକାର ଡ଼ିଉଟି ଅଫିସରଙ୍କୁ ମହୀପାଲକୁ ଡାକି ଦେବା ପାଇଁ ଅନୁରୋଧ କଲା ।

କନ୍ୟା ସୋଫାରୁ ଉଠି, ରେଡ଼ିଓ ପାଖକୁ ଆସିଲା । ସଜ୍ଜନ ପଚାରିଲା— 'ତୁମକୁ ଏହି ଖିଆଲ ଭଲ ଲାଗୁଛି ?'

ଟେଲିଫୋନର ରସିଭର କାନରେ ଲଗାଇ ସଜ୍ଜନ ନାସ୍ତିସୂଚକ ମୁଣ୍ଡ ହଲାଇ କହିଲା—'ମୋତେ କେବଳ ମୋର ଏବଂ ମୋର ଖିଆଲ ପସନ୍ଦ ହୁଏ । ......ହଁ, ହ୍ୟାଲୋ କୁହନ୍ତୁ ମହାନ ଲେଖକ ମହାଶୟ, ଆପଣଙ୍କ ସାହିତ୍ୟ ବର୍ତ୍ତମାନ ଦିନକୁ ଦିନ ବଢ଼ିବାରେ ଲାଗିଛି । ତୁମର ଏହି କାହିଁକି ଉପରେ ମନ ହେଉଛି, କିପରି କିପରି ଦଶ ସ୍କ୍ରୁବ୍ ବସାଇବ, ଲାଗଲାଗୁନାହିଁ, ଛଅ ଦିନ ହେଲା ତୁମର ଦର୍ଶନ ମିଳୁନାହିଁ । ନା ସକାଳେ ନା ସନ୍ଧ୍ୟାରେ ହଁ—ହଁ—ଆରେ ଚୁ—ଚୁ—ତାହା ହେଲେ ତ ଖୁବ ଖଟଣି ପଡ଼ି ଯାଇଥିବ । ତେଣୁ ମୁଁ କହୁଛି ବେଶି ପିଅ ନାହିଁ, ହାଃ ....ହାଃ ......ହାଃ ଭେରି ଗୁଡ୍, ଆସିଯାଅ ମୋର ମତ ମହାଶୟ ମୋର ମତଠାରୁ ବେଶି ବଡ଼ ମତ ଶୁଣ, ହିନ୍ଦିରେ କହିବା ସ୍ୱହୁଛି କି ଦ୍ରଶଂସିକା—ଇଙ୍ଗ୍ ଆଉ ଏମ ନଟ ରଙ୍ଗ, ତାଙ୍କ ସମ୍ବ ଶୁଣାଯାଉଛି । (ପୁଣି ମାଉଥ ପିସ୍ ମୁହଁରୁ କାଢ଼ି କନ୍ୟାକୁ କହିଲା) କମ ହୁଅର କନ୍ୟା, ଆଇ'ଲ ଇଂଟୋର ଡ୍ୟୁସ ୟୁ ଟୁ ମ୍ୟୋର ମୋଷ୍ଟ୍ ଫେବର୍ଇଟ୍ ଅଥର ।'

କନ୍ୟା ରେଡ଼ିଓର ଶବ୍ଦ ମଧ୍ୟମ ଧରଣ କରି, ଗୋଟିଏ କାନ ଟେଲି-ଫୋନର କଥା ଶୁଣିବାରେ ଦେଲା । ରେଡ଼ିଓର ସୂଚୀକ ଦ୍ୱାରା ସେ ସାରା ଭାରତ ବର୍ଷର ଛନ୍ଦ ଦେଖୁଥିଲା । ଯେତେବେଳେ ସଜ୍ଜନ ତାକୁ ଡାକିଲା, ସେହି ସମୟରେ ବଡ଼ ମଧୁର କଣ୍ଠରେ କର୍ଣ୍ଣାଟକ ସଂଗୀତ ପ୍ରସାରିତ ହେଉଥିଲା । କନ୍ୟା ଟିକେ ସଙ୍କୁଚିତ ହୋଇ ଟେଲିଫୋନକୁ ଆସିଲା ।

ସଜ୍ଜନ ମହିପାଳକୁ କହିଲା ଏଇ ଯେ, 'ସେ ଆସିଗଲେ—ଇଏ ହେଉଛନ୍ତି ମିସ୍ ବନକନ୍ୟା ଏବଂ ଅନ୍ୟ ଦିଗରେ ଅଛନ୍ତି ମୋର ବେକା ବନ୍ଧୁ ।' କହୁ କହୁ ସଜ୍ଜନ ରସିଭର କନ୍ୟାକୁ ଦେଇଦେଲା ।

କନ୍ୟା ହସି କରି ରସିଭର ନେଲା, ମହିପାଳ ସହିତ କଥା ହେବାକୁ ଲାଗିଲା—'ନମସ୍କାର, ମହାଶୟ ? (ହସି) ନାହିଁ ମୁଁ ସତରେ କହିବ ନାହିଁ । ଆପଣ ମାନେ ଦୁଇଜଣ ତ ବନ୍ଧୁ, ଜଣେ ଅନ୍ୟ ଜଣକୁ ଯାହା ଇଚ୍ଛା ତାହା କହି ପାରିବେ । ମୁଁ ତ ଆପଣ ଦୁଇଜଣଙ୍କ କଳାରୁ ପ୍ରେରଣା ନେଉଛି । —ଆଜ୍ଞା, ଭଲ ଲାଗିଲା, ସତ । ଖୁବ ଭଲ କଣ କହିବ ନାହିଁ । ଆପଣଙ୍କ 'ଦେବତା' ଗଳ୍ପ ଖୁବ୍ ଭଲ ।'

ହଠାତ୍ ଛାତ ଉପର ଦେଇ ଗୋଟିଏ ଉଡ଼ାଜାହାଜ ଖୁବ୍ ଜୋରରେ ଶବ୍ଦ କରି ଚାଲି ଗଲା । କାନର ପର୍ଦ୍ଦା ଫାଟି ଗଲା ଭଳି ଲାଗିଲା । ବନକନ୍ୟା ପୁଣି କଥାବାର୍ତ୍ତା ଆରମ୍ଭ କଲା । ଏହି ସମୟରେ ଆଉ ଗୋଟିଏ ଉଡ଼ାଜାହାଜ ଆସିଲା

—ତା ଠାରୁ ଟିକେ ତଳେଇ କଣଗଲା ଏବଂ ଖୁବ୍ ଜୋରରେ ଶବ୍ଦ ହେଲା । ବନକନ୍ୟା ପାଇଁ କଥା ଶୁଣିବା କଷ୍ଟକର ହୋଇଗଲା । ସଜ୍ଜନ କୌତୁହଳ ହୋଇ ବାଲ୍‌କୋନି ଉପରେ ଦେଖିବା ପାଇଁ ଗ୍ଲଲେ ।

ମହୀପାଳ ବନକନ୍ୟାଙ୍କୁ କହିଲା ଯେ ସେ ବର୍ତ୍ତମାନ ସଜ୍ଜନଙ୍କ ଘରେ ପହଞ୍ଚିଛି । କହି ରିସିଭର ରଖିଦେଲା । ଦୁଇ—ଦୁଇଟା ଉଡ଼ାଜାହାଜର ଏହିପରି ଏତେ ତଳେ ଉଡ଼ିବାରୁ ମହୀପାଳ ଏବଂ ରେଡ଼ିଓ ଷ୍ଟେସନର ଅନ୍ୟ ଲୋକମାନେ ଅସ୍ଥିରତା ପ୍ରକାଶ କଲେ । ଏହାଭିତରେ ମହୀପାଳ ପାଇଁ ପୁଣି ଟେଲିଫୋନ ଆସିଲା । ଏଥର କର୍ଣ୍ଣେଲ କହୁଥିଲା ।

ମହୀପାଳ କହିଲା—'ଏଠାରେ ରହିବ ? କାହିଁକି ? ମୁଁ ସଜ୍ଜନର ପାଖକୁ ଯାଉଛି—କ'ଣ ? ଏରୋଡ୍ରମ୍‌କୁ କହୁଛ ? ସେଠାରେ କାହିଁକି ମରିବା ପାଇଁ ଯାଇଛ ତୁମେ ?

ଆକାଶରେ ପୁଣି ଉଡ଼ାଜାହାଜ ଘୂରିବାକୁ ଲାଗିଛି—ଗୋଟିଏ ପରେ ଅନ୍ୟଟି ଯେତେ ଯୋର ସେତେ ଶବ୍ଦ ।

ଉଡ଼ାଜାହାଜ ଚକ୍ର ପରେ ଚକର କାଟିବାକୁ ଲାଗିଲା । ସାରା ଶହର ଉପରେ ଘୂରିବାକୁ ଲାଗିଲା । ଶୀତର ରାତି । ସନ୍ ୬୨ର ପ୍ରଥମ ଦିନ ଏହି ପ୍ରଥମ ଥର ଆକାଶର ଶବ୍ଦ ଲୋକମାନଙ୍କୁ ଅତି ଆଶ୍ଚର୍ଯ୍ୟ ଚମକ ଦେଇଥିଲା । ପାଞ୍ଚ ମିନଟ୍ ପର୍ଯ୍ୟନ୍ତ ଉଡ଼ାଜାହାଜ ଏହିପରି ଘୂରିବାକୁ ଲାଗିଲା । ବନ୍ଦ ହେଉ ହେଉ ପାଟିତୁଣ୍ଡ କମିଗଲା । ଶହ ଶହ ରେଜାଇର ଉଷ୍ମ ଫିକା ପଡ଼ିଗଲା । ହାଟ, ବାଟ ଗାଁ, ଗଳି, ଚୌରାସ୍ତା, ଛାତ ସବୁ ସ୍ଥାନରେ ପାଟିତୁଣ୍ଡ ବଢ଼ିବାକୁ ଲାଗଲା ।

ପୁଣି ପାଟିତୁଣ୍ଡ ହେବାକୁ ଲାଗିଲା କାରଣ ଆକାଶରୁ କାଗଜ ପଡ଼ୁଥିଲା ।

ମୁଣ୍ଡରେ ସିନ୍ଦୁର ପିନ୍ଧି ସୁନ୍ଦର ଦେଖାଯାଉଥିବା ମୁହଁ ଭଳି ନିର୍ମଳ ପୂର୍ଣ୍ଣିମାର ଜୋସ୍ନାଲୋକରେ ଧଳା ପାରା ରୂପୀ କାଗଜମାନେ ଉଡ଼ିବାକୁ ଲାଗିଲେ ।

ସହରରେ ଗଳି ଏବଂ ସଡ଼କରେ କୋଠାଉପରେ ଆକାଶର ବରଦାନକୁ ରୋକିବା ପାଇଁ ଲକ୍ଷ ଲକ୍ଷ ହାତ ଉଠେଇବାକୁ ଲାଗିଲେ । ସଡ଼କ ଉପରେ ଥିବା ବିଜୁଳି ଖମ୍ବଠାରୁ ଅଳ୍ପ ଉଚ୍ଚରେ ଯେତେବେଳେ କାଗଜ ଗୁଡ଼ିକ ଆସିଯାଇଛି ସେତେବେଳେ ଲୋକମାନେ ସେଗୁଡ଼ିକ ବନ୍ଧ ବୋଲି ଜାଣିପାରିଲେ । ଯିଏ ସହଜରେ ବନ୍ଧ ଧରି ପାରୁଛନ୍ତି ସିଏ ଯେପରି ଲଟେରି ଜିତି ଯାଇଛି ଏବଂ

କେଉଁଠାରେ ଟେଣାଓଟେରା ଲଗିଛି, ଧକ୍କା-ଧକ୍କି ଗାଳି ଆରମ୍ଭ ହୋଇଯାଇଛି । ସିଏ ବହି ପାଇ ନାହିଁ ଇତସ୍ତତ ଭାବରେ ବୁଲିବାକୁ ଲଗିଲେ । କୌଣସି ବୃଦ୍ଧ ଲୋକର ହାତରେ ଉଦ୍ଧ୍ୟ ବହି ଆସିଯାଇଛି ତାହାହେଲେ ସେ ଉଦ୍ଧ୍ୟ ପଢ଼ୁଥିବା ଲୋକଙ୍କୁ ଅନୁରୋଧ କରିବାକୁ ଲଗିଲେ । ଯେଉଁ ଉଦ୍ଧ୍ୟ ଲୋକଙ୍କ ହାତରେ ବୃଦ୍ଧ ବହି ଆସିଯାଇଛି ତ ସେ ନିଜ ସ୍କୁଲରେ ପଢ଼ୁଥିବା ପିଲମାନଙ୍କୁ ବୁଝାଇବାକୁ ଲଗିଲେ । ଯେତେ ଲୋକ ଥିଲେ ସମସ୍ତେ ଯେପରି କର୍ମ ତତ୍ପର ।

ଜନତା ଏହି ପରି ଅବସର ସମୟକୁ ଫୁର୍ତ୍ତି କରି କଟାଇ ଦିଅନ୍ତି, ଅଥଚ ଆଜି ଏକ 'ଆନନ-ଫାନନ' ପ୍ରଶ୍ନର ପର୍ଚ୍ଚିକା ପାଇବା ପାଇଁ ହଜାର ଦୁର୍ଘଟଣା ହୋଇଗଲା, ତର୍କ ବିତର୍କ ମଧ୍ୟ ହୋଇଗଲା ଏବଂ ବର୍ତ୍ତମାନ ଲୋକ-ବାକ ଗୋଟିଏ ଜାଗାରେ ଜମାହୋଇ ପ୍ରଶ୍ନର ପୁସ୍ତିକା ପଢ଼ିବାରେ ଲଗିଲେ ।

ବହିର ପ୍ରଥମ ପୃଷ୍ଠାରେ ଛୋଟିଏ ଓଢ଼ଣାର ରଙ୍ଗ୍ ପେନ୍‌ସିଲ୍ ସ୍କେଚ ଛପା ହୋଇଛି । ତଳେ ସ୍ଥୂଳପାର ବଡ଼ ଅକ୍ଷରରେ ଲେଖା ହୋଇଛି—ଓଢ଼ନାର ଅନ୍ତରାଳରେ ଲେଖିକା କୁମାରୀ ବନକନ୍ୟା ।

ନିଜ ଘରର ଦୁର୍ଘଟଣାର କଥା ଖବର ଦେଉ ଦେଉ ଶେଷରେ ଲେଖିକା ଲେଖିଛନ୍ତି 'ପୁରୁଷ ସମାଜ ବିଷୟରେ ମୋର କିଛି କହିବାର ନାହିଁ । ଯାହାର ଲୁଟିବାର ଅଭ୍ୟାସ ପଡ଼ିଯାଇଛି ସେ କୌଣସି ପ୍ରକାରରେ ନିଜର ସ୍ୱଭାବ ଛାଡ଼ି ପାରିବ ନାହିଁ । ମୋ ଭଉଣୀମାନଙ୍କୁ ମୋର କିଛି କହିବାର ଅଛି । ଯେଉଁ ଭଉଣୀ ସ୍କୁଲ କଲେଜରେ ପଢ଼ୁଛନ୍ତି—ପଢ଼ାଉଛନ୍ତି, ସେମାନେ ଯେଉଁମାନେ କି ଘରର ଚାରିକାନ୍ଥ ମଧ୍ୟରେ ବନ୍ଦ ଅଛନ୍ତି, ସେହିମାନଙ୍କୁ ମୋର ସତ୍ୟାଗ୍ରହ ପୂର୍ଣ୍ଣ ନିବେଦନ ଏହି କି 'ପ୍ରେମ' ଶବ୍ଦରେ ପରିପୂର୍ଣ୍ଣ ଥିବା ନାରୀ ବିରୋଧୀ ଯେଉଁ ଖରାପ ଚିଜ ଜନ-ସମାଜ ଆଜି ଆପଣାଉ କରିଛି, ତାହା ସାପର ଫଣାଠାରୁ ମଧ୍ୟ ଭୟଙ୍କର ଏବଂ ତା' ଠାରୁ ଦୂରରେ ରହିବା ଉଚିତ । ନିଜର ଗୋଲାମ କରି ଅତ୍ୟାଚାର ଯାହା ଉପରେ ଶାସନ କରିବାକୁ ଚାହୁଁଛି । ତାହାର ନୈତିକ ବଳ ସେ ପ୍ରଥମେ ଭାଙ୍ଗି ଦେଉଛନ୍ତି । ହଜାର ବର୍ଷର ଇତିହାସରେ ଅଧିକାଂଶ ସମାଜରେ ନାରୀ ସହିତ ନାନା ପ୍ରକାରରେ ଖେଳି ଶୋଷଣ କରି ସମୟରେ ତାକୁ ଗୋଡ଼ତଳେ ଦଳି ଦେଇଛନ୍ତି । ନିଅନ୍ତା ଜଳାଇଛନ୍ତି । ବିବାହ ମନ୍ତ୍ରରେ ନାରୀକୁ ଅର୍ଦ୍ଧନାରୀଶ୍ୱରର ପ୍ରତୀକ ସ୍ୱରୂପ ସମତା ଦିଆଯାଇଛି—ଏହି ମହାନ୍ ଜନତାନ୍ତ୍ରିକ ଆଦର୍ଶ ଅନେକ ପୋଥିର ବସ୍ତୁ ହୋଇ ଆଜି ଭାରତରୁ ଅଧିକ ଭାରତ ବାହାରେ ପୂଜା ପାଉଛି । ଯେଉଁଠାରେ ନାରୀର ପୂଜା ହୁଏ ସେଠାରେ ଦେବତା ବାସ

କରନ୍ତି—ଏହି ମହାନ ଉକ୍ତିକୁ ଛାଡ଼ି ନିର୍ଲଜତାର ସହିତ ଭାରତର ପୁରୁଷ ସମାଜ ବ୍ୟବହାରିକ କ୍ଷେତ୍ରରେ ନାରୀର ସ୍ଥାନ ହାଡ଼ି, ପାଣ, ଶୁଦ୍ର ଏବଂ ପଶୁପରି ମାନି ଆସୁଛନ୍ତି । ଏହାଙ୍କୁ ଅଧର୍ମ କୁହାଯାଏ । ଧର୍ମ, ନ୍ୟାୟ, ରାଜ୍ୟ ସବୁ ପୁରୁଷର ଅଟେ । ପୁରୁଷ ନିଜର ଇଚ୍ଛାର ସିଙ୍କୁଳିରେ ନାରୀକୁ ମିଛରେ ବା ଜବରଦସ୍ତ ବାନ୍ଧି ନିଜର ଦାସି କରିନିଏ, ତାହାହେଲେ ବସ୍ତୁର କ'ଣ କହିବ ? ଦେବତା ହୋଇ ଏହି ଠକ ଜଗତ ଯଦି ତାହାର ସର୍ବସ୍ୱ ହରଣ କରିନିଏ ତାହାହେଲେ ସେ କଣ କରିବ ? କିନ୍ତୁ ଆମକୁ ବର୍ତ୍ତମାନ ମିଛ ଧର୍ମର ଭୟ ଏବଂ ମିଛ ଦୋଢ଼ଣିର ମାୟାଜାଲ ଛିଣ୍ଡାଇ କହିବାକୁ ମଧ୍ୟ ହେବ ଏବଂ ଲଢ଼ିବାକୁ ମଧ୍ୟ ପଡ଼ିବ ।

ମୁଁ ଯେତେବେଳେ ମୋ ଘରେ ବାପାଙ୍କ ଦ୍ୱାରା ହେଉଥିବା ଅତ୍ୟାଚାର ବିରୋଧରେ କିଛି କହିବାକୁ ଚାହେଁ ସେତେବେଳେ ମୋର ଭାଉଜ ହିଁ କାନ୍ଦି କାନ୍ଦି ମୋତେ ଅଟକାଇ ଦିଅନ୍ତି । ହଜାର ଚେଷ୍ଟା କରି ମଧ୍ୟ ମୁଁ ତାଙ୍କୁ ଏହା ବୁଝାଇ ପାରିଲି ନାହିଁ ଯେ ଏହିପରି ଅତ୍ୟାଚାର ବିରୋଧରେ ଜନମତ ସୃଷ୍ଟି କରିବାରେ ଘରର ସମ୍ମାନ ପଦାରେ ପଡ଼ିବ ନାହିଁ ।

ସ୍ତ୍ରୀମାନଙ୍କ ଉପରେ ଅତ୍ୟାଚାର ହୁଏ । ବର ନାରୀକୁ ମାରିକି ପଶୁଭଳି ବ୍ୟବହାର କରାଯିବା ନିଜ ପ୍ରତି ଏକ ଅପମାନ ଜନକ କାର୍ଯ୍ୟ । ନାରୀର ମର୍ଯ୍ୟାଦା ସେତିକବେଳେ ପଦାରେ ପଡ଼େ ଯେତେବେଳେ ପୁରୁଷର ନିଜର ପ୍ରେମ ରୂପକ ମାୟାଜାଲରେ ତାକୁ ପକାଇ ଚତୁରତାର ସହିତ ତା'ର ସମସ୍ତ କିଛି ଲୁଟିନିଏ । ବସ୍ତୁର ଅସହାୟା ନିରୀହା ନାରୀ ଭାବେ ଯେ ପୁରୁଷ ତାକୁ ଭଲ ପାଉଛି । ସାରା ଜୀବନ ସୁଖ-ଦୁଃଖରେ ସେମାନେ ଦୁଇଜଣ, ଜଣେ ଅନ୍ୟ ଜଣଙ୍କ ପରିପୂରକ ହେବେ—କିନ୍ତୁ ମୁଁ ମୋର ଭଉଣୀମାନଙ୍କୁ ପଚାରୁଛି ଯେ, ଏହା କ'ଣ ପ୍ରେମ ଯାହା ଆଜି ଅମୃତ ଏବଂ କାଲି ବିଷ ହୋଇଯାଏ ? ଏହା କ'ଣ ପ୍ରେମ ଯାହା ଆମର ପ୍ରତ୍ୟେକ ନିଶ୍ୱାସରେ ପୋଡ଼ିହୋଇ ଲହୁ ଲୁହର ଖାରିଆ ପାଣିରେ ପରିଣତ ହୋଇଯାଏ ?

ସାରା ଦିନ ଆମେ ଗୋଟିଏ ନିର୍ଦ୍ଦୟ କପଟର ଚିନ୍ତାରେ ମଗ୍ନ ରହିବା, ନା କୌଣସି କାର୍ଯ୍ୟରେ ମନଦେବା-କାନ୍ଦି କାନ୍ଦି ଆଖି ପଥର ହୋଇଯାଏ, କେବେ କେବେ ଲୁହର ଭାରରେ ଆଖି ନଷ୍ଟ ହୋଇଯାଏ, ଆମ୍ଭମାନଙ୍କର କୌଣସି ଆନନ୍ଦ, ଉତ୍ସାହ ବା ଅନ୍ୟ ଚିନ୍ତା ରହେ ନାହିଁ । ମୁଁ ପଚାରୁଛି ଏହା କ'ଣ ସୁଖ ଦେଉଛି ? ନାରୀମାନେ ଏହି ମୋହ ଦୂରକରି ଓଢ଼ଣା ଭିତରୁ ଜାଗି ଉଠନ୍ତୁ । ପୁରୁଷର ଅତ୍ୟାଚାର ବିରୋଧରେ ସଙ୍ଗଠିତ ହୋଇ ଆନ୍ଦୋଳନ କରୁ । ଯେଉଁଦିନ ସ୍ତ୍ରୀ ଜାତି

ନିଜ ଉପରେ ହେଉଥିବା ଅତ୍ୟାଚାରକୁ ବନ୍ଦ କରିବା ପାଇଁ ଦୃଢ଼ ହୋଇ ଠିଆ ହେବେ, ସେହିଦିନ ଏହି ଦୁନିଆରୁ ସମସ୍ତ ଅତ୍ୟାଚାର, ଅନାଚାର ସମାପ୍ତ ହେବ ।

ସଜ୍ଜନ ଏବଂ କନ୍ୟା ସୋଫା ଉପରେ ଜଣେ ଅନ୍ୟ ଜଣକ ଉପରେ ଟିକେ ଝୁଙ୍କିପଡ଼ି ଏକ ସାଙ୍ଗରେ ପଢ଼ୁଥିଲେ । ବନକନ୍ୟାର ଲେଖାର ସମାପ୍ତି ପରେ ଗୋଟିଏ ଷ୍ଟେଟ ନୋଟ୍ ଛପା ହୋଇଛି । ଭଉଣୀ ବନକନ୍ୟାଙ୍କର ଲେଖାଗୁଡ଼ିକ ପଲିଟିକ୍ସ, ପାର୍ଟି ଏବଂ ଦୁନିଆର ଜଞ୍ଜାଳରୁ ବହୁତ ଉର୍ଦ୍ଧ୍ୱରେ । ଏହା ପ୍ରଣିଧାନ ଯୋଗ୍ୟ । ଆମ୍ଭେମାନେ ସମସ୍ତଙ୍କୁ ହାତଯୋଡ଼ି ଅନୁରୋଧ କରୁଛୁ କି ଜନତା ଏହା ଉପରେ ନଜର ଦିଅନ୍ତୁ ଏହି ଇଲେକ୍ସନ ଯାହା ଚାଲୁଛି ଏବଂ ହୁଲସ୍ଥୁଲ ଯାହା ହେଉଛି ସେଥିରେ ଯେଉଁ ନ୍ୟାୟ ପାଇଁ ପବ୍ଲିକ୍ ଅସ୍ଥିର ମୁଁ ଭାବୁଛି ଭଉଣୀ ବନକନ୍ୟାଙ୍କର ଏହି ଲେଖା, ସେହି ନ୍ୟାୟ ଦେଉଛି । ପବ୍ଲିକ୍ ଏହି ଦିଗରେ ନଜର ଦିଅନ୍ତୁ । (ତଳେ ଦସ୍ତଖତ ଅଛି ମହିପାଲ ଶୁକ୍ଳ, ସଜ୍ଜନ ବର୍ମା, ନଗିନ ଚାନ୍ଦ ଜୈନ ଓରଫ କର୍ଣ୍ଣେଲ ସାହେବ ।)

ପଢ଼ୁ ପଢ଼ୁ କନ୍ୟା ଆଖିରେ ଖୁସି ଝଲସି ଉଠିଲା, ସଜ୍ଜନର ହସ ଏବଂ ଅଭିମାନ ଦୁଇଟା ହିଁ ପୂର୍ଣ୍ଣ ହେଲା । ସଜ୍ଜନ କହିଲା—"ଏହି କର୍ଣ୍ଣେଲଟା ସବୁବେଳେ ହିଁ ଗଧର ଗଧ ହୋଇ ରହିଗଲା । କଣ ଏହିପରି ଷ୍ଟେଟମେଣ୍ଟ ଦେଇଛି ଆଉ ତା' ଉପରେ ମୋର ଆଉ ମହିପାଳର ନାମ ମଧ୍ୟ ଦେଇ ଦେଇଛି ଗଧଟା ।"

କନ୍ୟା ହସିଲା, କହିଲା—ଏଥିରେ କ'ଣ ଭୁଲ ହେଲା ? କର୍ଣ୍ଣେଲ ସାହେବ କ'ଣ ଖରାପ କରିଛନ୍ତି ?

ସିଗେରେଟ୍ ମୁହଁରେ ଲଗାଇ ଲାଇଟର ବାହାର କରୁ କରୁ କର୍ଣ୍ଣେଲ କହିଲା—"ବାସ୍, ସେହି କି ସମାସ ଦିନ ତୁମ ସାମନାରେ ହିଁ ମୁଁ ତାକୁ ଅର୍ଟିକେଲ ଦେଇଛି ତାପରେ ଆଜି ସନ୍ଧ୍ୟା ପର୍ଯ୍ୟନ୍ତ ସେ ମୋତେ ଏହି ବିଷୟରେ କିଛି ଜଣେଇ ନାହିଁ—କୌଣସି ରକମର ଆଲୋଚନା ମଧ୍ୟ ହୋଇ ନାହିଁ ।

'ଓ' ଆପଣଙ୍କୁ ଜଣେଇ ନାହାନ୍ତି ନା, ଆଖିରେ ତାହାର ସନ୍ଦେହ ଝଲସି ଉଠିଲା ସଫଳତାରେ ଉଚ୍ଛଳ ଉଠୁଥିବା ହୃଦୟ ହଠାତ୍ ଅସତର୍କ ଭାବରେ ଭିଜା ମନର କଥା ଚକ୍ଷୁରେ ପ୍ରକାଶ କଲା । ସଜ୍ଜନ ମୁଗ୍ଧ ହୋଇ ତାକୁ ଦେଖିବାକୁ ଲାଗିଲା । ପରସ୍ପରର ରହସ୍ୟର ପ୍ରଥମ ପର୍ଦା ଦୁଇଜଣଙ୍କ ସାମନାରୁ ଦୂରେଇ ଯାଉଥିଲା । ଏହି ଅନୁଭୂତିକୁ ଆଜିର ଗନ୍ତାଘରେ ରଖି ପୁଣି ନିଜ କଥା ଉଠାଇ ଉଠାଇ କନ୍ୟା କହିଲା—ଏହି ନୋଟ ତ ଆପଣଙ୍କ ଦ୍ୱାରା ତିଆରି ହୋଇଥିଲା ।

ସଜ୍ଜନ ଅକାରଣରେ ଜୋରରେ ହସି ଉତ୍ତର ଦେଲା—"ବର୍ତ୍ତମାନ ଏହାକୁ କଣ୍ଟ୍ରୋଲ ଢାଞ୍ଚାର କରଛୁ ବୋଲି ଭାବ । ମୋର କୌଣସି ସ୍କେଚ ବହିରୁ ମାର-ନେଇଛୁ । ଯଦି ମୋତେ କହିଥାନ୍ତ ତାହାହେଲେ ମୁଁ ନୂଆ ଚିତ୍ର ଆଙ୍କି ଦେଇଥାନ୍ତି ।

'କିନ୍ତୁ ଏହା ତ ଭଲ ଦେଖାଯାଉଛି'···ସେ ଅନେକ ଟଙ୍କା ଖର୍ଚ୍ଚ କରିଥିବେ ।

ଓଃ ! ଟଙ୍କା ଆଉ ହୋଇଛି କାହିଁକି ?

ନିଜ ପାଇଁ ସବୁ ଖର୍ଚ୍ଚ କରିପାରନ୍ତି । ଅନ୍ୟପାଇଁ ଖର୍ଚ୍ଚ କରିବା ବହୁତ କଷ୍ଟକର କାମ କୌଣସି ଉଦ୍ଦେଶ୍ୟ ପୂରଣ କରିବା ପାଇଁ ତ ଆହୁରି କଷ୍ଟକର । କନ୍ୟା ଭାବପୂର୍ଣ୍ଣ ସ୍ୱରରେ ଉତ୍ତର ଦେଲା ।

ସଜ୍ଜନ ଏହା ଦେଖାଇବାକୁ ଚାହୁଁଥିଲା କି ସେ ଏବଂ ତାର ବନ୍ଧୁ, ବିଶେଷ କରି ସେ ନିଜେ ଯେ କୌଣସି ସତ୍ ଉଦ୍ଦେଶ୍ୟ ପୂରଣ କରିବା ପାଇଁ, ସର୍ବଦା ନିଜ ମନପ୍ରାଣ-ଧନ ଦେବାପାଇଁ ପ୍ରସ୍ତୁତ । ସେ ସୋଫାର ବାଡ଼ା ଉପରେ ଦୁଇହାତ ରଖି କହିଲା—"ମୋର ଜୀବନରେ ଏହି ବିଚାର ହେଲା ପ୍ରଥମ କଥା ଏବଂ ମୋର ମନ ମଧ୍ୟ କେବଳ ସେହି ଲୋକଙ୍କ ସହିତ ମିଳେ ଯିଏ ମନ ଉଚ୍ଚ ରଖେ ଏବଂ ଏହାକୁ ମୁଁ କୌଣସି ବଡ଼ପଣିଆର ଚିହ୍ନ ବୋଲି ଭାବେ ନାହିଁ । ପ୍ରତ୍ୟେକ ଲୋକଙ୍କର ଏହି ଗୁଣ ରହିବା ଉଚିତ୍ ।

କନ୍ୟା ଆଖି ବଡ଼ ବଡ଼ କରି ଚାହିଁ ରହିଲା । ସେ ଦୃଷ୍ଟିରେ କୌଣସି ସଙ୍କୋଚ ନ ଥିଲା । ସଜ୍ଜନର ବ୍ୟକ୍ତିତ୍ୱରେ ଯେପରି ସେ ନିଜ ଅସ୍ତିତ୍ୱ ଦେଖିଲା । ଯାହାକୁ ପାଇବାର ଇଚ୍ଛା ପ୍ରତ୍ୟେକ ସ୍ତ୍ରୀ ଏବଂ ପୁରୁଷଙ୍କର ଥାଏ । କନ୍ୟାର ଚାହାଣି ସଜ୍ଜନର ଭାଙ୍ଗି ପଡ଼ିଥିବା ମନରେ ଉତ୍ତେଜନା ସୃଷ୍ଟି କରିଲା । ଏହି ଉତ୍ତେଜନା ତାକୁ ଅପାର ଆନନ୍ଦ ମଧ୍ୟ ଦେଉଥିଲା । ସଙ୍ଗେ ସଙ୍ଗେ ଉଠି ଠିଆ-ହେବାର ଚ୍ୟାଲେଞ୍ଜ ମଧ୍ୟ । କନ୍ୟା ଆଖିରେ ତାକୁ ଥରକୁ ଥର ନିଜ ମନକୁ ଲଗାମ ଦେବାକୁ ପଡ଼ୁଥିଲା । କନ୍ୟାକୁ ତା' ଦଗରେ ଅପଲକ ଦୃଷ୍ଟିରେ ଚାହିଁବାର ଦେଖି ସଜ୍ଜନ ନିଜ କଥା ଭାବୁ ଭାବୁ ସାବଧାନ ହୋଇଗଲା । ପ୍ରସଙ୍ଗ ବଦଳାଇ କହିଲା—"ତୁମର ଲେଖା ଖୁବ୍ ସୁନ୍ଦର । ଜନତା ଉପରେ ନିଶ୍ଚୟ ଏହାର ସୁପ୍ରଭାବ ପଡ଼ିବ ।"

କନ୍ୟା ମୁଣ୍ଡ ତଳକୁ ପୋଢ ଚନ୍ତା କରିବାକୁ ଲଗିଲ । ପୁଣି କହିଲ—ବୃଝି ପାରୁ ନାହିଁ କଣ ହେବ । ଆପଣଙ୍କୁ ମନର କଥା କହିବ । ଯେତେଦିନ ପର୍ଯ୍ୟନ୍ତ ଏହି ଅତ୍ୟାଚାରର ଏବଂ ମିଥ୍ୟାର ପର୍ଦ୍ଦା ନ ଉଠିବ, ମୁଁ କ୍ଷୋଭରେ ଅସ୍ଥିର ହେଉଛୁ । ଆପଣ ଭାବିପାରିବେ ନାହିଁ, ସେଦିନ କେତେ ଚନ୍ତା ନେଇ ମୁଁ ଆପଣଙ୍କ ପାଖକୁ ସେ ଲେଖା ନେଇ ଆସିଥିଲ । ଆପଣଙ୍କଠାରୁ ଏବଂ ପରେ କର୍ନେଲ ସାହେବଙ୍କ ଠାରୁ ଭରସା ପାଇବାରୁ ଶାନ୍ତି ପାଇଲ । ଭାବିଲ ଦୁନିଆରେ ଯଦି ଅନ୍ୟାୟ ଅଛି ତାହାହେଲେ ତାର ପ୍ରତିଜ୍ଞା କରିବାର ସାଧନା ମଧ୍ୟ ଅଛି । ମୋତେ ଏପରି ଲଗିଲ ଯେ ମୁଁ ମୋର ପ୍ରତିଶୋଧ ନେଇ ସାରିଛି । କିନ୍ତୁ ବର୍ତ୍ତମାନ ଭାବୁଛି ଯେ ଏତେ ଧୂମଧାମରେ ମୋର ମନର କଥା ପ୍ରଚାର କରି ହେଲ । ପରେ ପୁଣି କଣ ହେବ ? ହଜାର ହଜାର ଲକ୍ଷ ଲକ୍ଷ ଲୋକ ଏହି ପାମ୍ପଲେଟକୁ ପଢ଼ିବେ । ଦୁଇ ଚାରି ଦିନ ଖୁବ୍ ଜୋର ସୋର ଚର୍ଚ୍ଚା ମଧ୍ୟ ଚାଲିବ, କିନ୍ତୁ ତା ପରେ ? ପୁଣି ଏହି ପରି ସବୁ କିଛି ଚାଲିବ । କୁଆଙ୍କୁ ଅଣବାବୁଆ କହି ମାରିଦିଆଯିବ । ସେମାନେ ନିଜେ ପୋଡ଼ି ହୋଇ ଆତ୍ମହତ୍ୟା କରିବେ ।······ନିଜର ପ୍ରିୟା ବର୍ତ୍ତମାନ ସଜ୍ଜନର ମନରେ ପ୍ରିୟା' ଶବ୍ଦ ସ୍ପଷ୍ଟ ଯାହାକୁ ସାନ୍ତ୍ୱନା ଦେବା ପାଇଁ ଖୁବ୍ ଦୃଢ଼ତାର ସହିତ କନ୍ୟାକୁ କହିଲ—'ନାହିଁ ଶେଷ ପର୍ଯ୍ୟନ୍ତ ଆମେ ଏହି ଅନ୍ୟାୟର ପ୍ରତିରୋଧ ପାଇଁ ସଂଗ୍ରାମ କରିବା ।

ସଜ୍ଜନର ନଜରରେ ତା କଥାର ଶକ୍ତି ପରୀକ୍ଷା କରୁ କରୁ ତା ଉପରୁ ଦୃଷ୍ଟି ଫେରାଇ ଗୋଟିଏ ହାଲୁକା ନିଶ୍ୱାସ ଛାଡ଼ି କନ୍ୟା କହିଲ—ବୃଝି ପାରୁ ନାହିଁ କପରି ହେବ, ଆମର ପଲିଟିକାଲ ପାର୍ଟି ଗୁଡ଼ିକ ଖୁବ୍ ଜୋର ସୋରରେ ସମାଜ ଛାଡ଼ି କ୍ଷମତା ପଛରେ ଦୌଡ଼ିଛନ୍ତି ।'

ଦୌଡ଼ିବାକୁ ଦିଅ, ପବ୍ଲିକ୍‌ମାନେ 'ସେମାନଙ୍କୁ ନିଜେ ଗେଟ୍ ଆଉଟ୍ କରି ଦେବେ ।'

ଗେଟ୍ ଆଉଟ୍ କରିବାର ବ୍ୟବସ୍ଥା ଦମାଜରେ ନାହିଁ, ସଜ୍ଜନ ମହାଶୟେ ଅରାଜକତା ମାନବ ସମାଜର ବଷ ନୁହେଁ । ସାମାଜିକ ଚେତନା ବଦଳେଇବାର କଥା ! ଏହାକୁ ନବଦଳାଇଲେ ଏହି ସବୁ ଅନ୍ୟାୟ ଏହିପରି ହେଉଥିବ ଏବଂ ରାଜନୀତକୁ ଆମେ ତାହାର ସ୍ୱଳୁ କଥା ଯୋଗୁଁ ଗ୍ରହଣ କରିନେଉଥିବୁ ।

କିନ୍ତୁ ସମାଜ ରୂପକ ଗାଡ଼ିର ପଲିଟିକ୍ସ ହେଉଛି ଷ୍ଟିଅରିଙ୍ଗ୍ । ମୁଁ ଏହା ମାନୁ ନାହିଁ । କଲଚର୍—'

କଲଚର ପେଟ୍ରୋଲ ପରି ଦରକାର, ଯାହାକୁ ଛାଡ଼ି ଗାଡ଼ି ଅଚଳ । କିନ୍ତୁ ଏସବୁ ଷ୍ଟିଅରିଙ୍ଗ୍‌ର ମହତ୍ତ୍ୱକୁ ତ ଆପଣ କମ୍ କରି ପାରିବେ ନାହିଁ । ଯେତେଦିନ ପର୍ଯ୍ୟନ୍ତ ସମାଜ ଏତିକି ସୁସଂସ୍କୃତିକ ଏବଂ ସଭ୍ୟ ନ ହେଉଛି ଯଦ୍ୱାରା କି ସେକ୍ରେଟେରିଏଟ୍, ପୁଲିସ୍ ଏବଂ ମିନିଷ୍ଟରଙ୍କ ଛଡ଼ା ମଧ୍ୟ ସହଜରେ ଚଳି ପାରିବ, ସେତେଦିନ ପର୍ଯ୍ୟନ୍ତ ରାଜନୀତିର ମହତ୍ତ୍ୱ ଏହିପରି ରହିବ ଏବଂ ଏହି ଅବସ୍ଥା ବର୍ତ୍ତମାନ ତୁଳନାରେ ଯଦିବା ଅଧିକ ନାହିଁ, ତାହା ହେଲେ ମଧ୍ୟ ଅତି କମ୍‌ରେ କେତେଶହ ବର୍ଷ ପର୍ଯ୍ୟନ୍ତ ରହିବ ହିଁ ରହିବ । କନ୍ୟା ଚୁପ ହୋଇଗଲା । ସଜ୍ଜନ ମଧ୍ୟ ବିଚାର ମଗ୍ନ ହୋଇ ଚୁପ କରି ବସି ରହିଲା । କନ୍ୟା ପୁଣି କହିବାକୁ ଆରମ୍ଭ କଲା ଆମର ରାଜନୈତିକ ନେତା, କିମ୍ବା ସେମାନଙ୍କ ପାର୍ଟି କାହିଁକି କୌଣସି ପ୍ରକାର ସାଂସ୍କୃତିକ ଚିନ୍ତା କରନ୍ତି ନାହିଁ । ସେମାନେ ଅନୁଭବ କରି ପାରୁ ନାହାନ୍ତି ଯେ ସାଂସ୍କୃତିକବିକାଶ—ଛଡ଼ା ପଲିଟିକ୍‌ସରେ ସ୍ପିରିଚୁଅଲ୍ ଫୋର୍ସ ଆସେ ନାହିଁ, ଏବଂ ଏହା ବ୍ୟତୀତ ପଲିଟିକ୍‌ସ ସବୁବେଳ ପାଇଁ ଗୋଡ଼ ଭଙ୍ଗା ହୋଇ ରହିବ ?

'ଆପଣ ସ୍ପିରିଚୁଆଲ ଫୋର୍ସକୁ ମାନୁଛନ୍ତି' ମୁଁ ଶୁଣିଛି କମ୍ୟୁନିଷ୍ଟମାନେ ଏସବୁ ମାନନ୍ତି ନାହିଁ ।

'କମ୍ୟୁନିଷ୍ଟ ମାନନ୍ତି ନାହିଁ ଠିକ୍ ତେବେ କଣ ଅନ୍ୟ ଲୋକ ସେ କଥା ଜବରଦସ୍ତ ମାନୁଛନ୍ତି ? କନ୍ୟା ହସି କହିଲା- ଠିକ୍ ସେହିପରି କମ୍ୟୁନିଷ୍ଟ ମଧ୍ୟ ମାନୁଛନ୍ତି । କିନ୍ତୁ ପ୍ରତ୍ୟେକଙ୍କର ଜାଣିବା ଏବଂ ମାନିବା ସେମାନଙ୍କର ନିଜ ନିଜ କଥା । ସତ କହିବାକୁ ଗଲେ ସ୍ପିରିଟ, ଆତ୍ମା ବା ପରମାତ୍ମା ଦେ ଠିକ୍ ଠିକ୍ କେଉଁ ଶବ୍ଦକୁ କୁହାଯାଏ ମୁଁ ତାହି ଜାଣେ ନାହିଁ । ଏହା ସତ୍ୟ ଯେ ମନର କୌଣସି ଭାବକୁ ବ୍ୟକ୍ତ କରିବା ପାଇଁ ଏହି ଶବ୍ଦ ମନକୁ ମନ ଆସିଯାଏ ।

ମୁଁ ଜାଣେ ଅତି କମ୍‌ରେ ମୋ ନିଜ ପାଇଁ ତ ନିଶ୍ଚୟ ଜାଣେ', କନ୍ୟା ତାଙ୍କ ଆଡ଼କୁ ଆଖି ବଡ଼ କରି ଚାହିଁଥିଲା । ସଜ୍ଜନ ହସି ଧୀର କୋମଳ ସ୍ୱରରେ କହିଲା – ମୋର ସ୍ପିରିଟ୍, ଆତ୍ମା ବା ପରମାତ୍ମା—ଯାହା କିଛି କୁହନ୍ତୁ—ଗୋଟିଏ ଜଙ୍ଗଲି ଝିଅ ।

ବନକନ୍ୟା ଉପରେ ଏହି କଥାର ତୀବ୍ର ପ୍ରତିକ୍ରିୟା ହେଲା । ଥରେ ତାର ଆଖି ପିତୁଳାରେ ଆନନ୍ଦ ଉଭାହେଲା, ଏବଂ ଏହା ଶୀଘ୍ର ସଂଯତ ହୋଇଗଲା, ଗମ୍ଭୀର ହୋଇ ମଥାନତ କରି ସେ କିଛି ଉତ୍ତର ଦେଲା ନାହିଁ ।

କବାଟ ବାହାରେ କର୍ନେଲ ଏବଂ ମହିପାଲ ଶବ୍ଦ ଶୁଣାଗଲା । ସେମାନେ ଦୁଇଜଣ ଜୋରେ ଜୋରେ କଥା କହି ଆସୁଥିଲେ ।' ଆରେ ବାବୁ କାଲି ଏହାର ପ୍ରତିକ୍ରିୟା ସହରରେ ଦେଖିବ ।'

ଦୁଇ ଜଣ ଘରେ ପ୍ରବେଶ କରିବା ସଙ୍ଗେ ସଙ୍ଗେ କନ୍ୟା ହାତ ଯୋଡ଼ି ଠିଆ ହେଲା, ମହିପାଳ ଗମ୍ଭୀର ହୋଇ ତା'କୁ ଦେଖିବାକୁ ଲାଗିଲା । କର୍ନେଲ ଠିକ ନଜର ଲୋକ ପରି ଅନେଇଲା । କର୍ନେଲ ତାଙ୍କୁ ପଚାରିଲା—'କୁହନ୍ତୁ ଆଜିର ତାମ୍‌ସା କପରି ଲାଗିଲା । ଆପଣଙ୍କୁ ?

କନ୍ୟା ଉତ୍ତର ଦେବା ପୂର୍ବରୁ ହିଁ ସଜ୍ଜନ ମହିପାଲକୁ କହିଲା—' ବନ୍ଧୁ ଭଲ ଓକିଲର ଠିକଣା ଦିଅ ।'

ଏହା ପରେ ମହିପାଲ କିଛି କହିଥାନ୍ତା, କର୍ନେଲ ଉତ୍ସାହର ସହିତ କହିଲା ଓକିଲ ? ହଁ—ହଁ ବର୍ତ୍ତମାନ ଫୋନ କରିବ ? କଣ କାମ ଅଛି ?'

'ତୁମ ଉପରେ ଚୁରି ଶହ କୋଡ଼ିଏ ଧାରା ମକଦ୍ଦମ କରିବା ପାଇଁ ଭାବିଛି ।' ସଜ୍ଜନ ଗମ୍ଭୀର ଭାବରେ ଉତ୍ତର ଦେଲା ।

ଶଳା ଉପରେ ନିଶ୍ଚୟ ମକଦ୍ଦମା ଠୁକି ଦିଅ' କହୁ କହୁ ମହିପାଳ ରହିଗଲା ଏବଂ କନ୍ୟା ଆଡ଼କୁ ଚାହିଁ କହିଲା—'କ୍ଷମା କରିବେ, ମୁହଁରୁ ଗାଳି ବାହାରି ଆସିଲା' କନ୍ୟା ହସିବାକୁ ଲାଗିଲା । ସଜ୍ଜନ କହିଲା ଏହିଁ ସବୁର ମୂଳ । କଣ ଷ୍ଟେଟ-ମେଣ୍ଟ ଛପେଇଛ ଆମ ନାମରେ, ଉତ୍ତର ଦିଅ ? କହୁ କହୁ ସଜ୍ଜନ ଟିପାୟରୁ ପାମ୍ଫଲେଟ ଉଠାଇବା ପାଇଁ ହାତ ବଢ଼ାଇଲା । କର୍ନେଲ ଜୋରରେ ହସିବାକୁ ଲାଗିଲା ।

ମହିପାଲ କହିଲା—ସାରା ରାସ୍ତା ତାକୁ ଧମକେଇ ଆସିଛି । ଏତେ ଖଚ ମିଛ ଭାଷାରେ ମୋର ନାମ ଜୋଡ଼ୁଛି, ଯେ ଦେଖିବା କଥା !

'ଛାପା ନ ଦେଖି ଭାବ ଦେଖ,' ଛାପାର ଭୂଲ୍ ତ ବଡ଼ ବଡ଼ ସାହିତ୍ୟକାର ମଧ କରୁଛନ୍ତି—ବାଲମୁକୁନ୍ଦ ଗୁପ୍ତ ମହାବୀର ପ୍ରସାଦ ଦ୍ୱିବେଦୀଙ୍କ ଭଳି ଆଚାର୍ଯ୍ୟଙ୍କର ଭୂଲ୍ ବାହାର କରିଥିଲେ—ତାଛଡ଼ା ଆଜି ସେ ସାରା ସହରକୁ ଚମକାଇ ଦେଇଛନ୍ତି । ମୋତେ ଏବଂ ଆପଣମାନଙ୍କ ପାଇଁ ମଧ୍ୟ ଏହା କିଛି କମ୍ କଥା ନୁହେଁ ।

କର୍ନେଲ ଖୁବ୍ ଖୁସି ହୋଇଛ—ପାଟି କରି କହିଲେ' ବାସ୍—ବାସ୍—ବସ୍ ବୁହନ୍ତୁ ଆପଣମାନେ ବର୍ତ୍ତମାନ ଏହି ମୂର୍ଖଙ୍କୁ ମୋ ତରଫରୁ ଇଂଲିଶ୍ ଚୁଆଲି କଥା କହିବାବାଲା ମୋତେ ମିଳି ଗଲେ । ଏମାନେ ଅନ୍ୟଙ୍କୁ ଦେଖନ୍ତି ନାହିଁ, କେବଳ ନିଜକୁ ଦେଖନ୍ତି । ନିଜକୁ ବଡ଼ ଆଟିଷ୍ଟ ଭାବନ୍ତି ।

ମହିପାଲ କହିଲେ—'ଆପଣଙ୍କ ଲେଖା ଖୁବ୍ ସୁନ୍ଦର, ଆପଣ ଖୁବ୍ ଭଲ ଲେଖିଛନ୍ତି ।'

କନ୍ୟା ବିନମ୍ର ସହିତ ଆଖି ତଳକୁ କଲା—ଛପାଇବା ପୂର୍ବରୁ ଆପଣଙ୍କୁ ଦେଖାଇବାକୁ ଚାହୁଁଥିଲି । ଲେଖାରେ ଅନେକ ଭୁଲ ଥିବ ।

'ଆଜ୍ଞା ନାହିଁ' ବହୁତ ସୁନ୍ଦର ଲେଖିଛନ୍ତି । ମୋର କେବଳ ଏତିକି ଦୁଃଖ ରହିଗଲା ଯେ ଯଦି ଏ ଗଧଟା ମୋତେ ଆଗରୁ କହିଥାନ୍ତା ତାହାହେଲେ ଆପଣଙ୍କ ଲେଖାର ସପକ୍ଷରେ ଭଲ ବକ୍ତବ୍ୟ ଲେଖି ଦେଇ ଥାଆନ୍ତି ।' ମହିପାଲ କହିଲେ ।

ସଜ୍ଜନ ଶୀଘ୍ର କହିଲା—ମୁଁ ମଧ୍ୟ ଏହା କହୁଛି । ଯ୍ୱା ମୁଣ୍ଡରେ କେଉଁ ଭୂତ ଯେ ପ୍ରବେଶ କଲା, କାହାକୁ କିଛି କହି ନାହିଁ କି ପଚାରି ନାହିଁ ମଧ୍ୟ ।'

ଇଲେକ୍‌ସନ ବେଳେ ସବୁ କାଗଜ ବଣ୍ଟା ଯାଏ । ଏକ କାନରୁ ଦୁଇ କାନକୁ ଏ ଖବର ନ ଯାଉ ଯେ ଆମର କୌଣସି କାଗଜ ବାହାରୁଛି । ତାହା ହେଲେ ପବ୍‌ଲିକ୍ ଉପରେ ବେଶି ପ୍ରଭାବ ପଡ଼ିବ' କର୍ନେଲ କହିଲେ ।

'ପ୍ରଭାବ ନା ପାଉଁ ପଡ଼ିବ' ।

'କାଲି ଦେଖିବ - - '

'ନା ପ୍ରଭାବ ନିଶ୍ଚୟ ପଡ଼ିବ - -' କନ୍ୟା କହିଲା, ତାକଥାକୁ କାଟି ଦେଇ ହସି ହସି ସଜ୍ଜନ କହିଲା—'ବର୍ତ୍ତମାନ ତ ତୁମେ କହୁଥିଲ ପ୍ରଭାବ ପଡ଼ିବ ନାହିଁ ।'

କନ୍ୟାର ମୁହଁ ସେତା ପଡ଼ିଗଲା ଏବଂ ଘାବରେଇ ଯାଇ ହସି ହସି ସଜ୍ଜନକୁ କହିଲା—'ଆପଣ ମୋ କଥାର ଅର୍ଥ ହିଁ ବଦଳେଇ ଦେଉଛନ୍ତି । (ପୁଣି କର୍ନେଲଙ୍କ କହିଲା) ମୁଁ ତାଙ୍କୁ କହୁଥିଲି ଯେ ମୁଁ ଭାଇଙ୍କର ଟଙ୍କା ବେକାର ଖର୍ଚ୍ଚ କରାଇଲି, ଖୁବ୍ ହେଲେ ଦୁଇ ଚାରିଦିନ ଏ ବିଷୟରେ ଲୋକେ ଚର୍ଚ୍ଚା କରିବେ । କିନ୍ତୁ ପୁଣି ଏହି ଅଭ୍ୟାସର ଗ୍ଭଲୁରହିବ ।

ମଧୁପାଳ କହିଲା ସତ କଥା ସମାଜକୁ ବଦଳାଇବାକୁ ହେଲେ ତାର ବହୁତ ଜିନିଷ ବଦଳାଇବାକୁ ପଡ଼ିବ । ଏଥିପାଇଁ ଗୋଟିଏ ବ୍ୟାପକ ସଂଗଠନ ଏବଂ ଆନ୍ଦୋଳନ ଦରକାର ।

ଅନେକ ସମୟ ପର୍ଯ୍ୟନ୍ତ ଆଲୋଚନା ହେଲା । କର୍ଣ୍ଣେଲ ଏବଂ ମଧୁପାଳ ଗଲାବେଳେ ସଜ୍ଜନ ତାଙ୍କ ସହିତ ବାହାରକୁ ଆସିଲେ । ସେ କର୍ଣ୍ଣେଲକୁ ପଚାରିଲେ କେତେ ଖର୍ଚ୍ଚ ହେଲା ?

'କାହିଁକି, କଣ ତୁମେ ମୋତେ ପେମେଣ୍ଟ କରିବ ?

'ହଁ'

କର୍ଣ୍ଣେଲ ମଧୁପାଳକୁ କହିଲେ—'ଶୁଣୁଛ ଯୁବାଙ୍କ ବଡ଼ଲୋକ କଥା(ସଜ୍ଜନକୁ) ବାବୁ ବର୍ତ୍ତମାନ କଣ ଖର୍ଚ୍ଚ ହୋଇଛି । ଆପଣଙ୍କ ବୋହୂକୁ ହଜାର ଦୁଇ ହଜାର ଟଙ୍କା ପ୍ରେଜେଣ୍ଟ ଦେବାକୁ ପଡ଼ିବ ମୋତେ, ତାପରେ ଏକାସଙ୍ଗେ ସବୁ ବିଲ୍ ତୁମ ପାଖକୁ ପଠାଇବି ।

'ଆରେ ହଁ, ମୋର ମଧ୍ୟ ମନେ ହେଉଛି ତୁମର ବିବାହ ଯୁବାଙ୍କ ସହିତ ହେବ । ଝିଅ ଖୁବ୍ ସୁନ୍ଦର ହୋଇଛି, ମୋର ପସନ୍ଦ ହୋଇଛି ।

ସଜ୍ଜନକୁ ବନ୍ଧୁମାନଙ୍କର ଏହିପରି କଥା ଭଲ ଲାଗୁଥିଲା, ହସି ଭଣି ହକଲା—'ତୁମେମାନେ ମୋ ମନର ଅଟୋ ସଜେସନ୍ । ମୁଁ ତ ତାଙ୍କୁ ନିଃସ୍ୱାର୍ଥପର ଭାବରେ ସାହାଯ୍ୟ......'

'ହଁ—ହଁ, ତୁ ଟଲା ବଡ଼ ନିଃସ୍ୱାର୍ଥପର' କର୍ଣ୍ଣେଲ ହସି ହସି କହିଲା—'ନାହିଁ ବନ୍ଧୁ ଏହି କନ୍ୟା ମୋର ମଧ୍ୟ ଖୁବ୍ ପସନ୍ଦ ହୋଇଛି । କେବଳ ଏତିକି ଯେ ସେ କମ୍ୟୁନିଷ୍ଟ ପାର୍ଟିର, କିନ୍ତୁ ତା ଆଖିରେ ସମ୍ମୋହନ ରହିଛି ।

ସେମାନେ ଦୁଇଜଣ ଚାଲିଯିବା ପରେ ସଜ୍ଜନ କନ୍ୟାକୁ ତା ଘରେ ଛାଡ଼ିବାକୁ ଗଲା, କନ୍ୟା ତାର ବାନ୍ଧବୀର ଘର ଛାଡ଼ି, ଦଶ ଟଙ୍କା ଭଡ଼ାରେ ଗୋଟିଏ ଫ୍ଲେଟ ଘର ଭଡ଼ା ନେଇଥିଲା । ସେ ଯେତେବେଳେ ଗାଡ଼ିରୁ ଓହ୍ଲାଇଲା ସେତେବେଳେ ତା ପକେଟରୁ ଗୋଟିଏ ବଡ଼ ଲଫାଫା ବାହାର କରି ତା ଆଡ଼କୁ ବଢ଼ାଇ ଦେଇ କହିଲା - 'ଏଇଟା ରଖ' ।

'ଇଏ କଣ ?'

'ରଖି ଦେଅ ?'

'ଟଙ୍କା ?'

'ହଁ—ହଁ ଦରକାର ପଡ଼ିବ ।

'ନାହିଁ ।'

'ଦେଖ ମୁଁ ଥାଉ ଥାଉ ତୁମେ କଷ୍ଟ ପାଇବ, ଏହା ମୁଁ ଦେଖି ପାରିବି ନାହିଁ ।

'ତୁମ ପାଖରେ ଖର୍ଚ୍ଚ କରିବା ପାଇଁ ଟଙ୍କା ଅଛି ?'

କନ୍ୟା ଚୁପ ରହିଲା । ସଜ୍ଜନ କହିଲା-ତାହା ହେଲେ ଏଇଟା ରଖି ଦିଅ ନା, ଦେଖ ଏଇଟା ପାଇଁ ତୁମକୁ କୌଣସି ପ୍ରକାର ଅପମାନ ବା କଷ୍ଟ ଭୋଗ କରିବାକୁ ପଡ଼ିବ ନାହିଁ ।'

'ନାହିଁ ...ନମସ୍କାର ।' କନ୍ୟା ଆସ୍ତେ ଆସ୍ତେ ମଥା ନତ କରି ନିଜ ଘର ଆଡ଼କୁ ପାଦ ବଢ଼ାଇଲା । ଆଜି ପ୍ରଥମ ଥର ପାଇଁ ଜଣେ ନାରୀ ପାଖରେ ସଜ୍ଜନର ଟଙ୍କା ଲୋଡ଼ମ ନଥିଲା ।

# ଚଉଦ

ବନ୍ଦ କୋଠରି ମଧ୍ୟରେ ଛୋଟ ଛୋଟ ତିନୋଟି ବିଲେଇ ଛୁଆ ଗୋଟିଏ ଛୋଟ ଖଟ ଉପରେ ଡିଆଁ ଡେଇଁ କରୁଥିଲେ । ଆଖି ଫିଟିଗଲେ ଛୁଆକେବେ ଚୁପ୍ ହୋଇ ବସେନାହିଁ । ସେ ଦେଇ ସେମାନଙ୍କୁ ନେଇ ଦେଠେଇଙ୍କ ଘରର ଫାଙ୍କରେ ଇଟା ଦିଆହୋଇ ନିବୁଜ କରି ଆଉ ପିଠିକବାଟର ଶିକୁଳି ଦିଆଯାଇଥାଏ । କାରଣ ବିଲେଇ ଯେପରି ଛୁଆ ପାଖକୁ ଚାଲି ନ ଆସେ । ଛୁଆର ମା'କୁ ଦେଠେଇଙ୍କ ସନଜରରେ । ତେଣୁ ଛୁଆମାନଙ୍କୁ ଦୁଧ ପିଆଇବା ପାଇଁ ଅନେକ ସତର୍କତା ସହିତ ସେ ଦେଠେଇ ଘରେ ପଶେ । ଦେଠେଇଙ୍କ ନଜର ତା' ଉପରେ ପଡ଼ିଯାଏ ସେ ତାକୁ ଗୋଡ଼ାନ୍ତି ।

ଅନ୍ଧାର ଘରେ ବିଲେଇ କାନସ ଉପରୁ ନଳ ପାଖରେ ଘୋଡ଼ା ହୋଇଥିବା ପିତଳ କୁଣ୍ଡ ଉପରେ ଡିଆଁ ମାରିଲା । ତାକୁ ଦେଖି ଖଟରେ ଥିବା ଛୁଆ ତିନୋଟି ଜଣେ ଅନ୍ୟ ଜଣଙ୍କ ପାଖରୁ ଦୌଡ଼ିଯାଇ ଅସ୍ଥିରତାର ସହିତ ମ୍ୟାଉଁ ମ୍ୟାଉଁ କରିବାକୁ ଲାଗିଲେ ବିଲେଇ ଦେଠେଇଙ୍କ ଖଟ ଉପରେ ଚଢ଼ି ଶୋଇ ପଡ଼ିଲା । ଛୁଆମାନେ ତା ପାଖରେ ଯାଇ ଦୁଧ ପିଇବାକୁ ଲାଗିଲେ । ଗୋଟିଏ ଛୁଆ ତା ପିଠି ଉପରେ ନଇଁହୋଇ ଦୁଧ ପିଇବାକୁ ଲାଗିଲା ଏବଂ ଦୁହୁଁ ଘୁହୁଁ ଦୁଧ ପିଉ ପିଉ ଖସି ତଳେ ପଡ଼ିଗଲା । ତିନୋଟି ଛୋଟ ଛୋଟ ଛୁଆ ଆନନ୍ଦରେ ଉଛୁଳିବାକୁ ଲାଗିଲେ, ବିଲେଇ ମଧ୍ୟ ଅତି ସ୍ନେହରେ ଲାଞ୍ଜ ହଲଉଥାଏ ।

ଦେଠେଇ ବଜାରରୁ ସେମାନଙ୍କ ପାଇଁ ଦୁଧ କିଣି ଫେରୁଥିଲେ, ପାନଜାକ ସିଗ୍ରେଟ ଟାଣୁ ଟାଣୁ ଦେଠେଇଙ୍କୁ ଦେଖି ହଠାତ୍ ଖଳଫାତମୋଲ୍ ଚହୁତର ଉପରୁ ଡେଇଁ ତାର ସାମନାରେ ବସିଦେଇ ବାଡ଼ିଟା ଧରି ପକାଇଲା । ଦେଠେଇ ଚମକି ଉଠିଲେ । ଦୁଧ ଠେକାରୁ ଚହଲି ଦୁଧ ପଡ଼ିଗଲା ।

ମରହ୍ୱା କହିଲା—ଦେଠେଇ ମରିବା ବେଳ ତମ ଆସେଇଲାଣି—ସେଥିପାଇଁ ଦୁଧ-ମଲାଇ ଲେଡ଼ିକେନି ଖାଇବାକୁ ଇଚ୍ଛା ହେଉଛି କି, ଠେକା ମୋତେ ଦେଇଯାଅ, ବାଡ଼ି ଦେଇଦେବି ।

ଦେଠେଇ ବିଲ୍‌ବିଲାଇବାକୁ ଲାଗିଲା, ମରୁହାକୁ କହିଲା—'ଦେଖ ଦେଖ କେଡ଼େ ବଦମାସ ଲୋକଟା ମୋର କେତେ ଦୁଧ ଢାଳି ଲୋକସାନ କରିଦେଲା ।'

ସତକୁ ସତ ଦେଠେଇ ବଡ଼ ବିପଦରେ ପଡ଼ିଯାଇଥିଲା । ଆଜିର ଏହି ପରିସ୍ଥିତି ତାଙ୍କୁ ବହୁତ ଅସୁବିଧାରେ ପକେଇଥିଲା । ଜୀବନରେ ପ୍ରଥମ ଥର

ରଣକ୍ଷେତ୍ରରେ ପରାସ୍ତ ହୋଇ ଦେଠେଇ ସନ୍ଧି କରିବାକୁ ବାଧ୍ୟହେଲେ, ଦାନ୍ତ କାମୁଡ଼ି ସେ କହିଲା—'ଛାଡ଼ିଦେ ମତେ । ତୁଆଙ୍କୁ ଭୋକ ଲାଗିବଣି ।

'ଆରେ, ମୋତେ ଛାଡ଼ି ତୁମର ଆଉ ତୁଆ କିଏ ? ଆଉ ଯିଏ ବା ହେଉ ସେ ନଷ୍ଟସ୍ଥ ବୁଦ୍ଧି ପାଇବ । ଭାଇମାନେ ଶୁଣ, ଦେଠେଇ ପିଲାଦିନେ କେତେ ପାଳିଛୁ ମୋତେ କାଖେଇଛୁ । ବର୍ତ୍ତମାନ ତାଙ୍କର ସବୁ ଜମା ପୁଞ୍ଜି ମୋର, ତାଙ୍କ ମରିବା ପରେ ନେବ ନ ହେଲେ ବର୍ତ୍ତମାନ ନେବ ।'

ଗଳି ଦୁଇ ପାଖରେ ଥିବା ଦୋକାନୀର, ସୁନାରି, ଯର୍ଜି, ଲଣ୍ଡ୍ରି, ମିଠା ଦୋକାନ ସମସ୍ତେ ମୁରୁକି ମୁରୁକି ହସୁଥିଲେ । ଦେଠେଇ ପାଖଦେଇ ଲୋକମାନେ ହସି ହସି ଚାଲିଗଲେ । ଚାରିଆଡ଼େ ନାନା ପ୍ରକାର ଥଟ୍ଟା ଶୁଣି ମଧ୍ୟ ଦୁଧ ଠେକି ଧରିଥିବାରୁ ସେ କିଛି କରିପାରିଲେ ନାହିଁ । ଚୁପଚାପ ମୁହଁ ବନ୍ଦକରି କଅଁରେ ପକା ହୋଇଥିବା ଲୁହାପରି ରାଗି ପାଚିଯାଉଥିଲା ।

ହଠାତ୍ ବାଡ଼ି ଛାଡ଼ିଦେଇ ଆଗେଇଗଲା ।

ପ୍ରଭାତ୍ ମୁରୁଦା ଏକଥା ଧାରଣା କରିନଥିଲା । ଦେଠେଇ ବାଡ଼ିଟି ହଠାତ୍ ଛାଡ଼ି ଚାଲିଯିବାରୁ ମୁରୁହା ହାତରେ ବାଡେଇ ହୋଇ ପଡ଼ିଗଲା । ବାଡ଼ି ବଢ଼େଇ ଦେଉ ଦେଉ ସେ କହିଲା—ହଉ ନିଅ, ବାଡ଼ି ନେଇଯାଅ, ଏ ଦେଠେଇ ।

ଦେଠେଇ ଖଣ୍ଡେ ଦୂରରେ ଯାଇ ଠିଆହୋଇଗଲେ । ତାକୁ କଣେଇକି ଚାହିଁ ସେ କହିଲା—ଘରେ ଯାଇ ଦେଇଆସିବୁ ବଦମାସ ନ ହେଲେ କାଲି ସକାଳେ ତୋର ବଂଶ ବୁଡ଼େଇ ଦେବି ।

ମୁରୁହାର ଗ୍ରହ ଦେଠେଇ କଥାରେ ଥରିଗଲା, ଦୁଷ୍ଟାମି ଭୁଲିଗଲା ସେ । ଡର ଲାଗିଲା, ସମସ୍ତଙ୍କ ଆଗରେ ଅଳ୍ପଟିକେ କରି ହସି କହିଲା—କାଲିପରା ତମେ ମୋର ବଂଶ ବୁଡ଼େଇବ । କିନ୍ତୁ ମୁଁ ଆଜି ତୁମକୁ ଶେଷ କରିଦେବି । ତୁମର ଏହି ବାଡ଼ି ଏଠି ପଡ଼ିରହିଲା, ନିଅ କି ନ ନିଅ ମୁଁ କିନ୍ତୁ ତୁମ ଘରକୁ ଯିବିନାହିଁ । ଚୁଟିଲ ଦେଠେଇ ।

ତାଇ ବଜରଂ ବାଲିଙ୍କ ଚବୁତରା ପାଖରେ ପହଞ୍ଚି ନିଜ ଫାଟକ ଆଡ଼କୁ ମୁହାଇଲା ।

ବଜାରର ଲୋକେ ପରଭୁକୁ ବହୁତ ବୁଝାଇଲେ । ଯାଏ ଚେତେ ଧର୍ମଭିରୁ ସୁନାରି ତା ପୁଅକୁ ବାଡ଼ିଦେଇ ତା ଘରେ ଦେଇ ଆସିବା ପାଇଁ ପଠାଇଲା ।

ବଳର ବଳର କରି ଦେଠେଇ ଘରେ ପଶିବାକୁ ବଳେଇ ଖସିଯାଇ ଖଟିଆ ତଳକୁ ପଳେଇଲା । ଗୋଟିଏ ଛୁଆ । ଯିଏ କି ମା' ଦୁଧ ପିଉ ପିଉ ଖଟିଆ ଉପରୁ ପଡ଼ିଯାଇଥିଲା । ଦେଠେଇକୁ ଦେଖି ଦେଖି ସେ ମ୍ୟାଉଁ ମ୍ୟାଉଁ କରି ଦଉଡ଼ିଲା । ଖଟ ଉପରେ ଦଉଡ଼ା ଦଉଡ଼ି କରୁଥିବା ଛୁଆ ଦୁଇଟି ମଧ୍ୟ ତଳେ ପଡ଼ିଥିବା ଭାଇର ମ୍ୟାଉଁ ମ୍ୟାଉଁ ଡାକର ଅର୍ଥ ବୁଝି ମ୍ୟାଉଁ ମ୍ୟାଉଁ କରିବାକୁ ଲାଗିଲେ । ଏହି ସମୟରେ ଯେ ଦୁଧ ମିଳେ ଏହା ଦଶ ବାର ଦିନର ଛୁଆମାନେ ଜାଣିଶୁଣି ଦେଠେଇଙ୍କୁ ବୁଝି ସାରିଥିଲେ । ତଳେ ଥିବା ଛୁଆଟି ଆଗେ ଦୌଡ଼ି ଚଉତରା ଉପରେ ଚଢ଼ିଗଲା । ଏବଂ ଚଉତରା ଉପରେ ଦୁଇପାଦ ଡେଇଁଡେଇଁ ପୁଣି ଅଗଣାରେ ପଡ଼ିଗଲା । ଖଟରେ ଥିବା ଛୁଆ ଗୋଟିଏ ଡିଆଁ ମାରି ଦୁଲ୍‌କରି ପଡ଼ିଗଲା । ସେଗଣା ଛୁଆଟି ଖଟ ଉପରେ ରହି ମ୍ୟାଉଁ ମ୍ୟାଉଁ କରିବାକୁ ଲାଗିଲା ।

ଛୁଆ ଦୁଇଟି ଅଗଣାରେ ଆସି ଦେଠେଇଙ୍କ ଗୋଡ଼ରେ ମୁହଁ ଘଷିଘଷି ମ୍ୟାଉଁ ମ୍ୟାଉଁ ଡାକିବାକୁ ଲାଗିଲେ, ତାଙ୍କର ଗୋଡ଼ ଟେକିବା କଷ୍ଟକର ହୋଇ ପଡ଼ିଲା । ଦେଠେଇଙ୍କ ମନ ସବୁଯାକ ରାଗ ପାଣି ହୋଇଗଲା ।

ଦୁଇଜଣ ପାଇଁ ମାଟିରେ ଅଳ୍ପ ଦୁଧ ପକାଇ ସେମାନଙ୍କଠାରୁ ମୁକ୍ତହୋଇ ଘରକୁ ଗଲା । ଭିତରେ ଥିବା ଏଲ୍ୟୁମୁନିୟମ ପାତ୍ର ଆଣି ମାଟି ପାତ୍ରରୁ ଦୁଧ ଢାଳି ରଖି ଦେଠେଇ ଅଗଣାରୁ ଛୁଆ ଦୁଇଟିକୁ ଉଠେଇ ଦୁଧ ପାଖରେ ରଖିଦେଲେ ।

ସେଇ ସମୟରେ କବାଟରେ ଝଞ୍ଜିରର ଶବ୍ଦ ହେଲା, ମଣିଷ ଶବ୍ଦ ପାଇ ଦେଠେଇ ପୁଣି ଚନ୍ତା କରିବାକୁ ଲାଗିଲେ ।

'ଆରେ ତମ ବାଡ଼ି ନେଇଯାଅ, ଦେଠେଇ ଓ ଦେଠେଇ, ବାହାରରୁ ଶବ୍ଦ ଶୁଣି ଦେଠେଇ କଳାବଣି ନେଇ ଗାଳି ଦେଇ ଦେଇ କବାଟ ଫିଟାଇବାକୁ ଗଲା ।

*　　*　　*

ସେଦିନ ରାତି ନଟା ପର୍ଯ୍ୟନ୍ତ ଗାଁର ବଜାରରେ ଜୋରସୋରରେ ଆଲୋଚନା ହେଲା ଯେ, ପୁରୁଷୋତ୍ତମ ସୁନାରର ପୁଅକୁ ପରଭୁ ମୁରହେ ବୋଲି ଭଲରେ ଭାବି ଦେଠେଇ ତା ଉପରକୁ ମନ୍ତୁରି କଳାବଣି ପକାଇଛୁ । ତା'ର ଅବସ୍ଥା ଭଲନାହିଁ । ଝଡ଼ା-ଫୁଙ୍କା ଡାକ୍ତର ସବୁ କିଛି ଚାଲିଛି । ଭଲୁଡ ସୁନାରୀ ଦୋକାନ ବନ୍ଦ କରି ମହାରାଜ ମୁଣ୍ଡ ଉପରେ ସିନ୍ଦୁର କି ନାହିଁ ଭଲଧାରୀ ଚୌକିଦାର ସହିତ ଫେରିଲାବେଳେ ହାଟରେ ଏକଥା ଶୁଣିଲା । ପୁରୁଷୋତ୍ତମର ଦୋକାନ ପାଖରେ

ଠିଆହୋଇ ତାର ଶ୍ରେଷ୍ଠ ଭାଇକୁ ଅବସ୍ଥା ପଚାରିଲା । ପୁରୁଷୋତ୍ତମଙ୍କୁ ଭଲ ପାଉଥିବା ଲୋକେ ଦେଠେଇର ସାତପୁରୁଷ ଉଦ୍ଧାର କରୁଥିଲେ । ଭଲ୍ଲୁଡ କହିଲା—'ଘରବାଟ ହୋଇ ମୁଁ ପାଖକୁ ଆସୁଛୁ ।

ଭଲ୍ଲୁଡ ଘରେ ବର୍ତ୍ତମାନ ବଡ଼ ବୋହୂ ଏବଂ ନନ୍ଦଛଡ଼ା ଆଉ କେହି ନାହାନ୍ତି । ଶଙ୍କର ଏବଂ ଶ୍ରେଷ୍ଠ ବୋହୂ ସେକେଣ୍ଡ ସୋ ସିନେମା ଦେଖିବାକୁ ଯାଇଛନ୍ତି । ମା, ଆଜିକୁ ଛଅ ଦିନ ହେଲା କାସଗଞ୍ଜ ଭଣୋଇଙ୍କ ସୁଲ ଘରକୁ ଯାଇଛନ୍ତି । ସାଙ୍ଗରେ ନାତିକୁ ମଧ୍ୟ ନେଇ ଯାଇଛନ୍ତି । ମନିଆ ଜନନ୍ତ ଆଣିବାକୁ କଲିକତା ଯାଇଛି ।

ନନ୍ଦ ସ୍ୱେର କରୁଥିବା ଘଟଣା ଧରାପଡ଼ିଯିବା ପରେ ମନିଆ ତାକୁ ଖୁବ୍ ମାରିଥିଲା ସେହିଦିନଠାରୁ ନନ୍ଦକୁ ଘର ପଦାକୁ ଗୋଡ଼ କାଢ଼ିବା ମନା । ମନିଆର ଆଦେଶରେ ତାର ଗୋମସ୍ତା ଗାଧୁଆ ଦେବଦର୍ଶନ, ଏପରିକି ଦେଠେଇ ଘରକୁ ମଧ୍ୟ ଯିବା ଆସିବା ବନ୍ଦ ହୋଇଯାଇଛି । ପ୍ରଥମ ଦୁଇଦିନ ସେ ନିଜ ଘର ବାହାରକୁ ବାହାରିଲା । ପୁଣି ଘର କାମରେ ନିଜେ ମନଦେଲା । ମା'ଙ୍କଠାରୁ ସ୍ନେହ ପାଇଲା ନାହିଁ । ତେଣୁ ସେ ମନିଆର ଝୁଆଙ୍କୁ ନିଜ ବାତ୍ସଲ୍ୟ ମମତା ସବୁ ଦେଖାଇଲା । ମନିଆର ଗାଧୋଇବା ଖାଇବା ସମୟରେ ତାକୁ ଧୋତି, ଗାମୁଛା, ପାଣି ଆଦି ଦେବା ବିଷୟ ନିଜେ ବୁଝିଲା । ଇତି ମଧ୍ୟରେ ମଉସାଙ୍କ ମୃତ୍ୟୁ ଖବର ପାଇ ମା' କାସଗଞ୍ଜ ଚାଲିଗଲେ । ମା' ଯିବାପରେ ନନ୍ଦର ପାଟି ଫିଟିଲା । ଭାଉଜମାନଙ୍କୁ ସବୁ କାମରେ ସାହାଯ୍ୟ କରିବାକୁ ଆଗଭର ହେଲା । ଶ୍ରେଷ୍ଠବୋହୂ ସକାଳେ ନିଜ ସ୍ୱାମୀଙ୍କର ଚା' ଜଳଖିଆ କରି ନିଜ ସ୍କୁଲ ପଢ଼ା ଏବଂ ସ୍ୱାମୀ ଦେଇ ଯାଇଥିବା 'ହୋମୱାର୍କ'କୁ ସମ୍ପୂର୍ଣ୍ଣ କରିବା ଆଦି କାମରେ ଏତେ ବ୍ୟସ୍ତ ରହୁଥିଲା ଯେ ଘରର କାମ-ଧାମ ପାଇଁ ତାକୁ ଅଧିକ ସମୟ ମିଳୁନଥିଲା । ତେଣୁ ଶାଶୁ ଯିବାପରେ ଏବଂ ମନିଆର ଅନୁକ୍ଷଣ ଯୋଗୁଁ ବଡ ବୋହୂ ଉପରେ ଘରର ସମସ୍ତ ଦାୟିତ୍ୱ ପଡ଼ିଗଲା । ଏଇଥିପାଇଁ ନନ୍ଦ ତା ସହିତ ରହିବାର ଅଧିକ ଅବସର ମିଳିଲା । ସେ ଝିଅ ପାଇଁ ସ୍ୱେଟର ତିଆରି କରିବାକୁ ଆରମ୍ଭ କରିଛି । ବଡ ବୋହୂଠାରୁ ଡିଜାଇନ ଶିଖୁଛି ମଧ୍ୟ ।

ଯେତେବେଳେ ଭଲ୍ଲୁଡ କବାଟ ଖୋଲ ବୋଲି ପାଟିକଲା, ସେହି ସମୟରେ ନନ୍ଦ ବଡ଼ ବୋହୂ ପଲଙ୍କ ଉପରେ ପାଖା-ପାଖି ଶୋଇ କଥା ହେଉଥିଲେ । ଶ୍ରେଷ୍ଠ ଝିଅ ପାଖରେ ଥିବା ଦୋଳିରେ ଶୋଇଥିଲା ।

ମନଆ ଭାଇ ସିଧା ଏବଂ ସରଳ ପ୍ରକୃତର, ସାମାନ୍ୟ ଖୋସାମଦରେ ସେ ତରଳି ବଶୀଭୂତ ହୋଇ ଯାଉଥିଲା । ବଡ ବୋହୂ ଯେତେବେଳେ ବାହା ହୋଇ ଆସିଲା ମନଆ ଆଉ ନୂଆ ବୋହୂ ପାଖ ଛାଡ଼ିଲା ନାହିଁ, ସେତେବେଳେ ନନ୍ଦୋ ମଧ ତାଉଜ ମନ ନେବାକୁ ଚେଷ୍ଟା କଲା । ପରେ ଯେତେବେଳେ ନିଜ ବାନ୍ଧବୀ ସନ୍ତୋଷର ବୋହୂ ସହିତ ମନଆର ସମ୍ପର୍କ କରାଇବାରେ ସଫଳ ହେଲା ସେତେବେଳେ ସେ ବଡ଼ ବୋହୂର ପରମ ଶତ୍ରୁ ହେଲା, ଯାବତୀୟ ଅତ୍ୟାଚାର ତା' ଉପରେ କଲା । ପରେ ମନଆ ନିଜକୁ ସଂଶୋଧନ କରି ଭଦ୍ର ଭାବରେ ଜୀବନ କଟାଇଲା ସେତେ-ବେଳେ ଭାଇ ଭଉଣୀଙ୍କ ଭିତରେ ଏକ ଅଦୃଶ୍ୟ ଶତ୍ରୁତା ରହିଗଲା । ନିଜର ଜ୍ଞାନୋଦୟ ହେବା ଫଳରେ ମନଆ ନନ୍ଦୋର ଏ ପ୍ରକାର କଦର୍ଯ୍ୟ ଅବୈଧ ପ୍ରେମକୁ ଅନ୍ତର ସହିତ ଘୃଣାକଲା । ସେ ଭଉଣୀର ଦୃଢ ଗିର ଛଡ଼ାଇବାକୁ ଚାହୁଁଥିଲା । କିନ୍ତୁ ନନ୍ଦୋ ବାପାର ଗେହ୍ଲାଝିଅ । ଭାଇ ଭଉଣୀ ଉଭୟେ ଉଭୟଙ୍କର ଦୋଷ ଦୁର୍ବଳତା ଜାଣି ଥିଲେ ମଧ ମୁହଁରେ କହୁ ନଥିଲେ । ସେଥିପାଇଁ ମନଆ ନିଜର ମଧ କୌଣସି ସୌହାର୍ଦ୍ଦ ସ୍ନେହ ନଥାଏ । ଏପର୍ଯ୍ୟନ୍ତ ଉଭୟଙ୍କର ଦୋଷ ତ୍ରୁଟି ବିଚ୍ୟୁତ ତରାଜୁରେ ସମାନ ସମାନ ଥିଲା କିନ୍ତୁ ଏକ ନୂଆ ଅପରାଧ ଧରାପଡ଼ି ଯିବାରୁ ମନଆର ଦମ୍ଭ ବେଶୀ ବଢିଗଲା । ସେଦିନ ନନ୍ଦୋ ଘର ଖୋଜା ଖୋଜି କରିବା ବାହାନାରେ ଏକୁଟିଆ ପାଇ ସେ ନନ୍ଦୋକୁ ଖୁବ୍ ଧମକେଇଲା । ତା ବାକ୍ସରୁ ଫଟ ଆଲବମ୍ ଜବତ କଲା ପରେ ସେ ପୁରା ତା ଉପରେ ଚଢ଼ାଉ କଲା । କହିଲା— ଏବେ ମୁଁ ସ୍ବାକୁ ସମସ୍ତଙ୍କୁ ଦେଖେଇ ତୋ ମୁହଁରେ କାଳି ଲେପି ଦେବି, କିନ୍ତୁ ତୁ ଯଦି ମୋ ବିପକ୍ଷରେ ପଦେ ପାଟି ଫିଟାଉ କେହି ତୋକଥା ବିଶ୍ବାସ କରିବେ ନାହିଁ । ମନେ ରଖିବୁ ଯଦି ମୋ ବିରୁଦ୍ଧରେ କିଛି କରୁ ତେବେ ତୋ ମୁଣ୍ଡ ବାଳ ଧରି ଘରୁ ବାହାର କରି ଦେବି, ବାପା କୌଣସି ପ୍ରକାରେ ତତେ ରକ୍ଷା କରି ପାରିବେ ନାହିଁ ।" ନିଜ ଗୁଣ ଗ୍ରାସ ଏପରି ମନଆ ଆଗରେ ଧରା ପଡ଼ି ଯିବାରୁ ନନ୍ଦୋ ମନଆର ସମ୍ପୂର୍ଣ୍ଣ ଆଜ୍ଞାଧୀନ ହୋଇ ଭଦ୍ର ଭାବରେ ଚଳିଲା । ନିଜ ଆଧିପତ୍ୟ ବଢ଼ାଇବା ପାଇଁ ସେ ବଡ଼ ବୋହୂ ସହିତ ଘନିଷ୍ଠତା ବଢାଇଲା ।

ରେଡ଼ିଓରେ ଫିଲ୍ମ ସଙ୍ଗୀତ ହେଉଥିଲା—

'ଏକୁଟିଆ ସେ ପଡ଼ିଥିବ । କାନ୍ଦୁଥିବ ।

ହସାଇ ମୋତେ ସେ, ଭାବୁଥିବ

ମୋ କଥା ଏବେ କି ମନେ ପଡୁଥିବ······

ଉତ୍ତ୍ୱତ ଘରକୁ ଆସିଲା । ସିନ୍ଦୁକ ଘରେ ରଖି, ତାଲା ବନ୍ଦ କଲା ଏବଂ ଝିଅକୁ କବାଟ ବନ୍ଦ କରିବାକୁ କହି ପୁରୁଷୋତ୍ତମ ସୁନାରିର ପୁଅର ଖବର ବୁଝିବାକୁ ଚାଲିଗଲା ।

ନଣନ୍ଦ—ଭାଉଜ ପୁଣି ନିର୍ଶ୍ଚିନ୍ତ ହୋଇ ବଡ଼ ବୋହୂ ଘରକୁ ଗଲେ । ହଠାତ୍ ନନ୍ଦ ମନରେ ମିଠା ଖାଇବା ଏବଂ ଖୁଆଇବାକୁ ଇଚ୍ଛା ହେଲା । ବଡ଼ ବୋହୂକୁ ପଇସା ଦେବାକୁ ଦେଲା ନାହିଁ । ନିଜ ବାକ୍ସରୁ ପଇସା ନେଇ ଗଳିକୁ ଆସିଲା । ସାମନାର ପିଣ୍ଡାରେ ବିଛଣା ବିଛେଇ ବସିଥିବା ଚୌକିଦାରକୁ ଖୋସାମଦ କରି ତାକୁ ମିଠା—ନମ୍‌କି ଏବଂ ଅଧ ସେର ଦୁଧ ଆଣିବାକୁ ପଠାଇଲା । ଝିଅ ଉପରେ ଏକୁଟିଆ ଥିଲା ତେଣୁ ବଡ଼ ବୋହୂ ଚାଲିଗଲା । ନନ୍ଦ ଜିନିଷ ଆସିବ ବୋଲି ରାସ୍ତାରେ ଠିଆ ହୋଇ ରହିଲା ।

କାଲି ରାତିଠାରୁ ଏକୁଟିଆ ଥିବାରୁ ନନ୍ଦ ବଡ଼ ବୋହୂ ପାଖରେ ଶୋଉଛି । ଶାଶୁ ଗଲାପରେ ଆଜିକାଲି ନନ୍ଦ ବଡ଼ ଭାଉଜକୁ ବେଶୀ ଭଲ ପାଇଲାଣି । ଯେପରି ସେ ବାହା ହୋଇ ଆସିବାର ପ୍ରଥମ ପ୍ରଥମରେ ଲାଗୁଥିଲା । କିନ୍ତୁ ଏକଥା ସତଯେ, ଆଜି କାଲି ପରି ସ୍ନେହର ସମ୍ପର୍କ ଆଗରୁ କେବେ ହୋଇ ନଥିଲା ।

ନନ୍ଦତାର ରୋଜଗାର ଭାଇକୁ କୌଣସି ପ୍ରକାର ରଗାଇବାକୁ ଚାହୁଁ ନଥିଲା । ମନିଆ ଭାରି ସିଧା ସରଳ, ସାମାନ୍ୟ ଖୋସାମଦରେ ସେ ବିଗଳିତ ହୋଇ ଯାଉଥିଲା ନିଜର ଆଧିପତ୍ୟ ବଢ଼ାଇବା ପାଇଁ ସେ ବଡ଼ ବୋହୂ ସହିତ ଘନିଷ୍ଠତା ବଢ଼ାଇଲା । ନନ୍ଦର ଭାଗ୍ୟକୁ ତାର ମଉସା ମରିଗଲେ, ତେଣୁ ବଡ଼ ବୋହୂର ନିକଟତର ହେବା ଏବଂ ମନିଆ ପାଖରେ ଭଲେଇ ହେବାର ସୁବର୍ଣ୍ଣ ସୁଯୋଗ ମିଳିଲା ।

ରାତିରେ ନଣନ୍ଦ—ଭାଉଜ ଏକାଠି ଶୋଇଥିଲେ, ଏଇ କେତେ ଦିନରେ ବଡ଼ ବୋହୂ ନନ୍ଦର ଏକାବେଳେ ଆପଣାର ହୋଇ ଯାଇଛି । ସେଦିନ ସେ ଶ୍ରେଷ୍ଠ ବୋହୂ କହିଲା ଯେ—'ନନ୍ଦ ନାମୀ ଉପରକୁ ସେପରି ହୁଅନ୍ତୁ ସିନା କିନ୍ତୁ ପ୍ରକୃତରେ ତାଙ୍କ ଭିତରଟା ଭାରି ଭଲ । ଯଦି ତାଙ୍କୁ ଆମର ଯୋସାଇଟି ମିଳେ ତାହାହେଲେ ସେ ଏକଦମ ବଦଳି ଯିବେ ।

ନନ୍ଦ ମିଠା, ନମିକି ଏବଂ ଦୁଧ ନେଇ ଉପରେ ପହଞ୍ଚିଲା । ସେତେବେଳେ ବଡ଼ ବୋହୂ ଏକଲା ଶୋଇ ବିରହଣୀର ଲେଖା ଗୋଟିଏ ଗଜଲ—ଜୋରରେ ଗାଉଥିଲା ।

'ମୁଣ୍ଡରେ ଲୁଗା ଦେଇ ପ୍ରେମ କରିବାକୁ ବାହାରିଲେ

ସ୍ତ୍ରୀର ଚକ୍ଷୁ ମିଳେଇ ମିଠା ଭୁଲ କରିବାକୁ ବାହାରିଲେ ।'

ନଣନ୍ଦ—ଭାଉଜଙ୍କର ଏପରି ଅଚ୍ଛା ପରିହାସ ଘରର ଆବହାଓ୍ୱାକୁ ପୁଲକିତ କରି ଥିଲା । ନନ୍ଦ ମଧ୍ୟ ଶ୍ରେଷ୍ଠ ବେଳରୁ ଆଜି ପର୍ଯ୍ୟନ୍ତ ସବୁ କଥା ହୃଦୟ ଖୋଲି କହୁଥିଲା ଏବଂ ଶେଷରେ ବଡ଼ ବୋହୂ ମଧ୍ୟ ନିଜ ମନର ଅପଟୁଡ଼େଟ୍ ଏକାଉଣ୍ଟ ଖୋଲି ଦେଲା ।

ନନ୍ଦ ବିଷୟରେ କେବଳ ତାର ମା ପ୍ରାୟ କୁହନ୍ତି ଯେ—'କୂଅ-ସମୁଦ୍ରର ଥିଲ ଅଛି କିନ୍ତୁ ନନ୍ଦ ପେଟର ଥିଲ କୂଳ ନାହିଁ । କାସଗଞ୍ଜ ଯିବା ସମୟରେ ଶାଶୁ ଦୁଇ ବୋହୂଙ୍କୁ ନନ୍ଦକୁ ନଜରରେ ରଖିବାପାଇଁ ତାଗିଦ୍ କରି ଯାଇଥିଲେ । ଶ୍ରେଷ୍ଠ ବୋହୂ ଖାଲି ସିଆଣି ଥିଲା ବଡ଼ ବୋହୂ କାହିଁଥରେ ଖସଡ଼ି ଯିବା ନୌକାପରି ଥିଲା ଏବଂ ନନ୍ଦୋର ସୌଭାଗ୍ୟକୁ ଦହିଙ୍କ ସ୍ୱଭାବରେ ବିଶେଷ ଫରକ୍ ନଥିଲା ପରି ଲାଗୁଥିଲା ।

ଦୁଇଜଣ ଶୋଇ କହୁଣି ଉପରେ ଭର ଦେଇ ଅଚ୍ଛା ମଜାର କଥା କହୁଥିଲେ । ନନ୍ଦ ବହୁତ ପ୍ରକାର ଗଳ୍ପ କହି ବଡ ବୋହୂକୁ ନିଜ ହାତ ମୁଠାରେ ନେଇ ଆସିଲା । ନନ୍ଦ ବଡ଼ ବୋହୂଙ୍କୁ ସିଧା ସିଧା କହିଦେଲା ଯେ ସେ ଦୃଢପଣ କରେ କାରଣ—'ପୁରୁଷ ଠକଉଛି ତାହାଲେ ସ୍ତ୍ରୀ କାହିଁକି ନ ଠକେଇବ ? ଭଗବାନ ଯାହାକୁ ରୂପ ଦେଇଛନ୍ତି, ସେ କାହିଁକି କିଛି ଗହଣା ନ ନେବ ? ସ୍ତ୍ରୀ ମାନେ ପୁରୁଷମାନଙ୍କୁ କୌଣସି ପ୍ରକାର ବିଶ୍ୱାସ କରିବା ଉଚିତ୍ ନୁହେଁ । ସେ ନିଜର ଗହଣା ଓ ସୁନା କିଛି ପୁଞ୍ଜି କରିବା ଉଚିତ ଏବଂ ଏଇ ପୁଞ୍ଜି ଯେଉଁ ହାତରେ ରଖୁଥିବା ତାହା ଯେପରି ଅନ୍ୟ ହାତ ମଧ୍ୟ ଜାଣିବ ନାହିଁ ।

ସେତେବେଳେ ବାପା 'କବାଟ ଖୋଲେ' କହିବାର ଶବ୍ଦ ଶୁଣାଗଲା । ନନ୍ଦ ଯାଇ କବାଟ ଖୋଲି ବାପାଙ୍କ ଚଲମ ତିଆରି କରି ଦେଲା ପୁଣି ବଡ଼ ବୋହୂ ପାଖକୁ ଫେରି ଆସିଲା ଏବଂ ମଜା ଗପ ଆରମ୍ଭ ହେଲା ।

କଥା କହୁ କହୁ ନନ୍ଦ କହିଲା ଯେ ସେ ଯଦି ଚାହିଁବ ତେବେ ନନ୍ଦ କାହାରି ସହିତ ତାର ସମ୍ପର୍କ କରେଇ ପାରିବ । ସେ କଥା କାନକୁ ଦୁଇ କାନ ହେବ ନାହିଁ । ମିଳାମିଶାର ବ୍ୟବସ୍ଥା ମଧ୍ୟ ନନ୍ଦ କରିବ । ଯଦି ବଡ଼ ବୋହୂର ବନ୍ଧୁ ସହିତ ଦେଖା କରିବାକୁ ଯିବ ତେବେ ସେ ନନ୍ଦ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ ଓ ଭରସା କରି ପାରିବ ।

ବଡ଼ ବୋହୂ ସ୍ନେହ ଓ ସରଳତାର ସହିତ ବରହ୍ମେଶର ପ୍ରେମ ଗଳ୍ପ ଆରମ୍ଭ କଲା । ନନ୍ଦକୁ ଗୋଟିଏ ସୁଯୋଗ ମିଳିଲା । ସେହି ସମୟରେ କୋଠା ଉପରେ କାହାର ପାଦ ଶବ୍ଦ ଶୁଣାଗଲା, ଦୁଇଜଣ କୋଠା ଉପରେ ଦୁମ୍ ଦାମ୍ ଶବ୍ଦ ଶୁଣି ଭୟରେ ଉଭୟେ ଉଭୟଙ୍କୁ କୁଣ୍ଢାଇ ଧରିଲେ । ନନ୍ଦ ଅଟିଲା କଣ୍ଠରେ ଶଙ୍କରକୁ ଡାକିଲା, ଛାତ ଉପରେ ଯେପରି କିଏ ଦୌଡ଼ି ଦେଢେଇଙ୍କ ଘର ଆଡ଼କୁ ଚାଲିଗଲା ।

*  *  *

ରେଳେଇ ଭିତରେ ବସାଡ଼ି ଛୁଆଙ୍କୁ ପୂରାଇ ଦେଢେଇ ମୁହଁ ମେଲା କରି ଘୁଂଘୁଡ଼ି ମାରୁଥାଏ । ଆଜି କାଲି ଦେଢେଇ ଢ଼େଁକରେ ଶୋଉଛି । ଛୁଆଙ୍କ ପାଇଁ ଘରେ କାମ ବଢ଼ିଯାଇଛି । ଦେଢେଇଙ୍କୁ ବାରମ୍ବାର ଘର ଧୋଇବାକୁ ପଡୁଛି । ବିଲେଇ ଛୁଆ ଆସିବା ପରଠୁ ତା'ର କାମ ଏପାଖ ସେପାଖ ହୋଇ ଯାଉଛି । ଛୁଆମାନେ ଦେଢେଇକୁ ଭାରି ହଇରାଣ କରୁଥାନ୍ତି। ସେ ଜପ ବା ପୂଜା କରିବାକୁ ବସିଲେ ସେମାନେ ତା କୋଳରେ ଚଢ଼ି ଶୋଇ ପଡୁଛନ୍ତି । ଦୁଧ ପିଇବାବେଳେ ଛୁଆତକ ମ୍ୟାମୁଁ ମ୍ୟାମୁଁ କରୁଥାନ୍ତି । ରାତିରେ ରେଳେଇ ଭିତରେ ଶୁନ୍ଦ ଖାନ୍ଦ ହୋଇ ଦେଢେଇଙ୍କ ଛାତି ପେଟକୁ କୁରୁକ୍ଷେତ୍ର କରିଥାନ୍ତି ।ଆଜି ଦେଢେଇ ଖୁଆଇବା ସମୟରେ ବଡ଼ ସ୍ନେହରେ ଗୋଟାକୁ ଧରି—ତା ଆଖି ସହିତ ଆଖି ମିଳାଇ ଦେଖିବାକୁ ଲାଗିଲା—ଯେ ଏପରି ଦେଖୁଥିଲା ଯେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରୁଛି ।

ଦେଢେଇଙ୍କ ମନ ଭକ୍ତିରେ ପୂରିଗଲା, ବଡ଼ ଭାବ ଗଦ୍ ଗଦ୍ ହୋଇ ତାକୁ ଛାତିରେ ଜାକି ଧରିଲା । ତିନୋଟି ଛୁଆକୁ ଜାବୁଡ଼ି ଧରି ସେ ଖଟ ଉପରେ ଭଗବାନଙ୍କୁ ଜପୁ—ଜପୁ ଶୋଇଗଲା, ଆଜି ତାର ପ୍ରଥମ ନିଦ ।

ଯେତେବେଳେ ଗୋଟିଏ ? ସେ ଆଖି ଫିଟେଇଲା, ସେତେବେଳେ ଦେଖିଲା ଯେ, ତା ମୁହଁରେ ଲୁଗାଭିଡ଼ି ହୋଇଛି । ମୁହଁରେ ଲୁଗା ବାନ୍ଧି କେବଳ ଆଖି ଦେଖାଯାଉଥିବା ଦୁଇଟି ଲୋକ ତାକୁ ଉଠାଇ ଧରିଥିଲେ । ତାର ବିଛଣା ଉଠାଇ ତଳେ ପକେଇଲେ । ଛୁଆମାନଙ୍କୁ ନିଷ୍ଠୁର ଭାବରେ ଦୂରେଇ ପକେଇ ଦେଲେ ଏବଂ କ୍ଷଣକରେ ଦେଢେଇଙ୍କୁ ମୂର୍ଦ୍ଧାର ଭଳି ମଜଭୁତ କରି ନାଲିକନାରେ ବାନ୍ଧିଲେ ସେମାନେ ଦେଢେଇଙ୍କ ଦେହ ଖୋଲା ରଖି ମୁହଁରେ କେବଳ ଲୁଗା ପୁରାଇ କଳାପଟି ବାନ୍ଧି ଦେଲେ ।

ଦେଠେଇଙ୍କ ଆଖି ସାମନାରେ ତା ଘରର ଗୋଟିଏ ଜିନିଷ ଫୋପଡ଼ା ଫିଙ୍ଗା ହେଲା । ଚୋରମାନେ କିଛି ଖାଇଲେ । କିଛି ପକାଇଲେ, କିଛି ନେଇଗଲେ, ଜଣେ ଦେଠେଇଙ୍କ ଯାଦୁ ସିନ୍ଧୁକ ଦେଖିଲା । ସେ ଭାରି ଖୁସି ହୋଇ ସିନ୍ଦୁକରେ ଥିବା ସିଂହୁର ପୁଡ଼ିଆକୁ ଢ଼ିବାର ଘିଅ ସହିତ ଗୋଳାଇ ଦେଠେଇଙ୍କ ମୁହଁ ଏବଂ ବାଳରେ ଭଲକରି ଦେଲେ । ସେଥିରେ କଜଳରେ ଗାର ଟଣାହେଲା । ତାପରେ ଟଙ୍କାର ଥଳି ଝନ୍—ଝନ୍—କରି ଦେଠେଇଙ୍କୁ ଦେଖାଇ ନେଇ ଚାଲିଗଲେ ।

ବିଲେଇ ଛୁଆମାନେ ଖଟ ପାଖରେ ଜାକି—ଜୁକି ବସି ମ୍ୟାଉଁ ମ୍ୟାଉଁ କରିବାକୁ ଲାଗିଲେ ।

# ପନ୍ଦର

ବନକନ୍ୟାକୁ ତା ଜୀବନରେ ଏତେ ଶୀଘ୍ର ପ୍ରବେଶ କରିବା ଦେଖି ସଜ୍ଜନ ଉଦ୍‌ବିଗ୍ନ ହେଲା । ଏତେ ଅଳ୍ପ ସମୟ ଭିତରେ ଏପରି ଦ୍ରୁତ ଆଗେଇଥିବା ସମ୍ବନ୍ଧ ଯଦିଓ ତା ପକ୍ଷରେ ନୂଆ ନୁହେଁ ତେବେ ସେହି ସମ୍ବନ୍ଧମାନଙ୍କଠାରୁ ଏହା ସମ୍ପୂର୍ଣ୍ଣ ନୂତନ ଏବଂ ଅଧିକ ମର୍ମାନ୍ତିକ ଅଟେ । ସଜ୍ଜନ ଭଲ ଭାବରେ ଉପଲବ୍ଧି କରିଛି ଯେ କନ୍ୟା ଅନ୍ୟ ଯୁବତୀମାନଙ୍କ ପରି ନୁହେଁ ଯେଉଁମାନଙ୍କ ସୁଢକୁ ତକଥା ଭଲ ରଖି ବର୍ତ୍ତମାନ ପର୍ଯ୍ୟନ୍ତ ସେ ତା ଉପରେ ଶୋଇ ପଡ଼ିଛି ।

କନ୍ୟାର ଆକର୍ଷଣ ତାକୁ ସବୁବେଳେ ଚଞ୍ଚଳ କରିଛି । ପ୍ରଥମ ଦିନର ହିଁ କନ୍ୟା ତା ପାଇଁ କଷଟି ପଥର ହୋଇଯାଇଛି । ବନ୍ଧୁମାନେ ମଧ୍ୟ ଥଟ୍ଟା ପରିହାସରେ କନ୍ୟା ସହିତ ବିବାହ ହେବାର ଭବିଷ୍ୟତ ବାଣୀ କରୁଛନ୍ତି, ସେ ବି ବେଳେବେଳେ ଏମିତି କଳ୍ପନା କରେ । ଏଂ ଶ ନ ଭିବଦା ଛଡ଼ା ତାର ହିଆଉ ପାସ୍ଥ ମଧ୍ୟ ନାହିଁ । ସ୍ଥା ବ୍ୟତୀତ ସେ ଆଉ କିପରି କନ୍ୟା ପ୍ରତି ବଢୁଥିବା ସମ୍ପର୍କକୁ ଅନ୍ତିମ ରୂପ ଦେବ ? କିନ୍ତୁ କନ୍ୟା କଣ ଏହିପରି ଚିନ୍ତା କରେ ? କିଏ ଜାଣେ, ହୁଏତ କନ୍ୟା କେବଳ ତାର ଫାଇଦା ଉଠାଇବା ପାଇଁ ଏବଂ କାମ ସରିଗଲା ପରେ ତାକୁ ଆଘାତ ଦେଇ ଚାଲି ନଯିବ ? ଏହି ଆଶଙ୍କା ଚିନ୍ତା କରି ସଜ୍ଜନର ମନ ଦବିଗଲା ।

ପରଦିନ ସ୍ପଢରେ କର୍ଣ୍ଣେଲଙ୍କର ଚେଷ୍ଟା ଫଳରେ ବନକନ୍ୟା ଏବଂ ତାର ଲେଖାକୁ ଚମତ୍କାର ଭାବରେ ଖ୍ୟାତିର ଶୀର୍ଷ ଭାଗରେ ପହଞ୍ଚାଇ ଦେଇଛି । କାଲି ସକାଳେ ସାରା ଦେଶର ସମ୍ବାଦ ପତ୍ରରେ ଉଡ଼ାଜାହାଜର କଥା ସହିତ ବନକନ୍ୟାର ଲେଖା ମଧ୍ୟ ଛପା ହୋଇଛି । ନୂଆ ଘରେ ସହରର ସମ୍ବାଦ ପତ୍ରମାନେ ପ୍ରଥମ ଦିନରେ ଏହି ଘଟଣାକୁ ସମ୍ବାଦ ପତ୍ରରେ ମହତ୍ତ୍ୱ ପୂର୍ଣ୍ଣ ସ୍ଥାନ ଦେଇଛନ୍ତି । ବନକନ୍ୟା ସକାଳେ ଆଖି ଖୋଲୁ ଖୋଲୁ ନଗରରେ ନିଜ ଖ୍ୟାତିର କଥା ଶୁଣିଲା, ଜଣା—ଶୁଣା ଲୋକମାନେ ଉତ୍ସାହର ସହିତ ତାକୁ ଦେଖା କରିବାକୁ ଆସିଲେ । ସମ୍ବାଦ ପତ୍ରର ରିପୋର୍ଟରମାନେ ଇଂଟରଭିୟୁ କଲେ, ତାର ଫଟୋ ମଧ୍ୟ ଉଠେ-ଇଲେ, ବନକନ୍ୟା ଏହି ସବୁ କାରଣରୁ ଖୁବ୍ ସତେଜ ଉତ୍ସାହିତ ଦେଖାଯାଉଥିଲା । ସାରାଦିନ କାର୍ଯ୍ୟ ବ୍ୟସ୍ତତା ପରେ ଯେତେବେଳେ ସଜ୍ଜନ କିଛି ସମୟ ପାଇଁ କନ୍ୟାକୁ ଏକୁଟିଆ ପାଇଲା, ସେତେବେଳେ ସେ ଦେଖିଲା ଯେ, କନ୍ୟା ପୂର୍ବ ଅପେକ୍ଷା ଅନେକ ବଦଳି ଯାଇଛି । ସେ କମ କଥା କହି ତା ପାଖରୁ ଶୀଘ୍ର ବିଦାୟ ନେବାକୁ ଚାହୁଁଥିଲା । ସଜ୍ଜନ ସହିତ ବାହାରକୁ ଯିବାକୁ ମଧ୍ୟ ମନା କରିଦେଲା ଏବଂ ନିଜେ ଏକୁଟିଆ ଚାଲିଗଲା । ସଜ୍ଜନର ଇଚ୍ଛା ଥିଲା ଦୁଇ ଜଣ ଏକା ସାଙ୍ଗେ ବୁଲି ଯିବେ—'

ସାସ୍ ସହରର ଆଲୋଚନା ଗାଡ଼ିରେ କଫି ହାଉସ ଯାଇ ଶୁଣିବେ—ଲୋକମାନେ ତାଙ୍କୁ ଏବଂ ତାର ହିରୋଇନକୁ ନେଇ ଆଲୋଚନା କରିବେ, ଈର୍ଷା କରିବେ । କିନ୍ତୁ ବନକନ୍ୟା ତାର ସବୁ କଳ୍ପନାକୁ ଧୂଳିରେ ମିଶାଇ ଚାଲିଗଲା । ଯିବା ସମୟରେ ସେ ମଧ୍ୟ କହିଗଲା—'ମହିପାଲ ବାବୁଙ୍କର 'ଦେବତା' ଗଳ୍ପରେ ଗୋଟିଏ ମଜା କଥା ଲେଖାଥିଲା, ଆପଣ ବୋଧେ ପଢ଼ିଥିବେ, ସେଇ କଥାଟି ହେଲା, ଭଗବାନ ଯଦିଜଣେ ଭଲ ମନୁଷ୍ୟଙ୍କୁ କୌଣସି କାରଣରୁ ଦଣ୍ଡ ଦେବାକୁ ଚାହାନ୍ତି, ସେ ତାଙ୍କୁ ଦେବତା କରି ଦିଅନ୍ତି ।'

ଏହି କଥାଟି ଏପରି କହିଲା ଯେ ସଜ୍ଜନ ପାଇଁ ତାହା ଅସହ୍ୟ ହୋଇଗଲା । ସଜ୍ଜନ ପାଇଁ କାଲି ସନ୍ଧ୍ୟା, ରାତି ଏବଂ ଆଜି ସକାଳ ମଧ୍ୟ ଅସହ୍ୟ ଥିଲା । ତାଙ୍କୁ ଲାଗିଲା ଯେପରି ବନକନ୍ୟା ମଧ୍ୟ ତାର ନୀଚ ମନକୁ ଜାଣି ଯାଇଛି । ସେଇ କାରଣରୁ ସଜ୍ଜନ ମନରେ ଗ୍ଲାନି ଅନୁଭବ କଲା । ସେ ଭାବିଲା ଯଦି ବନକନ୍ୟା ବର୍ତ୍ତମାନ ନ ଆସିବ ତେବେ ଆଉ କେବେ ବି ଆସିବନି । ଟେଲିଫୋନ ଅନ୍ୟ ଘରକୁ ଉଠାଇନେଲା । କର୍ଣ୍ଣେଲ, ମହିପାଲ ଏବଂ ଏହି ମେମ୍ ସାହେବ ଯିଏ କି ବର୍ତ୍ତମାନ ଗଲେ ସେମାନଙ୍କ ମଧ୍ୟରୁ କାହାରି ସହିତ ଦେଖା ନ କରିବା ପାଇଁ ଚାକରମାନଙ୍କୁ ନିର୍ଦ୍ଦେଶ ଦେଲା, ମଦ ପିଇଲା, ଗୋଟିଏ ଗୋଟିଏ ମିନିଟ୍‌ରେ ରୋଷେଇଆକୁ ନୂଆ ନୂଆ ଖାଦ୍ୟ ତିଆରି କରିବାର ଆଦେଶ ଦେଇ ସମସ୍ତଙ୍କୁ ଆତଙ୍କିତ କଲା ତାପରେ ରେଡ଼ିଓରୁ ସଙ୍ଗୀତ ଶୁଣିବାକୁ ଲାଗିଲା, ଶେଷରେ ଗୀତା ତଥା ଆଉ ଗୌତମ ବୁଦ୍ଧଙ୍କ ବାଣୀ ପଢ଼ିଲା ।

ଗୀତାରେ ଲେଖା ହୋଇଛି ଯେ, 'କାମରେ କ୍ରୋଧ ଜନ୍ମେ, କ୍ରୋଧରୁ ବୁଦ୍ଧି ଲୋପ ପାଏ ।' ଆହତ ହୋଇଥିବା ମନର ଜ୍ୱାଳାରେ ଥକିଯାଇ ସଜ୍ଜନ କିଛିସମୟ ପାଇଁ ଚୁପ୍ ରହିଲା, ମନେ ମନେ ସିଦ୍ଧାନ୍ତ କଲା ଯେ ସେ କାମକୁ ଜୟ କରିବ । ସେ ତା' ଜୀବନ ପଥରୁ ନାରୀ ନାମକ ବିପତ୍ତିକୁ ବିଦା କରିଦେବ ।

ଗୋଟିଏ ଜାଗାରେ ବୁଦ୍ଧ ଏବଂ ତାଙ୍କ ପ୍ରିୟ ଶିଷ୍ୟ ଆନନ୍ଦର କଥାବାର୍ତ୍ତା ପଢ଼ିଲା । ଗୁରୁଦେବ ! ସ୍ତ୍ରୀମାନଙ୍କ ସହିତ ମୁଁ କିପରି ବ୍ୟବହାର କରିବ ?

ବୁଦ୍ଧ—'ଅଦର୍ଶନ—ମାନେ ଦେଖିବ ନାହିଁ !'

ଆନନ୍ଦ—'ଦେଖା ହୋଇଗଲେ କ'ଣ କରିବ ?'

ବୁଦ୍ଧ—'କଥା କହିବ ନାହିଁ, ଆନନ୍ଦ !'

ଆନନ୍ଦ—'କଥା ମଧ୍ୟ କହିବାକୁ ପଡ଼ିଲେ ?'

ବୁଦ୍ଧ—'ମନକୁ ସମ୍ଭାଳି ରଖିବ ।'

— ସଜ୍ଜନ ମଧ୍ୟ ଆଜିଠାରୁ ଏପରି କରିବ, ନାରୀମାନେ ତା' ସହିତ ବହୁତ ଛଳନା କରିଛନ୍ତି । ଆଜିଠାରୁ ସେ ନିଜ ମନକୁ ଆୟତ୍ତରେ ରଖିବ । ସେ ବ୍ରହ୍ମଚର୍ଯ୍ୟ ପାଳନ କରିବ—ସଂସାରରେ ବହୁଲୋକ ତ ବ୍ରହ୍ମଚର୍ଯ୍ୟ ପାଳନ କରିଛନ୍ତି । ସେ କାହିଁକି ପାରିବ ନାହିଁ ? ନୂତନ ଅନୁଭବରୁ ତାକୁ ନୂତନ ଚେତନା ମିଳିଲା—ନୂତନ ଦୃଷ୍ଟି ମଧ୍ୟ ବର୍ତ୍ତମାନ ଆମ୍ଭମାନଙ୍କର ଜୀବନରେ ଜ୍ଞାନର ଆବଶ୍ୟକତାର ଅନୁଭବ କଲା—ବହି ଓଲଟାଇ ଓଲଟାଇ ଦେଖିଲା ଯେ ବୁଦ୍ଧ ଗୋଟିଏ ଜାଗାରେ କହିଛନ୍ତି—'ମୁଁ ମଧ୍ୟ ଗତି କରୁଛି କିନ୍ତୁ କେଉଁଠି ଯିବାକୁ ହେବ, ତାହା ମତେ ଜଣାନାହିଁ । ଯଦି ଗତି ରହୁ କିନ୍ତୁ ସନ୍ତୁଳ ସାଧନାରେ ଯେପରି ବ୍ୟାଘାତ ନ ହୁଏ ବୈରାଗ୍ୟ ରହୁ ସେଥିପାଇଁ ହେଲା ନ ହୁଏ ଉଚିତ୍ର ସ୍ୱାଭିମାନ ରହୁ କିନ୍ତୁ ବନସ୍ତତାର ଅଭାବ ନ ଥାଉ, ପ୍ରକୃତ ଅର୍ଥରେ କ୍ଷେତ୍ରିୟ ଧର୍ମର ଅନୁଭୂତି ରହୁ କିନ୍ତୁ ସ୍ନେହ ଧାରଣ ନ ରହୁ ତେବେ ଭଗବନ୍ତ ଦର୍ଶନରେ ବିଳମ୍ବ କାହିଁକି ? ସଜ୍ଜନର ମନେହେଲା ଯେପରି ସେ ଜୀବନରେ ନୂଆ ରାସ୍ତା ଦେଖିଲା ଆଉ ବନକନ୍ୟା —ସେ ତ ଗୋଟିଏ ଭାଗ୍ୟହୀନା ରମଣୀ, ଯିଏ କି ଅସୁବିଧାରେ ପଡ଼ିଥିଲା । ସଜ୍ଜନ ତାକୁ ସାହାଯ୍ୟ କରିଛି—ପର ଉପକାର ତ ପୁଣ୍ୟକାମ ।

ଆଧ୍ୟାତ୍ମିକ ସ୍ତରକୁ ଉଠି ନାନା ପ୍ରକାର କଳ୍ପନାରେ ନିଜ ଭବିଷ୍ୟତ ଜୀବନର ଚିତ୍ର ଆଙ୍କି ଆଙ୍କି ସଜ୍ଜନ ରାତି କଟାଇଦେଲା । ଶେଷରେ ରାତରେ ନିଦ ଆସିଲା । ସକାଳୁ ଉଠି ଗତ ରାତର ନିଶା ଛାଡ଼ି ଯାଇଥିଲେ ମଧ୍ୟ ସଜ୍ଜନର ବ୍ରହ୍ମଚର୍ଯ୍ୟ କାଏମ ରହିଲା । ଆଖି ଖୋଲୁ ଖୋଲୁ ତା ମନରେ ସକାଳର ପ୍ରଥମ କଥା ରୂପେ ଏ ବିଷୟଟିଇ ହେଲା ।

ଆଜି ସକାଳେ ଗୋଟିଏ ସ୍ଥାନୀୟ ଇଂରାଜୀ ଦୈନିକ ପତ୍ରିକା ତାର ସମ୍ପାଦକୀୟ ଟିପ୍ପଣୀରେ କନ୍ୟାର ଲେଖାକୁ ତାରିଫ୍ କରି ସରକାରଙ୍କୁ ଏହି କଥା ଯାଞ୍ଚ କରିବା ପାଇଁ ଲେଖିଛନ୍ତି ପୃଥିବୀରେ ଏହି ବିଶ୍ୱାସ କାଏମ ରହିଛି, ଯଦି ଯେମାନେ ହାରିଯିବେ—ତାହେଲେ ପ୍ରତ୍ୟେକ ପଲିଟିକାଲ ପାର୍ଟିର ବଡ଼ ବଡ଼ ଆଦର୍ଶ ନିର୍ଜୀବ ହୋଇଯିବ ।

ସଜ୍ଜନର କନ୍ୟା ଉପରେ ଈର୍ଷା ଆସିଲା, ପୁଣି ମନେ ପଡ଼ିଲା ଯେ, ସେ ତ ବର୍ତ୍ତମାନ ବ୍ରହ୍ମଚର୍ଯ୍ୟ ପାଳନ କରିବାକୁ ଯାଉଛି, ତା ସହିତ କନ୍ୟାର ସମ୍ପର୍କ କଣ । ନିଜ ମନକୁ ଜବରଦସ୍ତ ସଞ୍ଜତ କରି ସଜ୍ଜନ କାମରେ ମନଦେଲା । ଆଜି ବର୍ଷକ ପରେ ସଜ୍ଜନର ହଠାତ୍ ମାଁଙ୍କର ମନ୍ଦିରକୁ ଯିବାକୁ ଇଚ୍ଛାହେଲା । ଏହାଦେଖି ଚାକର ପୂଜାରୀ ମନେ ମନେ ମଧ୍ୟ ଆଶ୍ଚର୍ଯ୍ୟ ହୋଇ ଘର ପଛପଟରେ ଶଙ୍ଖ ମଲ ମଲ ପଥରରେ ଠାକୁରଘର ତିଆରି ହୋଇଛି । ଏହି ଠାକୁର ଘର ସଜ୍ଜନର ବୁଢ଼ି ମା ନିଜ କୁଳର ଦେବା-ଦେବୀଙ୍କ ପାଇଁ ବନେଇଥିଲେ, ବିଲାତରୁ ଫେରିବା ପରେ କନ୍ନୋମଲର ମା ନିଜ ସ୍ୱାମୀଙ୍କୁ ତାଙ୍କ ଦେହ ଛୁଇଁବାକୁ ଦେଇ ନ ଥିଲେ ଏବଂ କେବେ ନିଜ ଠାକୁର ଘରେ ଗୋଡ଼ ଦେବାକୁ ମଧ୍ୟ ଅନୁମତି ଦେଇ ନ ଥିଲେ, ପରମ୍ପରା ଗତ ନିୟମ ଅନୁସାରେ କୁଳ ଠାକୁରଙ୍କର ସେବା ଶାଶୁଠାରୁ ବୋହୂ କରି ଆସୁଥିଲେ ଏବଂ ସଜ୍ଜନର ମା'ଙ୍କ ଜୀବନକାଳ ପର୍ଯ୍ୟନ୍ତ ଏହି ନିୟମ ଠିକ୍ ଭାବରେ ପାଳିତ ହୋଇଥିଲା । ସଜ୍ଜନର ମା'ଙ୍କର ସମୟରେ ଯେଉଁ ପୂଜାରୀ ଠାକୁର ଘରର ଦାୟିତ୍ୱରେ ଥିଲେ, ତାର ଭଣଜା ମଧ୍ୟ ବର୍ତ୍ତମାନ ଏଠାରେ ଅଛି । ପ୍ରତ୍ୟେକ ଦିନ ଠାକୁରପୂଜା ଏବଂ ଚଣ୍ଡିପାଠ ସରିଲା ପରେ ସେ ସଜ୍ଜନକୁ ଚରଣାମୃତ ଏବଂ ଆଶୀର୍ବାଦ ଦେବାକୁ ଆସେ—ବାସ, ଏତିକି ହିଁ ସଜ୍ଜନର ଧର୍ମ ସହିତ ସମ୍ପର୍କ ଈଶ୍ୱର ଅଛନ୍ତି କି ନାହିଁ ଏହି ବିଷୟରେ ସେ ମୁହୂର୍ତ୍ତେ ହେଲେମଧ୍ୟ ଚିନ୍ତା କରିନାହିଁ । ଆଜି ସେ ଯେତେବେଳେ ଗାଧୋଇସାରି ସିଧା ଠାକୁର ଘରେ ପ୍ରବେଶ କଲା ଚଣ୍ଡିପାଠ କରୁଥିବା ପୂଜାରୀ ଭୂତ ଦେଖିଲାପରି ଚମକି ଉଠିଲା ।

ବର୍ଷେ ପରେ ନିଜ ରହିବା ଘରର ଦ୍ୱିତୀୟ ମହଲାରେ ସେ ଗୋଡ଼ ଦେଲା । ସେ ସବୁବେଳେ ମାଙ୍କ ସହିତ ଏହି ଠାକୁର ଘରକୁ ଆସୁଥିଲା । ମାଙ୍କ ମୃତ୍ୟୁପରେ ପ୍ରଥମଥର ପାଇଁ ସେ ଏକୁଟିଆ ଠାକୁର ଘରକୁ ଆସିଥିବାରୁ ସଜ୍ଜନର ମନ ହାଲୁକା ହୋଇଗଲା । ଶଙ୍ଖ ମଲ୍ଲ ମଲ୍ଲ ପଥରରେ ତିଆରି ହୋଇଥିବା ଠାକୁର ମଣ୍ଡପ ମଇଳା ହୋଇଯାଇଥିଲା । ମଖମଲର ଚାନ୍ଦୁଆ, ତା' ଉପରେ ଜରିକାମ ସବୁ ମଇଳା ଓ ପୁରୁଣା ହୋଇ ଯାଇଥିଲା । ଚାନ୍ଦୁଆରେ ଲଗା ହୋଇଥିବା ରୁପାଖୁଣ୍ଟ ସଫା ନ ହୋଇ କଳା ପଡ଼ିଯାଇଛି । ନିସ୍ତବ୍ଧ ବାତାବରଣରେ ଅନେକ ଠାକୁର ଚନ୍ଦନ ଓ ଫୁଲ ହାରରେ ସଜ୍ଜାହୋଇ ନିଷ୍ପ୍ରାଣ ହେଲାପରି ବସିଥିଲେ । ସଜ୍ଜନକୁ ଏହା ଭଲଲାଗିଲା ନାହିଁ, ପୂଜାରୀ ଉପରେ ରାଗି କହିଲା—ତୁମେ କେଉଁ ଧର୍ମ ପାଳନ କରୁଛ ? ଯେଉଁ ଭଗବାନଙ୍କୁ ସବୁଠାରୁ ବେଶୀ ପବିତ୍ର ମାନୁଛ ତାଙ୍କୁ ଏତେ ଅପବିତ୍ର ଏବଂ ଅପରିଷ୍କାର କରି ରଖିଛ ? ଏଭଳି କାର୍ଯ୍ୟ ପାଇଁ ତୁମେ ଅଯଥା ପଇସା ପାଉଛ ଲାଜ ଲାଗୁ ନାହିଁ ?

ପୂଜାରୀର ହାତଗୋଡ଼ ଥରିବାକୁ ଲାଗିଲା । ଉତ୍ତର ଦେବାକୁ ଚେଷ୍ଟାକରି ମଧ୍ୟ ମନର କଥା କହିପାରିଲା ନାହିଁ । ଛଅଶଟଙ୍କା ନେଉଥିବା ପେଶାଦାର ପୂଜାରୀ ବ୍ରାହ୍ମଣ ନିଜ ମାଲିକର ରାଗ ସାମନାରେ କିଛି କହିବାର ସାହସ କରିବ କିପରି ?

ଆଜି ସଜ୍ଜନ ତା' ସ୍ୱକର ପୂଜାରୀ ସମସ୍ତଙ୍କୁ ସଫା କରିବାକୁ ଆଦେଶ ଦେଲା, ମାଲୀକୁ ମଧ୍ୟ କୁହାହେଲା ଯେ, ସେ କାଲିଠାରୁ ଠାକୁରଙ୍କ ପାଇଁ ଠିକ୍ ସମୟରେ ଭରି ଭଲ ଫୁଲ ନେଇ ଆସିବ—ମା'ଙ୍କ ସମୟରେ ଯେପରି ହେଉଥିଲା, ସେ କଷ୍ଟକରି ଯେଉଁ ଫୁଲ ଫୁଟାଉଛି ସେଗୁଡ଼ିକ କେବଳ ମୋ ରୁମ୍‌ରେ ହିଁ ରଖା-ହେଉଛି । ଯଦି କାଲି ଏଠାକାର ସବୁ ଜିନିଷ ଠିକ୍ ନ ହୁଏ, ତା'ହେଲେ ସମସ୍ତଙ୍କ ଉପରେ ପାଞ୍ଚ ପାଞ୍ଚ ଟଙ୍କା ଫାଇନ କରିବ···ଆଉ ପଣ୍ଡିତ ମହାଶୟ ଆପଣ ଯଦି ମନ ଲଗାଇ ଠିକ୍ ରକମ ପାଠ ନ କରନ୍ତି ତା'ହେଲେ ମୁଁ ଅନ୍ୟ ବ୍ୟବସ୍ଥା କରିବ ।

'ନାହିଁ ଧର୍ମାବତାର··· ।'

'ବାଜେକଥା କୁହନ୍ତୁ ନାହିଁ ମୁଁ ଘରେ ଶୁଷ୍କ ପୂଜା ପାଠ ଚାହେଁ । ସଂପୂର୍ଣ୍ଣ ନିଷ୍ଠାର ସହିତ ତାହା ଯେପରି ହୁଏ ତା ମୁଁ ଦେଖିବାକୁ ଚାହୁଁଛି ।

ପୂଜାରୀ ସ୍ୱକର ଉପରେ ନିଜ ରାଗ ବର୍ଷଣ କରି ସାରିଲା ପରେ ସଜ୍ଜନର ମନ ଯେତେବେଳେ ଥଣ୍ଡା ହେଲା ଯେତେବେଳେ ଠାକୁରଙ୍କ ଉପରେ ତାର ନଜର ପଡ଼ିଲା ସେତେବେଳେ ତା ମନରେ କୌଣସି ଆସ୍ଥା ଜନ୍ମିଲା ନାହିଁ ! ଭାବିବାକୁ ଲାଗିଲା ଶେଷରେ ମଣିଷ ଏହି ପଥର ମୂର୍ତ୍ତି ଗୁଡ଼ିକରୁ କଣ ଦେଖେ । କାହିଁକି ଏପରି ହୁଏ ସେ ତାର ବୁଢ଼ିମା ଓ ମାଙ୍କୁ ଏଠାରେ ଘଣ୍ଟେ କାଳ ବସି ସେବା ପୂଜା କରୁଥିବା ବା ପୁରାଣ ଶୁଣୁଥିବାର ଦେଖିଛି । ସେ ତାର ମାଙ୍କ ପାଇଁ ବଜୁଲି ପଙ୍ଖା ରଖି ମଧ୍ୟ ଘଣ୍ଟେକାଳ ଠାକୁରଙ୍କୁ ପଙ୍ଖା କରିବାର ଦେଖିଛି । ଭାରତ ବର୍ଷରେ ଅନେକ ମନ୍ଦିରକୁ ଯାଇ ମଧ୍ୟ ସେ କେବଳ ସେଠାକାର କଳା ହିଁ ଦେଖିଛି କିନ୍ତୁ ଭଗବାନଙ୍କୁ ନୁହେଁ, ସେ ପଣ୍ଡା—ପୂଜାରୀମାନଙ୍କର ବଦମାସୀ ଏବଂ ଅତ୍ୟାଚାର ମଧ୍ୟ ଅନେକ ସମୟରେ ଦେଖିଛି, ଅଥଚ କେଉଁ ମାୟା ଡୋରରେ ବାନ୍ଧି ହୋଇ ଲକ୍ଷ ଲକ୍ଷ ଲୋକେ ଏପରି ଜାଗାକୁ ରୋଜ ଏହି ବିଷୟରେ ସେ ଗମ୍ଭୀର ଚିନ୍ତା କରିନ ! ଆଜି ଏଇ ମୁହୂର୍ତ୍ତରେ ମନରେ ଏହି ଚିନ୍ତା ପ୍ରଥମ ହେଲା ସେ ଗମ୍ଭୀର ହୋଇଗଲା । କିନ୍ତୁ ନିଜ ପ୍ରଶ୍ନର ଉତ୍ତର ପାଇଲା ନାହିଁ । ଘସା ହୋଇଥିବା,

ପିତଳର, ବଡ଼—ବଡ଼ ନର୍ଜିବ ଆଖି ଲଗା ହୋଇଥିବା ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି, ଛୋଟ ଛୋଟ ମୂର୍ତ୍ତି ବହୁତ ପଥର, ଶାଳଗ୍ରାମ ଶିବଲିଙ୍ଗ, ବାଳଗୋପାଳ, ରୁପା ତିଆରି ନାଗଧାରୀ ଶିବ, ଗଣେଶ, ହନୁମାନ ବଡ଼ ବଡ଼ ତିନୋଟି ତାମ୍ର ଯନ୍ତ୍ର—ଏହି ସବୁରୁ ସେ କିଛି ସତ୍ୟ ପାଇଲା ନାହିଁ କିନ୍ତୁ କୋଟି କୋଟି ଲୋକ ଏଥିରେ କଣ ଦେଖନ୍ତି ?

ସଜ୍ଜନ କିଛି ସମୟ ସମ୍ପୂର୍ଣ୍ଣ ଏକାନ୍ତ ଭାବରେ କଟାଇଲା । ସେମାନଙ୍କର ପ୍ରଭାବ ତା ଉପରେ ମଧ୍ୟ ପଡ଼ିଲା ଚିନ୍ତା କରିବାକୁ ଲାଗିଲା ଯେ ଏଠାରେ ରୋଜ କଣ କରିବ ?—ଆଉ କିଛି ନୁହେଁ । ଏହାକୁ ଧ୍ୟାନ କରିବାର ଘର କରିବ—ନିୟମିତ ଆସିବ । ନିଜକୁ କଠୋର ଅନୁଶାସନରେ ବାନ୍ଧି ପାରିବାର ବିଶ୍ୱାସ ସଜ୍ଜନ ମନରେ ଥିଲା ।

ସଜ୍ଜନ ଆଜି ସକାଳୁ ଶପଥ କରିଛି ଯେ ତା ମନ ବାରମ୍ବାର ନାରୀ ଚିନ୍ତାରେ ଅସ୍ତବ୍ୟସ୍ତ ହେଉଥିଲେ ହେଁ ସେ ଆଉ ସେ ଦିଗରେ ଜମା ମନ ଦେବ ନାହିଁ । କନ୍ୟା ତା ଜୀବନରେ ଆସିଲେ ମଧ୍ୟ ସେ ତାକୁ ଗୋଟିଏ ସାଧାରଣ ବନ୍ଧୁ ଭାବରେ ଦେଖିବ । ଜବରଦସ୍ତ ନିଜ ମନକୁ ତାଠାରୁ ଦୂରେଇ ରଖିବ ।

ଆଜି ଯେତେବେଳେ ସେ ଷ୍ଟୁଡ଼ିଓକୁ ବାହାରିଲା ସେତେବେଳେ ଦୁଇ ଜଣ ଚାକର, ବାଲ୍ଟି ସାଙ୍ଗରେ ନେଇଗଲେ । ବନା କାରଣରେ ଅନେକ ଫୁଲ ମଧ୍ୟ ନେଲା । ଆଜି ସେ ଭିତର ବାହାର ସବୁ ସଫା କରିବ । କିଛି ସମୟ ସେ ଚିନ୍ତା କଲା ।

ଚାକର ସହିତ ପ୍ରଥମ ଥର ହିଁ ସେ ନିଜ ଭଡ଼ା ନେଇଥିବା ଘରକୁ ଆସିଛି । ବର୍ତ୍ତମାନ ପର୍ଯ୍ୟନ୍ତ କେବଳ ଡ୍ରାଇଭର ହିଁ ଏହି ଜାଗା ଦେଖିଥିଲା ବଙ୍ଗଳାର ଚାକର ଗୋଶାଳାର ଗ୍ରୁଡ ଉପରେ ନିଜ ମାଲିକଙ୍କ ପଛରେ ଆଗେଇ-ବାକୁ ଲାଗିଲା । ପାହାଚ ଚଢ଼ୁ ଚଢ଼ୁ ହଠାତ୍ ଦେଠେଇଙ୍କ ଘର ଖୋଲିଥିବା ତା ନଜର ପଡ଼ିଲା । ଚାକର ମୁଣ୍ଡରେ ଫୁଲ ଡାଲା ଦେଖି କହିଲା ଆଣ ଦେଠେଇଙ୍କ ଠାକୁର ପାଇଁ କିଛି ଫୁଲ ଦେଇ ଯାଏ । ଚାକରକୁ ଘର ସଫା କରିବାକୁ ଆଦେଶ ଦେଇ ସେ ଗୋଟିଏ ଛୋଟ ବାଉଁଶ ଡାଲାରେ ଫୁଲନେଇ ଦେଠେଇଙ୍କ ଘରକୁ ଗଲା । ଦୁଆରରେ ପ୍ରବେଶ କରୁ କରୁ ଭାବିଲା ଗାଳି ଖାଇବାକୁ ପଡ଼ିବ, ପୁଣି ଭାବିଲା ଗାଳି ଶୁଣିଲେ ଶୁଣିବ ।

ଅଗଣାରେ ବଲେଇ ଛୁଆ ଛନୋଟି ଗୋଟିଏ ଲାଇନରେ ବସିଥିଲେ—ତାକୁ ଦେଖିବା ସଙ୍ଗେ ସଙ୍ଗେ ଏକ ସ୍ୱରରେ ମ୍ୟାଉଁ ମ୍ୟାଉଁ କରି ଉଠିଲେ । ସଜ୍ଜନ ଅଗଣାରେ ଗୋଟିଏ ପାଦ ମଧ୍ୟ ଚାଲିବା ଅସମ୍ଭବ ହେଲା କୌଣସି ଅଘଟଣ ଘଟିଥିବା ଆଶଙ୍କାରେ ସଜ୍ଜନ ଆଶଙ୍କିତ ହେଉଥିଲା । ବଲେଇ ଛୁଆ ତାର ପାଦ ଚାରି ପାଖରେ ମ୍ୟାଉଁ ମ୍ୟାଉଁ କରି ଡ଼ାକ ଘେରି ଗଲେ ।

ସାମନା ପିଣ୍ଡା ଉପରକୁ ଉଠୁ ଉଠୁ ଦେଖିଲା ଯେ ଦେଠେଇ ନିଜ ଖଟରେ ବନ୍ଧା ହୋଇଛନ୍ତି । ତାର ସାରା ଦେହ ହନୁମାନଙ୍କ ପରି ସିଂହୁରରେ ଲେପା ହୋଇଥିବା ଦେଖି ସଜ୍ଜନ ଚମକି ପଡ଼ିଲା ମୁହଁରେ ପଟି ବନ୍ଧା ହୋଇଛି, ଗାଲ ଏବଂ କପାଳରେ କଜଳର ଗାର—ମୁର୍ଦ୍ଦାର ପରି ବନ୍ଧା ହୋଇ ହୋଇଥିବା ଏବଂ ମେକ୍ ଅପ୍ ହୋଇଥିବା ଦେଠେଇଙ୍କ ରୂପ ଦେଖି ସଜ୍ଜନର ମନେ ହେଲା ସେ ମରି ଯାଇଛନ୍ତି । ଶବ ପାଖକୁ ଯାଉ ଯାଉ ଦେଠେଇ ନିଶ୍ୱାସ ନେବାର ଜାଣି ପାରିଲା । ଦେଠେଇ ମୁଣ୍ଡ ହଲାଇଲା ଏତେ ବଢ଼ିଲା ମେକ୍‌ପରୁ ଧଳା ଆଖି ଚମକି ଉଠିଲା, ସଜ୍ଜନ ଶିଘ୍ର ପାଖକୁ ଗଲା ମୁହଁରୁ ପଟି ଫିଟାଇଲା, ମୁହଁରେ ପୁରି ହୋଇଥିବା କନା ବାହାର କରିଲା, ଦେଠେଇ ପାଟି ଅନେକ ସମୟ ପର୍ଯ୍ୟନ୍ତ ଯେମିତି କି ସେମିତି ଖୋଲା ହୋଇ ରହିଲା । ସଜ୍ଜନ ଦେଠେଇଙ୍କ ବନ୍ଧନ ଫିଟେଇଲା । ତାର ଅଣ୍ଟା ହାତ ଗୋଡ଼ ଏବଂ ମୁହଁକୁ ଜୋରରେ ଘଷିବାକୁ ଲାଗିଲା ।

କିଛି ସମୟ ପରେ ତାର ଚେତା ଫେରିଲା, ତା ମୁହଁରେ ସେ ପର୍ଯ୍ୟନ୍ତ ମଧ୍ୟ ଯନ୍ତ୍ରଣା ହେଉଥିଲା । ସଜ୍ଜନ ତାର ବେକ ମାଲିଶ କରି ମୁହଁକୁ ଠିକ୍ ଭାବରେ ବସାଇବା ପାଇଁ ଚେଷ୍ଟା କଲା । ଦେଠେଇ କଥା କହିବା ପାଇଁ ଚେଷ୍ଟା କଲା । ଖଟର ଦୁଇ ପାଖରେ ହାତ ଭରି ଦେଇ ସେ ଉଠି ବସିଲେ ସଜ୍ଜନର ହାତ ଉପରେ ହାଲୁକା ଭରି ଦେଇ— ।

ସଜ୍ଜନ କହିଲା—ମୁଁ ଡାକ୍ତର ଡ଼ାକୁଛି ଦେଠେଇ , ସେ ହାତ ହଲାଇ ମନା କଲା । ଅଗଣାରେ ମ୍ୟାଉଁ ମ୍ୟାଉଁ କରୁଥିବା ଛୁଆଙ୍କ ଆଡକୁ ହାତ ଦେଖାଇ ଭଙ୍ଗା ସ୍ୱରରେ କଥା କହିବାକୁ ଚେଷ୍ଟା କଲା ।

ସଜ୍ଜନ କିଛି ବୁଝି ପାରିଲା ନାହିଁ, କହିଲା—ମୁଁ ବର୍ତ୍ତମାନ ସେକ ଦେବାର ବନ୍ଦୋବସ୍ତ କରୁଛି ଦରକାର ପଡ଼ିଲେ ଡାକ୍ତର ଡ଼ାକି ଆଣିବି ।'

ଦେଠେଇ ଅଗଣା ଦଗରେ ହାତ ଦେଖାଇ ଶବ୍ଦ ବର୍ଜ୍ଜିନ ସ୍ୱରରେ କିଛି କହୁଥିଲେ ଯାହାକୁ ସଜ୍ଜନ ନ ବୁଝି ପାଇ ଉତ୍ତର ଦେଲା—'ମୁଁ ତୁମର ପୁଅ ପରି, ମୁଁ ସେବା କଲେ ତୁମେ କାହିଁକି ସଙ୍କୋଚ ଅନୁଭବ କରୁଛ ?

ଦେଠେଇ ପୁଣି ଅଗଣା ଦଗରେ ହାତ ଉଠାଇବାକୁ ଲାଗିଲା, ସଜ୍ଜନ ଗୃକରକୁ ଡାକିବା ପାଇଁ ବାହାରକୁ ଯାଇ ଶୀଘ୍ର ଚଉତରା ବାଟେ ଚାଲିଗଲା । ଛୁଆମାନେ ଅଗଣାରେ ପାଟି କରୁଥିଲେ ।

ଯେତେବେଳେ ସଜ୍ଜନ ଗୋଟିଏ ଗୃକର ସହିତ ଷ୍ଟୋର୍ ନେଇ ଫେରିଲା ସେତେବେଳେ ଦେଠେଇ ଖଟ ଉପରେ ବସି ଦୁଇ ହାତରେ ନିଜ ମୁଣ୍ଡ ଏବଂ ଓଠ ଧରି ମୁହଁ ବନ୍ଦ କରିବାକୁ ଚେଷ୍ଟା କରୁଥିଲେ । ସଜ୍ଜନ ଖୁବ୍ ଜୋରରେ ମାଲିଶ କଲା, ନିଜର ଏବଂ ଗୃକରର ମଫଲରକୁ ଷ୍ଟୋପରେ ଗରମ କରି ସେକିଲା । ଦେଠେଇ ଅନେକ କଷ୍ଟରେ 'ଦୁଧ' ଉଚ୍ଚାରଣ କଲା । ସଜ୍ଜନର ଦେଠେଇ ଦୁଧ ପିଇବାକୁ ଇଚ୍ଛା କରୁଛନ୍ତି ଶୀଘ୍ର ଗୃକରକୁ ଦୋକାନରୁ ସେରେ ଦୁଧ ଆଣିବାକୁ ପଠାଇଲା । ଦେଠେଇ କାନରୁ ପଇସା ଫିଟାଇ ଫିଟାଇ ରହିଗଲା ।

ଦେଠେଇ କିଛିସମୟ ପର୍ଯ୍ୟନ୍ତ ତାକୁ ଦେଖି ପୁଣି ଭଙ୍ଗା ସ୍ୱରରେ ଧୀର ଭାବରେ କହିଲେ—'କନ୍ଦୋମଲର ନାତି ! ପୁଣି ନିଶ୍ୱାସ ନେଇ କହିଲେ'—ସେମାନଙ୍କ ମଧ୍ୟରେ ନନ୍ଦର ବାପା ଥିଲା ଏହା କହିକରି ସେ କ୍ଳାନ୍ତ ହୋଇ-ପଡ଼ିଲେ । ତା'ର କନା ଓ ସିନ୍ଦୂରରେ ଭଙ୍ଗ ହୋଇଥିବା ଚେଲରେ ଜୁଡ଼ୁବୁଡ଼ୁ ଚେହେରା ସଜ୍ଜନର ମନରେ ଗୋଟିଏ ବିଚିତ୍ର କଲ୍ପନା ଆଣୁଥିଲା । ତାର ମନେ ହେଉଥିଲା ଯେପରି ସେ କୌଣସି ଆଦିବାସୀଙ୍କ ପୁରୋହିତାଣୀକୁ ଦେଖୁଛି ।

ଦେଠେଇ ଉଠି ଅଗଣା ଆଡ଼କୁ ଆଗୋଇଲେ ସଜ୍ଜନ ତାଙ୍କୁ ଧରି ଧରି ଚାଲିବାକୁ ଲାଗିଲା । ଦେଠେଇ ଦୁଇଥର ମନା ମଧ୍ୟ କଲେ କିନ୍ତୁ ସଜ୍ଜନ ତା' ସଙ୍ଗରେ ତାକୁ ଧରି ଧରି ଗଲା । ଚଉତରା ଉପରେ ଛୁଆମାନଙ୍କୁ ଦେଠେଇ କାନରେ ପୁରାଇ ବସିଗଲେ । ପୁଣି ସଜ୍ଜନକୁ ଗୃହିଁ ନିଜ କାନରୁ ପଇସା ଫିଟାଇ ଦେଠେଇ କହିଲେ—'ଦୁଧ ମଗେଇ ଦିଅ' ।

'ଦୁଧ ମଗେଇଛି ।' ସଜ୍ଜନ କହିଲା ।

'ଏମାନଙ୍କ ପାଇଁ ମଗେଇ ଦିଅ ।'

ଶ୍ରୀକର ଫେରିବା ପର୍ଯ୍ୟନ୍ତ ସଜ୍ଜନ ଚୁପ୍‌ଚାପ ଦେଠେଇଙ୍କୁ ଚାହିଁ ରହିବାକୁ ଲାଗିଲା—ଯାହାକୁ ସମସ୍ତେ ଖରାପ କୁହନ୍ତି, ଯିଏ ସବୁବେଳେ ଗାଳି ଆଉ ଅଭିଶାପ ଦିଏ, ପ୍ରତ୍ୟେକଙ୍କୁ ଘୃଣାକରେ,—ସେଇ ଦେଠେଇ ଏହି ବଲେଇ ଛୁଆଁ ପାଇଁ କେତେ ଅସ୍ଥିର ହେଉଛି । ସେହି ଛୁଆମାନଙ୍କ ସ୍ନେହ କଥା ଭାବି ତାର ଅସହ୍ୟ ହେଉଛି । ସଜ୍ଜନ ଚନ୍ଦ୍ରକାନ୍ତ ପଥର ମଧ୍ୟ ତରଳି ପାରେ, ମଣିଷ ମାନଙ୍କରେ ଏତେ ମମତା କେଉଁଠି ଲୁଚି ରହିଥାଏ କେଜାଣି—ଆଉ ଏହି ଗୁଣର ଅଧିକାରୀ ହୋଇ ମଧ୍ୟ ମଣିଷ ନିଜର ସ୍ୱରୂପକୁ ଘୃଣା, କ୍ରୂରତା ଏବଂ ହିଂସା ର ଜାଲ କାହିଁକି ବୁଣେ—ଏହା ସଜ୍ଜନ ବୁଝି ପାରିଲା ନାହିଁ । ଦେଠେଇଙ୍କୁ ସେ ନୂଆ ରୂପରେ ଚିହ୍ନିଲା ।

ଛୁଆଗୁଡ଼ିକ ଦେଠେଇ କୋଳରେ ପଶି ଶୋଇବା ପାଇଁ ଜଣେ ଅନ୍ୟ-ଜଣଙ୍କ ସହିତ କଳିଆ କରୁଥିଲେ, ଦୁଇଜଣଙ୍କୁ ଖୁସିରେ ଜାଗା ମିଳିଗଲା । ଜଣେ ଦେଠେଇଙ୍କ ହାତ ଦେଇ କାନ୍ଧ ଉପରେ ଚଢ଼ି ଆଖି ବୁଜିବାର ଚେଷ୍ଟା କରୁଥିଲା । ଦେଠେଇଙ୍କ ଦେହ ସ୍ନେହରେ ତା ଉପରେ ଝୁଙ୍କି ପଡ଼ିଥିଲା । କାଗଜ ପେନ୍‌ସିଲ ପାଇଁ ସଜ୍ଜନର ମନ ଛଟପଟ ହେବାକୁ ଲାଗିଲା । ଏଇ ବାଜେ ମେକ୍‌ଅପ୍‌ରେ ଦେଠେଇ ଯେତିକି ଭୟଙ୍କର ଦେଖା ଯାଉଥିଲା । ଛୁଆମାନଙ୍କ ସହିତ ସେତିକି କରୁଣାମୟୀ ଦେଖା ଯାଉଥିଲା ।

ଶ୍ରୀକର ଦୁଧ ନେଇ ଆସିଲା ଦେଠେଇ ଛୁଆଙ୍କୁ କାନରେ ପୁରାଇ ଉଠିଲା ଦୁଧ ପାତ୍ରରେ ଦୁଧ ଢ଼ାଳି ସଜ୍ଜନକୁ କହିଲେ—'ବର୍ତ୍ତମାନ ତୁମେ ଯାଅ ।'

'ଦେଠେଇ ତୁମେ ନିଜେ ଦୁଧ ଟିକେ ପିଇଦିଅ ?'

'ମରି ମଧ୍ୟ ମୁଁ ବଞ୍ଚିଗଲି' ଦେଠେଇ କହିଲା ତୁମେ ଏବେ ଯାଅ ।

ସେତେବେଳେ ଛୁଆମାନେ ବ୍ୟାକୁଳ ହୋଇ ପାତ୍ରରୁ ଦୁଧ ଚାଟୁଥିଲେ । ସଜ୍ଜନ ଏବଂ ତାର ଶ୍ରୀକର ଯିବାପରେ ଦେଠେଇ ଘରର କବାଟ ବନ୍ଦକଲେ—ଏବଂ ବଡ଼ ବ୍ୟାକୁଳତାର ସହିତ ଘରର କୋଠରୀରେ ପଶି ଚୋରମାନଙ୍କ ଦ୍ୱାରା ଓଲଟା ହୋଇଥିବା କାନ୍ଥ ସିନ୍ଦୁକ ଇତ୍ୟାଦି ଦେଖିବାକୁ ଲାଗିଲା । ଠାକୁରଙ୍କ ଖଟୁଲି ପଛରେ ଥିବା ତାଙ୍କର ସଞ୍ଚିତ ଅର୍ଥ ସୁରକ୍ଷିତ ଥିଲା । ଦେଠେଇଙ୍କ ଦେହରେ ପ୍ରାଣ ପଶିଲା, ନିଜର ଶର୍ବଦ ବ୍ୟାଙ୍କ ଜାଞ୍ଚ କରିବା ପରେ ଅନ୍ୟ ଛୋଟ ଛୋଟ ବ୍ୟାଙ୍କ ଦେଖିଲେ ଚକ୍ଷି ଉଠେଇ ତାର ତଳେ ଥିବା ହାଣ୍ଡି ଦେଖି ଜାଣିଲେ ତାହା

ଖାଲି । ମାଟି ତଳେ ଟଙ୍କା ପାଇବା ଆଶାରେ ଚୋରମାନେ ଘରର ସବୁ କୋଣ ଖୋଳି ପକାଇଥିଲେ । ଦେଠେଇ ଲଣ୍ଠନ ଜଳାଇ କୋଣରେ ବନ୍ଧା ହୋଇଥିବା ଟଙ୍କାର ପୁଟୁଳି ମଧ୍ୟ ଖୋଜିଲେ କିନ୍ତୁ ପାଇଲେ ନାହିଁ । ଦେଠେଇ ଅନେକ ସମୟ ପର୍ଯ୍ୟନ୍ତ ମୁଣ୍ଡରେ ହାତଦେଇ ଚିନ୍ତା କରିବାକୁ ଲାଗିଲେ, ସକାଳେ ଛୁଆମାନଙ୍କ ପେଟ ପୂରି ଗିବାରୁ ସେମାନେ ତାଙ୍କ ଦେହ ଘୃଷିବାକୁ ଲାଗିଲେ ।

ଚୋରମାନଙ୍କ ଦ୍ୱାରା ଘଣ୍ଟା ଯାଇଥିବା ଘରର ଜିନିଷ ସଜାଡ଼ିଲେ, ସେପେଇ ଘରେ ପଡ଼ିଥିବା, ତରକାରି, ମସଲାର ଡାଲା ଏବଂ କଣା ଡ଼ବାକୁ ତ ଇ ସଜାଇ ରଖିଲେ, ଘର ଝାଡ଼ିଲେ ଗାଧୋଇଲେ ଏବଂ ଠାକୁର ପୂଜା କରି, ସଜ୍ଜନ ଆଣିଥିବା ଫୁଲ ଚଢ଼ାଇଲେ ପୁଣି କବାଟରେ ତାଲା ଲଗାଇ ସଜ୍ଜନ ଘରକୁ ଗଲେ । ଗୃହର ମାନେ ଘର ଏବଂ ଛାତ ଧୋଇ ସଫା କରି ଦେଇଥିଲେ । ପ୍ରତ୍ୟେକ ଜିନିଷ ସୁନ୍ଦର ଭାବରେ ସଜା ଯାଇଥିଲା । ଫୁଲ ତୋଡ଼ା ଗୁଡ଼ିକ ଘରର ସୌନ୍ଦର୍ଯ୍ୟ ବଢ଼ାଉଥିଲେ । ସଜ୍ଜନ ବସି ଦେଠେଇଙ୍କ ପ୍ରେତ କରୁଥିଲା । କବାଟ ପାଖରେ ଦେଠେଇଙ୍କୁ ଠିଆ ହେବାର ଦେଖି ଇତସ୍ତତ ହୋଇ ଉଠି ପଡ଼ିଲା—'ଆସ ଦେଠେଇ ।''

ଦେଠେଇଙ୍କ ଚେହେରା ଚିନ୍ତାରେ ଶୁଷ୍କ ଦେଖା ଯାଉଥିଲା—କହିଲେ 'ମୋର ଜୀବନ ହଜାରୁ ଛଅ ଶହ ଟଙ୍କା ବଦମାସମାନେ ଚୋରି କରି ନେଇଛନ୍ତି । ଆରେ, ଏମାନଙ୍କ ପ୍ରତ୍ୟେକଙ୍କ ଲୋମମୂଳରେ ମୋର ଗୋଟିଏ ଗୋଟିଏ ପଇସା କୁଷ୍ଠ ହୋଇ ବାହାରିବ, ତୁମେ ଦେଖିବ ବୁହ ।'

ସଜ୍ଜନ ବୁଝିଗଲା ଯେ ଚୋର ଦେଠେଇଙ୍କ ସବୁ ପୁଞ୍ଜି ନେଇ ଯାଇଛନ୍ତି । ସେ ଦେଠେଇଙ୍କୁ ସାନ୍ତ୍ୱନା ଦେଲା । ଗୋଟିଏ ଗୋଟିଏ କରି ଦେଠେଇ ତାକୁ ପଚାରିଲେ—'ତୁ ବାହା ହୋଇଛୁ କନ୍ୟାମନ ନାହିଁ ?

'ନା ହୋଇ ନାହିଁ' ।

'ମୋ ପାଖକୁ ଗୋକୁଳଦ୍ୱାରର ଜଣେ ଆସୁଛନ୍ତି । ତାଙ୍କର ଗୋଟିଏ ଝିଅ ଅଛି । ଖୁବ ସୁନ୍ଦର, ସବୁ କାମ ଦାମରେ ହୁସିଆର, ଷଷ୍ଠ ପର୍ଯ୍ୟନ୍ତ ଇଂରାଜୀ ମଧ୍ୟ ପଢ଼ିଛି ତୁ କହିଲେ କଥା ପକାଇବ ।'

ସଜ୍ଜନ ହସି କହିଲା—'ନାହିଁ ଦେଠେଇ ମୁଁ ବର୍ତ୍ତମାନ ବାହା ହେବ ନାହିଁ ।'

'ବର୍ତ୍ତମାନ ବାହା ହେବୁ ନାହିଁ ତ, କଣ ବୁଢ଼ା ହେଲେ ବାହା ହେବୁ ? ବଦ୍‌ମାସ କନ୍ତୋମଲ ତ ଧର୍ମ –ଭ୍ରଷ୍ଟ ଥିଲା –ତୁ ମଧ୍ୟ ସେହି ପରି ହେବ ।'

ସଜ୍ଜନ ହସି କହିଲା—'ନାହିଁ ଦେଠେଇ ମୁଁ ସେ ସବୁଠାରୁ ବହୁ ଦୂରରେ ।'

ସେମିତି କିଏ କରି ଦେଉଛି, ମହାରାଜର ହୋଟେଲରେ ଖାଉଛୁ ?'

'ମହାରାଜ ବନଉଛି ଦେଠେଇ କେଭେ କେଭେ ମୁଁ ନିଜେ କରି ଦିଏ । 'ଦେଠେଇ ସାମନାରେ ନିଜ ପବିତ୍ରତାର ବିଷୟ ବର୍ଣ୍ଣନା କରୁ କରୁ ସଜ୍ଜନ ମନକୁ ମନ ଖୁବ୍ ଜୋରରେ ହସୁଥିଲା । ଦେଠେଇ କହିଲେ—'ତୁ ଯଦି ରାମଚନ୍ଦ୍ର ଝିଅକୁ ବାହାହେବାକୁ ରାଜି ହେବୁ ତା ହେଲେ ମୁଁ—(ତା ପାଖରେ ଲାଗିଯାଇ) ଶହେ ଭରି ସୁନାଦେବି ତୋ ବୋହୂକୁ, ଦେଖ, ଯିଏ ହେଉନା କାହିଁକି ମୋତେ ଯେତେ ଲୁଟ୍ କରିବାକୁ ଚେଷ୍ଟା କଲେ ମଧ୍ୟ ଭଗବାନ ଶ୍ରୀ କୃଷ୍ଣ ମୋତେ ରକ୍ଷା କରିବେ । ବଦ୍‌ମାସମାନଙ୍କର ବଂଶ ଧ୍ୱଂସ କରିଦେବ । କିନ୍ତୁ ତୁ ବାହା ହୋଇଯା କନ୍ତେମଲର ନାତି, ଶହେ ଭରି.........'

ସଜ୍ଜନ ଦେଠେଇ ଦେଠେଇ ମୁଣ୍ଡ ଟେକି ଅନାଇଲେ—କବାଟ ପାଖରେ କନ୍ୟା ଠିଆ ହୋଇଛି । ଏପରି ପରିସ୍ଥିତିରେ ଦେଠେଇଙ୍କ ଉପସ୍ଥିତିରେ ସଜ୍ଜନ ଘାବରେଇ ଗଲା । ଦେଠେଇ ତାକୁ ଗୋଡ଼ଠାରୁ ମୁଣ୍ଡଯାଏ ନିରିପ କରିବାକୁ ଲାଗିଲେ । କନ୍ୟା ଆସି ପାଖରେ ବସିଗଲା । ଦେଠେଇ ପଚାରିଲେ—'ଏ କିଏ' ?

ସଜ୍ଜନ ଅସୁବିଧାରେ ପଡ଼ିଲା । ସେ ଜାଣେ ଯେ କୁମାରି ଏବଂ ଅନ୍ୟ ଜାତିର କହିଲେ ଦେଠେଇ କନ୍ୟା ଏବଂ ସଜ୍ଜନ ଦୁଇ ଜଣଙ୍କୁ ସନ୍ଦେହ କରିବେ, ସଜ୍ଜନର ମନ ଅସ୍ଥିର—ହେବାକୁ ଲାଗିଲା ବ୍ୟସ୍ତ ହୋଇ କହି ପକାଇଲା—'ଇଏ ଆମ ଜାତିର ଦେଠେଇ ।"

'କାହାର ଝିଅ'

'ତାର ମଣିଷ ବାହାରେ ଅଛି ।'

'ତାହେଲେ ତାର ଶାଶୁ ଘର ଏଇଠି ? କାହା ଘର ?'

କନ୍ୟା କିଛି ଉତ୍ତର ଦେଉ ଏହା ସଜ୍ଜନ ଚାହୁଁ ନଥିଲା ସେଥିପାଇଁ ସେ ମିଛ ଉପରେ ମିଛ କହି ଯାଉଥିଲା । ଦେଠେଇର ପ୍ରଶ୍ନ ଏବଂ କନ୍ୟାର ଉପସ୍ଥିତିରେ

ଏତେ ଘାବରେଇ ଯାଇଥିଲା ଯେ ସେ କୌଣସି ବିଷୟ ଚିନ୍ତା ମଧ୍ୟ କରି ପାରୁନଥିଲା । ହଠାତ୍ କନ୍ୟାର ଚୁଡ଼ି ବନ୍ଧନ ହାତକୁ ଦେଖି ସଜ୍ଜନ କହିଲା— 'ଇଏ ଏଠା ସ୍କୁଲରେ ପଢ଼ାଉଛନ୍ତି । ତାଙ୍କ ଶାଶୁ ଘରର ସମସ୍ତେ ମରି ଯାଇଛନ୍ତି ।'

'ତୋ ପାଖରେ କଣ କରିବାକୁ ଆସିଛୁ ? 'କାମ ଶିଖିବାକୁ ଆସିଛୁ ମା ।' କନ୍ୟା ଭାବିଲା ଯେ ଦେଠେଇ ସଜ୍ଜନର ନିକଟ ସମ୍ପର୍କୀୟ ଆତ୍ମୀୟା ସେ ସଜ୍ଜନର ଘାବରେଇବାକୁ ଉପଭୋଗ କରୁକରୁ ଦେଠେଇଙ୍କୁ ଉତ୍ତର ଦେଇ ସନ୍ତୁଷ୍ଟ କରିବାକୁ ଲାଗିଲା ।

ଦେଠେଇ ହଠାତ୍ ସଜ୍ଜନକୁ ପଚାରିଲା—'ତା ହେଲେ୍ କଣ ସ୍ୱା ସାଙ୍ଗରେ ବିଧବା ବିବାହ କରିବୁ ?'

ନାହିଁ ନାହିଁ ଦେଠେଇ, ମୁଁ ତ ତାର ମାଷ୍ଟର ଦଶ ଟଙ୍କା ଦରମାରେ ତାକୁ ପଢ଼ାଉଛି ।'

ଦେଠେଇ କିଛି କହିଲେ ନାହିଁ । ଚୁପଚାପ ବସି ଚିନ୍ତା କରିବାକୁ ଲାଗିଲେ ପୁଣି ଉଠୁ ଉଠୁ କହିଲା—'ତୁ ଭାବନେ କନ୍ଦୋମଲର ନାଉ,—ମୁଁ ତୋତେ ଯୋଉ କଥା କହିଲି ଆଉ କାହାକୁ କହିବୁ ନାହିଁ ·····

'ନାହିଁ ଦେଠେଇ, ତୁମେ କହିଲେ ମୁଁ ପୁଲିସକୁ ରିପୋର୍ଟ ଦେବ ।'

ଦେଠେଇ କହିଲେ—'ପୁଲିସ ଫୁଲିସ ଦରକାର ନାହିଁ ମୁଁ ନିଜେ ସେଇ ବଦ୍‌ମାସକୁ ଠିକ୍ କରି ଦେବି । କହୁ କହୁ ଦେଠେଇ ବାହାରକୁ ଚାଲିଗଲା । ସେ ଯିବା ପରେ କନ୍ୟା ପଚାରିଲା—'ଏ କିଏ ?'

ସଜ୍ଜନ ହସି କହିଲା—'ଭାରତ ମାତା'

କନ୍ୟା ଏ କଥାରୁ କିଛି ବୁଝି ପାରିଲା ନାହିଁ । ଏହିପରି ଅସୁନ୍ଦର ବୁଢ଼ିକୁ ଭାରତ ମାତା କହୁଥିବାର କଳ୍ପନା ଦେଖି ତାକୁ ହସ ମାଡ଼ିଲା । ପଚାରିଲା—' ଆପଣ ତାଙ୍କୁ ମୋ ବିଷୟରେ ଏତେ ମିଛ କାହିଁ—କହିଲେ ?

ସଜ୍ଜନ ପ୍ରଶ୍ନ ଶୁଣି ହଡ଼ ବଡ଼େଇ ଗଲା, ନିଜକୁ ସମ୍ଭାଳି ନେଇ ଉତ୍ତର ଦେଲା—'ଯଦି ସତ କହିଥାନ୍ତି ତାହାଲେ ତ ତୁମରୁ—ଆପଣଙ୍କ ବିଷୟରେ ତାଙ୍କ ଧାରଣା ଖରାପ ହୋଇଥାନ୍ତା ।'

ସଜ୍ଜନର 'ଆପଣ' କହିବା ଉତ୍ତରେ କନ୍ୟା ସୁବୁଦ୍ଧି ଦେଲା । ସଜ୍ଜନ ମଧ୍ୟ ନିଜର ନୂତନ ଶପଥ ଏବଂ କନ୍ୟାର ସହଜ ଆକର୍ଷଣ ଉଭୟ ମଧ୍ୟରେ ଦୋଦୁଲ୍ୟମାନ ହେଲା । ତାଙ୍କୁ ଗମ୍ଭୀର ଓ ଚଞ୍ଚଳତାଶୀଳ ସ୍ୱଭାବରେ ସେ ଅନାଇ ଥିଲା । କନ୍ୟା ଭାବୁଥିଲା, ସଜ୍ଜନ କଣ କାଲିର କଥାରେ ରାଗିଯାଇଛି । ତାର ରାଗ ଦେଖି କନ୍ୟା କହିଲା—ମୁଁ କର୍ଣ୍ଣେଲ ଭାଇଙ୍କ ପାଖରୁ ଆସିଛି ।'

ସଜ୍ଜନ ମୁଣ୍ଡ ଟେକି ତାକୁ ଚାହିଁଲା—କନ୍ୟା କହିବାକୁ ଆରମ୍ଭ କଲା—'ଆଜି ସକାଳୁ ସକାଳୁ ମଥୁରାର ଜଣେ ଭଦ୍ରବ୍ୟକ୍ତି (ସେ ଲୁଚା ହସି) କର୍ଣ୍ଣେଲ ଭାଇଙ୍କ ସାଙ୍ଗରେ ମୋର ଘର ଖୋଜିବାକୁ ଆସିଥିଲେ ।'

ସଜ୍ଜନର ମନ ସେତେବେଳକୁ ପରିବର୍ତ୍ତିତ ହୋଇ ଯାଇଥିଲା । ସେ କୌଣସି ପ୍ରକାରେ ଖଟେଇ ପଚାରିଲା—'ସେ କପଟୀ ଭ୍ରମର—ଆପଣଙ୍କ ଘରର ଠିକଣା ଜାଣିଲେ ?......

'କାଲି ଖବର କାଗଜରେ ଖବର ପଢ଼ି ସେ ବୁଲି ଆସିଛନ୍ତି । ପ୍ରଥମେ ମେ ଘରକୁ ଗଲେ । ସେଠାରେ ଗାଳି ଖାଇଲେ । କେହି ଜଣେ କର୍ଣ୍ଣେଲ ଭାଇଙ୍କର ଠିକଣା ଜଣାଇ ତାଙ୍କୁ ସଙ୍ଗରେ ନେଇ ମୋ ପାଖକୁ ଆସିଲେ । ଏହା କହି କନ୍ୟା ତା ବ୍ୟାଗରୁ ଭଙ୍ଗା ହୋଇ ଥିବା କାଗଜ ବାହାର କଲା । ତାକୁ ବଢ଼େଇ ଦେଉ ଦେଉ ସେ କହିଲା—'ଏଇଟା ଭାଉଜଙ୍କର ଚିଠି ଯାହା କି ସେ ତାଙ୍କ ବାନ୍ଧବୀ ପାଖକୁ ଲେଖିଥିଲେ ।

ସଜ୍ଜନ ଚିଠି ପଢ଼ିବାକୁ ଲାଗିଲା । ସ୍ତ୍ରୀଲୋକର ଏହି ହାତଲେଖା ଚିଠି ବଡ଼ କରୁଣା ପୂର୍ଣ୍ଣ ଥିଲା । 'ମୁଁ ରାକ୍ଷସଙ୍କ ପାଲରେ ପଡ଼ି ଯାଇଛି । ତ୍ରିଭୁବନ (ଦିଅର)ଙ୍କ ସ୍ତ୍ରୀ ତ୍ରୁଟିପୂର୍ଣ୍ଣ । ସେ ମୋତେ ବିଧବା ବିବାହ କରିବାକୁ ରାଜି ହୋଇ ଯାଇଥିଲେ । ମା ବିବାହ ଦେବା ପାଇଁ ରାଜି ନ ଥିଲେ, ମାତ୍ର ମୋ ସହିତ ତ୍ରିଭୁବନଙ୍କୁ ବାନ୍ଧି, ସେ ତାଙ୍କୁ ନିଜ ଅଧୀନରେ ବଶୀଭୂତ କରି ନେବାକୁ ଚାହୁଁଥିଲେ ଭଉଣୀ ଏହି ଘରର ଲୀଳା କଥା ଆଉ କୁହ ନା, କାହାକୁ କାହାକୁ ଖରାପ କରିବ । ତ୍ରିଭୁବନ ଅତି ନିଷ୍କପଟ । ସେ ନିଜ ସତ୍ୟରେ ସରଳତାର ସହିତ ସମସ୍ତଙ୍କ ସାମନାରେ ମୋତେ ବିବାହ କରିବାର ସିଦ୍ଧାନ୍ତ ପ୍ରକାଶ କରି ଦେଲେ । ଦାଦା, ଖୁଡ଼ୀ ମୋତେ ମାରିବାକୁ ଆସିଲେ । ମୋତେ ମାଡ଼ରୁ ବଞ୍ଚାଇବାକୁ ଯାଇ ମାଙ୍କ ଉପରେ ମଧ୍ୟ ମାଡ଼ ବସିଗଲା । ଆଉ ଦାଦା, ସେହି ରାକ୍ଷସଟାକୁ ଦାଦା କହିବ କଣ—ମାରି—ପିଟି ଜୋର—ଜବରଦସ୍ତି ମୋର ସବୁ କିଛି ଲୁଟି ନେଲା । 'ନହି' ମୋ ମରିବା ପାଇଁ

ମଧ୍ୟ ଜାଗା ନାହିଁ, ଘରେ ମଧ୍ୟ ମୋର କିଛି କହିବାର ସାହାସ ନାହିଁ, ଭଗବାନ ମଧ୍ୟ ମିଛ ହୋଇ ଯାଇଛନ୍ତି । ହିଁଭୁବନ ବାପା ସାମ୍ନାରେ କିଛି କରିବା ପାଇଁ ଅକ୍ଷମ, କନ୍ୟା ମୋର ପକ୍ଷ ନେଉଛନ୍ତି କିନ୍ତୁ ସେ ବିଚରା ମଧ୍ୟ କଣ କରିବ । ତୁମ ପାଖକୁ ମନର କଥା ଲେଖି ମନ ହାଲୁକା କରୁଛି । କିନ୍ତୁ ତୁମେ ମୋତେ ଉତ୍ତର ଦେବ ନାହିଁ ଯଦି ଏହି ରାକ୍ଷସଙ୍କ ହାତରେ ଚିଠି ପଡ଼ିଯିବ ତାହେଲେ ମୋର ମେ.ର ଜୀବା ମଧ୍ୟ ଦୁଃସହ ହୋଇ ପଡ଼ିବ ।

ଚିଠିଟିକୁ ସଜ୍ଜନ ଦୁଇଥର ପଢ଼ିଲା, ତିନ ଥର ପଢ଼ିଲା, ତା ଉପରେ ଦୃଷ୍ଟି ରଖିଲା । କନ୍ୟା କହିଲା—'କର୍ନେଲ ଭାଇ କହିଲେ ଯେ ଏଥିରେ ବାପା ଶିଘ୍ର କେଶରେ ପଡ଼ିଯିବେ । ସେ ମୋତେ ମୋଜିଷ୍ଟ୍ରେଟ ପାଖକୁ ନେଇ ଯାଉଥିଲେ । ମୁଁ କହିଲି ପ୍ରଥମେ ଆପଣଙ୍କୁ ପଚାରି ଆସେ ।'

ସଜ୍ଜନ ଜନକଟିକୁ ଟିକେ ସମ୍ଭାଳି ନେଇ ଆଖି ତଳକୁ କରି କହିଲା—କର୍ନେଲ ଠିକ୍ ପରାମର୍ଶ ଦେଇଛି । ଆପଣ ମୋଜିଷ୍ଟ୍ରେଟଙ୍କ ପାଖକୁ ଚାଲିଯାନ୍ତୁ—ଆଉ ସେ ଲୋକେ କିଏ ଯେକି ଆପଣଙ୍କ ସହିତ ଦେଖା କରିବାକୁ ଆସିଛନ୍ତି ?'

ସଜ୍ଜନର ଏଭଳି ନୂଆ ଢ଼ଙ୍ଗ ବୁଝିବାକୁ ଚେଷ୍ଟା କରି ତା ଆଡ଼କୁ ଅନାଇଁ କନ୍ୟା ଦାନ୍ତରେ ନଖ କାମୁଡ଼ି କହିଲା—'ଖୁଡ଼ିଙ୍କ ଦାଦିଶାଙ୍କର ସ୍ୱାମୀ, ସେହି ବାବାଜୀକୁ ପାଉଛିସି, ଛମାସ ହେଲା ଉଠି ବସି ପାରୁ ନାହାଁନ୍ତି । ସେ ଭଦ୍ରବ୍ୟକ୍ତି ମୋତେ ପୂରା ସାହାଯ୍ୟ କରିବେ ବୋଲି କହୁଛନ୍ତି, ଏଠାକାର କୋର୍ଟରୁ ଅର୍ଡର ନେଇ ସେ ମଥୁରାରେ ତାଙ୍କ ସ୍ତ୍ରୀଙ୍କ ଷ୍ଟେଟ୍‌ମେଣ୍ଟ ମଧ୍ୟ ଦେଇ ପାରିବେ—ଯଦି ମୁଁ - ମାନେ ଆମ୍ଭେମାନେ ଚାହୁଁ ।'

ସଜ୍ଜନ କହିଲା—'ତାହେଲେ ଆପଣ କଣ ଚାହୁଁଛନ୍ତି ?'

'ଆପଣ ଯେମିତି କହିବେ ।'

ପକେଟରୁ ସିଗାରେଟ୍ ବାହାର କରୁ କରୁ ମୁହଁରେ ଦାର୍ଶନିକ ଭାବ ଫୁଟାଇ ତାକୁ ଥରେ ଚାହିଁ ସଜ୍ଜନ କହିଲା—'ମୁଁ କାହିଁକି, ଇଏତ ଆପଣଙ୍କ ମାମଲା ।'

'କେବଳ ମୋର ? ମଣିପ ସମାଜର ନୁହେଁ ?'

'ନାହିଁ ମୋର କଥା ନଥାଉ ଏଇଟା ଆପଣ ଓ ଆପଣଙ୍କ ବାପାଙ୍କର ମାମଲା ।

କନ୍ୟା ଗମ୍ଭିର ହୋଇ କହିଲା—'ସେମାନଙ୍କ ଇଜ୍ଜତ ପାଇଁ ମୋର କିଛି ଯାଏ ଆସେ ନାହିଁ । ମୁଁ ସେମାନଙ୍କ ଉପରେ ସ୍ୱାମୀଙ୍କ ପ୍ରତିଶୋଧ ନେବାର ପ୍ରତିଜ୍ଞା କରିଛି । ସେ କାଲିଠାରୁ ମୋ ପଛରେ ଲୋକ ଲଗାଇଛନ୍ତି । ମୋ ନାକ କାଟିବା ପାଇଁ ଗୁଣ୍ଡା ଲଗାଇଛନ୍ତି ।'

ଆଖି ପିଛୁଳାକେ ସଜ୍ଜନର କନ୍ୟା ପ୍ରତି ସବୁ ବିରୋଧ ଭାବ ଚାଲିଗଲା । ଘାବରାଇ ଯାଇ କହିଲା—'ସେମାନେ ତୁମର କୌଣସି ଅନିଷ୍ଟ କରି ନାହାନ୍ତି ତ ?'

କନ୍ୟା କହିଲା—'କାଲି ରାତି ପ୍ରାୟ ଆଠଟା ବେଳେ ବାପା ମୋ ଘରର କବାଟ ପାଖରେ ଆସି ଖୁବ୍ ଜୋରରେ ପାଟି କଲେ । ସମସ୍ତଙ୍କ ସାମନାରେ ମୋ ନାଁରେ ଆଜେ ବାଜେ କଥା କହିଲେ । ନାକ କାଟି ଦେବାର ଧମକ ଦେଲେ । ମୁଁ କବାଟ ଫିଟାଇଲି ନାହିଁ ।'

'ତାପରେ ?'

'ତାପରେ ସେ ଚାଲିଗଲେ । ତାଙ୍କ ଦ୍ୱାରା ଲଗାଯାଇଥିବା ଗୁଣ୍ଡା ମୋର କବାଟ ଖଟ୍ ଖଟ୍ କରିବାକୁ ଲଗିଲେ ଏବଂ ଇଟା ପଥର ପକାଇ ମୁଁ ରହୁଥିବା ମଜଦୂର ବସ୍ତିର ଲୋକଙ୍କୁ ବୋଧ ହୁଏ ବହୁତ ପଇସା ଦିଆହୋଇଥିଲା ଏବଂ ହୁଏତ ଶାଲଗ୍ରାମର ପ୍ରଭାବରେ ସେମାନେ ମୋ ବିରୋଧ କରୁଛନ୍ତି । ଆଜି ସକାଳେ ସେହି ବସ୍ତିରେ ରହୁଥିବା ଦୁଇ ତିନି ଜଣ ବସ୍ତିବାଲା ସେଠକାର ଛୁଆମାନେ ମଧ୍ୟ ମୋ ଘର ପାଖରେ ଯିବା—ଆସିବା ସମୟରେ ମୋତେ ହଟହଟା କରୁଛନ୍ତି । ସେତ କର୍ନେଲ ଭାଇ ଆସିବାଠାରୁ··· ବର୍ତ୍ତମାନ ପର୍ଯ୍ୟନ୍ତ ସେଠାକୁ ଯାଇନ 'କନ୍ୟାର ଆଖିରେ ଲୁହ ଆସିଗଲା । ତା ଉପରେ ସଜ୍ଜନର କରୁଣା ହେଲା । ଉତ୍ତେଜିତ ହୋଇ କହିଲା—'ତୁମେ ସେଠାରେ ରହୁଛ କାହିଁକି ? ଏତେ ଥର କହିଲଣି ତୁମେ ଭାବୁଛ ମୁଁ ମଧ୍ୟ ଅନ୍ୟମାନଙ୍କ ଭଳି ବଦମାସ ଆଉ ଲମ୍ପଟ ?'

ମୁଁ କେବେ ଏହା ଭାବୁ ନାହିଁ ।

ତା' ହେଲେ ଆଉ କ'ଣ ଭାବୁଛ ? ମୋର ଏତେ ବଡ଼ ଘର ଅଛି । ମୁଁ ତ ସବୁ ଘରେ ରହୁ ନାହିଁ । ତୁମେ ଚାହିଁଲେ ଗୋଟିଏ ଭାଗ ଅଲଗା

କରିଦେବ । ମୁଁ ପାଚେରି ବନେଇ ଦେବ । ତୁମର ଆଉ କ'ଣ ଦରକାର ।
କନ୍ୟା ଏଥର ଜୋରରେ ହସି ଉଠିଲା କହିଲା—ଆପଣଙ୍କ ସ୍ୱଗ ମଧ୍ୟ କେତେ ବେଇମାନ କିନ୍ତୁ ମୋତେ ଖରାପ ଲାଗୁ ନାହିଁ ।

କନ୍ୟାର ଏହିପରି ହସ ଏବଂ ଜବାବ ଦେବା ଦେଖି ହଠାତ୍ ସେ ଚୁପ୍ ହୋଇଗଲା । ଚିନ୍ତା କରିବାକୁ ଲାଗିଲା । ନା ସେ କାଲି ରାତିର ପ୍ରତିଜ୍ଞାକୁ ସଂପୂର୍ଣ୍ଣ ରୂପେ କାର୍ଯ୍ୟରେ ପରିଣତ କରି ପାରୁଥିଲା, ନା କିଛିଦିନ ହେଲା ତାର ବ୍ୟବହାରକୁ ଠିକ୍ ଭାବରେ ରଖି ପାରୁଥିଲା । ଏଭଳି ଏକ ଅନିଶ୍ଚିତ ପରିସ୍ଥିତି ମଧ୍ୟରେ ତାର ମାନସିକ ଅବସ୍ଥା ଗତି କରୁଥିଲା । ଏହିପରି ଭାବରେ କନ୍ୟାକୁ ଚାହିଁବାକୁ ଲାଗିଲା—ସେ ଯେପରି ପୂର୍ବର ନିକଟତା ଏବଂ ଦୂରତାର ସମ୍ମିଳିତ ଆଭାସ ପାଉଥିଲା ।

କନ୍ୟା ପୁଣି କହିଲା—ଏତେ ବଡ଼ ଘର ଭଡ଼ା ନେବାର ସାହସ ମୋର ନାହିଁ । ଆଉ ଧରନ୍ତୁ ମୋ ମନ ରଖିବା ପାଇଁ ଆପଣ ତାହା ଦଶ ଟଙ୍କାରେ ଭଡ଼ା ଦେବେ ତାହା ଅସୁନ୍ଦର ହେବ ।

ସଜ୍ଜନ କହିଲା—ମୁଁ ମୋର ଭଡ଼ା ଘରରୁ କୌଣସି ଘର ଆପଣଙ୍କୁ ଦେଉ ନାହିଁ, ବର୍ତ୍ତମାନ କୌଣସି ଘର ଖାଲି ମଧ୍ୟ ନାହିଁ । ମୁଁ ତ କେବଳ ଗୋଟିଏ ବନ୍ଧୁ ହିସାବରେ ଆପଣଙ୍କ ଅସୁବିଧାରେ ସାହାଯ୍ୟ କରିବାକୁ ଚାହୁଁଛି । ଆପଣଙ୍କଠାରୁ କିଛି ନବାକୁ ଚାହିଁନି ତ । ଅତି କମରେ ଆପଣ ଏହି ଅସୁବିଧା ଏବଂ କଷ୍ଟରୁ ବଞ୍ଚିଯିବେ । ଆଉ ମନେକରନ୍ତୁ ଏହି ଚଟି ପାଇଁ ଆପଣ କିଛି କରିବେ ସେହି ସମୟରେ ଆପଣ ସେଠାରେ ପ୍ରତିମୁହୂର୍ତ୍ତରେ ଅସୁବିଧା ଭୋଗ କରୁଥିବେ ।

ଆପଣ ମୋତେ—'ତୁମେ' କହୁଥିଲେ ପୁଣି 'ଆପଣ' କାହିଁକି ।

ଏଇଥିପାଇଁ ଯେ, ମୁଁ ଦେବତା ହୋଇଯାଇଛି । ସଜ୍ଜନ ଅଟ୍ଟହାସ କରି କହିଲା । କନ୍ୟା ଶୁଣି ଚୁପ୍ ରହିଲା ଏବଂ ମୁଣ୍ଡ ତଳକୁ କରି ନେଲା ।

କିଛି ସମୟ ନୀରବତା ଖେଳିଗଲା, ହଠାତ୍ ଗଳା ଖଙ୍କାରି କନ୍ୟା କହିଲା—'ଗୋଟିଏ କଥା କହିବି' ଏବଂ ତା'ର ଆଖି ସଜ୍ଜନର ଆଖି ସହିତ ମିଶିଗଲା । ସଜ୍ଜନ ତାକୁ ଚାହିଁ କହିଲା—କ'ଣ ।

କନ୍ୟା ମୁଣ୍ଡ ନୁଆଁଇଲା, ମୁହଁ ଅଧିକ ଗମ୍ଭୀର ଏବଂ ଲାଲ ପଡ଼ିଗଲା ପୁଣି ମୁଣ୍ଡ ଟେକି କହିଲା—ମୁଁ ଯେତେବେଳେ ଆପଣଙ୍କ ସହିତ ଦେଖା କଲି

ସେତେବେଳେ ମୋ ମନରେ କେବଳ ଭଲ କାମରେ ଭଲ ଲୋକର ସାହାଯ୍ୟ ପାଇବା ଛଡ଼ା ଆଉ କୌଣସି ଭାବନା ନ ଥିଲା । କିନ୍ତୁ ଆପଣ ଯେତେ ଶୀଘ୍ର ମିଳାମିଶା ଯେଉଁ ରଙ୍ଗରେ ରଙ୍ଗାଇଛନ୍ତି ତାହା—ତାହା—ମୋତେ ଖରାପ ନ ଲାଗିଲେ ଶୁଦ୍ଧା ଚମକାଇ ଦେଲା···ବୁଝନ୍ତୁ, ମୋତେ ମୋ କଥା କହିବାକୁ ଦିଅନ୍ତୁ—ମୁଁ ଆପଣଙ୍କୁ ଖରାପ ଲୋକ ଭାବୁ ନାହିଁ କିନ୍ତୁ ପରିଷ୍କାର କୁହନ୍ତୁ । ମୁଁ ବୁଝୁଛି ଯେ ଆପଣ ମୋତେ ବନ୍ଧୁ ଠାରୁ ଅଧିକ ଆଉ କିଛି ଭାବୁଛନ୍ତି । ବା ବନାଇବାକୁ ଚାହୁଁଛନ୍ତି । ସେଇ କଥାର ସଠିକ୍ କାରଣ ମୁଁ ବୁଝିପାରୁ ନାହିଁ ।

ସଜ୍ଜନ ଉପରେ କନ୍ୟାର ଏହି ସ୍ପଷ୍ଟବାଦ ତାର ଗାଢ଼ ପ୍ରଭାବ ପକାଇଲା । କହିଲା—'ଯେପରି ତୁମେ ସତ୍ୟ ଉପରେ ଜୋର ଦେଉଛ, ସେହିପରି ମୁଁ ଯଦି କହିବି ? ତୁମେ କ'ଣ ମୋତେ ତୁମକୁ ବନ୍ଧୁ ଠାରୁ ଅଧିକ କିଛି ଭାବିବା ନିମନ୍ତେ ସାହାଯ୍ୟ କରିବ ?

କନ୍ୟାର ଆଖି ଲଜ୍ଜ୍ୟାରେ ଝାଉଁଳି ପଡ଼ିଲା, ସଜ୍ଜନ କହିବାକୁ ଲାଗିଲା—'ମୁଁ ନିଜ ବିଷୟରେ ଏତିକି କହିବି ଯଦିଓ ମୁଁ ସମ୍ପୂର୍ଣ୍ଣ ରୂପେ ସଚ୍ଚରିତ୍ର ନୁହେଁ, ତେବେ ବି ଦୁଶ୍ଚରିତ୍ର ମଧ୍ୟ ନୁହେଁ, ଆଉ ତୁମକୁ ଯାହା କିଛି ଭାବୁଛି ବା କାଲି ପର୍ଯ୍ୟନ୍ତ ଯାହା ମାନ ଆସିଥିଲା ସେଇଥିପାଇଁ ଏତେଶୀଘ୍ର କିଛି କହିବା ଭୁଲହେବ । ଅନ୍ୟ କେଉଁଥିରେ ଯଦି ମୋର କିଛି ଭୁଲ ହୋଇଥାଏ ତାହେଲେ କ୍ଷମା କରିବ, ମୋତେ ଏହା ପ୍ରମାଣ କରିବାକୁ ଦିଅ ଯେ, ମୁଁ ସ୍ତ୍ରୀମାନଙ୍କୁ ସମ୍ମାନ ଦିଏ ।

ଆପଣଙ୍କ ଉପରେ ମୋ ମନରେ ତିଳେହେଲେ ଅବିଶ୍ୱାସ ନାହିଁ । ବର୍ତ୍ତମାନ ଠାରୁ ଆଉ ମଧ୍ୟ ରହିବ ନାହିଁ । ଆପଣଙ୍କୁ ପାଇ ମୁଁ ନିଜ ଜୀବନରେ ଗୋଟିଏ ନୂଆ ବିଶ୍ୱାସ ପାଇଛି ।

ସଜ୍ଜନର ମାନସିକ ଆଦର୍ଶ ପୁଣି ଦୋହଲିବାକୁ ଲାଗିଲା । କନ୍ୟାକୁ ସେ ଏତେ ତୀକ୍ଷ୍ଣ ମର୍ମଭେଦୀ ଦୃଷ୍ଟିରେ ଚାହିଁଲା ଯେ ସେ ମଧ୍ୟ ସ୍ଥିର ରହିପାରିଲା ନାହିଁ । ନିଜକୁ ସମ୍ଭାଳି ନେଇ କହିଲା—'ଏହି ଚିଠି ପାଇ କ'ଣ କରିବାକୁ ପଡ଼ିବ ।'

ସଜ୍ଜନ ନିଜକୁ ସମ୍ଭାଳୁ ସମ୍ଭାଳୁ ଉତ୍ତର ଦେଲା—'ଚାଲ, କର୍ଣ୍ଣେଲ ପାଖକୁ ଯିବା, ମୋର ଇଚ୍ଛା ଆଜି ହିଁ ଏହି ବିଷୟରେ କିଛି ନା କିଛି କରାଯିବା ଉଚିତ୍, ଉଠ୍ ଉଠ୍ ସେ ପୁଣି କହିଲା—'କିନ୍ତୁ ବର୍ତ୍ତମାନଠାରୁ ତୁମେ କେଉଁଠି ରହିବ ? ମୁଁ ତୁମକୁ ସେଠାରେ ରହିବାକୁ ଦେବ ନାହିଁ ।

କନ୍ୟା ଚୁପ୍‌ଚାପ ଗୋଡ଼ ଆଙ୍ଗୁଠି କୁଣ୍ଡାଉଥିଲା । କହିଲା— ଆଜି କେଉଁଠାରେ ହେଲେ ରହିଯିବି— ଆପଣଙ୍କ ଘରେ ନ ହେଲେ କର୍ନେଲ ସ୍ୱାଇଙ୍କ ଘରେ । କାଲି କୌଣସି ବ୍ୟବସ୍ଥା କରିବାକୁ ପଡ଼ିବ—ଆପଣଙ୍କୁ ହିଁ କରିବାକୁ ପଡ଼ିବ ।’

ସଜ୍ଜନ କିଛି ଚିନ୍ତା କରି କହିଲା—‘ମୋର କେଶରିବାଗରେ ଥିବା ଘରେ ଆଉ ଗୋଟିଏ ମହଲା ତିଆରି କରିବାକୁ ଅନୁମତି ମିଳିଛି । ନକ୍ସା ମଧ୍ୟ ପାସ୍ ହୋଇଯାଇଛି । ମୁଁ ତୁମ ପାଇଁ ଗୋଟିଏ ଫ୍ଲାଟ ଯେତେ ଶୀଘ୍ର ପାରିବି ତିଆରି କରି ଦେବି ସେତେଦିନ ପର୍ଯ୍ୟନ୍ତ··· ....’ କନ୍ୟା ତାକୁ ଚାହିଁଥିଲା, ସଜ୍ଜନ ତାକୁ ଚାହିଁ ନିଜ କଥା ସମ୍ପୂର୍ଣ୍ଣ କରିଲା—‘ସେତେଦିନ ପର୍ଯ୍ୟନ୍ତ ତୁମେ ମୋ ଘରେ ରୁହ । କର୍ନେଲ ପାଖରେ ରହିଲେ ମୋର କିଛି ଆପତ୍ତି ନାହିଁ । କିନ୍ତୁ ତାର ସ୍ତ୍ରୀ ପୁରୁଣା କାଳିଆ, ମୁଁ ଚାହୁଁନାହିଁ କେହି ତୁମକୁ ଖରାପ ଭାବୁ ।’

‘କିନ୍ତୁ ଆପଣଙ୍କର ଏଠି ଜାଗାରେ ରହିଲେ ଦୁନିଆ’ କଣ ମୋତେ ଛାଡ଼ି ଦେବ ? କାଲି ମୋର ବାପା ମଧ୍ୟ ମୋତେ ଖରାପ କହିଲେ । ଛାଡ଼ନ୍ତୁ ମୁଁ ଆପଣଙ୍କ କଥା ମାନିବି ।

ପ୍ରସନ୍ନତାର ଆବେଗରେ ସଜ୍ଜନ ପୁଣି ନିଜକୁ ଭୁଲିଗଲା, ତାର ମନେ ହେଲା କନ୍ୟାକୁ ନିଜ ବାହୁ ପାଶରେ ଆବଦ୍ଧ କରିନେବ । ସେତେବେଳେ ସଜ୍ଜନର କାନରେ ବୃଦ୍ଧଙ୍କର କଥା ପ୍ରତିଧ୍ୱନିତ ହେବାକୁ ଲାଗିଲା—ମନକୁ ସମ୍ଭାଳି ରଖିବ ଆନନ୍ଦ ।’

# ଷୋହଳ

ଆଜିଠାରୁ ସଜ୍ଜନର ଦୈନିକ କାର୍ଯ୍ୟକ୍ରମରେ ନୂଆ ପରିବର୍ତ୍ତନ ଦେଖାଗଲା । କର୍ଣ୍ଣେଲଙ୍କ ଘରୁ ଜଳଯୋଗ ପରେ ପରେ ଭଡ଼ା ନେଇଥିବା ରୁମକୁ ଆସିବା ପରିବର୍ତ୍ତେ ସିଧା ନିଜ ଘରକୁ ଚାଲିଗଲା । ଠାକୁର ଦେବତାଙ୍କ ପ୍ରତି ଘରର ମାଲିକଙ୍କର ହଠାତ୍ ଆଗ୍ରହ ବଢ଼ି ଯିବାର ଗତକାଲି ଦ୍ୱିପ୍ରହର ଠାରୁ ଘରର ଚାକର ବାକର ସମସ୍ତେ ପରମ ଭାଗବତ ଭକ୍ତ ହୋଇଯାଇଛନ୍ତି । ଇତି ମଧ୍ୟରେ ଦୁଆଁଙ୍କ ଘର ନବ ବିବାହିତା କନ୍ୟା ପରି ଝକ୍ ଝକ୍ କରୁଛି । ସବୁ ଝାଡ଼ ଲଣ୍ଠନ ପୋଛି ପୋଛି ହୋଇ ସଫା ସୁତୁରା ଦିଶୁଛି । ଚନ୍ଦ୍ରୁଆକୁ ଟାଣିରଖି ଥିବା ରୂପାର କାଠି ମଧ୍ୟ ଝକମକ୍ ହେଉଛି । ଠାକୁରଙ୍କ ମଣ୍ଡପ ଦୁଇ ପାର୍ଶ୍ୱରେ ଥିବା ଶଙ୍ଖ ମର୍ମର ପଥର ତିଆରି ଦୁଇଟି ସ୍ତ୍ରୀ ମୂର୍ତ୍ତି ଗତକାଲି ଠାରୁ ଆଜି ଆହୁରି ବେଶୀ ସଫା ସୁତୁରା ଦେଖାଯାଉଥିଲେ । ମାଳି ମଧ୍ୟ ନିଜ କାମ ଦେଖାଇବାରେ କୌଣସି ପ୍ରକାରେ ତ୍ରୁଟି କରିନି । ଗେଣ୍ଡୁ ଫୁଲର ବଡ଼ ବଡ଼ ଫୁଲ ମାଳାରେ ସାରା ମଣ୍ଡପର ଶୋଭା ବୃଦ୍ଧି ପାଉଛି । ଆଜି ପୂଜାରୀ ମଧ୍ୟ ସବୁଦିନ ଠାରୁ ଶୀଘ୍ର ଆସି ଠାକୁରଙ୍କ ମାଜଣା ଓ ବେଶ ବଢ଼ାଇ ଭକ୍ତି ଗଦ୍ ଗଦ୍ ସ୍ୱରରେ ଓଁ ଜୟଜଗଦୀଶ ହରେ ...ଭକ୍ତ ଜନଙ୍କ ସଙ୍କଟ ପ୍ରଭୁ ଦୂରକରେ...... ଗୀତ ବୋଲି ଆରତୀ କରୁଥିବା ବେଳେ ପୂଜାରୀଙ୍କ ମୂର୍ତ୍ତିମାନ ସଙ୍କଟ ରୂପେ ସଜ୍ଜନ ଆସି ସେଠାରେ ଠିଆ ହୋଇଗଲା । ପୂଜାରୀଙ୍କ ହାତଗୋଡ଼ ଥରି ଉଠିଲା ଯେନତେନ ଆରତୀ ସମାପ୍ତ ହେଲା, ସଜ୍ଜନ ଚୁପ୍‌ଚାପ ଠିଆ ହୋଇ ଦେଖିଲା । ତାର ମନେହେଲା ମା'ଙ୍କ ଆତ୍ମା ସେହି ଯାଗାରେ ଏବେ ବି ବିଦ୍ୟମାନ ରହିଛନ୍ତି ଏବଂ ଏଠି ସଜ୍ଜନର ଉପସ୍ଥିତିରେ ଯେପରି ସେ ଅପାର ତୃପ୍ତି ଲାଭ କରିଛନ୍ତି । ପୂଜାରୀ ଖଣେଇ ଖଣେଇ ବିକୃତ ଉଚ୍ଚାରଣରେ ସ୍ତୋତ୍ର ଗାଉଥିବାର ଶୁଣି ସଜ୍ଜନକୁ ହସ ମାଡ଼ିଲା । ମନେ ମନେ ଭାବିଲା ଧର୍ମ ସର୍ବସ୍ୱ ଏଇ ଦଲାଲୀ କରୁଥିବା ବ୍ରାହ୍ମଣ ବା କିପରି ଦୃଢ଼ ନିଷ୍ଠା ପାଇ ପାରିବ ?

ନିଜର ପ୍ରକୃତ ନିଷ୍ଠା ସମ୍ପର୍କରେ ଚିନ୍ତାକରି ସେ ଯେତେବେଳେ ମନ୍ଦିରରୁ ବାହାରିଲା ଚାକର ତା' ହାତକୁ ବାବୁ ସାଲଗ୍ରାମ ଜୟସ୍ୱାଲ ଏବଂ ଲାଲଜନକ ଶରଣଙ୍କ ନାଁ ଲେଖିଥିବା ଚିରକୁଟ୍ ବଢ଼ାଇଦେଲା, ସଜ୍ଜନ ପଚାରିଲା..." କେତେବେଳୁ ବସିଛନ୍ତି ?"

"ପ୍ରାୟ ୨୦ ମିନିଟ୍ ହେବ ଆଜ୍ଞା ।"

"ଚାହା ଦେଇଛ ।"

ଆଜ୍ଞା !

ସଜ୍ଜନ ପୁଣି ପଚାରିଲ… "ସେମାନଙ୍କୁ କ'ଣ କହିଛ ?"

"ଆଜ୍ଞା ହଜୁର ପୂଜାଘ ଘରେ ଅଛନ୍ତି ।"

"ଠିକ୍ ଅଛି ।" ସଜ୍ଜନ ସନ୍ତୁଷ୍ଟ ହୋଇ ଲୁଗା ବଦଳାଇବାକୁ ଗଲା । ଡ୍ରଇଁ ରୁମ୍‌ରେ ପହଞ୍ଚିବା ମାତ୍ରେ ଏ ଦୁଇଜଣ ଆଗନ୍ତୁକ ସଜ୍ଜନକୁ ଗଦ୍ ଗଦ୍ ହୋଇ ସ୍ୱାଗତ ଜଣାଇଲେ । ସାଲଗ୍ରାମ ବାବୁଙ୍କ ସହିତ ତା'ର ପରିଚୟ ନଥିଲା, ରାଜାସାହେବଙ୍କ ପଢ଼ୋଶୀ ଏବଂ କନ୍ନୋମଲଙ୍କ ନାତି ହିସାବରେ ଲାଲ ଜାନକୀ ଶରଣଙ୍କ ସହିତ ମୌଖିକ ପରିଚୟ ଅବଶ୍ୟ ଥିଲା ।

ସଜ୍ଜନ ହାତଯୋଡ଼ି ବିନମ୍ରତା ପ୍ରକାଶ କରି କହିଲା "ଆପଣମାନଙ୍କୁ ବହୁତ ସମୟ ଅପେକ୍ଷା କରିବାକୁ ପଡ଼ିଲା ।"

ଦୁର୍ବଳଆ, ସିଠୁଆ ଦେହ ପାତଳା ଓଠ ଉପରକୁ ପତଳା ଜଣ ଓ ପତଳା ନାକ, ଅଧାବୟସୀ ଲାଲଜାନକୀ ଶରଣ କହିଲେ, "ଆରେ ଇଏ ଗୋଟେ କଥା, ଆମେ ତ ଆଶ୍ଚର୍ଯ୍ୟ ହୋଇଗଲୁ ତୁମର ଏତେ ସମସ୍ତ ପୂଜା ଅର୍ଚ୍ଚନା ଦେଖି ।"

ମୋଟା ଜଣଥିବା ଧଳା ଟୋପୀଧାରୀ ସାଲଗ୍ରାମ ବାବୁ ଚଷମା ଭିତରୁ ଭଲକରି ଦେଖିନେଇ ହେଁ ହେଁ ହୋଇ କହିଲେ –ଆରେ ବାବୁ ଖାନଦାନୀ ଘରର ପିଲା, ଜଣେ ଏତେବଡ଼ ନାମଜାଦା କଳାକାର… ଦେଶଜୋଡ଼ା ଯାହାଙ୍କର ଖ୍ୟାତି ଏବଂ ଏହି କଳା ତ ମା ସରସ୍ୱତୀଙ୍କ କୃପାରୁ ମିଳିଥାଏ…… ସେ ପୂଜା କରିବେ ନ ତ ଆଉ କିଏ…… ହେଁ ହେଁ…… ।"

ରୁପା ବେଣ୍ଟଥିବା ଛଡ଼ି ଉପରେ ଦୁଇହାତ ରଖି ସିଧା ହୋଇ ବସି ଲାଲ ଜାନକୀ ଶରଣ କହିଲେ—ଆମ ଜଣାଶୁଣାରେ ତୁମେ ଏତେ ଖ୍ୟାତି କମାଇଲ ଇଏ କଣ କମ୍ ବଡ କଥା, ଏବେ ଆମ ସାମ୍ନାରେ ଘରଭଡ଼ା ନେଇ କାମ ଆରମ୍ଭ କରିଛ, ଯେବେ ରାଜାସାହେବ ଜଣେ ଆସି ତୁମ କଥା ମତେ କହି ଯାଇଥିଲେ । ମଝିରେ ମଝିରେ ପ୍ରାୟ ତୁମକଥା ପଚାରନ୍ତି ।"

"ସେ ମୋର ଗୁରୁଜନ ସ୍ୱାମୀସ୍ତ, ତେଣୁ ମୋ ଭଲମନ୍ଦ ପ୍ରତି ତାଙ୍କର ସର୍ବଦା ନଜର ।" ସଜ୍ଜନ ନିଜ ଚେହେରା ଏବଂ ସ୍ୱରରେ କୃତଜ୍ଞତା ପ୍ରକଟ କରାଇ କହିଲା ।

ସାଲୀଗ୍ରାମ ବାବୁ କହିଲେ—"ସ୍ୱାଙ୍କର ଦୁଇ ବନ୍ଧୁଙ୍କ ସହିତ ପରିଚୟ ଅଛି— ହେଲେ ସ୍ୱା'ଙ୍କ ନାଁ ଖାଲି ଶୁଣି ଥିଲି; ଆଜି ପୁରା ପରିଚୟ ହେବାର ସୁଯୋଗ ମିଳିଲା— ସଜ୍ଜନ ବାବୁତ ପୁରାପୁରି ସଜ୍ଜନତାର ପ୍ରତିମୂର୍ତ୍ତି" । ହେଁ ହେଁ ।

"ଆପଣଙ୍କ ନିକଟକୁ ଏକ ପ୍ରସ୍ତାବ ନେଇ ଆମେ ଆସିଛୁ । ସାଲିଗ୍ରାମ ବାବୁ ଏଇ ପ୍ରସ୍ତାବରେ ରାଜି ଅଛନ୍ତି । ରାଜମାତା ତ ସଦା ସର୍ବଦା ତା' ବାଟରେ ଚାଲିଛି । ଲୋକଙ୍କ ପାଇଁ, ଲୋକ ଶିକ୍ଷା ନିମନ୍ତେ କିଛି ମୌଳିକ କାମ ହେବା ନିତ୍ୟାନ୍ତ ଦରକାର । ଏ ବିଷୟରେ ସାଲିଗ୍ରାମ ବାବୁ ରାଜି ହୋଇଗଲେ । ଏବେ ଆପଣଙ୍କ ମତାମତ ଏ ବିଷୟରେ ଜାଣିଲେ ଆମେ ଆଗେଇବୁ, ଶୁକ୍ଲବାବୁ ଓ କର୍ଣ୍ଣେଲ ସାହେବ ତ ମୋର ପୁରୁଣା ବନ୍ଧୁ । ଆପଣଙ୍କ ମତାମତ ମିଳିଲେ ଭବିଷ୍ୟତ କାର୍ଯ୍ୟକ୍ରମ କରାଯିବ ।'

ଲାଲ ଜାନକୀ ଶରଣଙ୍କ ଏପରି ସିଧା ସଳଖ କଥାରେ ସଜ୍ଜନ ବୁଝି ପାରିଲା ଯେ ଉଡ଼ାଜାହାଜରେ ପକା ଯାଇଥିବା କାଗଜର ପ୍ରଭାବ ଠିକ୍ ଜାଗାରେ ପଡ଼ିଛି, ମନେ ମନେ ସତର୍କ ହୋଇ ବାହାରକୁ କିଛି ନ ଜାଣିବା ଢଙ୍ଗରେ ସେ କହିଲା – " ଯେ କୌଣସି ଭଲ କାମରେ ମୁଁ ଆପଣଙ୍କୁ ସହଯୋଗ କରିବା ନିମନ୍ତେ ପ୍ରସ୍ତୁତ ଅଛି, ବର୍ତ୍ତମାନ ଆପଣଙ୍କ ଉଦ୍ଦେଶ୍ୟ କଣ ବ୍ୟକ୍ତ କରନ୍ତୁ ।"

"ମୁଁ ତ ଖାଲି ରାଜନୀତିରେ ଯୋକ । କେବଳ ଗୋଟିଏ କଥା... ମାନେ ଭାଷଣ ଦେବା ଓ ସଭା ସମିତି ଆୟୋଜନ କରିବା ଏତିକି ମାତ୍ର ମୋତେ ଜଣା । ବର୍ତ୍ତମାନ ଆପଣ କହନ୍ତୁ ତ ଏପରି କୌଣସି କାର୍ଯ୍ୟକ୍ରମ ନେବାକୁ ହେବ ଯେଉଁଥିରେ କି ଜନସାଧାରଣଙ୍କ ଜ୍ଞାନ ବଢ଼ିବ ।" ସାଲିଗ୍ରାମ ବାବୁ କହିଲେ ।

"ଭାଇ ତୁମେ ତ ବହୁତ ପଢ଼ିଛ, ଜାଣିଛ ଓ ଦେଖିଛ । ଏପରି କିଛି ଉପାୟ ବାହାର କର ଯେଉଁଥିରେ କି ଜନସାଧାରଣଙ୍କ ଉପରେ ପ୍ରଭାବ ପଡ଼ିବ । ମୁଁ ତ ସାଲିଗ୍ରାମ ବାବୁଙ୍କୁ କହୁଥିଲି ଯେ ନିସାତଗଞ୍ଜରେ ଯେଉଁ ହରେକ ରକମ କଣ୍ଢେଇର ପ୍ରଦର୍ଶନୀ ହୋଇଥିଲା ତ ର କିଛି ଅଂଶ ସାଇ ସାଇରେ ଦେଖାଯାଉ··· ··· ।'

ସେଥିରେ କିଛି ନିର୍ଦ୍ଦିଷ୍ଟ ଲାଭ ହେବନି ! ବହୁ ଲୋକ ତାକୁ ଦେଖିଛନ୍ତି, ତା ଛଡ଼ା ଆପଣମାନଙ୍କ ବୟସୀ କୌଣସି ଲୋକତ ଖେଳନା ନେଇ ଖେଳିବନି, ହେଁ ହେଁ ମୁଁ ଜାନକୀ ଶରଣ ବାବୁଙ୍କୁ କହୁଥିଲି ଆପଣଙ୍କ ଚିତ୍ରଗୁଡ଼ିକର ପ୍ରଦର୍ଶନୀ କରାଗଲେ ବହୁତ ଲାଭ ହେବ । ନୂଆ ଚିତ୍ରକଳା ସମ୍ପର୍କରେ ସାଧାରଣ ଲୋକଙ୍କର କିଛି ଧାରଣା ହେବ । "ସାଲିଗ୍ରାମ ବାବୁଙ୍କ କଥା ଠିକ୍ ଯାଗାରେ ଠିକ୍ ରୂପେ ଯାଇ ପହଞ୍ଚିଲା । ସଜ୍ଜନକୁ ନିଜ ଚିତ୍ରର ପ୍ରଦର୍ଶନୀ କରିବା କଥା ବହୁତ ଭଲ ଲାଗିଲା ।"

ସାଲିଗ୍ରାମ ବାବୁ କହିବାକୁ ଲାଗିଲେ—"ଆମେ ଭି. ଆଇ. ପି.ଙ୍କ ଦ୍ୱାରା ଏହି ପ୍ରଦର୍ଶନୀ ର ଉଦ୍‌ଘାଟନ କରିବୁ । ଏ ମାସ ୨୦ ତାରିଖ ସୁଦ୍ଧା ଯେପରି ପ୍ରଦର୍ଶନୀ ଆରମ୍ଭ ହୋଇଯିବ । ତେବେ ସବୁ କାମ ଠିକ୍‌ରେ ହୋଇଯିବ... । ତା' ହେଲେ ସଜ୍ଜନ ବାବୁ ଆପଣ ଅନ୍ୟାନ୍ୟ କଳାକାରଙ୍କ ଚିତ୍ର ସବୁ ଯୋଗାଡ଼ କରିବେ, ଯଦି ଏଥିରେ କିଛି

ଅସୁବିଧା ଅନୁଭବ କରନ୍ତି ତା' ହେଲେ ଖାଲି ଆପଣଙ୍କ ଚିତ୍ର ଦେଇଦେବେ··· ··· ଗାନ୍ଧିଜୀଙ୍କ ଛବି ଗୋଟିଏ ଦୁଇଟି ଟାଙ୍ଗି ଦେଲେ ଚଳିବ, ... ...''

ସଜ୍ଜନ ହସି ହସି କହିଲା— ''ଆଚ୍ଛା ଏ ଚିତ୍ର ପ୍ରଦର୍ଶନୀ ମଧ୍ୟ ଆପଣଙ୍କର ନିର୍ବାଚନ ପ୍ରଚାରର ଏକ କୌଶଳ ବୋଲି ଜଣାପଡ଼ୁଛି ।''

ଲାଲ ଜାନକୀ ଶରଣ ସାମାନ୍ୟ ହସିଲେ, ସାଲିଗ୍ରାମ ବାବୁ ଗମ୍ଭୀର ହୋଇ କହିଲେ— ''ହଁ ନିର୍ବାଚନ ପାଇଁ ଏଥିରେ କିଛି ଲାଭ ହେବ, ତେବେ ଆମର ଅସଲ ଉଦ୍ଦେଶ୍ୟ ହେଲା ଜନସାଧାରଣଙ୍କ ଉପକାର କରିବା ।''

ସଜ୍ଜନ କେବଳ ନିଜର ନୁହେଁ, ସହରର ଅନ୍ୟ ବିଖ୍ୟାତ କଳାକାରଙ୍କ ପ୍ରସିଦ୍ଧ ଚିତ୍ରର ଏକ ଚିତ୍ରକଳା ପ୍ରଦର୍ଶନୀ ଆୟୋଜନ କରିବା ନିମନ୍ତେ ରାଜି ହୋଇଗଲା । ଯିବୁ ଯିବୁ ସାଲିଗ୍ରାମ ବାବୁ ଆଉଥରେ ଏହି ପ୍ରଦର୍ଶନୀ ପାଇଁ ଯେଉଁ ପ୍ରଚାର ପତ୍ର ଛପାଯିବ ସେଥିରେ ସଜ୍ଜନ ଓ ତା'ର ଦୁଇ ବନ୍ଧୁଙ୍କ ନାଁ ଛପାଇବାର ଅନୁମତି ମାଗିନେଲା ।

ସଜ୍ଜନ ଜାଣି ନଥିଲା ଯେ ମହୀପାଳ ନିଜ ନାଁ ଛପାଇବା ପାଇଁ ଅନୁମତି ଦେବାରେ ଆପତ୍ତି କରିବ । କନ୍ୟା ସହିତ ବର୍ତ୍ତମାନ ତା'ର ଦେଖା କରିବା ନିହାତି ଜରୁରି ମନେହେଲା, ଶୀଘ୍ର କନ୍ୟା ସହିତ ଦେଖାକରି ବୁଝାଇ ଦେବା ଉଚିତ୍ ଯେ ଏଇ ଚିତ୍ର ପ୍ରଦର୍ଶନୀ ନିମନ୍ତେ ସେ ଯେପରି ତାକୁ ଭୁଲ ନ ବୁଝେ । ଯଦି ସାଲିଗ୍ରାମ ବାବୁ ତାକୁ ତାଙ୍କ ଫାନ୍ଦରେ ପକାଇବାକୁ ଆସିଥାନ୍ତି ତେବେ ସେ ଓଲଟି ସାଲଗ୍ରାମଙ୍କୁ ତା' ନିଜ ଫାନ୍ଦରେ ପକାଇ ଦେବ । ଫେରିବା ବାଟରେ ଲାଲଜାନକୀ ଶରଣ ସଜ୍ଜନର ଗାଡ଼ିରେ ଫେରିଲେ ।

ସଜ୍ଜନ ନିଜ ରୁମ୍‌କୁ ଆସିଲା । ଗତକାଲିର ଶୁଖିଲା ଫୁଲ ଦେଖି ହଠାତ୍ ତା'ର ଜେଠେଇଙ୍କ କଥା ମନେ ପଡ଼ିଗଲା, ଡାଲି ବିଗୁଣି ହାତ ଗୋଡ଼ ବନ୍ଧା ଅବସ୍ଥାରେ ଅଶେଷ କଷ୍ଟ ଭୋଗିଛି, କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର କଥା ନିଜର ସ୍ୱେଚ୍ଛା ଯାଇଥିବା ଧନ ଏବଂ କଷ୍ଟ ଅପେକ୍ଷା ବଳେଇ ଛୁଆ ହୋଇକଲ ଥିବା କଥା ଆଗ ଦେଠେଇଙ୍କ ଚିନ୍ତାର ବସ୍ତୁ ଥିଲା । ଜେଠେଇଙ୍କ ପ୍ରକୃତିରେ ଏପରି ପରସ୍ପର ବିରୋଧୀଭାବ ସଜ୍ଜନ ମନରେ ବିସ୍ମୟ ସୃଷ୍ଟି କରିଥିଲା । ଏପରି ଘୃଣ୍ୟ ମହିଳା ଯଦି ଅପାର କରୁଣାମୟୀ ହୋଇପାରନ୍ତି ତେବେ ତା' ନିଜର ବ୍ୟଭିଚାରିଣ ମନ କାହିଁକି ବା ସଦାଚାରିଣୀ ନ ହୋଇ ପାରିବ ? ···ତତ୍‌ସତ୍ତ୍ୱେ ବାରମ୍ବାର କାହିଁକି ସେ କନ୍ୟା କଥା ଭାବୁଛି ? ···କନ୍ୟାର ତା' ସମ୍ପର୍କରେ ଭଲ କିମ୍ବା ମନ୍ଦ ଧାରଣା ନେଇ ସେ ଏତେ ବ୍ୟସ୍ତ ହେଉଛି ବା କାହିଁକି ? ନିଜ ମନକୁ ସମସ୍ତ ପ୍ରକାର ଚିନ୍ତାରୁ ମୁକ୍ତକରି ସ୍ଥିର ଚିତ୍ତରେ ସେ ଜେଠେଇଙ୍କ ଚିତ୍ର ଆଙ୍କିଲା ।

ଏହି ସମୟରେ ମହାକବି ବୋର ହେଁ ହେଁ ହୋଇ ଧିରେ ଧିରେ ତା' ରୁମ୍‌ରେ ପଶିଲା । ବୋରକୁ ଦେଖିବା ମାତ୍ରେ ସଜ୍ଜନ ଭୟଙ୍କର ଚିଡ଼ିଉଠିଲା, କିନ୍ତୁ ମୁହଁରେ କିଛି ନକହି ଚୁପ୍‌ଚାପ୍ ନିଜ କାମ କରିବାରେ ଲାଗିଲା ।

ହସି ହସି ବରେହେଣ କହିଲା— "ସଜ୍ଜନ ଭାଇ ଯେ ଏ ସମୟରେ ନିଜ କଳାକୃତିରେ ବ୍ୟସ୍ତଥିବେ ଏକଥା ମୁଁ ଜାଣିଥିଲି, ··· ହେଁ ହେଁ କଣ ଆଙ୍କୁଛ ?"

ମନକୁ ଆସିଲା କହିଦେବ "ତୋ ମୁଣ୍ଡ," କିନ୍ତୁ କିଛି ନକହି ସଜ୍ଜନ ଶୀଘ୍ର ଶୀଘ୍ର ବ୍ରଶ ଚାଳନା କଲା । ବରେହେଣ ବାହାର କବାଟକୁ ଆଉଜି ବସି ପଡ଼ିଲା । "ବଡ଼ ବୋହୂର ଝରକାକୁ ବାରମ୍ବାର ଅନାଇଁ ଜୋରରେ ହସି ହ୍ୱାଡ଼୍ ସିଆଡ଼୍ ନାନା କଥା କହି ବରେହେଣ ପ୍ରାୟ ପାଇଁ ଚାଳିଶ ମିନିଟ କଟାଇ ଦେଲା । କେତେବେଳେ ବା ନିଜ ନୂଆ କବିତାରୁ ଦପଦ ବୋ'ଲି ଶୁଣାଉଥିଲା ।

କେତେଥର ସେଠାରୁ ବରେହେଣ୍‌ଙ୍କୁ ଚାଲିଯିବା ପାଇଁ ଇଙ୍ଗିତ କରି ମଧ୍ୟ ଯେତେବେଳେ ଅସଫଳ ହେଲା ସେତେବେଳେ ସଜ୍ଜନ ବାଧ୍ୟ ହୋଇ କହିଲା— "ବରେହେଣ୍ ମୁଁ ବର୍ତ୍ତମାନ ଏକଲା ରହିବାକୁ ଚାହୁଁଛି, ଆଉ କେତେବେଳେ ଆସିବ ।"

"ଆଉ କେତେବେଳେ ତ—ହି —ନିଶ୍ଚୟ ଆସିବି କିନ୍ତୁ କଥାକଣ କି ସଜ୍ଜନ ଭାଇ ଆପଣଙ୍କ ଏଠାକୁ ଆସିଲେ ମୋତେ ନୂଆ ପ୍ରେରଣା ମିଳୁଛି, ଏଠାରେ ମୁଁ ନୂଆ ସମ୍ପତ୍ତି, ନୂଆ ପ୍ରାଣ ତଥା ନୂଆ ଚେତନା ଲାଭ କରୁଛି । ମୁଁ ତୁମକୁ ମାନେ ଆପଣଙ୍କୁ କୌଣସି ପ୍ରକାର ଡିଷ୍ଟର୍ବ କରିବି ନାହିଁ । ବର୍ତ୍ତମାନଠାରୁ ଏକା ବେଲକେ ଚୁପ୍ ଚାପ୍ ହୋଇ ବସିବି ।"

ଅଳ୍ପ ସମୟ କିଛିବର ବରେହେଣ୍ ସତକୁ ସତ ଚୁପ୍‌ଚାପ୍ ବସି ବଡ଼ ବୋହୂର ଝରକା ଆଡ଼କୁ ଅନାଇଁ ରହିଲା ପୁଣି ଗୁଣ ଗୁଣ କରି ଗୀତ ବୋଲିବା ଆରମ୍ଭ କରିଦେଲା । ହଠାତ୍ ସଜ୍ଜନକୁ ପଚାରିଲା—"ଚାହା କରିବ ମୋର ମୁଡ୍ ଆସିଗଲା, "ସଜ୍ଜନ ହଁ କି ନାହିଁ ଉତ୍ତର ଦେବା ପୂର୍ବରୁ ଷ୍ଟୋଭ୍ ପାଖରେ ପହଞ୍ଚି ଷ୍ଟୋଭ ଜଳାଇ ପାଣି ବସାଇ ଦେଲା । ଟିକେ ପରେ ଦୀର୍ଘଶ୍ୱାସ ନେଇ ବରେହେଣ୍ କହିଲା— "ସଜ୍ଜନ ଭାଇ ଗାଲିବ ସତ କଥା ଲେଖିଛନ୍ତି ଯେ, ଇଶ୍‌କପର ଜୋର ନେହିଁ ହେ ୟେ ବୋ ଆତଶ ଗାଲିବ— କି ଲଗାଏ ନଲଗେ ଅଉର ବୁଝାଏ ନ ବନେ ।" ... ଆଃ, ସଜ୍ଜନ ଭାଇ ଆପଣଙ୍କୁ ନିୟମ କରି କହୁଛି .. "ହୃଦୟରେ ନିଆଁ ନ ଜଳିଲେ କୌଣସି ରଚନା ଅମର ହୋଇ ନ ପାରେ ।" ଏବେ ଆପଣ ଦେଖିବେ ବହୁତ ଶୀଘ୍ର ମୁଁ ମଧ୍ୟ ମୋର ଅମର ଗୀତ ଲେଖିପାରିବି ।"

ସଜ୍ଜନ ଚୁପ୍ ରହିଲା ··· ବରେନ୍ଦ୍ରେଶ୍ ପୁଣିଥରେ କବାଟ ପାଖକୁ ଚାଲିଆସି କବାଟରେ ଅଧେ ଆଉଜି ବୋହୂର ଝରକା ଆଡ଼କୁ ସନ୍ତୁଷ୍ଟ ଦୃଷ୍ଟିରେ ଅନାଇଁ ଗୁଣ୍ ଗୁଣ୍ ହୋଇ ଗାଇଲା...ବାଟ ଭୁଲ୍ଲାଗି ଡାକତେ ପ୍ୟାସ୍ରା...ଆଖି ଆ ହାର ଆଖିଆ ହାର ।”

ଚା ତିଆର ହୋଇ ପିଆ ସରିଥିଲା, ଇତି ମଧ୍ୟରେ ବରେନ୍ଦ୍ରେଶ୍ ସଜ୍ଜନର ସିଗାରେଟ୍ ପିଇ ସାରିଥିଲା । କେତେଥର ବିକଳ ହୋଇ ପଦେଅଧେ ଗୀତ ଗାଉଥିଲା, ଥରେ ବଡ଼ବୋହୂ ଝରକା ନିକଟରେ କାହାର ଶାଢ଼ୀ ଟିକେ ଦେଖାଯିବା ମାତ୍ରେ ମଜନୁ ପରି ଅନାଇଁ ଦେଖିଲା । କିନ୍ତୁ ସେ ଅନ୍ୟ କିଏ (ମାନେ ନନ୍ଦୋ) ବରେନ୍ଦ୍ରେଶ୍ ନିରାଶ ହୋଇ ଜୋର୍‌ରେ ବିରହ ଗୀତ ଗାଇଲା ।

ପାହାଚରେ ଚଢ଼ୁ ଚଢ଼ୁ ମହିପାଲ ବରେନ୍ଦ୍ରେଶ୍‌କୁ ଆଖିବୁଜି ଗୋଟିଏ ହାତ ବାଁ କାନରେ ଦେଇ ଗୀତ ଗାଉଥିବାର ଦେଖିଲା·········ତାର ବିକଳ ତଥା ଉତ୍ତେଜିତ ଚେହେରା ଦେଖି ମହିପାଲ ଭାରି ବିରକ୍ତ ହେଲା ।

ଘର ଭିତରେ ସଜ୍ଜନ ମହିପାଲର ପାଦଶବ୍ଦ ଶୁଣି କନ୍ୟା ଆସୁଛି ମନେକରି ଉଲ୍ଲସିତ ହୋଇ ଉଠିଲା । କବାଟ ନିକଟରେ ବରେନ୍ଦ୍ରେଶ ମୁଣ୍ଡକୁ ଧରି ହଲାଇ ମହିପାଲ କହିଲା “ଗୋଡ଼ ଉଠାଅ ରାସ୍ତାରୁ·········ଭିତରକୁ ଯିବାକୁ······” ।

“ଗୁରୁ ଦେବ, ଗୁରୁଦେବ,” କହି ଶୀଘ୍ର ବରେନ୍ଦ୍ରେଶ ମହିପାଲର ଗୋଡ଼ତଳେ ପଡ଼ିଗଲା । ଲମ୍ବା ବାଳକୁ ସଜାଡ଼ି ଆଖିରେ ଚଷମା ଠିକ୍‌ରେ ଲଗାଇ କହିଲା :—“ଯା ହେଉ ଏବେ ଗୁରୁଙ୍କ ଦର୍ଶନ ପାଇଲି, ମୋର ସବୁ କାମ ଠିକ୍ ହୋଇଯିବ ।

କନ୍ୟା ନୁହେଁ··· ମହିପାଲକୁ ଦେଖି ସଜ୍ଜନ ନିରାଶ ହେଲେ ବି ଅସୁଖୀ ହେଲାନି । ମହିପାଲ ତକିଆକୁ ଆଉଜି ଏପରି ବସିଥିଲା ଯେପରି ସେ ଖିନ୍ନ ହୋଇଯାଉଛି । ସଜ୍ଜନ ତା’ କଷ୍ଟ ଅନୁଭବ କରି ଶୀଘ୍ର ବ୍ରଶ ଓ ଇଜେଲ ରଖିଦେଲା ।

ବରେନ୍ଦ୍ରେଶ୍ କହିଲା ···“ଗୁରୁଜୀ ଗୋଟିଏ ନୂଆଗୀତରେ ହାତ ଦେଇଛି ଏବେ :”······

ସଜ୍ଜନ ଭଦ୍ରଭାବରେ କହିଲା······ବରେନ୍ଦ୍ରେଶ୍ ମୁଁ ମହିପାଲ ସହିତ କିଛି ଜରୁରୀ ବିଷୟ ନେଇ ଆଲୋଚନା କରିବାକୁ ଚାହେଁ ।”

“ଠିକ୍ ଅଛି······ଆପଣମାନେ ମନଇଚ୍ଛା କଥାବାର୍ତ୍ତା କରନ୍ତୁ, ମୁଁ ଘରକୁ ଚାଲିଯାଉଛି । ଆଜି ଗୁରୁଙ୍କ ଦର୍ଶନ ମିଳିଛି, ତାଙ୍କ; କୃପାରୁ ଯଦି ମୋର ଏ ନୂଆ ଗୀତ ପୂରା ହୋଇଯିବ ତ······” ଗୁରୁଜୀ ଆପଣଙ୍କ ଆଶୀର୍ବାଦରୁ ଏଇଟା ମୋର ଦ୍ୱିତୀୟ ଅମର ଗୀତ ହେବାକୁ ଯାଉଛି । ବାସ୍ ଏଇଟା ସଂପୂର୍ଣ୍ଣ ହେଲେ ସିଧା ବମ୍ବେ ଚାଲିଯିବ ।

"ମହତ୍ତ୍ୱାକାଂକ୍ଷାର ଦୀର୍ଘ ନିଶ୍ୱାସ ପକାଇ ମୁଣ୍ଡ ବାଳକୁ ଠିକ୍ କରି ବିରେନ୍ଦ୍ରେଣ୍ ଉଠି ଠିଆ ହେଲା ଏବଂ ବଡ଼ ବୋହୂର ଝରକା ଆଡ଼କୁ ତୃଷିତ ଦୃଷ୍ଟି ପକାଇ ବାହାରକୁ ବାହାରିଲା ।

ସଜ୍ଜନ ଚଉଁଉଠି କହିଲା:......"ଏ ହାରାମଜାଦା ଲୋକପରି ଲାଗିରହିଛୁ । କେବଳ କଣ୍ଟ୍ରୋଲ ଛଡ଼ା କାହାକଥା ଶୁଣିବାକୁ ନାହିଁ କି ମାନିବାକୁ ନାହିଁ । କାହିଁକି ଏତେ ଉଦାର ଦିଶୁଛ କଣ ସାହେବଙ୍କ ସାଥିରେ ମହାଶିରତ ଯୁକ୍ତ ହୋଇଯାଇଛ ?"

ମହିପାଳ ମୁଣ୍ଡ ହଲାଇ ନାଁ କହିଲା । ସଜ୍ଜନ ପୁଣି ପଚାରିଲା......"ତୁମର କିଛି ନା କିଛି ହୋଇଛି ସକାଳେ କଣ୍ଟ୍ରୋଲ କହୁଥିଲା କାଲି ଏଠାରେ ତମ ଶଳାର ବାହାଘର ହେଲା ।"

"ବାହାଘର ପରଦିନ ହେଲା ଗତକାଲି ଭୋଜି ଥିଲା ।"

ସଜ୍ଜନ କିଛିକ୍ଷଣ ନିରବ ରହି କହିଲା ...."ବାହାଘର ପାଇଁ ତୁମକୁ ତ କିଛି ଦେବାକୁ ପଡ଼ିଥିବ ?"

"ଦେଇଛି ।"

ସଜ୍ଜନ ସିଗାରେଟ କେଶ୍ ଖାଲି ଦେଖି ଚଉଁଉଠି ବାହାରକୁ ଅନାଇଁ କହିଲା......"ଏ ବୋଉ......" "ସିଗାରେଟ୍ ଅଛି......ନେ......" ମହିପାଳ ଜାମା ପକେଟରୁ ସିଗାରେଟ୍ ଡବା କାଢ଼ି ତଳେ ପକାଇଲା ।

"ଗୁରୁଜୀ ମତେ ଗୋଟେ ସିଗାରେଟ୍ "କହି ବିରେନ୍ଦ୍ରେଣ୍ ଘର ଭିତରକୁ ଚାଲି ଆସିଲା ।

ମହିପାଳ କହିଲା :......"ବିରେନ୍ଦ୍ରେଣ୍ ଆଜିକାଲି କି କାମ କରୁଛ ?"

ସିଗାରେଟ୍ କାଢ଼ି ମହିପାଳ ଓ ସଜ୍ଜନଙ୍କୁ ଗୋଟିଏ ଗୋଟିଏ ବଢାଇ ବିରେନ୍ଦ୍ରେଣ୍ ହସି କରି କହିଲା:..."କାମ-ମାନେ ଗୁରୁଜୀ ଆଜିକାଲି ଗୀତ ଲେଖା ଲେଖି କରୁଛି ।"

ପେଟ ପୂରୁଛି କେମିତି ? ପିଲାପିଲି ସଂସାର ଚଳାଉଛ କିପରି ? ମୁଁ ଜାଣିଛି ତୁମେ ବିବାହିତ ଓ ଛୁଆ ପିଲାର ବାପ ମଧ୍ୟ ।"

"ପିଲାପିଲି ସବୁ ତାଙ୍କ ଅଜାଘରେ । କଣ କହିବି ଆପଣଙ୍କୁ ଗୁରୁଜୀ ମୋ ସ୍ତ୍ରୀ ଏପରି ମୂର୍ଖ ଯେ ତା' ସହିତ ଏକାଠି ରହିଲେ ମୋର ସମସ୍ତ ଟାଲେଣ୍ଟ ନଷ୍ଟ ହୋଇଯିବ, ଯାହା କହନ୍ତି ନିପଟ ଗାଁଉଲି ।

"ଆଉ ଛୁଆ ପିଲା କେତୋଟି ?"

"ଆପଣଙ୍କ ଆଶୀର୍ବାଦରୁ ଚଳିଛି ।"

ମହିପାଳ ଶୁଣି ଉତ୍ତେଜିତ ହୋଇ ଉଠିଲା·· ···ପାଞ୍ଚ ପାଞ୍ଚଟି ପିଲା ଅଥଚ ତୁମେ ବେକାର ? ତୁମକୁ ଲଜ୍ଜା ଲାଗୁନି, ସେମାନଙ୍କ ଖର୍ଚ୍ଚ ଚଳେ କିପରି ?"

ବିରେହେଶ୍ ଚୁପଚାପ ସିଗାରେଟ୍ ଟାଣିବାରେ ଲାଗିଲା । ମହିପାଳ ସଜ୍ଜନକୁ କହିଲା: · ···"ତୁମର ଯଦି ବିଶେଷ କାମ ନାହିଁ, ତା ହେଲେ ତୁମ ଘରକୁ ଚାଲ, ଏଠି ମୋ ନିଶ୍ୱାସ ରୁନ୍ଧି ହୋଇଯାଉଛି ।"

"ଚାଲ, ଖାଲି ମୁଁ ଜଣକୁ ଆସିବାକୁ ଅପେକ୍ଷା କରିଥିଲି ।"

ମହିପାଳ ବୁଝିଲା, ପଚାରିଲା······ଆସିବାକୁ କଣ କଥା ଦେଇଥିଲା ।"

"ନାହିଁ·····"

ବିରେହେଶ୍ କହିଲା —"ସଜ୍ଜନ ଭାଇ ତୁମେ ଯିବ ତ ଚାଲ ଯିବ ମତେ ଦେଇଯାଅ । ମୁଁ ଏଠି କିଛି କାମ କରିବି, ମୋର ମୁଡ୍ ଆସିଯାଇଛି ।"

ସଜ୍ଜନ ନିଜ ଭଦ୍ରତାର ଖୋଳପା କାଢି ଚିଡ଼ିଉଠି କହିଲା, "ଏଇଟା ଧର୍ମଶାଳାର ରୁମ୍ ନୁହେଁ ।"

ବିରେହେଶ୍ ହେଁ ହେଁ ହୋଇ କଣ କହିବାକୁ ଗଲାବେଳେ ମହିପାଳ କହିଲା .. ସଜ୍ଜନ ଶୀଘ୍ର ଚାଲ, ମୁଁ ଆଉ ଏଠି ଜମା ରହିପାରିବି ନାହିଁ, ରାଗିଗଲେ ପୁଣି କାହାକୁ ମାରପିଟି ଦେବି ।"

ବିରେହେଶ୍ ସିଗାରେଟ୍ ଟାଣୁ ଟାଣୁ ଛାତ ଉପରକୁ ଚୁପ୍‌ଚାପ ଚାଲିଗଲା । ସେ ବାହାରିଗଲା ପରେ ସଜ୍ଜନ ଧିରେ ଧିରେ କହିଲା: —"ବାବା ମୁଣ୍ଡ ଖରାପ କରିଦେବ ସେ । ଯେତେବେଳେ ଆସିଲା ମୋର ସମସ୍ତ କାମ ମାଟି କଲା ।"

ମହିପାଳ କହିଲା :—"ତୁ ତାକୁ ମୁଣ୍ଡରେ ବସାଇଛୁ ।" ସଜ୍ଜନ କଥା ବଦଳାଇ କହିଲା······ଆଜି ସକାଳୁ ସାଳିଗ୍ରାମ ବାବୁ ଓ ଲାଲଜାନକୀ ଶରଣ ମୋ ସହିତ ଆସିଥିଲେ । ଏଠି ସାଇରେ ଗୋଟିଏ କଳା ପ୍ରଦର୍ଶନୀ କରିବାକୁ ଚାହୁଁଛନ୍ତି ।'

"କରିବାକୁ ଦେ ଶଳାଙ୍କୁ ।"

ଆମମାନଙ୍କୁ ତା'ର ଆବାହକ କରିବାକୁ ଚାହୁଁଛନ୍ତି ।" ଏପରି ଗ୍ରେଟ ଲୋକଙ୍କ ସହିତ ମୁଁ ଜମା ସାମିଲ ହୋଇପାରିବି ନାହିଁ । ସେ ଯେଉଁ ଧନୀ ଓ କଂଗ୍ରେସ ଲୋକ ଦୁଇଜଣଙ୍କୁ ବିଶ୍ୱାସ କରାଯାଇ ନପାରେ ।"

ସଜ୍ଜନ ହସି ହସି କହିଲା......"ମୁଁ ଜାଣେ ଯେ ଗତ ୩।୪ ଦିନ ତଳେ ଉଡ଼ାଜାହାଜର ପକା ଯାଇଥିବା କାଗଜର ପ୍ରସ୍ତାବ କରୁ ମୁଁ ରାଜି ହୋଇଯାଇଛି । ସେମାନେ ଯଦି ଆମକୁ ବୋକା ବନାଇବା ଉଦ୍ଦେଶ୍ୟ ରଖିଥାନ୍ତି ତେବେ ଆମେ ମଧ୍ୟ ତାଙ୍କୁ ବୋକା ବନାଇ ଦେବା ।

"ନିଜକୁ ବେଶୀ ଚାଲାକ ମନେ କରୁଛ ନାଁ ? ଶେଷରେ ଦେଖିବ ତୁମେ ଠକା ଯାଇଛ ।"

"କେଉଁଥିରେ ଠକିବି ଯେ ? ମୋର ସେମାନଙ୍କ ସହିତ କୌଣସି ରାଜନୈତିକ ବୁଝାମଣା ତ ହୋଇନି । ଏହି ବାହାନାରେ ମୋର ଗଲିକନ୍ଦିରେ ରହିବା ଲୋକଙ୍କ ସହିତ ପରିଚୟ ମଧ୍ୟ ମିଳିଯିବ ?"

"ସେଥି ସକାଶେ ଅନ୍ୟ କିଛି ବାଟ ଦେଖ । ଏଇ ଲୋକମାନଙ୍କ ସହିତ ସାମିଲ୍ ହୋଇ କୌଣସି କାମ କଲେ ଭଲ ହେବ ।"

ବରେନ୍ଦ୍ରେଶ୍ ଚୁଡ଼ ପାସ୍ପୋର୍ଟକୁ ଆହିଜ ସାମନାରେ ଥିବା ଝରକା ଆଡ଼କୁ ଅନାଇଁ ଜୋରରେ ଗାଇ ଉଠିଲା ।

ଆସିବାକୁ କଥା ଦେଇ ନଆସିଲ ତୁମେ
ଆସୁ ଆସୁ ଲୁଚିଗଲ ବ୍ୟଥା ଦେଇ ମନେ
କି ମୋହିନୀ ନିଶାରେ ଭରି ଦେଲୁ ମନ
ଲୁଟି ନେଇ ହଁଆ ମୋର ନେଲୁ ମନ ପ୍ରାଣ ।"

ମହିପାଲ ସଜ୍ଜନ ବାହାରକୁ ଆସିଲେ । ସଜ୍ଜନ ଘରେ ତାଲା ଦେବାବେଳେ ମହାକବି ବୋର ବଡ଼ ବୋହୂର ଚନ୍ଦ୍ରମୁଖ ଦର୍ଶନ କଲେ । ବୋର ଆସ୍ତ୍ର ବିସ୍ମିତ ହୋଇଗଲେ । ମହିପାଲ ନିଜ ଚଲାରେ ଡୁବି ରହିଥିଲା, ଚୁଡରେ ହାତ ରଖି ଆଖିରେ ଅଜସ୍ର ପିପାସା ନେଇ ଗଦ୍‌ଗଦ୍ ହୋଇ ଉପରକୁ ଅନାଇଁ ବୋର ଗୀତ ବୋଲୁଥିବାର ସଜ୍ଜନ ତାଲା ବନ୍ଦକରି ଶୁଣିଲା ମୋହିନୀ ନିଶାରେ ଭରି ଦେଲ ମୋ ମନ·········ସଜ୍ଜନ ଉପରକୁ ନ ଅନାଇଁ ବରେନ୍ଦ୍ରେଶ୍‌କୁ କହିଲା··· ··, ଆଚ୍ଛା ମଣିମାନ ଚାଲ ।"

"ଯାଉଛୁ, ଟିକେ ରୁହ ବନ୍ଧୁ,"—ପୁଣି ଗୀତ ବୋଲୁ ବୋଲୁ—ଯାଉଛୁ ବନ୍ଧୁ ଟିକେ ରୁହ । ଆଖି ଆଗରେ······"

ମହିପାଲ ରାଗିଗଲା, ବିରକ୍ତ ହୋଇ କହିଲା :—ଚାଲ ଶୀଘ୍ର, ଏପରି ଜୋକରଗିରି କରନି । ଆମର ଡେରି ହୋଇଯାଉଛି ।"

ମହିପାଲ ପ୍ରଥମେ ସିଡିରୁ ଓହ୍ଲାଇଲା···ତା ପରେ ସଜ୍ଜନ ଓ ସବା ପଛରେ ବୋର, ବୋଉର ଦୃଷ୍ଟି ଉପରକୁ ଥିବାରୁ ଏବଂ ଗୀତ ବୋଲୁଥିବା ଅବସ୍ଥାରେ

ପ୍ରିସ୍ଥାଠାରୁ ବଦାସ୍ତ ମାସ୍ତ ମାସ୍ତ ସିଢ଼ିରୁ ଓହ୍ଲାଉଥିଲା । ହଠାତ୍ ଗୋଟିଏ ସିଢ଼ିରୁ ଗୋଡ଼ ଖସିଯାଇ ସଜ୍ଜନ ଉପରେ ପଡ଼ିଲା, ସଜ୍ଜନ ମଧ୍ୟ ଟାଳ ସମ୍ଭାଳି ନପାରି ମହୀପାଳ ଉପରେ ଯାଇ ପଡ଼ିଲା । ମହୀପାଳ ସିଢ଼ିର ଦୁଇ କାନ୍ଥକୁ ଜୋରରେ ଧରି ରଖି ସିଧା ଠିଆ ହୋଇଗଲା, ସମସ୍ତେ ପଡ଼ୁପଡ଼ୁ ବର୍ତ୍ତିଗଲେ । ସରଦାରଙ୍କ ପିଲାମାନେ କଣହେଲା କହି ତଳେ ରୁଣ୍ଡ ହୋଇଗଲେ । ସଜ୍ଜନର କାନ୍ଧରେ ଆଘାତ ହୋଇଥିଲା, ମହୀପାଳ ଗର୍ଜିଯାଇଁ ବୋରର ଲମ୍ବାବାଳ ଦୁଇଁ ଉଜନଥର ଟାଣି କହିଲା···" ଆବେ ଦେଖି ଚାଲୁନୁ, ତୋତାରେ ସେକ ତୋର କବ ପଣିଆ ଛଡ଼ାଇ ଦେବି ଯେ ସବୁ ଦିନକୁ ମନେରଖିବୁ ।"

ବୋର ନିଜ ଚଷମା ସମ୍ଭାଳି ଗୁରୁଜୀ ଗୁରୁଜୀ କହି ଚୁପ୍ ଚୁପ୍ ଚାଲିବାକୁ ଲାଗିଲା । ସଜ୍ଜନ ମହୀପାଳକୁ ବୋରଠାରୁ ଛଡାଇ ନେଲା । ସରଦାରର ପିଲାମାନେ ବୋରକୁ ମାଡ ଦେବାର ଦେଖି ହସି ଉଠିଲେ ।

ମହୀପାଳ ବୋରକୁ ନ ଚାହିଁ ସଜ୍ଜନର ହାତଧରି ଶୀଘ୍ର ଫାଟକ ପାଖକୁ ଆଗେଇ ଗଲା । ବରେନ୍ଦ୍ରେଶ୍‌କୁ ମାରିବା ପରେ ସେ ମନେମନେ ଅନୁତାପ କରୁଥିଲା କିନ୍ତୁ ପ୍ରକାଶ କରିପାରୁ ନଥିଲା । ଗତକାଲି ରାତିଠାରୁ ସେ ବହୁତ ଶଙ୍କିତ ଥିଲା ।

ତା ବାହାଘର ପାଇଁ ଶଳା ତାଙ୍କର ଲକ୍ଷ୍ନୌ ଆସିଥିଲେ । ପ୍ରାୟତଃ ମହୀପାଳ ନିଜ ଆତ୍ମୀୟ ବନ୍ଧୁବାନ୍ଧବଙ୍କ ଠାରୁ ବିଚ୍ଛିନ୍ନ ରହୁଥିଲେ । ମାତ୍ର ଏଠି ଏକାବେଳକେ ବାଧ୍ୟବାଧକତା ଥିଲା । ଗତକାଲି କନ୍ୟାପକ୍ଷରୁ ଆୟୋଜିତ ଭୋଜନସ୍ଥଳରେ ସେ କଥା ପ୍ରସଙ୍ଗରେ ସମାଜର ଖରାପ ଦିଗ ବିଷୟରେ ଆକ୍ଷେପ କଲେ, ହଠାତ୍ ଜଣେ ବ୍ରାହ୍ମଣ ତା ବିରୁଦ୍ଧରେ ନାନା କଥା କହିବା ଆରମ୍ଭ କରିଦେଲେ ଯେ···ସେ ନାସ୍ତିକ, ସନାତନ ଧର୍ମକୁ ମାନନ୍ତିନାହିଁ । ପ୍ରଥମେ ଜଣେ ସେଠ ସାହୁକାରଙ୍କ ନିଜ ଅକ୍ତିଆରରେ ଆଣି ତାଙ୍କ ଝିଅକୁ ବାହାହେଲେ, ଏବେ ଧର୍ମ ତାକ୍ତରାଣୀ ସହିତ ରହୁଛନ୍ତି । ଖ୍ରୀଷ୍ଟାନ ଡାକ୍ତରାଣୀ ସହିତ ଖାଇବା ପିଇବା ମଧ୍ୟ କରନ୍ତି ।" ମହୀପାଳ ଏସବୁ ଶୁଣି ଏକା ବେଳକେ କ୍ରୋଧରେ ଲାଲ ହୋଇଗଲା, ତା' ଶଶୁର ଇତ୍ୟବସରରେ ହାତ ଗୋଡଧରି ତାଙ୍କ ଜୋଇଁ ଓ ସମ୍ମାନିତ ଅତିଥିମାନଙ୍କୁ ବୁଝାଇଥିଲେ ।

ସ୍ତ୍ରୀ ଆଜି ସକାଳୁ ସହରୁଣୀ ସମ୍ବନ୍ଧୀୟ 'କଥାରେ ଏକାଧିକ ଥର ପାଞ୍ଚଜନ୍ୟ ଶଙ୍ଖ ବଜାଇବାକୁ ଆରମ୍ଭ କରି ଦେଇଥିଲେ । ତେଣୁ ବରେନ୍ଦ୍ରେଶ୍‌କୁ ଦେଖି ହଠାତ୍ ସମସ୍ତ କ୍ରୋଧ ଏକତ୍ରିତ ହୋଇଗଲା । ସଜ୍ଜନ କହୁଥିଲା······"ବନ୍ଧୁ ତୁମର କ୍ରୋଧକୁ କାବୁ କରିବା ଏକାନ୍ତ ବାଞ୍ଛନୀୟ ।"

ଅଶାନ୍ତ ମନରେ ମହୀପାଳ କହିଲା ·····କାବୁ କରିବା ଚୁଲିକୁ ଯାଉ । ଏବେ ତ ଜୀବନ ଉପରେ ବିରକ୍ତି ଆସିଗଲାଣି । ଏହାପରେ ସଜ୍ଜନ କିଛି ନକହି ନୀରବ ରହିଲା, ଦୁହେଁ ଗଳି ପାରି ହୋଇ ଆଗକୁ ଚାଲିଲେ ।

× × × × ×

# ସତର

ମହୀପାଲ ଓ ତାର ଦୁଇଜଣ ବଡ଼ ଭଉଣୀ ଆଉ ଜ୍ୟେଷ୍ଠ ଭାଇ ସମସ୍ତେ ମିଶି ପିଲାଦିନୁ ମାମୁଁ ଘରେ ବଢ଼ିଥିଲେ । ତାର ମାମୁଁ ଘର ସାମନ୍ତବାଦୀ ଜମିଦାର ପରିବାର । ଅଥଚ ତାର ପିତା ହାଇସ୍କୁଲର ହେଡ୍‌ମାଷ୍ଟର ଥିଲେ ଏବଂ ଜଣେ ଆଦର୍ଶବାଦୀ; ସଚ୍ଚରିତ୍ର ସ୍ପଷ୍ଟବକ୍ତା ଥିଲେ । ମହୀପାଳର ମାଙ୍କ ଠାରେ କିନ୍ତୁ ସାମନ୍ତବାଦୀ ପରିବାରର ସମସ୍ତ ଦୁର୍ଗୁଣ ମଜ୍ଜାଗତ ଥିଲା । ତାଙ୍କର ବେଶୀଦିନ ବାପଘରେ କଟୁଥିଲା । ମହୀପାଳର ଅଜା ଓ ବଡ଼ମାମୁଁଙ୍କ ବେଶୀ ପ୍ରିୟ ହୋଇଥିବା ହେତୁ ଘରେ ତାଙ୍କର ଶାସନ ନିଷ୍କଣ୍ଟକ ଥିଲା । ପୁରୁଣା କାଳିଆ ଜମିଦାର ଘର ଝିଅ ହିସାବରେ ଯାବତୀୟ ବଦ୍‌ଗୁଣ ଯଥା କୁଟିଳତା ନିଷ୍ଠୁରତା ଏବଂ ଷଡ଼ଯନ୍ତ୍ର ଚକ୍ରାନ୍ତରେ ତାଙ୍କର ବିଶେଷ ଦକ୍ଷତା ଥିଲା ଯାହା ଫଳରେ ଅନେକ ଶତ୍ରୁ ମଧ୍ୟ ହୋଇଥିଲେ ।

ମହୀପାଳର ଦି'ଭଉଣୀଙ୍କ ବାହାଘର ଜାକଜମକ ଆଦି ସେଠାରେ ସମ୍ପନ୍ନ ହୋଇଥିଲା ଏବଂ ସ୍ଥିତି ଅନୁସାରେ ସେମାନଙ୍କ ଓ ମହୀପାଳର ବାହାଘର ମଧ୍ୟ ଧନୀଘରେ ହୋଇଥିଲା । ମହୀପାଳର ବିବାହ ପରେ ପରେ ଭାଗ୍ୟର ବିରାଟ ପରିବର୍ତ୍ତନ ହେଲା । ତାର ପିତାଙ୍କ ଦେହାନ୍ତର ବର୍ଷକ ପରେ ବଡ଼ମାମୁଁଙ୍କର; ମୃତ୍ୟୁ ହୋଇଗଲା । ବଡ଼ ମାମୁଁଙ୍କର ମୃତ୍ୟୁ ପରେ ପରେ ମହୀପାଳର ମା'ଙ୍କର ଯେଉଁ ଅଖଣ୍ଡ କର୍ତ୍ତୃତ୍ୱ ଥିଲା ତାହା ହଠାତ୍ ଓଲଟି ଗଲା । ଘରେ ଯେଉଁମାନେ ତାଙ୍କର ଶତ୍ରୁ ଥିଲେ ଏଇ ସୁଯୋଗରେ ସେମାନେ ତାଙ୍କୁ ନାନା ଭାବେ ଅପମାନିତ କରିବାକୁ ଆରମ୍ଭ କଲେ । ଏଇ ଘୃଣ୍ୟ ପରିସ୍ଥିତିରୁ ନିଜକୁ ରକ୍ଷା କରିବାକୁ ଯାଇ ତାଙ୍କୁ ଆତ୍ମହତ୍ୟା କରିବାକୁ ପଡ଼ିଲା । ମାଙ୍କ ମୃତ୍ୟୁପରେ ମହୀପାଳ ସ୍ତ୍ରୀ ଓ ଭାଇଙ୍କୁ ନେଇ ମାମୁଁ ଘରେ ରହିବା କଷ୍ଟକର ହୋଇପଡ଼ିଲା । ମାଇଁମାନେ ସେମାନଙ୍କ ସ୍ୱର୍ଗତା ନଣନ୍ଦର ଅତ୍ୟାଚାରର ପ୍ରତିଶୋଧ ପିଲାଙ୍କ ଉପରେ ନେବାକୁ କୁଣ୍ଠାବୋଧ କଲେନି । ସେତେବେଳେ ମହୀପାଳ ଆଇ. ଏ. ଏବଂ ତା'ର ସାନଭାଇ ଜୟପାଳ ନବମ ଶ୍ରେଣୀର ଛାତ୍ର ।

କିଶୋର ବୟସରୁ ସାହିତ୍ୟ ପ୍ରତି ରୁଚି ଓ ଆଗ୍ରହ ମହୀପାଳର ରହି ଆସିଥିଲା । ମା ପ୍ରତି ସମ୍ମାନ ଓ ଶ୍ରଦ୍ଧା ତଥା ପିତାଙ୍କ ପ୍ରତି ଭକ୍ତିଭରା ଆକର୍ଷଣ ତା'ର ସମ୍ବେଦନଶୀଳ ହୃଦୟରେ ନୂତନ ଭାବର ବିକାଶ କରିଥିଲା । ପିଲାଦିନୁ ପିତାଙ୍କ ପାଖେ ରହିବାର ଅଦମ୍ୟ ଇଚ୍ଛା ତାର ରହିଥିଲେ ମଧ୍ୟ ମାଙ୍କ ଜିଦିପାଇଁ ସେ ସ୍ଥାୟୀଭାବରେ ପିତାଙ୍କ ନିକଟରେ ରହିବାର ସୁଯୋଗରୁ ବଞ୍ଚିତ ଥିଲା । ପିତା ତାର ଶାନ୍ତ ଗମ୍ଭୀର ଓ ବିଚାରଶୀଳ ବ୍ୟକ୍ତି ଥିଲେ । ପ୍ରାୟ ଅଳ୍ପ ବହୁତ ଲେଖାଲେଖି ମଧ୍ୟ

କରୁଥିଲେ । ଖଣ୍ଡ ବୋଲରେ ରଚିତ ତାଙ୍କର କାବ୍ୟ ଏବଂ ପଦାବଳୀ ଏ ପର୍ଯ୍ୟନ୍ତ ମହିପାଳ ଅମୂଲ୍ୟ ସମ୍ପଦ ପରି ସୁରକ୍ଷିତ ରଖିଛି । ତାଙ୍କର ଐତିହାସିକ, ସାମାଜିକ ତଥା ଶିକ୍ଷା ସମ୍ବନ୍ଧୀୟ ଲେଖା "ସରସ୍ୱତୀ" ମାଧ୍ୟମ "ଗ୍ରନ୍ଥ" ଏବଂ ସୁଧା ପତ୍ରିକାରେ କେବେ କେବେ ପ୍ରକାଶିତ ହେଉଥିଲା । ବାଲ୍ୟାବସ୍ଥାରୁ ମହିପାଳର ତାର ପିତାଙ୍କ; ପରି ଆଦର୍ଶବାଦୀ, ବିଦ୍ୱାନ ତଥ ଲେଖକ ହେବାର ଦୁରନ୍ତ ବାସନା ରହିଥିଲା । ପ୍ରେମଚନ୍ଦ୍ର, ଏବଂ "ଗୃନ୍ଦ" ଭବିଷ୍ୟ, ପ୍ରତାପ, ଅଭ୍ୟୁଦୟ ଆଦି ସାମାଜିକ ରାଜନୈତିକ ସାହିତ୍ୟର ପ୍ରଭାବ ତା'ଉପରେ ବରାବର ରହିଥିଲା । ତା'ର ମାମୁଁ ଏବଂ ସେମାନଙ୍କ ସହଯୋଗୀମାନଙ୍କ ଦ୍ୱାରା କୃଷୀ-ମାନଙ୍କ ଉପରେ କରାଯାଉଥିବା ଅତ୍ୟାଚାର ପ୍ରତି ଦିନକୁ ଦିନ ତାର ଘୃଣା ହେଉଥିଲା ।

ଏଇ ଦୁର୍ଦ୍ଦଶାଗ୍ରସ୍ତ ମେହନତୀ ଗରିବ କୃଷୀଙ୍କ ଉପରେ ଅକର୍ମଣ୍ୟ ମାମୁଁମାନେ କେଉଁ ଅତ୍ୟାଚାର ବ୍ୟଥିତ ହୋଇ ମହିପାଳ ଚିନ୍ତା କରୁଥାଏ । କୃଷୀଙ୍କୁ କୋରଡ଼ା ମାଡ଼ କାଢ଼ି କାଠରେ ମୁଣ୍ଡତଳକୁ ଗୋଡ଼ ଉପରକୁ କରି ଟଙ୍ଗାଇ ମରିଚ ଧୂଆଁ ଦେବା, ବେଠ - ବେଗାର ଖଟାଇ ଓପାସ ଭୋକରେ ସେମାନଙ୍କୁ ମାରିବା, ଘର ଲୁଟି ନେବା ଆଦି ଅମାନୁଷିକ ଆତ୍ୟାଚାର ସେ ପିଲାଦିନୁ ଦେଖି ଆସୁଥିଲା ଏବଂ ଏସବୁ ଦେଖି ତା'ର ମନ ପୀଡ଼ିତ ହୋଇ ଯାଉଥିଲା । ତାର ତିନିଜଣ ସାନମାମୁଁ ଗାଁରେ ବୋହୂଝିଅଙ୍କ ଇଜ୍ଜତ ନେବାର ବହୁଥର ସେ ଦେଖିଛି । ତା'ର ଦରବୁଢ଼ା ମଝିଆ ମାମୁଁ ଏକ ବ୍ୟଭିଚାରୀ ପୁରୁଷ ଥିଲେ, କୁମାରୀ ଝିଅଙ୍କ ସର୍ବନାଶ କରିବାରେ ଯେପରି ତାଙ୍କୁ ବହୁତ ଆନନ୍ଦ ମିଳୁଥିଲା । ନିଜ ଝିଅ ଓ ଝିଆରୀ ବୟସ କୃଷୀକନ୍ୟାମାନଙ୍କ ଇଜ୍ଜତ ଲୁଟିବାରେ ତିଳେମାତ୍ର ପଶ୍ଚାତାପ ତାଙ୍କର ନଥିଲା ।

ଦଶହରା ତଥା ବଡ଼ଦିନ, ଗ୍ରୀଷ୍ମ ଛୁଟି ପିତାଙ୍କ ନିକଟରେ କଟାଇ ଯେତେବେଳେ ମହିପାଳ ମାମୁଁ ଘରକୁ ଫେରି ଆସୁଥିଲା ମନେ ହେଉଥିଲା ଯେପରି ଶସ୍ୟ ଶ୍ୟାମଳ କ୍ଷେତରୁ ତାକୁ ଧରି ନେଇ ବନ୍ଦୀଶାଳାରେ ବନ୍ଦକରି ଦିଆଯାଉଛି । ଜମିଦାର ପରିବାରର ସାମନ୍ତବାଦୀ ବାତା ବରଣରେ ମଦ, ଗଞ୍ଜେଇ, ଜୁଆ, ଭାଙ୍ଗ, ମାରପିଟ, ଅତ୍ୟାଚାର, ବ୍ୟଭିଚାର, ବେଶ୍ୟାସଙ୍ଗ ତଥା ଯୌନ ବିକୃତି ଆଉ ହରେକ ରକମ କଦର୍ଯ୍ୟତା ଦେଖି ଦେଖି ତାର ଶ୍ୱାସରୁଦ୍ଧ ହୋଇ ଯାଉଥିଲା । ଜଲ କଟା ହୋଇଥିବା ବ୍ୟକ୍ତିପରି ତାର ଦୟନୀୟ ଅବସ୍ଥା ଥିଲା । ମୁକର ଭଳି ହିସାବରେ ସାହିତ୍ୟ ତା ଜୀବନରେ ଶ୍ରେଷ୍ଠ ସ୍ଥାନ ଅଧିକାର କଲା । ପ୍ରଥମେ ଛୋଟ ପଦ୍ୟ ରଚନାରୁ ଆରମ୍ଭ, ପରେ କ୍ଷୁଦ୍ର ଗଳ୍ପ ଲେଖିଲା । ପିତାଙ୍କୁ ଅନୁକରଣ କରି ତାଏସବୁ ଲେଖୁଥିଲା ଏବଂ ଯାହା ଫଳରେ ପରବର୍ତ୍ତୀ କାଳରେ ଗଳ୍ପ ଲେଖକ ହେବାରେ ବହୁତ ସୁବିଧା ହୋଇଥିଲା । ଆଇ. ଏ. ପରୀକ୍ଷା ଦେବା ପୂର୍ବରୁ ପାଞ୍ଚ ଛଅଟି କ୍ଷୁଦ୍ର ଗଳ୍ପ ଗ୍ରନ୍ଥ ଏବଂ ସୁଧାରେ ପ୍ରକାଶିତ ହୋଇ ସାରିଥିଲା ।

ମାଙ୍କ ମୃତ୍ୟୁ ପରେ ପରେ ମାମୁଁ ଘରର ବାତାବରଣ ତା' ପାଇଁ ଅତ୍ୟନ୍ତ ଅପମାନ ଜନକ ହୋଇ ଉଠିଲା । ତେବେ କୌଣସି ଏକ ଅପ୍ରିତକର ପରିସ୍ଥିତ ଯୋଗୁଁ ପରୀକ୍ଷା ଫଳ ବାହାରିବା ପୂର୍ବରୁ ନିଜର ନବ ବିବାହିତା ପତ୍ନୀର ପ୍ରେରଣାରେ ପୃଥକ ରହିବାର ସିଦ୍ଧାନ୍ତ ନେଇ ଚାକିରି କରିବା ଉଦ୍ଦେଶ୍ୟରେ ଲକ୍ଷ୍ନୌ ଚାଲି ଆସିଲା ।

୧୯୩୦ର ଆନ୍ଦୋଳନ କାଳୀନ ଅବସ୍ଥା, "ସୁଧା" ପତ୍ରିକାର ସମ୍ପାଦକୀୟ ବିଭାଗରେ ମାସକୁ ୪୦ ଟଙ୍କାରେ ଖଣ୍ଡିଏ ଚାକିରି ମିଳିଗଲା । "ସୁଧା" କାର୍ଯ୍ୟାଳୟରୁ ପ୍ରାୟ ସେ ସମୟର ବିଖ୍ୟାତ ସାହିତ୍ୟିକଙ୍କ ଦର୍ଶନ ଲାଭ ମଧ୍ୟ ହେଉଥାଏ । ପ୍ରେମଚାନ୍ଦ, ନିରାଲା, ମିଶ୍ରବନ୍ଧୁ, ସୁମିତ୍ର ନନ୍ଦନ ପନ୍ତ, ରୂପନାରାୟଣ ପାଣ୍ଡେ, କୃଷ୍ଣ ବିହାରୀ ମିଶ୍ର ଆଦି ବହୁ ସାହିତ୍ୟ ରଥୀ, ମହାରଥୀଙ୍କ ଦର୍ଶନ ତା ଭାଗ୍ୟରେ ଘଟିଲା ଏବଂ ଏହି ସମ୍ପର୍କରେ ତା ନିଜର ସାହିତ୍ୟିକ ବ୍ୟକ୍ତିତ୍ୱର ବିକାଶ ଶୀଘ୍ର ହେବାକୁ ଲାଗିଲା । ବିଶେଷ କରି ନିରାଲାଙ୍କ ନିକଟତମ ସମ୍ପର୍କରେ ଆସିବା ଦ୍ୱାରା ଚାକିରି କରିବାରେ ଯେଉଁ ଦୁଃଖଦ ଅଭିଜ୍ଞତା ସେଥିରୁ ନିଷ୍କୃତି ମିଳିଲା । ଚାକିରି ମନୋଭାବ ନ ହେବା ହେତୁ ଚାକିରି କ୍ଷେତ୍ରରେ ଅସନ୍ତୁଷ୍ଟ ରହି ମଧ୍ୟ ମହିପାଲ ନିଜ ଗରଜ ପାଇଁ ବାଧ୍ୟ ହୋଇ ଚାକିରି ଛାଡ଼ି ପାରୁନଥିଲା । ତିନିମାସ ଭିତରେ ଅମିନାବାଦରେ ଘରଭଡ଼ା ନେଇ ନିଜର ଆସନ୍ନ ପ୍ରସବା ସ୍ତ୍ରୀ ଓ ଭାଇକୁ ନେଇ ବସା ବାନ୍ଧିଲା । ନିଜ ସ୍ତ୍ରୀର ଗହଣା ଗୁଡ଼ିକ ହିଁ କେବଳ ତାର ସୁରକ୍ଷିତ ପୁଞ୍ଜିଥିଲା ।

ପୂର୍ଣ୍ଣରୂପେ ଭଗବାନଙ୍କୁ ଭରସା କରି ମାମୁଁ ଘରୁ ବାହାରିଥିଲା । ଭାଇର ସ୍କୁଲରେ ନାଁ ଲେଖାଇ ନିର୍ଶ୍ଚିନ୍ତ ଭାବରେ ଯେତେଦୂର ପର୍ଯ୍ୟନ୍ତ ପଢ଼ି ପାରିବ ତାର ଦାୟିତ୍ୱ ନେଲା । ମନ ଲଗାଇ ପରିଶ୍ରମ କରିବାକୁ ପଡ଼ିଲା । "ସୁଧା"ରେ କାମ କରିବା ସମୟରେ ଅନ୍ୟ ଏକ ପ୍ରକାଶକଙ୍କ ପାଇଁ ବୁକ ଅଫ୍ ନଲେଜ; ଇତିହାସ ତଥା ପାଠ୍ୟପୁସ୍ତକ ଅନ୍ୟ ନାଁରେ ଲେଖି କିମ୍ବା ଅନୁବାଦ କରି ବହିର ସତ୍ତ୍ୱ ବିକ୍ରି କରୁଥିଲା । ମାସରେ ଗୋଟିଏ ଦୁଇଟି କ୍ଷୁଦ୍ର ଗଳ୍ପ ମଧ୍ୟ ଲେଖୁଥିଲା······ଏହି ରୂପେ ମାସକୁ ଶହେ ଟଙ୍କା ପର୍ଯ୍ୟନ୍ତ ରୋଜଗାର କରୁଥିଲା ।

ସମୟ ସେତେବେଳେ ଭଲଥିଲା । ପତ୍ରପତ୍ରିକା କମ୍ ଥିବାରୁ ଉଦୀୟମାନ ନୂଆ ଲେଖକ ଭାବରେ ଶୀଘ୍ର ବିଖ୍ୟାତ ହୋଇ ଉଠୁଥିଲା । ବଡ଼ ସାହିତ୍ୟିକମାନେ ସର୍ବଦା ନୂଆ ସାହିତ୍ୟିକମାନଙ୍କୁ ଆଗକୁ ଟାଣି ନେଉଥିଲେ (ମହିପାଲ ଲେଖାରେ ଶକ୍ତିଥିଲା, ମନରେ ଉପରକୁ ଉଠିବାର ଆକାଂକ୍ଷା ଥିଲା, ଧିରେ ଧିରେ ସେ ଆଗେଇ ଗଲା । ରୂପରଞ୍ଜନ ନାମକ ଜଣେ ଯୁବକ ଧନୀ ସାହିତ୍ୟ ରସିକ ବ୍ୟକ୍ତିଙ୍କ ସହିତ ମହିପାଲର ପରିଚୟ ହେଲା । ସେ ମଧ୍ୟ ଦେଶ ସେବାରେ ବ୍ରତୀଥିଲେ । ପିତା ସେଠ ଭଜଗୋବିନ୍ଦ ଦାସ ବହୁତ ବଡ଼ ସାହୁକାର ଥିଲେ ଏବଂ ସ୍ୱୟଂ ରୂପନାରାୟଣ ଗୋଟିଏ ଲୁଗା କଳର ମାଲିକ ଏବଂ ବୈଦ୍ୟ, କବିରାଜଙ୍କୁ ବେତନ ଦେଇ ଗୋଟିଏ ଆୟୁର୍ବେଦୀୟ ରସାୟନ ଶାଳା ଓ ଔଷଧାଳୟ ମଧ୍ୟ

ଚଳାଉଥିଲେ । ଦ୍ରାକ୍ଷାସବ, ଦଶମୂଳାରିଷ୍ଟ, ଖଦନପାଣ ଆଦି ଔଷଧ ଏହି ରସାୟନଶାଳାରୁ ପ୍ରସ୍ତୁତ ହେଉଥିଲା । ବଡ଼ ବଡ଼ ନେତାମାନଙ୍କୁ ଏହି ରସାୟନଶାଳା ପରିଦର୍ଶନ ସାର୍ଟିଫିକେଟ ହାସଲ କରିଥିଲେ । ବିଜ୍ଞାପନ କରିବାରେ ବିଶ୍ୱାସ କରୁଥିଲେ, ଭଲ ରୋଜଗାର ମଧ୍ୟ ହେଉଥିଲା । ରୁପରଞ୍ଜନ କଂଗ୍ରେସର ସଭ୍ୟ ତଥା କୋଷାଧକ୍ଷ ମଧ୍ୟ ହୋଇଥିଲେ । ବେନାମୀରେ ଦେଶୀ ମଦ ଦୋକାନର ମଧ୍ୟ ମାଲିକ ଥିଲେ । ଏହିପରି ନାନା କର୍ମରତ, ଅତ୍ୟନ୍ତ ସାମାଜିକ, ଶିକ୍ଷିତ, କଥାବାର୍ତ୍ତାରେ ଧୁରନ୍ଧର ଏବଂ ୧୯୩୦-୩୧ରେ ଯେଉଁ ମୁଷ୍ଟିମେୟ ଯୁବକ ସମାଜବାଦରେ ବିଶ୍ୱାସ କରୁଥିଲେ ତାଙ୍କ ମଧ୍ୟରୁ ରୁପରଞ୍ଜନ ବାବୁ ଜଣେ ଥିଲେ ।

ଜିମଖାନା କ୍ଲବରେ ମହିପାଲ ସହିତ ରୁପରଞ୍ଜନ ବାବୁଙ୍କର ପ୍ରଥମ ପରିଚୟ ହୁଏ । ମହିପାଲଙ୍କ ଏକ ମାମୁଁ ପୁଅ ଭାଇ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ଛାତ୍ରଥିଲେ ଏବଂ ତା' ସହିତ ସୁସମ୍ପର୍କ ଥିବାରୁ ପ୍ରାୟ ଏକାଠି କ୍ଳବ ଚାଲିଯାଉଥିଲେ । ନିଜର ସହଜାତ ଆଭିଜାତ୍ୟ ପୂର୍ଣ୍ଣ କଥାବାର୍ତ୍ତା ଦ୍ୱାରା ଶୀଘ୍ର ଧନୀମାନଙ୍କ ଲୋକଙ୍କ ସହିତ ଆଳାପ କରିପାରୁଥିଲା । ଲକ୍ଷ୍ନୌ ଆସିବା ପରଠାରୁ ଝଦଡ଼ ପିନ୍ଧିବା ଆରମ୍ଭ କରିଥିଲା ୨ଟି କାରଣ ଯୋଗୁଁ । ପ୍ରଥମତଃ : ନିଜର ମନ ଭିତରର ଲୁକ୍କାୟିତ ଜାତୀୟତା ଭାବ ଯୋଗୁଁ, ଦ୍ୱିତୀୟତଃ ଝଦଡ଼ର ବୈରାଗ୍ୟ ପୂର୍ଣ୍ଣ ବେଶଭୂଷା ଦ୍ୱାରା ଦାମୀ ପୋଷାକର ଅଭାବ ମଧ୍ୟ ସହଜରେ ଢ଼ାଙ୍କି ହୋଇ ଯାଉଥିଲା । ଏପରି ପରିପ୍ରେକ୍ଷୀରେ ରୁପରଞ୍ଜନ ସହିତ ପରିଚିତ ହୋଇ ଦୁହେଁ ଅନୁଭବ କଲେ ଯେପରି ଦୁହିଁଙ୍କ ମନୋଭାବ ଓ ଆଦର୍ଶଗତ ମେଳ ଅଛି ଏବଂ ଏଇ ବିଶ୍ୱାସ ନେଇ ଉଭୟେ ଉଭୟଙ୍କର ଘନିଷ୍ଠ ବନ୍ଧୁରେ ପରିଣତ ହେଲେ । ଦିନେ ରୁପରଞ୍ଜନ ଖବର କାଗଜ ପ୍ରକାଶନର ପ୍ରସ୍ତାବ ନେଇ ନେଇ ମହିପାଳ ସାଦରେ ତାକୁ ଗ୍ରହଣ କଲା ।

ରୁପରଞ୍ଜନଙ୍କ ବାପାଙ୍କ ନିକଟରେ ଗୋଟିଏ ପ୍ରେସ ବନ୍ଧା ପଡ଼ିଥିଲା ଏବଂ ରୁପରଞ୍ଜନ ବନ୍ଧକ ପ୍ରେସଟି ଆଇନର ମାରଫତ ବଳରେ ନିଜର କରିନେଲା ।

ସାପ୍ତାହିକ "ନବଚେତନା"ରେ ଜ୍ୱାଳାମୟୀ ଲେଖା ସବୁ ପ୍ରକାଶ ପାଇଲା । ମହିପାଳର ସମ୍ପାଦନା କାଳରେ ତିନିଥର ଏଇ ପ୍ରେସ୍ ବାଜ୍ୟାପ୍ତି ହେଲା ଏବଂ ବାଜ୍ୟାପ୍ତି ହେବା ଫଳରେ "ନବଚେତନା"ର ବିକ୍ରୀ ହୁ ହୁ ହୋଇ ବଢ଼ିଲା । କ୍ରମଶଃ ରୁପରଞ୍ଜନ ମହିପାଳକୁ ବୁଝାଇ ସୁଝାଇ ରାଜି କରାଇ ନେଲା ଯେ ପତ୍ରିକାରେ ଜ୍ୱାଳାମୟୀ ଲେଖାର ସୀମା ଏପରି ରଖିବାକୁ ହେବ ଯେପରି ଆଉ ସରକାରଙ୍କ ବକ୍ର ଦୃଷ୍ଟି "ନବଚେତନା" ଉପରେ ନ ପଡ଼େ । 'ନବଚେତନା' କାର୍ଯ୍ୟାଳୟ ନବ ଉଦ୍ଦିପନାରେ ଅନୁପ୍ରାଣିତ ଯୁବ ଲେଖକମାନଙ୍କ ଆଡ୍‌ଡ଼ା ସ୍ଥଳୀରେ ପରିଣତ ହେଲା । କ୍ରମଶଃ "ନବଚେତନା" ପୁସ୍ତକ ପ୍ରକାଶନ ମଧ୍ୟ ଆରମ୍ଭ ହେଲା ।

ରୂପରଞ୍ଜନ ଏହି ସଂସ୍ଥାକୁ ଏକ ସମାଜବାଦୀ ସଂସ୍ଥା ବୋଲି ଘୋଷଣା କରିଥିଲେ । ବାରମ୍ବାର ଏହି ବିଷୟ ନେଇ ରୂପରଞ୍ଜନ ସ୍ପଷ୍ଟୀକରଣ କରୁଥିଲେ ଯେ ଏହି ସଂସ୍ଥା ତାଙ୍କ ବ୍ୟକ୍ତିଗତ ଲାଭ କରିବାର ସଂସ୍ଥା ନୁହେଁ, ମାତ୍ର ଲେଖକ, କବି ତଥା ପ୍ରେସ କର୍ମଚାରୀଙ୍କୁ ଆର୍ଥିକ ସହାୟତା ଏବଂ ସମାଜବାଦ ପ୍ରଚାର କରିବା ଲାଗି ହିଁ ମୁଖ୍ୟତଃ ଏହା ସ୍ଥାପିତ ହୋଇଛି । ଏହି ପ୍ରକାରେ ସମାଜବାଦ ନାଁରେ ପ୍ରତ୍ୟେକଙ୍କଠାରୁ ସହଜରେ ତ୍ୟାଗ ଓ କଠୋର ପରିଶ୍ରମ କରାଇ ନେଉଥିଲେ ।

ମହିପାଲର ଏ ସମୟ ସବୁଠାରୁ ଭଲ ସମୟ । ତା'ର ମାସକୁ ଦରମା ଥିଲା ପାଞ୍ଚଶହ ଟଙ୍କା ଏବଂ ସେଥିରୁ ତ୍ୟାଗ ନାଁରେ ତିନିଶହ ଟଙ୍କା କଟି ଯାଉଥିଲା । ରୂପରଞ୍ଜନର ସୂକ୍ଷ୍ମ ଖେଳ୍ ସରଳ ମହିପାଲ ପକ୍ଷରେ ଦୁଃସାଧ୍ୟ ବୁଝିବା କଷ୍ଟକର ଥିଲା । ତାର ବ୍ୟକ୍ତିଗତ ତ୍ୟାଗ ଫଳରେ ପ୍ରେସର କମ୍ପୋଜିଟର ତଥା ଅନ୍ୟ କର୍ମଚାରୀ ଗଣ ମଧ୍ୟ ଏହି "ନିଜର ସଂସ୍ଥା" ନିମନ୍ତେ ବାଧ୍ୟତା ମୂଳକ ତ୍ୟାଗ କରୁଥିଲେ । ଏହି ଦିନଗୁଡ଼ିକରେ ମହିପାଲ ଖୁବ୍ ଉନ୍ନତି କରିବାରେ ଲାଗିଲା · ଅଜସ୍ର କ୍ଷୁଦ୍ରଗଳ୍ପ, ଉପନ୍ୟାସ ଲେଖିବା ଏବଂ ନିଷ୍ଠାପର ଭାବରେ ସମସ୍ତ ଜିଲ୍ଲା, ଗାଁଗଣ୍ଡା, କୁଲିବସ୍ତି ତଥ ଗରିବ ଜନତାର ଦୁର୍ଦ୍ଦଶାର କାହାଣୀ ବିବରଣୀ ସଂଗ୍ରହ କରିବା·· ···ଏଇସବୁ କାମରେ ସେ ସବୁ କିଛି ଭୁଲି ଯାଇଥିଲା । ସରକାରୀ କଳର ନିଷ୍କ୍ରିୟତା ତଥା ପୁଞ୍ଜିପତିମାନଙ୍କ ଶୋଷଣ ସମ୍ପର୍କରେ ତାର ଲେଖଣୀ ସଂପୂର୍ଣ୍ଣରୂପେ ନିଆଁ ଜଳାଉଥିଲା । ରୂପରଞ୍ଜନ ନିଜେ ଅନ୍ୟ ପୁଞ୍ଜିପତିମାନଙ୍କ ଦୋଷତ୍ରୁଟି ମହିପାଲକୁ କହୁଥିଲେ । ଅନ୍ୟ ଉପରେ ନିଜର ପ୍ରଭାବ ଜାହିର କରିବା ନିମନ୍ତେ ରୂପରଞ୍ଜନ ଏହିପରି ଲେଖା ଲେଖାଉଥିଲେ ଏବଂ ବିଚରା ମହିପାଲ ଏ ଖେଳକୁ ବୁଝିପାରି ନଥିଲା ।

ଜୟପାଳ ଇତି ମଧ୍ୟରେ ଇଣ୍ଟରମିଡ଼ିଏଟ ପାଶ୍ କରି ଡାକ୍ତର ପଢ଼ିବା ନିମନ୍ତେ ଭର୍ତ୍ତି ହେଲା । ପତ୍ନୀ ସହିତ ବୌଦ୍ଧିକ ମିଳନ ନ ହେବା ଫଳରେ ପ୍ରାୟ ଘରେ ଅଶାନ୍ତି ଲାଗି ରହୁଥିଲା ମାତ୍ର ମହିପାଲ ଚିନ୍ତାନ୍ୱିତ ନଥିଲା । ରୂପରଞ୍ଜନର ସୁରମାଙ୍କ ବୈଠକରେ ସେ କେବେ କେବେ ସୁରା ସହିତ ସହଯୋଗ କରୁଥିଲା ।

୧୯୩୭ ମସିହା ନିର୍ବାଚନରେ 'ନବଚେତନା' ମୁଖ୍ୟ ଭାବରେ କାମକଲା । ରୂପରଞ୍ଜନ କଂଗ୍ରେସ ଟିକଟ ପାଇ ଏମ୍. ଏଲ୍. ଏ ହେଲେ । ପାର୍ଲାମେଣ୍ଟାରୀ ସେକ୍ରେଟାରୀ ମଧ୍ୟ ହେଲେ । ବର୍ତ୍ତମାନ ଏହି ପତ୍ରିକାର ଭୂମିକା ତଥା ନୀତିରେ ପରିବର୍ତ୍ତନ କରିବାକୁ ଚାହିଁଲେ । କେଣ୍ଟୁ କାର୍ଯ୍ୟାଳୟର ଛୋଟ ଛୋଟ କଥାରେ ମୁଣ୍ଡ ପୂରାଇ ଅଶାନ୍ତି ସୃଷ୍ଟି କଲେ । ତ୍ୟାଗ ବାହାନାରେ ଗତ ଦୁଇବର୍ଷ ହେବ ପ୍ରେସ କର୍ମଚାରୀମାନେ କୌଣସି ବେତନ ବୃଦ୍ଧିର ସୁବିଧା ପାଇବାରୁ ବଞ୍ଚିତ ଥିଲେ । ନିଜ ନିଜ ଅଭିଜ୍ଞତାରୁ ପ୍ରେସ କର୍ମଚାରୀମାନେ ଭଲକରି ବୁଝିଥିଲେ ରୂପରଞ୍ଜନର ତ୍ୟାଗ ତଥା ସମାଜବାଦର ଅସଲ ଅର୍ଥ କଣ କିଛି

ମହିପାଳର ଭଦ୍ର ବ୍ୟବହାର, ନିଷ୍ଠା ଏବଂ ସଚ୍ଚୋଟ ପଣିଆରେ ମୁଗ୍ଧ ହୋଇ ତାଙ୍କ ଆଶ୍ୱାସନା ଫଳରେ ଏପର୍ଯ୍ୟନ୍ତ ଚୁପ୍ ଚାପ୍ ଥିଲେ । କିନ୍ତୁ ଏବେ ସମସ୍ତେ ବିଗିଡ଼ିଲେ । ମହିପାଳ ମଧ୍ୟ ସମସ୍ତଙ୍କର ଉନ୍ନତି ହେଉ ଏହି କଥାରେ ଜୋରଦେଲା । ରୂପରଞ୍ଜନ ମଧ୍ୟ ମିଠା କଥାରେ ଭୁଲାଇବା ପରିବର୍ତ୍ତେ ସିଧା ସଳଖ ନାଁ କରିଦେଲା ।

ମହିପାଳକୁ ଯେପରି କିଏ ସିଧା ସ୍ୱର୍ଗରୁ ଆଣି ମାଟିରେ କଚାଡ଼ି ଦେଲା । ସେ ସେହି ସଂସ୍ଥାରୁ ଇସ୍ତଫା ଦେଲା । ରୂପରଞ୍ଜନ ବ୍ୟକ୍ତିଗତ ଭାବରେ ମହିପାଳ ସହିତ ସମ୍ପର୍କ ରଖିବାକୁ ଚାହିଁ ଥିଲେ । ସେଥିପାଇଁ ତାକୁ ବହୁତ ଖୋସାମତ କଲେ, ନାନା ପ୍ରକାର ପ୍ରଲୋଭନ ଦେଖାଇଲେ ମାତ୍ର ମହିପାଳ ଶୁଣିଲା ନାହିଁ । କର୍ମଚାରୀମାନେ ଧର୍ମଘଟ କଲେ । ରୂପରଞ୍ଜନ ପୁଲିସ ସାହାଯ୍ୟରେ ଧର୍ମଘଟ ଦମନ କଲା, ବହୁ କର୍ମଚାରୀ ଗିରଫ୍ ହେଲେ ମାତ୍ର ମହିପାଳ ଧରା ପଡ଼ିଲା ନାହିଁ । ଏ ଘଟଣା ପରେ ପରେ ରୂପରଞ୍ଜନ ଧିରେ ଧିରେ ମହିପାଳ ସହିତ ସମସ୍ତ ବ୍ୟକ୍ତିଗତ ସମ୍ପର୍କ ମଧ୍ୟ ତୁଟାଇ ଦେଲେ ।

ଏତେ କ୍ଷମତା, ଏତେ ଲୋକଙ୍କ ଉପରେ ହାକିମି ତଥା ବହୁ ଲୋକଙ୍କ ଆଶ୍ରୟ ଦାତା ମହିପାଳ ଏବେ ଆଉ କିଛି ନୁହେଁ । ଏହି ବିଷୟ ତାକୁ ବେଶି ବାଧିଲା । "ନବଚେତନା" ପୁସ୍ତକ ପ୍ରକାଶନରୁ ତା'ଠାରୁ ଅଧିକ ଲାଭ ରୂପରଞ୍ଜନର ହେଉଥିଲା ।

ଅତ୍ୟନ୍ତ ନୀତିବାଦୀ ଓ ଆଦର୍ଶବାଦୀ ହେବା ଫଳରେ ଗୋଟିଏ ପଇସା ଯୌତୁକ ନ ନେଇ ସେ ତାର ଭାଇର ବିଭାଘର ଜଣେ ପ୍ରକୃତ ସୁନ୍ଦରୀ ଓ ସୁଗୁଣ ଝିଅ ସହିତ କରାଇଲା । ଏମ୍.ବି.ବି.ଏସ୍. ପାଶ କରିବା ପରେ ପରେ ତାକୁ ବିଲାତରେ ଅଧିକା ଡ଼ିଗ୍ରୀ ହାସଲ କରିବାପାଇଁ ବାରମ୍ବାର ପ୍ରେରଣା ଦେଉଥିଲା । କିନ୍ତୁ ଜୟପାଳର ଯେତେବେଳେ ବିଲାତ ଯିବାର ସମୟ ହେଲା ସେତେବେଳେକୁ ସେ ନିଜେ କପର୍ଦ୍ଦକ ଶୂନ୍ୟ ହୋଇ ଯାଇଥିଲା । ଏଥିରେ ମଧ୍ୟ ପରାଜୟ ସ୍ୱୀକାର ନକରି ନିଜ ସ୍ତ୍ରୀର ସମସ୍ତ ଗହଣା ବିକି ସେଇ ଟଂକାରେ ନିଜଭାଇ ଜୟପାଳକୁ ବିଲାତ ପଠାଇଲା । ଏହି ସମୟରେ ଦୁର୍ଭାଗ୍ୟକୁ ତାର ବଡ଼ ଭଉଣୀ ଓ ଭିଣୋଇଁର ହଠାତ୍ ମୃତ୍ୟୁ ହେବାରୁ ତାଙ୍କର ଝିଅ ଶକୁନ୍ତଳାର ଦାୟିତ୍ୱ ଆସି ମହିପାଳ ଉପରେ ପଡ଼ିଲା ।

ମହିପାଳକୁ ନିଜ ପରିବାର, ଜ୍ୟେଷ୍ଠଭାଇର ସ୍ତ୍ରୀ ଓ ପୁତ୍ର, ଭାଣେଜୀ ଏମାନଙ୍କ ଭରଣ ପୋଷଣ ନିମନ୍ତେ କଠିନ ପରିଶ୍ରମ କରିବାକୁ ପଡ଼ିଲା । ମାତ୍ର ମାସିକ ଦେଢ଼ଶହ ଶହେ ପଚସ୍ତରିଟଙ୍କା ଅଧିକା ଉପାର୍ଜନ କରିବା ତା' ପକ୍ଷେ ସମ୍ଭବପର ନଥିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ବହୁ ବେକାର, ସାଧାରଣ ଲୋକେ ଏଇ ଯୁଦ୍ଧ ଫଳରେ ରାତାରାତି ଧନୀ ହୋଇଗଲେ । ମୁନାଫାଖୋର, କଳାବଜାରୀ ବ୍ୟବସାୟୀଙ୍କ ପୁଷ ମାସ ପଡ଼ିଗଲା । ଯୁଦ୍ଧ ସବୁଠାରୁ କ୍ଷତି ଅଧିକ କଲା ମହିପାଳର ।

ଆର୍ଥିକ ଅନାଟନ ସହିତ ଜୟପାଳ ବଳିତରେ ଥିବାରୁ ସବୁବେଳେ ଆତଙ୍କିତ ଥିଲା । ୧୯୪୧ରେ ଜୟପାଳ ବିଦେଶୀ ଡିଗ୍ରୀ ନେଇ କୌଣସି ପ୍ରକାରେ ଫେରି ଆସିଲା । ଭାଇ ଫେରିବାରୁ ମହିପାଳର ଜୀବନ ପଶିଲା । ଭାଇର ଚାକିରୀ ପାଇଁ ନିର୍ଲଜ ହୋଇ ସେ ପୁଣି ଥରେ ରୂପରଞ୍ଜନକୁ ଅନୁରୋଧ କଲା । ରୂପରଞ୍ଜନଙ୍କୁ ଧରି ଜୟପାଳର ଚାକିରି ମେଡ଼ିକାଲ୍ କଲେଜରେ କରାଇ ଭବିଷ୍ୟତର ମୁନେଲୀ ସ୍ୱପ୍ନ ଦେଖି ବିଭୋର ହୋଇଗଲା । କିନ୍ତୁ ଏ ସୁଖ ସ୍ୱପ୍ନ କେବଳ କ୍ଷଣ ସ୍ଥାୟୀ ରହିଲା, ଦି ଯାଙ୍କର ପଡ଼ିଲା ନାହିଁ । ଜୟପାଳର ମଧ୍ୟ ପରିବର୍ତ୍ତନ ହୋଇ ସାରିଥିଲା ।

୧୯୪୨ ଆନ୍ଦୋଳନ ସମୟରେ ମହିପାଳ ଜେଲ୍‌ଗଲା । ବଡ଼ଭାଇର ପରିବାରକୁ ନିରାଶ୍ରୟକରି ସାନଭାଇ ତାର ପରିବାରଙ୍କ ସହିତ ପୃଥକ୍ ହୋଇଗଲା । ଦୁଇବର୍ଷ ପରେ କଠିନ ରୋଗାକ୍ରାନ୍ତ ହୋଇ ଜେଲ୍‌ରୁ ଯେତେବେଳେ ମହିପାଳ ଖଲାସ ହେଲା ସେ ମଣିଷ ଉପରୁ ସମସ୍ତ ବିଶ୍ୱାସ ଓ ଆସ୍ଥା ହରାଇ ସାରିଥିଲା । ଟଙ୍କା ଓ ଧନର ପ୍ରତିଯୋଗୀତାରେ ଦୁନିଆଁ ତା'ଠାରୁ ବହୁତ ଆଗେଇ ଯାଇଛି । ଆଖ ପାଖରେ କେତେ ବିରାଟ ବିରାଟ ପ୍ରାସାଦପୋମ ଘର ତିଆରି ହୋଇ ସାରିଛି । ତା'ର ଜଣେ ଦରିଦ୍ର ପଡ଼ୋଶୀ ପଣ୍ଡିକାର୍ଡ ଇନ୍‌ସପେକ୍ଟର ହୋଇ ଏବେ ବିରାଟ ଧନୀ । ତାର ନିଜ ସାନଭାଇ ଜୟପାଳ ମଧ୍ୟ ଗାଡ଼ୀ ଓ ଘରର ମାଲିକ ହୋଇ ସାରିଥିଲା । ଜେଲ୍‌ରୁ ଖଲାସ ହେବା ପରେ ଜୟପାଳ କେବଳ ଥରେ ଆସି ଠିଆରେ ଠିଆରେ ଭାଇର ଖବର ବୁଝି ଯାଇଥିଲା...... ତା ପରେ ତାର ଆଉ ଦେଖାନାହିଁ । ବାହାର ଲୋକଙ୍କୁ ସେ କହେ "ଭାଇ ମୋ ପାଇଁ କଣ ବା କରିଛନ୍ତି ? ମୋର ବାହାଘର ଯଦି ସେ ଯୌତୁକ ନେଇ କରାଇ ଥାନ୍ତେ ସେଇ ଟଙ୍କାରେ ମୁଁ ବିଲାତ ଯାଇପାରିଥାନ୍ତି; ନିଜର ଆଦର୍ଶବାଦ ପାଇଁ ସିଏ ବୋକାମୀ କରିବ ମୁଁ ସେଥିପାଇଁ ଦାୟୀ ହେବି କାହିଁକି ?"

ବନ୍ଧୁ ରୂପରଞ୍ଜନ, ନିଜର ଭାଇ ଜୟପାଳଙ୍କ ଠାରୁ ଏପରି ଆଘାତ ପାଇ ମହିପାଳ ବିଲ୍‌କୁଲ୍ ଦବିଗଲା । ଯୁଦ୍ଧ ସମୟ ଓ ତା ପରବର୍ତ୍ତୀ ସମୟ କାଳରେ ବଞ୍ଚିବା ପାଇଁ ଯେଉଁ ସଂଗ୍ରାମ କରିବାକୁ ପଡ଼ିଲା, ତା'ଫଳରେ ସେ ଏକଦମ୍ ବଦମିଜାଜ୍ ଓ ଅସ୍ଥିର ଚିତ୍ତ ହୋଇଗଲା । କଣ୍ଟ୍ରେଲ ଓ ସଜ୍ଜନଙ୍କ ପରି ଘନିଷ୍ଠ ବନ୍ଧୁଙ୍କଠାରୁ ମଧ୍ୟ କୌଣସି ପ୍ରକାରେ ସହାଯ୍ୟ ନେବାରେ ତା'ର ଆତ୍ମସମ୍ମାନ ଉପରେ ଆଞ୍ଚ ଆସୁଥିଲା । ଡାକ୍ତର ଗିଲ୍‌ସିଂ ସହିତ ମଧ୍ୟ ବନ୍ଧୁତା ବଢ଼ିଲା । କଣ୍ଟ୍ରେଲ, ସଜ୍ଜନ, ଓ ଗିଲ୍ ତାର ଅସହାୟ ଅବସ୍ଥା ଜାଣି ମଧ୍ୟ ତା' ଆତ୍ମସମ୍ମାନକୁ ଆଘାତ କଲାପରି କିଛି କରୁ ନଥିଲେ ।

ଏପରି ବ୍ୟକ୍ତିକୁ ଯଦି ସର୍ବସାଧାରଣରେ କୌଣସି ଧନୀ ସେଠ କିମ୍ବା ମାଲଦାର ସ୍ତ୍ରୀ ଲୋକର ପଇସା ଖାଇ ଲାଲ ହୋଇଛି ବୋଲି ଯଦି ଅପବାଦ ଦିଆଯାଏ ତେବେ

ତାର ଦଶା କଣ ହେଲା ? ମହୀପାଳ ଏଇ ମିଛ ଅପବାଦ ଶୁଣି ଆଉ ଧୈର୍ଯ୍ୟ ରଖି ପାରିଲେ ନାହିଁ ।

ଗଳିରେ ଯିବା ବେଳେ ମହୀପାଳ ଓ ସଜ୍ଜନ ଚୁପ ରହିଲେ । ମହୀପାଳର ଉଦ୍‌ଭ୍ରାନ୍ତ ରୂପ ଦେଖି ସଜ୍ଜନ ଆସ୍ତେ ପଚାରିଲା······କଥା କଣ ?······ତୁମେ ଆଜି ଏତେ ଉଦାସ ଦେଖାଯାଉଛ କାହିଁକି ?······ମୁଁ ଜାଣେ ତୁମେ ମୋ ଠାରୁ କୌଣସି ସାହାଯ୍ୟ ନେବନି, କିନ୍ତୁ କଣ କିଛି ଟଙ୍କାର ଦରକାର ?"

ମହୀପାଳ ସଜ୍ଜନ କାନ୍ଧରେ ହାତ ରଖି ତା' ଆଡ଼କୁ ନ ଅନାଇଁ ମୁଣ୍ଡ ପୋତି କହିଲା···"ବେଳ ପଡ଼ିଲେ ତୁମ ମାନଙ୍କ ଠାରୁ ସାହାଯ୍ୟ ନେବିନି ତ କାହାଠାରୁ ନେବ ?" କହି ମହୀପାଳ ଚୁପ୍ ହୋଇଗଲା, ସଜ୍ଜନ କାନ୍ଧରେ ହାତ ରଖି ଚୁପଚାପ୍ ଚାଲିବାକୁ ଲାଗିଲା । ଗଳିର ଦୋକାନ ବଜାରର ନିତି ଦିନଆ କାରବାର ଠିକ୍ ଚାଲିଥିଲା ଢେଙ୍କାନାଳରୁ ଚିଙ୍ଗିଶ ଲ ପର୍ଯ୍ୟନ୍ତ ନାନା କଥା ପଡ଼ିଲା... ..୪ଦିନ ପୂର୍ବରୁ ଉଡ଼ା-ଜାହାଜରୁ ଲିଫ୍‌ଲେଟ ପଡ଼ିବା କଥାରୁ ଆରମ୍ଭ କରି ବଜାର ଦର ପର୍ଯ୍ୟନ୍ତ ସବୁ ଆଲୋଚନା ହେଉଥିଲା । ନିର୍ବାଚନ ସମ୍ପର୍କରେ ଆଲୋଚନା ବେଶୀ ହେଉଥିଲା । ଠାଏ ଲୋକେ ନିର୍ବାଚନରୁ ଧର୍ମ ଓ ଜାତି ଉପରେ ଆଲୋଚନା କରୁଥିଲେ । ମହୀପାଳ ହଠାତ୍ ଚିଡ଼ିଉଠି ସଜ୍ଜନକୁ କହିଲା······"ମୁଁ ଯଦି ଦୁଇ ଦିନପାଇଁ କ୍ଷମତାକୁ ଆସନ୍ତି ତେବେ ଆଗେ ଏଇ ଧର୍ମ ଧର୍ମ କରୁଥିବା ଲୋକଙ୍କୁ ଧରି ବଜାରରେ ଜୋତା ମାରନ୍ତି । ଭଣ୍ଡ ପାପିଷ୍ଠ ସବୁ ।"

ସଜ୍ଜନ ହସି କହିଲା......"ହେବ ହେବ ! ଛାଡ଼ ସେ କଥା । ଆଚ୍ଛା ଏଇ ଧର୍ମ ଧର୍ମ କରୁଥିବା ଲୋକେ ତୁମର ଭଲ କଣ କ୍ଷତି କଲେ ?"

ମହୀପାଳ :....... 'ମୋର କେବଳ ନୁହେଁ ଏମାନେ ସମଗ୍ର ମାନବ ଜାତିର ଅଶେଷ କ୍ଷତି କରୁଛନ୍ତି । କିଛି ଅନ୍ଧବିଶ୍ୱାସର ସୁଯୋଗ ନେଇ ଏମାନେ ଏକ ସୁସ୍ଥ ସମାଜର ମୁକ୍ତ ପରମ୍ପରା ତଥା ଚିନ୍ତନର ଗଳା ଚିପୁଛନ୍ତି······ଏମାନଙ୍କ ଅନ୍ଧବିଶ୍ୱାସ ସମସ୍ତ ଜୀବନକୁ ଅମଣିଷର ଦୃଷ୍ଟିରେ ଦେଖୁଛି ।"

ସଜ୍ଜନ କହିଲା :—"ମନେ ହେଉଛି ଶଳା ବାହାଘରରେ କିଛି ଅମଣିଷ ପଣିଆ ତମ ନଜରରେ ପଡ଼ିଛି ବୋଧହୁଏ ଏବଂ ଏ ଘଟଣା ପୃଥ୍ୱୀ ପକ୍ଷକୁ ମାନେ ତୁମ ଶଶୁର ଘର ପଟୁ ଘଟିଛି ! କଣ ଠିକ୍ ନୁହେଁ ?"

ସଜ୍ଜନ କଥାରେ ହଁ କହି ଦି ପାଦଣ୍ଡ ଚୁପ୍‌ଚାପ ଚାଲିବା ପରେ ମହୀପାଳ କହିଲା :—"ଦେଖିବାକୁ ଗଲେ ଏଇ ବ୍ରାହ୍ମଣ ସଂପ୍ରଦାୟ ଦେଶର ଇଂଟେଲେକ୍‌ଚୁଅଲ ଲିଡର ଅଟନ୍ତି । ଅଥଚ ଏମାନଙ୍କ ଠାରୁ ବଳିକରି କ୍ରୂର, ଅହଂକାରୀ ଏବଂ ମୂର୍ଖ ଆଦିବାସୀ

ମାନେ ମଧ୍ୟ ହେବେକ । ମତେ କହୁଛନ୍ତି ଯେ ମୁଁ ଗିଳିଲି ପଇସା ଖାଇଛି, ମୁଁ ରୂପ-ଭଜନର ଟଙ୍କା ଗାଏବ କରିଛି । ମିଥ୍ୟାର ଗୋଟିଏ ସୀମା ଅଛି ।"

ସଜ୍ଜନ ହସି କହିଲା :—"ଖାଉଛୁ ତ ଏଥିରେ ମିଛ ରହିଲା କେଉଁଠି ?"

ମହିପାଲ ଆଜି ପରିହାସ ସହିବା ମୁଡ୍‌ରେ ନଥିଲା । ଯଦି ସେ ସେତେବେଳେ ରାସ୍ତାରେ ଚାଲୁ ନଥାନ୍ତା ତେବେ ସଜ୍ଜନ ଉପରେ ଗର୍ଜି ଉଠିଥାନ୍ତା, ବିରକ୍ତ ହୋଇ କହିଲା :—"ଏ ବଦମାସ ମାନେ ସବୁ ପ୍ରକାର କଦର୍ଯ୍ୟ ଚାରେ ଭରପୂର, ନୀଚରୁ ନୀଚତମ, ଏମାନେ ଲୋକେ ସନାତନ ଧର୍ମର ମହିମା ଗାଉଛନ୍ତି । ମୋତେ ମିଛରେ ବଦନାମ କରୁଛନ୍ତି । ଟଙ୍କା ପାଇଁ ଜୀବନ ଦେଇଥିଲେ ମହିପାଲ ଶୁକ୍ଳ ଆଜି ଲେଖକ ନ ହୋଇ ଲକ୍ଷପତି ହୋଇଥାନ୍ତା ।"

"ଦେଖ, ତୁମେ ଅଯଥା ରାଗି ଯାଉଛ । ଆଗକୁ ଯାଉଥିବା ଲୋକର ଗୋଡ଼ ପଛକୁ ଟାଣିଧରି ଝେଙ୍ଗେଟ ପକାଇବା ହେଲା ଏ ସମାଜର ଲକ୍ଷଣ । ତେଣୁ ଏ ପ୍ରତି-ଯୋଗୀତାରେ ଏଇ ସମସ୍ତ ବିରୋଧ ସତ୍ତ୍ୱେ ତୁମେ କପରି ଆଗକୁ ମାଡ଼ି ଯାଉଛ, ତାହା ନିଜ ଧୈର୍ଯ୍ୟ ବଳରେ ପ୍ରମାଣ କର ।"

ମହିପାଳର ସମସ୍ତ ଉତ୍ତେଜନା ସଜ୍ଜନର ଏହି କଥାରେ ଶାନ୍ତ ହୋଇଗଲା । ସେ ଚୁପ୍‌ଚାପ ମୁଣ୍ଡ ତଳକୁ ପୋତି ଆଗକୁ ଚାଲିଲା, ଟିକେ ନିଶ୍ୱାସ ମାରି କବି ନିରାଳାଙ୍କ ଲେଖା କବିତା ଆବୃତ୍ତି କଲା :—

କରିବାକୁ ହେବ ଏ ତମିର ପାର
ଦେଖିବାକୁ ହେବ ସତ୍ୟର ସୁବର୍ଣ୍ଣ ପୁଷ୍ପ
ଜୀବନ ଜୁଆରେ ଭାସି ଯାଅ ତୁମେ ସାଥୀ
ଆଗରେ ଲଢାଇ ସତ୍ୟ ମିଥ୍ୟାର
ତୁହ ସତ୍ୟ ମାର୍ଗରେ ସ୍ଥିର ନିର୍ଭର—

ମହାକବି ନିରାଲାଙ୍କ ଏହିପଂକ୍ତି ମହିପାଲ ପରି ଜୀବନ ଯୁଦ୍ଧରେ କ୍ଲାନ୍ତଶ୍ରାନ୍ତ ବ୍ୟକ୍ତିକୁ ସଞ୍ଜୀବନୀ ପରି କାମଦେଲା । ଗଳି ଆଗରେ ବଡ଼ ବଜାରର ରାସ୍ତାରେ ନିର୍ବାଚନୀ ପ୍ରଚାର ଖୁବ୍ ଜୋରରେ ଶୁଣା ଯାଉଥିଲା ।

ପାର ହୋଇ ତମିରର ଅନ୍ଧାର
ଦେଖିନଅ ସତ୍ୟର ସୁବର୍ଣ୍ଣ ପ୍ରଭାତୀ
ଜୀବନ ଜୁଆରେ ଭାସି ଯାଇ ସାଥୀ
ହୁଅ ନିର୍ଭୀକ, ହୁଅ ସତ୍ୟରେ ଅଗ୍ରଣୀ

# ଅଠର

ଆଜ କନ୍ୟା ଆସିନାହିଁ । ସେ କେଉଁଠି ରହିବାର ବ୍ୟବସ୍ଥା କଲ କି ନାହିଁ କେଜାଣି ? ଥରେ ଯାଇ ତାକୁ ଦେଖି ଆସିଲେ କପରି ହୁଅନ୍ତା । ଅସୁବିଧାରେ ପଡ଼ିଛି, ସ୍ତ୍ରୀଲୋକ ଆତ୍ମସମ୍ମାନ ଜ୍ଞାନ ପ୍ରବଳ ··ତେଣୁ ତାର ଆତ୍ମସମ୍ମାନ ଉପରେ ଆଘାତ ନଆଣି ତାକୁ ଅସୁବିଧାରୁ ରକ୍ଷା କରିବା ମାନବିକ ଧର୍ମ ।

ଗାଡ଼ି ନେଇ ସଜ୍ଜନ କନ୍ୟା ରହୁଥିବା ବସ୍ତିକୁ ଗଲ । ସେଠାରେ ପହଞ୍ଚି ଜାଣିଲା ଯେ ଗତ ରାତିରୁ ସେ ତା'ର ଜିନିଷ ପତ୍ର ନେଇ କାହା ଗାଡ଼ିରେ ଯାଇଛି !! ସେଇ ଅପରିଚିତ ଗାଡ଼ିବାଲା ଉପରେ ସଜ୍ଜନର ଇର୍ଷା ହେଲା · ତା'ପରେ ଏଇ ଅବସାଦର ହଠାତ୍ ବ୍ରହ୍ମଚର୍ଯ୍ୟ କଥା ତାର ମନେ ପଡ଼ିଲା । ସ୍ତ୍ରୀଲୋକ, କଣ ବା ମୋ ଦ୍ଵାରା ହୋଇ ପାରିବ ? କିନ୍ତୁ ବ୍ରହ୍ମଚର୍ଯ୍ୟ ବ୍ରତଧାରୀ ସଜ୍ଜନର ମନ କନ୍ୟାର ଆକର୍ଷଣରେ ବିକଳ ହେଲା ।

ସେଠାରୁ ଫେରି ସେ କର୍ଣ୍ଣେଲର ଦୋକାନକୁ ଆସିଲା । ମହିପାଲ ମଧ୍ୟ ସେଠାରେ ଥିଲା । ସେ କର୍ଣ୍ଣେଲଙ୍କୁ ସଜ୍ଜନ ଓ ସାଲୀଗ୍ରାମଙ୍କ ମଧ୍ୟରେ ହୋଇଥିବା ବୁଝାମଣା କଥା କହୁଥିଲା । ତେଣୁ କର୍ଣ୍ଣେଲ ମଧ୍ୟ ସଜ୍ଜନ ଉପରେ ରାଗି ଯାଇ ଥିଲା । ତାକୁ ଦେଖୁ ଦେଖୁ କହିଲା .···"ତୁମେ କାହା ଅନୁମତିରେ ଏପରି କାର୍ଯ୍ୟ କଲ ?" ମୋର କାମ ସବୁ ତୁମେ ନଷ୍ଟ କରି ଦେବାକୁ ଚାହୁଁ ଛ ନା ?"

କର୍ଣ୍ଣେଲ ବିଗିଡ଼ିବା ପରେ ସଜ୍ଜନର ମନେ ହେଲା ଏ କାର୍ଯ୍ୟ କରିବା ତା ପକ୍ଷେ ଠିକ୍ ହୋଇନାହିଁ । କିନ୍ତୁ ଯେ ହେତୁ ସେ ପ୍ରଥମେ ସେ ଭୁଲ କରିସାରି ଥିଲା, ସେଇଭୁଲ କଥା ଉପରେ ଜୋର ଦେଇ ଯୁକ୍ତିକଲା । ବିଶେଷତଃ ମହିପାଲ ଆଗରେ ସେ ତାର ଭୁଲ ସ୍ଵୀକାର କରିବା ପାଇଁ ଚାହୁଁ ନଥିଲା । ତେଣୁ ମୁହଁ ଟାଣ କରି ଦୃଢ଼ ସ୍ଵରରେ କହିଲା :—' ତୁମେ ଯଦି ଏଥିରେ ଯୋଗ ଦେବାକୁ ନ ଚାହଁ ତେବେ ଯୋଗ ନ ଦିଅ । ମୁଁ ଯାହା କରିଛି ଖୁବ୍ ବୁଝି ବିଚାରି କରିଛି ।"

"ଠିକ୍ କରିଛ ନା ଆଉ କିଛି"—କର୍ଣ୍ଣେଲ କହିଲା :—"ମୁଁ ଜାଣିବାକୁ ଚାହେଁ ତୁମେ କଣ ପାଇଁ ଏପରି କଲ ? ଜାନକୀ ଶରଣ ଓ ସାଲୀଗ୍ରାମକୁ ସକାଳୁ ତୁମ ଘରେ ଦେଖି ହୃଦୟ ତରଳି ଗଲାପରି ? ଏତିକ ମାତ୍ର ମୁଣ୍ଡରେ ପଶିଲାନି ଯେ କଣ୍ଟ୍ରୋଲ ଯେଉଁ କେଣ୍ଟ ଖୋଲିଛି ଏଥିରେ ତୁମର ଦୋକାମୀ ଦ୍ଵାରା କେତେ କ୍ଷତି ହେବ ?"

"ବନ୍ଦୋ" ଶବ୍ଦ ଶୁଣି ସଜ୍ଜନ ଚମକ ଉଠିଲା । 'କେଶ୍' କଥାରେ ବୁଝିଲା ଯେ କର୍ଣ୍ଣେଲ କନ୍ୟାକୁ ବନ୍ଦୋ ବୋଲି ଡ଼ାକୁଛି । କର୍ଣ୍ଣେଲର ଏହି ସ୍ନେହ ଦେଖି ତାକୁ ଭଲ ଲାଗିଲା । କିନ୍ତୁ କନ୍ୟା କାହିଁ ? ପୁଣି ନୂଆ ଚିନ୍ତା ମନରେ ହେଲା, ଗ୍ଭଟରେ ଏକ ନୂଆ ଯନ୍ତ୍ରଣା ଅନୁଭବ କଲା । ନିଜ ଭୁଲ୍ କାମ ପାଇଁ ଲଜ୍ଜିତ ହେଲା । ସକାଳେ ସାଲୀଗ୍ରାମଙ୍କ ପ୍ରସ୍ତାବରେ ସ୍ୱୀକାର ଦେବାବେଳେ କନ୍ୟା କଥା ଭାବିଥିଲା ତଥାପି ସେମାନଙ୍କ କଥାରେ ସେ ରାଜି ହୋଇଗଲା । କନ୍ୟା ଚିନ୍ତାରେ ତା' ମନ ଅଶାନ୍ତ ଥିଲା କିନ୍ତୁ କାହିଁକି ? ବ୍ରହ୍ମଚର୍ଯ୍ୟ ହିଁ ଏକ ମାତ୍ର ପନ୍ଥା......ଏଇ ଯେଉଁ ମନରେ ଏତେ ଉଦ୍‌ବେଳତା ସୃଷ୍ଟି ହେଉଛି ସେଥିରେ ନିଶ୍ଚୟ କିଛି ବୁ ଇଚ୍ଛା ରହିଛି ତ ? ହଠାତ୍ କାହିଁକି ବା ମୁଁ ନିଜର ମାନସିକ ଭାରସାମ୍ୟ ହରାଉଛି ?...କାହା ପାଇଁ ?...। କାରଣ ଠିକ୍ ବୁଝାଗଲା ନାହିଁ, ମନର ଅବସ୍ଥା ଠିକ୍ ଯେପରି ଜଟା ଫଲର ପାଖଡ଼ା ପରି ଏଠି ସେଠି ବିକ୍ଷିପ୍ତ, ସମସ୍ତ ଏକାଗ୍ରତା ନଷ୍ଟ ହୋଇ ଯାଉଛି—। ବିରକ୍ତ ଆସିଲା ! କର୍ଣ୍ଣେଲଙ୍କୁ କହିଲା......"ମୁଁ ସମସ୍ତ କିଛି ଭଲକରି ଚିନ୍ତା କରିଛି । ଶତ୍ରୁ ସହିତ ମଧ୍ୟ ଭଲ ସମ୍ପର୍କ ରଖିବା ହିଁ ହେଲା ଅସଲ ମଣିଷ ପଣିଆ, ଏଇଟା ହିଁ ଆମର ଭାରତୀୟ ସଂସ୍କୃତି । ଆମେ ଆମର କେଶ୍‌ରେ ଲଢ଼ି, ଏମାନଙ୍କ ସହିତ ବୁଝାମଣା ମଧ୍ୟ କରି ପାରିବା । ଆପଣ ମାନଙ୍କ ଦୃଷ୍ଟି କୋଣ ସଂକୀର୍ଣ୍ଣ କିନ୍ତୁ ଜଣେ ଆର୍ଟିଷ୍ଟ ହୋଇ ମୁଁ ଏପରି ସଙ୍କୀର୍ଣ୍ଣତାକୁ ପ୍ରଶୟ ଦେବିନାହିଁ । ଏତିକି କହିବା ପରେ ସଜ୍ଜନ ମନରେ ଆତ୍ମସନ୍ତୋଷ ଆସିଲା ।

ବାଃ ବାଃ ! ମୋ ସହିତ ଏତେଦିନ ରହିବାର ପ୍ରଭାବ ଶେଷରେ ତୁମ ଉପରେ ଏପରି ପଡ଼ିଲା ? ମହିପାଲ କ୍ଷୁବ୍ଧ ହୋଇ କହିଲା ।" ଯଦି ଏହି କଥା ଏହି ସବୁ ତୁମ ହୃଦୟର କଥା ହୋଇଥାନ୍ତା ତେବେ ଗାନ୍ଧୀର ଶ୍ରଦ୍ଧା ସହିତ ତୁମ ଗୋଡ଼ତଳେ ପଡ଼ିଥାନ୍ତି ।"

ସଜ୍ଜନ ଲଜ୍ଜା ଓ କ୍ରୋଧରେ ନାଲିପଡ଼ିଗଲା । ମନର ସମସ୍ତ ଭାବ ପ୍ରବଣତା ମୁହଁ ଉପରେ ପ୍ରକାଶ ପାଇଲା । ଠିକ୍ ସେତିକିବେଳେ ଘର ଭିତର ପିଣ୍ଡାରୁ ଓହ୍ଲାଉଥିବା ବେନକନ୍ୟା ଉପରେ ଦୃଷ୍ଟି ପଡ଼ିଲା ।

ଏମାନେ କର୍ଣ୍ଣେଲର ପ୍ରାଇଭେଟ ରୁମ୍ ଅର୍ଥାତ ଔଷଧ ଦୋକାନ ପଛପଟ ଘରେ ବସିଥିଲେ । ସଜ୍ଜନ ଆରାମ ଚଉକୀରୁ ଉଠି ପର୍ଦ୍ଦା ଆଡ଼େଇ କନ୍ୟାକୁ କହିଲା :—। "ତୁମେ ଏଠି ? ମୁଁ ତୁମକୁ ସେଠି ଖୋଜି ଫେରି ଆସିଲି ।"

କନ୍ୟା ମୁରୁକି ହସିଲା, ପରଦା ଆଡ଼େଇ ଘର ଭିତରେ ପଶିଲା । ସଜ୍ଜନ ବାଟରୁ ପାଖେଇ ଗଲା । କନ୍ୟାକୁ ଦେଖି ମହିପାଲ ନମସ୍କାର କଲା । କର୍ଣ୍ଣେଲ ହସି ହସି କହିଲା :—"ତୁମକୁ ଏଠି ଦେଖି ଏଇ କଳାକାରଙ୍କ ବୁଦ୍ଧି ଲୋପ ପାଇଗଲା । ଆଜି ଏକ ବିରାଟ କୃତିତ୍ୱ କରି ଆସିଛନ୍ତି ! ଓଲଟି ଲେକ୍‌ଚର ଝାଡ଼ୁଛନ୍ତି ଆମ ଉପରେ ।"

ସଜ୍ଜନ ପୁଣି ବିରକ୍ତ ହେଲା କିନ୍ତୁ ପ୍ରକାଶ କଲାନି । କୋଣରୁ ଚଉକି ଟାଣି କନ୍ୟା ବସିଲା ଏବଂ କହିଲା :—"କର୍ଣ୍ଣେଲ ଭାଇ ମତେ ଉପରେ ରହିବାର ବ୍ୟବସ୍ଥା କରିଛନ୍ତି । ହଠାତ୍ ପହିଲୁ ଗାଡ଼ିରେ ଜିନିଷ ଲଦି ଜବରଦସ୍ତି ଏଠାକୁ ନେଇ ଆସିଲେ ।

କର୍ଣ୍ଣେଲ ହସି ହସି ମହିପାଳକୁ କହିଲା :—"ପ୍ରଥମେ ଯେ ମୋତେ ଭାରି କମ୍ୟୁନିଷ୍ଟ୍ ଆଦର୍ଶବାଦ ଦେଖେଇଲା, ନାନା ପ୍ରକାର ଯୁକ୍ତି ତର୍କ କଲା । ମୁଁ ସିଧା କହିଲି ଯୁକ୍ତି ଆଉପରେ କରିବୁ ପ୍ରଥମେ ନିଜ ଜିନିଷ ସଜାଡ଼ି ଗାଡ଼ିରେ ରଖ । ମତେ ଯଦି ଭାଇ କରିଛୁ ତେବେ ମୋ ହୁକୁମ ନିଶ୍ଚୟ ମାନିବାକୁ ହେବ । କହିଲି ଭଲା ହରିଜନ ବସ୍ତିରେ ସେ ରହି ପାରିବ ? ବୁଢ଼ାକୁ ତ ସ୍ବାର ବାପ ଓ ସାଲୀଗ୍ରାମ ଏକଠି ଜୁଟିଛନ୍ତି ଯେ କୌଣସି ପ୍ରକାରେ ପଇସା ପଇ ଦେଇ ଗୁଣ୍ଡା ଲଗାଇ ସ୍ବାକୁ ହରଣ କରିବା ତାଙ୍କର ଉଦ୍ଦେଶ୍ୟ । କୌଣସି ଭଦ୍ର ମହିଳା ଏ ପରିବେଶରେ ଦଣ୍ଡେଭଲି ରହି ପାରିବ ?

"ଏଇଟା ଭଲକଥା ହେଲା । ତୁମର ଉପର ଘର ଏମିତରେ ବି ଖାଲି ପଡ଼ିଥିଲା ।"

"ଆରେ କବିପନି ଢ଼ବଲ, ଖାଲି ବୋତଲ' ଆଳୁକୁଚ, ମାଳକୁଚ, ପୁର୍ଣ୍ଣିଥିଲା । ଆଜି ସକାଳୁ ସବୁ ଉଠେଇ ପଛପଟ ଘୋଡ଼ା ଶାଳକୁ ପଠାଇ ଦେଲି । ସ୍ବାଙ୍କ ପାଇଁ ଯଥେଷ୍ଟ ହୋଇଗଲା । ଉପରେ ଗୋଟିଏ ରୁମ ଗୋଟିଏ ବାଲକୋନି ଏବଂ ଆଟାଚଡ୍ ବାଥରୁମ ।"

ସଜ୍ଜନଙ୍କୁ ଗୋଟିଏ କଥା ଭାରି ଆଶ୍ଚର୍ଯ୍ୟ ଲାଗିଲା......କନ୍ୟା କିପରି କର୍ଣ୍ଣେଲର ଆଶ୍ରୟରେ ରହିବା ପାଇଁ ରାଜି ହୋଇଗଲା ? ଅଥଚ ସଜ୍ଜନର ଏଇ ପ୍ରସ୍ତାବକୁ ଯେ ନାକଚ କରି ଦେଇଥିଲା କାହିଁକି ? ସମାଜ ଯଦି ସଜ୍ଜନ ଓ କନ୍ୟାକୁ ଏକାଠି ରହିବାର ଦେଖି ବଦନାମ କରିଥାନ୍ତେ ତା ହେଲେ କର୍ଣ୍ଣେଲ ଓ କନ୍ୟାକୁ କଣ ବଦନାମ୍ କରିବେ ନାହିଁ ? ତେବେ ତାକୁ ଅବିଶ୍ୱାସ କରିବାର ହେତୁ କଣ ? ସଜ୍ଜନର ମାନସିକ ଅବସ୍ଥା ଝଡ଼ରେ ହଲୁଥିବା କଦଳୀ ପତ୍ର ପରି ଥିଲା । ସେ ପ୍ରତି ମୁହୂର୍ତ୍ତରେ ଅପେକ୍ଷା କରୁଥିଲା କେତେବେଳେ ସାଲୀଗ୍ରାମ ସହିତ ତାର ବୁଝାମଣାର କଥା କର୍ଣ୍ଣେଲ ଆରମ୍ଭ କରିବ । କନ୍ୟା ସମକ୍ଷରେ ଏଇ ପରିସ୍ଥିତିର ସମ୍ମୁଖୀନ ହେବା କଷ୍ଟକର । ନିଜ ଉପରେ ତଥା କର୍ଣ୍ଣେଲ, ମହିପାଳ, କନ୍ୟା ଏପରିକି ଜାନକୀ ଶରଣ ଓ ସାଲୀଗ୍ରାମ – ସମସ୍ତଙ୍କ ଉପରେ ତା'ର ପ୍ରଚଣ୍ଡ କ୍ରୋଧ ଜାତ ହୋଇଥିଲା । ସେଇ ମୁହୂର୍ତ୍ତରେ ସେ ଘରଛାଡ଼ି ପଳାଇବାକୁ ତାର ଇଚ୍ଛା ହେଉଥିଲା, ମାତ୍ର ତାର ଗୋଡ଼ ଯେପରି ଅସାଡ଼, ସମସ୍ତ ଶରୀରର ଶକ୍ତି କ୍ଷୀଣ ଅବସ୍ଥାରେ ଆରାମ ଚଉକୀରେ ବସି ରହିଥିଲା ।

କର୍ଣ୍ଣେଲ କନ୍ୟାକୁ ପଚାରିଲା :—"ବନ୍ନୋ କଣ କୁଆଡ଼େ ବାହାରିଛୁ ?"

"ହଁ—ବର୍ତ୍ତମାନ ଯିବା ଦରକାର ।"

"ତୁ ଯେତେବେଳେ ଫେରିଲେ ବି କିଛି ଅସୁବିଧା ନାହିଁ, ମୁଁ ଦରଓ୍ୱାନକୁ କହି ଦେଇଛି । ଏପଟ କବାଟରେ ଆଉ ଗୋଟିଏ ତାଲା ଦିଆଯିବ । ତୁ ଫେରିଲେ ଦରଓ୍ୱାନକୁ ଉଠାଇ ଖୋଲିବୁ ।"

କନ୍ୟା ହସିଲା—ସେକେଣ୍ଡ ସୋ ସିନେମା ଯିବାର ଆଭ୍ୟାସ ମୋର ନାହିଁ ଭାଇ ।"

ମହିପାଲ ପ୍ରଥମ କରି କନ୍ୟାକୁ ସମ୍ବୋଧନ କରି କହିଲା :—ତୁ ବୁଝି ପାରିଲୁନି ଭଉଣୀ, ଏ କର୍ଣ୍ଣେଲ ସବୁବେଳେ ଦ୍ୱି ଅର୍ଥରେ କଥା କୁହେ । ସେ ଭାବୁଛି କମ୍ୟୁନିଷ୍ଟ୍ ଝିଅମାନେ ରାତିରେ ବା, କଣ୍ଟୁଆ ଧରି ବୁଲନ୍ତି ।"

କନ୍ୟା ହସି ଉଠିଲା, କର୍ଣ୍ଣେଲ ମଧ୍ୟ ଲଜ୍ଜିତ ଭାବରେ ହସି କହିଲା "ସେ ଲେଖକ; କଳାକାରଙ୍କ କଥା କେବେ ହେଲେ ଶୁଣିବୁ ନି ବନ୍ଦୋ । ଏମାନେ ସବୁବେଳେ ମୂର୍ଖତା ପୂର୍ଣ୍ଣ କଥା କହି ନାଁ କରନ୍ତି ।

କନ୍ୟା ହିଁଯୁଥାଏ ମାତ୍ର ନଜାଣିଲା ପରି ସଜ୍ଜନର ବ୍ୟସ୍ତତା ପୂର୍ଣ୍ଣ ଚେହେରାକୁ ଭଲଭାବରେ ଦେଖୁଥାଏ । ସଜ୍ଜନ ମୁଣ୍ଡ ପୋତି ବସିଥିଲା । କର୍ଣ୍ଣେଲ ଓ ମହିପାଲ, ଦୁଇ ଜଣଙ୍କ ଦୃଷ୍ଟି କନ୍ୟା ଆଡ଼କୁ ଥିଲା । କନ୍ୟା ଓ ସଜ୍ଜନକୁ ଏପରି ଦେଖିବା ତଥା ସଜ୍ଜନର ନୀରବତା ଓ ବ୍ୟସ୍ତତା ମହିପାଲ ମନରେ କବିତା ଲେଖିବାର ପ୍ରେରଣା ଦେଉଥିଲା । "ଭଲ ପଇବାର ଗୃହାଣୀରେ ବି କେତେ ଅଫେରନ୍ତ ଭାଷାଥାଏ", ······ଏହି କଥା ଭାବୁ ଭାବୁ ସଜ୍ଜନ ପ୍ରତି ତାର ଈର୍ଷାହେଲା ଯଦି ଓ କନ୍ୟା ପ୍ରତି ତା' ମନରେ କୌଣସି ପ୍ରକାର କୁ ଭାବନା ନଥିଲା । ପରେ ମନେ ହେଲା ସଜ୍ଜନ ଓ ସାଲୀଗ୍ରାମ ପ୍ରସଙ୍ଗରେ କଥା ଆରମ୍ଭ କରି କନ୍ୟା ମନରେ ସଜ୍ଜନ ପ୍ରତି ବିରୋଧ ଭାବ କରାଇବା । କିନ୍ତୁ ନିଜର ଏଇ ଇଚ୍ଛା ଦମନ କରି ପଚାରିଲା "ତୋ କେଶ୍ ଖବର କଣ ?"

କନ୍ୟା ଏ ପ୍ରଶ୍ନ ଶୁଣି ଚମକି ଉଠି ସଜ୍ଜନ ଉପରୁ ଦୃଷ୍ଟି ହଟାଇ ମହିପାଲକୁ ଅନାଇଲା । ସେ ଉତ୍ତର ଦେବା ପୂର୍ବରୁ କର୍ଣ୍ଣେଲ ଆଗୁଆ କହି ପକାଇଲା······"ମୁଁ ବର୍ତ୍ତମାନ ଓକିଲମାନଙ୍କ ସହିତ ପରାମର୍ଶ କରୁଛି । ସ୍ୱାର ଭାଉଜଙ୍କର ଦୁଇଜଣ ଆତ୍ମୀୟ ଗତକାଲି ଆସିଥିଲେ । ସେମାନଙ୍କୁ ମୁଁ ସୂର୍ଯ୍ୟ ହିନ୍ଦୁ ହୋଟଲରେ ରଖିବାର ବ୍ୟବସ୍ଥା କରି ଦେଇଛି । ଆଜି ମେ ଷ୍ଟେଟ ଗାଡ଼ି ଦେଇ ସ୍ୱା ସାଙ୍ଗରେ ସେମାନଙ୍କୁ ଇମାମବାଡ଼ା ଦେଖିବା ପାଇଁ ପଠାଇ ଦେଇଥିଲି । ସଜ୍ଜନ ଭାଇ ଗୋଟିଏ ଭଲ ଖବର ଅଛି···ବନ୍ଦୋ ଆଜିକାଲି ଡ୍ରାଇଭିଂ ଶିଖୁଛି । ଆଜି ଶିଉମଙ୍ଗଲ ଡ୍ରାଇଭର କହୁଥିଲା ବହୁତ ଜଲଦି ସେ ଶିଖି ପାରିବ ।"

ସଜ୍ଜନ ମୁହଁ ଟେକି ଅନାଇଲା । କନ୍ୟା ତା' ଠାରୁ ବାହାଦୂରୀ ଓ ପ୍ରଶଂସା ପାଇବା ଆଶାରେ ସିଧା ତା ମୁହଁକୁ ଅନାଇଁ ହସିଲା । ଗ୍ରେଟ ଘରର ଅଳପ ଆଲୋକରେ ଗୋଟିଏ ମୁହୂର୍ତ୍ତି ପାଇଁ ବୃଦ୍ଧଗୋଟି ଆଖିରେ କେବଳ ଦୁହେଁ ଦୁହିଁଙ୍କୁ ହିଁ ଦେଖିପାରିଲେ । ସଜ୍ଜନର ସମସ୍ତ ମାନସିକ କଷ୍ଟର ଅବସାନ ହୋଇଗଲା ବସ୍ତୁତ ହାଲୁକା ଲାଗିଲା । କର୍ଣ୍ଣେଲ ମହୀପାଳ ଉଭୟଙ୍କୁ ଏ ଦୃଶ୍ୟ ଉପଭୋଗ କଲେ । ମହୀପାଳ ଆଶ୍ଚର୍ଯ୍ୟ ଖିଆଲ ହେଲା ସବଳ ଏ ଟିଅ ମାନେ ଭାରି ବୁଦ୍ଧିକ, ସଜ୍ଜନକୁ ବାହା ହେଲେ କମ୍ୟୁନିଷ୍ଟ ଆଦର୍ଶବାଦରୁ କାପିଟାଲିଷ୍ଟ ଆଦର୍ଶବାଦକୁ ନିଜର କରିବାକୁ ହେବ । ଏବେ ଠାରୁ ଗାଡ଼ୀ ଡ୍ରାଇଭିଂ ଶିଖିବା ଆରମ୍ଭ କରି ଦେଲାଣି ।

କର୍ଣ୍ଣେଲ ସମସ୍ତଙ୍କର ଧ୍ୟାନ ଆକର୍ଷଣ କରି ନିଜର କଥା ଖୋଲି ରଖିଥାଏ..."ମୁଁ ଅଟେ ବ୍ୟାରିଷ୍ଟର ଧ୍ୟାନ ସହିତ ପରାମର୍ଶ କରିନେବି । ସେ ପରାମର୍ଶ ଦେବାରେ ସବୁଠାରୁ ବିଚକ୍ଷଣ ଏଇଟା କେବଳ ସାଳୀଗ୍ରାମ ବିରୁଦ୍ଧରେ ଯେ ଲଢ଼ାଇ ତା ନୁହେଁ ଆମକୁ ଆଖି ଆଗରେ ରଖି ନିର୍ବାଚନର ସମସ୍ତ କାର୍ଯ୍ୟକ୍ରମ ସ୍ଥିରିବ । ଉଡ଼ାଜାହାଜ ଯେଉଁ ଲିଫଲେଟ ଫୋପଡ଼ା ହେଲା ତା'ର ପ୍ରଭାବ ମୋ ନିଜ ଅନୁମାନରୁ ଅଧିକ ହେଲା । ସାରା ସହରରେ ଏମାନଙ୍କ ନିନ୍ଦାକଳାପ ଆଉ ଅଛପା ରହିଲା ନାହିଁ, କିନ୍ତୁ ବର୍ତ୍ତମାନ ତ ମୁଁ ଶ୍ରୀଦାଦା ଗୁରୁଙ୍କ ପାଖରେ ପୂଜା ଉତ୍ସର୍ଗ କରିବି । ତାଙ୍କର କୃପାରୁ ଗତକାଲି ଏପରି ସାଙ୍ଘାତିକ ଓ ମୂଲ୍ୟବାନ୍ ପ୍ରମାଣ ମୋତେ ମିଳିଛି ଯେ ସେଥିରେ ବିରୋଧୀ ଦଳର ସବୁ କୁଆଡ଼େ ଉଡ଼ିଯିବ । (ହଠାତ୍ କଣ ଭାବି କଥାର ମୋଡ଼ ଘୁରାଇ ନେଲା) ଆଚ୍ଛା ଠିକ୍ ଅଛି ସଜ୍ଜନ, ଆମେ ତୁମର ଓ ସାଳୀଗ୍ରାମଙ୍କ ମଧ୍ୟରେ ହୋଇଥିବା ବୁଝାମଣା ଗ୍ରହଣ କଲୁ । ଏଇ ନିର୍ବାଚନୀ ଲଢ଼େଇରେ ଜନସାଧାରଣଙ୍କୁ ବୁଝାଇ ବାରେ ଖୁବ୍ ଭଲ ଅବସର ଆମକୁ ମିଳିବ । ଏମାନେ ଆମକୁ ଯାହା ଡୁବାଇବେ ବୋଲି ଚାହିଁଛନ୍ତି ଓଲଟି ଆମେ ତାଙ୍କୁ ହାତି ପଙ୍କରେ ଲାଖିଲା ପରି ଅସଲ ବେଳରେ ଡୁବାଇ ଦେବା । ଆଜି କାଲି ଭିତରେ ତ ନିଶ୍ଚୟ ସାଳୀଗ୍ରାମ ମୋତେ ଭେଟିବ । ସେତେବେଳେ ଖୁବ୍ ଜୋରରେ ଗାଳି ଗୁଲଜ କରିବା ତୋ ପରି ଜଣେ ସରଳ ପ୍ରକୃତିର କଳାକାରକୁ କଥାରେ ଭଣ୍ଡାଇ ମୋତେ ବଦନାମ କରିବ ବୋଲି ଭାବିଛି' କହି ପରସ୍ତେ ଆଗ ଶୋଧିବ, ତାପରେ କହିବ, ମାନେ ଏଇଲେ ସଜ୍ଜନ ବାବୁ ଆମର ଯେଉଁ କଥା କହୁଥିଲେ ଶତ୍ ସହିତ ଭଲ କାମରେ ଆନ୍ତରିକ ସହଯୋଗ କରିବା ହିଁ ହେଲା ଅସଲ ମଣିଷ ପଣିଆ ।"

ଏ କଥାରେ ସଜ୍ଜନ ଖୁସି ହୋଇ ଗଲା, ବନକନ୍ୟା ପ୍ରଶ୍ନ ସୂଚକ ଆଖିରେ ଅନାଇଲା ଏବଂ କର୍ଣ୍ଣେଲର ସମର୍ଥନକୁ ମହୀପାଳ ପସନ୍ଦ କଲାନାହିଁ । ସେ କନ୍ୟାକୁ କଥାର ମୂଳ କହିବାକୁ ଆରମ୍ଭ କଲା..."ଇଏ ବୋଧହୁଏ କିଛି ଜାଣନ୍ତି ନାହିଁ, କଥା କଣକି ଆଜି ଆପଣଙ୍କ ସାଳୀଗ୍ରାମ ବାବୁ ଓ ସହରର ଜଣେ ବିଖ୍ୟାତ ସୁଦଖୋର ମହାଜନ ସକାଳୁ ସଜ୍ଜନ

ବାବୁଙ୍କୁ ଖୁସି କରିବା ପାଇଁ ତାଙ୍କ ଚିତ୍ର ଗୁଡ଼ିକର ଏକ ଏକକ ପ୍ରଦର୍ଶନୀର ଆୟୋଜନ କରିବେ ବୋଲି କହୁଛନ୍ତି, ସେମାନେ ଭାବୁଛନ୍ତି ଯେ ଜଣେ ସରଳ କଳାକାରଙ୍କୁ ଏହିପରି କଥାରେ ହିଁ ନିଜ ପଟକୁ ଟାଣିନେବେ..........ଏବଂ ଏ କାର୍ଯ୍ୟରେ ସେମାନେ ସଫଳ ମଧ୍ୟ ହୋଇଗଲେ ।"

ଏ କଥାରେ କନ୍ୟାର ମୁହଁ କଳା ପଡ଼ିଗଲା, ସଜ୍ଜନ ଅପମାନିତ ହୋଇ ଠିଆ ହୋଇଗଲା । କର୍ଣ୍ଣେଲ ସଙ୍ଗେ ସଙ୍ଗେ ମହୀପାଳ କଥାର ଭୁଲ ସୁଧାରି ନେଇ କହିଲା...'ତୁ କଥାଟା ଭୁଲ ଭାବରେ କହୁଛୁ, ସଜ୍ଜନ ଠିକ୍ ଭାବୁଛି । ପ୍ରକୃତରେ ଆମ ମନ ସଙ୍କୀର୍ଣ୍ଣ ଥିଲା । ବନକନ୍ୟାର ଜିଜ୍ଞାସୁ ମନକୁ ପ୍ରବୋଧ ଦେବାପାଇଁ କର୍ଣ୍ଣେଲ ପୁଣି କହିଲା......"ସଜ୍ଜନ କଥା ଷୋଳଅଣା ମୋ ମନକୁ ପାଉଛି, କଥା କଣ କି ସେମାନେ ଯେତେବେଳେ ଗୋଟାଏ ଭଲ କାମ କରିବାର ପ୍ରସ୍ତାବ ନେଇ ଆସିଲେ ସେତେବେଳେ ରାଜି ହୋଇ ଗଲେ ମାନବତା ବୋଧଦୃଷ୍ଟିରୁ ତୁମକୁ ଯେମିତି ସାହାଯ୍ୟ କରିଛନ୍ତି ଠିକ୍ ସେପରି ରାଜନୈତିକ ସମସ୍ତ ଭେଦା ଭେଦ ଭୁଲିଯାଇ ଯେ କୌଣସି ପ୍ରକାର ମହତ୍ କାମରେ ସବୁର ସହିତ ସାମିଲ ହେବା କଥାରେ ସଜ୍ଜନ ବିଶ୍ୱାସ କରନ୍ତୁ ଏଠି ଭୁଲ ରହିଲା କେଉଁଠି ?"

କନ୍ୟା ଆଖିରେ ଆଶଙ୍କା ତଥା ସମର୍ଥନ ଉଭୟର ମିଶାମିଶି ଭାବ ପ୍ରକାଶ ପାଇଲା । ସଜ୍ଜନ ତା ସହିତ ଦୃଷ୍ଟି ବିନିମୟ କରିବା ନିମନ୍ତେ ବିକଳ ହେଉଥିଲା । ଭଲ ପାଇବାରେ ଆଖି ନିକଟରେ ପାଟି ହାରିଯାଏ । ଗୁର ଆଖିର କଥାରେ ଯେତେ ଶକ୍ତି ଥାଏ ହଜାରେ ପାଟିରେ ଏକ ସାଥିରେ ସେତିକି ଶକ୍ତି ନଥାଏ । ନିଜ ଦୃଷ୍ଟି ସହିତ କନ୍ୟାର ଦୃଷ୍ଟି ମିଳାଇ ସଜ୍ଜନ କହିଲା......"ସେମାନେ ମୋର ଚିତ୍ରର ପ୍ରଦର୍ଶନୀ କରିବା ନିମନ୍ତେ ଆସିଥିଲେ । ସେମାନଙ୍କ ଉଦ୍ଦେଶ୍ୟ ମୁଁ ଶୀଘ୍ର ଜାଣି ଗଲି । ମୁଁ ସେମାନଙ୍କ ପ୍ରସ୍ତାବ ବଦଳରେ ଏକ ନୂଆ ପ୍ରସ୍ତାବ ସେମାନଙ୍କୁ ଦେଲି । ଯେହେତୁ ଏଇ ପ୍ରଦର୍ଶନୀ ସମସ୍ତ ଗଳି କନ୍ଦିରେ ହେବାର ଅଛି ତେଣୁ ଏଥିରେ ସ୍ତ୍ରୀ ଲୋକଙ୍କ ହସ୍ତକର୍ମ, ସିଲେଇ ଇତ୍ୟାଦି ଦେଇ ଆରମ୍ଭ କରିବା ଭଲ । ସେମାନେ ପରମର୍ଶ ଭାବରେ ତାଙ୍କ କାରଖାନାର ପ୍ରଦର୍ଶନୀ ହେବାପାଇଁ ଆଶା ପୋଷଣ କରନ୍ତି । ସେଥିରେ ସାଇବାଲା ଶ୍ରେଷ୍ଠ ପ୍ରଦର୍ଶିତ ବସ୍ତୁକୁ ପୁରସ୍କାର ଦେଲେ ମୁଁ ମଧ୍ୟ ସେମାନଙ୍କ ନାମରେ ଶହେ ଟଙ୍କାର ପୁରସ୍କାର ଦେବାକୁ ଭାବିଥିଲି । ଏଥି ସହିତ ଆଜିକାଲିର ଆଧୁନିକ କଳା ସହିତ ଜନସାଧାରଣ ପରିଚିତ ହୁଅନ୍ତୁ ଏଇ ଉଦ୍ଦେଶ୍ୟରେ ଏଇ ସହରର ବିଖ୍ୟାତ କଳାକାରଙ୍କ କୃତି ମୁଁ ଉଠାଇ ଆଣିବାକୁ ପ୍ରସ୍ତାବ ଦେଇଥିଲି । ଏଇ ପ୍ରଦର୍ଶନୀରେ ମାତ୍ର ୪୦।୫୦ରୁ ଅଧିକ ବା କେତେ ଚିତ୍ର ଦରକାର ?"

ଜାନକୀ ଶରଣଙ୍କ ଘର ସାମ୍ନା ବଡ଼ ହଲରେ ପ୍ରଥମେ ଏଇ ପ୍ରଦର୍ଶନୀ ହେବା କଥା, ଏଥିରେ କଣ ବା ଦୋଷ ମୋର ହେଲା ? ମହୀପାଳ କହୁଛି ମୁଁ ବିଶ୍ୱାସଘାତକତା

କଲି । ମୋର ସତ୍ୟ ନିଷ୍ଠା ଉପରେ ଏଇଟା ଏକ ମିଥ୍ୟା କଳଙ୍କ ଏବଂ ମୁଁ ନିଜେ କଥାର ସତ୍ୟତା ପ୍ରମାଣ କରି ଦେଖାଇ ଦେବି ।"

କନ୍ୟା ହଠାତ୍ କହିଲା..."ଆପଣ ଯେଉଁ ପ୍ରକାରେ ମନୋଭାବ ଦେଖେଇଛନ୍ତି ସେଇଟା ଆପଣଙ୍କ ପରି କଳାକାରମାନଙ୍କ ପ୍ରତିଷ୍ଠା ନିମନ୍ତେ ଅନୁକୂଳ ଅଟେ । ମୁଁ ଏକଲା, ଅବଶ୍ୟ ମୋର ବିଶେଷ କିଛି କହିବାର ମଧ୍ୟ ନାହିଁ, ତେବେ ସୁଦ୍ଧା ଆପଣ ଯାହା ଦାୟିତ୍ୱ ମତେ ଦେବେ ତାକୁ ମୁଁ ତୁଲାଇବି ।

ସଜ୍ଜନର ଖୁସିର ସୀମା ରହିଲାନି । ମହିପାଲ କହିଲା......"ଆପଣମାନେ ଆପଣଙ୍କର କଳାକାରୋଚିତ ଉତ୍ତେଜନାରେ ସଂସାରର ସ୍ଥୂଳବାଜାରେ ଯେପରି ଭୁଲି ନଯାନ୍ତୁ । ଏଇଟା ନିର୍ବାଚନର ସମୟ ।

"ନିର୍ବାଚନର ସମୟ ହେଲେ କଣ ହେଲା, ଏଠି ବାବୁ ନଗୀନଚନ୍ଦ୍ରଜୈନ ଓରଫ କର୍ଣ୍ଣେଲ ସାହେବ ଖୋଦ୍ ରହିଛନ୍ତି ।,' କର୍ଣ୍ଣେଲ ନିଜର ଗୁଲ୍ଫ ଦ୍ୱୟ ଉପରେ ହାତ ମାରି କହିଲା......"ତାପରେ ସଜ୍ଜନ ଆଡ଼କୁ ଅନାଇ କହିଲା......ଖୁବ୍ ଭଲକରି ପ୍ରଦର୍ଶନୀ କର ! ଆଜି ଦିନ ବାର ତାରିଖ ମନେ ରଖ, ମୁଁ କହି ରଖୁଛି ଯେ ଏମାନଙ୍କର ପ୍ରତ୍ୟେକଟି ଗୁଳିକୁ ଶେଷକରି ଏଥର ଆମର ଅଲଗା ଦଳ......ମାନବିକତାର ଦଳକୁ କାଏମ ନକରିବୁ ତ କିଛି କାମ ହେଲାନି । ବର୍ତ୍ତମାନ ଆମେ କେବଳ ଗୋଟିଏ ନୁହଁ ସମସ୍ତ ରାଜନୈତିକ ଦଳ ଗୁଡ଼ିକୁ ଠିକଣା ଜବାବ ଦେବ । ଜନସାଧାରଣଙ୍କ ସହିତ ଆମେ ରହିବୁ । ସେ ଯେଉଁ ସରକାର ହେଉନା କାହିଁକି, କମ୍ପାନି ବଡ଼ ବଡ଼ ପୁଂଜିପତି ମାନେ ବଢ଼ି ଉଠନ୍ତୁ କମ୍ପାନି ବିଭିନ୍ନ ରାଜ ନୈତିକ ଦଳ ଗଢ଼ି ଉଠୁ......ଆମେ ମୁଖ୍ୟତଃ ସେ ସମସ୍ତଙ୍କ ଠାରୁ ଆମ ଅଧିକାର ସଂପର୍କରେ ସତର୍କ ସହିବୁ । ବନ୍ଧୋ......ତୋର ମତ କଣ ?"

ମହିପାଲ ଚଡ଼଼ଉଠି କହିଲା......"ବନ୍ଧୋ ବିବୃଷି କଣ ମତ ଦେବ ମୁଁ ମୋର କହୁଛି ମତ......ଆପଣ ମାନେ ଭାବୁଛନ୍ତି ଯେ ରାବଣର ଦଶ ଦଶଟା ମୁଣ୍ଡର ବୁଦ୍ଧି ଆପଣମାନଙ୍କ ମୁଣ୍ଡରେ ଖୁନ୍ଦାଂ ହୋଇଛି । ଆପଣମାନଙ୍କୁ ଏହି ସାଲୀଗ୍ରାମ ଆଦି ଲୋକେ ପ୍ରଦର୍ଶନୀରେ ପୁରସ୍କାର ଦେବା ନାଁରେ ଗୋଟିଏ ଗୋଟିଏ ଗଧର ମୁଣ୍ଡ ଦେଇ ସମ୍ମାନିତ କରିବେ ଏଇ କଥା ଯେପରି ମନେ ରୁହେ ।.........ବିବୃଷି......ବିବୃଷି... ବନକନ୍ୟାର କେଶ୍ ଅଧାରେ ହିଁ ରହିଯିବ ।......ଦେଖ ତୁମପରି ମୂର୍ଖଙ୍କୁ ମୁଁ ଏ ବ୍ରହ୍ମ ସତ୍ୟ କହି ଯାଉଛି ।

ସଜ୍ଜନ ମଧ୍ୟ ଉତ୍ତେଜିତ ହୋଇ ପଡ଼ିଲା :—"ତେବେ ମୋର ମଧ୍ୟ ଭରତ ବାକ୍ୟ ଶୁଣି ଯାଅ ମହିପାଲ । ସଜ୍ଜନ ସବୁ ପ୍ରକାରେ ତୁମର ବ୍ରହ୍ମ ସତ୍ୟକୁ ମିଥ୍ୟା ପ୍ରମାଣିତ

କରିବ ଏବଂ ଏ ପ୍ରତିଜ୍ଞା ମୁଁ ଆଜି ଯେଉଁମାନଙ୍କ ସାମ୍ନାରେ କରୁଛି ସେମାନଙ୍କ ଆଗରେ ମିଥ୍ୟାବାଦୀ ହେବା ଠାରୁ ମୃତ୍ୟୁ ମୋ ପାଖରେ ଅଧିକ ଶ୍ରେୟସ୍କର ।"

ମହିପାଲ କିଛି ନକହି ବାଗରେ ବୁଲିଗଲା । ସଜ୍ଜନର ମହିପାଲ ଉପରେ ଭୀଷଣ କ୍ରୋଧ ହେଉଥିଲା । ସେ ଯେ କନ୍ୟାର ମନକୁ ତା' ପ୍ରତି ବିରୋଧୀ କରାଉଛି ଏଇ କଥା ମନେ ପଡ଼ିଲା କ୍ଷଣି ସେ ରାଗି ଉଠୁଥାଏ । ବିଡ଼ ବିଡ଼ କରି କହିଲା...... "ନିଜେ ମିଥ୍ୟାବାଦ ଉପରେ ବଞ୍ଚି ରହିଛି, ଅଥଚ ନିଜ ମୂର୍ଖାମୀରେ ଲୋକଙ୍କୁ ଠକିବାକୁ ଆସୁଛି ଏବଂ ଭାବୁଛି ତା' ପରି ଅନ୍ୟ ସଭିଏଁ, ଇଡ଼ିଏଟ୍ ।"

ଆରେ ବନ୍ଧୁ ! ତୁମେ ମଧ୍ୟ କୋଉ କଥାକୁ ଏତେ ଗୁରୁତ୍ୱ ଦେଉଛ ? ବର୍ତ୍ତମାନ ମନରେ କଣ ଟିକେ ଖଟକା ଲାଗିଲା ବୋଲି ଲେଖକ ତୁମର ସିନା ବିରୋଧୀ ହୋଇଛି ପୁଣି ମନ ଠିକ୍ ହୋଇଗଲେ ତ ସେ ତୁମ ଠାରୁ ଅଧିକ ନିଷ୍ଠାରେ ତୁମର ସହଯୋଗ କରିବେ । ସତରେ କହୁଛି ମହିପାଲ ପରି ଏତେ ସରଳ ନିଷ୍କପଟ ଲୋକ ମୁଁ ଆଉ ଦେଖିନି । ତାର କଥା ସିନା ଖରାପ ଲାଗେ କିନ୍ତୁ ହୃଦୟଟା ଏକେବାରେ ନରମ ।" କର୍ଣ୍ଣେଲ କହିଲା ।

କନ୍ୟା କହିଲା.....ଖାଣ୍ଟି ସୁନାରେ ତିଆରି ହୋଇଥିବା କୌଣସି ମଣିଷ ତ ମିଳିବେ ନାହିଁ...ତେବେ ମୁଁ ବ୍ୟକ୍ତି ଗତ ଭାବରେ ମହିପାଲ ବାବୁଙ୍କୁ ଗଭୀର ଶ୍ରଦ୍ଧା କରେ । ହୃଦୟ ତାଙ୍କର ଭଲ ନଥିଲେ ଏତେ ଭଲ ସାହିତ୍ୟକାର ବା ହୁଅନ୍ତେ କିପରି ?"

ସଜ୍ଜନର କ୍ରୋଧ ବର୍ତ୍ତମାନ କନ୍ୟା, କର୍ଣ୍ଣେଲ ଓ ନିଜ ଉପରୁ ଧିରେ ଧିରେ ଉଭେଇ ଯାଉଥିଲା, କିନ୍ତୁ ଟାଣି ଓଟାରି ମନରେ ରାଗଟା ପୂରାଇ ରଖିବାକୁ ଚାହୁଁଥାଏ । ଏଇ କ୍ରୋଧ, ଏଇ ଉତ୍ତେଜନା...ଟିକେ ଆଗରୁ କନ୍ୟାର ପ୍ରେମପୂର୍ଣ୍ଣ ବାଣୀରେ ସମସ୍ତ କିଛି ଭୁଲି ହୋଇଯାଉଥିଲା । କନ୍ୟାର ଭଲ ପାଇବା ବର୍ତ୍ତମାନ ତାର ସମସ୍ତ ମିଥ୍ୟା ଅହଂକାରକୁ ବଳଶାଳୀ କରୁଥାଏ । ମନରେ ତୀବ୍ର ଇଚ୍ଛା କନ୍ୟାକୁ ଏକାନ୍ତର ପାଇବା ପାଇଁ । ପ୍ରଥମ ଦିନ ଏକାଠି ବୁଲିଯିବା ପ୍ରସ୍ତାବକୁ କନ୍ୟା ପ୍ରତ୍ୟାଖ୍ୟାନ କରି ଦେଇଥିଲା । ସଜ୍ଜନ ଆଖିରେ ବର୍ତ୍ତମାନ ଯେଉଁ ଚମକ ଦେଖା ଯାଉଥିଲା ତାହା ସକାଳର ଧ୍ୟାନ ମନ୍ଦିରରେ କରିଥିବା ବ୍ରହ୍ମଚର୍ଯ୍ୟ ସଂକଳ୍ପର ବିଲକୁଲ ବିପରୀତ ଥିଲା । ତା' ପ୍ରାଣ ବର୍ତ୍ତମାନ କନ୍ୟାର ମୋହିନୀ ଶକ୍ତିରେ ବାନ୍ଧି ହୋଇ ବିକଳରେ ଛଟପଟ ହେଉଥିଲା । ନିଜକୁ ଆଉ ଚୁପ କରି ନରଖି ସିଧା ସଳଖ କନ୍ୟାକୁ ପଚାରିଲା—"ତୁମେ ନିଜେ ନିଜେ ଶିଂଧିବା ଆରମ୍ଭ କରି ଦେଲଣି ?"

କନ୍ୟା କହିଲା :..."ଭାଇ ସାହେବ ତ ମନା କରୁଛନ୍ତି...ତେବେ ଦୁଇ ଦିନ ମଧ୍ୟରେ ମୁଁ ମୋର ନିଜ ବ୍ୟବସ୍ଥା କରିବି...... ।

"ସେତେବେଳ ପର୍ଯ୍ୟନ୍ତ ତା ହେଲେ ତୁମର କଣ ବ୍ୟବସ୍ଥା କରିଛ… …"

"ଗତ କାଲି ରାତି ପର୍ଯ୍ୟନ୍ତ ଓଝା ସାହେବଙ୍କ ସାଙ୍ଗରେ ଥିଲି…… …"

"ଭୋଜନ କଲ, ଏଇସ୍ନାତ ? "ସଜ୍ଜନ ମୂରୁକି ହସି କହିଲା,……"ଟୁବ୍-ବେଶୀ ଏ ଜୈନ ମତାବଲମ୍ବୀଙ୍କ ସହିତ ମିଳାମିଶା କରିବାର ଜନ୍ୟ, ଏମାନେ ଅହିଂସା ପରମ ଧର୍ମ : କହି ତୁମକୁ ନିରାମିଷାଶୀ କରି ଛାଡ଼ିବେ ।" ସାରା ଘରେ ହସର ଲହଡ଼ି ଖେଳିଗଲା । କର୍ଣ୍ଣେଲ୍ କହିଲା :……"ତୁମେ ମାଛ ମାଂସ ଖାଇବା ବାଲା ଭଲ ଆମର ଖାଇବା ମଜା କଣ ବୁଝିବ ? କର୍ଣ୍ଣେଲ୍ ଉଠି ହଠାତ୍ କହିଲା :……"ମୁଁ ଯାଉଛି ଏକ୍ଷଣି ଧାବକ ସାହେବଙ୍କୁ ଫୋନ କରିବି ।" କର୍ଣ୍ଣେଲ୍ ଚାଲିଗଲା, ସଜ୍ଜନ ଓ କନ୍ୟା ଦୁହେଁ ଦୁହିଁଙ୍କୁ ଅନାଇଲେ ।

ସଜ୍ଜନ କହିଲା :……"ତୁମେ ଅନ୍ତରର ସହିତ କଣ ସମର୍ଥନ କରିଥିଲ……

"କେଉଁ କଥା ?"

'ଏଇ ସାଲିଗ୍ରାମ ସହିତ………"

ଆପଣଙ୍କର ମନରେ ଏ ସଂଦେହ ହେଉଛି କାହିଁକି ?"

ସଜ୍ଜନ ଉଠି କନ୍ୟା ନିକଟରେ ପଡ଼ିଥିବା ଚଉକିରେ ବସି କହିଲା :…"ତୁମେ ସବୁଦିନ ପାଇଁ ମତେ ତୁମର କିଣା ଗୋଲାମୀ କରିନେଲ ।"

ମୁଁ କିନ୍ତୁ ଗୋଲାମୀ ଭାଙ୍ଗିବାରେ ବିଶ୍ୱାସ କରେ ସଜ୍ଜନବାବୁ !"

ତଥାପି ଏପ୍ରକାର ଗୋଲାମୀ ଏପରି ବସ୍ତୁ ଅଟେ ଯାହାକି ମଣିଷ ବୁଦ୍ଧିର କୌଣସି ଇଜମ୍ କେବେହେଲେ ତାକୁ ଭାଙ୍ଗି ପାରିବ ନାହିଁ । ହୃଦୟର ସଂପର୍କ ହେଲା ସବୁଠାରୁ ବଡ଼ କଥା । ସେଥିରେ ଭଲ ପାଇବା ଏବଂ ମାନବିକତାର ବଂଧନରେ ବାନ୍ଧି ହୋଇ ମଧ୍ୟ ମଣିଷ କେବେହେଲେ ମୁକ୍ତି ପାଇବାକୁ କାମନା କରେନାହିଁ । ବରଂ ଏଇ ବଂଧନ ଯେପରି ଆହୁରି ନିବିଡ଼ ଆହୁରି ଶକ୍ତ ହୋଇ ତା ଚାରିପଟେ ବାନ୍ଧି ହୋଇ ଯାଉ ଏହାହିଁ ମଣିଷ ସବୁବେଳେ କାମନା କରିଥାଏଁ । କନ୍ୟା ଚୁପ୍ ହୋଇ ଶୁଣୁଥାଏ । ଏ କଥାର ପ୍ରତିକ୍ରିୟା ତାର କଣ ହେଲା ସଜ୍ଜନ ଠିକ୍ ଜାଣି ପାରିଲାନି । ଘର ଭିତରେ ନୀରବତା ବିରାଜୁଥାଏ । ସଜ୍ଜନ ପୁଣି କହିଲା :……"ମତେ କଥା ଦେଇଥିଲ ଯେ ମୋ ଘରେ ରହିବ ।"

କନ୍ୟା ମୁଣ୍ଡ ହଲାଇ ଦୃଢ଼ତାର ସହିତ କହିଲା :……"ଏଠି ବି ଆପଣଙ୍କ ଘର ଜାଣି ଆସିଛି ।"

ସଜ୍ଜନ କଥାରେ ସନ୍ତୁଷ୍ଟ ହେଲା······ଟିକେ ସମୟ ପରେ ଚନ୍ଦ୍ରାକର ସେ ପୁଣି କହିଲା···ମନରେ ମୋ ଏକ ଅଦ୍ଭୁତ ରଂଗୀନ ଖିଆଲ···ଯାହା ଧ୍ୟାନରେ ପ୍ରତି ମୁହୂର୍ତ୍ତି କଟୁଛି ତାକୁ ପାଖରେ ପାଇଲେ ତାକୁ ବିରକ୍ତ କରୁଛି ।"

କନ୍ୟା ଚୁପ୍ ରହିଲା······ତାର ମୌନତା ଫଳରେ ସଜ୍ଜନର ସାହସ ବଢ଼ିଲା······ହଠାତ୍ କହି ପକାଇଲା······"ତୁମେ କଣ ମନରେ ଏହିଭଳି ଅନୁଭବ କରନ୍ତ ?"

କନ୍ୟା ଧିରେ ମୁଣ୍ଡ ଟେକି କରି ସମସ୍ତ ସଜ୍ଜନଙ୍କୁ ଅନାଇଁ ଆସ୍ତେ କହିଲା : ..···ବର୍ତ୍ତମାନ ମୁଁ ଏପରି ମାନସିକ ଅବସ୍ଥା ଦେଇ ଗତି କରୁଛି ଯେ ଆପଣ ଚନ୍ତା କରିଥିବା କଥାରେ ଠିକ୍ ବିଶ୍ୱାସ କରିପାରୁନି ।" ଅଳ୍ପ ସମୟ ଚୁପ୍ ରହି ଧିରେ ଧିରେ ପୁଣି କନ୍ୟା କହିବାକୁ ଆରମ୍ଭ କଲା······ମୁଁ ଯେ କାହାକୁ ଭଲ ପାଇ ପାରିବ ନାହିଁ ଏ କଥା ମଧ୍ୟ ଠିକ୍ ନୁହେଁ, କିନ୍ତୁ ସାଧାରଣତଃ ଏଇ ଚନ୍ଦ୍ରାରୁ ଦୂରରେ ଅଛି ଯଦିଓ ମନର କନ୍ଦରରେ ଏକ ସ୍ୱପ୍ନ ରଚନା କରି ରଖିଛି ।... ...ମୋର ସେଇ ଅଧଖଣ୍ଡିଆ ସ୍ୱପ୍ନକୁ ଏକ ନାଟକୀୟ ପରିସ୍ଥିତିରେ ତୁମେ ଆସି ପୂରା କରିବାର ଲୋଭ ଦେଖାଉଛ ସେଥିପାଇଁ ମୁଁ ତୁମକୁ କି ମୋ ନିଜକୁ ଠିକ୍ କରି ଏଯାଏଁ ବୁଝି ପାରୁନି ।······ବିପଦ ସମୟରେ ତୁମେ ଆସି ମୋ ପାଖରେ ଠିଆ ହେଲ ! ମୋର ଶଙ୍କା ମୋର ନିଜ ସ୍ୱାର୍ଥରକ୍ଷା ତରଫରେ ତୁମକୁ ଅଧିକା କୃତଜ୍ଞତା ଜଣାଉଛି············"ଏଠି କୃତଜ୍ଞତା ଜଣାଇବାର ପ୍ରଶ୍ନ ନାହିଁ ।"

ତୁମ ମନରେ ନଥାଇ ପାରେ ତୁମେ ଯାହା କହୁଛ ହୁଏତ ତାଠିକ୍ । କିନ୍ତୁ ମୋ ମନରେ ଏ ଭାବନା ରହିଛି ଏବଂ ରହିବା ସ୍ୱାଭାବିକ ମଧ୍ୟ ।"

"ସ୍ୱାଭାବିକ କାହିଁକି ?"

"ତୁମ ସହିତ ଆଗରୁ କେବେ ଘନିଷ୍ଠତା ନଥିଲା କିମ୍ବା ତୁମେ ମୋର ଅତ୍ମୀୟ ବନ୍ଧୁ ମଧ୍ୟ ନୁହଁ ।"

"ଆମେ ଯେଉଁ ବନ୍ଧନରେ ବାନ୍ଧି ହେବାକୁ ଯାଉଛୁ, ତାହା ହିଁ ସବୁଠାରୁ···"

"ଶୂନ୍ୟତାରେ ପୂର୍ଣ୍ଣ"·········କନ୍ୟା ଶାନ୍ତ ଗମ୍ଭୀର ସ୍ୱରରେ ବାକ୍ୟ ପୂରଣକଲା ।

ସଜ୍ଜନ ଚମକି ଉଠି କହିଲା······"ଶୂନ୍ୟତା କଣ ?"

"ଅର୍ଥାତ୍ ଶୂନ୍ୟ......ଜିଗେ, ସ୍ୱାଠାରୁ ଅଧିକ ଶବ୍ଦ ଏଇ ସମ୍ପର୍କର ଆଉ କଣ ହୋଇପାରେ ଅନ୍ତତଃ ମତେ ଜଣାନାହିଁ । ସଜ୍ଜନ ସ୍ତବ୍ଧ ହୋଇଗଲା, କନ୍ୟାଠାରୁ ଏପରି ଉତ୍ତର ପାଇବ ବୋଲି ସେ ଜମା ଆଶା କରିନଥିଲା ।

କନ୍ୟା ପୁଣି କହିବାକୁ ଲାଗିଲା......"ଯେଉଁ ପ୍ରେମ ପାଇଁ ସମସ୍ତେ ପଣ କରନ୍ତି ବୋଲି କହନ୍ତି ମୋ ଦୃଷ୍ଟିରେ ତାହା କେବଳ ମନର ଏକ ଅଭାବ ଛଡ଼ା ଆଉ କିଛି ନୁହେଁ ।"

ସଜ୍ଜନ ରୁକ୍ଷ ସ୍ୱରରେ ପଚାରିଲା......"କାହିଁକି ?"

କନ୍ୟା କହିଲା......"ଅଭାବ ବ୍ୟତୀତ ଅନ୍ୟ କଣ ? ମଜନୁ ଲୈଲାକୁ ପାଇ ପାରିଲା ନାହିଁ, ମଜନୁ ଅଭାବରେ ଲୈଲା ନିଃଶେଷ ହୋଇଗଲା ....ଏଥିପାଇଁ ଦୁନିଆଁ ସେମାନଙ୍କ ପ୍ରେମର ଗୀତ ଗାଉଛି । ମୁଁ ପଚାରୁଛି ଯେ ଯଦି ଲୈଲା ମଜନୁ ବିବାହ ବନ୍ଧନରେ ବନ୍ଧ ହୋଇ ପାରିଥାନ୍ତେ ତେବେ ଦୁନିଆଁ କଣ ଏମାନଙ୍କୁ ଅମର ପ୍ରେମୀ ହିସାବରେ ମନେ ରଖି ପାରନ୍ତା ।"

ସଜ୍ଜନ ଗମ୍ଭୀର ହୋଇଗଲା, କିଛି ସମୟ ଚିନ୍ତାକରି ଉତ୍ତର ଦେଲା......"ଏଇ ଅଭାବ ବୋଧ ଜାଣିବାଟା ଜୀବନର କିଛି ସାମାନ୍ୟତମ ଘଟଣା ନୁହେଁ କନ୍ୟା ! ନିଜର ଅଭାବକୁ ଠିକ୍ ରୂପେ ଜାଣି ତାକୁ ପୂର୍ଣ୍ଣ କରିବା ନିମନ୍ତେ ମଣିଷ ଅନ୍ତରର ଲୁକ୍କାୟିତ ଶକ୍ତି ପ୍ରକାଶ ପାଏ .....ବିକାଶ ଲାଭ କରେ । ଆଉ ରହିଲେ ଲୈଲା ମଜନୁ......... ସେମାନେ ଉଭୟେ ଉଭୟଙ୍କ ପାଇଁ ପ୍ରତି ମୁହୂର୍ତ୍ତରେ ପାଗଳ ହୋଇ ନିଜକୁ ବଳିଦାନ ଦେଲେ । ଏଇ ଆତ୍ମତ୍ୟାଗରେ ହିଁ ସକଳ ବାହାଦୂରି ।"

କନ୍ୟା ଥରେ ସାମାନ୍ୟ କାଶି ଉଠି ପୁଣି ଚୁପ୍ ହୋଇଗଲା । ଏ ସମସ୍ତ କଥାରେ ଯେପରି ତାର କିଛି ଆଗ୍ରହ ନାହିଁ ସେହିପରି ମୁହଁ କରି ବସି ରହିଲା । ସଜ୍ଜନ ଚୁପ୍ ହୋଇ ତାକୁ ଅନାଇଲା, ହଠାତ୍ କନ୍ୟା ଉଠି ଯାଉ ଯାଉ କହିଲା......"କବିମାନେ ଯେଉଁ ବିଗ୍ରହ ଧାରା ଏବଂ ଅନୁଭୂତିକୁ ସବୁବେଳେ ଆଗକୁ ଆଣିଛନ୍ତି ମୋ ମତରେ ତାହା ଛଳନା ପୂର୍ଣ୍ଣ । କଥା ସବୁ ସିଧା ସଳଖ ହେବା ଦରକାର । ସ୍ତ୍ରୀ ପୁରୁଷ ସମ୍ପର୍କର ଅନ୍ତିମ ରୂପ ହେଲା......ସ୍ୱାମୀ ସ୍ତ୍ରୀ ହେବା ଏବଂ ଏଇ ସମ୍ପର୍କ ନେଇ ମୁଁ ବର୍ତ୍ତମାନ ତୁମକୁ ମୋ ନିଜ ସାଙ୍ଗରେ ଠିକ୍ ଭାବେ ଦେଖି ପାରୁନି ।"

ସଜ୍ଜନ ପୁଣି ଆଘାତ ପାଇଲା । କବାଟ ପାଖରେ ପହଞ୍ଚି ଯିବା ପୂର୍ବରୁ କନ୍ୟା କହିଗଲା ....ସ୍ତ୍ରୀ ପୁରୁଷ ଜୀବନରେ ଥରକ ପାଇଁ ଜଣେ ଜଣକୁ ପାଇଥାନ୍ତି.....ମୁଁ ଏକଥା ଦୃଢ଼ଭାବରେ ବିଶ୍ୱାସ କରେ ଏବଂ ପାଇବା ପାଇଁ ପରସ୍ପରକୁ ଅନେକ ଥର

କଷଟି ପଥରରେ ପରୀକ୍ଷା କରନେବାକୁ ହେବ । ଏଇଟା ଦାମ୍ପତ୍ୟର ସମ୍ପର୍କ··· ଜମିଦାର, କଳାକାର ତଥା ଖିଆଲ ଲୋକଙ୍କ ମନଭୁଲାଣି ଖେଳ ନୁହେଁ ।"

କନ୍ୟା ଚାଲିଗଲା, ସଜ୍ଜନର ସ୍ୱପ୍ନଲୋକ ପୁଣି ଥରେ ତା ଆଗରୁ ହଜିଗଲା । ସଜ୍ଜନକୁ ନିଜର ଅପାରଗତା ପାଇଁ ବହୁତ ରାଗ ହେଲା । ସେ ଯୁବତୀ ରୋଜ ଆସି ଟେଲଜା ଖେଳିଲା ଭଳି ତା' ସହିତ ଖେଳି ହଠାତ୍ ସବୁ ଛାଡ଼ିଛୁଡ଼ି ଦେଇ ପଳାଉଛି, ସଜ୍ଜନ ରୋଜ ତାଠାରୁ ଅଲଗା ରହିବ ବୋଲି ସଂକଳ୍ପ କରୁଛି ଏବଂ ପୋପର୍ ସୂତାପରି ସେଇ ସଂକଳ୍ପ ବାରମ୍ବାର ଛିଣ୍ଡି ଖଣ୍ଡ ବିଖଣ୍ଡ ହୋଇ ଯାଉଛି ।

ସଜ୍ଜନ ନ୍ୟାପାସ୍ତ ହୋଇ ଚୁପ୍‌ଚାପ୍ ଉତ୍ତେଜିତ ହେଉଥାଏ ଯେପରିକି ହାଟ ମଝିରେ କିଏ ତାକୁ ଜୋର କରି ଚାପୁଡ଼ାଏ ପକାଉଛି । ଏ ସମୟରେ କର୍ଣ୍ଣେଲ ଆସି ହସି ହସି ଘରର ବତୀ ଜଳାଇ କହିଲେ···"କଣ ବାବୁ ସଫଳ ତୁମର ପ୍ରେମ ନିବେଦନ ? ତୁମକୁ ସୁଯୋଗ ଦେବାପାଇଁ ତ ମୁଁ ଏଠାରୁ ବାହାର ଯାଇଥିଲି ।"

ଓଜନିଆ ସ୍ୱରରେ ସଜ୍ଜନ କହିଲା······"ଆପଣ ମୋ' ଉପରେ ବହୁତ ଅନୁଗ୍ରହ ଦେଖାଇଲେ ଯାହା ହେଉ ! ବେବକୁଫ ଶଳା···········"

# ଉଡଣେଇଣି

କଣ୍ଟ୍ରୋଲ୍ ଘରୁ ବାହାରି ଅମିନାବାଦ ପାର୍କର ଭିଡ଼ ଠେଲି ଯାଇ ଯାଇ ମହୀପାଲର ମାନସିକ ଉତ୍ତେଜନା କ୍ରମଶଃ ପାଣି ପଡ଼ିବାଦ୍ୱାରା ଧୂଳି ଯେପରି ବସିଯାଏ ସେହିପରି ମାନ୍ଦା ହୋଇ ଆସିଲା । ପ୍ରତିକ୍ରିୟା ଦ୍ୱାରା ଅବସାଦ ବଢ଼ିଗଲା । ଏବେ ଯିବ କୁଆଡ଼େ ? ତା'ର କିଛି ଠିକଣା ନାହିଁ । କାହା ମନରେ ତା' ପାଇଁ ସ୍ଥାନ ନାହିଁ । ସେ କେବଳ ସମସ୍ତଙ୍କ ବୋଝ ହୋଇ ରହିଛି । ତା' ଜୀବନ ମଧ୍ୟ କାହା ସ୍ୱାର୍ଥରେ ଲାଗିପାରିବ ନାହିଁ ସବୁ ଆଡ଼ୁ ଅସଫଳତା ତା' ଲଲାଟର ଲିଖନ ଯେପରି ହୋଇଥାଏ, ଜମଖୁ ଟୁଥପେଷ୍ଟ ବିଜୁଳି ଆଲୁଅ ଦ୍ୱାରା ଲେଖା ହୋଇ ଏବଂ ଉଚ୍ଚ ଜାଗାରେ ଟଙ୍ଗା ହୋଇ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲାପରି, ସେହିପରି ଏହି ହତଭାଗ୍ୟର ଅସଫଳତା ମଧ୍ୟ ସବୁରି ଦୃଷ୍ଟି ଆକର୍ଷଣ କରୁଛି । ଅଥଚ ସେ କେତେ ଅସହାୟ ।

ଏତେ ସରଳ ହେବା ଠିକ୍ ନୁହେଁ, ମହୀପାଲ ଭାବିଲା । ସରଳ ଲୋକ ସବୁବେଳେ ଅସହାୟ ହୋଇଥିବା ଯୋଗୁ ଆଜିର ସଂସାରରେ ଅଚଳ ହୋଇ ଯାଉଛନ୍ତି । ସେଠ୍ ରୂପରତନ ଓ ଶ୍ରେଷ୍ଠ ଭାଇ ଗଟ୍‌ଟୁ ଯେ ତାକୁ ପ୍ରବଞ୍ଚିତ କରିଛନ୍ତି ଏକଥା କେହି ବିଶ୍ୱାସ କରି ପାରିବେ ନାହିଁ । ଅଥଚ ସମସ୍ତେ କହିବେ ଯେ ମହୀପାଲ ରୂପରତନଙ୍କ ପରି ଲୋକଙ୍କୁ ଭଣ୍ଡେଇ କିଛି ଟଙ୍କା ମାରି ନେଇଛି, କମ୍ପା ଡଃ ଜୟପାଲ ଠାରୁ ମଧ୍ୟ ଆର୍ଥିକ ସୁଯୋଗ ଉଠାଇଛି । ମୁଁ ଶୀଳାକୁ କଣ ଦେଇଛି ଏକଥା ଲୋକେ ବୁଝିବେ ନାହିଁ । ଅଥଚ କହିବେ ମହୀପାଲ ଶୁକ୍ଳା ପରି ଏତେବଡ଼ ଲେଖକ ଓ ସାହିତ୍ୟିକ ବୋଲି କହି ହୁଅନ୍ତି, ଯେ ଏପରି ରାକ୍ଷସ ଯେ ନିଜର ପିଲାଙ୍କ ପେଟରୁ କାଟି ଝିଲି ପାଇଁ ପଇସା ଉଡ଼ାଉଛି । ଏ ଲୋକେ ମତେ ସବୁକଥାରେ ବଦନାମ୍ କରିବେ କାରଣ ମୁଁ ସରଳ ଏବଂ ଗରିବ । ମୋର ଏ ଅବସ୍ଥାରେ କୌଣସି ସତ୍ତ୍ୱା ମଧ୍ୟ ନାହିଁ ।

ସାମନା ଭଗତଙ୍କ ପାନ ଦୋକାନରେ ଗତ ରବିର "ବଡ଼ାହାର"ରେ ଉପସ୍ଥିତ ଥିବା ଦୁଇ ଜଣ ବ୍ୟକ୍ତିଙ୍କୁ ଦେଖି ମହୀପାଲ ସେ ରାସ୍ତାରୁ ଅନ୍ୟ ରାସ୍ତାକୁ ଏପରି ଲୁଚି ପଳାଇଲା ଯେପରି ଚୋର ପୁଲିସକୁ ଦେଖି ଖସିଯାଏ । କେଶରବାଗ ଛକ ଡେଇଁ ପୁଣି ନଜୀରାବାଦ ରାସ୍ତାରେ ଚାଲିଥିବା ବେଳେ ସେ ଯେ କେତେ ଶୀଘ୍ର ଶୀଘ୍ର ଯାଉଛି ଏ ଖିଆଲ ତା'ର ନଥିଲା, ଛକ ପାରହୋଇ ଯିବା ସମୟରେ ଗୋଟିଏ ବସ୍ ଡ୍ରାଇଭର ହଠାତ୍ ବ୍ରେକ୍ ଚପି ତା'ର ଏ ବେପରୁଆ ଗତି ଉପରେ ଧମକ ଦେଲା । ଆଉ ଯେ

ଲୋକମାନଙ୍କୁ ଡରିବାର ହେତୁ କଣ ? ପ୍ରକୃତରେ ସେ ସେମାନଙ୍କୁ ଡରୁ ନଥିଲା କେବଳ ନିଜର ବଦନାମ୍‌କୁ ଡ଼ରି ପଳାଉଥିଲା । କିନ୍ତୁ ସେ ତ ଅନ୍ୟ କଥା । ନିଜର ଭୁଲ ମନକୁ ଦୃଢ଼ କରି ମହିପାଲ ନିଜକୁ ନିଜେ କହିଲା—"ଏଭଳି କେତେଦିନ ପର୍ଯ୍ୟନ୍ତ ମୁଁ ଲୋକଙ୍କ ଠାରୁ ପଳାଇବି, ମୁଁ ଏପରି କରିଛି ବା କ'ଣ ? ଏ ସଂସାରରେ ଏଭଳି ବହୁ ଲୋକେ ଅଛନ୍ତି ଯେଉଁମାନେ କି ଏକାଧିକ ସ୍ତ୍ରୀ ସମ୍ପର୍କ ରଖିଛନ୍ତି । ବହୁ ବ୍ୟକ୍ତି ନିଜର ବିଳାସ ପାଇଁ ସ୍ତ୍ରୀ ଲୋକଙ୍କ ଅନୁଚିତ ବ୍ୟବସାୟକୁ ବଢ଼ାନ୍ତି । ତେବେ ମହିପାଲ ଶୁକ୍‌ଲ କଣ ସେମାନଙ୍କ ଠାରୁ ମଧ୍ୟ ଅଧମ—ନା ମୁଁ ନିଷ୍ପାପ । ମୋର ଓ ଶୀଲାର ସମ୍ପର୍କ ଲୌକିକ ଦୃଷ୍ଟିରେ ଅବୈଧ ହେଲେ ମଧ୍ୟ ଆମେ କୌଣସି ପାପ କରୁ ନାହୁଁ । ଯଦି କିଏ କହିବ ଯେ ମୁଁ ଏକ ପତ୍ନୀବ୍ରତ ପାଳନ କରୁନାହିଁ, ତା'ହେଲେ ମଧ୍ୟ କୌଣସି ପାପ ନାହିଁ । ତିରିଶି ଚାଳିଶି ବର୍ଷ ପୂର୍ବେ ବହୁ ଲୋକେ ତିନିଜଣ ଚାରିଜଣ କରି ସ୍ତ୍ରୀ ରଖୁଥିଲେ ସ୍ୱୟଂ ଶିବ, କୃଷ୍ଣ ଏପରିକି ଭଗବାନ ରାମଚନ୍ଦ୍ରଙ୍କ ପିତା ମଧ୍ୟ ବହୁପତ୍ନୀ ବାଦୀ ଥିଲେ । ବହୁ ଋଷିମାନେ ବହୁ ପତ୍ନୀରଖିବାର ଦୃଷ୍ଟାନ୍ତ ରହିଛି । ଶିଳା ସହିତ ଅନୁଷ୍ଠିତ ନହେଲେ ମଧ୍ୟ ସେ ମୋର ସ୍ତ୍ରୀ ଅଟେ ।"

ମହିପାଳର ବୁଦ୍ଧି ନିଜ ମଧ୍ୟରେ ବଢ଼ୁଥିବା ଭୟକୁ ନାଶ କରିବା ନିମନ୍ତେ ଉଚିତ, ଅନୁଚିତ ନାନା ଯୁକ୍ତିର ସାହାଯ୍ୟ ନେଉଥାଏ । ଶେଷରେ ସେ ଏପରି ନିଷ୍କର୍ଷରେ ପହଞ୍ଚିଥିଲା ଯେ ତା'ର ବାସ୍ତବରେ ଶୀଲା ହେଉଛି ସ୍ତ୍ରୀ, କଲ୍ୟାଣୀ ସହିତ ବିବାହ ତା' ଇଚ୍ଛା ବିରୁଦ୍ଧରେ ଅଭିଭାବକଙ୍କ ଇଚ୍ଛାନୁଯାୟୀ ହୋଇଥିଲା । ଆଉ ସେହି ପିଲାମାନେ—? ଏମାନେ ସମସ୍ତେ କହିବାକୁ ଗଲେ ଶିଳାର ହୋଇଥାନ୍ତେ ।

ନିଜ ପିଲାଙ୍କ ମା ରୂପରେ ଶିଳାକୁ ଚିନ୍ତା କଲା ବେଳେ ମହିପାଳର ପ୍ରଳାପୀ ମନ ଆପେ ଆପେ ସଙ୍କୁଚିତ ହୋଇଗଲା ...... ନାଃ ଶିଳା ତା'ପିଲାଙ୍କ ମା ହୋଇପାରି ନ ଥାନ୍ତା । ମା ହେବା ଶିଳା ଘୃଣା କରେ । ମହିପାଳ ପୁଣି ଭାବିଲା—ଯଦି ତା' ଆଉ ଶିଳାର କୌଣସି ସନ୍ତାନ ହୁଏ ତେବେ ? କଲ୍ୟାଣିର ପିଲାଏ, ଶିଳାର ସନ୍ତାନ — ଏବଂ ଏ ଦୁହିଁଙ୍କ ପିଲା ତାର ସନ୍ତାନ । ପିଲାଙ୍କୁ କିପରି ସେ ବାଣ୍ଟିକରି ସ୍ନେହ କରିପାରିବ ? ଯେଉଁ ମାନଙ୍କର ଅଲଗା ଅଲଗା ସ୍ତ୍ରୀମାନଙ୍କ ଠାରୁ ସନ୍ତାନମାନେ ହୁଅନ୍ତି ସେମାନଙ୍କ ମନରେ କଣ ଭେଦଭାବ ରହୁ ନଥିବ ? ନିଶ୍ଚୟ ରହୁଥିବ । ସ୍ୱାଭାବିକ ଢଙ୍ଗରେ ପଡ଼ୁଥିବ । ଏ ସଂସାରରେ ଏଭଳି କେତେ ଘଟଣା ରହିଛି । ସ୍ୱୟଂ ଦଶରଥଙ୍କ କଥା ଆମ ଆଖି ଆଗରେ ରହିଛି । ବିଭିନ୍ନ ସ୍ତ୍ରୀଙ୍କଠାରୁ ଯଦି ତାଙ୍କର ସନ୍ତାନ ନ ହୋଇଥାନ୍ତେ ତେବେ କଣ ତାଙ୍କ ଘର ଏପରି ଭାଙ୍ଗି ଥାନ୍ତା ? ବହୁ ପତ୍ନୀ ବାଦର ଅନ୍ୟତମ ଟ୍ରାଜେଡ଼ି ରୂପରେ ସ୍ୱୟଂ ଦଶରଥଙ୍କ ଉଦାହରଣ ତା'ସାମନାରେ ଆସିଲା । ତିନି ଜଣ ସ୍ତ୍ରୀଙ୍କଠାରୁ ଜାତ ଚାରିପୁଅଙ୍କ ବାପଙ୍କ ମୃତ୍ୟୁ କେତେ କରୁଣ ପରିସ୍ଥିତିରେ ଘଟିଥିଲା ।

ଏପରି ସବୁ ଭାବି ମହିପାଲ ଯାଇ ଭିକ୍ଟୋରିଆ ପାର୍କ ନିକଟରେ ପହଞ୍ଚିଲା । ବିଷ୍ଟର ମଗ୍ନ ହୋଇ ସେ ପାର୍କର ମଣ୍ଡପ ପାଖ ବୁଣ୍ଡିକୁ ଆଉଜି ବସି ପଡ଼ିଲା । ଶୀତ ଦିନର ଅନ୍ଧକାର, ପାର୍କର ନିସ୍ତବ୍ଧତା, ବାହିଁକି ବସିରହିଛି—ଏ ସମସ୍ତ କଥା ଭାବିବାର ସାମର୍ଥ୍ୟ ଆଉ ତାର ନଥିଲା । ପକେଟରୁ ସିଗାରେଟ ବାହାର କରି ଲଗାଇଲା ଏବଂ ନିଜ ଚିନ୍ତାରେ ବୁଡ଼ିଗଲା ।

ଘଣ୍ଟାଏ କାଳ ସେଇ ଭାବରେ ବସି ନାନା କଥା ଚିନ୍ତା କଲା । ଅଣ୍ଡା କ୍ରମଶଃ ବଢ଼ୁଥାଏ । ବିଷ୍ଟର ମଗ୍ନତା ଆଉ ଅଣ୍ଡାକୁ ବଞ୍ଚାଇ ପାରୁ ନଥାଏ । ଦେହ ଥରି ଉଠୁଥାଏ ଏ ସମୟରେ ସେ ଯିବ କୁଆଡ଼େ ? ରହିବ କେଉଁଠି ?

ମହିପାଲ ଘରକୁ ଫେରିବାକୁ ଚାହୁଁ ନ ଥିଲା । କଲ୍ୟାଣିକୁ ମୁହଁ ଦେଖାଇବା ପାଇଁ ତା'ମନ ହେଉ ନଥାଏ । ପତି ପତ୍ନୀଙ୍କ କଳହ ଫଳରେ ପିଲାଏ ମଧ୍ୟ ଜାଣିଗଲେ ଯେ ତାଙ୍କ ବାପ ଦୁଷ୍ଚରିତ୍ର । ନିଜ ସ୍ତ୍ରୀ, ନିଜ ପିଲାଙ୍କ ମା ଥାଉ ଥାଉ ଅନ୍ୟ ସ୍ତ୍ରୀ ସହିତ ଅନୁଚିତ ସମ୍ପର୍କ ରଖିଛି ।

ପିଲାଏ କଣ ଭାବୁ ନଥିବେ । ପିଲାଙ୍କୁ କିପରି ମହିପାଲ ମୁହଁ ଦେଖାଇବ ? କଲ୍ୟାଣୀ ଗୋଟିଏ ନିହାତି ମୂର୍ଖ ଅଟେ । ଏକଥା ଠିକ୍ ଯେ ତା ମନରେ ଯେଉଁ କ୍ଷୋଭ ହେଲା ତାହା ଥିଲା ସ୍ୱାଭାବିକ । ତାହେଲେ ମଧ୍ୟ ସେ ଯେଉଁଭଳି ଭାବରେ ତାକୁ ଖୋଲି ଖୋଲି ପ୍ରଦର୍ଶନ କଲା ତାହା ନିତାନ୍ତ ଅଭଦ୍ରଜନକ ଥିଲା । ଏଇ ସମୟରେ ମହିପାଲର ମନୋଭାବ ଏହିପରି ଥିଲା ।

ଦୁଇବର୍ଷ ପୂର୍ବେ ଅନ୍ତ୍ରନାଡ଼ୀରେ ଘା ହୋଇ କଲ୍ୟାଣୀ ଅତ୍ୟନ୍ତ ବେମାର ଥିଲା । କର୍ଣ୍ଣେଲ ସହିତ ଡ଼ାଃ ଶିଲାପ୍ସିଂଗ ତାକୁ ଚିକିତ୍ସା କରିବା ନିମନ୍ତେ ଘରକୁ ଆସିଥିଲେ । ମହିପାଲ ସହିତ ଆଲାପ କରି ତାଙ୍କର ତା' ପ୍ରତି ବୋଲ୍ଡିକ ଆକର୍ଷଣ ହୋଇଥିଲା । କର୍ଣ୍ଣେଲ ମଧ୍ୟ ନିଜ ମିତର ଖ୍ୟାତି ଏବଂ ମହାନତାକୁ ବଢ଼େଇ ଚଢ଼େଇ ବର୍ଣ୍ଣନା କଲେ । ଶିଲା ମନରେ ଏହାର ମଧ୍ୟ ପ୍ରଭାବ ପଡ଼ିଲା । କଳା ଓ ସାହିତ୍ୟ ପ୍ରତି ଶିଲାର ରୁଚି ସ୍ୱାଭାବିକ ଥିଲା । ହିନ୍ଦି ସାହିତ୍ୟ ଉପରେ ତା'ର ପରିଚୟ ବିଶେଷ ନଥିଲା ଯଦିଓ ପ୍ରେମ-ଚାନ୍ଦଙ୍କର ଲିଖିତ ଦୁଇ ତିନିଟି ଉପନ୍ୟାସ ତଥା ଶରତଚନ୍ଦ୍ରଙ୍କର ହିନ୍ଦି ଅନୁଦିତ ଗୋଟିଏ ବା ଦୁଇଟି ବହି ସେ ପଢ଼ିଥିଲା । କିଛି ବହିର କିଛି କିଛି ଅଂଶ ଏବେ ମଧ୍ୟ ତା' ମନେ ଅଛି—ବାସ୍ ଏତକ ସାହିତ୍ୟ ପୁଞ୍ଜି ନେଇ ଉଭୟଙ୍କ ମଧ୍ୟରେ ବନ୍ଧୁତା ନିବିଡ଼ ହୋଇଥିଲା । ଅଲବତ ସେ ସମୟରେ ଆଗ୍ରହ ଅଧିକ ଥିଲା । ମହିପାଲ କର୍ଣ୍ଣେଲଠାରୁ ଧାର ଆଣି ନିଜ ଲେଖା ସମସ୍ତ ବହି କିଣି କର୍ଣ୍ଣେଲ ଜରିଆରେ ଶିଲା ସିଂଙ୍ଗଙ୍କ କର କମଳରେ ଅର୍ପଣ ମଧ୍ୟ କରିଥିଲେ । ଏହାପରେ ଶିଲା ସିଂଙ୍ଗ୍ ଫିସ୍ ନ ନେଇ, ଅଧିକ ଯତ୍ନ ସହକାରେ

କଲ୍ୟାଣୀକୁ ରୋଗ ମୁକ୍ତ କରାଇଥିଲା । ଶିଳା କଲ୍ୟାଣୀ ଓ ପିଲାଙ୍କ ସହିତ ନିବିଡ଼ ସ୍ନେହ ବନ୍ଧନରେ ବାନ୍ଧି ହୋଇଗଲା । ମଧୁପାଳକୁ ସେ ଜଣେ ଲେଖକ ଏବଂ ମଣିଷପଣର ମଣିଷ ହିସାବରେ ଶ୍ରଦ୍ଧା କରିବାକୁ ଲାଗିଲା, ସ୍ୱୟଂ ଶିଳା ନିଜର କଳାପ୍ରିୟତା, ରୁଚି, ସୌଜନ୍ୟ ତଥା ପ୍ରାଣ ଶୀଳତା ଯୋଗୁଁ ମଧୁପାଳକୁ କେବଳ ପ୍ରଭାବିତ କଲା ନାହିଁ ବରଂ ଆକର୍ଷିତ କଲା । ବାସ୍ ଦୁହିଁଙ୍କ ସମ୍ପର୍କ ଏତିକି ମାତ୍ର ଥିଲା । କଫି ହାଉସରେ ପ୍ରାୟ ଭେଟୁଥିଲେ । ମଧୁପାଳ ସହିତ ସଜ୍ଜନ ଓ କର୍ଣ୍ଣେଲଙ୍କ ପ୍ରତି ମଧ୍ୟ ତାର ଘନିଷ୍ଠତା ବଢ଼ିବାକୁ ଲାଗିଲା । ମାସ ମାସ ଏହିପରି କଟିଗଲା ।

ଦିନେ ମଧୁପାଳ ଏକୁଟିଆ କଫିହାଉସରେ ବସିଥିଲା । ଶିଳା ଆସିଲା । ସେଦିନ କିପରି ଅନ୍ୟମନସ୍କ ଥିଲା । ସେଠାରେ ନବସି ମଧୁପାଳକୁ ବାହାରେ ବୁଲିଯିବା ପାଇଁ ଡାକିଲା । ଦୁହେଁ ଗାଡ଼ିରେ ଲମା ଟିଜିଅର କଲେଜ ଆଗକୁ କଥା କହୁ କହୁ ପହଞ୍ଚିଗଲେ । ଗାଡ଼ିରୁ ଓହ୍ଲାଇ ଗୋଟିଏ ଜାଗାରେ ଏକାନ୍ତରେ ବସିଗଲେ । କଥା କଥାରେ ଶିଳାର ଦୃଷ୍ଟି ମଧୁପାଳ ପାଇଁ ଏପରି ଏକ ମଧୁର ସମ୍ପର୍କର ଅବତାରଣା କଲା ଯାହା ତା ପାଇଁ ନୂଆ ହେଲେ ମଧ୍ୟ ବହୁତ ରସମୟ ତଥା ତାଜା ଥିଲା । ଏହାର କିଛିଦିନ ପରେ ମଧୁପାଳର ଏକ ପତ୍ନୀବ୍ରତ ଖଣ୍ଡନ ହୋଇଗଲା । ଅପରାଧର ଭାବନା ରହି ମଧ୍ୟ ଶିଳା ସହିତ ମିଳିତ ହୋଇ ଆଜି ମଧ୍ୟ ତା ମନରେ ସେଇ ତାଜା ଭାବ ଆସେ ଯାହାକି ଘୁଣବର୍ଷ ପୂର୍ବେ ପ୍ରଥମ କରି ସେ ଅନୁଭବ କରିଥିଲା । ଶିଳା ମଧୁପାଳକୁ ସବୁ ବେଳେ ସନ୍ତୋଷ କରି ରଖିପାରିଥିଲା, ଏଇଟା ହିଁ ତା'ର ସବୁ ଠାରୁ ବଡ଼ଗୁଣ ଥିଲା । ମତଭେଦ ହେଲେ ମଧ୍ୟ ଏପର୍ଯ୍ୟନ୍ତ ଦିନେ ହେଲେ ଉଭୟଙ୍କର କଳି କଜିଆ ହୋଇନାହିଁ । ମଧୁପାଳ ଉଗ୍ର ପ୍ରକୃତିର । ଏହି ପ୍ରକୃତି ଶିଳା ଆଗରେ ମଧ୍ୟ ଅଛପା ରୁହେନା କିନ୍ତୁ ଶିଳା, ତାର ଉଗ୍ର ପ୍ରକୃତି ଉତ୍ପାତ ହେବା ପାଇଁ କମା ସୁଯୋଗ ଦିଏ ନାହିଁ । ତାର କ୍ରୋଧ ଆରମ୍ଭ ହେଉ ହେଉ ସେଇଠି ଶେଷକରି ଦେବାର ଆଶ୍ଚର୍ଯ୍ୟ କ୍ଷମତା ଶିଳାର ଥିଲା । ଏତେ ଘନିଷ୍ଠ ସମ୍ପର୍କ ରହିବା ସତ୍ତ୍ୱେ ମଧ୍ୟ ଆଜି ପର୍ଯ୍ୟନ୍ତ ଶିଳା ମଧୁପାଳର ଆର୍ଥିକ ସ୍ଥିତି ସମ୍ପର୍କରେ କୌଣସି ପ୍ରଶ୍ନ କରି ନାହିଁ, କିମ୍ବା ବ୍ୟକ୍ତିଗତ ଘରୋଇ କଥା ଆଲୋଚନା କରି ନାହିଁ । ଦୁହିଁଙ୍କ ମିଳନ ମଧ୍ୟ ରୋଜ ହୁଏ ନାହିଁ । ଦୁହେଁ ନିଜ ନିଜ କାମ ଓ ଧନ୍ଦା ତଥା ସମାଜ ନେଇ ବ୍ୟସ୍ତ ଥାନ୍ତି । ତଥାପି ଶୀଘ୍ର ଶୀଘ୍ର ମିଳିତ ହେବା ଯେପରି ସେମାନଙ୍କର ଅନିବାର୍ଯ୍ୟ ହୋଇଥାଏ ।

ମଧୁପାଳ ମନରେ ଶିଳାର କଥା ଉଠିଲା ମାତ୍ରେ ସମସ୍ତ ଖେଦ ଦୂର ହୋଇଗଲା । ଚିନ୍ତାକଲା – ସେଠାକୁ ଯିବ ରାତିଟା ସେଠାରେ କଟାଇ ନେବ ।

ମଧୁପାଳ ଉଠି ଠିଆ ହେଲା । ଥରେ ମନରେ ଖଟକା ଲାଗିଲା । ପୁଣି ଭାବିଲା ଶିଳା ଘରକୁ ଯିବା ବ୍ୟତୀତ ଅନ୍ୟ ଉପାୟ ନାହିଁ । ଏମିତରେ ସେ ସଜ୍ଜନ ଘରକୁ ଯାଇ

ପାରନ୍ତା, ମାତ୍ର ତା' ଘରକୁ ଯିବାକୁ ମନ ବ୍ୟୁସ୍ତ ନଥିଲା । ତା' ଦୃଷ୍ଟିରେ ସବୁକ ଅପ୍ରୋଜ୍ଟ ଥିଲା । କର୍ଣ୍ଣେଲ ଘର ତା' ନିଜ ଘର ପାଖରେ— ସେଠାକୁ ଗଲେ କେବଳ ଉପଦେଶାବଳୀ ଶୁଣିବାକୁ ପଡ଼ିବ .....ତେଣୁ ଶିଲା ଘରକୁ ହିଁ ଯିବାକୁ ହେବ ।

ଏହି ବସ୍ତୁରନେଇ ଦଶ ପାହୁଣ୍ଡ ଗଲା, ମନରେ ଭାବିଲା ବର୍ତ୍ତମାନ ଠାରୁ ସେ ଶିଲା ଘରେ ରହିଲେ କ୍ଷତି କଣ ? ସେ କଣ ରହିପାରିବ ? ଗୋଡ଼ ଅଟକି ଗଲା । ପୁଣି ମନରେ ଗମ୍ଭୀର ଅବସାଦ ଭରିଗଲା । ତା' ଜୀବନ ବିଲକୁଲ୍ ନିରର୍ଥକ ଅଟେ । ସେ ଏବେ ସନ୍ୟାସ ଗ୍ରହଣ କରିବ— କୁଆଡ଼େ ନିରୁଦ୍ଦିଷ୍ଟ ହୋଇଯିବ ।

ନିରୁଦ୍ଦିଷ୍ଟ ହେବା ପୂର୍ବରୁ ଶିଲା ସହିତ ଶେଷଥର ପାଇଁ ଦେଖା କରିବାର ଲୋଭ ପ୍ରବଳ ହୋଇ ଉଠିଲା, ଏବଂ ଏଇ ବାହାନା ନେଇ ସେ ଶିଲା ଘର ମୁହାଁ ହେଲା ।

ଶିଲାର କୋଠିରେ ପହଞ୍ଚି ଚାକର ଠାରୁ ଜାଣିଲା ଯେ "ମିସ୍ ସାହେବ" ଭିଜିଟରୁ ଫେରି ନାହାନ୍ତି । ଦଶ ବାଜିବାକୁ ପନ୍ଦର ମିନିଟ ବାକି ଥାଏ । ମହିପାଲ ଚାକରକୁ କଫି ଦେବା ପାଇଁ କହି ଲିଭିଂ ରୁମର ସୋଫା ଉପରେ ଗଡ଼ି ପଡ଼ିଲା । କୋଡ଼ିଏ ମିନିଟ୍ ପରେ ଶିଲା ଆସିଲା ।

ଶିଲାର ଗଣ୍ଡରେ ତିନୋଟି ହଳଦିଆ ଗୋଲାପ ଫୁଲ କାନର ଝୁମ୍କା ଫୁଲ, ଭାରି ସୁନ୍ଦର ଦିଶୁଥିଲା । ଶିଲା ବାହାରୁ ଭାରି ଖୁସିହୋଇ ଫେରିଥିଲା, ମହିପାଳକୁ ଦେଖି ଆହୁରି ଖୁସି ହୋଇଗଲା ।

"ୟୁ ରାସ୍କେଲ, ହ୍ୱାଟ ଆର୍ ୟୁ ଡୁଇଂ ହିଅର, ଏଟ ଦିସ୍ ଟାଇମ ଅଫ ଦି ନାଇଟ୍ ? ସ୍ତ୍ରୀ କଣ ଘରୁ ବିଦାକରି ଦେଲା ?"

ମହିପାଲ ଶୁଖିଲା ହସ ହସି କହିଲା —"ହୁଁ"

"ସତ କୁହ ଝଗଡ଼ା କରି ଆସିଛ ?"

ମହିପାଲ କଥାକୁ ହସରେ ଉଡ଼ାଇ ଦେଇ କହିଲା— "ନାହିଁମ । ମୁଁ ତ ଥଟ୍ଟାରେ କହିଲି । କଥା କଣକି, ଆଜି ସନ୍ଧ୍ୟାରେ ଏଇ ଆମେ ଦୁଇ ବୋକାରାମ ଏକାଠି ହେଲୁ ନାହିଁ । ମୁଡ୍ ମଧ୍ୟ ଖରାପ ଥିଲା, ବହୁତ ସମୟ ପର୍ଯ୍ୟନ୍ତ ହ୍ୱାଇଟ ଭିକ୍ଟୋରିଆରେ ବସି ରହିଲି । ତା ପରେ ଏଠାକୁ ଆସିବାକୁ ମନ ହେଲା । ଚାଲି ଆସିଲି । ତୁମେ କଣ ଖାଇ ସାରିଛ ?"

"ଏବେ କୋଉଠି ? ତୁମେ ବୋଧେ କୁଏ ଖାଇନ ?"

"ସେଇଥି ପାଇଁ ପଗ୍ଭରିଲ ।"

"ଅବ୍‌ଦୁଲ ।"

"ନା, ମିସ୍ ସାହେବ ।" ଭିତରୁ ଉତ୍ତର ଆସିଲା ।

ମହୀପାଳଙ୍କୁ ହସ ମାଡ଼ିଲା । ଶିଳା ଦେଖି ପଗ୍ଭରିଲା—"କଣ ହେଲା ହସିଲ କାହିଁକି ?"

ମହୀପାଳ କହିଲା—"ଅବ୍‌ଦୁଲ ତୁମକୁ ମିସ୍ ସାହେବ କହିବାରୁ ।" ଶୀଳା ଟିକେ ସମସ୍ତ ପରେ କଥା ବୁଝିପାରିଲା ଓ ଖୁବ୍ ଜୋରରେ ହସି ଉଠିଲା । ନିଜ ପାଖରେ ଥିବା ଗୋଲ ତକିଆ ଟେ ମହୀପାଳ ଉପରକୁ ଫୋପାଡ଼ିଲା, ଅବ୍‌ଦୁଲ ଆସିଯାଇ ଥାଏ । ଶିଳା ଗମ୍ଭୀର ହୋଇ ତାକୁ କହିଲା –"ସାହେବ ଏଠି ଖାଇବେ । ଆଜି କଣ ରାନ୍ଧିଛୁ ?"

"କୁକୁଡ଼ା ।"

ଠିକ୍ ଅଛି । ଖାଇବା ଦିଅ......ଟିକେ ରୁହ । ମହୀପାଳ ତୁମେ ଟିକେ ହ୍ୱିସ୍କି ପସନ୍ଦ କରିବ ?"

"ନିଶ୍ଚୟ ପସନ୍ଦ କରିବି ।"

ଅବ୍‌ଦୁଲ ଆଉ କିଛି କହିବା ଦରକାର ପଡ଼ିଲା ନାହିଁ । ଆଲମିରା ଖୋଲି ମାଗି ନେଇ ଟେବୁଲ ଉପରେ ହ୍ୱିସ୍କି ବୋତଲ ଓ ଗିଲାସ ରଖିଦେଲା ।

ଖାଇବା ଟେବୁଲ ଉପରେ ବସୁ ବସୁ ଶିଳା ପଗ୍ଭରିଲା—"ତୁମ ଉପନ୍ୟାସ କେତେଦୂର ଗଲା ?

"ଏବେ ଜମା ଆଗେଇନି ।"

"କେବେଠାରୁ ?"

"ପନ୍ଦର କୋଡ଼ିଏ ଦିନ ହେବ ।"

"ଏପର୍ଯ୍ୟନ୍ତ କେତେ ଲେଖିଲଣି ?"

"ଚଉଦିନ ପେଜ ।"

"ଲେଖିବା ବନ୍ଦ କଲ କାହିଁକି ?"

"ଏମିତି, ମଝିରେ ରେଡ଼ିଓର କିଛି କାମ ପାଇଥିଲି । ତା ଛଡ଼ା ଦୈନିକ ଖାଟେଣି ପରେ ଆଉ ସମୟ ମଧ୍ୟ ପାଉନି ।"

"ତାକୁ ଶେଷ କର । ବିଷୟଟା ଖୁବ୍ ଭଲ ଲାଗୁଛି ।"

କୁକୁଡ଼ା ମାଂସକୁ କଣ୍ଟା ଦ୍ୱାରା ଏପଟ ସେପଟ କରୁ କରୁ ହାଲୁକା ଭାବରେ ମଧୁପାଳ କହିଲା—

"ସେ ଠିକ୍ ହୋଇଯିବ । କିଏ ସେଥିପାଇଁ ଚିନ୍ତା କରୁଛି ଯେ—

"ବିଃ ରେ ଯଦି ସବୁ କଳାକାର ଏପରି ଭାବି ନେବେ ତେବେ କାଲିଠାରୁ କିଛି ନୂଆ ଆର୍ଟ ଦେଖିବାକୁ ମିଳିବ ନାହିଁ ।"

'ପୁରୁଣା କଥା ସବୁ ଏତେ ମନେ ପଡ଼ୁଛି ଯେ ସିନେମାର ଲୋକମାନେ ମଧ୍ୟ ତାକୁ ଡ଼ାଇଲଗ୍ ଭଳି ବ୍ୟବହାର କରୁଛନ୍ତି, ଲେଖିବା ପାଇଁ କେହି ଲେଖକଙ୍କୁ ବାଧ୍ୟ କରେନା, କରୁନାହିଁ । ସେ ନିଜେ ନିଜେ ଲେଖେ ମଧ୍ୟ ନିଜକୁ ନିଜେ ବାଧ୍ୟକରୁ ନାହିଁ । ଏହାର କାରଣ ଏହା ଯେ ଲେଖକ ବା କେହି ଆର୍ଟିଷ୍ଟ ନିଜ ଆର୍ଟ ପାଇଁ ଏତେ ବାଧ୍ୟ ହୁଏ ଯେ ସାମାନ୍ୟ ପ୍ରେରଣା ଶାନ୍ତି ପାଇଲେ ନିଜର କାମ ଆରମ୍ଭ କରି ଦିଏ ।'

'ଆଜିକାଲି ତମର କଣ ହୋଇଛି ?

ମଧୁପାଳ ପ୍ରଶ୍ନ ଶୁଣି ନିଜକୁ ସମ୍ଭାଳି ନେଲା. ସେ କହିଲା—'କିଛି ନାହିଁ, ଭଉଣୀଙ୍କର ବିବାହର ବିଷୟ ନେଇ ଚିନ୍ତା କରୁଛି । ପ୍ରତ୍ୟେକ ଦିନ କେଉଁଠୁ ଜାତକ ଆଣ, କାହାକୁ ଖୋସାମଦ କର, ଏହି ସବୁ କାମ ବୋର୍ ଭଳି ଲଦା ହୋଇଛି ।'

'ଶକୁନ୍ତଳା ବିବାହ କଣ ଠିକ୍ ହୋଇ ଯାଇଛି ?'

'ଆରେ, ପ୍ରଥମେ ତ ଜିନିଷ କିଣିବାକୁ ପଡ଼ିବ ଆମ ଘରେ ଏପରି ପ୍ରଥା ଅଛି ଯେ ଦାମୀ ଜିନିଷ ଉପରେ ମୋର ଅଧିକାର ନାହିଁ । ଝିଅର ବର ପାଇଁ ସବୁ ମୂଲ୍ୟବାନ୍ ଜିନିଷ ଦେଇ ମଧ୍ୟ ସବୁ କଥାରେ ଆମକୁ ବୋକା ହେବାକୁ ପଡେ, ଅପମାନ ସହିବାକୁ ପଡ଼େ ।'

'ମଧୁପାଳ, ତୁମେ ଏଇ ସଂକୀର୍ଣ୍ଣ ନିୟମକୁ ଭାଙ୍ଗି ଦେଇ ପାରୁନ ? ବର୍ତ୍ତମାନ ଯଦି ତୁମ୍ଭ ଭଳି ଲୋକ ଏହି ବିଷୟରେ ନେତୃତ୍ୱ ନ ନେବ ତାହେଲେ ସମାଜ ବଦଳିବ କିପରି ?' ତମ ମାନଙ୍କ ଉପରେ ତ ସମାଜର ପରିବର୍ତ୍ତନ ନିର୍ଭର କରେ; ତା ନହେଲେ ହେବ କେମିତି ?

'ଆରେ, ମୁଁ ତ ଲକ୍ଷେ ଥର ବଦଳିବି କିନ୍ତୁ ଆପଣଙ୍କର···ସେ କହୁଛି ଯେ ଶକୁନ୍ତଳାର ଶ୍ରେଷ୍ଠ ଜାତିରେ ବିବାହ ହେଲେ ସେ ବିଷ ଖାଇ ଆତ୍ମହତ୍ୟା କରିବ ।'

ପରିସ୍ଥିତିର ଜଟିଳତାକୁ ସମ୍ପୂର୍ଣ୍ଣ ସହାନୁଭୂତିର ସହିତ ବୁଝିଲେ ମଧ୍ୟ ମଧୁପାଳର କହିବା ଢଙ୍ଗ ଦେଖି ଶିଳାକୁ ହସ ମାଡ଼ିଲା । ସେ କହିଲା—'ତୁମେ ତ

କଲ୍ୟାଣି କଥାକୁ ଏପରି ଅନୁକରଣ କରୁଛ ଯେପରି ଆଚ୍ଛା ଏଥର ଭେଟିଲେ ତୁମ ନାଁରେ ଲୁହାଯିବ ।"

ମହୀପାଳ ଏହି କଥାର କିଛି ଉତ୍ତର ଦେଲ ନାହିଁ ଚୁପ୍‌ଚାପ ଖାଇବାକୁ ଲାଗିଲ ।

'ଅବ୍‌ଦୁଲ୍'

'ହଜୁର ।'

'ବାବୁଙ୍କର ଗ୍ଳାସରେ ଆଉ ଦେଇ ଯାଅ ।'

'ଆଜ୍ଞା ହଜୁର ।'

ଶିଳା କହିଲ ମୁଁ ତୁମର ଅସୁବିଧା ବେଶ୍ ବୁଝି ପାରୁଛି । ପୁଅ ଘର ଅନେକ ଜଞ୍ଜାଳ ମାଗୁଥିବେ ।'

'ମାଗିବାକୁ ଦିଅ ଶଳାଙ୍କୁ । 'ଗ୍ଳାସରେ ଦ୍ୱିତୀୟଥର ଢାଳା ହେବାରୁ ମନରେ ନୂତନ ଉତ୍ସାହ ଆସିଗଲା । ସେ କହିଲ—'ମୁଁ ଏସମ୍ପର୍କରେ ଜମା ଚିନ୍ତା କରୁନି । କଲ୍ୟାଣିର ଗରଜ ଥିଲେ ସେ ନିଜେ ହିଁ କରି ନେବ ।' ପୁଣି ଅବ୍‌ଦୁଲ୍‌କୁ କହିଲ—'ଆଉ ଟିକିଏ...।

ଗ୍ଳାସରେ ଦୁଇ ପେଗ୍ ଢାଳି ସେ ସୋଡା ବୋତଲଖୋଲୁଥିଲ । ଅବ୍‌ଦୁଲ ଶୀଘ୍ର ସୋଡ଼ା ରଖି ବୋତଲ ଫିଟାଇଲ । ଆଉରି ଦୁଇ ପେଗ୍ ଢାଳିଲା, ଶିଳା ପଚାରିଲ—

'ନା, ଆଇ ନିଡ୍ ଇଟ୍ ।' ଅବ୍‌ଦୁଲ୍‌କୁ ବୋତଲ ବନ୍ଦ କରୁଥିବାର ଦେଖି ତାକୁ ପଚାରିଲା—'ମେମ୍ ସାହେବଙ୍କୁ ଦେଲ ନାହିଁ ?'

'ମୁଁ ବର୍ତ୍ତମାନ ଆଉ ନେବି ନାହିଁ ।'

''ଅଳ୍ପ ଟିକିଏ କେବଳ ସଙ୍ଗ ଦେବା ପାଇଁ ।''

'ନା ସକାଳେ ପେସେଂଟ ଏଟେଣ୍ଡ କରିବାର ଅଛି ।'

ଗୋଟିଏ ପେଗ୍—?'

'ଅବ୍‌ଦୁଲ ତୁମେ ଯାଅ, ମୁଁ ନେଇ ନେବି । ସୋଢ଼ା ଖାଲି ଦେଇ ଯାଅ ।'

ଅବ୍‌ଦୁଲ ଗିବା ପରେ ଶିଳା ଉଠି ମହୀପାଳର ଗ୍ଳାସରୁ ଗୋଟିଏ ପେଗ୍ ନିଜ ଗାସରେ ଢାଳି ଦେଲ । ତାପରେ ସୋଢ଼ା ମିଶାଇଲ ।

ଗିଲାସ ମିଳାଇ ଦୁଇ ଜଣ ପିଇଲେ । ଗ୍ଲାସ ରଖି ଖାଇବା ଆରମ୍ଭ କରୁ କରୁ ଶିଳା କହିଲା—'ମହିପାଳ, ଗୋଟିଏ କଥା କହିବି ?'

'କଣ ?'

'ମୋର ଅନେକ ଟଙ୍କା ବ୍ଲକ୍ ହୋଇ ରହିଛି—ତାକୁ ଫ୍ଲୋଟ୍ କରିବା ପାଇଁ ମୋତେ ସାହାଯ୍ୟ କରିବ ?'

'ନାହିଁ'

'ପ୍ରଥମେ ମୋ କଥା ବୁଝ । ତୁମକୁ କେବଳ ଏତିକ ସାହାଯ୍ୟ କରିବାକୁ ହେବ ଯେ ମୁଁ ଯେପରି ଲୋକ ଚାହିଁବି । ସେପରି ଖୋଜି ଆଣିଦେବ ।'

'କଣ କାମ ପାଇଁ ?'

'ମୁଁ ପବ୍ଲିକେଶନ କରିବାକୁ ଚାହୁଁଛି । ପ୍ରଥମତ ତୁମେ ମୋତେ ତୁମର ସବୁ ବହି ପବ୍ଲିଶ କରିବାକୁ ଦିଅ । ସେ ସବୁ ଯେ ଯେଉଁଠି ଛପା ହୋଇଛି ମୁଁ ସବୁ ଗୁଡ଼ିକର ଷ୍ଟକ କିଣିବାକୁ ରାଜି ଅଛି । ଯାହା ବନ୍ଦ ହୋଇ ଯାଇଛି ତାର ନୂଆ ଏଡ଼ିସନ୍ ମୁଁ ଛପାଇବି । ବହିର ଧନ୍ଦା ବୁଝୁଥିବା ଏପରି ଜଣେ ଭଲ ମେନେଜର ତୁମେ ମୋତେ ଦିଅ—ବାସ୍ ଏତିକ ସାହାଯ୍ୟ ଚାହୁଁଛି ।

ମହିପାଳ ଚୁପ୍‌ଚାପ ଶୁଣୁଥିଲା ଶିଳାର କଥା ଶେଷ ହୋଇଗଲା ପରେ ମଧ୍ୟ ସେ କିଛି ଉତ୍ତର ଦେଲା ନାହିଁ । ଶିଳା ପୁଣି ପଚାରିଲା—'କୁହ ରାଜି ତ ?' ଆଉ ଗୋଟିଏ କଥା ମୁଁ ସଫା କହି ଦେଉଛି ଯେ ଏହା ମୋର ବିଜ୍‌ନେସ ଫର୍ମୁଲା । ଏହି ଖୁସିଥିବା ସମୟରେ ଲୋକେ ଅଳ୍ପ ବହୁତ ବହି ନଷ୍ଟପ୍ରାୟ କରିଛନ୍ତି । ଆଉ ମୁଁ ଏପରି ନୂଆ ଉପାୟରେ ପ୍ରଚାର ପବ୍ଲିସିଟି କରି ସେଲ୍‌ପୁଣ କରିବି ଯେ ତୁମେ ଦେଖି ଆଶ୍ଚର୍ଯ୍ୟ ହୋଇଯିବ ।

ମହିପାଳ ଜୋରରେ ହସି ଉଠିଲା—ଶିଳା ତାକୁ ଚାହିଁ ରହିଲା । ମହିପାଳ କହିଲା—'ତୁମକୁ ନ ମାଗି ମଧ୍ୟ ଲୋକେ ଖୋଲାଖୋଲି ମୋତେ ନିନ୍ଦା କରୁଛନ୍ତି ଆସି ମୁଁ ତୁମ ପଇସାରେ ବହି ଛପାଇଲେ ଲୋକେ ଆଉ ଫୁସୁର ଫାସର ନ ହୋଇ ଇତିହାସରେ ମୋର କଳଙ୍କ ଲେଖିବା ପାଇଁ ଆଗେଇ ଯିବେ ।

ମହିପାଳ ମୁଁ ବହୁଥର ଲକ୍ଷ୍ୟ କଲିଣି ଯେ ତୁମେ ଯେତେବେଳେ ନିଜ ବିଷୟରେ ଭାବୁଛ ସେତେବେଳେ ଅତି ସ୍ୱାର୍ଥପର ହୋଇ ପଡ଼ୁଛ । କେତେ ଦିନ ପର୍ଯ୍ୟନ୍ତ ଏହି ବୋକାମୀର ଶୀକାର ହୋଇଛି ରହିବ, ମୁଁ ସତ କହୁଛି—ବହୁତ ଦିନ ହେଲା ଏହି କଥା ଚିନ୍ତା କରୁଥିଲି । ବହୁତ ଚିନ୍ତା କରି ସାରିବାପରେ ଆଜି ତୁମକୁ ଏହି କଥା

କହିଲି । ଏହି କାମରେ ଆମ ଦୁଇ ଜଣଙ୍କ ଲାଭ ହେବ । ଆରେ, ମୁଁ ବହିର କାଟତି ବଢ଼ାଇବା ପାଇଁ ପବ୍ଲିସିଟିର ଏପରି ଭଲ ଭଲ ଉପାୟ ଚିନ୍ତା କରୁଛି ...।

'ସେସବୁ ମୋତେ ଶୁଣାଇବାର କିଛି ପ୍ରୟୋଜନ ନାହିଁ ।'

'ତୁମେ ମାତ୍ରାଧିକ ହେଉଛ କିଛି ସମୟ ପାଇଁ ଭାବନାରେ । ମୁଁ ତମର କେହି ନୁହଁ କାହିଁକି ଭୁଲି ଯାଉଛ ଯେ ତୁମେ ସେ ନୁହେଁ ଯିଏ କି ଯିଏ କି ମୋର । ସାଧାରଣ ଦୁଇଜଣ ବନ୍ଧୁ । ଆମେ ଦୁହେଁ ମିଳିମିଶି ଏପରି ବ୍ୟବସାୟ କଲେ କ୍ଷତି କଣ ? ସଂସାର କଥା ଛାଡ଼ । ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି ।'

'ମୁଁ ସଂସାରକୁ ଡରୁନି, ନିଜ ମନକୁ ଡରୁଛି ।'

'ତୁମେ ଡ଼ର ଡର କିଛି କରୁନ, ସବୁ ମିଛକଥା ସତ କହିଲେ ତୁମେ ଖରାପ ଭାବିବ । କିନ୍ତୁ ତୁମେ ଭୀଷଣ ମୂର୍ଖ ! ମୁଁ ଅଟ୍ଟା କରି କହୁ ନାହିଁ । ତୁମର ପ୍ରକୃତି ଏପରି ଯେ ତୁମେ ନିଜେ ନିଜକୁ ଶାନ୍ତି ଦେଇ ପାରୁନ । ଅନ୍ୟମାନଙ୍କ କଥା କଣ କହିବି ।'

ମହିପାଳ କିଛି କହିବାକୁ ଯାଉଥିଲା ଶିଳା ବୁଝିବା ସ୍ୱରରେ କହିବାକୁ ଲାଗିଲା —ଦେଖ 'ମୁଁ ଖୁବ୍ ଭଲ ଭଲ ସ୍କିମ୍ ଭାବୁଛି । ସବୁ ସ୍କୁଲ, କଲେଜ, ଇଉନିଭରସିଟି ମାନଙ୍କରେ ଏପରି ପବ୍ଲିସିଟି କରିବି ଯେ ତୁମର ବହି ପଢ଼ି ସେଗୁଡ଼ିକର ଭଲ ସମୀକ୍ଷା ହେବ ସେମାନଙ୍କ କମ୍ପିଟିସନରେ ଯିଏ ପ୍ରଥମ ହେବ ତାକୁ ପୁରସ୍କାର ଦିଆଯିବ । ଏଥିରେ ଲୋକେ ତୁମର ବହିଗୁଡ଼ିକ ଅଧିକରୁ ଅଧିକ ପାଇବା ଏବଂ ପଢ଼ିବାପାଇଁ ଉତ୍ସୁକ ହେବେ ।'

ମହିପାଳ ଏହା ଶୁଣି ମନକୁ ମନ ବହୁତ ହସିଲା । ଯେପରି ମରୁଭୂମିର ତୃଷାର୍ତ୍ତ ଲୋକକୁ ଅଣ୍ଟାପାଣି ମିଳି ଗଲା । ବହୁଲୋକ ତା ବହି ପଢ଼ି ପ୍ରଶଂସା କରନ୍ତୁ ଏହା ମହିପାଳର ଦୀର୍ଘଦିନର ବାସନା । କିନ୍ତୁ ଏହି ସ୍ୱାର୍ଥ ସିଦ୍ଧି ପାଇଁ ମହିପାଳ ନିଜର ମର୍ଯ୍ୟାଦା କ୍ଷୁର୍ଣ୍ଣ କରି ପାରିବ ନାହିଁ । ଶିଳାକୁ ହତୋତ୍ସାହ କରି କହିଲା—'ଦେଖ, ଏହି ପ୍ରକାଶନର କାମ ପାଇଁ ଅନେକ ସମୟ ଏବଂ ଅନେକ ପରିଶ୍ରମର ପ୍ରୟୋଜନ । ତମର ଏତେ ସମୟ କାହିଁ···?

'ତୁମେ କିପରି ଭାବିଲ ଯେ ମୁଁ ଏକାମରେ ମୋର ସମୟ ଦେଇ ପାରିବି ନାହିଁ । ବାସ୍, ମୋତେ ଗୋଟିଏ ଭଲ ବିଜ୍‌ନେସ୍ ମ୍ୟାନେଜର ଦେଇ ଦିଅ—ଦେଖ, ମହିପାଳ ମୋର ବେକାର ପଇସା ଲଭ ତଥା ଭଲ କାର୍ଯ୍ୟରେ ଲାଗିବ, ତୁମକୁ ମଧ୍ୟ ରିଜଲ୍‌ଟ ମିଳିବ । ମୁଁ ସତ କହୁଛି, ଏହି ପତନୋନ୍ମୁଖୀ ସମାଜରେ ମଧ୍ୟ ମୁଁ ଯଦି ତୁମର ବହିର ସେଲ ନ ବଢ଼ାଏ ତାହେଲେ ମୋତେ କହିବ ।'

'ବାସ୍ ଏତିକରେ ପ୍ରସଙ୍ଗ ଥାଉ, ବର୍ତ୍ତମାନ ନୂଆ କଥା ଆରମ୍ଭ କର ।'

'ଏହା ଖୁବ୍ ଗୁରୁତ୍ୱପୂର୍ଣ୍ଣ କଥା ଶୁଣ !

'ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ତୁମର ଏହି···ବ୍ୟବସାୟ ଚାଲି ପାରିବ ନାହିଁ । ମରିବା ପରେ କରିପାର ।

'ମହିପାଳ'—ଶିଳା ଅଭିମାନର ସହିତ କହିଲା—'ତୁମେ ମୋ କଥା କେବେ ମାନିନ ।'

ମହିପାଳ ଗ୍ଲାସ ହଠାତ୍ ହଠାତ୍ ମୂରକି ହସି କହିଲା—'ଶୁଣ, ଆଜି ମୁଁ ତୁମର ଏପରି କଥା ମାନିବି ଯାହା ଆଜି ପୂର୍ଣ୍ଣ ହେବା ନିମନ୍ତେ ଉପଯୁକ୍ତ ।'

'କଣ ମତଲବ୍ କଣ ?

'ଆଜି ମୁଁ ତୁମଠାରୁ ଅନ୍ତିମ ବିଦାୟ ନେବାକୁ ଆସିଛି ।'

ଶିଳା ଆବାକାବା ହୋଇ ରହିଗଲା । କିଛି ବୁଝି ପାରିଲା ନାହିଁ । କିନ୍ତୁ ଅନୁମାନ କରି ନେଲା, ପଚାରିଲା—'ତୁମେ କଣ ଚାହଁ ?'

× × × ×

ଦୁଇଜଣ ଶିଳାର ପଲଙ୍କ ଉପରେ ବସିଥିଲେ । ଶିଳା ସହିତ ମହିପାଳକୁ ଜଡ଼ିତ କରାଇ ଏଭଳି ତାକୁ ବଦ୍‌ନାମ କରା ଯାଇଛି ଶୁଣି ଶିଳା ମର୍ମାହତ ହେଲା । ସେଇ ଭାବନା ରହି ରହି ତା ମନକୁ ଘାଣ୍ଟୁଥିଲା । କିଛି ସମୟ ଚୁପ ରହିବା ପରେ ହଠାତ୍ ମହିପାଳର ଗଳାରେ ହାତ ଛନ୍ଦି ଛାତି ପାଖକୁ ଟାଣି ଆଣୁ ଆଣୁ ଲୁହ ଭରା ଆଖିରେ ଚାହିଁ କହିଲା—'ଦୁନିଆକୁ କହିବାକୁ ଦିଅ ।'

'ଦୁନିଆକୁ ମୁଁ ଖାତିର କରୁନାହିଁ । କଥା, କଲ୍ୟାଣି ଏବଂ ଛୁଆମାନଙ୍କ ପାଖରେ ପହଞ୍ଚି ଗଲାଣି...ମୋତେ ଏଇ କଥା, ପାଇଁ ବଡ ଦୁଃଖ ଲାଗୁଛି ଯେ ତୁମକୁ ସେମାନେ ଯେଉଁ ଦୃଷ୍ଟିରେ ଦେଖୁଥିଲେ ବର୍ତ୍ତମାନ ଆଉ ସେପରି ଦୃଷ୍ଟିରେ ଦେଖିବେ ନାହିଁ । ମୋ ପାଇଁ ଏବେ ତୁମକୁ ଛାଡ଼ିବା ବା ତାକୁ ଛାଡ଼ିବାର ପ୍ରଶ୍ନ ଉଠିଲାଣି ।'

ଶିଳା କିଛି କହିଲା ନାହିଁ । ସେହିପରି ପାଖକୁ ଲାଗି ବସିଥିଲା ।

'ଜାଣିରଖ କିଛି ଦିନ ପରେ ଘରେ—ବାହାରେ ସବୁ ଏହି ବିଷୟର ଚର୍ଚ୍ଚା ବନ୍ଦ ହୋଇଯିବ । ଏପ୍ରକାରର ସମସ୍ତ ଗୋଳମାଳ ନିଜର ତେଜ ଦେଖାଇ ଦବିଯାଆନ୍ତି । ଏହା ପରେ ଆମେ ପୁଣି ସେହିପରି ମିଳାମିଶା କରିବା ଏବଂ ଦୁନିଆ ଆମକୁ ନିର୍ଲଜ ଭାବି ଆମ ଆଡ଼କୁ ଆଙ୍ଗୁଠି ଉଠାଇବା ଛାଡ଼ିଦେବ ।'

ଶିଳା ସିଧା ହୋଇ ବସିଗଲା, କହିଲା—'ଦେଖ ମହିପାଲ, ଆମେ ଉଭୟ ଉଭୟଙ୍କୁ ଜାଣିଛୁ ତାହେଲେ ସେହି ବିଶ୍ୱାସକୁ ଆମେ ସଂସାର ଠାରୁ ଲୁଚ ରଖିବୁ କାହିଁକ ? ଆମର ସମ୍ପର୍କକୁ ସଂସାର ଯଦି ଭୁଲ ବୁଝୁଛି ତ ବୁଝୁ, କିନ୍ତୁ ଆମେ କାହିଁକ ଭୁଲ ଭାବିବା ? ଏହା ବ୍ୟକ୍ତିଗତ ଗୋଟିଏ କଥା ମୁଁ ତୁମକୁ ପଚାରୁଛି ଯେ ଏତେ ଦିନ ହେଲା ମୁଁ ତ କେବେ କଲ୍ୟାଣୀର ଅଧିକାର ଛଡ଼ାଇ ନେଇ ନାହିଁ । ତାହେଲେ କଲ୍ୟାଣୀ ପାଇଁ ତୁମେ କାହିଁକ ମୋର ଅଧିକାର ଛଡ଼ାଇ ନେଇଛ ?'

'ଶିଳା ତୁମେ ମୋତେ କଲ୍ୟାଣୀଠାରୁ ଛଡ଼ାଇ ଆଣିଛ, ଯେଉଁ ମନୁଷ୍ୟ ଉପରେ ତାର କୋଡ଼ିଏ ବର୍ଷ ହେଲା ଏକଚ୍ଛତ୍ର ଅଧିକାର କାଏମ ଥିଲା ତୁମେ ଆଜି ସେଥିରେ ଭାଗ ବସାଇଛ ।'

'କଲ୍ୟାଣୀ ଯେତେଦୂର ପର୍ଯ୍ୟନ୍ତ ତୁମକୁ ଜୟ କରିଛି ସେତିକର ଅଧିକାରଣୀ ସେ ହେଉ, ମୁଁ ଜିତିଥିବା ଭାଗକୁ ନେବାକୁ ସେ କିଏ । ମୁଁ କଦାପି ତୁମ ଠାରୁ ଦୂରେଇ ଯିବି ନାହିଁ । ପ୍ରମିଜ୍ କର ଯେ, ତୁମେ ଆଉ କେବେ ମୋ ସାମନାରେ ଏପରି କଥା କହିବ ନାହିଁ । ଏହି ପ୍ରେମ ତ୍ରିଭୁଜ ଆଙ୍ଗେଲ ହେଉ ପ୍ରୋବ୍‌ଲେମ୍‌ର ଚକ୍‌କରରେ ପଡ଼ିବାର ବୟସ ବର୍ତ୍ତମାନ ଆମର ନାହିଁ । ଆମେ ବର୍ତ୍ତମାନ ପର୍ଯ୍ୟନ୍ତ ଯେପରି ରହିଛୁ ସେହିପରି ରହିବା, କୁହ । କଥା ଦିଅ ଯେ ପଛେଇ ଯିବ ନାହିଁ ?'

ମହିପାଲର ପୌରୁଷ ପଛକୁ ପାଦ ଘୁଞ୍ଚାଇବାକୁ ପ୍ରସ୍ତୁତ ନ ଥିଲା । କହିଲା—'ମୁଁ କଥା ଦେଉଛି, ଆମର ସମ୍ପର୍କ ସବୁଦିନ ପାଇଁ ରହିବ ।' ମଦର ନିଶା ପ୍ରତିଜ୍ଞାଟିକୁ ଆହୁରି ଶକ୍ତିଶାଳୀ କରି ଦେଲା । କିନ୍ତୁ ଏପରି ଅବସ୍ଥାରେ ମଧ୍ୟ ସେ ସମ୍ପୂର୍ଣ୍ଣ ମାତ୍ରାରେ ମାତାଲ ହୋଇ ନଥିଲା । କିଛିଟା ନିଶାର ଅଧିନକୁ ଆସିଲା ପରେ ମଧ୍ୟ ମହିପାଲ ନିଜର ସ୍ୱାଭିମାନ କଥା ଭୁଲି ଯାଇ ନଥିଲା । କଥା ଦେଇ ସେ ମଧ୍ୟ ଶିଳାକୁ କଥା ମାଗିଲା—'ଆଉ ତୁମକୁ ମଧ୍ୟ କଥା ଦେବାକୁ ପଡ଼ିବ ଯେ ଆଉ କେବେ ତୁମେ ମୋ ପାଖରେ ବିଜ୍‌ନେସ କଥା କହିବ ନାହିଁ । ତୁମେ ନିଜକୁ ଲକ୍ଷପତି ଭାବୁଛ । ମୁଁ ଆଜି ତୁମ ଟଙ୍କାକୁ ଖାତିର କରେ ନାହିଁ ।'

ଆଜି ଏତିକରେ କଥା ଶେଷକର, ଆଉ ଏପରି କଥା କେବେ କହିବ ନାହିଁ । ନିଜର ଦୋଷ କ୍ଷମିବା ପାଇଁ ମହିପାଲର ଗୁଡିରୁ ନିଜ ମୁଣ୍ଡ ଟେକ ସେ ତାର ମୁହିଁକୁ ଚୁମିଁଲା । ଚତୁର ସ୍ତ୍ରୀ ପୁରୁଷକୁ ଭରଲେଇବା ଜାଣେ ।

ମହିପାଲ ଯେତେବେଳେ ଶୀଳା ଘରୁ ବାହାରିଲା ସେତେବେଳେ ରାତି ଦେଢ଼ଟା ହୋଇଥିଲା । ସେ ଶିଳାର ଗାଡ଼ୀ ନେଲା ନାହିଁ, କହିଲା – 'ସହରରେ କୌଣସି ଜିନିଷର ଅଭାବ ହୁଏ ନାହିଁ । ଏହି ଷ୍ଟ୍ରେସନରେ ବା ଡାଲଗଞ୍ଜରେ ନିଶ୍ଚୟ ରିକ୍‌ସା ବା ଟାଙ୍ଗା ମିଳିଯିବ ।'

ଶିଳା ତାର ଶାଲ ଜବରଦସ୍ତି ଦେଇ ଦେଲା । ଜୋରରେ ଅଣ୍ଡା ପଡ଼ୁଥିବାରୁ ମହିପାଲ ମନାମଧ୍ୟ କରିପାରିଲା ନାହିଁ । ରାସ୍ତା ଉପରକୁ ଆସି ସେ ଭାବିଲା—'ବର୍ତ୍ତମାନ କେଉଁଠି ଯିବ ।'

ହସ୍ପିଟାଲର ବିଭିନ୍ନ ବିଷୟରେ ଭାବି ଭାବି ମହିପାଲ ଶୀତ ରାତିରେ ଗୋମତି ଘାଟରେ ଗୋଟିଏ ଖୋଲା ଜାଗାରେ ନିଜର ଜ୍ଞାନ ଚେତନା ଦ୍ୱାରା ତା ମନକୁ ଉଦ୍ବୁଦ୍ଧ କରିବାକୁ ଲାଗିଲା । ତାସତ୍ତ୍ୱେ ସେ ଜାଣିଥିଲା ଯେ ସେ ନାନା ଦୋଷ ଦୁର୍ବଳତାର ଶିକାର ହୋଇଛି । ଏପରି ଅବସ୍ଥାରେ ତାର ବୁଦ୍ଧି ବିବେକ କେବେ ବିକଶିତ ହୋଇ ପାରିବ ନାହିଁ, ତାର କୌଣସି କାର୍ଯ୍ୟ ନ୍ୟାୟ ଏବଂ ଉଚିତ ହୋଇ ପାରିବ ନାହିଁ । ସେ ଦୁର୍ବଳ ହୋଇ ପଡ଼ୁଛି ଅନ୍ୟାୟୀ ଘର ଗୁଣ୍ଡବର ସିଦ୍ଧାନ୍ତ ତା ପକ୍ଷରେ ଅନୁଚିତ ପାପ ମଧ୍ୟ ।

ମହିପାଲର ଦୁର୍ବଳ ମନ ତାର ଶରୀରକୁ ଦୁର୍ବଳ କରିଦେଲା । ଆକାଶରେ ମିଟି ମିଟି କରୁଥିବା ତାରା ଗୁଡ଼ିକ ଲୁଚି ଯାଉଥିଲେ । ମହିପାଲ ଭାବିଲା ଯେ ରାତି ବର୍ତ୍ତମାନ ସରି ଆସୁଛି କିନ୍ତୁ ଦିନଟି କେଉଁଠି ଏବଂ କିପରି କଟିବ ? ଏହିପରି ବୁଲିବୁଲି ସେ ଶେଷରେ ଯିବ କେଉଁଠାକୁ ? କଣ ବୁଲି ବୁଲି ତାର ଜୀବନ ଶେଷ ହୋଇଯିବ ? ଏହି ବିଚାର କଣ ନିଜ ପାଇଁ କାପୁରୁଷତା ପ୍ରବୃତ୍ତି ନୁହେଁ ? ଏହି ଜ୍ଞାନ ଚିନ୍ତା ଯାହା କିଛି ସେ କରୁଛି ସେଗୁଡ଼ିକ କଣ ବାଜେ ସମୟ ବିତାଇବା ପାଇଁ, ସଉକ କରିବା ପାଇଁ ? ତାର କଣ କିଛି ସାମାଜିକ ମୂଲ୍ୟ ନାହିଁ ? ପିତା ହୋଇ କଣ ଝିଅମାନଙ୍କ ପାଇଁ ତାର କିଛି ନୈତିକ କର୍ତ୍ତବ୍ୟ ନାହିଁ ? ସହଜରେ ମୁହଁ ଲୁଚାଇ ରଖିବା କିପରି ସମ୍ଭବପର ହେବ ? ତାକୁ ଏହି ଅସୁବିଧାର ଦୃଢ଼ ମୁକାବିଲା କରିବାକୁ ପଡ଼ିବ ।

'ଘରକୁ ଯିବ । କଲ୍ୟାଣୀକୁ ସବୁ କଥା କହିବ ପରିସ୍ଥିତି ଯାହା ହେବ ଦେଖାଯିବ ।'

ମହିପାଲ ନିଜ ଘରେ ପହଞ୍ଚି କବାଟ ପାଖରୁ ଫେରି ଆସିଲା, ଝିଙ୍କିରି ଖଟ୍ ଖଟ୍ କରିବାର ସାହାସ ତାର ହେଲା ନାହିଁ

କର୍ନେଲର ଘରେ ସେ ସକାଳୁଦିନ ପରି ପହଞ୍ଚିଗଲା ।

ସଜ୍ଜନ ଏବଂ କର୍ନେଲ ସ୍ୱପ୍ନରେ ମଧ୍ୟ ଭାବି ନ ଥିଲେ ଯେ ତାଙ୍କର ବନ୍ଧୁ ଗତକାଲି ସକାଳୁ ଗୃହତ୍ୟାଗୀ !

# କୋଢ଼ଏ

'ଆରେ ବାବୁ ସେ ହୁଏତ ଠିକ୍ କହୁଥିବେ ଆଜକାଲି ସାଧୁ ସନ୍ନ୍ୟାସୀମାନଙ୍କ କଣ କଛି ଠିକ୍ ଠିକଣା ଅଛି ।'

ଛକ ପାଖରେ ଥିବା ଗୁହ୍ମା ଦୋକାନ ପାଖରେ ଅନେକ ଲୋକଙ୍କ ଭିଡ଼, ଫଳରେ ଅଧେ ରାସ୍ତା ବନ୍ଦ ହୋଇଯାଇଛି । କେତେକ ଲୋକ ଭିଡ଼ରେ ପଶି ମଜା ଦେଖିବା ପାଇଁ ଠେଲାପେଲା ହୋଇ ଆଗେଇଛନ୍ତି, କେତେକ ମଜା ଦେଖି ଦେଖି ଫେରୁ ଫେରୁ ନାନା ମତ ପ୍ରକାଶ କରୁଛନ୍ତି । ଜଣେ ସ୍ତ୍ରୀ ଲୋକ ପାଟି କରି କନ୍ଦାଉଛି, ତା ପାଟି ସହିତ ଆଉରି କେତେଜଣଙ୍କ ପାଟି ମଧ୍ୟ ଶୁଣାଯାଉଛି ।

ସଜ୍ଜନ ସବୁଦିନ ଯେଉଁଠି ଗାଡ଼ି ରଖେ ସେଇଠି ନିଜ ଗାଡ଼ି ରଖିଲା । ଅସୁ ଅସୁ ଭିଡ଼ ଉପରେ ତାର ନଜର ପଡ଼ିଲା । ଗାଡ଼ୀରେ ଚାବି ଦେଇ ବାହାରିବା ପରେ ସେ ଗାଡ଼ି ପାଖରେ ଠିଆ ହୋଇ ଭିଡ଼କୁ ଲକ୍ଷ୍ୟ କଲା । ପାଖ ଦେଇ ଯାଉଥିବା ଲୋକଙ୍କର କଥା ଶୁଣି ଭିତରେ କଣ ହେଉଛି ଦେଖିବା ପାଇଁ ଇଚ୍ଛା ହେଲା ତାର ।

ଭିଡ଼ ଭିତରେ ସେ ଦେଖିଲା ଯେ ଓ୍ୱିଲଙ୍କ ପାଗଳ ବୋହୂ ଗୋଟିଏ ଚଉକି ଉପରେ ବସି ଜୋରେ ଜୋରେ କାନ୍ଦି ଚିତ୍କାର କରୁଛି ଆଉ ପାଖରେ ଜଣେ ଲେଙ୍ଗଟି ପିନ୍ଧା ବାବାଜି ଠିଆ ହୋଇ ହସୁଥାନ୍ତି । ସଜ୍ଜନ ନିଜର ପରିଚିତ ପାଗଳ ଏହି ତାମଶାର ମୁଖ୍ୟ ନାୟିକା ହେବା ଦେଖି ଚୁପଚାପ ଅନ୍ୟ ମାନଙ୍କ ଭଳି ଠିଆ ହୋଇ ରହିପାରିଲା ନାହିଁ । ତା ପାଖକୁ ଆସି ମୁଣ୍ଡ ଉପରେ ହାତ ରଖି ପଚାରିଲା —'କଣ ହୋଇଛି ?'

ତା ପାଟିରୁ ପୁଣି କଥା ସରିନି । ଏପରି ସମୟରେ ତାକୁ ଦେଖି ସେ ଏପରି ଠିଆ ହେଲା ଯେପରି କି ବୁଡ଼ି ଯାଉଥିବା ଲୋକଙ୍କୁ କୁଟା ଖଣ୍ଡେ ଆଶ୍ରୟ ମିଳିଛି । ସେ ଖୁସିରେ ଗଦ୍ ଗଦ୍ ହୋଇ କହିଲା —'ଓ୍ୱହୋ, ୟୁ ହେବ୍ କମ ଜେଣ୍ଟେଲମ୍ୟାନ୍ । ମୋତେ ସ୍ୱାଙ୍କ ହାତରୁ ବଞ୍ଚାନ୍ତୁ । ସେ ସାଧୁ-ଫାଧୁ କିଛି ନୁହନ୍ତି, କଂସେଇ, ଏକଦମ୍ ଗୋଟିଏ କଂସେଇ । ଇଏ ମୋତେ ବେଶ୍ୟା ବନେଇବାକୁ ଚାହୁଁଛି । ମୁଁ କଣ ବେଶ୍ୟା ? ଆପଣ କୁହନ୍ତୁ ମୁଁ କେତେ ଉଚ୍ଚ ଘରର—ଏକଥା ମୋର ସ୍ୱାମୀ ଜାଣି ପାରିଲେ ସେ ଆସି ଏହି ବାବାଜୀକୁ ଗୁଳି କରି ମାରିଦେବ । ଆପଣ ମୋତେ ମୋର ସ୍ୱାମୀ ପାଖକୁ ନେଇ ଚାଲନ୍ତୁ । ମୋର ସ୍ୱାମୀ କେପ୍‌ଟେନ୍ ସେ ଆସି ଯେତେବେଳେ

ଦେଖିବ ଏଠି ସବୁଲୋକମାନେ ଏପରି ଭିଡ଼ କରିଛନ୍ତି ତାହେଲେ ଏହି ଲୋକମାନଙ୍କୁ ଟକ୍-ଟାକ୍ ଗୋଟିଏ ଗୋଟିଏକୁ ଶୁଟ୍ କରି ଦେବେ । ଆଉ ସେ ବାବା ହରମିର ପିଲ...'

ପାଗଳ ଥରେ ବାବାଙ୍କ ଆଡ଼କୁ ହାତମୁଠା କରି ଆଗେଇ ଗଲା । ସଜ୍ଜନ ତାର ଦୁଇ ହାତ ଭିଡ଼ି ଧରି ଜୋରରେ ଟାଣି ଦେଲା ଆଉ ପଚାରିଲା—'ଆପଣ ଘରକୁ ଯିବେ ପରା ?'

'ସେଇ ବୁଢ଼ା ପାଖକୁ ? ନାହିଁ କଦାପି ଯିବି ନାହିଁ । ଆପଣ ମୋତେ ମୋର ରାଜେଶ ପାଖରେ ପହଞ୍ଚେଇ ଦିଅନ୍ତୁ । ଆପଣ ମୋତେ ସେଠାକୁ ନେଇ ଚାଲନ୍ତୁନା । ମୁଁ ଏଇଠି ଆଉ ରହିବି ନାହିଁ । ଚାଲନ୍ତୁ-ଚାଲନ୍ତୁନା । ସେ ସଜ୍ଜନକୁ ଆଗ୍ରହର ସହିତ ଠେଲିବାକୁ ଲାଗିଲା ।

ସଜ୍ଜନ ଥରେ ପାଖରେ ଠିଆ ହୋଇଥିବା ଲେଙ୍ଗୁଟି ପିନ୍ଧା ସାଧୁଙ୍କୁ ଦେଖିଲା । ତାଙ୍କର ଦାନ୍ତ ବଦନ ମୁହଁ ଦାଢ଼ିରେ ପୂର୍ଣ୍ଣ ଥିଲା । ବାକି ସାରା ଦେହ ଖୋଲା ଥିଲା । ଶ୍ୟାମ ବର୍ଣ୍ଣ ହେଲେ ମଧ୍ୟ ତେଜମୟ ଥିଲା । ବାବାଙ୍କୁ ସଜ୍ଜନ ଦେଖିଥିବାରୁ ପାଗଳ କହିଲା—'ବାବାଙ୍କୁ କଣ ଚାହୁଁଛ ? ସେ ମୋତେ କଦାପି ଅଟକେଇ ପାରିବେ ନାହିଁ । 'ପାଗଳ ପୁଣି ତାର ହାତକୁ ଟାଣିବାକୁ ଲାଗିଲା । ସାଧୁ ସଜ୍ଜନକୁ କହିଲେ—'ରାମଜି ବର୍ତ୍ତମାନ ଅନେକ ଭିଡ଼ ହୋଇ ଯାଇଛି ଆପଣ ଟିକେ ମୋ ସହିତ ଆସିବାର କଷ୍ଟ ସହିବେ ? ତାର ହାତ ଛାଡ଼ି ଦିଅନ୍ତୁ ।'

ସଜ୍ଜନ ଶୀଘ୍ର ପାଗଳର ହାତ ଛାଡ଼ିଦେଲା । ଆଉ ସାଧୁଙ୍କ ସହିତ ଭିଡ଼ରୁ ବାହାରିବାକୁ ଆଗେଇଲା । ପାଗଳ ଶୀଘ୍ର ତାର ହାତ ଧରି ପକାଇଲା ଏବଂ ଟାଣି ଧରି କହିଲା—'ନାହିଁ ବାବାଙ୍କ ସାଙ୍ଗରେ ଯାଆନ୍ତୁ ନାହିଁ । ସେ ଆପଣଙ୍କୁ ମଧ୍ୟ ପାଗଳ କରିଦେବେ, ଚେର ଖୁଆଇବେ, କସରତ କରାଇବେ ମାରିବେ । ବାବା ଆଗେଇ ଯାଇ ଚାହାବାଲା ଦୋକାନର ଚାକରକୁ କହିଲେ—'ପୁଅ ଟିକେ ଲକ୍ଷ୍ୟ ରଖିବ ।'

ସଜ୍ଜନ ପାଗଳକୁ ବୁଝାଇବାକୁ ଲାଗିଲା ଯେ ସେ ବାବାଜୀଙ୍କୁ ନେଇ ଜେଲରେ ପୁରାଇବାର ବ୍ୟବସ୍ଥା କରିବ । ପାଗଳ ଏକଥା ଶୁଣି ଖୁବ୍ ଖୁସି ହେଲା । ପୁଣି ପାଗଳକୁ ଆଶ୍ୱାସନ ଦେଇ କହିଲା ଯେ ବାବାଜୀଙ୍କୁ ଗିରଫତାର କରିବା ପରେ ସେ ତାକୁ ଶୀଘ୍ର ଉଡ଼ାଜାହାଜରେ ବସେଇ ରାଜେଶ ପାଖକୁ ନେଇ ଯିବ ।

ଭିଡ଼ରୁ ବାହାରି ସଜ୍ଜନ ଏବଂ ସାଧୁ ଗୋଟିଏ ଜାଗାରେ କଥା କହିବା ପାଇଁ ଠିଆ ହେଲେ । ପାଞ୍ଚ ସାତ ଜଣ ଶୀଘ୍ର ତାଙ୍କ ପାଖରେ ଆସି ଭିଡ଼ କଲେ ବୃଦ୍ଧ ସାଧୁ କହିଲେ—'ରାମଜି ମୁଁ ଏହି ଝିଅଟିର ଉପଚାରକ ଅଟେ । ଆପଣ କଣ ତାର କୌଣସି ଆତ୍ମୀୟ ?

ସଜ୍ଜନ କହିଲା—'ଆଜ୍ଞା ନାହିଁ ଦିନେ ଏହି ପରି ଭାବେ ଗଳିରୁ ବାହାର ଚାଲି ଯାଇଥିଲା ମୁଁ ତାକୁ ଘରକୁ ଫେରାଇ ନେଇ ଯାଇଥିଲି । ସେତେବେଳେ ଏହି ବସ୍ତିର ସମସ୍ତ କଥା ଜାଣି ପାରିଲି ତାର ଶଶୁର...'

ତାର ଶଶୁରଙ୍କୁ ମଧ୍ୟ ବର୍ତ୍ତମାନ ଖବର ଦେଇଛି ଯେ ସେ ଆଶ୍ରମରୁ ଚାଲି ଆସିଛି । ଆପଣ ଟିକେ ଦୟାକରି ଆସନ୍ତୁ । ସେ ବସ୍ତିର ନିଜ ଇଜ୍ଜତ ଏବଂ ସମ୍ମାନକୁ ଡରି ବଜାରକୁ ଆସିବାକୁ ରାଜି ହେଲେ ନାହିଁ । ସେ ମୋତେ କହିଲେ ବାବା ଆପଣ ସାହାଯ୍ୟ କରିବେ । ଦୁର୍ଭାଗ୍ୟ, ଯିବାକୁ ବର୍ତ୍ତମାନ ଅସୁବିଧାରେ ପଡ଼ିଯାଇଛି । ମୋ ସହିତ ଯିବ ନାହିଁ ବୋଲି ସଫାକହୁଛି । ଆଉ ମୁଁ ଏହି ଭିଡ଼ରେ ପାଗଳ ବିଶେଷ କରି ଝିଅଟି ଉପରେ ବଳ ପ୍ରୟୋଗ କରିବି ଏଇଟା ମୋର ମତ ବିରୁଦ୍ଧ । ଆପଣ ଗୋଟିଏ କାମ କରି ଦେବେ ରମଜ, ତାକୁ ଭୁଲେଇ ମୋର ଆଶ୍ରମରେ ଛାଡ଼ି ଦେଲେ ବଡ଼ ଉପକାର ହେବ ।

ସଜ୍ଜନ କହିଲା—'ମୋ ପାଖରେ ଗାଡ଼ି ଅଛି ।'

ପାକୁଆ ପାଟିରେ ହସି ହସି ସାଧୁ କହିଲେ —'ବାସ୍-ବାସ୍, ତାହେଲେ ତ ଆପଣ ସବୁ ବ୍ୟବସ୍ଥା ପକ୍‌କାକରି ଆସିଛନ୍ତି । ଆପଣ ତାକୁ ଆପଣଙ୍କ ଗାଡ଼ିରେ ନେଇ ଚାଲନ୍ତୁ । ମୁଁ ଶୀଘ୍ର ଯାଇ ପହଞ୍ଚୁଛି । ଏହି ବଗିଚା ପରେ ସିଧା ସଡ଼କ ଉପରେ ମୋର ଆଶ୍ରମ ।'

'ମୁଁ ବୁଝିଗଲି ଆଉ କିଛି ଭୁଲ ହେବ ନାହିଁ ! ଆପଣଙ୍କ ଦଉଡ଼ିଯିବାର ମଧ୍ୟ ଆବଶ୍ୟକତା ନାହିଁ । ମୁଁ ତାକୁ ଗୋଟିଏ ଘଣ୍ଟା ବୁଲାଇ ଦଶ ମିନଟ୍‌ରେ ପହଞ୍ଚୁଛି— ମୋର ବୁଲିବାରେ ଆପଣଙ୍କର କିଛି ଆପତ୍ତି ଅଛି କି ?'

ସାଧୁ ଜଣକ ପାକୁଆ ପାଟିରେ ଖିଲ୍ ଖିଲ୍ କରି ହସି ଉଠିଲେ । ତାଙ୍କର ହସ ଛୁଆମାନଙ୍କ ପରି ନିର୍ମଳ ହସ ଥିଲା, ଛୋଟ ଛୋଟ ଆଖିରେ ଅପାର ସ୍ନେହ ଭରି ରହିଥିଲା । ସେହି ହସ ସଜ୍ଜନକୁ ପ୍ରଭାବିତ କରିଲା । ସାଧୁ କହିଲେ—'ରମଜଙ୍କ କାମରେ ଆପତ୍ତି କରିବାକୁ ମୁଁ କିଏ ? ସେ ସବୁବେଳେ ଉଚିତ କାମ କରନ୍ତି ଆଚ୍ଛା ରମଜ, ପୁଣି ଆଶ୍ରମରେ ଭେଟ ହେବ ।

ଗାଡ଼ୀରେ ବସି ପାଗଳୀ ଖୁବ୍ ଖୁସି ହେଲା । ପ୍ରଥମେ ତାକୁ ସଙ୍କୋଚ ଲାଗୁଥିଲା । ଗାଡ଼ିରେ ବସୁ ବସୁ କହିଲା—'ମୁଁ ଏମିତି ହୋଇ ଗାଡ଼ିରେ ଯିବି ? ମୋ ଗୋଡ଼ରେ ଜୋତା ନାହିଁ, ମୋର ଏହି ଲୁଗା ! ଛିଃ ମୁଁ ଏପରି ଚିରିା ଲୁଗା ପିନ୍ଧି ଗାଡ଼ିରେ ଯିବି ? ମୁଁ ଯିବି ନାହିଁ । ସଜ୍ଜନ ତାକୁ ଆଶ୍ୱାସନା ଦେଇ କହିଲା ଯେ ସେ ତାକୁ ଜୋତା ଏବଂ ଶାଢ଼ୀ କିଣି ଦେବାପାଇଁ ଯାଉଛି । ତାପରେ ସେ ଖୁସିରେ ଗାଡ଼ିରେ ବସିଗଲା । ସଜ୍ଜନ ତାର ଦୁଇଟି ଯାକ କଥା ପୂର୍ଣ୍ଣ କଲା ।

ସେଣ୍ଡ୍ରେଲ ଏବଂ ଶାଢ଼ୀ ନେଇ କେପ୍‌ଟେନ୍ ରାଜେଶର ପାଗଳ ସ୍ତ୍ରୀ ଭାରି ଖୁସି ହେଲା । ତାର କଥା ମୋଟେ ବନ୍ଦ ହେଲା ନାହିଁ । ମୋଟ କଥା ଥିଲା ସେ ତାର ରାଜେଶକୁ ପାଇବା ପାଇଁ କିପରି ଛଟପଟ ହେଉଛି । ନିଜ ଭଲ ପାଇବାର ଗୁପ୍ତ ଲୀଳାର ମଧୁର କଳ୍ପନା କରୁ କରୁ ଏବଂ ଉଚ୍ଛ୍ୱାସର ସହିତ କହୁ କହୁ ପାଗଳ ଖୁବ୍ ଆନନ୍ଦିତ ହେଉଥିଲା । ସଜ୍ଜନ ପାଇଁ ଏହି ସମୟ କଟିବା ମୁସ୍କିଲ ଥିଲା । ସ୍ତ୍ରୀ ପୁରୁଷର ଅତି ଗୋପନ ମଧୁର ରହସ୍ୟ ଗୋଟିଏ ଅତୃପ୍ତ ବାସନା ପାଗଳୀର ମହାନ କାମନା ହୋଇ ତା ମନରେ ରସ ବଦଳରେ ପୀଡ଼ା ଦେଉଥିଲା । ସେ ଗମ୍ଭୀର ହୋଇ ଶୁଣୁଥିଲା ଏବଂ ଏହି ସାମୟିକ ଅବସ୍ଥା ପାଇଁ ସଜ୍ଜନର ମାନସିକ ପ୍ରତିକ୍ରିୟା କଷ୍ଟଦାୟକ ଥିଲା ଅତୃପ୍ତି ମନକୁ କେତେ ଦୂର ବେଗତି କରିଦିଏ ଏହା ଜାଣି ତାର ମନରେ ଭୟ ହେଉଥିଲା । ମନୁଷ୍ୟ ଯେଉଁ କଥାକୁ ନିଜର ଅତି ମଧୁର ଓ ଗୋପନୀୟ ରହସ୍ୟ ବୋଲି ଭାବେ, ତାକୁ ମଧ୍ୟ ଅନାୟାସରେ ଏବଂ ବିକୃତ ଭାବରେ ସର୍ବ ସାଧାରଣରେ ଏପରି ପ୍ରକାଶ କରିପାରେ । ତାକୁ ଭାରି କଷ୍ଟ ଲାଗୁଥିଲା ଯେ କୌଣସି ମନୁଷ୍ୟ ପାଗଳ ହୋଇପାରେ । ଏହି ସଜ୍ଜନ ଭଳି ପ୍ରତିଷ୍ଠିତ ଧନୀ ନାଗରିକ, ପ୍ରସିଦ୍ଧ କଳାକାର ଏବଂ ସୁନ୍ଦର ସ୍ୱାସ୍ଥ୍ୟବାନ୍ ଯୁବକ ନିଜର ଅତୃପ୍ତି ପାଇଁ ଯଦି କେବେ ପାଗଳ ହୋଇଯାଏ ତେବେ ? ... ... ହେ ଭଗବାନ ! ସଜ୍ଜନ ସିହରି ଉଠିଲା ଗାଡ଼ି ମେଡ଼ିକେଲ କଲେଜ ଟପି ପକ୍‌କା ପୋଲ ଏବଂ ବଡ଼ାଇ ମାମବାଡ଼ା ମାଚ୍ଛି ଭବନ ପଛରେ ରଖି ଘାଟ ପାଖରେ ପହଞ୍ଚିଗଲା ।

ଘାଟର ଗଳୀର ମୁହାଣ ପାଖରେ ଥିବା ଲ୍ୟାଂପ ପୋଷ୍ଟ ପାଖରେ, ଲ୍ୟାଂପ ପୋଷ୍ଟପର ଲେଙ୍ଗୁଟି ବାବା ଠିଆ ହୋଇଥିଲେ । ତାଙ୍କ ପାଖରେ ଗାଡ଼ି ରଖିବାକୁ ପାଗଳୀ ପାଟିକରି କାନ୍ଦିବାକୁ ଲାଗିଲା—'ମୁଁ ଯିବି ନାହିଁ । ମୁଁ ବାବାଙ୍କ ପାଖକୁ ଯିବି ନାହିଁ ।'

ସାଧୁବାବା ଗାଡ଼ିର କବାଟ ଖୋଲି ପାଗଳୀର ହାତ ଧରି ଟାଣିବା ସମୟରେ ଗୋଟିଏ ଆପୁଡ଼ ତାକୁ ମାରିଲେ । ସେଣ୍ଡ୍ରେଲ ବାକ୍‌ସ ପଡ଼ିଗଲା । ପାଗଳ ସେହି ସମୟରେ ମାଡ଼ ଭୁଲିଯାଇ ତାର ଜିନିଷ ପାଇଁ ଆତୁର ହୋଇ ଉଠିଲା । ମାଡ଼ ଖାଇ ସେ ଚୁପ ହୋଇଯାଇଥିଲା । ମନେହେଲା ଯେପରି ସେ ବୁଝିଛି ସେ ସାଧୁଙ୍କ ହାତରୁ ଖସିବାକୁ ଚେଷ୍ଟା କଲା । ସାଧୁ ତାର ଆତୁରତା ଦେଖି ମିଠା ସ୍ୱରରେ କହିଲା—'ଏ କଣ ଆଣିଛୁ ଝିଅ ?'

ତାଙ୍କ ଶକ୍ତ ମୁଠାରୁ ଖସିବାକୁ ଚେଷ୍ଟା କରି ଧୀର କଣ୍ଠରେ କହିଲା—'ମୋର ଚପଲ, ମୋ ଶାଢ଼ୀ— ମୋର ରାଜେଶ ମୋତେ ଦେଇଛି ।

ସାଧୁ କହିଲେ —"ନାଇଁ ଏ ଭଦ୍ରଲୋକ ଦେଇଛନ୍ତି ।"

'ନାହିଁ ନାହିଁ ମୁଁ କଣ କୌଣସି ପର ପୁରୁଷଠାରୁ କୌଣସି ଜିନିଷ ନେଇ ପାରେ ? ଆପଣ ମୋତେ ଛୁଡ଼ି ଦିଅନ୍ତୁ । ମୋର ସ୍ୱାମୀ ମୋତେ କହୁଛନ୍ତି ଯେ ଏହି ଶାଢ଼ୀ ଏବଂ ସେଣ୍ଡେଲ ପିନ୍ଧ… ?

'ଆଚ୍ଛା ଯା ଛୁଡ଼ି ଦେଲି ।' ଏହା କହି ସାଧୁ ତାକୁ ଛୁଡ଼ି ଦେଲେ । ସେ ରାସ୍ତା ଉପରେ ପଡ଼ିଥିବା ଶାଢ଼ୀର ବାକ୍ସ ଉଠାଇବାକୁ ଗଲା । ସାଧୁ ଖୁବ୍ ଶୀଘ୍ର ଯାଇ ସେହି ବାକ୍ସ ଏବଂ ଫାଉଣ୍ଟେନ୍ ଉପରେ ପଡ଼ିଥିବା ସେଣ୍ଡେଲର ବାକ୍ସକୁ ଉଠାଇ ନେଲେ ।

ପାଗଳ ବହୁତ ବ୍ୟସ୍ତ ହେବାକୁ ଲାଗିଲା । ସାଧୁ ତାକୁ କହିଲେ—'ଏହି ସବୁ ଜିନିଷ ତୁମର ସ୍ୱାମୀ ଦେଇଛନ୍ତି ନା ?

'ହଁ'

'ଇଏ ଦେଇ ନାହାନ୍ତି ତ ?

'ନା'

'ଆଚ୍ଛା ତାହେଲେ ମୁଁ ଏଇ ଜିନିଷ ଦୁଇଟାକୁ ଗୋମଡରେ ପକାଇ ଦେଉଛି ।'

ଏହା ଶୁଣି ଯେପରି ପାଗଳର ଜୀବନ ଛୁଡ଼ିଗଲା । ସାଧୁଙ୍କ ହାତ ତଳକୁ ଧରି ସେଥିରୁ ନିଜ ଜିନିଷ ନେବାପାଇଁ ପିଲାଙ୍କପରି ବ୍ୟସ୍ତ ହେବାକୁ ଲାଗିଲା । ସାଧୁ ହସୁଥିଲେ । ଏହି ଘଟଣା ଓଟର ବେଳେ ସଜ୍ଜନଙ୍କୁ କହିଲେ—'ସ୍ୱାମୀଜୀ ବହୁତ ଉପକାର କଲେ । କିଛି ସମୟ ପାଇଁ ଆଶ୍ରମକୁ ଆସନ୍ତୁ ।

ପାଗଳ ନିଜ ଜିନିଷ ପାଇଁ ପାଟି କରୁଥିଲା । ତାକୁ ଥରେ ଗୁହିଁ ହାତ ଯୋଡ଼ି ସଜ୍ଜନ କହିଲା—'ଆଉ ଦିନେ ଆସିବି । ଆପଣଙ୍କ ଏଠାରେ ଅନେକ ପାଗଳ ଅଛନ୍ତି ନାଁ ?

'ହଁ ସ୍ୱାମୀଜୀ ମୋତେ ପାଗଳ ଦୁନିଆର ସେବକ ବନେଇ ଦେଇଛନ୍ତି ତେଣୁ କଣ ମୁଁ ମୋର ଉନ୍ନତି କରୁଛି ! ଆଚ୍ଛା ବର୍ତ୍ତମାନ ଯାଉଛି । ଏହି ଜିନିଷ ଯାହାଙ୍କ ସ୍ୱାମୀଙ୍କ ଦେଇଛି ସେ ସବୁ ଗୋମଡରେ ଭସାଇ ଦେଉଛି । ନମସ୍କାର । ଏହା କହି ସାଧୁ ବାକ୍ସ ଧରି ପାଗଳକୁ ଚଡ଼ାଇ ଚଡ଼ାଇ ଦଉଡ଼ିଲା—'ମୁଁ ଏଗୁଡ଼ିକୁ ବର୍ତ୍ତମାନ ଫୋପାଡ଼ି ଦେଉଛି ଫୋପାଡ଼ି ଦେଉଛି ।'

ପାଗଳ ନଜ କନଷ ରଖିବା ପାଇଁ ବାବାଙ୍କ ପଛରେ ଦଉଡ଼ିବାକୁ ଲାଗିଲା । ସଜ୍ଜନ ଠିଆ ହୋଇ ଏହି ଦୃଶ୍ୟ ଦେଖୁଥିଲା । ସାଧୁ ଏବଂ ପାଗଳ ଘାଟ ଆଡ଼କୁ ଯାଉ ଯାଉ ଆଖି ଅଢ଼ୁଆଳକୁ ଚାଲିଗଲେ ।

ନିଜ ରୁମ୍‌କୁ ଆସି ସଜ୍ଜନ ଏପରି ନିସ୍ତେଜ ହୋଇ ପଡ଼ିଗଲା ଯେପରି କି ତା ଦେହରେ ଜମା ଶକ୍ତି ନାହିଁ । ଚେହେରା ଏକବାରେ ଫିକା ପଡ଼ିଯାଇଥିଲା । କେତେ ଦିନ ହେଲା ସଜ୍ଜନ ବନକନ୍ୟା ନିଜର ମନର ସମ୍ପର୍କରେ ଗଭୀର ମାନସିକ ଦ୍ୱନ୍ଦ୍ୱରେ କଟାଉଥିଲା । କାଲି ସନ୍ଧ୍ୟା ବେଳେ ବନକନ୍ୟା ଯିବା ସମୟରେ ତାର ବଢ଼ୁଥିବା ବାସନାକୁ ପୁଣି ଭାଙ୍ଗି ଦେଇ ଯାଇଥିଲା । ଧୀରେ ତା ମନ ଅସ୍ଥିର ହେବାକୁ ଲାଗିଲା । ଥରେ ହୁଇସ୍କି ସୋଡ଼ା ମଧ୍ୟ ମଗାଇଲା କିନ୍ତୁ ଗ୍ଲାସ ଓଠ ପାଖକୁ ନେଇ ଅଟକି ଗଲା । ପ୍ରତିଜ୍ଞା ଭଙ୍ଗ କରିବା ପାଇଁ ତା ମନ ବାରମ୍ବାର ନିଷେଧ କଲା । ସଜ୍ଜନ ପାଟିକରି ଗ୍ଲାସକୁ ସାମନାରୁ ହଟାଇବା ପାଇଁ ବୃକଲକୁ ଆଦେଶ ଦେଲା । ସେ ସକାଳେ ମଧ୍ୟ ଉଦାସଥିଲା । ନିଜର ଧ୍ୟାନ ମନ୍ଦିରରେ ମଧ୍ୟ ତା ମନ ଲାଗିଲା ନାହିଁ । ସେ ମନେ ମନେ ସ୍ଥିରକଲା ଯେ ଏଥର କନ୍ୟାଠାରୁ ଦୂରରେ ରହିବ, ତା ସହିତ ଆଉ କୌଣସି ପ୍ରକାର ସମ୍ପର୍କ ରଖିବ ନାହିଁ । ସେ ସବୁ ସ୍ତ୍ରୀଙ୍କଠାରୁ ଦୂରରେ ରହିବ । ଯଦି ଦରକାର ପଡ଼େ ତାହେଲେ ଦେଠେଇ କହୁଥିବା ଅଜଣା ଝିଅକୁ ବିବାହ କରିବ ।

ସଜ୍ଜନ ତାର ତର୍କ, ଚିନ୍ତା, ସମ୍ଭ୍ରମ, ଅସମ୍ଭ୍ରମ, ଏବଂ ସମାଧାନର ଘନ ଜଙ୍ଗଲ ଭିତରେ ଘୂରି ବୁଲୁଥିଲା । ତାକୁ କ୍ଷଣକ ପାଇଁ ମଧ୍ୟ ଶାନ୍ତି ମିଳୁ ନଥିଲା । ଏହି ସମୟରେ ପାଗଳ ତା ମନରେ ଭୟଙ୍କର ମୂର୍ତ୍ତୀ ଧାରଣ କରି ତାର ସମସ୍ତ ଭାବନାର ପୂର୍ଣ୍ଣଚ୍ଛେଦ ପକାଇଥିଲା । ସଜ୍ଜନର ମନରେ ଅନାୟାସରେ ଏହି ଆଶଙ୍କା ରହିଛି ଯେ ସେ ମଧ୍ୟ ଦିନେ ନା ଦିନେ ଏହିପରି ଚେତନା ମୁକ୍ତ ପାଗଳ ହୋଇଯିବ । ଏଭଳି ମାନସିକ ଅବସ୍ଥାର ଉପରେ ସଜ୍ଜନ ଚେଷ୍ଟି ହୋଇଯାଇଥିଲା । ତାକୁ ନିଦ ଆସିଗଲା ।

ଘର ଭିତରେ ମହାକବି ବୋଉ ହେଁ ହେଁ ହୋଇ ପଶି ଆସିଲା । ସଜ୍ଜନକୁ ଶୋଇଥିବାର ଦେଖି ନିଶ୍ଚିନ୍ତ ହୋଇ ବଡ଼ବେହୁ ଘର ପଟକୁ ଥିବା ଝରକା ପାଖକୁ ଯାଇ ଗୋଟିଏ ଫିଲ୍‌ମ ଗୀତ ଗାଇଲା—

'ଆ ହା ହା ହା ! ଠଣ୍ଡି ହାଓ୍ୟାଏଁ
ଲୌଟ କେ ଆଏ
ହାମ ହେ ସ୍ୱା ହାଁ । ତୁମ ହୋ ଓ୍ୱାହାଁ ।
କେ ସେ ବୁଲାଏ ।

ଉପର ଝରକାରୁ କୌଣସି ଆଶ୍ୱାସ ମିଳିଲା ନାହିଁ । ବରହେଣ ଦ୍ୱିତୀୟ ଗୀତ ଗାଇଲା—

'ଚନକେ ବୁଲାଏ ପେ ତୋଲେ ମେରା ଦିଲ—
ଯାଉଁ ତୋ ମୁଶକିଲ୍ ନ ଯାଉଁ ତୋ ମୁସ୍କିଲ୍ ।

ତଥାପି ବରହେଣ ତାର ପ୍ରେୟସିର ମୁଖଚନ୍ଦ୍ର ଝରକାରୁ ଦେଖିବାକୁ ପାଇ ନଥିଲା । ଅପରାଜିତ ପ୍ରେମିକ ତୃତୀୟ ଗୀତ ଗାଇଲା—

'ଦିଲ କିସିକୋ ଦିଜିଏ, ଦିଲ୍ କିସିକା ଲିଜିଏ
ଜିନ୍ଦଗୀ ହେ ଚାର ଦିନ, ଖୁବ କାମ କିଜିଏ ।'

ମୁହଁ ଉଠାଇ ପୁନର୍ବାର ସେ ଝରକାକୁ ଚାହିଁ ଜୋରରେ ଗାଇବାକୁ ଲାଗିଲା ଯେପରି କି ଗୀତ ତା ପ୍ରେୟସି ପାଖରେ ପହଞ୍ଚି ପାରିବ । ସଜ୍ଜନର ନିଦ ଭାଙ୍ଗି ଗଲା । ଆଖି ଖୋଲୁ ଖୋଲୁ ବରହେଣ ଏପରି ଚିତ୍କାର କରି ଗୀତ ଗାଇବା ସେ ସହି ପାରିଲା ନାହିଁ । ନିଜର ମାନ ସମ୍ମାନ ରକ୍ଷା କରିବାକୁ ଯାଇ ସେ ରାଗି ପାଟି କଲା—'ଷ୍ଟୋର' ଗେଟ୍ ଆଉଟ୍ ।'

ବରହେଣ କଷ୍ଟେମ୍ବିଲ କମ୍ପା ମହିପାଲଠାରୁ ଏପରି ଦୁର୍ବ୍ୟବହାର ଆଶା କରୁଥିଲା । କିନ୍ତୁ ସଜ୍ଜନଠାରୁ ନୁହେଁ । ନିଜର ଗୃହିତ ଗ୍ରାହିଣି ଗୁଞ୍ଜି ହାତ ଜୋଡ଼ି ଧାବଗେଇ ଯାଇ ଥଙ୍ଗ ଥଙ୍ଗ ହୋଇ କହିଲା—'ଆପଣ ଶୋଇଥିଲେ । ମୋତେ ଜଣା ନ ଥିଲା ।

ସଜ୍ଜନ ନିଜର ଅଭଦ୍ରତା ପାଇଁ ସଙ୍କୁଚିତ ହୋଇଗଲା । ଏହିପରି ଭାବରେ କୌଣସି ବାହାର ଲୋକକୁ ଅଭଦ୍ର କଥା କହିବାର ଅଭ୍ୟାସ ତାର ନଥିଲା । ବୋଉ ତାର ବାହାଦୁରି ଦେଖାଇବାକୁ ଆରମ୍ଭ କଲା—'ମୁଁ ତ ସଜ୍ଜନ ଭାଇ - ହେଁ ହେଁ ଆଜିକାଲି ନିଜର ଦ୍ୱିତୀୟ ଅମର ଗୀତ ଲେଖିବା ପାଇଁ ମୁଡ଼ରେ ଅନ୍ୟମନସ୍କ ରହୁଛନ୍ତି ଯେ…

କନ୍ୟା ହାତରେ ପୁଞ୍ଜିଆ ଧରି ଘରେ ପଶୁ ପଶୁ ହଠାତ୍ କବାଟ ପାଖରେ ରହିଗଲା । ତାକୁ ଦେଖି ସଜ୍ଜନର ମିଳନ ଏବଂ ଦମନର ଇଚ୍ଛା ଏକ ସଙ୍ଗରେ ଉଠିଲା । ବରହେଣ ବନକନ୍ୟାକୁ ଦେଖି ପୁଣି ହେଁ ହେଁ ହୋଇ ବନକନ୍ୟାକୁ ଦୁଇ ହାତ ଯୋଡ଼ି କହିଲା—'ଆପଣ ବୋଧେ ହେଁ ହେଁ ଆପଣ ବୋଧେ କୁମାରୀ ବନକନ୍ୟା ମୁଁ ଆପଣଙ୍କୁ ନାଟକରେ ପାର୍ଟ କରିବା ଦେଖିଛି । ଆଜିକାଲି ତ ଆପଣଙ୍କ ଖ୍ୟାତି ଖୁବ୍ ବଢ଼ିଯାଇଛି । ହେଁ ହେଁ ସଜ୍ଜନ ଭାଇ ଆପଣଙ୍କ କୀର୍ତ୍ତିକୁ ଆକାଶରେ ଉଡ଼େଇ ଦେଉଛନ୍ତି । ହେଁ ହେଁ ।'

କନ୍ୟା ଗମ୍ଭୀର ଭାବରେ 'ହୁଁ' କହି ଭିତରକୁ ଆସିଲା । ସଜ୍ଜନ ଥରେ ଗ୍ଲାସ୍ ଲଣ୍ଡ୍ ଆଲରେ ଢ଼ାଳି ମେଜ ଉପରେ ରଖି ତା ପାଖକୁ ଆସି ପଚାରିଲା 'ତୁମର ଦେହ କପରି ଅଛି ?'

କନ୍ୟାର 'ତୁମର' ଶବ୍ଦ ପ୍ରୟୋଗ ସଜ୍ଜନ ପାଇଁ ଜାଦୁର ଭଳି କାମ କଲା । କନ୍ୟା ପ୍ରତି ତାର ସବୁ ରାଗ ପାଣିରେ ଲୁଣ ଭଳି ମିଳାଇଗଲା । ଆଉ ତାର ସବୁ ରାଗ ଯାଇ ବିରହେଶ ଉପରେ ପଡ଼ିଲା । ସେ କହିଲା –ବିରହେଶ ମୋର ଦେହ ଭଲ ନାହିଁ ମୁଁ ଏକଲା ରହିବାକୁ ଚାହୁଁଛି । ଦୟାକରି ଏଠାରୁ ଚାଲିଯାଅ । କହି ସଜ୍ଜନ ତକିଆ ଉପରେ ମୁଣ୍ଡ ରଖି ଆଖି ବନ୍ଦକରି ଶୋଇ ପଡ଼ିଲା ।

କନ୍ୟା ଚକିତ ଭାବରେ ତାକୁ ଦେଖିବାକୁ ଲାଗିଲା । ବିରହେଶ ଦୁଇଜଣଙ୍କୁ ଚେରଚ୍ଚ ଚାହିଁ ହସି କହିଲା –'ଭଗବାନ ଶୀଘ୍ର ଆପଣଙ୍କ ଶରୀର ଠିକ୍ କରନ୍ତୁ । ବିରହି ବିରହେଶ ତାର ସଜ୍ଜନ ଭାଇକୁ ସବୁବେଳେ ଏହି କଲ୍ୟାଣ କରିବ ।' କହି କହି ବିରହେଶ ବାହାରକୁ ଗଲା । ଦୁଇଜଣ ବୁଝିଲେ ଯେ ସେ ଚାଲିଗଲା । ସଜ୍ଜନ ସ୍ୱସ୍ତିର ନିଶ୍ବାସ ପକାଇଲା କିନ୍ତୁ ବିରହି ଗୀତ ଉପରେ ଯାଇ ପୁଣି ବସି ଗଲା । ସଜ୍ଜନ ଦାନ୍ତ କାମୁଡ଼ି ରହିଗଲା । କନ୍ୟା କବାଟ ଆଡ଼କୁ ପିଠି କରି ସଜ୍ଜନ ସମ୍ମୁଖରେ ବସି ପଚାରିଲା—'ତୁମର ଦେହ କପରି ଅଛି ?'

ସଜ୍ଜନର ମନମାରି କହିଲା—'ତୁମ ପାଇଁ ମରୁଛି

କନ୍ୟା ହସି କହିଲା—'ମୁଁ ସଞ୍ଜିବନୀ ବଟିକା ଆଣିଛି ।

ସଜ୍ଜନ ଆଜି ପ୍ରଥମ ଥର ପାଇଁ ରସ ପୂର୍ଣ୍ଣ କଥା ଶୁଣି ବଡ଼ ଆଶ୍ବାସନା ପାଇଲା । ଭିଜା ଧାନ କ୍ଷେତ ଉପରେ ପବନ ବହି ଯିବାପରି ଅନୁଭୂତ ତାର ହେଲା । ଭୁଲାମନ ପଛର ସବୁ କଥା ଭୁଲିଯାଇ ରସରେ ବୁଡ଼ିଯିବାକୁ ଲାଗିଲା । ସେ କହିଲା –'ଛୋଟ ବେଳେ ଆଇ ମୋତେ ଗୋଟିଏ କାହାଣି କହୁଥିଲା ଯେ ଗୋଟିଏ ପରି ଗୋଟିଏ ରାଜ କୁମାରକୁ ଉଡ଼ାଇ ନେଇଗଲା । ଦିନସାରା ସେ ତାକୁ ଜାଦୁ କାଠି ଦ୍ୱାରା ମଲାଙ୍କ ପରି ରଖୁଥିଲା । ଆଉ ରାତିରେ ରାତିରେ ଯେତେବେଳେ ତାର ଖେଳିବାକୁ ଇଚ୍ଛା ହେଉ-ଥିଲା, ତାକୁ ସେ ବଞ୍ଚାଇ ଦେଉଥିଲା । ଖେଳିବା ପରେ ରାଜ କୁମାର ପୁନର୍ବାର ମରି ଯାଉଥିଲା ।'

ଏହା ଶୁଣି କନ୍ୟା ହସିଲା ।

ବାହାରେ ବିରହେଶ ଗୀତ ଆରମ୍ଭ କଲା—ଯେ ରାତେଁ ଯେ ମୌସମ୍ ଯେ ହଁ ସନା ହସାନ ମୁଦେଁ ଭୁଲଯାନାଂ ଇହେ ନା ଭୁଲନା ।

କନ୍ୟା ଏବଂ ସଜ୍ଜନଙ୍କୁ ଖୁବ ଖରାପ ଲାଗିଲା କନ୍ୟା ଆସ୍ତେ ପଚାରିଲା—'ଇଏ କିଏ ?'

'ବଦମାସ୍‌ଟା, ବଦମାସ୍ ଏଇଠି ମଧ୍ୟ ମୋ ପିଛା ଛାଡ଼ୁନାହିଁ ।

ବିଭୁକ୍ରେଶର ଗୀତ ପଞ୍ଚମସ୍ୱରରେ ଚାଲିଲା ।

କନ୍ୟା ହଠାତ୍ ଉଠି କବାଟ ଆଉଜାଇ ଦେଲା । ପୁଣି ମେଜ ଉପରୁ ଲଡ଼ୁର ଥାଳି ଉଠାଇ ଗୋଟିଏ ଖବରକାଗଜ ବିଛାଇ ସଜ୍ଜନ ପାଖରେ ରଖୁ ରଖୁ କହିଲା—'ମୋତେ ଚାକିରି ମିଳିଗଲା ।'

ସଜ୍ଜନ ଚମକି ଉଠିଲା । କନ୍ୟା ପାଇଁ ଚାକିରି ଖୋଜିବା କଥା ସେ ବର୍ତ୍ତମାନ ପର୍ଯ୍ୟନ୍ତ ଭାବିନି ଭାବିନ, ତା ପାଇଁ କାହିଁ ଚେଷ୍ଟା ତ କରିନ ? ଏହି ଚାକିରି ମଧ୍ୟ କଣ କର୍ଣ୍ଣେଲର ଚେଷ୍ଟାରେ ମିଳିଛି ? ଗୋଟିଏ କ୍ଷଣରେ ତା ମନରେ ଅନେକ ଧକ୍‌କା ଲାଗିଲା ।

ଥାଳି ଭିତରେ ଗୋଟିଏ ପତ୍ରରେ ଲଗା ହୋଇଥିବା ସିନ୍ଦୂର ନିଜ ଆଙ୍ଗୁଳିରେ ଲଗାଇ ସଜ୍ଜନଙ୍କୁ ଟିପା ଲଗାଇ ଦେବା ପାଇଁ କନ୍ୟା ତା ପାଖକୁ ଆସିଲା । ସଜ୍ଜନ ତା ସ୍ପର୍ଶରେ ଶିହରି ଉଠିଲା । କନ୍ୟା ତା ଆଖିରେ ଆଖି ମିଳାଇ ହସୁଥିଲା । ତାର ଗୋରା କପାଳରେ ସିନ୍ଦୂରର ଟିପା ଖୁବ୍ ସୁନ୍ଦର ଦେଖା ଯାଉଥିଲା । ସଜ୍ଜନ ହଠାତ୍ ତାର ହାତ ଧରି ଧୀରେ କହିଲା—'କନ୍ୟା ମୁଁ ତୁମକୁ ବିବାହ କରିବାକୁ ଚାହେଁ । କନ୍ୟା ଗମ୍ଭୀର ହୋଇଗଲା କିନ୍ତୁ ସେ ହାତ ଛଡ଼େଇବାକୁ ଚେଷ୍ଟା କଲା ନାହିଁ । କହିଲା—'ବର୍ତ୍ତମାନ ତାର ସମୟ ଆସି ନାହିଁ । ଏହା କହି ସେ ଆସ୍ତେ ଆସ୍ତେ ନିଜ ହାତ ଛଡ଼େଇ ନେଲା । ଅନ୍ୟକଥା କହି ତା ଆଡ଼କୁ ଥାଳି ବଢ଼ାଇ କହିଲା—'ମହାବୀରଙ୍କ ଭୋଗ ।'

ସଜ୍ଜନ ନିଜ କଥା ଉଠାଇବାକୁ ଚାହୁଁଥିଲା । ସେ ଲଡ଼ୁ ଆଡ଼କୁ ନ ଚାହିଁ ପୁଣି ପଚାରିଲା—'ଡ଼େରି କାହିଁକି ? କନ୍ୟା ଶାନ୍ତ ଭାବରେ କହିଲା—'ବର୍ତ୍ତମାନ ଆମେ ଦୁଇ ଜଣ ଜଣେ ଅନ୍ୟକୁ ଭଲ ଭାବରେ ଜାଣିନୁ ।'

'ଏଇଟା ତୁମର ଖିଆଲ । ତୁମେ ଜାଣ ଯେ ମୁଁ ତୁମକୁ ଚାହୁଁଛି ଆଉ ମୁଁ ମଧ୍ୟ ଜାଣେ ଯେ ତୁମେ ମୋତେ······'

'ଏଇଟା ତୁମର ଖିଆଲ । ନିଅ, ଲଡ଼ୁ ଉଠାଅ । ଭଗବାନଙ୍କ ପ୍ରସାଦ ଗ୍ରହଣ କରିବାକୁ ଡ଼େରି କରନ୍ତୁ ନାହିଁ ।

'ତୁମେ ମଧ୍ୟ ମୋତେ ଭଗବାନଙ୍କ ପ୍ରସାଦ ଭଳି ମିଳିଛ କନ୍ୟା, ମୁଁ ତୁମକୁ ଗ୍ରହଣ କରିବାକୁ ଡେରି କରିବାକୁ ଚାହୁଁ ନାହିଁ ।' ସଜ୍ଜନ ଆଖିରେ ଅବୁଝିର ଉତ୍ତେଜନା ଚମକି ଉଠିଲା ।

ବାହାରୁ ବିରହେଶ କହିଲା—'ଭାଉଜ ଆପଣ ସଜ୍ଜନଭାଇଙ୍କ ପାଇଁ ସ୍ୱ ବନେଇଥିଲେ ମୋତେ ମଧ୍ୟ କପେ ଦେବ । ଭଗବାନ ତୁମର ମଙ୍ଗଳ କରିବେ, ...... (ପୁଣି ଗାଇବାକୁ ଲାଗିଲା) ଦୟା କରେ ହେ ଦୟାଳୁ ଭଗବାନ, ମେଁ ବୈଠା ବୈଠା ତଡ଼ପ ରହା ହୁଁ ......'

ସଜ୍ଜନ ଏବଂ କନ୍ୟାକୁ ବିରହେଶର ଏହି ପାଗଳାମି କଥା ଅସହ୍ୟ ଲାଗିଲା । କନ୍ୟା କୋଠରିରେ କବାଟ ଫିଟାଇ ବିରହେଶକୁ କହିଲା 'ମହାଶୟ ମୁଁ ଆଜି ପର୍ଯ୍ୟନ୍ତ ଆପଣଙ୍କ ଭଳି ପାଗଳ ଲୋକ ଦେଖି ନାହିଁ । ଆପଣଙ୍କୁ ଏହି ମିଛ ସମ୍ପର୍କ ବନାଇବାର ଅଧିକାର କିଏ ଦେଲା ?'

'ଚାଲି ଆସ କନ୍ୟା, ଚାଲି ଆସ ନା ! ଭିତରୁ ସଜ୍ଜନ କହିଲା ।

ବାହାରେ ବଡ଼ବୋହୂ ତାର ଝରକା ପାଖକୁ ଆସି ଯାଇଥିଲା । ବିରହେଶର ଆଖି ସେଠାରେ ଅଟକି ଗଲା । ବନକନ୍ୟାର ରାଗ ତାର ପ୍ରେମିକ ରଙ୍ଗକୁ ବେରଙ୍ଗି କରି ଦେଇଥିଲା । ତେଣୁ ସେ ହାତ ଯୋଡ଼ି କହିଲା—'କ୍ଷମା ମାଗୁଛି ଦେବି ! ମୁଁ ମୁ ମୋର ଦ୍ୱିତୀୟ ଅମର ଗୀତର ମୁଡ଼୍‌ରେ ଥିଲି । ..... ମୋର ଦ୍ୱିତୀୟ ଅମର ଗୀତ ମୋର ପଲକର ସିଂହାସନରେ ବସି ଆଖିକୁ ଉଜ୍ଜଳ କରୁଛି ।

ବିରହେଶର ସ୍ୱପ୍ନ ପୁଣି ଦୃଷ୍ଟି ପୁଣି ବଡ଼ବୋହୂର ଝରକା ପାଖରେ ପହଞ୍ଚି ଗଲା । ବଡ଼ବୋହୂ ଠିଆ ହୋଇ ତ ର ପ୍ରିୟତମକୁ ଗୋଟିଏ ସୁନ୍ଦରୀ ଦ୍ୱାରା ଗାଳି ଦିଆଯାଉଥିବା ଦେଖି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିଲା । ବନକନ୍ୟା ବିରହେଶର ପାଗଳାମି ଦେଖି ରାଗି ଫେରି ଆସିଲା । ସେ ଗିବା ପରେ ବିରହେଶ କନ୍ୟା ଦ୍ୱାରା ଫିଟାଯାଇଥିବା କବାଟ ବନ୍ଦ କରିଦେଲା ।

ବଡ଼ବୋହୂ ରାଗଆଡ ଫାଙ୍କା ଦେଖି ଝିରକି ପାଖକୁ ଆସିଲା । ବିରହେଶର ମୁଖମଣ୍ଡଳ ଉଜ୍ଜଳ ହୋଇଗଲା । ଦୁଇଜଣଙ୍କ ଦିଗରୁ ନାନା ପ୍ରକାର ଇଶାରା ଦିଆ ନିଆ ଆରମ୍ଭ ହୋଇଗଲା ।...'ବର୍ତ୍ତମାନ ଆଉ ରହି ହେବ ନାହିଁ । ଆଉ ସହି ହେବ ନାହିଁ, ହାୟ କେତେ ଅସୁବିଧା, କେତେବେଳେ ଦେଖା ହେବ । ମୁଁ ଜୀବନ ଦେଇ ଦେବି ।' ଭଲପାଇବା ଭିତର ଫୁଲଝରି ଦୁଇଜଣଙ୍କୁ ଆଉ ଛୁଟିବାକୁ ଲାଗିଲା ପୁଣି ନିଜ ନିଜ ଭିତରେ ମନା ମନି ଚାଲିଲା—'ତୁମେ ନିଜ ଅବସ୍ଥା ସମ୍ଭାଳ, ହାୟ, ତୁମର ଏହି ଦଶା ମୁଁ ଦେଖି ରହିପାରୁ ନାହିଁ । 'ବିରହେଶ ପକେଟରୁ ଗୋଟିଏ ଚଠି ବାହାର କରି

ଫେଙ୍କିଲା ବଡ଼ବୋହୂ ଟେରକାର ନିଜ ଚିଠି ମଧ୍ୟ ହଲାଇଲା । ପୁଣି କିଛି ସଙ୍କେତ ଦେଇ ଟେରକାରୁ ଘୁଞ୍ଚିଗଲା । କିଛି ସମୟପରେ ବିରହେଶର ଚିର ପରିଚିତ ଥାଳ ସୂତା ସାହାଯ୍ୟରେ ଧୀରେ ଧୀରେ ତଳକୁ ଓହ୍ଲାଇବାକୁ ଲାଗିଲା । ବିରହେଶ ଏବଂ ବଡ଼ବୋହୂ ଦୁଇ ତିନି ଥର ଏହି ଥାଳ ସାହାଯ୍ୟରେ ଚିଠିର ଆଦାନ ପ୍ରଦାନ କରିଛନ୍ତି । ଗତଥର ବଡ଼ବୋହୂକୁ ଦେଖାଇ ଦେଖାଇ ବିରହେଶ ଥାଳକୁ ଚୁମ୍ବନ ଦେଇଥିଲା । ଗ୍ଲୁଇରେ ଲଗାଇଥିଲା ଦେଇଥିବା ଚିଠିରେ କବିତା ଲେଖିଥିଲା ।

ଚିଠି ଆଣିବା ପାଇଁ ବିରହେଶ ସିଢ଼ି ପଟକୁ ଗଲା । ସେହି ସମୟରେ ଡ଼ା. ଶିଲା ସିଂ ଏବଂ ତାଙ୍କ ପଛେ ପଛେ ବର୍ମା ଆସିଲେ । ବଡ଼ବୋହୂର ଚିଠି ତଳେ ଠିକ୍ ପହଞ୍ଚିଥିଲା ବେଳକୁ ଡା. ଶିଲା କୋଠା ଉପରକୁ ଆସି ଯାଇଥିଲା । ବିରହେଶର ହାତରେ ସୂତା ଦେଖି ଶିଲା ତାର ହାତ ଧରି ପକାଇଲା । ବିରହେଶ ଚମକି ଗଲା । 'ଯେ କଣ ହେଉଛି ଏଇଠି ? ଜ୍ଞା, ଶିଲା ରୁକ୍ଷ ସ୍ୱରରେ କଡ଼ା କଣ୍ଠରେ କହିଲା ।

ବଡ଼ବୋହୂ ବର୍ମାଙ୍କୁ ଦେଖି ଆଗରୁ ଟେରକା ନିକଟରୁ ଚାଲିଯାଇଥିଲା । ବିରହେଶ ଏପରି ସିଧା ସଳଖ ଭାବରେ ଧରାପଡ଼ିସିବାରୁ ତା ମୁହଁ ଶୁଖି ଯାଇଥିଲା, ଦେହରୁ ଗୋଟା ପଟେ ଟ୍ ଲ ବୋହିଗଲା ଆଉ କଣ୍ଠଶୁଖିଗଲା ।

ଡ଼ା. ଶିଲା ବିରହେଶକୁ ଦେଖୁଥିଲା କିନ୍ତୁ ଜାଣି ନଥିଲା । ଥାଳରେ କାଗଜ ଦେଖି ତାକୁ ବାହାର କରିବାକୁ ଲାଗିଲା, ବିରହେଶର ମୁଣ୍ଡରେ କିଛି ପଶିଲା ନାହିଁ । କାନ୍ଦି କାନ୍ଦି ପାଦତଳେ ପଡ଼ିଗଲା । —'ସେଭ୍ ମି ସାର, ଆଇ ଏମ ଇନ୍ନୋର ସର୍ଭେଣ୍ଟ୍ ସାର ।

କୋଠା ଉପରେ ପାଟି ତୁଣ୍ଡ ଶୁଣି ସଜ୍ଜନ କବାଟ ଫିଟାଇଲା ।—ହ୍ୟାଲେ ଶିଲା ବର୍ମା ଭକ୍ତ ଭାବରେ ନମସ୍କାର କଲା । ସଜ୍ଜନ ମୁଣ୍ଡ ହଲାଇ ଉତ୍ତର ଦେଲା ତାପରେ ବିରହେଶକୁ ଚାହିଁ ପଚାରିଲା—'କଣ ହେଲା ?'

କାନ୍ଦୁ କାନ୍ଦୁ ବିରହେଶ କହିଲା—'ସ୍ୱାଙ୍କ ଠାରୁ ମୋର ଅମର ଗୀତ ଆଣି ଦଅନ୍ତୁ ସଜ୍ଜନ ଭାଇ ।'

ଡ଼ା. ଶିଲା ଥାଳରୁ କାଗଜ ବାହାର କରି ପଢ଼ିବାକୁ ଲାଗିଲା, ରୁଲ୍‌ଟଣା ନୋଟ ବୁକ୍‌ଲଟା ପୃଷ୍ଠାରେ ଲେଖା ହୋଇଥିବା ବଡ଼ବୋହୂର ପ୍ରେମ ପତ୍ର ଶିଲା ପାଇଁ ଖୁବ୍ ଉପଭୋଗ୍ୟଥିଲା । ଦ୍ୱିତୀୟ ଏବଂ ତୃତୀୟ ପ୍ୟାରା ପଢ଼ୁ ପଢ଼ୁ ସେ ହସି ଉଠିଲା ସଜ୍ଜନ ଆଡ଼କୁ ଚିଠି ବଢ଼ାଉ ବଢ଼ାଉ କହିଲା— 'ଏଇଟା ତାର ଅମର ଗୀତ ଦେଖ……

ବନକନ୍ୟା ବାହାରକୁ ଆସିଯାଇଥିଲା । ତା ଉପରେ ଶିଲାର ନଜର ପଡ଼ିଲା । ଶିଲା ଦେଖିବାକୁ ଲାଗିଲା ସଜ୍ଜନ ଏବଂ କନ୍ୟାର କପାଳରେ ଏକ ପ୍ରକାରର ସିନ୍ଦୂର

ଟୋପା ଚେସବୁଝି ପାରିଲା ବରହେଣର ଚିଠି କଥା ଭୁଲି ଯାଇ ହସି ହସି କହିଲା – ' ଆଇ ଏମ୍ ସିଓର, ତୁମେ ମିସ ବନକନ୍ୟା ।'

ବରହେଣ ସଜ୍ଜନକୁ ତାର ଚିଠି ମାଗୁଥିଲା । ସଜ୍ଜନ ଥରେ ଲୁଚି ପତ୍ର ପଢ଼ିବା ବନ୍ଦ କଲା ଏବଂ ଚଡ଼ା ଗଳାରେ ବରହେଣକୁ କହିଲା – 'ତୁମେ ଏଠାରେ ଏହି ସବୁ କରିବାକୁ ଆସୁଛ। ଭଦ୍ର ସମାଜରେ ମୋତେ ବଦନାମ କରାଇବ । ବର୍ମା ମଧ୍ୟ ଏଥି ମଧ୍ୟରେ ସୁନଜରରେ ଦେଖୁ ନଥିଲା। ବରହେଣ ଧିର ସ୍ୱରରେ କହିଲା – 'ସଜ୍ଜନ ଭାଇ – —'

ଚୁପ୍ ରୁହ,' ସଜ୍ଜନ ଧମକାଇ କହିଲା—'ଯଦି ତୁମକୁ ପୁନର୍ବାର କେବେ ଦେଖେ ତେବେ ତୁମକୁ ପୋଲିସରେ ଦେବି । ଶିଘ୍ର ଯାଅ ଏଠୁ ।''

ଯାଉଛି ! ଯାଉଛି ! ...... କିନ୍ତୁ ମୋର ଚିଠିଟା ଦେଇଦିଅ ।

ସଜ୍ଜନ ତା ମୁହଁକୁ ସେ ଚିଠି ପକାଇଦେଲା । ବର୍ମା ଆଗେଇ ଯାଇ ବରହେଣଠାରୁ ସେ ପତ୍ରଟି ଛଡ଼େଇ ଚିରିଦେଲା ଏବଂ କହିଲା—'ସାହେବ ଇଜ୍ଜତ ସ୍ତ୍ରୀ ହାତରେ ଦେବା ଉଚିତ ନୁହେଁ । ଏଠାରୁ ଚାଲିଯାଅ ।''

କିଛିଦିନ ପୂର୍ବେ ଭକ୍ତ ରୂପରେ ମିଳିଥିବା ବର୍ମା ମଧ୍ୟ ଆଜି ବରହେଣକୁ ଘୃଣା କରୁଥିଲା । ବରହେଣ ତାକୁ ପଛକୁ ବୁଲି ଅନାଉଁଥିଲା ଯେପରି କି ତାକୁ ଫାଙ୍କିଦେବ ।

ଶିଳା ଏବଂ କନ୍ୟା କଥା କହୁ କହୁ ଘର ଭିତରକୁ ପଶିଲେ ।

ବର୍ମା ଚୁଲିକର ସହିତ ଚିରା ଚିଠିକୁ ନିଜ ପକେଟରେ ରଖିଦେଲା । ବରହେଣ ହତାଶ ହୋଇ ଫିରିବାକୁ ବାହାରିଲା । ଯାଉ ଯାଉ ବୁଲି କରି ସଜ୍ଜନ ଆଡ଼କୁ ଲୁଚି କହିଲା । 'ଗରିବର ପ୍ରେମ ପୁଞ୍ଜି ପତ୍ରମାନେ ସହି ପାରନ୍ତିନି । ଆପଣଙ୍କ କବାଟ ବନ୍ଦ କରି ପ୍ରିୟତମା ସହିତ ହସଖୁସି କର ... ...'

ସଜ୍ଜନ ରାଗିଯାଇ ତା ଆଡ଼କୁ ଅନାଇଲା । ବରହେଣ ଚୁପଚାପ ତଳକୁ ଚାଲିଗଲା ।

ବର୍ମା ସଜ୍ଜନକୁ ଭେଦପୂର୍ଣ୍ଣ କଣ୍ଠରେ କହିଲା—'ସ୍ୟାର ଲଭ ଆଫେୟାର ଶଙ୍କର ଲାଲର ଘରେ କାହା ସହିତ ଚାଲିଛି । ଏହି ଝିଅକ ଯେଉଁଠୁ ଚିଠି ଆସିଲା, ତାର ବଡ଼ ଭାଇର ବଙ୍ଗଳା ...... ଆପଣଙ୍କ ବଡ଼ ବଦ୍‌ନାମ ହୋଇଯାଇଛି ।

ସଜ୍ଜନ ପରିସ୍ଥିତିର ଗୁରୁତ୍ୱ ହୃଦୟଙ୍ଗମ କରି କହିଲା—ଏଠାରେ ସ୍ୱେ କପଣ ଏ କାର୍ଯ୍ୟ ଆରମ୍ଭ କଲା କିଛି ବୁଝିପାରୁନ ।'

ଘର ଭିତରକୁ ସଜ୍ଜନ ପଶୁ ପଶୁ ଶ୍ରୀ ଶୀଳା ହସି କହିଲା—'ୟୁ ରାସ୍କେଲ୍ : କଳାର ବାହାନାରେ ଏଇଠି ପ୍ରେମର ଦୋକାନ ଖୋଲିଛ ?'

ସମସ୍ତେ ହସିବାକୁ ଲାଗିଲେ । ସଜ୍ଜନ କହିଲା—'ତାହାହେଲେ କଣ ତୁମେ ବି ପ୍ରେମ ଲାଳସାରେ ଏଠାକୁ ଆସିଛ ? କହିବତ ତୁମପାଇଁ ନମୁନା ଆଣି ପେଶ କରିବି ?

ବର୍ମାର ଉପସ୍ଥିତରେ ଶୀଳା ମନ ଖୋଲି ଉତ୍ତର ଦେଇ ପାରିଲା ନାହିଁ । ତା ବାହୁକୁ ଧିମାମାତ୍ର ହସି କହିଲା—'ଏଠିକି ଗୋଟିଏ ପେସେଣ୍ଟ ଦେଖିବାକୁ ଆସିଥିଲି । ସ୍ୱାଙ୍କ ସ୍ତ୍ରୀଙ୍କୁ । ସେ ତୁମ ବିଷୟରେ କହିଲେ । ମୁଁ ଭାବିଲି ତୁମ ଅବସ୍ଥା ମଧ୍ୟ ଟିକେ ବୁଝିଦିଏ । ଆଜି ମୋର ଭାଗ୍ୟ ଦେଖ, ଖବର ବୁଝିବା ବଦଳରେ ମୋତେ ତୁମର ଆସାମିକୁ ଦେଖିବାକୁ ମିଳିଗଲା ।" କହି ଶୀଳା ସ୍ନେହପୂର୍ଣ୍ଣ ନଜରରେ କନ୍ୟାକୁ ଦେଖିବାକୁ ଲାଗିଲା । କନ୍ୟା ମୁରୁକି ହସିବାକୁ ଲାଗଲା । ସଜ୍ଜନ ମଧ୍ୟ ହସିବାକୁ ଲାଗିଲା ।

'ନଅ ଲଡ଼ୁ ଖାଅ ।' ମହାବୀରଙ୍କ ପ୍ରସାଦ ଆସିଛୁ ।

ସଜ୍ଜନ ଶୀଳା ଏବଂ ବର୍ମା ଆଡ଼କୁ ଥାଳି ବଢ଼ାଇଲା । ଲଡ଼ୁ ଉଠାଇ ଉଠାଇ ଶୀଳା ପଚାରିବାକୁ ଯାଉଥିଲା । ସଜ୍ଜନ କହିଲା—'ସ୍ୱାଙ୍କୁ ବ୍ଲାଙ୍କସ୍ ମିଳି ଯାଇଛୁ ।'

ଗୁଡ୍ ! କେଉଁଠାରେ !

'ନବ ଜୀବନର ଏଡ଼ିଟୋରିଆଲ ଷ୍ଟାଫ୍‌ରେ ।' କନ୍ୟା ଉତ୍ତର ଦେଇ ପଚାରିଲା । 'ମୋର ଅନୁମାନ ସମସ୍ତେ ଆମେ ଚାହା ପିଇବା ।"

ମୁଁ କ୍ଷମା ମାଗୁଛି ।' ବର୍ମା ହାତ ଯୋଡ଼ି କହିଲା ।

'କାହିଁକି ? ସଜ୍ଜନ କହିଲା ।

'ଦୋକାନକୁ ଯିବାର ଅଛି, ଅନେକ ଡେରି ହୋଇଗଲାଣି'

'ଠିକ୍ ଅଛି ! ଠିକ୍ ଅଛି ! ଶୀଳା କହିଲା—'ଏଣ୍ଡ ଥେଙ୍କ୍ ୟୁ ଭେରିମଚ ଫୋର୍ ଟେକିଙ୍ଗ୍ ସୋ ମଚ୍ ଟ୍ରବୁଲ୍ ! ଆଉ ଚିନ୍ତା କରନ୍ତୁ ନାହିଁ । ବର୍ତ୍ତମାନ କୋଡ଼ିଏ ପଚିଶ ଦିନ ଭିତରେ କିଛି ହେବାର ନାହିଁ । ମହାବୀରଙ୍କ ଦୟାରୁ ନିଶ୍ଚିତ ଭାବରେ ପୁଅ ହେବ ।'

ବର୍ମା ହସିବାକୁ ଲାଗିଲା କହିଲା—'ବେଳ ଆସିଲେ, ମୁଁ ଆପଣଙ୍କ ବଙ୍ଗଳାରେ ମିଠା ନେଇ ପହଞ୍ଚିବି ।

'ଥେଙ୍କ୍ ୟୁ' ଶୀଳା ନମସ୍କାର କଲା । ବର୍ମା ସମସ୍ତଙ୍କୁ ନମସ୍କାର କରି ଚାଲିଗଲା । ଶୀଳା ଗୋଟିଏ ଦୀର୍ଘ ନିଶ୍ୱାସ ନେଇ ତକିଆ ଉପରେ ମୁଣ୍ଡ ରଖି ଗଡ଼ିଗଲା । ଷ୍ଟୋଭ୍ ଜଳାଉଥିବା କନ୍ୟାକୁ ଚାହିଁ ସଜ୍ଜନଙ୍କୁ କହିଲା—'ଦୁର୍ଜନ ! ତୁମେ ଭାଗ୍ୟବାନ !…… ଆପଣ ଆଉ ଗୋଟିଏ ଲଡ଼୍ଡୁ ମୋ ମୁହଁରେ ଦିଅ । …… କିନ୍ତୁ ମହିପାଲ ମୋତେ କହୁଥିଲେ ମିସ୍ ବନକନ୍ୟା କମ୍ୟୁନିଷ୍ଟ ।'

'ହଁ ସାର, ମୁଁ ମଧ୍ୟ ତୁମକୁ ପଚାରୁଛି, ତୁମେ କ'ଣ ଏହି ସବୁକୁ ବିଶ୍ୱାସ କର ? ସଜ୍ଜନ ଶୀଳା ପାଖରେ ଥିବା ତକିଆରେ ଭରା ଦେଇ ଆରାମରେ ଗୋଡ଼ ଲମ୍ବେଇ ବସି ବସି ପଚାରିଲା ।

କନ୍ୟା ବୋତଲରୁ ଡାଟିଆରେ ଦୁଧ ଢାଳି ଷ୍ଟୋଭ ଉପରେ ବସାଉ ବସାଉ ଟିକେ ଚୁପ୍ ହୋଇ ରହିଲା, ପୁଣି କହିଲା—'ମୁଁ କେବେ ସିରିୟସଲି ଏହି କଥା ଭାବି ନାହିଁ ଯେ ଈଶ୍ୱର ଅଛନ୍ତି ନା ନାହିଁ, ଏବଂ ଏହା ମଧ୍ୟ ଜାଣେ ଯେ କୌଣସି ଯୁକ୍ତିଦେଇ ଈଶ୍ୱରଙ୍କୁ କାଟି ପାରିବ ନାହିଁ । ଭଲ ଖରାପ ସମସ୍ତରେ ଅନ୍ୟମାନଙ୍କ ଭଳି ସେ ମଧ୍ୟ ମୋର ମନର ଆଶଙ୍କା ।'

'ଈଶ୍ୱର ତର୍କର ବିଷୟ ନୁହଁନ୍ତି ।' ଶୀଳା କହିଲା—'ମୁଁ ଭାବୁଛି ଯେ ପ୍ରତ୍ୟେକ ଲୋକ ସାରା ଜୀବନ ନିଜ କାମ ମଧ୍ୟରେହିଁ ଈଶ୍ୱରଙ୍କୁ ପୂଜା କରନ୍ତି … …

'ମହିପାଲ ମଧ୍ୟ ଏହା କୁହେ ।'

'ତୁମେ କଣ ଭାବୁଛ ଯେ ମୁଁ ମହିପାଲଙ୍କଠାରୁ ଅନେକ ବେଶୀ ସ୍ୱତନ୍ତ୍ର ଚିନ୍ତା କରିପାରେ ?

'ଗ୍ରେଟ୍ । ଏହାକୁ ତ ପ୍ରେମ କୁହାଯାଏ ।' ସଜ୍ଜନ ଏହି କଥା ଏପରି କହିଲା ଯେପରି କନ୍ୟାକୁ ଶୁଣାଉଛି । କନ୍ୟାର ମୁଖମଣ୍ଡଳରେ କୌଣସି ପ୍ରକାର ପ୍ରତିକ୍ରିୟାର ଛାଇ ପଡ଼ିଲା ନାହିଁ ।

ଶୀଳା କହିଲା—'ପୃଥିବୀରୁ' ଆମ ଦେଶରୁ ମଧ୍ୟ ଦିନେ ଈଶ୍ୱର ନାମକ ଜିନିଷ ଲିଭିଯିବ, ଏହା ମୋତେ ଜଣାଯାଉଛି ।

'ସାଇନ୍ସ ନିଶ୍ଚୟ ଦିନେ ଏହା ପ୍ରତିପାଦିତ କରିବ । ହୁଏତ ଏହି ଧାରଣାକୁ ମଜବୁତ୍ ବଳବତ୍ତର କରିବ—ନହେଲେ ସବୁଦିନ ପାଇଁ ଶେଷକରି ଦେବ । ଡାକ୍ତର ଆମେ ବର୍ତ୍ତମାନ ଏଟମିକ୍-ଯୁଗରେ ଗୋଡ଼ ରଖିଛୁ । ଆମେ ପୃଥିବୀ ଛାଡ଼ି ଅନ୍ୟ ଗ୍ରହରେ ପହଞ୍ଚିବାର କଥା ଚିନ୍ତା କରୁଛୁ ଏହିପରି ଦିନେ କଣ ଈଶ୍ୱରଙ୍କର ସତ୍ୟାସତ୍ୟ ପାଖରେ ପହଞ୍ଚି ପାରିବୁ ନାହିଁ ? କନ୍ୟା କଥା ଶେଷ କରି ଗରମ ହେଉଥିବା ଦୁଧ ଆଡ଼କୁ

ଚାହିଁଲା । ଦୁଧ ଫୁଟିବାକୁ ଟିକେ ଡେରି ଥିଲା' ଏବଂ ତା ପୂର୍ବରୁ ଯଦି ଅନ୍ତିମ ଦିନ ପହଞ୍ଚିବ ଭାବୁଛେ ?' ସଜ୍ଜନ କନ୍ୟାକୁ ସ୍ନେହ ପୂର୍ଣ୍ଣ ନଜରରେ ଚାହିଁ ପଚାରିଲା ।

ଅନ୍ତିମ ଦିନ ଆସିଗଲେ ତ ଭଗବାନଙ୍କୁ ସମସ୍ତେ ଦେଖି ପାରିବେ । ସେଦିନ ମୁଁ ତୁମର ବିରୁଦ୍ଧରେ ସାକ୍ଷୀ ଦେବି ଦୁର୍ଜନ । ଭଗବାନଙ୍କୁ କହିବି ଏହି ଲୋକଟି ଝୋଟିଏ ଗୋରୀ, ଖୁବ୍ ସୁନ୍ଦରୀ, ସରଳ ଝିଅର ମନ ଲୁଟି ନେଇଛି ।'

ଦୁଧ ଫୁଟିଯାଇଥିଲା । କନ୍ୟା ଉଠି ଲୁଗା କାନିରେ ଗରମ ଡାଟିଆ ଉଠାଇନେଇ ରଖିଲା । ଏବଂ ସୁରେଇରୁ ପାଣି କେଟ୍ଲରେ ଭରିବାପାଇଁ ସୁରେଇ ଦେଖିଲା ଖାଲି । ସଜ୍ଜନ ଉଠି କହିଲା—'ଦିଅ ମୁଁ ଭର୍ତ୍ତି କରି ଆଣେ ।

ପାଣିକଳ କେଉଁଠାରେ ?'

# ଏକୋଇଶି

ଆଜି ସାରାଦିନ ସଜ୍ଜନ କନ୍ୟା ଅତି ପାଖରେ ରହି ନିଜ ମନ ସହିତ ସଂଗ୍ରାମ ଚଳାଇଥିଲା, ଯାହା ଫଳରେ କି ଏକ ପ୍ରକାର ଆତଙ୍କ ତାକୁ ଗ୍ରାସ କଲା । କିନ୍ତୁ ସେ ଯେତିକି ଆତଙ୍କିତ ହେଉଥିଲା ସେତିକି ତୀବ୍ର ଭାବରେ ତା ମନରେ କନ୍ୟାର ସମ୍ମୋହନୀ ଶକ୍ତି କାମ କରୁଥିଲା । ଦିନରେ ଶୀଘ୍ର ଖିଆପରେ ସଜ୍ଜନ ତାକୁ ପଚାରିଲା—"ମୋ ଭିତରେ ତୁମେ ଯଦି କିଛି ଖରାପ ଦେଖିବ ତେବେ କଣ କରିବ ?"

"ଭାଉଜଙ୍କ ପରି ନିଆଁ ଲଗାଇ ପୋଡ଼ି ହୋଇ ମରିବି ।' "ସଜ୍ଜନ ଦବି ଯାଇ ଟିକେ ଅପ୍ରତିଭ, ହୋଇ କହିଲା ତୁମେ ଗୋଟେ ପାଗଳ, ପାଗଳ ।"

କନ୍ୟା କହିଲା –"ଅନ୍ୟମାନଙ୍କଠାରେ ବ୍ୟଭିଚାର ଦେଖିଲେ ସେମାନଙ୍କ ନିକଟରୁ ଦୂରେଇ ଯିବା କିମ୍ବା ସେମାନଙ୍କ ସହିତ ମୁକାବିଲା କରିବା ମୋ ପାଇଁ ସହଜ ହେଲେବି ତୁମ ଭିତରେ ବ୍ୟଭିଚାର ଦେଖିଲେ ମୃତ୍ୟୁ ଛଡ଼ା ମୋର ଆଉ ଅନ୍ୟ ଉପାୟ ନାହିଁ ।"

"କିନ୍ତୁ ଧର ଯଦି ଆମର ବିବାହ ନହୁଏ, ଆମର ଏ ସମ୍ପର୍କ ଯଦି ଶେଷ ହୋଇଯାଏ, ତେବେ ?

"ବିବାହର ହେଉ ନ ହେଉ ଏ ସମ୍ପର୍କ କିନ୍ତୁ ଅତୁଟ ।" କନ୍ୟାର ଏ ପ୍ରକାର ଉକ୍ତି ସଜ୍ଜନ ପାଇଁ ପ୍ରହେଳିକା ମନେ ହେଲା । ହସିଲା ଆଖିରେ ଅନାଇ କହିଲା "ସମ୍ପର୍କ ମୁଁ ବାନ୍ଧିଛି, ଯାହାର କି ରୂପ ତୁମେ ଦେଇଛ । ସେଇ ରୂପକୁ ନିର୍ଣ୍ଣୟ କରିବା ତୁମର କାମ, କିନ୍ତୁ ସମ୍ପର୍କକୁ ଅତୁଟ ମୁଁ ରଖିବି, ତୁମେ ନୁହଁ ।"

ସେପର ଠାରୁ ସାରାଦିନ କନ୍ୟାର ଶାସନରେ ତାକୁ ରହିବାକୁ ହେଲା । ଠିକ୍ ସମୟରେ ସେମାନେ ଦୁହେଁ କର୍ଣ୍ଣେଲ ପାଖକୁ ଆସିଲେ । ମଥୁରାକୁ ଆସିଥିବା ଭଦ୍ର ଲୋକଙ୍କୁ ସାଙ୍ଗରେ ନେଇ ଓକିଲଙ୍କ ପାଖକୁ ଯାଇ ତା'ପରେ ମାଜିଷ୍ଟ୍ରେଟଙ୍କ ବସାରେ ନିଜ ମୃତା ଭାଉଜଙ୍କ ଚିଠି ଦେଲା । ମାଜିଷ୍ଟ୍ରେଟ ଏ ବିଷୟ ଅନୁସନ୍ଧାନ କରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ ବୋଲି ଆଶ୍ୱାସନା ଦେଲେ ।

ମାଜିଷ୍ଟ୍ରେଟଙ୍କ କୋଠୀରୁ ବାହାରି ଯେତେବେଳେ କର୍ଣ୍ଣେଲ କନ୍ୟାକୁ ମଥୁରାକୁ ଆସିଥିବା ଭଦ୍ରବ୍ୟକ୍ତିଙ୍କ କଣା କଣିରେ ସାହାଯ୍ୟ କରିବାର ଦାୟିତ୍ୱ ଦେଲେ ଏବଂ ନିଜେ

ଅନୁସାରେ କନ୍ୟା ଚାଲିଗଲା ସେତେବେଳେ ଯାଇ ସଜ୍ଜନ ସ୍ୱସ୍ତିର ନିଶ୍ୱାସ ମାରିଲା । ଆଜି ସେ ସମ୍ପୂର୍ଣ୍ଣ ରୂପେ ଜାଣିଲା ଯେ ତା' ଜୀବନରୁ କନ୍ୟା କେବେ ହେଲେ ଚାଲି ଯାଇପାରିବ ନାହିଁ ଏବଂ ତାର ଜୀବନରେ ନୀତି ନିୟମର ଅଙ୍କୁଶଧରି ଏକମାତ୍ର କନ୍ୟାହିଁ ତାକୁ ପରିଚାଳିତ କରିପାରିବ···ଏକଥା ଭାବି ଭାବି ସଜ୍ଜନ ବେଳେ ବେଳେ ଚିନ୍ତିତ ହୋଇ-ଉଠୁଥିଲା ଏବଂ ଭରସା ମଧ୍ୟ ବୋଧ କରୁଥିଲା । ତା'ମନ ସଦ୍ୟ ଜଙ୍ଗଲର ଧସ୍ତ ହୋଇଥିବା ଜଳୁ ପରି ହେଉଥିଲା । ତା'ମନ ଭିତରେ ବହୁତ ବିଦ୍ରୋହର କଥା, ଯୁକ୍ତି ସବୁ ଦାନା ବାନ୍ଧି ଉଚ୍ଚାରିତ ହେବା ପୂର୍ବରୁ ମିଳେଇ ଯାଉଥିଲେ । ଏ ପ୍ରକାର ମାନସିକ ସ୍ଥିତିରେ ସେ ବ୍ୟତିବ୍ୟସ୍ତ ହୋଇ ଉଠୁଥିଲା, ହୁଏତ ପାଗଳ ହୋଇଯିବ ବୋଲି ତା ମନରେ ଧାରଣା ଆସିଲା ।

ସଜ୍ଜନର ଗାଡ଼ି ଗୋମତୀ ତୀରରେ ଥିବା ପାଗଳାମାନଙ୍କ ବାବାଙ୍କ ଆଶ୍ରମରେ ଯାଇ ପହଞ୍ଚିଲା । ବାବାଙ୍କ ପାଗଲଖାନା ଏକ ଅଜବ୍ ଦୃଶ୍ୟରେ ଅବତାରଣା କରୁଥାଏ । ପକ୍କା ବାରଣ୍ଡାରେ ପାଖକୁ ପାଖ ଲଗା ଲଗି ହୋଇ ଆଠ ଦଶଟି ଖଟିଆ ପଡ଼ିଥାଏ । ସାମ୍ନାରେ ରୋଷାଇ ଶାଳରେ କୌପୀନ ପିନ୍ଧା ଯୁବକ ରୋଷାଇ କରୁଥାନ୍ତି । ସ୍ତ୍ରୀ ରୋଗୀଙ୍କୁ ଛାଡ଼ି ଅନ୍ୟ ସବୁ ରୋଗୀ ବାବାଙ୍କ ସଦୃଶ କୌପୀନଧାରୀ, ଲଣ୍ଡିତ ମସ୍ତକ । ଗୋଟିଏ କୋଣରେ ଗୋଟିଏ ଚକି ପଡ଼ିଥାଏ । ବାହାରେ ବୃଦ୍ଧ ସାଧୁବାବା ଗୋଟିଏ ସ୍ୱେଟର ପିନ୍ଧି କାନକୁ ଗାମୁଛାରେ ଆବୃତ କରି ଦୁଇ ତିନି ଜଣ ବ୍ୟକ୍ତିଙ୍କ ସହିତ କଥାବାର୍ତ୍ତା କରୁଥାନ୍ତି । ଜଣେ ମାରୱାଡ଼ି ଯୁବକ ବାହାର ବାରଣ୍ଡାରେ ବସି ଗୀତା, ପୁରାଣ-ମାନଙ୍କର ଉଦାହରଣ ଦେଇ ଏ ସଂସାରର ଅସାରତା ଏଭଳି ଭାବରେ ପ୍ରତିପାଦନ କରୁଥାଏ ଯେ ମନେ ହେବ ଯେପରି ହଜାର ଦୁଇ ହଜାର ଶ୍ରୋତା ମନ୍ତ୍ରମୁଗ୍ଧ ହୋଇ ତା'ର କଣ୍ଠ ଶୁଣୁଛନ୍ତି । ଜଣୈକ ବଙ୍ଗାଳୀ ତା' ଉପରସ୍ଥ ହାକିମଙ୍କ ସହିତ ତା'ର କଥୋପକଥନରେ ନିଜ ପ୍ରଶଂସା କଥାକହି ମନକୁ ମନ ଖୁସିରେ ଆତ୍ମହରା ହେଉଥାଏ । ଜଣେ ପହିଲବାନର ଗୋଡ଼ ଲୁହା ଶିକୁଳିରେ ବାହାର ବାରଣ୍ଡାରେ ଖମ୍ବରେ ବନ୍ଧା ହୋଇଥାଏ । ସେ ନିଜକୁ ମୁକ୍ତ କରିବା ପାଇଁ ଆପ୍ରାଣ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ସାମ୍ନାରେ ବସିଥିବା ବାବାଙ୍କୁ ଅକଥ୍ୟ ଭାଷାରେ ଗାଳିଦେଇ ତା ସହିତ କୁସ୍ତି ଲଢ଼ିବା ପାଇଁ ଡାକୁଥାଏ । ଅନ୍ୟ ଏକ ଖମ୍ବରେ ବନ୍ଧା ହୋଇଥିବା ଜଣେ ଜଙ୍ଗଲର ଠିକାଦାର ବାବାଙ୍କ ଉପରେ ହେଉଥିବା ଅକଥ୍ୟ ଗାଳିରେ ସହଯୋଗ କରି ପହିଲମାନଙ୍କୁ ଚୁପ ରହିବାକୁ ପରାମର୍ଶ ଦେଉଥାଏ ।···ସ୍ୱେ ବାବା ଶଳା ପାକିସ୍ତାନୀ ଏଜେଣ୍ଟ । ରୋଜ ରାତିରେ ସ୍ୱା ପାଖକୁ ଉଡ଼ାଜାହାଜ ଆସେ । ମୋର ଅଢ଼େଇ ଲକ୍ଷ ଟଙ୍କା ଏ ଶଳା ଖାଇଗଲା । ଆଜି ରାତିରେ ସ୍ୱାକୁ ଖତମ କରି ଆମେ ଉଡ଼ାଜାହାଜରେ ପଳେଇବା । ବର୍ତ୍ତମାନ ଚୁପ ରହ ।’’ ଜଣେ ଦୁବଳିଆ ସିନ୍ଧି ଯୁବକ ନିଜ ଖଟରେ ଚଦା ପକାଇ ବସି ପାଟିରେ ପାଣି ଭର୍ତ୍ତିକରି ମୁହଁକୁ ଫୁଲାଇ ଏପରି ବସିଥାଏ ଯେପରିକି କୌଣସି

ଯୋଗ ସାଧନା କରୁଛୁ । ଦୁଇଜଣ ସ୍ତ୍ରୀ ଲୋକ ଗୋମତୀରୁ ବାଲଟି ବାଲଟି ପାଣି ଆଣିବାରେ ଲାଗିଥାନ୍ତି । କ୍ୟାପଟେନ୍ ଗ୍ରେଜେଣ୍ଡ୍ଙ୍କ ପାଗଳୀ ସ୍ତ୍ରୀ ଶୋଇଥାଏ । ଏହି ସମୟରେ ତାଙ୍କୁ ନାଣ୍ଡି କରି ଦିଆହୋଇଥାଏ ।

ଏ ସମସ୍ତ ଗୋଳମାଳରୁ ଅଲଗା ଓ ନିର୍ଲିପ୍ତ ଭଦ୍ର ବାବା ଆସିଥିବା ଆଗନ୍ତୁକମାନଙ୍କ ସହିତ କଥାବାର୍ତ୍ତା କରୁଥାନ୍ତି । ସଜ୍ଜନଙ୍କୁ ଦେଖି ବୃଦ୍ଧ ସାଧୁ ବାବା ଅତ୍ୟନ୍ତ ଆନନ୍ଦିତ ହୋଇ ସ୍ୱାଗତ କଲେ ସତେ ଯେପରି ତା'ର ପ୍ରତୀକ୍ଷାରେ ସେ ରହିଥିଲେ । କହିଲେ - ମତେ କୋଟିଏ ଟଙ୍କାର ଧନ ପ୍ରାପ୍ତ ହୋଇଗଲା -- ରାମଜୀ ଆପଣଙ୍କ ଆଗମନରେ ଏତେ ଆନନ୍ଦ ପାଇଲି । ପୁଣି ବସି ରହିଥିବା ବ୍ୟକ୍ତିମାନଙ୍କୁ କହିଲେ— "ସେ ରାମଜୀ ସକାଳେ ମୋତେ ସାହାଯ୍ୟ କରିବାକୁ ଆସିଥିଲେ । ସେ ତାଙ୍କୁ କଥା ଛଳରେ ଏପରି ମଜ୍ଜେଇ ଦେଲେ ଯେ ସେ ସ୍ୱାଙ୍କ ସାଥିରେ ସିଧା ଚାଲିଆସିଲି ।" ସାମ୍ନାରେ ବସିଥିବା ପଣ୍ଡିତ କହିଲେ ମହାରାଜ, ଉପକାରୀ ଲୋକଙ୍କ ସଂଖ୍ୟା କମନାହିଁ ଆପଣମାନଙ୍କ ପରି ଲୋକମାନଙ୍କ ପାଇଁ ବସୁଧା ଠିଆ ହୋଇଛି । ଆଜି ବଜାରରେ କିଏ କିଏ କହୁଥିଲେ ଯେ ସେ ସ୍ତ୍ରୀ ଲୋକର କଥା ସତ୍ୟ ହୋଇପାରେ, ହୁଏତ ବାବାଜୀ କୌଣସି ପ୍ରକାର କୁ ମତଲବ ·····ମୁଁ କହିଲି ଆରେ ବାବାଙ୍କୁ ମୁଁ ଭଲ କରିଜାଣେ, ତାଙ୍କ ପରି ମହାତ୍ମା ପୁରୁଷ······ ।

ରାମଜୀ ଆମେ କେବଳ ସେବକ---ସାଧୁ ନୋହୁଁ କି ସନ୍ଥ ନୋହୁଁ କି ବୈରାଗୀ ମଧ୍ୟ ନୋହୁଁ । ମୋ ଗୁରୁ ମତେ କେବଳ ଦୁଇଟି ଉପଦେଶ ଦେଇଥିଲେ ଏବଂ ଗୁରୁ ଦକ୍ଷିଣା ବାବଦ ଦୁଇଟି ଜବାବ ଆଦାୟ କରିଥିଲେ ଯାହା ଉପଦେଶ ଦେଇଥିଲେ ତାଙ୍କୁ ଜବାବ ଜରିଆରେ ଆଦାୟ କରିନେଇଥିଲେ । ଉପଦେଶ ଦେଇଥିଲେ ଯେ ସାରା ସଂସାରକୁ ମୋ ରୂପ ଭାବି ସେବା କରିବ ଏବଂ ମୋ'ର ସେବା କରିବାରେ ମରିବା ପର୍ଯ୍ୟନ୍ତ ଯେପରି କୌଣସି ବ୍ୟତିକ୍ରମ ନ ଘଟାଅ ସେଥିପାଇଁ କୌପୀନ ଧାରଣ କରିବ । ମାତ୍ର ଏତିକି ତ ମୋର ବିଦ୍ୟା ରାମଜୀ ।"

ହଠାତ୍ ମୁହଁରେ ପାଣି ପୁରାଇଥିବା ସିନ୍ଧ ଯୁବକ ଶୀଘ୍ର ଉଠି ପଡ଼ିଲା ଏବଂ କାରଣ୍ଡାରୁ ତଳକୁ ଆସିବା ସମୟରେ ବାନ୍ତି ଉଚ୍ଛାଳ କରିବାରେ ଲାଗିଲା, ଓକାର ଉଠାଇଥିବା ଅବସ୍ଥାରେ ସେ ବାରଣ୍ଡା କଡ଼କୁ ଆସିଗଲା, ତା' ଲୁଗାପଟା ଖରାପ ହୋଇଗଲା, ବାରଣ୍ଡା ସାରା ବାନ୍ତି ପଡ଼ିଥାଏ ।

"ଧୃତକେଶ, ରାମ ଭଗବାନ"—ଭଦ୍ର ବାବା ଚଟପଟ ଉଠି ପଡ଼ିଲେ । ସଜ୍ଜନ ତାଙ୍କର କାର୍ଯ୍ୟ ତତ୍ପରତାକୁ ଦେଖୁଥାଏ । ପାଗଳ ଖାନା ତା ମନରେ ଗଭୀର ଛାପ ପକାଇଥାଏ—ଆଶ୍ଚର୍ଯ୍ୟ ବାତାବରଣ । କାହା ଘରେ ଯଦି କିଏ ପାଗଳ ହୋଇଯାଏ ତ ସମ୍ଭାଳିବା ମୁସ୍କିଲ, ସାରା ଘରର ଶାନ୍ତି ଚବିଶ୍ ଘଣ୍ଟା କେବଳ ତା'ର ପାଇଁ । ଅଥଚ

ଏଠାରେ ଦଶ ପନ୍ଦର ଜଣ ବଦ୍ଧ ପାଗଳଙ୍କୁ ନେଇ ଏହି ବୃଦ୍ଧ ସାଧୁ ସ୍ୱର ଆଡ଼କୁ ସଜାଇ ନିଜର ଦେଇ, ତାହାଙ୍କୁ ବାଢ଼େଇ, ପାଟିକରି କମ୍ବା ପୂଅରେ ·ଧନରେ କହି ସବୁ କାମ ମହା ଫୂର୍ତ୍ତିରେ କରିବା—ଏ ସମସ୍ତ କାର୍ଯ୍ୟ ସମାଧାନ କରି ଯେତେବେଳେ ନିଜ ଆସ୍ଥାନରେ ବସି ପଡ଼ନ୍ତି ମନେହୁଏ ଏ ବ୍ୟକ୍ତି ଯେପରି କୁଆଡ଼େ ହଜିଯାଇନାହିଁ, କିଛି ଭୟ ନାହିଁ, ଯାଙ୍କର କୌଣସି ଚିନ୍ତା ନାହିଁ, ବିଭୁ ପ୍ରେମରେ ବିଭୋର ହୋଇ ସଦା ହାସ୍ୟମୁଖ ଏହି ବ୍ୟକ୍ତି ଯେପରି ସବୁଥିରୁ ମୁକ୍ତ । ରାମଜୀ, ଆପଣଙ୍କ ପାଇଁ ଚା କରିବାକୁ କହିବି ? କିଛି ଖାଇବାକୁ ଇଚ୍ଛାହେଲେ ତା' ମଧ୍ୟ ମିଳିପାରିବ ।" ମତେ କେବଳ ଆପଣଙ୍କ କୃପା ଦରକାର । କିନ୍ତୁ ଚା ତ ଆପଣ ପିଇବେ । ଆପଣ ଆଶ୍ରମକୁ ଆସିଲେ ଅଥଚ ମୁଁ କିଛି ସେବା ଆପଣଙ୍କ ପାଇଁ କରିପାରିବି ନାହିଁ ? ଏକଥା କିପରି ହେବ ?

"ସେବା ମତେ କରିବାକୁ ହେବ ।"

"ସେବା ପ୍ରତ୍ୟେକ ମଣିଷର ଧର୍ମ, ପ୍ରତ୍ୟେକେ କରିବା ଦରକାର । "ଆରେ ରାମଶଙ୍କର, ଚା'ହା ଟିକେ କରି ଦିଅ । ଲବଙ୍ଗ ଅଳେଇଚ ମସଲା ଦେଇ କର । ...ମୋ ମତରେ ସବୁ ମଣିଷଙ୍କ ମନରେ ଯଦି ସେବା କରିବାର ପ୍ରବୃତ୍ତି ଥିଲେ ପ୍ରମାଣ ରହିବ ତେବେ ସେ ନିଜ ଶକ୍ତି ଦ୍ୱାରା ଦିଗ୍‌ଦର୍ଶନ ଠିକ୍‌ ରୂପରେ ପାଇପାରିବ ।

"ଆପଣଙ୍କର ଏ କଥା ମୁଁ ଠିକ୍ ବୁଝି ପାରିଲି ନାହିଁ ।"

"ପ୍ରକୃତ ସେବକ ଯିଏ ସେ ସବୁବେଳେ ଶାନ୍ତ ଚିତ୍ତ ଓ ସତର୍କ ରହିଥାଏ । ନିଜର କିଛି ପ୍ରମାଦ ଆସିଲେ ମଧ୍ୟ ସେ ମନର ଶାନ୍ତି ଓ ବିଚାର ହରାଏ ନାହିଁ,... ଏ କଥାର ବାସ୍ ଏତିକି ମାତ୍ର ରହସ୍ୟ ।"

ସଜ୍ଜନ ଏକଥା ସମର୍ଥନ କରିପାରିଲି ନାହିଁ, କହିଲି···ଆପଣ ସେବକ ହେବା ନିମନ୍ତେ କାହିଁକି ଜୋର ଦେଉଛନ୍ତି, ମଣିଷ ନିଜର 'ପ୍ରଭୁ କାହିଁକି ନହେବ ।"

ସାଧୁ ହସିଲେ, କହିଲେ..." ଏକା କଥା ରାମଜୀ .. ପୂର୍ବାଶ୍ରମରେ ମୁଁ ଜଣେ ମଟର ମେକାନିକ ଥିଲି । ଶେଷରେ ମାଲିକର ଚାକିରି ଛାଡ଼ି ସନ୍ନ୍ୟାସୀ ଚାଲିଗଲି । ଚିତ୍ରକୂଟରେ ଧ୍ୟାନ କଲି, ନିର୍ଜନ ଜାଗାରେ ରହିଲି । ଜାଣେନି କେତେ ସବୁ କଷ୍ଟକର ସାଧନା କଲି । ଶେଷରେ ଜଣେ ମହାତ୍ମାଙ୍କର ଦର୍ଶନ ପାଇଲି, ସେ କହିଲେ ନିଜ ବ୍ୟକ୍ତିତ୍ୱ ଛାଡ଼ି ଏଠି ଏ କି ପ୍ରକାର ଫାର୍ସ ଦେଖାଉଛ । ଯାଅ···ସେବା କର । ମୁଁ ସ୍ୱାପରେ ଆଉ କଣ କରନ୍ତି । ଯାହାଙ୍କୁ ଗୁରୁ ବୋଲି ଗ୍ରହଣ କଲି ତାଙ୍କ ଆଜ୍ଞା ତ ଶିରୋଧାର୍ଯ୍ୟ । କହିବାର ମତଲବ ହେଲା ଯେ ନିଜ ନିଜ ବ୍ୟକ୍ତିତ୍ୱ ନିକର କେହି ନିଜର ସ୍ୱାମୀ ବା ପ୍ରଭୁ ହୋଇ ପାରିବ ନାହିଁ, ତା ଛଡ଼ା ମତେ ତ ତୁମର ସେବକ ଭାବରେ ଭାବିବାକୁ ଆନନ୍ଦ ମିଳୁଛି...ଆପଣ ରାମଜୀ ଅଟନ୍ତି ।"

କୌଣସି ବାଧା ନଆସି ଏକ ପବିତ୍ର ବ୍ରତ ଠିକଣା ରୂପରେ ପୂର୍ଣ୍ଣ ହୋଇପାରିଲା । ଏହିପରି ଏକ ଉଲ୍ଲାସ ସହିତ ସବା ଶେଷଦିନ ସକାଳେ ସେ ଜଣେ କର୍ମଠ ବ୍ୟକ୍ତିର ଆତ୍ମତୃପ୍ତି ନେଇ ମନ୍ଦିରରୁ ଘରକୁ ଫେରିଲେ । ତାଙ୍କର ଇନ୍ଦ୍ରିୟଗୁଡ଼ିକ ସେଠାରେ ଇତି ମଧ୍ୟରେ ଏକ ଅଦ୍ଭୁତ ପରିବର୍ତ୍ତନ ହୋଇ ଯାଇଥିବାର ଘ୍ରାଣ କରି ପାରୁଥିଲେ ।

ମାତ୍ର···

ସେହି ପରିବର୍ତ୍ତନଟି ଯେ କ'ଣ ଥିଲା······କିଛି ବୁଝି ହେଉନଥିଲା···ଘରେ ପୂର୍ଣ୍ଣ ନୀରବତା ରହିଥିଲା, ନିଶ୍ଚିନ୍ତ ନିଦ୍ରାରେ ନିମଗ୍ନ ପ୍ରଭାକରନ୍ ଏବଂ ମାଧବୀକୁ ଦେଖିବା ପରେ ଯାଇ ହୃଦୟଟି ଟିକିଏ ଆଶ୍ୱସ୍ତ ହେଲା ।

"କାତ୍ୟାୟିନୀ······।"

ତାଙ୍କର ଏକୁଟିଆ କଣ୍ଠସ୍ୱରଟି ଘର ଭିତରେ ଥରେ ଗୁଞ୍ଜି ଉଠିଲା ଓ ପୁଣି ଲେଉଟି ଆସିଲା । ସେହି ଶବ୍ଦରେ ପିଲାମାନେ ଥରେ କଡ଼ ଲେଉଟାଇ ଦେଲେ···ବାସ୍ ।

କାତ୍ୟାୟିନୀଙ୍କୁ ଆଉ ଦେଖିବାକୁ ମିଳିଲା ନାହିଁ······

ଏହି କେତୋଟା ଦିନରେ ସବୁକଥା କେତେ ପରିପକ୍ୱ ହୋଇଗଲାଣି, ତଥାପି ମନଭିତରେ ଗୋଟାଏ ଧକ୍କା······

କିଞ୍ଚିତ୍ ଚକିତ ଭାବରେ ବାରଣ୍ଡାରେ ଠିଆ ହୋଇ ସେ ଦେଖିଲେ ଯେ ଅଗଣାରେ ଦଉଡ଼ି ଉପରେ ପବନରେ ଫରଫର ହୋଇ ସକାଳର ଖରାରେ ସେହି ସବୁଜ ରଙ୍ଗର ଚଉଡ଼ା ଧଡ଼ିବାଲା ଶାଢ଼ିଟି ଶୁଖିବାରେ ଲାଗିଛି । ସେଇଟି ଉପରେ ଝଟ୍ କରି ନଜର ପଡ଼ିଗଲା······

ସେଇଟା ତ ତାଙ୍କର ଶାଢ଼ୀ ନୁହେଁ······

ସିଏ ଯେ କାହାର ହୋଇଥିବ, ସେ କଥା ତାଙ୍କୁ ଜଣାଥିଲା···

ତା' ହେଲେ ଆଉ କ'ଣ······ ?

ସେ ସବୁକିଛି ବୁଝିଗଲେ······ ।

ଅନନ୍ତନ୍ ନାମ୍ବିର୍ ଯେତେବେଳେ ଘରେ ଆସି ପହଞ୍ଚିଲେ, ସେତେବେଳେ ବାରଣ୍ଡା ଉପରେ ମାଧବୀ ଆଉ ପ୍ରଭାକରନ୍ ସାମନାସାମନି ହୋଇ ବସିଥିଲେ ।

ସେମାନଙ୍କର ମୁଖମୁଦ୍ରାରୁ ସ୍ପଷ୍ଟ ହୋଇ ଯାଉଥିଲା ଯେ ସେମାନେ ଭାରି ଗମ୍ଭୀର କୌଣସି ଗୋଟିଏ ବିଷୟ ଉପରେ କ'ଣ ସବୁ ଚର୍ଚ୍ଚା କରିବାରେ ଲାଗିଛନ୍ତି ।

ଅନନ୍ତନ୍ ନାୟର୍‌ଙ୍କୁ ଦେଖିବା ମାତ୍ରକେ ମାଧବୀ ଠିଆହୋଇ ଆଗକୁ ଆସିଲା ଓ କହିଲା, "ଆମେ ଆପଣଙ୍କ ଲାଗି ହିଁ ଅପେକ୍ଷା କରୁଥିଲୁ...... ।"

କେତେକେତେ ପ୍ରଶ୍ନରେ ପୂର୍ଣ୍ଣ ଆଖିଗୁଡ଼ିକୁ ସେ ସେହିମାନଙ୍କ ଉପରେ ନିବଦ୍ଧ ରଖି ଲୁଗା ପାଲଟିବାରେ ଲାଗିଲେ ।

"ନାଇଁ । ଆମେ ଟିକିଏ ଡ଼ର ଯାଉଥିଲୁ କି ଆପଣ ଆଜି ମଧ୍ୟ କାଲି ପରି ଖୁବ୍ ଡେ଼ରି କରି ଆସିବେ...... ।" ମାଧବୀ କହିଲା ।

"ଓ ହୋ ! ହେ ଶ୍ରୀପଦ୍ମନାଭ...... " କହୁ କହୁ ସିଏ ବିଛଣା ଉପରେ ଗଡ଼ିପଡ଼ିଲେ ।

"ବାପା, ଆସନ୍ତୁ । ଅନେକ ଡେ଼ରି ହୋଇଗଲଣି......ଆପଣ କିଛି ଖାଇ ନିଅନ୍ତୁ... ।" ମାଧବୀ ତାଙ୍କୁ ଡାକିଲା ।

"ନାଇଁ ଝିଅ । ଯଦି ଗହମର ଦଲିଆ ହୋଇଥିବ ତ ଆଣ...ଆଜି ମୁଁ ଆଉ କିଛି ଖାଇବି ନାହିଁ— ।" ସେ ମନା କରି କହିଲେ ।

ମାଧବୀ ତାଙ୍କର ସ୍ୱଭାବଟିକୁ ଭଲ କରି ଜାଣିଥିଲା, ତେଣୁ ଆଉ ଅଧିକ କିଛି କହିଲା ନାହିଁ । ସେ ଘର ଭିତରକୁ ଗଲା ଓ ଦୁଧ ଦେଇ କିଛି ଦଲିଆ ତିଆରି କରିବା କାର୍ଯ୍ୟରେ କାମାକ୍ଷୀକୁ ସାହାଯ୍ୟ କଲା ।

ତାଙ୍କର ମୁଣ୍ଡଟିକୁ ଦେଖିବା ମାତ୍ରକେ ପ୍ରଭାକରନ୍ ନିଜ କୋଠରୀଟି ଭିତରକୁ ପଶି ଯାଇଥିଲା, ଇତି ମଧ୍ୟରେ ସିଏ ବି ଧୀରେ ଧୀରେ ସେଠାରେ ଆସି ପହଞ୍ଚିଲା ।

ଅଣ୍ଟା ଉପରେ ଲୁଙ୍ଗି, ସେଣ୍ଡୋ ବେନିଅନ୍,- ଜଙ୍ଘ ପର୍ଯ୍ୟନ୍ତ ହାତକୁ ଲମ୍ବାଇ ସିଏ ସେଇଠି ଠିଆହୋଇ ରହିଥାଏ । ତାକୁ ଦେଖି ଅନନ୍ତନ୍ ନାୟର୍‌ଙ୍କର,— ତାକୁ ଯାହା ପଚାରିବାର ଥିଲା, ସେ ଯେପରି ସବୁକିଛି ଭୁଲିଗଲେ, ଠିକ୍ ସେହିପରି ଏକ ବିଭ୍ରମ ହେବାକୁ ଲାଗିଲା......

"ବାପା...ମୋତେ ଆପଣ ଡାକୁଥିଲେ ବୋଲି ମାଧବୀ କହୁଥିଲା...ମାମୀ ବି କହିଲେ... ।" ବୟସ୍କତାରୁ ପ୍ରାପ୍ତ ଏକ ଘାଗରା ଶବ୍ଦରେ ପୂରି ରହିଥିବା ସ୍ୱରରେ ସେ ପଚାରିଲା । କଥା କିପରି ଆରମ୍ଭ କରିବାକୁ ହେବ,—ଏହିପରି ଏକ ଦ୍ୱିଧାରେ ପଡ଼ି ଶୂନ୍ୟ ଦୃଷ୍ଟିରେ ତାକୁ ହିଁ ଦେଖୁ ଦେଖୁ ସେ ବସି ରହିଲେ ।

ହୁଁ ! ଇଏ ବି କେତେ ଶୀଘ୍ର ବଡ଼ ହୋଇଗଲା...ଠିକ୍ କାଲିପରି ଲାଗୁଛି, ସାନ ପିଲାଟିଏ ହୋଇ ଖେଳୁଥିଲା ବୁଲୁଥିଲା... । ବର୍ତ୍ତମାନ ତ ଏହିକାଲର ଫେଶନ ଅନୁସାରେ, ଏକ ବିଶେଷ ଢଙ୍ଗରେ କଟାହୋଇ ଉପର ଆଡ଼କୁ ଉଠାଇ ଦିଆ

ଯାଇଥିବା ମୁଣ୍ଡର ବାଳ, ଝୁଣ୍ଟିଆ କରି ଟିକିଏ ଦାଢ଼ି, କମ୍ ଚଉଡ଼ା ହୋଇଥିଲେ ମଧ୍ୟ ହେଲେ ଗହଳ ନିଶ, ମୋହଭଙ୍ଗ ଓ ଆଶାହୀନତାର ପ୍ରତିବିମ୍ବକୁ ବହନ କରିଥିବା ଆଖି—ସିଏ କିଛିସମୟ ଅନାଇକରି ଦେଖିଲେ । ତା'ପରେ କହିଲେ, ‘‘ପ୍ରଭାକରନ୍ । ଏଇଠି ଆସିବ । ତୋ ସହିତ କିଛି କଥା ଅଛି... । ତୋତେ ନିଦ ମାଡ଼ୁନାହିଁ ତ.... ?’’

“ନାଇଁ” ବୋଲି କହି ସେ ଆଗରେ ପଡ଼ିଥିବା ଚଉକିଟିରେ ଆସି ବସିଲା

‘‘ଟମାସ୍ ସହିତ ତୋର ଦେଖା ହେଲା ?’’ ହଠାତ୍ ମନେ ପଡ଼ିବାରୁ ସେ ପଚାରିଲା ।

“ହଁ, ଦେଖାହେଲା’’ ଦୁଇଟି ଶବ୍ଦରେ ଉତ୍ତର ଦେଇ ତାଙ୍କ ମୁହଁଆଡ଼କୁ ଅନାଇବା ଲାଗି ଟିକିଏ ସଙ୍କୋଚ ହେବାର ସେଠାରେ ପଡ଼ିଥିବା ଖବରକାଗଜ ଖଣ୍ଡିକ ଉଠାଇ ନେଇ ସେଇ ଆଡ଼କୁ ଅନାଉ ଅନାଉ ତାଙ୍କ କଥାକୁ ଶୁଣିବା ଲାଗି ସେ ଅପେକ୍ଷା କରି ରହିଲା । ଇତିମଧ୍ୟରେ ମାଧବୀ ଦଳିଆ ନେଇ ପହଞ୍ଚିଗଲା, ସିଏ ବହୁତ କରି କହିଲା, ତଥାପି ସେ ଗୋଟିଏ ଗିନାରୁ ଅଧିକ ମୋଟେ ଖାଇ ପାରିଲେ ନାହିଁ ।

‘‘ଆଚ୍ଛା ମାଧବୀ, ମାମୀକୁ କହିଦେ’ ସିଏ ଶୋଇବାକୁ ଯାଉ । ତା’ପରେ ତୁ ବି ଏଠିକି ଆ... ।’’ ମାଧବୀ ଭିତରକୁ ଯାଇ ସଙ୍ଗେସଙ୍ଗେ ଫେରିଆସିଲା ।

‘‘ବାପା, ରାତି ବହୁତ ଡେରି ହୋଇଗଲାଣି । କାଲି ମଧ୍ୟ ଆପଣ ଠିକ୍ ସମୟରେ ଶୋଇ ନଥିଲେ···ଆଜି ଶୋଇବେ ଯାଆନ୍ତୁ ନା···କାଲି ସକାଳେ କଥାବାର୍ତ୍ତା ହେଲେ କ’ଣ ହେବନାହିଁ ?’’ ସେ କହିଲା ।

“ନାଇଁ, ମାଧବୀ, ଆଜି ରାତିରେ ଯେତେ ଡେରି ହେଲେ ହେବ ପଛକେ, ଆଜି ଆମେ କେତୋଟି ବିଷୟ ନିଶ୍ଚୟ ସ୍ଥିର କରିନେବା । ଏଥିରେ ସମସ୍ତଙ୍କର ଭଲ ହେବ···ଅନ୍ତତଃ ମୁଁ ଏହିପରି ଭାବୁଛି ।’’ ସିଏ ଯେତେବେଳେ ଏପରି କହିଲେ ସେତେବେଳେ ମାଧବୀ ଆଉ ପ୍ରଭାକରନ୍ ପରସ୍ପର ମଧ୍ୟରେ ଦୃଷ୍ଟି ବିନିମୟ କରୁଥିଲେ—ସେ କଥାଟି ତାଙ୍କ ଆଖିରେ ମଧ୍ୟ ପଡ଼ିଗଲା ।

“ଆଚ୍ଛା’ ତୁ ବି ସେଠି ବସ, ଝିଅ ।’’ ଟିକିଏ ସଙ୍କୋଚ ସହିତ ମାଧବୀ ଆର ଚଉକିଟି ଉପରେ ଯାଇ ବସିଲା ।

‘‘ହଁ···ସକାଳେ ତୁ ଯୋଉ କଥାଟି କହୁଥିଲୁ, ଆଗ ସେଇଟିକୁ ସମ୍ପୂର୍ଣ୍ଣ କରି କହିଦେ । ହଁ···ପ୍ରଭାକରନ୍ କ’ଣ ସେ ବିଷୟରେ କିଛି ଜାଣିଛି ?··· ସେ ଯେତେବେଳେ ମାଧବୀକୁ ଏକଥା ପଚାରିଲେ । ସେତେବେଳେ ପ୍ରଭାକରନ୍ କହିଲା,

"ବର୍ତ୍ତମାନ ପର୍ଯ୍ୟନ୍ତ ଆମେ ସେହି ବିଷୟରେ କଥାବାର୍ତ୍ତା କରୁଥିଲୁ । ସିଏ କ'ଣ ଆପଣା ମନକୁ ମୋତେ କେବେ କହିଥାନ୍ତା ? ମୁଁ ନିଜେ ଆଗ ସବୁକଥା ଜାଣି ସାରିବା ପରେ ତାକୁ ଯାଇ ପଚାରିଲି ଓ ଏହାର ନିଷ୍ପତ୍ତି ଶୁଣିବାକୁ ଇଚ୍ଛା କଲି ।"ଅନନ୍ତନ୍ ନାମ୍ବିର ମାଧବୀ ଆଡକୁ ଅନାଇ ଦେଖିଲେ । ତା' ମୁହଁରୁ 'ହଁ' ର ସଙ୍କେତ ମିଳୁଥିଲା ।

"ତା'ହେଲେ ଭାରି ଭଲ ହେଲା । ବାକୀତକ କଥା ତୁ କହିଦେ ଝିଅ । ପ୍ରଭାକରନ୍‌ର ମଧ୍ୟ ଜାଣି ନେଇଥିବା ଉଚିତ···ସିଏ ତୋ'ର ବଡ଼ଭାଇନା ସେ ତାକୁ ପ୍ରୋତ୍ସାହିତ କଲେ ।

ତା'ପରେ ଆଉ ଚ କ'ଣ ମନେ ପକାଇଲା ପରି କହିଲେ, "ଆଜି ସକାଳେ ମୁଁ ତୋତେ ପଚାରିଥିଲି, ତୁ କେବେ ତା' ଘରକୁ ଯାଇଛୁ କି ? ବର୍ତ୍ତମାନ ତୋତେ ସେହି କଥାଟିର ଉତ୍ତର ଦେବାକୁ ହେବ ।" ସେ କଥାବାର୍ତ୍ତା'ର ଧାରଟିକୁ ସ୍ମରଣ କରାଇଦେଲେ ।

ଜଣେ ବୟଃପ୍ରାପ୍ତା ଯୁବତୀ, ନିଜ ଭିତରେ ସୁରକ୍ଷିତ ଭାବରେ ଲୁଚାଇ ରଖିଥିବା ଯେଉଁ ରହସ୍ୟଟିରେ ଆନନ୍ଦ ଅନୁଭବ କରୁଥାଏ, ସେହିପରି ଗୋଟିଏ ଗୂଢ଼ ରହସ୍ୟକୁ ନିଜର ବାପା ଆଉ ଭାଇଙ୍କ ମୁହଁରେ କିପରି କହିବ, କିପରି ତା'ର ଆଲୋଚନା କରିବ, ସେହିକଥା ଭାବି ମାଧବୀ ବଡ଼ ସଙ୍କୋଚରେ ପଡ଼ି ଯାଇଥିଲା । ତାକୁ ମୌନ ଦେଖି ଅନନ୍ତନ୍ ନାମ୍ବିର୍ ସେହିକଥା ଭାବୁଥିଲେ ।

ନଡ଼ିଆଗଛ ପତ୍ରର ସିରସିର ଶବ୍ଦ ବାହାରେ ବହୁଥିବା ପବନର ସଙ୍କେତ ଦେଇ ଯାଉଥିଲା । ବିଜୁଳି ଆଲୁଅଗୁଡ଼ାକ କାହିଁକି ଏପରି କାନ୍ଦବାପରି ଦେଖା ଯାଉଥିଲେ, ସିଏ ମୋଟେ ତା'ର କାରଣଟିକୁ ଜାଣି ପାରୁନଥାନ୍ତି ।

"ଝିଅ ! ତୁ ପଢ଼ାଶୁଣା କରିଛୁ···ତେଣୁ ସିଧା କହିଦେ' ପ୍ରକୃତ କଥା କ'ଣ । ସକାଳେ ମୋତେ ସେହିକଥା କହୁଥିଲୁ ନା ! ଅଳ୍ପସମୟ ପୂର୍ବରୁ ପ୍ରଭାକରନ୍ ସହିତ ମଧ୍ୟ ସେହିକଥା ବିଷୟରେ କଥାବାର୍ତ୍ତା ହୋଇଛି । ତେବେ ଆଉ ସଙ୍କୋଚ କ'ଣ··· ! ବର୍ତ୍ତମାନ ଆମେ ତିନିହେଁ ଯାହା ଏଠି ଏକାଠି ବସିଛୁ···ସେତକମାତ୍ର ପରିବାର··· । ତୁ କହିଦେଲେ ସିନା ତୋର ମନ ଭିତରର କଥାଟିକୁ ମୁଁ ଜାଣି ପାରିବି ? —ଏଥିରେ ତୋର ଭଲ ହେବ ଆଉ ମୋର ବି ଆଉ ଡେରି କରନା···ଆଜି ଆମକୁ ଅନେକ ବିଷୟରେ ବିଚାର କରିବାକୁ ହେବ । କହିଦେ ଝିଅ···।" ସିଏ ଏପରି ବାରବାର ପଚାରିବା ପରେ ବଡ଼ ସଙ୍କୋଚ ସହିତ ପାତଳା କଣ୍ଠରେ ସେ ଦୃଢ଼ ହୋଇ ଉତ୍ତର ଦେଲା," ତାଙ୍କ ଘରକୁ ମୁଁ ବି ଚାରିଥର ଯାଇଛି ।"

“ଓ ହୋ !” ପ୍ରଭାକରନ୍‌ ଏପରି ଶବ୍ଦ କରିବାରୁ ଅନନ୍ତନ୍‌ ନାୟର୍‌ଙ୍କର ମନେ ହେଲା ଯେ ସିଏ ଏକଥାଟିକୁ ଜାଣିଛି ।

ସକାଳେ ସିଏ ଏହି ପ୍ରଶ୍ନଟି ପଚାରିଥିଲା ବେଳେ ମାଧବୀ କିଛି ନ କହି ଚୁପ୍‌ ହୋଇ ବସିଥିଲା, ସେଇଥିରୁ ସେ କେତେକ ପରିମାଣରେ ସବୁକଥାକୁ ଅନୁମାନ କରି ନେଇଥିଲେ, ଏବଂ ତେଣୁ ବର୍ତ୍ତମାନ ତାଙ୍କୁ ଏକଥା ଶୁଣି ଆଉ କୌଣସି ଧକ୍‌କା ଲଗିଲା ନାହିଁ । ମାତ୍ର ତାକୁ ଟିହାଇ ଆହୁରି ତାମସା ଦେଖିବାର ଢଙ୍ଗରେ ପ୍ରଭାକରନ୍‌ ପଚାରିଲା, “ତୁ ନାୟର୍‌ ଘରର ଜଣେ ବୟସ୍ଥ ହୋଇଥିବା ଯୁବତୀ । ସେଠାକୁ ତୁ ଦୁଇଚାରି ଥର ଗଲୁ, ଏକଥା କହିବାକୁ ତୋତେ ଲାଜ ମାଡ଼ୁନାହିଁ ?”

‚‘ଏଥିରେ ଲାଜ ବା ଅପମାନ ଲଗିବାର କିଛି ନାହିଁ, ଭାଇ ।”– ମାଧବୀ ଉତ୍ତର ଦେଲା । ‘ଏଥିରେ’ ଶବ୍ଦଟି ଉପରେ ଦିଆ ଯାଇଥିବା ବିଶେଷ ଜୋର ଏବଂ ତା’ର ଆଖିପୁଡ଼ିକ ଉପରେ ପ୍ରକଟ ହେଉଥିବା ଉପହାସ—ଭାବଟିର ଅର୍ଥକୁ ଅନନ୍ତନ୍‌ ନାୟର୍‌ ବେଶ୍‌ ବୁଝିପାରିଲେ କାରଣ କାଲି ସକାଳେ ସିଏ ଏ ଦୁହିଁଙ୍କର ବାଦବିବାଦଟିକୁ ମଧ୍ୟ ଶୁଣିଥିଲେ । ପ୍ରଭାକରନ୍‌ ନାୟର୍‌ର ମୁହଁ ଉପରେ ଯେଉଁ କ୍ରୋଧଟି ପ୍ରକଟ ହୋଇ ଉଠୁଥିଲା, ସେଥିରୁ ସେ ଅନୁମାନ କରୁଥିଲେ ଯେ ପ୍ରଭାକରନ୍‌ କଥାଟିକୁ ଠିକ୍‌ ଭାବରେ ବୁଝିପାରିଛି । ସିଏ ମଝିରେ ଥାଇ କହିଲେ, “ତୁ କିଛି କହନା, ପ୍ରଭାକରନ୍‌ ! ମିଛ କହି କାହାକୁ ଠକିବା ଅପେକ୍ଷା, ଯେତେ ଲଜ୍ଜାଜନକ ହୋଇଥିଲେ ମଧ୍ୟ ସିଏ ମନ ଖୋଲି ସତ କଥାଟିକୁ ଆମ ଆଗରେ ପରିଷ୍କାର କରି କହିଦେଉ, ଏଇଥିରେ ହିଁ ସମସ୍ତଙ୍କର ଭଲ ହେବ ।” ତା’ପରେ ମାଧବୀକୁ କହିଲେ, “ହଁ ଅ·········ଆଉସବୁ କ’ଣ ହେଲା କହିଯା’ ।”

ମାଧବୀ ପୁଣି କଥା ଆରମ୍ଭ କଲା, “ମାତ୍ର ମୁଁ ଯେ ସେଠାକୁ ଦୁଇଥର ଯାଇଥିଲି, ଧର୍ମ ପାଲନ୍‌ ସାଙ୍ଗରେ ସାକ୍ଷାତ୍‌ କରିବାକୁ ମୋଟେ ଯାଇନଥିଲି······ ।”

‘ତା’ହେଲେ ଯାଇଥିଲୁ କ’ଣ ପାଇଁ ?”—ପ୍ରଭାକରନ୍‌ର ଏହି ପ୍ରଶ୍ନଟିରୁ ଯେଉଁ ଉପହାସ ସ୍ପଷ୍ଟ ହୋଇ ଉଠୁଥିଲା, ସେଥିପ୍ରତି କୌଣସି ଭ୍ରୂକ୍ଷେପ ନକରି ମାଧବୀ ଅଗ୍ରସର ହୋଇ କହିଲା, “କେତେ ଦିନରୁ ବାଳାସିନୀ କେତେ କରି ତା’ ଘରକୁ ଯିବାକୁ କହୁଥିଲା, ସେଠିକି ଯିବାକୁ ମୋର ଏତେଟିକିଏ ଇଚ୍ଛା ନଥିଲା, ପ୍ରଥମ ଥର ପାଇଁ, ମୁଁ ତାଙ୍କ ଘରକୁ ଗଲି······”

“କାହିଁକି ଗଲୁ, ମୁଁ ତୋତେ ସେହି କଥାଟି ତ ପଚାରୁଛି... ।”

ଓଠ ଭିତରେ ହସକୁ ଚାପି ରଖି ପ୍ରଭାକରନ୍‌ ସେହି ପ୍ରଶ୍ନଟିକୁ ପଚାରିଲା, ତା’ର ରଙ୍ଗଢଙ୍ଗ ଦେଖି ଅନନ୍ତନ୍‌ ନାୟର୍‌ଙ୍କର ଏପରି ମନେହେଲା ଯେ ଯେଉଁ କଥାକୁ ସେ

ଆଗରୁ ଭଲକରି ଜାଣିଛୁ, ସେହି କଥାଟିକୁ ହିଁ ମାଧବୀର ମୁହଁରୁ ସେ ବାହାର କରିବାକୁ ଚାହୁଁଛୁ—ଏଥିପାଇଁ ତା'ଭିତରେ ଭାରି କୌତୁହଳ ହେଉଛି ।

ମାଧବୀ ସଙ୍ଗେ ସଙ୍ଗେ ସେହି ପ୍ରଶ୍ନଟିର ଜବାବ ଦେଲାନାହିଁ । ତା'ପରେ ଅନନ୍ତନ୍ ନାୟର୍‌ଙ୍କୁ ଉଦ୍ଦେଶ୍ୟ କରି ପଚାରିଲା, "ବାପା, ଯେଉଁ କଥା କହିବାଲାଗି ମୁଁ ଏଠାକୁ ଆସିଥିଲି, ଏ କଥାର ତା' ସହିତ କୌଣସି ସମ୍ବନ୍ଧ ନାହିଁ । ମୁଁ ଏପର୍ଯ୍ୟନ୍ତ ଏକଥାକୁ କାହାରି ଆଗରେ କହିନାହିଁ । ଏହି କଥାଟିକୁ କ'ଣ କହିବାକୁ ହିଁ ପଡ଼ିବ ?"

"ହଁ ଅ ! ତୁ ଆଉକେବେ ନିଶ୍ଚିନ୍ତ ହୋଇ ମୋତେ କୌଣସି କଥା କହିପାରିବୁ ଏକଥା ଭାବି ତୁ ମୋଟେ କୌଣସି କଥାକୁ ନ କହି ଛାଡ଼ିଦେ' ନା । ସେସବୁ କହିବା ସକାଶେ ବର୍ତ୍ତମାନ ପରି ସୁବିଧାଜନକ ଅବସର ଆଉ କେବେ ମିଳିବ କି ନାହିଁ, ସେ କଥା କିଏ ଜାଣିଛି ?...... "

ଗୋଟାଏ ପ୍ରକାର ଭାବାବେଶରେ ପଡ଼ି ସେ ଏକଥାଟି କହିଦେଲେ ଶୁଣି ପ୍ରଭାକରନ୍ ମଧ୍ଯ ଟିକିଏ ସିଧା ହୋଇ ବସିପଡ଼ିଲା ।

ମାଧବୀ ବିସ୍ମୟ ଏବଂ ଜିଜ୍ଞାସା ସହିତ ତାଙ୍କ ଆଡ଼କୁ ଅନାଇବାକୁ ଲାଗିଲା । "ହଁ ଅ, ଗୁଡ଼ାଏ ସ୍ୱାଡ଼ୁ ସାଡ଼ୁ ଭାବି ମୋଟେ ମୁଣ୍ଡ ଖରାପ କରିବୁ ନାହିଁ......ତୁ ଖାଲି କହିଯା ।" ସିଏ କହିଲେ ।

ଅନନ୍ତନ୍ ନାୟର୍ ମାଧବୀର ଭାବନାକୁ ଭାଙ୍ଗିଦେଲେ । ସିଏ ଯେଉଁ କଥାଟିକୁ କହିବାକୁ ଆସିଥିଲା, ସେଇଟିକୁ ହିଁ କହି ପକାଇବା ଲାଗି ସେ ତାକୁ ପ୍ରୋତ୍ସାହିତ କଲେ । ମାଧବୀ କହିଲା, "ସେହି ଘରେ ବାଳାସିଂହର ମାଧ୍ୟମରେ ମୋତେ ଡ଼କାଇ ନେଇ ମୋ'-ସହିତ ସିଧା କଥାବାର୍ତ୍ତା କରିବାକୁ ଚାହୁଁଥିଲା......ମୋତେ ସିଏ ଜନ୍ମ ଦେଇଛି । ଏଇଥିପାଇଁ ମୋତେ ସେଠାକୁ ଯିବାକୁ ପଡ଼ିଲା...... "

ଏପରି ଗୋଟିଏ କଥା ଶୁଣିବେ ବୋଲି ଅନନ୍ତନ୍ ନାୟର୍ ଆଶା ବି କରି ନଥିଲେ । ତେଣୁ କଥାଟି ଶୁଣି ତାଙ୍କୁ ସତେ ଅବା ଧକ୍‌କା ଖାଇଲାପରି ଲାଗିଲା; ମାତ୍ର ପ୍ରଭାକରନ୍‌ର ମୁଖମୁଦ୍ରାଟିରୁ ତାଙ୍କର ଏପରି ମନେହେଲା ଯେ ମାଧବୀ ମୁହଁରେ ସେହି କଥାଟିକୁ ବାପାଙ୍କ ଆଗରେ ପ୍ରକାଶ କରାଇ ଦେଇ ସିଏ ବେଶ୍ ସନ୍ତୋଷ ଅନୁଭବ କରୁଥିଲା ।

ତଥାପି, ଅନନ୍ତନ୍ ନାୟର୍ ଆପଣାର ସବୁପ୍ରକାର ଉତ୍କଣ୍ଠାକୁ ଦବାଇ ରଖି ଚୁପ୍ ହୋଇ ବସିରହିଲେ ଓ ମାଧବୀ ସ୍ୱୟଂ ଆଉରି କ'ଣ କହିବ ବୋଲି ଅପେକ୍ଷା କରି ରହିଲେ ।

# ଅଠତରଣୀ

ଅନନ୍ତନ୍ ନାୟରଙ୍କୁ ଲାଗୁଥାଏ ମାଧବୀ ସତେଅବା କୌଣସି ସ୍ୱପ୍ନ ଦେଖି ଦେଖି ଚାଲିଛି । ସିଏ ବେଶ୍ ଦେଖି ପାରୁଥିଲେ ଯେ ତା'ର ମୁହଁଟି ଉପରେ ବେଦନାର ରେଖା ଗୁଡ଼ିକ କ୍ରମଶଃ ପରିବ୍ୟାପ୍ତ ହୋଇଯିବାରେ ଲାଗିଛି । ସିଏ ଭାବିଲେ, ଏହାର ହୃଦୟ ମଧ୍ୟରେ କୌଣସି ଦ୍ୱନ୍ଦ୍ୱ ହିଁ ଲାଗି ରହିଛି । କିଛି ସମୟ ପରେ, ଶୋକର ଏକ ଗ୍ରନ୍ଥୀକୁ ବହନ କରି ମାଧବୀ ବେଦନାମୟ କଣ୍ଠରେ ପୁଣି କହିବାକୁ ଆରମ୍ଭ କଲା, "ହଁ, ମୋତେ ଜନ୍ମ ଦେଇଥିବା ସ୍ତ୍ରୀଲୋକକୁ "ମାଆ' ବୋଲି କହି ସେହି ପବିତ୍ର ଶବ୍ଦଟିକୁ କଳଙ୍କିତ କରି ପକାଇବାକୁ ମୋତେ ଭାରି କଷ୍ଟ ଦାୟକ ବୋଧ ହେଉଛି । ତଥାପି, ଏଥିରେ ତ କୌଣସି ସନ୍ଦେହ ନାହିଁ ଯେ ସେ ମୋତେ ଜନ୍ମ ଦେଇଥିବାର ପାପଟିକୁ କରିଛି, ସେଥିଲାଗି ମୁଁ ସେହି ଶବ୍ଦଟିକୁ ହିଁ ପ୍ରୟୋଗ କରୁଛି ।" ତାହାର ଏହି କଥାଗୁଡ଼ିକ ପ୍ରଭାକରନ୍‌କୁ ଯେ ମୋଟେ ରୁଚିକର ମନେ ହେଲାନାହିଁ, ଅନନ୍ତନ୍ ନାୟର୍ ଏକଥାଟିକୁ ବେଶ୍‌ଲକ୍ଷ୍ୟ କରି ଦେଖିଲେ । ମାତ୍ର ବର୍ତ୍ତମାନ ପର୍ଯ୍ୟନ୍ତ ସିଏ ସତେଅବା ଯେପରି କେତେ କ'ଣ ହରାଇ ବସିଛନ୍ତି ବୋଲି କ'ଣ ଭାବି ଯେଉଁଭଳି ଚିନ୍ତିତ ହୋଇ ପଡ଼ିଥିଲେ, ତାହାର ପ୍ରକୃତରେ କୌଣସି ଆବଶ୍ୟକତା ନଥିଲା । ବର୍ତ୍ତମାନ ମାଧବୀର କଥାରୁ ହିଁ ତାଙ୍କୁ ଏହି ପରି ଏକ ଆଶ୍ୱାସନ ମିଳିବାକୁ ଲାଗିଲା ।

"ସେହିସବୁ ଦିନର କଥା ଯେତେବେଳେ ମୋର ମନେ ପଡ଼ିଯାଏ,— ସେତେବେଳେ ମୋ'ର ଟିକିଏ ଟିକିଏ ହେତୁ ହୋଇ ଆସିଥିଲା,—ସେତେବେଳେ ମୋ'ର ମାଆର ସେହି ଘୃଣ୍ୟଟି ପରିସ୍କାର ମନେ ପଡ଼ିଯାଏ, ଯେତେବେଳେ ସେ ମୋତେ ମାଡ଼ ମାରି ଖାଲି କନ୍ଦାଇବାରେ ଲାଗିଥିଲା । ତା'ପରେ, ମାଆ ବୟସରେ ମୋତେ ଯାହାସବୁ ଜାଣିବାକୁ ମିଳାଲା, ତାହା କାମାକ୍ଷୀଠାରୁ ମିଳାଲା, ସ୍କୁଲର ପିଲାଙ୍କଠାରୁ ମିଳାଲା, ଓ ସହରର ଅନ୍ୟ ଲୋକମାନଙ୍କ ଠାରୁ ବ ମିଳାଲା, ··· । ମଆ ବୟସରେ କିଛି ପଚାରିବ ବୋଲି ମୁଁ ଯେତେବେଳେ ଆପଣଙ୍କ ପାଖକୁ ଆସୁଥିଲି, ସେତେବେଳେ ଆପଣ ହୁଏତ ଚୁପ୍ ହୋଇ ରହି ଯାଉଥିଲେ ଅଥବା କଥାକୁ ବଦଳାଇ ଦେଉଥିଲେ ···" ମାଧବୀ ଅଟକିଗଲା ।

"ହିଁଅ, କେବଳ ନିଜଆଡ଼ୁ ନିଜ କଥାଟା ତୋତେ ଶୁଣାଇବା ସକାଶେ ମୋ'ର ଇଚ୍ଛା ନଥିଲା । ସେଇଆ ଭାବି ମୁଁ ଆଜିଯାଏ କେବଳ ଟାଳିଟାଳି ଆସିଲି । କିନ୍ତୁ ମୁଁ ସେତେବେଳେ ମଧ୍ୟ ଜାଣିଥିଲି ଯେ ଯେତେବେଳେ ତୁମମାନଙ୍କର ବୟସ ହୋଇଯିବ, ସେତବେଳେ ମୋତେ ତୁମମାନଙ୍କର ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଦେବାକୁ ହିଁ ପଡ଼ିବ ···" ମାଧବୀ ଈଷତ୍ ହସିଲା ।

"ବାପା ! ଆମେ ଆପଣଙ୍କ ପାଖରେ ଏତେଦିନ ରହିଲୁ, ତଥାପି ଆମେ ଦୁହେଁ, ମାଆ ଆମକୁ ଛାଡ଼ି, କାହିଁକି ଚାଲିଗଲା, ସେ ବିଷୟରେ ଆପଣଙ୍କ କଥାଟିକୁ ଶୁଣିବା ଯାହା ବାକି ରହିଯାଇଛି, ନହେଲେ ସାରା ସଂସାରର ସବୁ ସାକ୍ଷୀଙ୍କର ବକ୍ତବ୍ୟକୁ ଆମେ ଶୁଣିସାରିଛୁ ।"

ଅନନ୍ତନ୍ ନାୟର୍ କିଛିସମୟ ପାଇଁ ଚୁପ୍ ହୋଇ ରହିଲେ । ତା'ପରେ ପ୍ରଭାକରନ୍ ଆଡ଼କୁ ଅନାଇଲେ । ମନେହେଲା ଯେପରି ସିଏ ମଧ୍ୟ ସେହି କଥାଟିର ଅନୁମୋଦନ କରୁଛି ।

ମୁଁ ଏତେଦିନ ଯାଏ ମଉନ ହୋଇ ରହିଲି ବୋଲି ତୁମେସବୁ ଏପରି ନିଷ୍ପତ୍ତି କରିନେଲ ଯେ ମୁଁହିଁ ହେଉଛି ଅପରାଧୀ, ନୁହେଁ···?" ଯେତେବେଳେ ସେ ଏକଥାଟି ପଚାରିଲେ, ସେତେବେଳେ ଏକା ମାଧବୀ, 'ନୁହେଁ, ମୋଟେ ନୁହେଁ" ବୋଲି କହି ପ୍ରତିବାଦ କରିବାକୁ ଲାଗିଲା—ସିଏ ଏକଥାଟିକୁ ମଧ୍ୟ ଲକ୍ଷ୍ୟ କଲେ ।

ତୁମମାନଙ୍କର ପିଲାମୁଣ୍ଡରେ ତୁମମାନଙ୍କୁ ଜନ୍ମ ଦେଇଥିବା ସ୍ତ୍ରୀଟି ବିଷୟରେ କେବଳ ନିଜଆଡ଼ର ଯୁକ୍ତିଗୁଡ଼ିକୁ ଜବରଦସ୍ତି ଲଦିଦେଇ ମୁଁ ତୁମମାନଙ୍କର ସ୍ୱାଭାବିକ ଚିନ୍ତାଶକ୍ତିକୁ କୌଣସି ପ୍ରକାରେ କୁଣ୍ଠିତ କରି ପକାଇବାକୁ ଇଚ୍ଛା କରୁନଥିଲି ।··· ··· ଏକଥା ତୁମେଦୁହେଁ ବିଶ୍ୱାସ କରିପାର ବା ନକରିପାର, ତଥାପି, ବର୍ତ୍ତମାନ ତୁମେ ଦୁହେଁ, ତୁମର ଯାହାକିଛି କହିବାର ଅଛି, ମୋପାଖରେ କହିଦିଅ । ପୁଣି, ମୋତେ କିଛି ପଚାରିବାର ଅଛି ତ ପଚାର । ମୁଁ ସବୁ ପ୍ରଶ୍ନର ଉତ୍ତର ଦେବି, ମୁଁ ଏପର୍ଯ୍ୟନ୍ତ ଯେଉଁଟିଲାଗି ଅପେକ୍ଷା କରିଥିଲି, ତୁମ ଦୁହିଁଙ୍କର ବର୍ତ୍ତମାନ ସେହି ବୟସ ହୋଇଗଲାଣି ।"

କହି ସେ ମାଧବୀକୁ ତା'ପରେ କ'ଣ ହେଲା କହିବାକୁ କହିଲେ ।

ମାଧବୀ କହିଲା, "ଆପଣ ସେପରି କୌଣସି କଥା ଆମକୁ କହିନଥିଲେ । ତଥାପି, ବାହାର ସଂସାରରୁ ମୁଁ ଯେଉଁସବୁ ବିବରଣ ସଂଗ୍ରହ କରିଥିଲି, ସେଇଟି ଫଳରେ ଓ ମାଆର ବାତ୍ସଲ୍ୟକୁ ହରାଇ ବସିବା ଫଳରେ ମୋ'ର ସେହି ପିଲାମନଟିରେ ମାଆପ୍ରତି ଗୋଟିଏ ପ୍ରକାରର ଘୃଣା ଓ ଆକ୍ରୋଶ ଜାତ ହୋଇଥିଲା । ସେହି ଘୃଣା ଓ ରାଗ କେତେବେଳେ ପଦାକୁ ଫୁଟି ବାହାରି ପଡ଼ିବ, ମୁଁ ସେହି ଅବସରର ପ୍ରତୀକ୍ଷାରେ ରହିଥିଲି । ସେତିକବେଳେ ଦିନେ, ଯେତେବେଳେ ମୁଁ ହାଇସ୍କୁଲ୍ ପରୀକ୍ଷା ସକାଶେ ପଢ଼ାପଢ଼ି କରୁଥିଲି, କାଳାପିନୀ ଓ ମୁଁ ସ୍କୁଲରୁ ବାହାରି ମୋଟେ ଖଣ୍ଡେଦୂର ଯାଇଛୁ କି ନାହିଁ, ଗୋଟାଏ ବଡ଼ ମୋଟରଗାଡ଼ି ଆସି ଆମ ପାଖରେ ଠିଆ ହୋଇଗଲା । ଗାଡ଼ିରୁ ଓହ୍ଲାଇ ମୋ' ପାଖକୁ ଆସି "ଆଲେ ଝିଅ···ମାଧବୀ·· ମତେ ତୁ ଚିହ୍ନିପାରୁଛୁ ?"

ବୋଲି କହି ମୋତେ ପଗ୍ଭରୁଥିବା ସେହି ସ୍ତ୍ରୀଲୋକଟିକୁ ମୁଁ ମୁଣ୍ଡ ଟେକି ଦେଖିଲି । ମୋ'ର ହୃଦୟ ବେଦନାରେ ଟଳମଳ ହେଉଥିଲା । ଗାଡ଼ି ଭିତରୁ ଜଣେ ପୁରୁଷବ୍ୟକ୍ତି ମୋ'ର ଆଡ଼କୁ ଚ୍ୱହିଁ ରହିଥିଲେ । ହଠାତ୍ ମୋ' ଓଠ୍ ଆଗରୁ ଯେପରି ଏକ ଅଜ୍ଞାତ ଉନ୍ମତ୍ତତା ପଦାକୁ ବାହାରି ଆସିଲା । ମୁଁ 'ନାଇଁ' ବୋଲି କହିଦେଲି ଏବଂ ବିଳାସିନୀ ମୋ' ସାଙ୍ଗରେ ଗ୍ଭଲୁଥିଲା କି ନାହିଁ ସେକଥା ମଧ୍ୟ ନଦେଖି ସଡ଼କରୁ ବୁଲିପଡ଼ି ଗୋଟାଏ ଗଳିଭିତରେ ପଶିଗଲି ଏବଂ ଶୀଘ୍ର ଶୀଘ୍ର ଧାଇଁଆସି ଘରେ ପହଞ୍ଚିଲି ।''

ଟିକିଏ ଅଟକି ମାଧବୀ ଲୁହ ପୋଛିଦେଲା—ଏକଥା ଅନନ୍ତନ୍ ନାୟର୍‌ଙ୍କର ଆଖିରେ ପଡ଼ିଲା ।

ଇଏ ତ କେଡ଼େ ସାଧାସିଧା ହୋଇ ମୋ' ଆଗରେ ଯାଉଥିଲା ଆସୁଥିଲା— ତା'ର ଏପରି ଗୋଟିଏ ମୁଖମଧ୍ୟ ରହିଛି । ଅନନ୍ତନ୍ ନାୟର୍‌ଙ୍କର ବିଶ୍ୱାସ ହେଉନଥିଲା ।

''ଛିଃ, ମୋତେ ସେତେବେଳେ ତ ତୁ ଏକଥା କହି ନଥିଲୁ ।''

ମାଧବୀ ଧୀରେ ଧୀରେ ହସିଲା ।

''ଖାଲି ଏତିକି ନୁହେଁ... ବର୍ତ୍ତମାନ ଆପଣ ଯାହା କରିବାକୁ ଯାଉଛନ୍ତି, ମୁଁ ସେ କଥାଟି ମଧ୍ୟ ଏଥିପୂର୍ବରୁ ଆପଣଙ୍କୁ କେବେହେଲେ କହିନାହିଁ । ଜାଣି କରି ମୁଁ କହିନାହିଁ... । ମୁଁ ବୟସରେ ନିତାନ୍ତ ସାନ ଥିଲି, ତଥାପି ମୋତେ ଏକଥାଟି ଖୁବ ଭଲଭାବରେ ମାଲୁମ ଥିଲା ଯେ ଆପଣ ପ୍ରତି ମୁହୂର୍ତ୍ତରେ ସତେ ଯେପରି ଏକ ମାନସିକ ବେଦନାର ଜ୍ୱାଳାରେ ଦହିହେବାରେ ଲାଗିଥିଲେ ।''

ଏକଥା ଶୁଣି ବିସ୍ମୟ ହେତୁ ତାଙ୍କ ମୁହଁରୁ ଆଉ କୌଣସି ଶବ୍ଦ ହିଁ ବାହାରିଲା ନାହିଁ । ସେ ଆଗରୁ ଯେପରି ଭାବି ନେଇଥିଲେ,—ସମ୍ଭବତଃ ତାଙ୍କର ଜୀବନ କଦାପି ସେପରି ବୃଥା ହୋଇ କଟି ଯାଇନାହିଁ ।

ଅନନ୍ତନ୍ ନାୟର୍ ଦେଖିଲେ । ବାହାରୁ ଉଡ଼ି ଉଡ଼ି ବଜୁଲି ଆଲୁଅଟି ଆଡ଼କୁ ପତଙ୍ଗଟିଏ ଆସିଲା, ଦୁଇ ତିନଥର ଆଲୁଅଟିର ଚ୍ୱରିପାଖରେ ଉଡ଼ି ଆଲୁଅର କାଚଟିରେ ଆସି ଧକ୍କା ବାଜିଲା ଓ ତା'ପରେ ତଳେ ଯାଇ ପଡ଼ିଗଲା । ପ୍ରଭାକରନ୍ ଉଠିଯାଇ ତାକୁ ଗୋଡ଼ରେ ବାହାରକୁ ଫୋପାଡ଼ିଦେଲା ଓ ତା'ପରେ ନିଜ ଜାଗାଟିରେ ଆସି ବସିଲା ।

କିଛିସମୟ ମୌନ ରହି ମାଧବୀ ପୁନର୍ବାର ଆରମ୍ଭ କଲା, ''ତା'ଆରଦିନ ମୋତେ ସ୍କୁଲରେ ଦେଖି ବିଳାସିନୀ କହିଲା, 'ଆଲୋ, କାଲି ତୋ'ର ମାଆ ମୋତେ ସବୁଯାକ କଥା କହିଲେ ଓ କେତେ ଦୁଃଖ କଲେ...ତାଙ୍କୁ ସେପରି ଭାବରେ ଉପେକ୍ଷା

କରିଦେଇ ତୋ'ର ପଳାଇ ଆସିବା ମୋଟେ ଉଚିତ ହେଲନାହିଁ । ଯାହାକିଛି ହୋଇଥାଉ ପଛକେ, ସେଇ ତ ତୋତେ ନଅମାସ ଗର୍ଭରେ ଧରିଛି, ତୋତେ ଜନ୍ମ ଦେଇଛି ଓ ପାଞ୍ଚବର୍ଷ ସକାଶେ ହେଲେ ମଧ୍ୟ ତୋ'ର ପାଳନ କରିଛି !' ସତେଯେପରି କୌଣସି ବୁଢ଼ୀ ଜଣେ ଉପଦେଶ ଦେଉଥିଲା ପରି ସିଏ ସବୁକଥା କହି ଯାଉଥାଏ । ତଥାପି, କାହିଁକି କେଜାଣି, ତା'ଉପରେ ମୋ'ର ଟିକିଏ ହେଲେ ଦୟା ହେଲନାହିଁ । ଯେତେବେଳେ ମୋ'ର ବୟସ ପ୍ରାୟ ଷୋଳବର୍ଷ ହୋଇଥିବ । ମୋ'ର କ'ଣ ହଜିଯାଇଛି,—ସେହି କଥାଟିକୁ ସ୍ପଷ୍ଟ ଭାବରେ ନଜାଣିଥିଲେ ମଧ୍ୟ, ମୋ'ର ଯାହାକିଛି ନଷ୍ଟ ବା କ୍ଷତି ହୋଇଛି, ଏଇ ହେଉଛି ତା'ର କାରଣ,—ମାଆପ୍ରତି ମୋ'ର ଏହିପରି ଏକ ଭାବ ଜାତ ହେଲା ଏବଂ ତା'ପ୍ରତି ଘୃଣା ବି ଆସିଗଲା । ତେଣୁ, ହାଇସ୍କୁଲ ପରେ ମୁଁ ଯେତେବେଳେ ମହିଳା କଲେଜରେ ଯାଇ ନାଆଁ ଲେଖାଇଲି, ସେତେବେଳେ ମଧ୍ୟ ସିଏ ଜବରଦସ୍ତି କରି ମୋ' ପାଖକୁ ଆସିଥିଲା, ମାତ୍ର ମୁଁ ସେହି ପ୍ରଥମଥର ପରି ସବୁଥର ତା' ପ୍ରତି ସେହି ଏକା ବ୍ୟବହାର ଦେଖାଇଥିଲି । ଏହିପରି ଏକ ସ୍ଥିତିରେ ଘରକୁ ଆସିବା ପରେ ବ୍ୟାକୁଳ ହୋଇ ଉଠୁଥିବା ଆପଣାର ହୃଦୟଟିକୁ, ସମସ୍ତଙ୍କ ଲୁଚାଇ ଟିକିଏ କାନ୍ଦିନେବା ଦ୍ୱାରା ଗୋଟାଏ ପ୍ରକାରେ ନିଜକୁ ଦୃଢ଼ କରି ରଖିବାଲାଗି ମୋତେ ଅନେକ କଷ୍ଟ କରିବାକୁ ପଡ଼ୁଛି । ମୋ' ସାଙ୍ଗ ବିଳାସିନୀ ହିଁ ତା'ର ଏକମାତ୍ର ସାକ୍ଷୀ ହୋଇ ରହିଥିଲା··· ।''

ସତେଅବା କ'ଣ ଗୋଟାଏ ହଠାତ୍ ମନେ ପଡ଼ି ଗଲାପରି ମାଧବୀ ମନକୁ ମନ ଚୁପ୍ ହୋଇଗଲା । ବିଚରା···ପିଲାବେଳେ ସେ ଏହି ଘଟଣାଟିରୁ ଅନେକ ଦୁଃଖ ପାଇଛି ବୋଲି ଭାବି ଅନନ୍ତନ୍ ନାୟରଙ୍କୁ ଗୋଟାଏ ପକ୍ଷରେ ଆଶ୍ଚର୍ଯ୍ୟ ଲାଗିଲା, ଆଉ ଗୋଟାଏ ପକ୍ଷରେ ଭାରି ଦୁଃଖ ବି ହେଲା । ଗୋଟାଏ ପ୍ରକାରର ବିରକ୍ତିମୟ ଜୀବନକୁ ଆଦରି ନେଇ ସିଏ ଏସବୁ ବିଷୟଆଡ଼େ ମୋଟେ ଦୃଷ୍ଟି ଦେଇ ପାରି ନଥିଲେ,—ଏଥିଲାଗି ତାଙ୍କ ମନରେ ଭାରି ଦୁଃଖ ହେଲା ।

"ହଁ, ହଁ, ଆଉ ବେଶୀଗୁଡ଼ାଏ ନ ବଢ଼ାଇ ଏଥର ଚଞ୍ଚଳ ଶେଷ କରିବେ' ।'' ପ୍ରଭାକରନ୍‌ର ଏହି କଥାଗୁଡ଼ାକ ବେଶ୍ ପ୍ରକଟ କରି ଦେଉଥିଲା ଯେ ମାଧବୀର ଏହି ପ୍ରବୃତ୍ତିଟିକୁ ସିଏ ଆଦୌ ପସନ୍ଦ କରୁ ନଥିଲା ।

"ଶେଷକୁ, ବିଳାସିନୀ ଆଉ ମୋ' ଭିତରେ ଘନିଷ୍ଠ ବନ୍ଧୁତା ରହିଛି ବୋଲି ଜାଣି କରି ମାଆ କୌଣସି ପ୍ରକାରେ ତା'ର ଘରଟିକୁ ଠାବ କରିନେଲା । ଏବଂ ବିଳାସିନୀକୁ ମାଧ୍ୟମ କରି ମୋ'ର ମନକୁ ବଦଳାଇବାକୁ ଚେଷ୍ଟା କଲା । ମୋତେ ବିଳାସିନୀ କେତେଥର ଆସି କହିଲା,—'ତୁ ଆଉ ବର୍ତ୍ତମାନ ଛୋଟ ପିଲା ହୋଇ ନାହିଁ । ମୁଁ ତା'ର ମୁହଁ ଦେଖିବନାହିଁ—ବୋଲି କହି ପଳାଇବାଟା ଭୀରୁର କାର୍ଯ୍ୟ । ସିଧା ଆଗରେ

ଠିଆ ହୋଇ, ତୋ'ର ଯାହାକିଛି କହିବାକୁ ଥିବ, ତୁ ତାଙ୍କୁ କହିଦେ । ସିଏ କ'ଣ କରିବାକୁ ଚାହୁଁଛନ୍ତି ସେଇଟି ଶୁଣିବାର ଏକ ସୁଯୋଗ ମଧ୍ୟ ତୋତେ ମିଳିପାରିବ'—ଏହିପରି କହି ସିଏ ମୋ' ମନକୁ ବଦଳାଇ ଦେଲି । ଏହିପରି, ମୁଁ ବି.ଏ. ପ୍ରଥମ ବର୍ଷରେ ପଢୁଥିବା ସମୟରେ ମାଆ ସହିତ କଥାବାର୍ତ୍ତା ହେବାର ଯୋଜନାଟିଏ କରାହେବା ପରେ ମୁଁ ଦିନେ କଲେଜରୁ ସିଧା ବିଳାସିନୀଙ୍କ ଘରକୁ ଯାଇଥିଲି । ତାଙ୍କୁ ମୁଁ ନିଜର ସମ୍ମତି ମଧ୍ୟ ଶୁଣାଇ ଦେଇଥିଲି ଯେ ମାଆ ସାଙ୍ଗରେ ସେଠାକୁ ଆଉ ଅନ୍ୟକେହି ଆସିନଥିବେ ।"

ନିଜ କଥାଟିକୁ ଅଧାରୁ ବନ୍ଦ କରି, "ଶୋଷ ହେଲଣି—ଟିକିଏ ପାଣି ପିଇ ଆସେ···" କହି ମାଧବୀ ଘର ଭିତରକୁ ଗଲା । ଅନନ୍ତନ୍ ନାୟର୍‌ଙ୍କ ମନ ଶୂନ୍ୟତା ଭିତରେ ଇତସ୍ତତଃ ହେବାରେ ଲାଗିଥାଏ ।

ପ୍ରଭାକରନ୍‌ର ଧୈର୍ଯ୍ୟଚ୍ୟୁତି ଘଟୁଥିଲା ପରି ମନେ ହେଉଥିଲା—ଏ କଥା ଦେଖି ତାଙ୍କ ମନରେ ବେଶ୍ ଟିକିଏ କୌତୁହଳ ହେଉଥିଲା ।

କିଛି ସମୟ ପରେ ମାଧବୀ ପୁଣି ଆସି ଆପଣାର ଜାଗାରେ ବସିଲା ।

"ବିଳାସିନୀର କୋଠରୀରେ ମାଆ ମୋଲାଗି ଅପେକ୍ଷା କରୁଥିଲା । ଆମ ଦୁଇଜଣଙ୍କୁ ସେଠାରେ ଏକୁଟିଆ ଛାଡ଼ିଦେଇ ବିଳାସିନୀ ଘର ଭିତରକୁ ଚାଲିଗଲା ।"

କିଞ୍ଚିତ୍ ଭାବାବିଷ୍ଟ ହୋଇଗଲା ପରି ମାଧବୀ ସତେଅବା କିଛି କହି ନପାରି ଚୁପ୍ ରହିଲା । ପୁଣି କହିବାକୁ ଲାଗିଲା," ନିଜର ସବୁ ଶକ୍ତିକୁ ଏକାଠି କରି ମୁଁ ମାଆ ଆଡ଼କୁ ଅନାଇଲି । ତା'ର ଆଖିଦୁଇଟା ଛଳ ଛଳ ହୋଇ ଆସୁଥା'ନ୍ତି । ମୁଁ ଅନୁଭବ କରୁଥାଏ ସତେ ଯେପରି ମୋ' ପରୀକ୍ଷାର ସମୟଟି ଏଥର ଆରମ୍ଭ ହୋଇଗଲା । ମୋତେ ବି କାନ୍ଦ ମାଡ଼ିଲା । କିନ୍ତୁ ତା'ର ଲୁହ ଆଗରେ ମୁଁ ବି ଯଦି ଲୁହ ଗଡ଼ାଇବାରେ ଲାଗିଥାନ୍ତି, ତେବେ ତା'ର ଅର୍ଥ ହୋଇଥାନ୍ତା ଯେ ମୁଁ ତା'ର ଅଶ୍ରୁଗୁଡ଼ାକର ଗୋଲାମ ହିଁ ହୋଇ ପଡ଼ିଲି । ସେଥିଲାଗି ଦାନ୍ତକୁ ଚପି ମୁଁ ମୋ' କାନ୍ଦକୁ ନିଜର ଭିତରେ ହିଁ ଦବାଇ ରଖିଲି ଓ ମନଟାକୁ ଟାଣ କରିନେବାକୁ ଚେଷ୍ଟା କଲି ।"

"ଛିଃ, ମୋ' ଉପରେ ତୁ କାହିଁକି ରାଗିଛୁ କହିଲୁ ? କ'ଣ ମୁଁ ତୋତେ ଛାଡ଼ିକରି ଚାଲିଆସିଲି ବୋଲି ?"—ଏହିପରି ପ୍ରଳାପ କରୁ କରୁ ସିଏ ମୋ'ର ହାତକୁ ଆସି ଧରି ପକାଇଲା । ସେତେବେଳେ ହୃଦୟକୁ ଶକ୍ତ କରି ମୁଁ ହାତକୁ ଝଟ୍‌କରି ନେଇଗଲି ଓ ଠିଆହୋଇ ପଡ଼ିଲି । ତା'ପରେ କଣ୍ଠସ୍ୱରକୁ ଅନେକ ଚେଷ୍ଟାରେ ଭାରି କଡ଼ା

କରି କହିଲି, "ଏପରି ଆଗରେ ବସି କାନ୍ଦିବାଲାଗି କ'ଣ ଆପଣ ମୋତେ ଡାକିଥିଲେ ?" ତା'ପରେ ଯାଇ ସେ କେତେକ ପରିମାଣରେ ଶାନ୍ତ ହୋଇଗଲି ।

"ହୁଁ—ସେଇ ବାପର ଝିଅ ନା ?" ଏପରି ଭାବରେ ବଡ଼ ବଡ଼ କରି ସେ କହିବାକୁ ଲାଗିଲି, "ଝିଅ । ତୁ ମୋ' ଉପରେ ଏତେ ରାଗ କାହିଁକି କରୁଛୁ କହିଲୁ ? ମୁଁ ତୋ'ର କ'ଣ ଲୋକସାନ କଲି ?"

ଆପଣାର ହୃଦୟକୁ ମୁଁ ଆହୁରି ଅଧିକ ଶକ୍ତ କରି କହିଲି,"ଏକଥା ପଚାରିବାକୁ ଆପଣଙ୍କୁ ଲଜ୍ଜା ଲାଗୁନାହିଁ ?"

"ଆରେ, ତୁ କାହୁଁ ଜାଣିବୁ ସେଦିନ ମୁଁ କି ଦଶାରେ ପଡ଼ିଥିଲି !" କହି ସିଏ ଚୁପ୍ ହୋଇଗଲି । ସେତେବେଳେ ମୁଁ କହିଲି, "ମୁଁ ସବୁକଥା ଜାଣିଛି । କିନ୍ତୁ ଆମେ, ଆପଣଙ୍କର ପିଲାମାନେ, ଆପଣଙ୍କର କ'ଣ କ୍ଷତି କରିଥିଲୁ ?"

ସେତିକିବେଳେ ସିଏ ଏକ ଅବୋଧ ପ୍ରଶ୍ନ କରି ବସିଲି, "ତୁ କ'ଣ ଏ କଥା କହିବାକୁ ଇଚ୍ଛା କରୁଛୁ ଯେ ତୋତେ ମଧ୍ୟ ନିଜ ସାଙ୍ଗରେ ନେଇ ନଯାଇ ମୁଁ ଭୁଲ୍ କରି ପକାଇଛି ?" ମୋର ଆତ୍ମସମ୍ମାନ ଲାଗି ଏଇଟି ଏକ କଠୋର ଆହ୍ୱାନ ଥିଲା । ମୁଁ କ୍ରୋଧରେ ଚିତ୍କାର କରି କହିଲି, "ସେପରି ହୋଇଥାନ୍ତା ତ ମୁଁ କୋଉଦିନଠାରୁ ଆତ୍ମହତ୍ୟା କରି ଦେଇଥାନ୍ତି ।" ସେତେବେଳେ, ମୁଁ ଯେଉଁଟିକୁ ବନ୍ଧ ଦେଇ ନିୟନ୍ତ୍ରିତ କରି ରଖିଥିଲି, ସଂସାରକୁ ବୁଝିପାରିବା ଦିନଠାରୁ ସଞ୍ଚିତ ହୋଇ ରହିଥିବା ସେହି ଆକ୍ରୋଶକୁ, ନିଜକୁ ସବୁଯାକ ସଂଯମକୁ ହରାଇ ଅବାଧ ଭାବରେ ଆଣି ତା' ଉପରେ ଅଜାଡ଼ି ଦେବାକୁ ଗୋଟାଏ ପ୍ରବଳ ଆବେଶ ମୋ'ର ମୁଣ୍ଡକୁ ଅଧିକାର କରି ବସିଲା । ଯଦି ବାପା ଆପଣଙ୍କର ପସନ୍ଦ ନ ହେଲେ, ତେବେ ବ୍ୟାଧିରେ ପୀଡ଼ିତ ହେଉଥିବା ତାଙ୍କୁ ଏବଂ ନିଜର ଦୁଇଟିଯାକ ସନ୍ତାନଙ୍କୁ ସେପରି ଭାବରେ ପକାଇଦେଇ ଚାଲିଆସିବା ହିଁ ଯେ ତା'ର ଏକମାତ୍ର ସମାଧାନ ଥିଲା,—ମୁଁ ଏପରି ମୋଟେ ଚିନ୍ତା କରି ପାରୁନାହିଁ । ଆପଣ ଆଜି ସେତିକି କରି ଅଟକି ଯାଇଥିଲେ ମଧ୍ୟ କିଛି ଶାନ୍ତି ବି ମିଳିଥାନ୍ତା । ମାତ୍ର ଆପଣ ଆଉଜଣେ ପର ମଣିଷ ପ୍ରତି ମୁଗ୍ଧ ହୋଇପଡ଼ିଲେ ଏବଂ ତା' ସହିତ ଲୁଚିକରି ପଳାଇ ଯିବାପାଇଁ ଆମ ତିନିଙ୍କୁ 'ଥୂ' କରି ଫୋପାଡ଼ି ଦେଇ ଆସିଲେ । ଆପଣ ଯେତେ ଯାହା କାହାଣୀ ବାହାର କରି କାନ୍ଦିଲୁ ପଛକେ, ଆପଣାର ନୂଆ ଗୃହସ୍ଥର ଆଡ଼ମ୍ବରକୁ ଦେଖାଇ ଜାଲ ପକାନ୍ତୁ ପଛକେ, ମୁଁ ତଥାପି ନିଜର ବାପାଙ୍କ ପକ୍ଷରେ ହିଁ ରହିବି । ମୁଁ କେବଳ ଆପଣଙ୍କର ଏକ ଝିଅ ଅଛି, ଆପଣ ଏକଥା ଭୁଲି ଯାଆନ୍ତୁ ।" ଏହିପରି ମୁଁ ଅନେକ କିଛି କହି ପକାଇଲି ।

ବାଳାସିମା ଆସି ମୋତେ ବନ୍ଧ କରାଇଲା, ମୁଁ ତେବେଯାଇ ବନ୍ଧ ହେଲି । ମୁଁ ସେତେବେଳେ ଝାଳରେ ଗୋଟାସୁଦ୍ଧା ଗାଧୋଇ ପଡ଼ିଥିଲି । ମୋ'ର ହାତଗୋଡ଼ କମ୍ପିବାରେ ଲାଗିଥିଲା । ବଡ଼ ଅପମାନିତ ବୋଧ କରି ବାଳାସିମାଙ୍କୁ ମଧ୍ୟ ନ କହି ମାଆ ମଟରରେ ବସି ବାହାରି ଗ୍ଭଲିଗଲା ଏବଂ ତାଙ୍କୁ ଦେଖି ମୋ' ଭିତରେ ସେପର୍ଯ୍ୟନ୍ତ ଅଟକି ରହିଥିବା କାନ୍ଦଟା କଇଁ କଇଁ ହୋଇ ବାହାରି ଆସିଲା । ମୁଁ ଚୁପ୍ କରି ବସି କାନ୍ଦିବାରେ ଲାଗିଲି । ବାଳାସିମା ଦୋଷାରୋପଣ କରିବାକୁ ଲାଗିଲା ଯେ ମୁଁ ପ୍ରକୃତରେ ସୀମା ବାହାରକୁ ଗ୍ଭଲି ଯାଇଥିଲି । ସେ କଥା ଶୁଣି ମୋର ହୃଦୟ ଆହୁରି ଝଣ୍ଡ ଖଣ୍ଡ ହୋଇଗଲା ପରି ଲାଗିଲା । ଏହି ସମୟରେ ସେଠି ଧର୍ମପାଳନ୍ ମଧ୍ୟ ଆସି ପହଞ୍ଚିଗଲେ । ମୁଁ ତାଙ୍କୁ ସେତିକବେଳେ ପ୍ରଥମଥର ପାଇଁ ଦେଖିଲି ।"

"ମୋତେ କ୍ଷମା କରିବେ । ଆପଣ କଦାପି ଭାବନ୍ତୁ ନାହିଁ ଯେ ଅନାବଶ୍ୟକ ଭାବରେ ମୁଁ ଏପରି ଆସି ଆପଣଙ୍କ ପାରିବାରିକ ବିଷୟରେ ଅନଧିକାର ଚର୍ଚ୍ଚା କରି ବସୁଛି । ଆପଣ ନିଜ ମାଆଙ୍କ ଆଗରେ ଯାହାସବୁ କହିଲେ, ସେଇଟିକୁ ମୁଁ ମଧ୍ୟ ଅଧାଅଧି ଶୁଣିବାକୁ ପାଇଛି । ଆପଣଙ୍କର ମନର ଅବସ୍ଥା ଦୃଷ୍ଟିରୁ ଆପଣ କହିଥିବା କଥା ଉପରେ ବିଗ୍ଭର କରାଯିବ ତ ମୁଁ ଆପଣଙ୍କର କଥାରେ ଆଦୌ କୌଣସି ଦୋଷ ଦେଖି ପାରୁନାହିଁ । ତାଙ୍କ ସହିତ କଥାବାର୍ତ୍ତା କରିବା ସମୟରେ ଆପଣଙ୍କର ଯେଉଁ ବିବେକ ସ୍ନେହବନ୍ଧନର ସକଳ ଭାବନାକୁ ପରାସ୍ତ କରି ଉପରକୁ ବ୍ୟକ୍ତ ହୋଇ ଆସୁଥିଲା, ସେହି ନୈତିକ ଆଲୋକଟିର ସମ୍ମୁଖରେ ମୁଁ ମସ୍ତକ ନତ କରୁଛି ।" ସିଏ ଆସି ଏତିକି କହିବାପରେ ଯାଇ ମୋର ମନ ଶାନ୍ତ ହେଲା ।

# ଅଣଚାଳିଶି

ସତେ ଅବା ବର୍ଷା ଝଡ଼ ଲଗିଥିଲା, ବର୍ତ୍ତମାନ ଶାନ୍ତ ହୋଇଗଲା—ଏହିପରି ଏକ ସ୍ଥିତି । ବାହାରେ ଝିଙ୍କାରିଙ୍କର ଶବ୍ଦ ଆଉ ଦୂରରୁ ରହି ରହି ମଝିରେ ମଝିରେ ବେଙ୍ଗମାନଙ୍କର ସଙ୍ଗୀତ ବେଶ୍ ଶୁଣିବାକୁ ମିଳୁଛି ।

ଅନନ୍ତନ୍ ନାୟର୍‌ଙ୍କର ମନ ଛଟପଟ ହୋଇ ଉଠିଲା । ଇଏ ମାଧବୀ କି କେଉଁଭଳି କଥା କହିଦେଇ ଆସିଲା । ମୁଁ ନିଜେ କାତ୍ୟାୟନୀକୁ ଯେଉଁସବୁ କଥା ପଚାରିଥାନ୍ତି, ପଚାରିବାର ଇଚ୍ଛା ଥାଇ ମଧ୍ୟ ମୁଁ ଯାହା ପଚାରିପାରି ନଥିଲି, ମୋ' ପକ୍ଷରୁ ଏହି ମାଧବୀ ତାକୁ ସେହିସବୁ ପ୍ରଶ୍ନକୁ ପଚାରି ପାରିଲା । ଆରେ ବାହାରେ ମୋ' ସୁନାଝିଅ, ମୁଁ···ମୁଁ ··· କି ଉପାୟରେ ତୋ'ର ଏହି ଉପକାରକୁ ପରିଶୋଧ କରିପାରିବି ?—ଅନନ୍ତନ୍ ନାୟର୍‌ଙ୍କର ମନ ଏହିପରି କହି ଉଠୁଥିଲା ।

ଇଏତ ନିଜର ଝିଅ । ତଥାପି, ଏହାପ୍ରତି ଆପଣାର ସ୍ନେହ ଆପଣାର ଅସୀମ କୃତଜ୍ଞତାକୁ ଆଉ କିପରି ପ୍ରକଟ କରିଯାଇ ପାରନ୍ତା ? ଅନନ୍ତନ୍ ନାୟର୍‌ଙ୍କ ପ୍ରଥମ ଥର ସକାଶେ ନିଜ ଝିଅର ବୟସ ସତେଅବା ବାଧକ ପରି ମନେହେଲା, ଯଦି ଇଏ ସାନ ଝିଅଟିଏ ହୋଇଥାନ୍ତା, ତେବେ ମୁଁ ବର୍ତ୍ତମାନ···ହୁଁ···ବାପଝିଅ ହେଲେ କ'ଣ ହେଲା, ବୟସ ପ୍ରକୃତରେ ଏକ ବଡ଼ ପ୍ରତିବନ୍ଧକ ପରି କାମ କରୁଛି ·· ।

ପଡ଼ିଶାରୁ କାହା ଘରୁ ଘଣ୍ଟାରେ ବାରଟା ବାଜୁଥିବାର ଶୁଣାଗଲା । ସତେଅବା କୌଣସି ବିଭ୍ରମ ଭିତରୁ ମୁକୁଳି ଆସିଲା ପରି ସେ ହଠାତ୍ କହି ପକାଇଲେ, "ହିଁ । ତୁ କହୁଥିଲୁ, ଆଉଥରେ କି ତୁ ଧର୍ମପାଳନ୍‌ଙ୍କ ଘରକୁ ଯାଇଥିଲୁ । ସେଇଟି ବିଷୟରେ ମଧ୍ୟ ଖୋଲି କରି କହି ଦେ' ଝିଅ !"

ମାଧବୀ କହିଲା, ଯେତେବେଳେ ମୁଁ ଦ୍ୱିତୀୟଥର ଲଗି ସେଠାକୁ ଯାଇଥିଲି, ସେହିଥର ହିଁ ବିଳାସିନୀ ସହିତ ମୋ'ର ଶେଷ ଦେଖା ହୋଇଥିଲା ।"

"କ'ଣ ହେଲା··· ?" ପ୍ରଭାକରନ୍ କହିଉଠିଲା ।

"ହିଁ ଭାଇ । ବି.ଏ ଶେଷ ବର୍ଷ ଷାଣ୍ମାସିକ ପରୀକ୍ଷା ପର୍ଯ୍ୟନ୍ତ ବିଳାସିନୀ ଅନ୍ୟମାନଙ୍କ ପରି ଥିଲା । କିନ୍ତୁ ବଡ଼ଦିନ ଛୁଟିପରେ ସିଏ ଭାରି ଝଡ଼ି ଗଲାପରି ଦେଖା-ଯାଉଥିଲା । ତାହାର ଦେହ ଗୋଟାସୁଦ୍ଧା ସେତା ପଡ଼ିଯାଇଥିଲା । ତା'ର ଆଗର ସେହି ସୌନ୍ଦର୍ଯ୍ୟ ଓ ସ୍ଫୂର୍ତ୍ତି କେଜାଣି କାହିଁକି କିଆଡ଼େ ଲୁଚିଗଲା ପରି ଲାଗୁଥିଲା । ସିଏ ଦି'ପହରେ ଆମ ସାଙ୍ଗରେ ଆସି ଏକାଠି ଖାଇବା ମଧ୍ୟ ବନ୍ଦ କରିଦେଲା । ପାଖ

ଦୋକାନକୁ ଯାଇ ଗୋଟାଏ ଲେମ୍ବୁକୁ ଗିଲାସେ ପାଣିରେ ଚପୁଡ଼ି ଦେଇ ବଡ଼ କଷ୍ଟରେ ସେତିକ ପିଇପାରୁଥିଲା । କ୍ଲାସରେ ବସିଥିବା ସମୟରେ, ମୁଣ୍ଡ ବୁଲାଇବା, ଛାତିରେ ଯନ୍ତ୍ରଣା ହେବା ଓ ପେଟ କାଟିବା ପ୍ରଭୃତିରେ ଛଟପଟ ହେବାକୁ ଲାଗିଥିଲା । କ୍ଲାସ୍‌ରୁ ଉଠି ବାହାରକୁ ଚାଲିଯାଉଥିଲା ଓ ଯାହାକିଛି ପାଣି ପିଇଥିଲା, ତାକୁ ଅ' ଅ' କରି ବାହାର କରି ଆଣୁଥିଲା । ତା' ମୁହଁରୁ ଝାଳ ବୋହି ଯାଉଥିଲା । ଏକଥା ନିତେ ନିତିଦିନର ଏକ ଘଟଣା ହୋଇଗଲା । ଏସବୁର ରହସ୍ୟ କ'ଣ ଥିଲା କେଜାଣି ? କଲେଜରେ କେତେ ଲୋକ କେତେପ୍ରକାର କଥା କହୁଥିଲେ । ଏହିପରି ଦିନେ ତା'ର ଭାଇଙ୍କ ସହିତ ରାସ୍ତାରେ ଦେଖାହେଲା । ସିଏ ଭାରି ଚିନ୍ତିତ ଓ ଉଦାସୀନ ଦେଖାଯାଉଥିଲେ । ତାଙ୍କୁ ମୁଁ ବିଳାସିନୀର କଥା ପଚାରିବାରୁ ତାଙ୍କର ଆଖି ଛଳଛଳ ହୋଇ ଆସିଲା । କୌଣସି ଉତ୍ତର ଦେଲେ-ନାହିଁ । ମୁଁ ଆଉଥରେ ଜୋର୍ ଦେଇ ପଚାରିଲି । ସେତେବେଳେ ଯାଇ ସେ ଉତ୍ତର ଦେଲେ, 'ବର୍ତ୍ତମାନ ପର୍ଯ୍ୟନ୍ତ ତାକୁ ମଧ୍ୟ ଆମେ ଏକଥା କହିନାହୁଁ । ଆପଣ କେବେହେଲେ ତାକୁ ଏକଥା କହିବେ ନାହିଁ । ତାକୁ କ୍ୟାନ୍‌ସର୍ ହୋଇଛି । ଏଠି ତ ଓ୍ୱାଣଅର୍‌ଙ୍କଠାରୁ ବଳି ବଡ଼ ଡାକ୍ତର ଆଉ କେହି ନାହାନ୍ତି । ସେ ଚିକିତ୍ସା କରୁଛନ୍ତି । କିନ୍ତୁ ରୋଗର ଉପଶମ ହୋଇନାହିଁ । ବର୍ତ୍ତମାନ ଡାକ୍ତର କହୁଛନ୍ତି ଯେ ଭେଲୋର୍ ନେଇ ଅପରେଶନ୍ କରାଇବାକୁ ପଡ଼ିବ । ଅପରେଶନ୍ ହେଲେ ଯେ ତା'ର ଜୀବନରକ୍ଷା ହୋଇପିବ, ସେଥିରେ କୌଣସି ନିଶ୍ଚିତତା ନାହିଁ । ମୋ'ର ଏହି ଯନ୍ତ୍ରବତ୍ ଜୀବନରେ ଘର ଓ ବନ୍ଧନ ବୋଲି ଯଦି କିଛିଥାଏ, ତାହା ହେଉଛି ଏକା ସେହି ବିଳାସିନୀ .. ।" ଧର୍ମପାଳନ୍‌ଙ୍କର ଏହି କଥାଗୁଡ଼ିକ ଶୁଣି ମୋ'ର ହୃଦସ୍ପନ୍ଦନ କ'ଣ ହୋଇ ଉଠିଲା ।"

ମାଧବୀର କଣ୍ଠସ୍ୱର ଥରଥର ହୋଇ ଆସିଲା ଓ ସେ ଚୁପ୍ ହୋଇଗଲା । ଅନନ୍ତନ୍ ନାୟର୍ ଜାଣିପାରିଲେ, ସିଏ ବର୍ତ୍ତମାନ ଆପଣାର ବ୍ୟଥାକୁ ଭୁଲିଯାଇ ବିଳାସିନୀ ସକାଶେ ହିଁ କାନ୍ଦୁଛି ।

"ଏତେ ବେମାରି ଭିତରେ ବି ବିଳାସିନୀ ଦୃଢ଼ତାର ସହିତ କହିଦେଲା ଯେ 'ଯେକୌଣସି ପ୍ରକାରେ ଏହି ପରୀକ୍ଷାରେ ପାସ୍‌କରି ରୋଲ୍‌ନମ୍ବରଟିକୁ ଆଗ ଦେଖିବାକୁ ପଡ଼ିବ, ତା'ପରେ ଯାଇ ହୁଏତ ମୁଁ କୁଆଡ଼େ ଯାଇପାରିବି, ତା' ପୂର୍ବରୁ କଦାପି ନୁହେଁ ।' ହଁ, ସିଏ ଯେଉଁ କୋଠରୀରେ ବସି ପରୀକ୍ଷା ଦେଲା, ସେହି କୋଠରୀରେ ମୁଁ ବି ପରୀକ୍ଷା ଦେଲି । ବର୍ତ୍ତମାନ ମଧ୍ୟ ମନେପଡ଼ୁଛି, ସତେ ଯେପରି କାଲି ସବୁକିଛି ଘଟିଯାଇଛି । କଲେଜର ଅଧ୍ୟାପିକାମାନଙ୍କୁ ଏବଂ ପ୍ରିନ୍‌ସିପାଲ୍‌ଙ୍କୁ ମଧ୍ୟ ଏକଥା ଜଣାଥିଲା ଯେ ପାଠପଢ଼ାରେ ତାକୁ କେହି ଟପିକରି କଦାପି ଆଗକୁ ଯାଇପାରିବେ ନାହିଁ । ମାତ୍ର ତା'ର ଏପରି ଦୁରାବସ୍ଥା ଆସି ହେଲା ଯେ ବସିକରି ମଧ୍ୟ ପଢ଼ି ପାରୁନଥାଏ । ଏତେସବୁ ଅସୁବିଧା ଭିତରେ କ୍ଲାସ୍‌ରେ ଯେତିକ ପଢ଼ା ଶୁଣୁଥିଲା, କେବଳ ସେତିକମାତ୍ର ତା'ର

ପୂର୍ଣ୍ଣ ହୋଇ ରହୁଥିଲା । ଉପର କର୍ତ୍ତୃପକ୍ଷଙ୍କର ଅନୁମତି ନେଇ ପ୍ରିନ୍‌ସିପାଲ୍ ବ୍ଲାସିମ୍ନା ପାଇଁ କେତୋଟି ବିଶେଷ ସୁବିଧା କରାଇ ନେଇଥିଲେ । ତାକୁ ଗୋଟିଏ ପୁରା ବେଞ୍ଚ୍ ଆଉ ପୁରା ଡେସ୍କ୍ ମିଳିଥିଲା । ପରୀକ୍ଷା ଆରମ୍ଭ ହେବାର ଘଣ୍ଟାଟି ବାଜିବା ମାତ୍ରକେ ଧର୍ମପାଲନ୍ ତାକୁ ଗୋଟିଏ ଟ୍ୟାକ୍‌ସିରେ ଆଣି ଛାଡ଼ିଦେଇ ଯାଆନ୍ତି, ଗୋଟିଏ ଥର୍ମସ୍‌ରେ ଲେମ୍ବୁପାଣି ଭର୍ତ୍ତିକରି ତା'ପାଖରେ ରଖିଦିଅନ୍ତି ଓ ବାହାରକୁ ଯାଇ ଠିଆହୋଇ ରହନ୍ତି । ବ୍ଲାସିମ୍ନା ଦଶମିନିଟ୍ ପର୍ଯ୍ୟନ୍ତ ପରୀକ୍ଷାରେ ଉତ୍ତର ଲେଖେ, ତା'ପରେ ତା'ମୁହଁରୁ ଝାଳ ବୋହିବାକୁ ଆରମ୍ଭ କରେ, ହାତଗୋଡ଼ ଢିଲା ହୋଇଗଲାପରି ଲାଗେ, ସେ ସେଇଠି ସେଇ ବେଞ୍ଚ୍ ଉପରେ ଲମ୍ବ ହୋଇ ଶୋଇପଡ଼େ । କେତେବେଳେ ଉଠି ଓ୍ବାଶ୍-ବେସିନ୍‌ରେ ଅ' ଅ' କରି ବାନ୍ତି କରିଆସେ । ତା'ପରେ ପୁଣି କେତେ ମିନିଟ୍ ଲେଖେ । ତାହାର ସେହି ଯନ୍ତ୍ରଣାମୟ ଅବସ୍ଥାକୁ ସ୍ମରଣ କଲେ ବର୍ତ୍ତମାନ ମଧ୍ୟ ମୋ'ର ରୋମ ଟାଙ୍କୁରି ଆସିବାପରି ଲାଗେ ।"

ସେ ଚୁପ୍ ହୋଇଗଲା । ଅନନ୍ତନ୍ ନାୟରଙ୍କର ମନେହେଲା, ମନଟାକୁ ଟିକିଏ ଦୃଢ଼କରି ନେବାପାଇଁ ହିଁ ସିଏ ଏପରି ମୌନ ହୋଇଯାଉଛି ।

"ତା'ପରେ ପୁଣି କ'ଣ, ରେଜଲ୍‌ଟ ଆସିଲା । ବ୍ଲାସିମ୍ନା ପ୍ରଥମ ଶ୍ରେଣୀରେ ପାସ୍ କରିଥିଲା । ଯେତେବେଳେ ମୁଁ ମାର୍କଶୀଟ୍ ଓ ପ୍ରୋଭିଜନାଲ୍ ସାର୍ଟିଫିକେଟ୍ ଆଣିବାକୁ ଯାଇଥିଲି, ସେତେବେଳେ ସେଠାକୁ ଧର୍ମପାଲନ୍ ମଧ୍ୟ ଆସିଥିଲେ । ସବୁ ବିଷୟରେ ବ୍ଲାସିମ୍ନାକୁ ଭଲ ନମ୍ବର ମିଳିଥିଲା । ସେ ମୋତେ କହିଲେ ଯେ ତା' ଆରଦିନ ସେ ଅପରେଶନ୍ ସକାଶେ ବ୍ଲାସିମ୍ନାକୁ ନେଇ ଭେଲୋର୍ ଯାଉଛନ୍ତି । ବ୍ଲାସିମ୍ନାକୁ ଦେଖିବାଲାଗି ମୁଁ ତାଙ୍କ ଘରକୁ ଗଲି । ଏହିପରି ଭାବରେ ତାଙ୍କ ଘରକୁ ମୋ'ର ଦ୍ୱିତୀୟଥର ପାଇଁ ଯିବା ସମ୍ଭବ ହେଲା ।

ମାଧବୀ ଏତିକ କହି ଥରେ ନିଜର ବାପା ଓ ଭାଇଙ୍କ ଆଡ଼କୁ ଅନାଇ ଦେଖିଲା, ତା'ପରେ ପୁଣି ମୁଣ୍ଡ ତଳକୁ କରିଦେଲା । ତା'ର ଆଖି ଅଶ୍ରୁପୂର୍ଣ୍ଣ ହୋଇ ରହିଥାଏ । ସେହି ଥରଥର କଣ୍ଠରେ ସେ ପୁଣି କହିବାକୁ ଲାଗିଲା, "ବ୍ଲାସିମ୍ନା ସତେଅବା ମଉଳି ଯାଇଥିବା ଫୁଲମାଳଟିଏ ପରି ପଡ଼ି ରହିଥାଏ । ମୁଁ ସେହିପରି ଠିଆହୋଇ ରହି କିଛି ସମୟ ପାଇଁ ତାକୁ ଅନାଇ ରହିଲି । ମୋ'ଭିତରେ କେଜାଣି କେତେ କ'ଣ ହଜାର ହଜାର ଭାବନା ଆସି ଆନ୍ଦୋଳିତ ହୋଇ ଉଠିଲେ ।"

"...ସ୍କୁଲରେ ପଢ଼ିବା ସମୟରେ, ଶୈଶବର ସେହି ଦିନଗୁଡ଼ିକରେ, ସମସ୍ତଙ୍କ ଠାରୁ ଅଲଗା ହୋଇ ପଡ଼ିଥିବା ମୋ'ର ଜୀବନରେ ସିଏ ସାନ୍ତ୍ୱନା ଦେବାକୁ ଆସିଥିଲା, ଇଏ କ'ଣ ସେଇ ବ୍ଲାସିମ୍ନା ? ମୋର ଆଶା ଆଉ ନିରାଶାର ସମଭାଗିନୀ । ମୋ'ର

ଅନ୍ତର ବାହାର ସବୁ ଏକାକାର ହୋଇ ଯାଇଥିଲା ଏବଂ ସେଥିରେ କେବଳ ସଜ୍ଜନର ରୂପ ପ୍ରତିଭାତ ହେଉଥିଲା ।

× × × ×

ସଜ୍ଜନ ଏହି ସମୟରେ କ୍ଳାନ୍ତ ମନ ଓ ଶରୀର ନେଇ ବୃନ୍ଦାବନର ଏକ ଧର୍ମଶାଳାର ସୁନ୍ଦର ସ୍ଥଳରେ ବସି ରାସ···ଲୀଳା ଦେଖୁଥାଏ । ଗୁଜରାଟ ସେଠ ସେଠାଣୀ ମାନଙ୍କର ଏକ ଭକ୍ତ ମଣ୍ଡଳୀ ତରଫରୁ ଏହି ରାସଲୀଳାର ପ୍ରାଇଭେଟ୍ ଆୟୋଜନ ହୋଇଥିଲା, ତଥାପି ବାହାରର ପ୍ରାୟ ପଚଶ ତିରଣ ଜଣଲୋକ ଥାନ୍ତି । ସଜ୍ଜନ ସେଇ ଧର୍ମଶାଳାର ଗୋଟିଏ କୋଠରୀରେ ରହୁଥାଏ । ବୃନ୍ଦାବନ ଆସିବା ପରେ ଏକ ଗଭୀର ନିରାଶାରେ ସେ ବୁଡ଼ି ଯାଇଥାଏ । ଯେଉଁ ବୃନ୍ଦାବନ ଲୋକଗୀତ ଲୋକନୃତ୍ୟ ଏବଂ ଭାରତୀୟ ସାହିତ୍ୟର ପ୍ରବଳ ପ୍ରେରଣା ଶକ୍ତି ବୋଲି ମାନି ନିଆ ହୋଇଛି, ଯେଉଁଠାରେ ବହୁ ସ୍ଥାନ ଷୋଳକଳା ଧାରୀ ଭଗବାନ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାର ସ୍ମୃତି ବଜାଇ ଏବଂ ପୂଜିତ ସେଠାରେ ସେ ଭଗବାନଙ୍କ ଅସ୍ତିତ୍ୱ ଅନୁଭବ କରିପାରିଲା ନାହିଁ । ମଥୁରାରୁ ପ୍ରଦୀପ ଜାଳି ସେ ଆଗ୍ରହ ସହକାରେ ଯେଉଁ ବୃନ୍ଦାବନ ଦର୍ଶନରେ ଆସିଥିଲା, ସେହି ଶିଖା ଏଠାରେ ଅଧାର୍ମିକତା ଏବଂ ମୋଗଲ ଆଡମ୍ବରର ଦ୍ୱାରରେ ଲିଭି ଲିଭି ଆସୁଥିଲା । ବୃନ୍ଦାବନ ମହାତ୍ମ୍ୟ ଯେ ମୁନାଫାଖୋର ମାନଙ୍କ ଦ୍ୱାରା ପ୍ରସ୍ତୁତ ଏକ ଷଡ଼ଯନ୍ତ୍ର ଏ ବିଷୟରେ ତା'ର ତିଳେମାତ୍ର ସଂଦେହ ରହିଲା ନାହିଁ । ଯଦିଓ ସେଇ ଅମା ଅନ୍ଧକାରରେ ବଜୁଳି ଝଟକିଲା ପରି ଅନେକ ଥର ଭକ୍ତ ଓ ବ୍ରଜଭୂମିର ସବଳ ଦେହ ଓ ସରଳ ମନଥିବା ସାଧାରଣ ଲୋକମାନଙ୍କ ମଧ୍ୟରେ ବୃନ୍ଦାବନ ଚଂଦ୍ରଙ୍କ ରୂପ ଦର୍ଶନ ସେ କରୁଥିଲା । ରାସଲୀଳାର ଅନ୍ବେଷା ଆରମ୍ଭ ହେବା ମାତ୍ରେ ସଜ୍ଜନ ମନ ଭୁଲାଇବା ପାଇଁ ନିଜ କୋଠରୀରୁ ବାହାରି ରାସଲୀଳା ହେଉଥିବା ସ୍ଥାନକୁ ଚାଲି ଆସିଲା ।

ବନ୍ଦନା ଆରତୀ ଶେଷ ହେବାପରେ କୃଷ୍ଣଲୀଳା ଆରମ୍ଭ ହେଲା । କୃଷ୍ଣ 'ଭଗବାନ ନିଜ ବଡ଼ିମା ବଡ଼ ବଡ଼ ଫିଲସଫିରେ ପୁଷ୍ଟ କଥାରେ କହିବାକୁ ଆରମ୍ଭ କଲେ । ସଜ୍ଜନ ଅଳ୍ପ ସମୟରେ ଅସ୍ୱସ୍ତି ବୋଧକଲା, ତା'ର ମନହେଲା ଯେପରି ଶ୍ରୀକୃଷ୍ଣ ଏହି ରାସଲୀଳା ମଣ୍ଡଳୀର ମାଲିକ ଏବଂ ଯେତେ ପଣ୍ଡା ପୂଜାରୀ ମାନଙ୍କର ଲାଭଖୋରୀର ସାଧନ ହୋଇଛନ୍ତି ତଥା ମନ୍ଦିରରେ ବିକି ହେଉଥିବା ପ୍ରସାଦ ନାମରେ ଯେଉଁସବୁ ଆନନ୍ଦକନ୍ଦ, ସଚ୍ଚିଦାନଂଦ ଇତ୍ୟାଦିର ଏଜେଣ୍ଟ ରୂପରେ ମଧ୍ୟ କାମ କରୁଛନ୍ତି । ଏଥିରେ ତାର ମାନସିକ କ୍ଳାନ୍ତି ଆହୁରି ବଢ଼ିଗଲା । ଏ କଣ ଆମର ଧର୍ମର ସ୍ୱରୂପ ? ତେବେ କଣ ଏହି ଧର୍ମ, ଏଇ ଭଗବାନଙ୍କୁ ତା'ର ସ୍ୱର୍ଗୀୟା ମା ତଥା ଭାରତ ବର୍ଷର କୋଟି କୋଟି ଜନତା ଯୁଗ ଯୁଗ ଧରି ମନଭିତରେ ପୂଜିଆସୁଛନ୍ତି ?''

ଏକ ବିଶାଳ ଦେହୀ ପୁରୁଷ ହଳଦିଆ ଓଢ଼ଣା ଟାଣି ଯଶୋଦାଙ୍କ ଅଭିନୟ କରୁଥିଲା, ଫଁଟାକଂସା ସ୍ୱରରେ ଏହି ମାତା ଯଶୋଦା କହିବାକୁ ଲାଗିଲେ—

"ଆଜି ତ ମୋର କଳାକାହ୍ନୁ ଖେଳିବା ପାଇଁ ବନକୁ ଯାଇଛୁ ଏତେ ବେଳ ହେଲା ବୁଆଡ଼େ ଗଲା ?"

ଏଇ ପ୍ରକାର ପ୍ରତୀକ୍ଷାଜନିତ ଚିନ୍ତାରେ ନନ୍ଦରାଣୀ ପଦଚାରଣା କରିବାକୁ ଲାଗିଲେ । ଏହି ସମୟରେ ମୟୂର ଚୂଳ ବାନ୍ଧି ମୁରଲୀଧର ନନ୍ଦନନ୍ଦନ ଆସି ପହଞ୍ଚିଲେ । ତାଙ୍କୁ ଦେଖି ଯଶୋଦା କହିଲେ—

"ଆରେ ଧନ ତୁ ଆସିଗଲୁ, ତୁ ତ ବାବୁ ଏମିତି ହେଲୁଣି ଯେ, ଦିନସାରା ଖେଳିଛଡ଼ା ଆଉ କିଛି ଜାଣିଲୁ ନାହିଁ । କିନ୍ତୁ ବାବୁ ତୁ ଆଉ ବେଶୀ ଦୂରକୁ ଖେଳିବା ପାଇଁ ଯିବୁ ନାହିଁ ।

ଦୂରକୁ ଗଲେ ବଣରେ କାଳେ ବିପଦ ପଡ଼ିବ ।

କୃଷ୍ଣ ଏକଥାରେ ହସି କରି କହିଲେ—ଚାରିଗୋଟି ବେଦଚୋରା କରି ଶଙ୍ଖାସୁର ପାଣିରେ ପଶି ଲୁଚିଥିଲା, ମୀନରୂପ ଧରି ତାକୁ ମାରିଥିଲି, କାହିଁ ବିପତ୍ତି ପଡ଼ି ନଥିଲା ତ ?

ଆରେ ମା—ଦେଖ୍ ଚାରିଗୋଟି ବେଦଧରି ଶଙ୍ଖାସୁର ପାଣିରେ ଯାଇ ଲୁଚିଲା—ସେ ପାଣିରେ କେହିପଶି ପାରିଲେ ନାହିଁ । ତେଣୁ ମୁଁ ତ ପୁଣି ମୀନ ଅବତାର ଧରି ତାକୁ ମାରିଲି । କାହିଁ କୌଣସି ବିପତ୍ତି ମୁଁ ତ ଦେଖିନି ।

ଯଶୋଦା—ଆରେ ଧନ ତେବେ ତୁଇ ଶଂଖାସୁର ବଧକଲୁ ? ମୀନ ଅବତାର ତୁଇ ହୋଇଥିଲୁ ?

କୃଷ୍ଣ—ହଁ ମା, ମୁଁ ସେଇ ।

ଯଶୋଦା –(ଚମକିପଡ଼ି) ତୁଇ ସେ ।

କୃଷ୍ଣ—(ପ୍ରସଙ୍ଗ ପାଲଟି) ଆଲୋ ମା ସେକଥା ନୁହଁ—ଭୁତ ମତେ ସାନ ପିଲା ଭାବୁଚୁ । ଯମୁନା କୂଳରେ ଯେଉଁଠି ସଘନ ବନ, ସେଇଠି ଗାଈ ଚରାଉଛୁ । କାଳୀୟ ନାଗକୁ ଦମନକରି ପାତାଳ ପଠାଉଛୁ । କାହିଁ ବିପତ୍ତି ତ କିଛି ପଡ଼ିନି ?

—ଆଲୋ ମା, ମୁଁ ଯମୁନା ତଟରେ ଗାଈ ବାଛୁରୀ ଚରାଉଛୁ ଏବଂ କାଳୀୟ ନାଗକୁ ଦମନ କରି ପାତାଳକୁ ପଠାଇ ଦେଇଛୁ, ସେଠାରେ ମୁଁ କିଛି ବିପତ୍ତି ଦେଖିନାହିଁ ।"

ଏଭଳି ଭାବରେ ଭଗବାନ ତାଙ୍କର କଚ୍ଛପ, ବରାହ, ନୃସିଂହ, ବାମନ ଅବତାର ସମୟର ଅନୁଭବ ସବୁ ବଖାଣିଲେ.

କହିଲେ—ଆଲୋ ମା ଦେଖ୍, ବଳି ରାଜାଙ୍କୁ ଛଳନା କରିବା ପାଇଁ ବାମନ ରୂପ ଧାରଣ କରିଥିଲି । ତିନି ପାଦ ଜମି ମାଗି ସେଇ ତିନି ପାଦରେ ତ୍ରିଭୁବନକୁ ମାପି

ନେଲ, ସେତେବେଳେ ମା, ମୋର ଗୋଟିଏ ପାଦ ସ୍ୱର୍ଗକୁ ମାପିଲା, ଆଉ ଏକ ପାତାଳ ପୁର ଓ ତୃତୀୟ ପାଦ ମର୍ତ୍ତ୍ୟରେ ରହିଲା ।

ଯଶୋଦା --(ଆଶ୍ଚର୍ଯ୍ୟ ହୋଇ) ଆରେ ଧନ ତୁଇ ବାମନ ଅବତାର ଧାରଣ କରିଥିଲୁ, "ରାଜା ବଳିଙ୍କୁ ଛଳନା କରି ତୁଇ ପାତାଳ ପଠାଇ ଥିଲୁ ?"

କୃଷ୍ଣ—(ପ୍ରସଙ୍ଗ ବଦଳାଇ) ଆରେ ନାହିଁମ ମା ମୁଁ ତ ପିଲାଲୋକ ।

ଯଶୋଦା—ହଁ ସେଇଥିପାଇଁ ତ କହୁଛୁ ତୋ'ର କଣ ବୁଦ୍ଧି ହେଲାଣି ତୁ ଖେଳିବା ପାଇଁ ଆରମ୍ଭ କଲେ ତ ଛୁଟି ନାହିଁ ।

ସଜ୍ଜନ ମୁଗ୍ଧ ହୋଇ ଶୁଣୁଥିଲା, ପ୍ରଥମ ଲୀଳାର ପ୍ରଚ୍ଛଦ ଏଜେଣ୍ଟ ଶ୍ରୀକୃଷ୍ଣ ଏହି ଦ୍ୱିତୀୟ ଲୀଳାର ରଚୟିତାଙ୍କ ଲେଖାରେ ସାଧାରଣ ମଣିଷ ହିସାବରେ ପ୍ରକଟ ହୋଇଥିଲା । ଏଇ ମନୁଷ୍ୟ ରୂପୀ ଭଗବାନ ପୃଥିବୀରେ ଆଦିମ କାଳରୁ ନିଜ ଶକ୍ତିର ଇତିହାସ ତିଆରି କରିଛନ୍ତି, କିନ୍ତୁ ସେଥିରେ କୌଣସି ଅହଂକାର ନାହିଁ । ସେ କ୍ରମଶଃ ବିକଶିତ୍ ହେଉଥିଲେ ମଧ୍ୟ ତାଙ୍କର ମା— ପୃଥିବୀ ମା - ତାଙ୍କୁ ଏବେ ସୁଦ୍ଧା ପିଲା ହିସାବରେ ସେ ଦେଖି ଆସିଛୁ । ସରଳ ସ୍ନେହମୟୀ ମା କେବେହେଲେ ବିଶ୍ୱାସ କରି ପାରୁନି ଯେ ତା'ର ପୁଅ ଏଭଳି ପରାକ୍ରମ ଶାଳୀ ଘଟଣାର ନାୟକ । ମା ପାଇଁ ପୁଅ ପୁଅ ହୋଇ ସର୍ବଦା ରହିବ ।

ନିଜ ମା'ର କଥା ମନେ ପକାଇ ସଜ୍ଜନର ଆଖି ଛଳଛଳ ହୋଇଗଲା, ତା'ର ମନେହେଲା ସେଠାରେ ଥିବା ସବୁ ଦର୍ଶକ ବୃନ୍ଦଙ୍କ ମନ ତା'ପରି ଆନନ୍ଦ ପାଉଛି । ଏହି କୃଷ୍ଣଙ୍କୁ ନିଜ ବୁକୁରେ ମଣିଷ ଭଲ ଭାବରେ ଜାଣିଛି । ସର୍ବଶକ୍ତି ମାନ ଭଗବାନ ଯେପରି ନିଜର ଭକ୍ତମାନଙ୍କୁ ଭୟଶୂନ୍ୟ କରାଉଛନ୍ତି । ମା ଯେତେହେଲେ ମୋହବଶତଃ ତା'ର ପୁଅକୁ ରାକ୍ଷସ ଭୟ ଦେଖାଇଲେ ମଧ୍ୟ ସେ ସ୍ୱୟଂ ନିଜକୁ ଭୟଶୂନ୍ୟ କରି ଆନନ୍ଦରେ ନିମଗ୍ନ ରହିଛନ୍ତି ।

ସଜ୍ଜନ ଭାବିଲା, ଆଜିର ସର୍ବଶକ୍ତି ମାନ୍ ଭଗବାନ ଯିଏକି ସ୍ୱୟଂ ତିଆରି କରିଥିବା ଆଟମ୍, ହାଇଡ୍ରୋଜେନ ବୋମାକୁ ଡରିଛନ୍ତି ସେ ଯେଉଁଦିନ ଏହି ଅସୁର ଭୟରୁ ମୁକ୍ତ ହୋଇଯିବେ ସେହିଦିନ ପୁନର୍ବାର ଏହିପରି ବାଳରୂପ ଧାରଣକରି ନୂଆ ସଂସ୍କୃତିର ନିର୍ମାଣ କରିବେ । କଚ୍ଛପ, ମୀନ, ବରାହ, ନୃସିଂହ ଆଦି ରୂପ ଧାରଣ କରି ବିଘ୍ନରୂପୀ ଅସୁର ମାନଙ୍କୁ ସଂହାର କରି ଯେତେବେଳେ ସେ ମୋହମୟୀ ପୃଥିବୀ ମାତା ଆଗରେ ସହଜ ସରଳ ଭାବରେ ଭୟମୁକ୍ତ ହୋଇ ଠିଆହେବେ ତେବେ କାହାକୁ ଆନନ୍ଦ ନ ଲାଗିବ ?

ଏହି ଭଗବାନଙ୍କ ଉପରେ ବିଶ୍ୱାସ କରିବାକୁ ଅନ୍ତର ଚାହୁଁଛି । ସେହି ଭଗବାନ ଆତ୍ମ ବିଶ୍ୱାସର ପ୍ରତୀକ ଅଟନ୍ତି ।

ସଜ୍ଜନ ଦିନ ଯାକର କ୍ଲାନ୍ତି ତଥା ଅସୁର ଭୟରୁ ମୁକ୍ତି ପାଇ ନୂଆ ଆବେଶ, ନୂଆ ଭାବନାରେ ଲୁପ୍ତ ହୋଇ ଶାନ୍ତିରେ ଶୋଇ ପଡ଼ିଲା, ଥରେ ମଧ୍ୟ କନ୍ୟାର କଥା ତା'ମନରେ ଆସିଲା ନାହିଁ ।

ସକାଳୁ ସଜ୍ଜନ ଯେତେବେଳେ ଗୋଟିଏ ମନ୍ଦିର ପ୍ରାଙ୍ଗଣର ପଥର ଚଟାଣ ଉପରେ ବସି "ଜ୍ଞାନ ଗଣ୍ଡିଲ"ର ଗୋଟିଏ ସ୍କେଚ ଆଙ୍କୁ ଥିଲା ଏବଂ କନ୍ୟା ତାକୁ ସେତେବେଳେ "ନିଧିବନ"ରେ ଖୋଜୁଥିଲା, ଜିଦ କରି କନ୍ୟା ବୃନ୍ଦାବନ ଆସିଥିଲା, ଲାଲ ମୁରଲୀ ମନୋହର ତାକୁ ବହୁତ ବୁଝାଇଥିଲେ ଯେ ବୃନ୍ଦାବନ ଯଦିଓ ଲଣ୍ଡନ, ନ୍ୟୁୟର୍କ, ବମ୍ବେ, କଲିକତା, ଦିଲ୍ଲୀ ଭଳି ବିଶାଳ ନଗର ନୁହେଁ ତେବେସୁଦ୍ଧା ଛୋଟ ଛୋଟ ଗଳି, ରାସ୍ତା ଓ ପ୍ରସିଦ୍ଧ ପୌରାଣିକ ଧାର୍ମିକ ସ୍ଥାନରେ ପୂର୍ଣ୍ଣ । ଏଠି ଅପରିଚିତ ବ୍ୟକ୍ତି କାହାକୁ ଖୋଜିବା ମୁସ୍କିଲ । କିନ୍ତୁ କନ୍ୟା କଥା ଶୁଣିଲା ନାହିଁ ।

କନ୍ୟା ନିଧିବନରେ ଚାରିଆଡ଼େ ଖୋଜି ଖୋଜି ନିରାଶ ହୋଇ ନିଜନିଧି ଆଉ କେଉଁଠି ପାଇବା ମାନସରେ ଫେରିଲା, କିନ୍ତୁ ନିଧିବନରେ ସଜ୍ଜନକୁ ନ ପାଇ ମଧ୍ୟ ତା'ମନ ଅସନ୍ତୁଷ୍ଟ ନଥିଲା, ନିଧିବନ ଏକ ମହାନ ସଙ୍ଗୀତଜ୍ଞ ଯିଏ କି ତାନ୍‌ସେନ୍ ଓ ବୈଜୁବାଓ୍ୱାଙ୍କ ଗୁରୁଥିଲେ ତାଙ୍କର ସାଧନା ପୀଠଥିଲା । ଏହିଠାରେ ଏକ ଯୋଗୀ ସଙ୍ଗୀତ ସାଧନା ଦ୍ୱାରା ପରମ ସନ୍ତୋଷର ନିଧି ପାଇଥିଲେ । କୃଷ୍ଣଙ୍କ ସମୟରେ ଏହି ସ୍ଥାନରେ ପାରିପାର୍ଶ୍ୱିକ ଅବସ୍ଥା ଯେପରି ଥିଲା ବର୍ତ୍ତମାନ ମଧ୍ୟ ନିଧିବନରେ ପହଞ୍ଚିଲେ ସେଇଭଳି ଅନୁଭୂତ ହେବ । ସଘନ କୁଞ୍ଜ, ଲତା, ତଥା ବୃକ୍ଷରାଜି ଦ୍ୱାରା ନିଧିବନ ଶୋଭିତ । କେଉଁଠି ଭଗ୍ନାବଶେଷ କେଉଁଠି ଘନ ବୃଷଟି ଗଛ ମିଶି ସଘନ ମଣ୍ଡପ ପରି ତିଆରି ହୋଇଛନ୍ତି, କେଉଁଠି କଂଟାଗଛ ଅଟକାଇ ଦେଉଛି । ପକ୍ଷୀ କୂଜନ, ବାନର ଦଳର ହୁଆଁ ଡେଇଁ, ହରିଣ ଶିଶୁର କଳରବ—ଏ ସମସ୍ତ ପରିବେଶ କନ୍ୟା ମନରେ ଅପାର ଶାନ୍ତି ଦେଲା ।

ଉଦାସ ହୋଇ ଫେରୁଥିଲା, ଆଗରେ ସ୍ୱାମୀ ହରିଦାସଙ୍କର ସମାଧି ସ୍ଥାନରେ ଆଖିରେ ଚଷମା ପିନ୍ଧି, ଭସ୍ମ ବିଲେପିତ, ଲଣ୍ଡିତ ମସ୍ତକ ବେପରୁଓ୍ୱା ହୋଇ ଜଣେ ସାଧୁ ବେସୁରା କଣ୍ଠରେ ବଡ଼ ଭାବାବେଶରେ ହରିଦାସଙ୍କ ଭଜନ ଗୋଟିଏ କାହାର ରାଗରେ ଗାଉଛନ୍ତି ।

ମାଈରୀ ସହଜ ଜୋରୀ ପ୍ରଗଟଭଈ ଯୋ ରଙ୍ଗକୀ ଗୌରଶ୍ୟାମ ଘନ ଦାମିନୀ ଜୈସେ :—ପ୍ରଥମ ହୂଁ ହୁତି ଅବହୂଁ ଆଗେହୂ ରହେ ହୈନଟରି ହୈ ତୈସେ । ଅଂଗ ଅଙ୍ଗକୀ ଉଜରାଈ ସୁଘରାଈ ଚତୁରାଈ ସୁନ୍ଦରତା ଐସେ ।

ଶ୍ରୀ ହରିଦାସ ସ୍ୱାମୀ ଶ୍ୟାମା କୁଞ୍ଜବିହାରୀ —

କନ୍ୟାର ମନେହେଲା ଯେପରି ଏହି ଭଜନ ଅଦୃଶ୍ୟ ଭାବରେ ଆଶୀର୍ବାଦ ସ୍ୱରୂପକୁ ଶୁଣାଇ ଦିଆଗଲା, ତା'ର ଓ ସଜ୍ଜନର—ସ୍ତ୍ରୀ ଓ ପୁରୁଷର ସହଜ ମିଳନ ଦେଶକାଳରେ ସବୁବେଳେ ଚାଲି ଆସୁଛି । ଏହାହିଁ ଚିରନ୍ତନ ସତ୍ୟ ଏହାର ଶେଷନାହିଁ ।

# ଚବିଶ

"ସ୍ୱାମୀ ସ୍ତ୍ରୀ ଭାବରେ ନାରୀ ଓ ପୁରୁଷଙ୍କର ସହଜ ମିଳନ ଦେଶ କାଳରେ ସବୁବେଳେ ଚାଲିଆସୁଛି, ଏହା ହିଁ ଚିରନ୍ତନ ସତ୍ୟ, ଏହାର ଶେଷ ନାହିଁ ।"

ଯଦିଓ ତା'ର ଓ ଶୀଲାର ମଧୁର ତଥା ମାର୍ମିକ ସମ୍ପର୍କ ମହୀପାଳକୁ ଏଭଳି ଭାବରେ ଘେରି ରହିଥିଲା ଯେପରି ଛବିରେ ଥିବା ଦେବଦେବୀଙ୍କ ମୁଖଶ୍ରୀକୁ ଆଲୋକ ଚକ୍ର ଘେରିଥାଏ, ତଥାପି ସାଧାରଣ ବିଚାର ତଥା ଯୁକ୍ତି ଦୃଷ୍ଟିରୁ ତା'ର ଓ କଲ୍ୟାଣୀର ବୈଧ ସଂପର୍କକୁ ମହାନ୍ ସତ୍ୟ ବୋଲି ମାନିବା ପାଇଁ ସେ ବାଧ୍ୟ ହେଉଥିଲା ଏବଂ ଏଇ ସତ୍ୟ ଉପଲବ୍ଧି ହେବା ଫଳରେ ମହୀପାଳ ଘରୁ ଦୁଇଦିନ ଅନୁପସ୍ଥିତ ରହିବାପରେ କର୍ଣ୍ଣେଲର ଗାଡ଼ୀ ନେଇ ଶୀଲାଘରୁ ନିଜ ଘରକୁ ଫେରି ଯାଉଥିଲା ।

ନିଜ ଶାଳୀର ବିବାହ ଉତ୍ସବରେ ତା'ର ଓ ଶୀଲାର ପ୍ରେମର କଳଙ୍କ କଥା ଦ୍ୱାରା ପତିପତ୍ନୀଙ୍କ ମଧ୍ୟରେ ହୋଇ ଥିବା ମାନସିକ ବିଭେଦ ରୂପୀ ଗଣ୍ଠି ଯାହା ସୃଷ୍ଟି ହୋଇଥିଲା ସେଥିରେ ଗତ ଦୁଇଦିନ ଧରି ମହୀପାଳ ବୁଡ଼ି ଯାଇଥିଲା । ସେ ଓ ଶୀଲା— ସେ ଓ କଲ୍ୟାଣୀ— ମହୀପାଳ ଶୁକ୍ଳ ଆଉ ଦୁଇଟା ବନ୍ଧନରେ ରହି ପାରିବ ନାହିଁ । ଏଭଳି ଦ୍ୱନ୍ଦ୍ୱାତ୍ମକ ଜୀବନରେ ତାର ନିଜସ୍ୱ କୌଣସି ବ୍ୟକ୍ତିତ୍ୱର ପରିପୂର୍ଣ୍ଣ ପ୍ରକାଶ ଘଟିପାରୁ ନାହିଁ ।

ସକାଳୁ— ପ୍ରାୟ ଘଣ୍ଟାଏ ଦେଢ଼ଘଣ୍ଟା ତଳେ— ଯେତେବେଳେ କର୍ଣ୍ଣେଲ ତାକୁ ନେବାପାଇଁ ଶୀଲା ଘରକୁ ଆସି ଥିଲା ସେତେବେଳେ ତା'ର ମନ ତରଳ ଗରମ ମହଣର ସାଗର ପରି କେତେବେଳେ ଜୁଆରିଆ ହେଉଥାଏ ତ କେତେବେଳେ ଭଟ୍ଟାର ରୂପ ନେଉଥାଏ । ସେ ଜାଣିଥିଲା ଯେ ଶୀଲାର ଘର ଛାଡ଼ି ତା'କୁ ତା'ର ଘରକୁ ଯିବାକୁ ପଡ଼ିବ । ବାପଘରୁ ଶାଶୁ ଘରକୁ ଯିବା ସମୟରେ ଝିଅର ମନର ଅବସ୍ଥା ଯାହା ହୋଇଥାଏ ମହୀପାଳର ମାନସିକ ଅବସ୍ଥା ତଦନୁରୂପ ଥିଲା । ସେ ଜାଣୁଥିଲା ଯେ ଯିବା ବ୍ୟତୀତ ଅନ୍ୟଗତି ନାହିଁ । ପତିପତ୍ନୀଙ୍କ ସହଜ ସଂପର୍କ ଦୁନିଆ ଆଗରେ ନିଶ୍ଚିନ୍ତ ରହିବ,

ଏହାହିଁ ସତ୍ୟ, ସଂସ୍କାର ମୁକ୍ତ ଉର୍ଦ୍ଧ୍ୱଚେତା ମଧୁପାଳ ଏ ସତ୍ୟକୁ କପରିବ । ଅସ୍ୱୀକାର କରିପାରିବ ?

ଦୁଇଦିନ ପର୍ଯ୍ୟନ୍ତ ଘରୁ ଚାଲିଯାଇ ବୈରାଗ୍ୟ ତଥା ଅନୁରାଗର ଦୋଳରେ ନିଜର ଅତୃପ୍ତ, ଅବୁଝା ବିଦ୍ରୋହୀ ମନକୁ ଝୁଲାଇ ସାରିବା ପରେ ସେ ବର୍ତ୍ତମାନ କର୍ଣ୍ଣେଲ ସହିତ ଘରକୁ ଫେରୁଥିଲା ଯେପରି ଘରୁ ରୁଷିକରି ପଳାଇଥିବା ବାଳକକୁ ଜବରଦସ୍ତି ଘରକୁ ଧରି ନିଆଯାଏ ।"

ଯିବା ସମୟରେ ଶୀଳା ତାକୁ ଭାବଲେଶ ମ୍ଳାନ ଦୃଷ୍ଟିରେ ଅନାଉଁଥିଲା, ମଧୁ-ପାଳର ମନେହେଲା ଯେପରି ପାହାଡର ସୁଡ଼ଙ୍ଗ ଭିତର ଦେଇ ଲୋତକ ଝରଣା ଦୃଷ୍ଟିର ଅନ୍ତରାଳରେ ବୋହି ଯାଉଛି । ନୀରବତାର ଇସ୍ପାତ ସିନ୍ଦୁକରେ ତା' ମନକୁ ବନ୍ଦ କରି ସେ ଗୁମରି ଉଠୁଥିଲା । ସେ ବାରମ୍ବାର ମନରେ ଭାବୁଥିଲା—ପତିପତ୍ନୀଙ୍କ ସମ୍ପର୍କ ସତ୍ୟ-ଅଟେ, ଚିରନ୍ତନ ଅଟେ, ଅଭେଦ୍ୟ ଅଟେ ।

× × ×

କର୍ଣ୍ଣେଲର ଡାକ୍ତରଖାନାର ପଛପଟେ ଯେଉଁଟା କନ୍ୟାର ଘର ରୂପେ ବ୍ୟବହୃତ ହେଉଥିଲା ସେଠା କଲ୍ୟାଣୀ ତା'ର ସାନପୁଅ ତପୋଧନକୁ ନେଇ ବସିଥିଲା । କର୍ଣ୍ଣେଲ ତାକୁ ସେହି ଯାଗାକୁ ଡ଼କାଇଥିଲା; ଏ ଦୁଇ ଦିନର ପ୍ରତୀକ୍ଷା ଏବଂ ବ୍ୟାକୁଳତା କଲ୍ୟାଣୀକୁ ଦୁର୍ବଳ କରି ଦେଇଥିଲା । ଗଭୀର ବେଦନା ପ୍ରସୁତ ତାର ଗମ୍ଭୀର ଶାନ୍ତ—ଅଶାନ୍ତ ଚେହେରା ଯେପରି ସଦ୍ୟସ୍ନାନ କଲାପରି ଦେଖା ଯାଉଥାଏ । ତପୋଧନ ଚଉକିରେ ବସି ଗୋଡ଼ ହଲାଉଥାଏ ।

ଶାନ୍ତ ଚେହେରା ନେଇ ମଧୁପାଳ ସେ ଘରେ ପ୍ରବେଶ କଲା, କର୍ଣ୍ଣେଲ ତା' ପଛରେ ରହିଥାଏ । କଲ୍ୟାଣୀ ଓ ମଧୁପାଳଙ୍କ ଦୃଷ୍ଟି ଥରେ ବିନିମୟ ହେଲା, ସଙ୍ଗେ ସଙ୍ଗେ ଉଭୟେ ଦୃଷ୍ଟି ଫେରାଇ ନେଲେ । ଉଭୟେ ମୁହୂର୍ତ୍ତକ ମଧ୍ୟରେ ନିଜର ଅଭେଦ୍ୟ-ତାକୁ ନୂଆ ଭାବରେ ଅନୁଭବ କଲେ ମାତ୍ର ମନର ଅବରୋଧ ଥିବାରୁ ଦୃଷ୍ଟି ଫେରାଇ ନେଲେ । କଲ୍ୟାଣୀ ମୁହଁ ତଳକୁ କଲା, ମଧୁପାଳ ମୁହଁ ବୁଲାଇ ତପୋଧନକୁ ଦେଖିଲା ।

ତପୋଧନ ସଙ୍କୁଚିତ ହୋଇ ବସିଥିଲା, ବାପାଙ୍କୁ ତା ଆଡ଼େ ଅନାଉଁବା ଦେଖି ସେ ଆହୁରି ଡରିଗଲା, ବାଘ ମୁହଁରେ ପଡ଼ିଲେ ଭୟରେ ଯେପରି ମଣିଷ ସିଧାସଳଖ ବାଘକୁ ଅନାଇଁ ରହେ, ଭୟଭୀତ ତପୋଧନ ଠିକ୍ ସେହିପରି ନିଷ୍‌ପଲକ ନୟନରେ ବାପ ଆଡ଼େ ଚାହିଁ ରହିଲା । ବାପର ସ୍ନେହ ଏଠି ହାର ମାନିଲା—ମନ ତରଳି ଗଲା, ଆଖିରେ ମମତା ଝଲକି ଉଠିଲା, ପିତା ମଧୁପାଳ ନିଜ ପିଲାଙ୍କ ଉପସ୍ଥିତିରେ ଅନୁରାଗୀ ମଧୁପାଳକୁ କ୍ଷମା କରିବାରେ ଅକ୍ଷମ ହୋଇଗଲା, ହଠାତ୍ ତା' ମନରେ ଆସିଲା—

"ଏମାନେ, ମୋର ସବୁ ପିଲାମାନେ—ଜଣେ ଅନ୍ୟ ସ୍ତ୍ରୀ ସହିତ ମୋର ସମ୍ପର୍କକୁ କେଉଁ ଦୃଷ୍ଟିରେ ଦେଖିବେ ?"

ସେଇ ପୁରୁଣା ପ୍ରଶ୍ନ ପୁଣିଥରେ ନୂଆ ରୂପରେ ତା' ମନକୁ ଘୋଡ଼ିବାକୁ ଲାଗିଲା, ତପୋଧନର ଉପସ୍ଥିତି ତା'କୁ ଲଜ୍ଜିତ କରିଥିଲା, ଧିରେ ଧିରେ ଆଗକୁ ଯାଇ ସେ ତପୁର ରୁକ୍ଷବାଲ ଆଉଁସି କହିଲା—"ଆଜି ସ୍କୁଲ ଯାଇନୁ, ନା ?,' "ବର୍ତ୍ତମାନ ଯିବି ।"

ପୁଅ ମୁଣ୍ଡରେ ସେଭଳି ହାତରଖି ପଚାରି ଆଉକୁ ବୁଝି ପ୍ରଥମ ପ୍ରଶ୍ନକଲା—"ପିଲାଏ କଣ ଆଜି ଉପାସରେ ସ୍କୁଲ କଲେଜ ଯିବେ ? କଲ୍ୟାଣୀ ପ୍ରଥମେ ଚୁପ୍ ହୋଇଗଲା । କଲ୍ୟାଣୀର ପ୍ରାଥମିକ ନିରବତାରେ ମହିପାଲ ଅଧୈର୍ଯ୍ୟ ହୋଇ ପଡ଼ିଲା । ସେ ରାଗିକରି ଆଉ କଣ କହିବାକୁ ଯାଉଥିଲା ସମୟରେ କଲ୍ୟାଣୀ ତାର ଡାହାଣ ଗୋଡ଼ର ମୁହପିଙ୍ଗା ଆଙ୍ଗୁଠିକୁ ସଙ୍କୁଚିତ କରି ତା ଆଡ଼େ ଅନାଇଁ କହିଲା—"ରଞ୍ଜୋ ଏବଂ ଶକୁନ୍ତଳା ରୋଷାଇ କରୁଛନ୍ତି, ତପୁ ସ୍କୁଲ ଘରକୁ, ଆମେ ଟିକେ ଆଗରୁ ଆସିଥିଲୁ ।"

"ହଁରେ ବାବୁ ଚାଲ, ଆମେ ଆସୁଛୁଁ ।"

ଯିବା ପୂର୍ବରୁ ସାତ ବର୍ଷର ବାଳକ ନିଜର ବାପ ମାଆଁକୁ ଦେଖିନେଲା ଯେପରି ନିଜର ଦୃଷ୍ଟି ଦେଇ କହୁଥିଲା 'ମୋ ମାକୁ ଆଉ କଷ୍ଟ ଦେବନାହିଁ ।"

ତପୋଧନ ଯିବାପରେ ସେ ଘରେ ଯେପରି ମୁଖର ନୀରବତା ଆସିଗଲା, କଲ୍ୟାଣୀ ତ ମୂଳରୁ ମୁହଁ ପୋତି ବସିଥିଲା, ମହିପାଳର ମୁଣ୍ଡ ମଧ୍ୟ ତଳକୁ ହୋଇଗଲା, କର୍ଣ୍ଣେଲ ସେ ଦୁହିଁଙ୍କୁ ଚୁପ୍‌ଚାପ ଦେଖୁଥିଲା ଏବଂ ଆଙ୍ଗୁଠି ଦେଇ ନିଜର ତଳ ଓଠକୁ ଖୁଣ୍ଟୁଥିଲା ।

ମହିପାଲ କଥା ଆରମ୍ଭ କଲା—"ଏମାନେ ସବୁ କେବେ ଫେରିବେ ମଥୁରାରୁ ?"

"କାଲି କମ୍ବା ପରଦିନ ସକାଳ ସୁଦ୍ଧା ଚାଲି ଆସିଲେ ବନ୍ଦୋ ତ ମାତ୍ର ଚାରିଦିନ ଛୁଟି ନେଇଛି ।"

ସ୍ୱାପରେ ପୁଣି ନିରବତା, କର୍ଣ୍ଣେଲ ହଠାତ୍ କଲ୍ୟାଣୀକୁ ଅନାଇଁ କହିଲା "ଭାଇଜି ଯାହାଘଟି ଯାଇଛି ସେ କଥା ଭୁଲି ଯାଅ, ତୁମଦୁଇ ଜଣଙ୍କର କଳି କଜିଆ କମ୍ବା ଅଶାନ୍ତିର କଥା ନୁହଁ, ପ୍ରଶ୍ନ ହେଉଛି ବଡ଼ ବଡ଼ ପୁଅ ଝିଅଙ୍କ କଥା । ସେମାନଙ୍କ ଉପରେ ଏହାର ଅଭାବ କିପରି ପଡ଼ିବ ? ଏ କଥା ଭାବି ତୁମକୁ ଗମ୍ଭୀରତା ସହକାରେ ବ୍ୟବହାର କରିବାକୁ ହେବ ।"

"ଆଉ ସ୍ତ୍ରୀ, ଏ ଜନ୍ମରେ କଣ, ଚଉରାଶି ହଜାର ଜନ୍ମରେ ସୁଦ୍ଧା ଏକଥା ସେ ଚିନ୍ତା କରିବେ ନାହିଁ, ମୁଁ ଯୋଉକଥା ମନା କରିବି ସେଇକଥା ଦଶଲକ୍ଷ ଥର କରିବା ହେଉଛି ସ୍ତ୍ରୀଙ୍କର ଜିଦ, ନ ହେଲେ ଗିଗାସୌର ପାଣ୍ଡେଘର ଝିଅର ସମ୍ମାନ ତଳେ ପଡ଼ିବ କିପରି ? ସ୍ତ୍ରୀ ଠାରୁ···"

"ମଦ୍ଦପାଲ ବର୍ତ୍ତମାନ ତୁ ଚୁପ୍ ରହ । ମୁଁ କହୁଛି ଏତେ ବଡ଼ ଲେଖକ" ଚୁଲିକି ଯାଉ ସେ ଲେଖକ । ଶଳା ଲେଖକର ଭଲ କିଛି ସମ୍ମାନ ଅଛି - ଘରେ ମଧ୍ୟ ନାହିଁ । ଯେଉଁଦିନ, ଯେଉଁଦିନ ତା' ହାତରୁ ଶଙ୍ଖା ଓହ୍ଲାଇବ ସେଇଦିନ ଜାଣିବ ଯେ ମୁଁ କିଏଥିଲି । କହି ସେ ଭିତରେ ପ୍ରାୟ ଘୃଣା କଲା ।

କଲ୍ୟାଣୀ ମୁଣ୍ଡ ତଳକୁ ପୋତି ବସିଥିଲା ।

କର୍ଣ୍ଣେଲ ପୁଣିଥରେ କଥା ଆରମ୍ଭ କଲେ, କଲ୍ୟାଣୀକୁ କହିଲେ —"ମଦ୍ଦପାଲ ତୁମ ସହିତ ବହୁତ ଅନ୍ୟାୟ କରିଛି, ଏ କଥା ତା ମୁହଁରେ ମୁଁ କହୁଛି । ତଥାପି ସେ ତୁମକୁ ବହୁତ ଭଲ ପାଏ···ଏକଥା ମଧ୍ୟ ମୁଁ ତା' ସାମ୍ନାରେ ତୁମକୁ କହୁଛି ।"

ଅନୁରାଗୀ ମଦ୍ଦପାଲର ଅପରାଧୀ ମନ ନିଜକୁ ସମର୍ଥନ କରିବାର ବାଟ ପାଇଲା, ଉତ୍ତେଜିତ ହୋଇ କହିଲା—

"ତୁମେ କଣ ବ୍ରହ୍ମା ଆସି କହିଲେ ସୁଦ୍ଧା ଯେ ବିଶ୍ୱାସ କରିବେ ନାହିଁ ଯେ ସ୍ତ୍ରୀଙ୍କୁ ମୁଁ କେତେ ଭଲପାଏ, ଆରେ ସ୍ତ୍ରୀଙ୍କୁ ବୁଝାଇବା ଦରକାର ନାହିଁ । ମୋ ଆଚରଣ ସ୍ତ୍ରୀଙ୍କର ପସନ୍ଦ ନୁହେଁ, ମେ… ପାଟି ତୁଣ୍ଡ ଖାଲି ସ୍ତ୍ରୀଙ୍କୁ ଦେଖାଯାଏ କିନ୍ତୁ ମୁଁ ଯେ ସ୍ତ୍ରୀଙ୍କୁ ଭଲପାଏଁ ଶତ୍ରୁ ଦିଏ ତା'ର କିଛି ମୂଲ୍ୟ ସ୍ତ୍ରୀଙ୍କ ପାଖରେ ନାହିଁ, ଆଉ ମୂଲ୍ୟ ବା ଦେବେ କଣ ସ୍ତ୍ରୀଙ୍କ ଧାରଣା ଯେ ମୋ'ଠି କିଛି ଭଲ ପଣିଆ ନାହିଁ, ସ୍ତ୍ରୀ ଭାବନ୍ତି ଯେ ମୁଁ ସ୍ତ୍ରୀଙ୍କର ଶତ୍ରୁ ।...(ଦାନ୍ତ ରଗଡ଼ାଇ) ନିଷ୍ଠୁର-ମୂର୍ଖ···।

"ମଦ୍ଦପାଲ ।"

"ଏଇ ସ୍ତ୍ରୀ ମୋର ଜୀବନକୁ ନଷ୍ଟ କରି ଦେଇଛି । କେବେହେଲେ ମୋ କଥା ଶୁଣି ନାହିଁ । କେବେ ମୋତେ ବୁଝିବାକୁ ଚେଷ୍ଟା କରିନି ଯେ ଏ ଲୋକଟା ଚାହୁଁଛି କଣ···କହୁଛି କଣ ?"—

"ଆଚ୍ଛା ଏବେ ମୁଁ କହୁଛି ଯେ······"

"କର୍ଣ୍ଣେଲ ମୁଁ ବର୍ତ୍ତମାନ ଉତ୍ତେଜିତ ଅଛି କିନ୍ତୁ ରାଗିନି । ସ୍ତ୍ରୀଙ୍କ ଉପସ୍ଥିତିରେ ମୋ ମନର ସମସ୍ତ କଥା ତୁମ ଆଗରେ କହୁଛି ଏବେ ମୋର ବୟସ ଏକ ଗ୍ଳାନି··· ବୟସ୍କାଳ ହେବାକୁ ଯାଉଛି । ଯୌବନ ଆଉ ନାହିଁ ଯେ କଳି ଝଗଡ଼ା କରି ପର

ମୁହୂର୍ତ୍ତରେ ସବୁ ଭୁଲି ଯିବି । ମୁଁ ଏବେ କ୍ଳାନ୍ତ ମୋର ମଧ୍ୟ ଶାନ୍ତି ଦରକାର । ଆଉ ଖୁବ୍‌ହେଲେ ଆଠ ଦଶ ବର୍ଷ ମୁଁ କାମ କରି ପାରିବି । ଜୀବନରେ କିଛି ନ ମିଳୁ ପଛକେ, ଟିକେ ଶାନ୍ତି ଦରକାର । ଆଉ ଏ ସ୍ତ୍ରୀ ମୋତେ ଅଶାନ୍ତ କରୁଛି...."ତା' ହେଲେ ଭାଇ ସାହେବ ସ୍ତ୍ରୀଙ୍କୁ ଏତକ କହି ଦିଅନ୍ତୁ ଯେଉଁଠି ସ୍ତ୍ରୀଙ୍କୁ ଶାନ୍ତି ମିଳିବ ସେଠିକି ଯିବେ···"

"ଦେଖିନିଅ -- ଦେଖିନିଅ କର୍ଣ୍ଣେଲ —"

"ମୁଁ କହୁଛି ମହିପାଳ ତୁମେ ଚୁପ୍ ରହିଲ ?" କର୍ଣ୍ଣେଲ ଜୋରରେ ରାଗିଯାଇ କହିଲି । ଫେର ଗଳାର ସ୍ୱର ଶାନ୍ତକରି କହିଲି—"ଭାଇଜଙ୍କ ସହିତ ମତେ କଥା ହେବାକୁ ଦିଅ, ଖବର ଦାର ମଝିରେ ପୁଣି କଥା କହିଲ ତ ? ହଁ ଭାଇଜ ଶୁଣନ୍ତୁ କଥା ଟିକେ ଅସୁବିଧା ହୋଇ ଯାଇଛି । ମୋର ଯଦି କେଉଁଠି ଭୁଲ ହେବ ତା' ହେଲେ ଖରାପ ଭାବିବ ନି । ମୁଁ ମୂଳରୁ କ୍ଷମା ମାଗି ନେଉଛି । ଦେଖନ୍ତୁ ମହିପାଳକୁ ବୁଝାଇବାରେ ଆପଣ ଭୁଲ୍ କରିଛନ୍ତି । ମୁଁ ମାନୁଛି ଯେ ମହିପାଳର ବହୁତ ଖରାପ ଗୁଣ ଅଛି, କିନ୍ତୁ ଏକଥା ଆପଣଙ୍କୁ ପଡ଼ିବ ଯେ ସ୍ୱାପରି ସହଜ ସରଳ ଆତ୍ମଭୋଳା ଲୋକ ସହଜରେ ମିଳିବେ ନାହିଁ, ମୁଁ ମିଛ କହୁନି ଭାଇଜ, ମୁଁ ନିଜେ ବ୍ୟବସାୟୀ ହିସାବରେ ଲୋକ, ବହୁତ ପ୍ରକାର ଲୋକଙ୍କୁ ମୁଁ ଦେଖିଛି. ନିଜ ଲୋକ ସେଥିପାଇଁ ସ୍ୱାଙ୍କୁ ଗୁଣର ମୂଲ୍ୟ ଦେଉନା, କିନ୍ତୁ ସ୍ୱାଙ୍କର ଗୁଣ ଏବଂ ଯୋଗ୍ୟତା ଆଗରେ ମୁଁ ବହୁ ବଡ଼ ବଡ଼ ଲୋକଙ୍କୁ ମୁଣ୍ଡ ନୁଆଁଇବା ଦେଖିଛି ।"

ଆଙ୍ଗୁଠିରେ ଜଳନ୍ତା ସିଗାରେଟ୍‌କୁ ଚିପି, ମୁଣ୍ଡ ତଳକୁ ପୋତି ଚଉକିରେ ସିଧା ହୋଇବସି ମହିପାଳ ବିଭୋର ହୋଇ ତା'ର ନିଜ ପ୍ରଶଂସା ଶୁଣୁଥିଲା । ଏହି ସମୟରେ କର୍ଣ୍ଣେଲର ଉପକାର ଦ୍ୱାରା ସେ ବାନ୍ଧିହୋଇ ଯାଉଥିଲା । କର୍ଣ୍ଣେଲ କହି ଚାଲିଥାଏ—"ମହିପାଳ ପରି ଲେଖକର ଆଦର ବିଲାତ ଭଳି ଦେଶରେ ହୋଇ ପାରିବ ସ୍ୱାଙ୍କ ଭଳି ଆର୍ଟିଷ୍ଟ୍ ଇଣ୍ଟେଲେକ୍‌ଚୁଏଲ୍‌ଙ୍କୁ ଏଭଳି ଦୁର୍ଦ୍ଦଶା ଦେବାକୁ ପଡ଼ୁଛି । ଏଭଳି ମଣିଷର ଯଦି କିଛି ସାମାନ୍ୟ ଦୋଷ ଦୁର୍ବଳତା ଥାଏ ତେବେ ତାକୁ କ୍ଷମା କରିବାକୁ ଉଚିତ୍ ।"

କର୍ଣ୍ଣେଲ୍ ଚୁପ୍ ହୋଇଗଲା । ଘର ପୁଣିଥରେ ନୀରବତା ମାଡ଼ି ବସିଲା, ତିନିଜଣ ଚିନ୍ତାନ୍ୱିତ ହୋଇ ମୁଣ୍ଡ ତଳକୁ ପୋତି ବସିଥିଲେ । କର୍ଣ୍ଣେଲ ବାଁ ହାତରେ ପିନ୍ଧିଥିବା ନବରତ୍ନର ସୁନ୍ଦର ମୁଦିକୁ ଡାହାଣ ହାତରେ ଆଙ୍ଗୁଠି ବୁଲାଇକରେ ପିନ୍ଧାଉଥିଲା । ଟିକେଗଲା ଧାଡ଼ କର୍ଣ୍ଣେଲ ପୁଣି କହିଲା—"ମୁଁ ଏ କଥା ମଧ୍ୟ କହୁନି ଯେ ଆପଣ ମହିପାଳକୁ କିଛି କହିବେନି···ତେବେ ଯାହା କହିବେ ତାହା ତା'ର ମୁଡ୍ ଦେଖି କହିବେ । ଆପଣ ବୁଝିଲେତ······ବଡ଼ ବଡ଼ ପୁଅ ଝିଅଙ୍କ ସାମ୍ନାରେ ଆପଣ ଦୁଇ ଜଣଙ୍କ ମନୋ

ମାଳିନ୍ୟର କାରଣ ଆଉ ଅଛପା ରହିଲା ନାହିଁ । ଆଜି କାଲି ସମସ୍ତ କଣ······କେତେ ଖରାପ ହେଲାଣି ଏ କଥା ତ ଆପଣ ଜାଣିଛନ୍ତି, ଅବିବାହିତ ପୁଅ ଝିଅ ଆପଣଙ୍କର ଅଛନ୍ତି ଯଦି ସେମାନେ କଣ କିଛି କରି ଦେଲେ ତେବେ······”

“ଏହି କାରଣରୁ ହିଁ କେବଳ ମୁଁ ସ୍ୱାଙ୍କୁ ଯାହା କୁହେ, ଆଉ ଅନ୍ୟ କିଛି କାରଣ ନାହିଁ ଗ୍ରେଇ ସାହେବ, “ଏତେ ସମସ୍ତ ପରେ କଲ୍ୟାଣୀ ପାଟିରୁ କଥା ବାହାରିଲା, ମହିପାଳର ଚିନ୍ତା ପୁଣି ତେଜ ହୋଇଗଲା, ସ୍ତ୍ରୀ ଆଡକୁ ଏଭଳି ଦୃଷ୍ଟିରେ ଅନାଇଁଲା ଯେପରି ତାକୁ ହିପ୍‌ନୋଟିଜ୍‌ମ କରିଦେବ । କଲ୍ୟାଣୀ ଉତ୍ତେଜିତ କିନ୍ତୁ ଶାନ୍ତ ସ୍ୱରରେ କୁହାଯାଏ --

“ମୁଁ ସବୁ କିଛି ସହିଯିବି, କିନ୍ତୁ ଏଭଳି କଳଙ୍କ, ବଦ୍‌ନାମ ହେବାର ଯଦି ସ୍ୱେ କରିବେ ତେବେ ସ୍ୱାଙ୍କୁ କୁହନ୍ତୁ ତା ପୂର୍ବରୁ ମତେ ବିଷ ଟିକେ ଦେଇ ଦିଅନ୍ତୁ । ମୁଁ ନିଜ ପରିବାରର କୌଣସି କଳଙ୍କ ବରଦାସ୍ତ କରି ପାରିବି ନାହିଁ ସେ ସ୍ୱେ ହୁଅନ୍ତୁ କିମ୍ବା ପୁଅ ଝିଅ ହୁଅନ୍ତୁ ।” କଲ୍ୟାଣୀ ଚେହେରାରେ ଦୃଢତା ଫୁଟି ଉଠୁଥାଏ ।

ଏହି ଦୃଢ଼ତା ମହିପାଳ ମନର ଆଦର୍ଶଥିଲା । ଏଇ ଆଦର୍ଶକୁ ବହୁତ ଖୋଜି ମଧ୍ୟ ନିଜର ପ୍ରତ୍ୟକ୍ଷ ଜୀବନରେ ପାଇ ପାରୁ ନ ଥିଲା । କଲ୍ୟାଣୀର ଜିଦ୍‌ଖୋର ସ୍ୱଭାବ ଏଥିପାଇଁ ଦାୟୀ, ଏ ସ୍ତ୍ରୀ କେବେହେଲେ ମୋର କଳାକାର ସାହିତ୍ୟିକ ବ୍ୟକ୍ତିତ୍ୱକୁ ପ୍ରେରଣା ଦେଇନାହିଁ । ସବୁବେଳେ ମୋର ବିରୋଧ କରିଛି । ପତିବ୍ରତା, ତପସ୍ୱିନୀ, ତେଜସ୍ୱିନୀ ହେଲେ କଣ ହେଲା, ସେ ଏକା ବେଳେକେ ଗଣ୍ଡମୂର୍ଖ ଅଟେ । ଚିନ୍ତା ଓ ଶବ୍ଦ ମିଶି ତା' ମନରେ ପ୍ରଚଣ୍ଡ ପ୍ରତିଧ୍ୱନି ସୃଷ୍ଟି କରୁଥିଲେ, ଶେଷରେ କ୍ରୋଧରୂପୀ ଜଡତାରେ ତା'ର ଚିନ୍ତା ସବୁ ଅଟକି ଗଲା, “ମୁଁ ତୋ ବାପାର କିଣା ଚାକର ନୁହେଁ ବୁଝିଲୁ । ତୋ'ର ଯଦି ଗରଜ ଅଛି ତ ମୋ ସାଙ୍ଗରେ ରହିବୁ, ନଚେତ୍ ଗୋଟିଏ ମୁହୂର୍ତ୍ତ ପାଇଁ ମୁଁ ତତେ ସହି ପାରୁନି । ଅହଂକାରିଣୀ, ସ୍ୱାର୍ଥପର, ନୀଚ କାହିଁକା,

କର୍ଣ୍ଣେଲ ଉଠି ଯାଇ ଶୀଘ୍ର ତା ମୁହଁରେ ହାତ ଦେଇଦେଲା, ବିରକ୍ତ ହୋଇ କହିଲା“···ମହିପାଳ । ମହିପାଳ । “ମହିପାଳ ତା' ପାଟିରୁ କର୍ଣ୍ଣେଲର ହାତ କାଢ଼ିନେଲା । କର୍ଣ୍ଣେଲ ସେଇଭଳି ବିରକ୍ତ ପୂର୍ଣ୍ଣ ସ୍ୱରରେ କହିଲା······“ମୁଁ କହୁଛି କଣ ପାଗଳ ହୋଇ ଗଲୁ । ଏବେ ବୁଝିଲି ସବୁ ଦୋଷ ତୋ ରି ।”

“କଣ କହୁଛ ?” ମହିପାଳ କର୍ଣ୍ଣେଲକୁ ମଧ୍ୟ ଅପଦସ୍ତ କରିବାକୁ ଆରମ୍ଭ କଲା, କର୍ଣ୍ଣେଲ ମହୋଦୟଙ୍କ ମୁଡ୍ ମଧ୍ୟ ଏବେ ଏଭଳି ଥିଲା ଯିଏକି ଏ ଉଚିତାକୁ ଖାତିର କରୁନ ଥିଲା । କର୍ଣ୍ଣେଲ ଏଭଳି ମୁଡ୍‌ରେ ଆସିଲେ କଜିଆ କରିଥିବା ଦୁଇ ଦଳଙ୍କ ମଧ୍ୟରେ ନିଶ୍ଚିତ ରୂପରେ ବୁଝାମଣା ହୋଇଯିବ ନଚେତ୍ ଗୋଟିଏ ଦଳ କର୍ଣ୍ଣେଲଙ୍କ ସହିତ ଲଢ଼ିବା

ପାଇଁ ପ୍ରସ୍ତୁତ ହେଉଥିବେ, ଲାଲ ନଗୀନ୍‌ଚାନ୍ଦ ଓରଫ ଆମର କର୍ଣ୍ଣେଲ ସାହେବ ଏଭଳି ଭାବରେ କେତେ ସଂପର୍କୀୟ...ଆତ୍ମୀୟ ବନ୍ଧୁ କୁଟୁମ୍ବଙ୍କ ଘର ଭାଙ୍ଗିବାରୁ ରକ୍ଷାକରି ଦେଇଛନ୍ତି । ଦୃଢ ହୋଇ ଆଙ୍ଗୁଠି ଉଞ୍ଚାଇ କହିଲେ......"ଦେଖ ମିଛରେ ସେ ଗପ ଆଉ କାହାକୁ ଦେଖାଇବ, ବୁଝିଲ । ମୁଁ ବର୍ତ୍ତମାନ ବହୁତ ସିରିୟସ୍ ମୁଡ୍‌ରେ ରହିଛି, ତୋ ପକ୍ଷରେ ନୁହଁ କି ଭାଉଜଙ୍କ ପକ୍ଷର ମଧ୍ୟ ନୁହଁ, ମତେ ଯାହା ଠିକ୍ ମନେ ହେବ ସେଇକଥା କହିବି । ମୁଁ ପୁଣିଥରେ କହୁଛି ଯେ ସବୁ ଦୋଷ ତୋର । ଯେତେ ବଡ଼ ଇଂଟେଲେକ୍‌ଚୁଅଲ୍ ହେଲେ ସୁଦ୍ଧା ତୁ ଭାଉଜଙ୍କ ପାଦର କାଣି ଆଙ୍ଗୁଠି ଯୋଗ୍ୟ ନୁହଁ ।"

ମହିପାଲର ମନେ ହେଲା ଯେପରି ତା'ର ବସିଥିବା ଚଉକି କର୍ଣ୍ଣେଲ କାଢ଼ି-ନେଲେ । ସଜ୍ଜନ ସାମ୍ନାରେ ଯଦି କର୍ଣ୍ଣେଲ ଏକଥା କହିଥାନ୍ତା ତେବେ ସେ ଏକଥାକୁ ଅନ୍ୟ ଦୃଷ୍ଟିରେ ନେଇଥାନ୍ତା କିନ୍ତୁ କଲ୍ୟାଣୀ ସମ୍ମୁଖରେ କର୍ଣ୍ଣେଲର ଏଭଳି ଗାଳି ତାକୁ ବହୁତ ବାଧିଲା, ସେ ନିଜର ଦୁର୍ବଳତାକୁ ଲୁଚି, ନିଜକୁ ଶକ୍ତ କରି କର୍ଣ୍ଣେଲଙ୍କୁ ତୀବ୍ର ଭାବରେ ଅପଦସ୍ତ କରାଇ ନିଜ ସ୍ତ୍ରୀ ସାମ୍ନାରେ ବିଜୟୀ ହେବାର ପ୍ରସ୍ତୁତ ନେଇ ଠିକ୍ କହିବାକୁ ଗଲାବେଳେ କର୍ଣ୍ଣେଲ ଏକ ଗଭୀର ସତ୍ୟ ପ୍ରକାଶ କରି ତାକୁ କାବୁ କରିଦେଲେ । "ତୁମେ ଲେଖକ ହିସାବରେ ମଣିଷ ପଣିଆ ଯେତେ ବଖାଣିଲେ ସୁଦ୍ଧା ପ୍ରକୃତ ମଣିଷ ତୁମେ ଚିହ୍ନି ପାରିନ । ବୁଝିଲ ଯେ ଭାଉଜ ଜିଦ୍‌ଖୋର, କିନ୍ତୁ ତୁ ତ ମୂର୍ଖ, ମହାମୂର୍ଖ, ତୁମେ ଏତେ ବର୍ଷ ଏକାଠି ରହି ମଧ୍ୟ ତାଙ୍କ ମନର କଥା ଜାଣିପାରିଲ ନାହିଁ ଅଥଚ ମୁଁ ବୁଝିଗଲି । ସ୍ତ୍ରୀ ଯେପରି ଶୁଭ୍ର ବସ୍ତ୍ରର ଧାରାର ଦେବୀ ଅଟନ୍ତି ସେଭଳି ପବିତ୍ର ବସ୍ତ୍ରର ବୁଦ୍ଧି ଯଦି ଆଉ କାହାର ଥିବ ତେବେ ସେ କୌଣସି ପ୍ରକାର କଦର୍ଯ୍ୟତା ବରଦାସ୍ତ କରିପାରିବ ନାହିଁ, ଏବେ ଆପଣ ବୁଝନ୍ତୁ ତ ନିଜର ଇଂଟେଲେକଚୁଅଲ୍ ଚିନ୍ତା ନେଇ ଯେତେ ଉପରକୁ ଉଠିଲେ ସୁଦ୍ଧା ଆପଣଙ୍କ ସାମ୍ନାରେ ଯଦି କିଛି କଦର୍ଯ୍ୟତା ଆସୁଛି ତେବେ ଆପଣଙ୍କର ତୀବ୍ର ପ୍ରତିକ୍ରିୟା ହେଉନ । ମୁଁ ତ ହଜାର ଥର ଏ ବିଷୟରେ ଆପଣଙ୍କୁ ଦେଖିଛି ।"

ରୋଗୀ ମଣିଷ ଯେପରି କେବେ କେବେ ଶୁଦ୍ଧବାୟୁ ଦ୍ୱାରା ବେଶୀ ଆକ୍ରାନ୍ତ ହୋଇପଡ଼େ, ଠିକ୍ ସେଇଭଳି ଭାବରେ କର୍ଣ୍ଣେଲର କଥା ମହିପାଲ ଉପରେ ପ୍ରଭାବ ବିସ୍ତାର କଲା । ତା' ଅନ୍ତରର ସତ୍ୟ ପ୍ରକଟ ହେଲା, ମାତ୍ର ଶାନ୍ତ ହୋଇ ବିଦ୍ରୋହୀ ରୂପରେ ପ୍ରକଟ ହେଲା । ସେ ମୁଣ୍ଡ ଟେକି ଗର୍ଜିଯାଇ କହିଲା........"ମୁଁ ଜାଣିଛି,, ଏପରିକି ସମସ୍ତଙ୍କୁ ନିଃସଂକୋଚରେ କହୁଛି ଯେ କଲ୍ୟାଣୀ ମୋ ଠାରୁ ଶତ ଗୁଣରେ ଏକ ନିଷ୍ଟ, ମୁଁ ମଧ୍ୟ ସତର ଅଠର ବର୍ଷ ଏକ ପତ୍ନୀବ୍ରତ ହୋଇ ପବିତ୍ର ଭାବରେ ଜୀବନ କାଟିଛି, ଏବେ ସୁଦ୍ଧା ସ୍ତ୍ରୀଙ୍କର (କଲ୍ୟାଣୀ) ମୂର୍ଖତାକୁ ଘୃଣା କରି ମଧ୍ୟ ସ୍ତ୍ରୀଙ୍କ ପାଇଁ ମୋ ହୃଦୟରେ ପ୍ରେମପୂର୍ଣ୍ଣ ପୂଜ୍ୟ ଭାବ ରହିଛି । କିନ୍ତୁ ଯାହା କୁହ ପଛେ କର୍ଣ୍ଣେଲ, ଆଜି କଲ୍ୟାଣୀ ସାମ୍ନାରେ ମତେ ପରିଷ୍କାର କହିବାକୁ ପଡ଼ୁଛି ଯେ ଶୀଳା ଓ ମୋ ମଧ୍ୟରେ ଥିବା ପ୍ରେମରେ କୌଣସି ମାଳିନ୍ୟ

ଫେଣ୍ଟିପାରୁନ ଏବଂ ଯିଏ ମୋ' ଶୀଳାକୁ "ଘୃଣା କରିବ ମୁଁ ତାକୁ ଘୃଣା କରିବ ।" ମୋ' ଶବ୍ଦରେ ଜୋରଥିଲା, ସେଶବ୍ଦ ତା' ହାମକିଲା କଲ୍ୟାଣୀ ଭିତରେ ଭିତରେ ଘୁମରି ଉଠିଲା ବିବଶତା ବଶତଃ ଦୀର୍ଘଶ୍ବାସ ପଡ଼ିଲା, କଲ୍ୟାଣୀ ତେରସ୍ଥା ଭାବରେ ମହିପାଳକୁ ଏଭଳି ଅନାଇଁଲା ଯେଉଁଥିରେ କି ଏକଥା ପରିସ୍ଫୁଟ ଥିଲା, ତୁମେ ମତେ ଏଭଳି ଭଲକୁ ପେଲି-ଦେଲ......ତୁମେ ଏକଥା କପରି କହିପାରିଲ ?

ମହିପାଳର ଉତ୍ତେଜନା କମିଯିବା ପରେ ସେ ସ୍ତ୍ରୀରଙ୍କ ପରି ନିଜପତ୍ନୀ ଆଡ଼କୁ ଅନାଇଲା, ଠିକ୍‌ସେତିକି ବେଳେ କଲ୍ୟାଣୀ ମଧ୍ୟ ପରାଜୟ ଓ କରୁଣା ପୂର୍ଣ୍ଣ ଦୃଷ୍ଟିରେ ତାକୁ ଅନାଇଁଲା । ପରସ୍ପରର ଦୃଷ୍ଟି ଏକ ହେବା ଦ୍ୱାରା ପୁଣି ପ୍ରତିକିୟା ଆରମ୍ଭ ହେଲା, ମହିପାଳ ଏବେ ସତ୍ୟକୁ ଡରୁଥିଲା, "ପତିପତ୍ନୀଙ୍କ ସଂପର୍କ ଅତୁଟ, ଅନନ୍ତ ଅଟେ, ମୁଁ ସ୍ତ୍ରୀକୁ ଛାଡ଼ିପାରିବି । ସ୍ତ୍ରୀ ପୁରୁଷର ପ୍ରେମମହା ବନ୍ଧନ ଅଟେ, ସ୍ତ୍ରୀ ପୁରୁଷ, ସେମାନେ ପତିପତ୍ନୀ ହୁଅନ୍ତୁ, କଲ୍ୟାଣୀ ସତୀ ଅଟେତ ସତୀ ହୋଇ ରହୁ । ଆମେ ପତିତ ହୋଇ ମଧ୍ୟ ମହାନ୍ ଅଟୁ । ଶୀଳା ମୋର ପ୍ରେରଣାର ଉତ୍ସ, ମୁଁ ଶୀଳାର ପ୍ରାଣ ମନରେ ରହିଛୁ, ସମାଜିକ ଦୃଷ୍ଟିରେ ଯଦିଓ ଏଟା ଅନୈତିକ, ଭ୍ରଷ୍ଟାଚାର...କିନ୍ତୁ ସମାଜ .....ଏଇ ସମାଜ ଆମ ପ୍ରେମ ନିକଟରେ କେତେ ତୁଚ୍ଛ........ "

ମହିପାଳ ହଠାତ୍ ଉତ୍ତେଜିତ ହୋଇ ଠିଆ ହେଲା, କର୍ଣ୍ଣେଲଙ୍କୁ କହିଲା...... କର୍ଣ୍ଣେଲ ଆଇ ଆମ୍ ଗୋଇଂ, ସ୍ତ୍ରୀଙ୍କୁ କହିଦିଅ ମୋ ରୋଜଗାରରୁ ପଞ୍ଚସ୍ତରୀ ଟଙ୍କା ନିଜ ପାଇଁ ରଖି ବାକି ସବୁତକ ଟଙ୍କା ପ୍ରତି ମାସରେ ତୁମ ଜରିଆରେ ତାଙ୍କ ପାଖକୁ ପଠାଇ ଦେବି ।"

ମହିପାଳ ଆଗେଇଲା, କଲ୍ୟାଣୀ ଓ କର୍ଣ୍ଣେଲ ଦୁହେଁ ବ୍ୟାକୁଳ ହୋଇ ଉଠିଲେ। କର୍ଣ୍ଣେଲ ପଚାରିଲା... "ତେବେ ବର୍ତ୍ତମାନ ଠାରୁ ସ୍ଥାୟୀ ଭାବରେ ଶୀଳା ପାଖରେ ରହିବ ତା ହେଲେ ?"

ପ୍ରଶ୍ନ ସରଳ ଭାବରେ ପଚରା ଯାଇଥିଲେ ମଧ୍ୟ ମହିପାଳ ଚିଡ଼ି ଉଠି କହିଲା... "ସ୍ତ୍ରୀ ଲୋକଙ୍କ ରୋଜଗାରରେ ପ୍ରତି ପାଳିତ ହେବା କୁକୁର ମୁଁ ନୁହେଁ ।"

"ତୁମ ଶତ୍ରୁ ମଧ୍ୟ ତୁମକୁ ଏ ପ୍ରକାର ଦୋଷ ଦେଇ ପାରିବ ନାହିଁ ।" ନିଜ ସ୍ୱାମୀଙ୍କୁ ଏଭଳି ଚାଲି ଯିବାର ଦେଖି କଲ୍ୟାଣିକୁ ଚାରିଆଡ଼ ଅନ୍ଧାର ଦେଖାଗଲା । ମହିପାଳକୁ ଅଟକାଇବା ପାଇଁ ସେ ଆଗେଇଲା, କର୍ଣ୍ଣେଲଙ୍କ ଉପସ୍ଥିତି ସଂପର୍କରେ ସଚେତନ ହୋଇ ଅଟକି ଗଲା, କହିଲା......"ତୁମେ ଏଭଳି ଚାଲିଗଲେ ଝିଅ ମାନଙ୍କୁ ମୁଁ କଣ କହିବି ? ସାରା ସମାଜକୁ କଭଳି ମୁହଁ ଦେଖାଇବି ?"

"କାହିଁକି ? ତୁମେ ତ ସତୀ, ଦେବୀ ସମାଜ ତୁମକୁ ପୂଜା କରିବ । ମୋ ଭଳି କଳଙ୍କିତ ବ୍ୟକ୍ତିକୁ ସିନା ସମାଜ ଛେପ ପକାଇବ ?''..............

"ଆଜି ମୁରଦା ବାବୁ ଶକୁନ୍ତଳାକୁ ଦେଖିବାକୁ ଆସିବେ, ସେଇ କାରଣରୁ ସାଇଁ ସାହେବଙ୍କୁ ତୁମ ପାଖକୁ ପଠାଇ ଥିଲି ।"

ମଧୁପାଳର ସମସ୍ତ ଉତ୍ତେଜନା, ଚିନ୍ତାଧାରା, ମାନସିକ ସଂକଳ୍ପ ଏବଂ ଭବିଷ୍ୟତ ଯୋଜନା ସବୁ ଏକଥା ଶୁଣୁ ଶୁଣୁ କୁଆଡେ ମିଳାଇ ଯିବାକୁ ଲାଗିଲା । ଚୋର ଧରା ପଡ଼ିବା ବେଳେ ଘରର ମାଲିକ ଆସି ପହଞ୍ଚିଲେ ଚୋର ଯେଉଁଭଳି ଭାବରେ ନିଜକୁ କେଉଁ କୋଣରେ ଲୁଚାଏ ଠିକ୍ ସେଇଭଳି ଭାବରେ ମଧୁପାଳ ନିଜକୁ ଲୁଚାଇ ରଖିବାକୁ ଚେଷ୍ଟା କରେ । ଯେତେବେଳେ ପତ୍ନୀ ପ୍ରେମିକା ଓ ପ୍ରେମ .....ଏ ସମସ୍ତ ପ୍ରଶ୍ନ ସାମ୍ନାରେ ତା'ର ଉତ୍ତର ପୁରୁଷର ପ୍ରଶ୍ନ ଆସି ଠିଆ ହୁଏ । ମଧୁପାଳ ପୁଣିଥରେ ନିଜକୁ ଶକ୍ତ କଲା, କହିଲା... ..''ସେ ଯିଏ ଆସନ୍ତୁ ପଛକେ, ମୋର ତୁମ ସହିତ କୌଣସି ସଂପର୍କ ନାହିଁ । କଣ୍ଟ୍ରୋଲ ଆଗକୁ ଆସି କହିଲା....''କଣ ପିଲାଳିଆମି କରୁଛ ମଧୁପାଳ । ଯାଙ୍କ ସହିତ ତୁମେ କଜିଆ କରିପାର ମାତ୍ର ପିଲାଙ୍କ ସହିତ କଳିକରି କୁଆଡେ଼ ଯିବ ? ବହୁତ ହେଲାଣି, ଦିନ ଦିନ ହେବ ତୁମ ଘରର ଅବସ୍ଥା କଣ ହେଲାଣି ଏ ଧାରଣା ତୁମର ନାହିଁ ।"

"ଆଉ ଏ ଦୁଇଦିନ ଧରି ମୋ ମନରେ କଣସବୁ ଘଟି ଯାଇଛି ଏ ଧାରଣା ମଧ୍ୟ ତୁମେ କହିପାରିବ ନାହିଁ କିନ୍ତୁ ଏକଥା ମୁଁ ସ୍ଥିର କରି ନେଇଛି ଯେ କଲ୍ୟାଣୀ ସହିତ ଆଉ ମୋର ବୁଝାମଣା ହୋଇ ପାରିବ ନାହିଁ ।"

"ଦେଖ......"

"ଦେଖ ଫେଖ କରୁଛ ନାହିଁ, କିନ୍ତୁ ଦୀର୍ଘ ଚବିଶ ବର୍ଷ ଯେଉଁ ସ୍ତ୍ରୀ ସହିତ ମୁଁ ରହିଲି ଏବଂ ଏ ଚବିଶ ବର୍ଷ ଧରି ଯେଉଁ ସ୍ତ୍ରୀ ମତେ ଟିକେବି ବୁଝିବା ପାଇଁ ଚେଷ୍ଟା ସୁଦ୍ଧା କଲାନାହିଁ ତା' ସହିତ ଆଉ ସଂପର୍କ ରଖିବାକୁ ମନ ଚାହୁଁନି ।"

"ତେବେ କେଉଁଠି କେଲେ ତ ରହିବ । ଶୀଳା ପାଖରେ ତ ରହି ପାରିବ ନାହିଁ । ଏ ସୁଯୋଗରେ ମୋର ଅଥବା ସଜ୍ଜନ ଘରେ ରହିଲେ...ରହି...... .."

ମଧୁପାଳ ଆଖିରେ ଗୋମତୀ ତୀରର ସେଇ ଶିବ ମନ୍ଦିର (ଯେଉଁଠାରେ ଘରଦିନ ବଡ଼ ବିତାଇ ଥିଲା ) ନାଚୁଥିଲା, କେବଳ ଆଧ୍ୟାତ୍ମିକ ସନ୍ତୋଷ ପାଇଁ ନୁହେଁ ନିଜପାଇଁ ଏକ ଦୁର୍ଲଭ ଆଶ୍ରୟସ୍ଥଳ ଭାବରେ ଶିବ ମନ୍ଦିର କଥା ସେ ଚିନ୍ତା କରୁଥିଲା, ଏହି ସ୍ଥାନ କଥା ତା' ମନରେ ଆସିବା ମାତ୍ରେ କଲ୍ୟାଣୀ ଓ ଶୀଳା ସହିତ ତା' ନିଜର ସମସ୍ତ ଚିନ୍ତା ତା' ମନରୁ ଚାଲି ଯାଇଥିଲା । ଏକ ନୂଆ ସମ୍ପତ୍ତିରେ ତା' ମନ ଭରିଗଲା, ସେ

କହିଲ .. ମୋ ଭଳି ଜଣେ ସାହିତ୍ୟିକର ରହିବା ସକାଶେ କୌଣସି ରାଜମହଲର ଦରକାର ନାହିଁ, ଛିନ୍ନହାତ ଧୋତି ଖଣ୍ଡିଏ, ଦିନା ତରକାରି,, ଦିନା ଲୁଣ··· ” କର୍ଣ୍ଣେଲ ତାଙ୍କୁ ବୁଝାଇ କହିଲ···“ସେ ତ ମୁଁ ଜାଣେ, କିନ୍ତୁ ବର୍ତ୍ତମାନ ମୋ କଥା ମାନ ଭଲ । ଯା, ଘରକୁ ଯାଅ, ଝିଅର ବିବାହ ପ୍ରସଙ୍ଗ ଆସିଛି, ସେ କାଲିଠାରୁ ବହୁତ ଚିନ୍ତିତ ଅଛନ୍ତି, ସତ କହିବାକୁ ଗଲେ ତୁମକୁ ଆଣିବା ଫେରରେ ମୁଁ ନଥିଲି । ଜାଣିଥିଲି ଯେ ଯେତେବେଳେ ତୁମ ମୁଣ୍ଡ ଠିକ୍ ହେବ ସେତିକିବେଳେ ଉଚିତ୍, ଅନୁଚିତ୍ କଥା ଭାବି ତୁମେ ନିଜେ ଘରକୁ ଫେରିଯିବ । କିନ୍ତୁ ଝିଅର ବିଚରା ଏଭଳି ଚିନ୍ତା ଥିଲେ······ଯାହା ଏ ମୌକାରେ ଝିଅଜଙ୍କ ଦର୍ଶନ ମଧ୍ୟ ମିଳିଗଲା, ଏବେ ତୁମେ ଘରକୁ ଗଲେ ଆଉ ଓଢ଼ଣା ରୂପୀ ପାଚେରି ଚଢ଼ିବ ନାହିଁ । ସେପରି ଘରେ········” କର୍ଣ୍ଣେଲ ଜାଣିଶୁଣି କଥାକୁ ହାଲୁକା କରିବା ଉଦ୍ଦେଶ୍ୟରେ ଏ ସବୁ କହିଲ ।

କଲ୍ୟାଣୀ ମୁହଁରେ ଏତେବେଳକେ ହସ ଉକୁଟିଲା ।

କର୍ଣ୍ଣେଲ ନିଜର କଥାସ୍ରୋତ ଅଟକାଇ ନୂଆ ସ୍ୱରରେ ପୁଣି ଆରମ୍ଭ କଲେ····· ଆଚ୍ଛା ଝିଅଜ ଆପଣ ଆମ ମ୍ଲେଚ୍ଛଙ୍କ ଘରେ ଚାହା ପିଇବେ କି ନାହିଁ କହିଲେ ? ଯାହା ଯଦି ନ ପିଅନ୍ତି ତ କିଛି ମନେ କରିବାର ନାହିଁ, କିନ୍ତୁ ମିଠା ମୁହଁ ନ କରାଇ ଯିବାକୁ ଦେବିନାହିଁ । ମୁଁ ଏକ୍ଷଣି ଫେରୁଛି ।” କହି କର୍ଣ୍ଣେଲ ସେ ଘରୁ ବାହାରିଗଲେ ।

ସ୍ୱାମୀ ସ୍ତ୍ରୀ ଦୁହିଁଙ୍କୁ ଏତେ ବେଳକେ ଏକାନ୍ତ ମିଳିଲା, କଲ୍ୟାଣୀ ନିଜ ସ୍ୱାମୀକୁ ନିଃସଂକୋଚରେ କରୁଣ ନେତ୍ରରେ ଦେଖିବାକୁ ଲାଗିଲା, ମହିପାଳ ସେ ଦୃଷ୍ଟିକୁ ସହ୍ୟ କରି ପାରିଲା ନାହିଁ । ଆଜିର ବୁଝାମଣା ଏ ପର୍ଯ୍ୟନ୍ତ ରହି ରହି ତା' ମନରେ ପ୍ରତିକ୍ରିୟା ସୃଷ୍ଟି କରୁଥିଲା, ଯୁଦ୍ଧରେ ହାରି ଯାଇଥିବା ପୁରୁ ବିଜୟୀ ସିକନ୍ଦରଙ୍କ ସମ୍ମୁଖରେ ଠିଆ ହୋଇ ଯେଉଁ ଅନୁଭୂତି ଲାଭ କରିଥିବେ ମହିପାଳ ଅବସ୍ଥା ସେହିପରି ହୋଇଗଲା ।

× × × ×

ଘରକୁ ଫେରିବା ବାଟରେ ମହିପାଳର ମନରେ ଆଶ୍ଚର୍ଯ୍ୟ ପ୍ରକାରର ପ୍ରତିକ୍ରିୟା ସୃଷ୍ଟି ହେଉଥିଲା । ଦୁଇଦିନ ଦାହାରେ ରହିବା ପରେ ପିଲାଙ୍କୁ ସାମ୍ନା କରିବାରେ ସେ ଅତ୍ୟଧିକ ସଙ୍କୋଚ ଅନୁଭବ କରୁଥିଲା, ବଡ଼ ବଡ଼ ପିଲେ ସବୁ, ଯେତେବେଶୀ ଏକ ତା ମନରେ ଆସୁଥିଲା ସେତେ ଅଧିକ ଯେ କଲ୍ୟାଣୀ ଉପରେ ରାଗୁଥିଲା । ଘରକୁ ଆସି ମଧ୍ୟ ଭିତରକୁ ସେ ଯାଇ ପାରୁ ନଥିଲା । ବୈଠକ ଘର ସାମ୍ନାରେ ଥିବା ଲେଟର ବାକ୍ସ ଭିତରୁ ଆସିଥିବା ଚିଠି ଦେଖା ଯାଉଥାଏ । କଲ୍ୟାଣୀକୁ କହିଲା ବୈଠକ ଖାନାର ଚାବି ମୋତେ ଦେଇଯାଅ । ଦେଖ ତୁମେ ଯେପରି ଚାବି ଆଣିବ ।”

ସେ ପର୍ଯ୍ୟନ୍ତ ମହୀପାଳ ରାସ୍ତାରେ ଚହଲୁଥାଏ । ଜଣେ ପଡ଼ୋଶୀ ଯିବା ବାଟରେ ତାକୁ ଦେଖି ନମସ୍କାର କରି କହିଲେ ... ...

"ମହାଶୟ କହିଲ ଭଲ ଭୋଟ କାହାକୁ ଆପଣ ଦେଉଛନ୍ତି ?"

"ଚୂଲିକୁ ଯାଉ ସେ ଭୋଟ, ମୁଁ ଏ ସବୁ ଘୃଣାକରେ ।"

ପଡ଼ୋଶୀ ଏକଥାରେ ଅସନ୍ତୁଷ୍ଟ ହୋଇ କହିଲେ ... ହଁ ସେ କଥାତ ଠିକ୍

ତେବେ ଆମେ ସବୁ ଶୁଣୁଥିଲୁ ଯେ ଆପଣ କର୍ଣ୍ଣେଲ ପ୍ରଭୃତି ମିଶି କମ୍ୟୁନିଷ୍ଟ ପାର୍ଟିକୁ ବ୍ୟାନ କରିବା ଆରମ୍ଭ କରିଛନ୍ତି । ସେ ଦିନ ଉଡ଼ାଜାହାଜରୁ ଯେଉଁ ଲିଫ୍‌ଲେଟ୍ ଫିଙ୍ଗିଲେ ତା'ର ପ୍ରସ୍ତାବ ତ ବହୁତ ପଢ଼ିଛୁ ଯିଏ ପଢ଼ିଲା ସେ କହିଲା ଏଭଳି ଆଶ୍ଚର୍ଯ୍ୟ ଧରଣର ପ୍ରୋପାଗଣ୍ଡା କୌଣସି ରାଜନୈତିକ ଦଳ ଏ ପର୍ଯ୍ୟନ୍ତ କରି ନାହାନ୍ତି । ମୁଁ ତ କହି ଦେଉଛି ଯେ ଏ ସମସ୍ତ ଆପଣଙ୍କ କୃତିତ୍ୱ । କେହି ଏଭଳି ସୁନ୍ଦର ଏବଂ ଶକ୍ତିଶାଳୀ ଲେଖା ଲେଖି ପାରିବ ନାହିଁ । ହେଁ ହେଁ ହେଁ ... ...

ମହୀପାଳର ବିରକ୍ତି ଆହୁରି ବଢ଼ି ଯାଉଥିଲା କିନ୍ତୁ ସେ ବାଧ୍ୟ ହୋଇ ଚୁପ୍ ରହିଲା । କଲ୍ୟାଣୀ ଠିକ୍ ସେତିକିବେଳେ କବାଟ ଆଢ଼ୁଆଳରେ ଠିଆ ହେଲା, ଏବଂ ସେଇ ବାହାନାରେ କୌଣସି ପ୍ରକାରେ ପଡ଼ୋଶୀଠାରୁ ନିଜକୁ ମୁକ୍ତକଲା । କଲ୍ୟାଣୀ ଯିବା ପୂର୍ବରୁ କହିଲା ... "ଏବେ ତୁମେ ଗାଧୁଆ ପାଧୁଆ ସାରି ଖାଇନିଅ ।"

ମହୀପାଳ କହିଲା ... ... "ପିଲାଙ୍କୁ ଆଗେ ଖାଇବାକୁ ଦେଇଦିଅ ।"

"ସେମାନେ ସମସ୍ତେ ତ ଏବେ ଗଲେ । ଖାଲି ତପୁ, ରଞ୍ଜୁ ଓ ଶକୁନ୍ତଳା ଅଛନ୍ତି ।"

"କାହିଁକି ?"

ମୁଁ ତ ଶକୁନ୍ତଳା ଯିବା ପାଇଁ ମନାକଲି, ରଞ୍ଜୁ ଓ ସେ ମିଶି ମୋତେ ସାହାଯ୍ୟ କରିବେ ... ..."

ମହୀପାଳ କିଛି ନ କହି ବୈଠକ ଖାନା ଖୋଲି ଭିତରକୁ ଗଲା, ଲେଟର ବାକ୍‌ସରେ ଦୁଇଟି ଚିଠି ଏବଂ ଗୋଟିଏ ପତ୍ରିକା ଥିଲା । କଲ୍ୟାଣୀ ଚାଲି ଯାଇଥିଲା । ରଞ୍ଜୁ ଓ ଶକୁନ୍ତଳା ଆଗଘରେ ରହିବା ଫଳରେ ମହୀପାଳ ଭିତରକୁ ଯିବାକୁ ସାହାସ କରିପାରିଲା ନାହିଁ, ପତ୍ରିକା ନୂଆଥିଲା, ବହୁତ ସୁନ୍ଦର ଭାବରେ ପ୍ରକାଶିତ ହୋଇଥିଲା । ଚିଠି ଦୁଇଟିଣ୍ଡି ଦୁଇଟି ଲଫାପା ଚିଠିଥିଲା । ଗୋଟିକରେ ଅଲଇଣ୍ଡିଆ ରେଡ଼ିଓର ମୋହର ଲଗା ହୋଇଥିଲା ଅନ୍ୟଟି ତାହାର । ମହୀପାଳ ପତ୍ରିକାରେ ନିଜକୁ ହଜାଇ ଦେଲା । କେବଳ ଛବିରେ ପୂର୍ଣ୍ଣଥିଲା, ପଢ଼ିବା ଯୋଗ୍ୟ ମ୍ୟାଟର ବହୁତ କମ୍ ଥିଲା ।

ମହୀପାଳ ବହୁତ ସମସ୍ତ ତାକୁ ଦେଖି ଅଲ୍ ଇଣ୍ଡିଆ ରେଡ଼ିଓର ଚିଠି ଖୋଲିଲା । ଗୋଟିଏ ଟିକେଟ କଂଟ୍ରାକ୍ଟଥିଲା, ଟିକ ଗୋଟିଏ ସିଲିଜରେ ଆପ୍ୟାୟିତ କରାଯାଇଥିଲା । ସିରିଜର ନାମ କରଣଥିଲା ୪ର୍ଥ ମହାଯୁଦ୍ଧ ଏବଂ ସେଥିରେ ମହୀପାଳର ପ୍ରସ୍ତାବିତ ବିଷୟ ଥିଲା ·· "ସ୍ତ୍ରୀ ପୁରୁଷ ମଧ୍ୟରେ ।" ମହୀପାଳ ହସି ଉଠିଲା, ୪ର୍ଥ ମହାଯୁଦ୍ଧ ହେବ ······ ମୁଖ୍ୟତଃ ସ୍ତ୍ରୀ ପୁରୁଷଙ୍କ ସମସ୍ୟା ହିଁ ହେବ କାରଣ ଦୁନିଆଁରୁ ଆର୍ଥିକ ଅସମାନତା ଉଠିଗଲେ ମଣିଷ ସାମ୍ନାରେ ପୃଥିବୀରେ ସ୍ତ୍ରୀ ପୁରୁଷଙ୍କ ସମସ୍ୟା ହିଁ ଅଧିକ ଗୁରୁତ୍ୱ ପୂର୍ଣ୍ଣ ସମସ୍ୟା ହୋଇ ଦେଖାଦେବ । ଟିକ ଖୁବ୍ ବଢ଼ିଆ ହୋଇ ପାରିବ ବୋଲି ମହୀପାଳ ଭାବିନେଲା । ଏହି କଥା ଭାବୁ ଭାବୁ ଦ୍ୱିତୀୟ ଚିଠି ଖଣ୍ଡିକ ନିଜ ଅଜାଣତରେ ଖୋଲିଦେଲା, "ଅଖଣ୍ଡ ସୌଭାଗ୍ୟବତୀ ଶ୍ରେଷ୍ଠ ଭଉଣୀକୁ ଭାଇର ଆଶୀର୍ବାଦ·········" କଲ୍ୟାଣୀର ଚିଠି ଅଜଣାତରେ ଖୋଲିଦେଲା, ମହୀପାଳ ସାଧାରଣତଃ ଘର ଚିଠି ଖୋଲି ପଢ଼ନ୍ତି, କିନ୍ତୁ ବର୍ତ୍ତମାନ କପଟ କୌତୁହଳ ବଶତଃ ସେ ଚିଠି ପଢ଼ିଲା । ପଢ଼ିବା ପରେ ଉତ୍ତେଜନାରେ ତା'ରକ୍ତ ଗରମ ହୋଇଗଲା, କଲ୍ୟାଣୀ ତା ଭାଇଠାରୁ କିଛି ଟଙ୍କା ଉଧାରେ ମାଗିଥିଲା, ଜବାବରେ ସେ ଲେଖିଥିଲେ ଯେ ଏକ୍ଷଣି ତାଙ୍କର ଆର୍ଥିକ ଅବସ୍ଥା ସୁବିଧାଜନକ ନ ଥିବାରୁ ଭଉଣୀକୁ ସାହାଯ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବପର ହୋଇପାରୁନି । ଚିଠିରେ ବାକି ଅଂଶରେ ନିଜର ଭଲମନ୍ଦ ଖବର ଦିଆଯାଇଥିଲା, ମହୀପାଳର ବଡ଼ଶଳା ତା ଭଉଣୀକୁ ଲେଖିଥିଲା ଯେ ତା' ପିତାଙ୍କର କୌଣସି ଅସମ୍ମାନର ବ୍ୟବହାର ହେତୁ ସେ ତା ସାନଭାଇ ବିଭାଘରକୁ ତା' ବରଯାତ୍ରୀରେ ଯୋଗ ଦେଇନଥିଲା, ତେଣୁ ବିବାହ ବିଷୟରେ ସବୁକଥା ଜଣାଇବା ପାଇଁ ଭଉଣୀକୁ ଲେଖିଥିଲା·········"ଆଉ ଆମ ଲେଖକ ମହାଶୟଙ୍କ ହାଲ୍ ଚାଲ୍ କଣ ? ଆଜିକାଲି ଆଟିଷ୍ଟ୍ ଧନ୍ଦା କଣ କିଛି କମି ଯାଇଛି କି ?

ପଢ଼ିସାରି ମହୀପାଳ କ୍ରୋଧରେ ଉନ୍ମତ୍ତ ହୋଇଗଲା, କ୍ରୋଧ ବଶତଃ ତା'ର ରୁମ ଠିଆ ହୋଇଗଲା । ଯେ ଏପରି ଏକ ଆବେଗ ଯାହା ଦ୍ୱାରା ନ ମଣିଷ ଅପ୍ରତ୍ୟକ୍ଷ ଭାବରେ ପ୍ରତିହଂସା କାମୀ ହୋଇ ନିଜର ସମସ୍ତ ସଂଯମ ଓ ମାନସିକ ଭାରସାମ୍ୟ ହରାଇ ଏକ ଅନ୍ୟ ପ୍ରକାର ବ୍ୟକ୍ତିତ୍ୱରେ ପରିବେଷିତ ହୋଇଥାଏ, ଚେହେରା ମଧ୍ୟ ମଣିଷର ଏଥିରେ ବଦଳିଯାଏ, ମହୀପାଳ ଏକାଥରେକେ ବୈଠକ ଘରୁ ବାହାରି ଅଗଣା ଡେଇଁ ସିଡ଼ି ଚଢ଼ି ଉପର ବଡ଼ ଘର ଭିତରେ ପ୍ରବେଶ କଲା । ତପୂ ସେଠାରେ ବସି ଚିତ୍ର ଘୂଞ୍ଚ ଯୋଡ଼ୁଥିଲା, ବାପାର ଚେହେରା ଦେଖି ସେ ଏକାବେଳେକେ ଭୟଭୀତ ହୋଇଗଲା । ମହୀପାଳ ଆଗରେ ସେ ଆଜି ମଧ୍ୟ ସେ ଦେଖିପାରିଲା ନାହିଁ । ଗ୍ରୀଷ୍ମପାଣି ହୋଇ ସେପାଇ ଘର ଭିତରକୁ ଯିବା ପୂର୍ବରୁ କଥାବାର୍ତ୍ତା ଶୁଣି ପାରିଲା କଲ୍ୟାଣୀ କହୁଥିଲା······ଭିବାଟ ପାଖରେ ରୁହ ଯେତେବେଳେ ମୁଁ ପାନ·····ମୁହଁର କଥା ମୁହଁରେ ରହିଗଲା । ଶକୁନ୍ତଳା ମାଉଁଙ୍କ ସାମାରେ ପିଢ଼ା ଉପରେ ବସି ଆଗନ୍ତୁକମାନଙ୍କ ନିମନ୍ତେ ଡାଲିମ୍ବ

ମଣ୍ଡି ଛଡ଼ାଇ ସଜାଡ଼ି ରଖିଥିଲା । ରଜ୍ୱୋ ଖୋଲା ବାଲଟିରେ ମା ଆଗରେ କନାରେ ସ୍ୱଚ୍ଛ ସେଟ୍ ପୋଛୁଥିଲା, କଲ୍ୟାଣୀ ନିଜେ ମିଠା ପୁଡ଼ିଆରୁ ବିଭିନ୍ନ ପ୍ରକାର ମିଠାକାଢ଼ି ଅଲଗା ଅଲଗା ରୂପାର ଶ୍ରେଷ୍ଠ ଫୁଲ ପକା ଥାଳିଆରେ ସଜାଡ଼ି ରଖୁଥିଲା ଓ ନିଜର ଝିଅ ଓ ସାଣେଙ୍କୁ ଏଇଟା ସେଇଟା କରିବା ପାଇଁ ନିର୍ଦ୍ଦେଶ ଦେଉଥିଲା, ବର୍ଷକର ଛୁଆ ପାଖରେ ବସି ଗିନାରେ ଡାଲ ପୂରାଇବାରେ ବ୍ୟର୍ଥ ପ୍ରୟାସ କରୁଥାଏ । ମହୀପାଳ ଦୁଆର ମୁହଁରେ ଠିଆ ହେବାର ଯେପରି ସମସ୍ତଙ୍କ ନିମନ୍ତେ ସ୍ୱୟଂ କାଳ ଆସି ପହଞ୍ଚିଗଲା । ମହୀପାଳଙ୍କୁ କଲ୍ୟାଣୀ ଛଡ଼ା ଆଉ କେହି ଦେଖିପାରୁ ନଥିଲେ । ତା' ହାତରେ ଖୋଲା ହୋଇଥିବା ଚିଠି, ଚେହେରା ଓ ସ୍ୱର କର୍କଶ ପୂର୍ଣ୍ଣ । ସେ କଲ୍ୟାଣୀକୁ କହିଲା "ମୋ ସହିତ ଆସ" । କହି ମହୀପାଳ ଫେରିଗଲା······କଲ୍ୟାଣୀ ଗମ୍ଭୀର ଚେହେରା ଦେଖି ଭୀତ ହୋଇଗଲା- ଶୀଘ୍ର ହାତ ଧୋଇ ସ୍ୱାମୀ ପଛେ ପଛେ ଗଲା, ଛାତି ତାର ଥରୁଥାଏ ।

ଛାତ ଉପରେ ଗୋଟିଏ ବଡ଼ ଘର ଥାଏ, ଗୋଳମାଳରୁ ରକ୍ଷା ପାଇବା ପାଇଁ ମହୀପାଳ ସେଠାରେ ବସି କାମକରେ । କଲ୍ୟାଣୀ ଆସିବା ପରେ ସେ ଘର କବାଟ ବନ୍ଦ କରିଦେଲା, ତା'ପରେ ତା'ଆଗକୁ ଆସିତାର ଡରିଲା ଚେହେରାକୁ ନିଜର ନାଲି ଆଖିରେ ସିଧା ଅନାଇଁ ପଚାରିଲା······"ତୁମେ ତୁମ ଭାଇଠାରୁ ଟଙ୍କା ମାଗିଥିଲ ?

କଲ୍ୟାଣୀ ଏକଥା ଶୁଣି ଏଭଳି ଡରି ଯାଇଥିଲା ଯେ ତା' ମୁହଁରୁ ହଁ କି ନାହିଁ କିଛି ବାହାରିଲା ନାହିଁ । ମହୀପାଳ ପୁଣି ପଚାରିଲା·········"କୁହ ଟଙ୍କା ମଗାଇଥିଲ କାହିଁକି ?

"ଗଲା ମାସରେ ତୁମେ କହୁଥିଲ ଯେ ବାହାର ରୟାଲଟି ଏଥର ଡେରିରେ ମିଳିବ । ଶ୍ରେଷ୍ଠ ଭାଇର ବରଯାତ୍ରୀ ଏ ସହରରେ ଆସି ... ... "

"ଶ୍ରେଷ୍ଠ ଭାଇର ବରଯାତ୍ରୀ ସହରକୁ ଆସୁ କିମ୍ବା ଜଙ୍ଗଲକୁ ଯାଉ, କିନ୍ତୁ ତୁମେ ଟଙ୍କା ମାଗିଲ କାହିଁକି ? ତୁମେ ବାହାର ଲୋକଙ୍କ ପାଖରେ ମୋର ବଦ୍‌ନାମ କରୁଛ ?"

"ଭାଇନାଙ୍କୁ ମାଗିବାରେ ... ... ... "

ଭାଇନା ହୁଅନ୍ତୁ କିମ୍ବା ଶଳା ହୁଅନ୍ତୁ ତୁମେ ମତେ ନ ପଚାରି କାହିଁକି ଟଙ୍କା ମାଗିଲ ? ତୁମେ ମତେ କହିଲ ନାହିଁ କାହିଁକି ? ତୁମେ ବାହାରର ଅନ୍ୟ ମାନଙ୍କ ଆଗରେ ଏଭଳି ଶ୍ରେଷ୍ଠକଲ କାହିଁକି ? କୁହ ।"

"ଭୁଲ୍ ହୋଇଗଲା ... ... ଭାଇନା ... ..."

ଭାଇନାଙ୍କ ଭଉଣୀ, "ଜୋରରେ ଗୋଟିଏ ଆପଡ଼ ଯାଇ କଲ୍ୟାଣୀ ଛୁଆ ପିଲାଙ୍କର ମାଆ, ଅଠତରଶ ବର୍ଷର ପୌଢ଼ା ଗୃହିଣୀ ଶାରଦାକ, ତା ଠାରୁ ଅଧିକ

ମାନସିକ ଆଘାତ ପାଇ ବିମୂଢ଼ ହୋଇଗଲା, "ହାରାମ୍ ଯାଦ ତୁ ମୋର ସମସ୍ତ ସମ୍ମାନ ମାଟିରେ ମିଶାଇ ଦେଲୁ, ହାରାମ୍ ଯାଦ ତୁ ସତୀ ହୋଇଛୁ, ତୁ, ତୁ, ତୁ, ... ... ।"

ରାଜଶ୍ରୀ ବାହାରେ କବାଟ ଆଢ଼ୁଆଳରେ ଚୁପ୍ ହୋଇ ଛିଡ଼ା ହୋଇ ଶୁଣୁଥାଏ । ବାପାଙ୍କ ଭୟଙ୍କର ଚେହେରା ଦେଖି ସେ ଏବଂ ଶକୁନ୍ତଳା ଦୁହିଁଙ୍କର ମନେ ହେଲା ଯେ ବର୍ତ୍ତମାନ ବାପାମାଆଙ୍କର କଜିଆ ହୋଇପାରେ । ସେମାନେ ତଥା ଅନ୍ୟ ସବୁ ବୁଝିବା ପିଲାଏ ଜାଣିଥିଲେ ଯେ ଏହାର ଏକମାତ୍ର କାରଣ ହେଉଛି ଡକ୍ଟର ଶୀଲଙ୍କ ସହିତ ସେମାନଙ୍କର ପିତାଙ୍କର ପ୍ରେମପୂର୍ଣ୍ଣ ସମ୍ପର୍କ । ଏହି କାରଣରୁ ରଞ୍ଜ୍ୟା କୌତୂହଳ-ବଶତଃ ସବୁକଥା ଶୁଣିବାକୁ ଉପରକୁ ଦୌଡ଼ି ଆସିଥିଲା, ମାଆର ବିକଳ କାନ୍ଦଣା, ପିତାଙ୍କର ଧମକ......"ଚୁପ୍ ଖବରଦାର ଯେପରି କୌଣସି ଶବ୍ଦ ବାହାରକୁ ନଯାଏ, "ତାପରେ ମାଆର କାନ୍ଦିବା ଅବସ୍ଥାରେ କିଛି କହିବା ପୁଣି ଆଘାତପାଇ ଚିତ୍କାର କରିବା, ବିକଳ ହୋଇ କାନ୍ଦିବା, ପିତାଙ୍କର ଅସ୍ପଷ୍ଟ ଧମକ ମାରଧର ଧକ୍କାଦେବା ଆଦି ଶବ୍ଦରେ ରାଜଶ୍ରୀର ଆତଙ୍କ ଆହୁରି ବଢ଼ିଗଲା । ସେ କାନ୍ଦି କାନ୍ଦି ଜୋରରେ ଦୁଆର ବାଡ଼େଇ ଚିତ୍କାର କଲା, "ବାପା, ବାପା ଦୟାକରି ଦୁଆର ଖୋଲନ୍ତୁ, ଖୋଲନ୍ତୁ ମାଆକୁ ଆଉ ମାରନ୍ତୁ ନାହିଁ......ବାପା......ଶକୁନାନି ।"'

କାନ୍ଦିବା ଅବସ୍ଥାରେ ଏହି ଚିତ୍କାର ହସ୍ତକ୍ଷେପ ପ୍ରକ୍ରିୟା ଭୈରବୀର ସ୍ୱର ପରି ଶୁଣାଗଲା । ଦୁଆର ସାଙ୍ଗେ ସାଙ୍ଗେ ଖୋଲିଗଲା, କଲ୍ୟାଣୀ ନିଜେ ଦୁଆର ଖୋଲିଥିଲା । ରାଜଶ୍ରୀ ମାଆଙ୍କୁ ଦେଖି ଦେଖି ଜାବୁଡ଼ି ଧରିଲା ତା'ର ସମସ୍ତ ସଂଯମର ବନ୍ଧ ଭାଙ୍ଗିଗଲା, ମହିପାଲ ତଳକୁ ମୁହଁ ପୋତି ଠିଆ ହୋଇଥିଲା । ତା'ର ମନରେ କ୍ରୋଧ ଓ ଲଜ୍ଜା ଉଭୟେ ପ୍ରତିକ୍ରିୟା ସୃଷ୍ଟି କରୁଥିଲେ । ଏବଂ ଝିଅ ଆଗରେ ସେ ବେଶି ଲଜ୍ଜିତ ହୋଇ ଯାଉଥିଲା ।

ଏହି ସମୟରେ ଶକୁନ୍ତଳା ମଧ୍ୟ ଅନାମିକାକୁ କାଖେଇ ସେଠାରେ ପହଞ୍ଚିଲା । ଲୁହ ପୋଛି କଲ୍ୟାଣୀ ଝିଅମାନଙ୍କୁ କହିଲା......" ଚାଲ, ମୁଁ ଯାଉଛି ତଳକୁ ।"

କିନ୍ତୁ ପିଲାଏ ସେଠାରୁ ଗଲେନାହିଁ । ମହିପାଲ ହଠାତ୍ କବାଟ ପାଖକୁ ଚାଲି ଆସିଲା, ରଞ୍ଜ୍ୟା ଏବଂ କଲ୍ୟାଣୀ ଛାତ ଉପରକୁ ଚାଲି ଆସିଲେ । ମହିପାଲ କଲ୍ୟାଣୀ ପାଦ ଛୁଇଁ କହିଲା "ମତେ କ୍ଷମା କରିଦିଅ ।" ଏହିକଥା ସେ ଝିଅମାନଙ୍କୁ ମଧ୍ୟ କହିଲା ଏବଂ ତଳକୁ ଚାଲି ଆସିଲା, ଘରୁ ବାହାରି ଚାଲିବାକୁ ଲାଗିଲା । ଗଳିଲି ରାସ୍ତା, କଚେରୀ, କଲେଜ ସବୁ ପଛକୁ ପକାଇ ସେ ଆଗକୁ ଚାଲିଲା । ସାମ୍ନାରେ ମ୍ୟୁଜିୟମ କୋଠା ଦେଖାଗଲା, ମ୍ୟୁଜିୟମର ପୋର୍ଟିକୋରେ ମହିପାଲ ଏଭଳି ଶାନ୍ତ ହୋଇ ବସି ପଡ଼ିଲା । ଯେପରିକି ପୂର୍ବ ଐତିହ୍ୟ ସାମଗ୍ରୀରେ ଭରା ମ୍ୟୁଜିୟମ ଭିତରେ ତା' ନିଜର ଖଣ୍ଡ ବିଖଣ୍ଡ ବ୍ୟକ୍ତିତ୍ୱ ଶରଣ ଲୋଡ଼ିଲା ।

ଦୀର୍ଘଶ୍ୱାସରେ ତା'ର ହୃଦୟସ୍ଥ ବିଦାଗ୍ନି ବାହାରି ଗଲା, ରାତିର ନିସ୍ତବ୍ଧ ସଡ଼କ ପରି ତା'ର ମନ ଶୂନ୍ୟତାରେ ଭରିଗଲା । ପାପ, ପୁଣ୍ୟ...ଧର୍ମ, ଅଧର୍ମର, ଚିନ୍ତାରେ, ମନ ତାର ଅବରୁଦ୍ଧ ହୋଇଗଲା । ସେ ଦସ୍ୟୁକୁ "ବ୍ୟକ୍ତିତ୍ୱବାନ ବ୍ୟକ୍ତି, ସିଦ୍ଧାନ୍ତବାଦୀ ଅଥଚ କ୍ରୁର, ନିଷ୍ଠୁର ତଥା ଅବିବେକୀ ଓ ସିଦ୍ଧାନ୍ତହୀନ ମଧ୍ୟ ଅଟେ । ତା' ପାଇଁ ସତ୍ ଅସତ୍‌ର ଆଉ କିଛି ଅଲଗା ସଂଜ୍ଞା ନାହିଁ, ହାସ୍ୟରେ ଅଶ୍ୱାରା ..ତୁ ସିଏ କୁଆଡ଼େ ? କିଏରୁ କିଏ ? ତୁ କୌରବରାଜ ଦୁର୍ଯ୍ୟୋଧନ ପରି ଧର୍ମକୁ ଜାଣୁ କିନ୍ତୁ ସେଥିରେ ତୋ'ର ପ୍ରବୃତ୍ତି ନାହିଁ, ତୁ ଅଧର୍ମକୁ ମଧ୍ୟ ଜାଣୁ ମାତ୍ର ସେଥିରୁ ତୋ'ର ନିବୃତ୍ତି ମଧ୍ୟନାହିଁ, 'ମୋ ହୃଦୟରେ ଥିବା ଦେବତା ଯାହା କହନ୍ତି ଠିକ୍ ସେଇଆ ମୁଁ କରୁଛି ।"......କିନ୍ତୁ ସେ ଦେବତା ମଧ୍ୟ ଏବେ ମୂକ ହୋଇ ଯାଇଛନ୍ତି, କିଛି କହୁନାହାନ୍ତି, ମୋ ଦ୍ୱାରା କିଛି କରାଉନାହାନ୍ତି ମଧ୍ୟ ।

ଶକୁନ୍ତଳାର ବିବାହ, ପିଲାଙ୍କ ପାଠପଢ଼ା, ସେମାନଙ୍କ ସୁଖ ସୁବିଧା, ସେମାନଙ୍କର ଭବିଷ୍ୟତ, ପତିବ୍ରତ ଧର୍ମ, ପ୍ରେମିକର ଧର୍ମ, ସାହିତ୍ୟିକ ହିସାବରେ ଦେଶପ୍ରତି ତା'ର କର୍ତ୍ତବ୍ୟ, ଅମର ହେବାର ମହତ୍ତ୍ୱାକାଂକ୍ଷା ସୁଖ ସୌଭାଗ୍ୟ ପୂର୍ଣ୍ଣ ଜୀବନ କଟାଇବାର ଲୋଭ ତପସ୍ୱୀଙ୍କ ପରି ଆଶ୍ରମବାସୀ ହୋଇ ସାହିତ୍ୟ ସାଧନା କରିବାର ସ୍ୱପ୍ନ...ଚତୁର୍ଦ୍ଦିଗର ଅସଫଳତା ବିରୋଧ ଏ ସମସ୍ତ ମିଶି କେବଳ ଗୋଟିଏ ମାତ୍ର ଇଚ୍ଛା ...ବଞ୍ଚି ରହିବାର ଇଚ୍ଛାକୁ କୁଣ୍ଠିତ କରାଉଥିଲା । ବହୁତ ଭାବି ମଧ୍ୟ ଶେଷରେ ମହିପାଲ କିଛି ଭାବିପାରୁ ନଥିଲା, ସ୍ଥିର ମଧ୍ୟ କୌଣସି ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରୁନଥିଲା । ଭଙ୍ଗା ମୂର୍ତ୍ତିଙ୍କ ସହିତ ଏକ ଭଗ୍ନ ମଣିଷ ବସି ରହିଥିଲା । ହାୟ...ହାୟ ପ୍ରତ୍ୟେକ ନିଶ୍ୱାସରୁ ଯେପରି ଏହି ଶବ୍ଦ ବାହାରି ଆସୁଥିଲା । ବାସ ଏଇ ହାୟ ହିଁ ବର୍ତ୍ତମାନ ତା' ପାଇଁ ଅନ୍ତହୀନ ଜଣା ଯାଉଥିଲା ...।

# ପଚାଶ

ଗିରିଗୋବର୍ଦ୍ଧନର ଭରତପୁର ଅଞ୍ଚଳରେ ଗୋଟିଏ ପୁରୁଣା ବଡ଼ କୁଣ୍ଡ ପାଖରେ ଗୋଟିଏ ବିରାଟ ବରଗଛ ଦ୍ୱିପହରର ଗ୍ରୀଷ୍ମରେ ସଜ୍ଜନ ଓ କନ୍ୟା ଖାଇସାରି ବିଶ୍ରାମ ନେଉଥିଲେ । ମୟୂରମାନଙ୍କ କାଁ କାଁ ଧ୍ୱନିରେ ଗିରିଗୋବର୍ଦ୍ଧନ ମୁଖରିତ ହେଉଥାଏ । ଜଣେ ଡାକିଲେ ବାକିଆଉ ଅନ୍ୟସବୁ ମୟୂର ଡାକି ଉଠୁଥାନ୍ତି । ଏମାନେ ଚୁପ ହେଲା ବେଳକୁ ଗ୍ରେଟ ଗ୍ରେଟ ଚଢ଼େଇଙ୍କର କିଚିରି ମିଚିରି ଶୁଣାଯାଉଥାଏ, କନ୍ୟା ଟିଫିନ୍ କେରିଅର ଡବାଗୁଡ଼ିକୁ ସଜାଡ଼ି ରଖିଲା । କିଛି ଦୂରରେ ବୃବେଷ୍ଟି ମାଙ୍କଡ଼ ଆଉ କିଛି ପାଇବା ଲୋଭରେ ଅନାଇଁ ଥାଆନ୍ତି, ମାଙ୍କଡ଼ମାନଙ୍କ ଉପସ୍ଥିତି ଯୋଗୁଁ ଏମାନଙ୍କ ମଧ୍ୟାହ୍ନ ଭୋଜନ ଆତଙ୍କର ସହିତ ଖାଇଲେ ମଧ୍ୟ ମଜା ଲାଗୁଥିଲା । ଡବା ଉପରେ କନ୍ୟାର ଶାଲଗାଙ୍କି ତା'ଭିତରୁ ସାଣ୍ଡୱିଚ୍, ପେଡ଼ା ଓ ମିଠା କାଢ଼ି ଖାଇବାରେ ଖାସ୍ ଅନ୍ୟ ଏକ ପ୍ରକାର ଆନନ୍ଦ ଥିଲା । ମାଙ୍କଡ଼ମାନେ ଖେଙ୍କାରି ହେଉଥିଲେ ସୁଙ୍କା ଲାଠି ଡରରେ ଦୂରେରେ ରହୁଥିଲେ । ଲୁଟ୍'ମଣା ହେଲାପରେ ଏମାନେ ଶ୍ରୀକୃଷ୍ଣଙ୍କ ଏହି ସାଙ୍ଗୀମାନଙ୍କୁ ଫଳ ଓ ନିଜ ଖାଇବା ଜିନିଷର କିଛି ଅଂଶ ଦେଇ ଦେଉଥିଲେ । ସଜ୍ଜନ କହିଲା''...କମ୍ରେଡ଼, ଆଉ କିଛି ପେଡ଼ା ଏମାନଙ୍କ ଆଡ଼କୁ ଫୋପାଡ଼ି ଦିଅ ।"

"ବର୍ତ୍ତମାନ ଆଉ ନୁହଁ । ତଳେ ଡ୍ରାଇଭର ଅଛି ।"

"କାହିଁକି, ସେ ତାର ଖାଇବାର ବ୍ୟବସ୍ଥା କରି ଆସିନଥିବ ?"

"ତା ହେଲେ ବି ସବୁଦିନ ତ ସେ ଆଉ ଫଳ ଓ ମିଠାଇ ଖାଇବାକୁ ପାଉନି ।"

"ଆଉ ଏ ମାଙ୍କଡ଼ମାନେ କେବେଠୁଁ ଗ୍ରେଜ୍ ଗ୍ରେଜ୍......"

ମୋ ନିକଟରେ ପଶୁମାନଙ୍କଠାରୁ ମଣିଷର ମହତ୍ତ୍ୱ ଅନେକ ବେଶୀ ।

"କମ୍ରେଡ଼ ଏ ଗିରି ଗୋବର୍ଦ୍ଧନକୁ ଆସି ନିଜ ପ୍ରଗତିଶୀଳ ଚିନ୍ତାଧାରାକୁ କିଛି ସମୟ ପାଇଁ ପ୍ଲିଜ ଭୁଲିଯାଅ, ଜୀବ ମାତ୍ରେକ ସମସ୍ତେ ସମାନ......ସଭିଏ ସମାନ... ସଭିଙ୍କ ଗୋଟିଏ ପ୍ରାଣ, ଅଭିମାନ ତ୍ୟାଗକରି କରସବେ ହରିନାମ, ସିଗାରେଟ୍‌ର ତଲବ ଲାଗିଲାଣି କମ୍ରେଡ଼ ।"

"ତା' ହେଲେ ସିଗାରେଟ ଟାଣ ।"

"ନାହିଁ...ନାହିଁ...ଗୋପାଳଙ୍କ ଏଇ ପଦ୍ମଜ ଭୂମିରେ ...

"ସବୁ ଭୂମି ଗୋପାଳଙ୍କର......

ମନରେ ସବୁ ଭୁଲ ଧାରଣା—ହାଃ...ହାଃ... ବୁଝିଲି କନ୍ୟାଦେବୀ ତୁମ ପାଖରେ ମୁଁ ହାରଗଲି ।"

ଟିଫିନ୍ କେରିଅର ବନ୍ଦ କରିବା ପୂର୍ବରୁ ସ୍ୱର ଯାଞ୍ଚଟା ପେଡ଼ା କନ୍ୟା ମାଙ୍କଡ଼ଙ୍କ ଆଡ଼କୁ ଫୋପାଡ଼ି ଦେଲା, ତା'ପରେ ଠାକୁଣୀ ବନ୍ଦକରି ହସି ହସି କହିଲା......"ତୁମକୁ ହାତଯୋଡ଼ି କହୁଛି ମହାଶୟ ଏ ହାରଜିତ୍ କଥା ମୋ ସହିତ କରନାହିଁ ।"

"କାହିଁକି" ?

"ଆଜି ହାରିଗଲେ କାଲି ପୁଣି ଜିତିବା ପାଇଁ ବ୍ୟସ୍ତ ହୋଇ ଉଠିବ । ହେ ଦୟାମୟ, ତୁମର ଏ ଆର୍ଟିଷ୍ଟିକ ମୁଡ୍‌ରୁ ମେତେ ରକ୍ଷାକର ।"

ତଳେ ରଖା ହୋଇଥିବା କୋଟ ପକେଟରୁ ସିଗାରେଟ କେସ୍ ବାହାର କରି ସଜ୍ଜନ କହିଲା......"ଆର୍ଟିଷ୍ଟର ଜୀବନ ସଙ୍ଗୀନ ହେବ ଅଥଚ ଆର୍ଟିଷ୍ଟର ମୁଡରୁ ଦୂରେଇ ରହିବ...... ।

"ହୁଁ......ଆର୍ଟିଷ୍ଟିମାନଙ୍କ ମୁଡ଼କୁ ଠିକ୍‌ଭାବରେ ରଖିବା କେବଳ ବେଶ୍ୟା-ମାନଙ୍କ ଦ୍ୱାରା ସମ୍ଭବପର, ଯେତେ ଭଲ ଆଉ ଗୁଣଲୀ ଗୃହିଣୀ ହେଲେ ସୁଦ୍ଧା ତା' ଦ୍ୱାରା ସମ୍ଭବ ପର ନୁହେଁ ।" କନ୍ୟା ଗମ୍ଭୀର ହୋଇ କହିଲା ।

ସଜ୍ଜନ ହାଲୁକା ମନ ପୁଣିଥରେ ସଂଯମୀ ହୋଇଗଲା । ସିଗାରେଟ୍ ଲଗାଇ ନିଜ ମନୋଭାବକୁ ଗୁପ୍ତରଖି କହିଲେ... "ତୁମେ ତ ସବୁ ଆର୍ଟିଷ୍ଟମାନଙ୍କୁ ଜବରଦସ୍ତି ବଦନାମ କଲ । ମୋ ମତରେ ଆର୍ଟିଷ୍ଟିମାନଙ୍କ ଅନ୍ତର ମୁଖ୍ୟତଃ ପବିତ୍ର । ଯେତେ ବି ଅସଂଯମୀ ଜୀବନ ଯାପନ ହେଉ ନା କାହିଁକି... ..."

"କଥା ପଡ଼ୁଛି ଅସଂଯତ ଜୀବନର । ଏଇଟା କେବଳ ତୁମର କଥା ନୁହେଁ । ମୋ ନିଜ ଧାରଣା ଯେ କଳାକାର ସାଧାରଣତଃ ନିଜର କିଛି ଅଭାବ ବୋଧ କିମ୍ବା ହୀନ ମନ୍ୟତା ଯୋଗୁ ବହୁତ ସମବେଦନା ପାଇଥାଏ—, ଠିକେ ତୁହ ମୁଁ ଆଗେ କହିସାରେ । ...ଅବଶ୍ୟ ଏକଥା ମଧ୍ୟ ସତ ଯେ ପାଇଥିବା ଅମୂଲ୍ୟ ସତ୍ୟକୁ ଠିକ୍ ଭାବରେ ଅନୁଭବ କରିବା କେବଳ ଦାର୍ଶନିକ କିମ୍ବା କଳାକାର ପକ୍ଷରେ ସମ୍ଭବ, କିନ୍ତୁ ଏଇ ସମବେଦନା ଅଙ୍କରେ କଳାକାର ନିଜ ଅଭାବ ଜନିତ ଦୁଃଖ ସହି ସହି ଶେଷରେ ନିଷ୍ଠୁର ହୋଇଯାଏ । ଗୋଟିଏ ସମୟରେ ତା' ମନ ଏଭଳି କଠୋର ହୋଇଥାଏ

ଯେ ତା ପାଇଁ ଅନ୍ୟ କେହି କେତେ ଦୁଃଖ ଓ ଆଘାତ ଯେ ପାଆନ୍ତି ଏକଥା ସେ ଧାରଣା କରିପାରେ ନାହିଁ ।"

"ତୁମର କଥା ସତକି ?"

"ହିଁ" କନ୍ୟା ସଜ୍ଜନର ପଗୁରିବା ଢଙ୍ଗ ଦେଖି ହସି ଉଠିଲି ।

ସିଗାରେଟ୍‌କୁ ଖୁବ୍ ଜୋରରେ ଟାଣି ଧୂଆଁ ଗୁଡ଼ା ସାମ୍ନାରେ ଥିବା ଏକ ଗୌଡ଼ୀୟ ମଠର ଭଗ୍ନାବଶେଷ ଆଡ଼କୁ ଅନାଇଁ ଖୁବ୍ ଧୀର ଓ ଶାନ୍ତ ସ୍ୱରରେ ସେ କହିଲା— "ଦେଖ ଡାର୍ଲିଙ୍ଗ ·· ଏଲଉ ମିଟ୍ ଆଡ଼େସ୍ ଯୁ ଲଇକ ଦ୍ୟାଟ ଏଟ ଦିସ୍ ମୋମେଣ୍ଟ··· ··· ମୁଁ ବର୍ତ୍ତମାନ ଏଇ ମୁଡ୍‌ରେ ରହିଛି । ଦେଖ କଳାକାର ଭାବ ତୁମେ ମତେ କମ୍ବା ଅନ୍ୟ କାହାକୁ ସାଧାରଣ ମଣିଷ, ଏପରିକି ଚିନ୍ତା ଶକ୍ତି ଥିବା ଯେ କୌଣସି ଜୀବଠାରୁ ଅଲଗା କରି ଦେଖ ନାହିଁ । ମୁଁ କଳାକାର ହୋଇ ସୁଦ୍ଧା ତମେ ମୁଁ ସେଇଆ, ଯାହା ତମ ହତଭାଗୀ ସ୍ୱାମୀ ଥିଲେ, ତମ ବାପା ଥିଲେ, ଯିଏ କେହି ହୁଅନ୍ତୁ ନା କାହିଁକି... ଏ ଜଟର ମିଚିର କରୁଥିବା ପକ୍ଷୀ... ଏମାନେ ସବୁ ଯାହା, ମୁଁ ମଧ୍ୟ ସେଇଆ । ଆହାର ନିଦ୍ରା ମୈଥୁନ ଏକଥା ପ୍ରତ୍ୟେକଙ୍କର ଯେପରି ଦରକାର ମୋର ମଧ୍ୟ ଠିକ୍ ସେଇଭଳି ଦରକାର, ଏବଂ ସମ୍ବେଦନ ଶୀଳତା ସାଧାରଣ ଭାବରେ ଯାହା ସମସ୍ତଙ୍କର ରହିଛି ମୋର ମଧ୍ୟ ସେତିକ ଅଛି "

"ସଂକ୍ଷେପରେ କହିଲେ ଜୀବନ ଏକ ଅନୁଭବ ।"

"ଟାଇମ୍‌ର ଠିକ୍ ଓଡ଼ିଆ ଶବ୍ଦ କଣ ?"

"କାଳ...ମହାକାଳ ।"

ମହାକାଳର ଏକ ଅତୁଟ ଧାର, ମହାକାଳକୁ କେବଳ ଜୀବ ଭୋଗିଥାଏ । ମଣିଷ ସବୁ ଜୀବଠାରୁ ବୁଦ୍ଧିରେ ଶ୍ରେଷ୍ଠ ହୋଇଥିବାରୁ ଏହି ମହାକାଳର ଅନୁଭୂତକୁ ହଜାର ପ୍ରକାରରେ ବ୍ୟକ୍ତ କରିବାକୁ ଚାହେଁ । ଅନୁଭୂତରୁ ହିଁ ତା'ର ରଚନାତ୍ମକ ଶକ୍ତିର ବିକାଶ ହୋଇଥାଏ । ଜୀବନରେ ଅନୁଭୂତରୁ ହିଁ ମଣିଷର ଇତିହାସ ରଚିତ ହୁଏ··· ସେ ମଣିଷ କଳାକାର ହେଉ ଅଥବା ଅନ୍ୟ ଯେ କେହି ହେଉ ।"

ମାତ୍ର ଅନୁଭୂତ ତ କେବଳ ମୂକ ବ୍ୟକ୍ତିର କଥା କହିବା ପରି । ମଣିଷ ନିଜ ମନର ଅନୁଭୂତ ସ୍ପଷ୍ଟ ରୂପରେ ବ୍ୟାଖ୍ୟା କରି ପାରେ ନାହିଁ । ତୁମେ କଣ କହିପାରିବ ଯେ ସମ୍ପର୍କରେ ତୁମର ଅନୁଭୂତ କଣ ? ତମ ପାଇଁ କଣ କେବଳ ମୁଁ ଏକ ଆକାର ବିଶିଷ୍ଟ ରୂପ ଅଟେ ? ମୋର ରୂପ ରଙ୍ଗ ଆଦି କେବଳ କଣ ମୋର ସୌନ୍ଦର୍ଯ୍ୟ ?"

"ନା··· ମୋ ଦୃଷ୍ଟିରେ ହେଉ ସୌନ୍ଦର୍ଯ୍ୟ ଜୀବନର ସମସ୍ତ ଅନୁଭୂତି ହୋଇ ପାରେନା କନ୍ୟା, କିନ୍ତୁ ଏକଥା ସତ୍ୟ ଯେ ତମକୁ ଦେଖିବା ପରଠାରୁ ତମକୁ ପାଇବା ପାଇଁ ଏ ମନ ଉଚାଟ ହୋଇଉଠିଥିଲା । ସେ ଦିନ ଜୋର ଜବର ଦସ୍ତିରେ, ଯଦିଓ ସୁଯୋଗର ବାହାନା କଲେ ସୁଦ୍ଧା ମୋଟ ଉପରେ ତମକୁ ପାଇବା ପାଇଁ ଉନ୍ମତ୍ତ ହୋଇ ଉଠିଥିଲି । "ସୁଯୋଗର ବାହାନା ଦେଖାଇବା କଣ ନିଜ ଅନୁଭୂତିରୁ ବାହାରେ ?"

"ସେ କଥା ପରେ କହୁଛି, ମୋ କହିବାର ଉଦ୍ଦେଶ୍ୟ ହେଲା ସେ ଦିନ ତୁମର ଏଭଳି କାର୍ଯ୍ୟ ଅନୁଭୂତ ହେବା ଦେଖି ମଧ୍ୟ ।"

"ଧରି ନିଆଯାଉ ଯେ ମୋର କୌଣସି କନ୍ଦର୍ପ ଅନୁଭୂତି ସେ ଦିନ ହୋଇନ ଥା' ହେଲେ ?"

"ଠିକ୍ ଅଛି ତେବେ ମୋ ତରଫରୁ ତ ମୁଁ ତୁମକୁ କନ୍ଦର୍ପ ଅନୁଭୂତି ଦେଇଛି ।"

"ଖରାପ ଲାଗିଥିଲେ ତୁମେ କେବେହେଲେ ସେ ଅନୁଭୂତିକୁ ବ୍ୟକ୍ତ କରି ନ ଥାନ୍ତା ।"

"ତୁମେ ନିଶ୍ଚିତ ରୂପେ ଉପର ସ୍ତରରେ ରହିଛ କନ୍ୟା, ମୁଁ ଅନୁଭୂତିର କଥା କହୁଛି ସେଥିରେ ଭଲ, ମନ୍ଦର କଥା କିଛି ନାହିଁ ।"

"ତୁମେ ନିଜେ ବର୍ତ୍ତମାନ ଭଲ ମନ୍ଦର କଥା ଆରମ୍ଭ କରିଥିଲ ।" କହି କନ୍ୟା ହସିଲା ।

ତାର ହସ ଦେଖି ସଜ୍ଜନର କାମଇଚ୍ଛା ଜାଗ୍ରତ ହେଲା । ଏଇ ଇଚ୍ଛା ତା'ର ମନେହେଲା ଯେପରି ତପ୍ତଲୌହ ଖଣ୍ଡପରି ତା' ଭିତରେ କାମ କରୁଛି... ତା' ସ୍ପର୍ଶରେ କଠୋର ଆଘାତ ଏବଂ ବେଦନା ଉଭୟ ଅନୁଭବ ହେଉଛି । ଏବଂ ଏଥି ସହିତ ସମସ୍ତ ବସ୍ତୁର ବୃଦ୍ଧି ଆକାର ବିକାର ହୋଇ ଅସ୍ତବ୍ୟସ୍ତ ହୋଇଗଲେ ସୁଦ୍ଧା କନ୍ୟାର ହସ ତା' ହୃଦୟରେ ଏକ ପ୍ରବଳ ବେଗ୍‌ବାନ ସ୍ରୋତପରି ତା' ଶିରାପ୍ରଶିରାରେ ପ୍ରବାହିତ ହେଉଥିଲା । କନ୍ୟାର ଏଇ ଟିକିଏ ହସରେ ସେ ସବୁ ପ୍ରକାର ରୂପରସ ଗନ୍ଧ, ଗୁଞ୍ଜନ ଓ ସ୍ପର୍ଶକୁ ପ୍ରାପ୍ତ କଲା, ପୂର୍ଣ୍ଣତା ଏବଂ ଆନନ୍ଦ ରୂପୀ ଚେତନାଠାରୁ ତାର ବାହ୍ୟ ଜଗତ, ତାର ନିଃଶ୍ୱାସକ୍ରି ସମସ୍ତ କିଛି ଅଲଗା ହୋଇଗଲା । ସେତେବେଳେ ତାକୁ ଏଭଳି ମନେହେଲା ଯେପରିକି କେତେ ପ୍ରକାରର ଅନୁଭବ ଶକ୍ତି ଏକାଥରେକେ ଦୌଡ଼ୁଛନ୍ତି ଏବଂ ପ୍ରତ୍ୟେକ ମିଳିତ ହୋଇ ଗୁଲୁଛନ୍ତି । ତିନି ଚାରି ଫୁଟ ଦୂରରେ ବସିଥିବା କନ୍ୟା ସହିତ ଯେପରି ତାର ଆଉ କୌଣସି ବ୍ୟବଧାନ ନାହିଁ, ତା' ଅନ୍ତର ଯେପରି ତାକୁ ପାଇ ସାରିଛି । ଏ ପ୍ରାପ୍ତି ଦ୍ୱାରା

ସେ ପରିପୂର୍ଣ୍ଣତା ଲାଭ କରୁଛି । ବର୍ତ୍ତମାନ ତା'ର ଆଉ କିଛି ଅଭାବ ନାହିଁ, ସମସ୍ତ ବିକାର ମଧ୍ୟ ଶାନ୍ତ ହୋଇଯାଇଛି । ଗିରିଗୋବର୍ଦ୍ଧନ, କୁଣ୍ଡ, ଗଛର ଓହଳ, ପଶୁପକ୍ଷୀ, ଗୌଡ଼ୀୟ ମଠ, ଖରାରେ ଚମକୁ ଥିବା ଆକାଶ, ସେ ନିଜେ ଓ ଦେହ ଧାରଣୀ କନ୍ୟା ଯାହାକୁ କି ସେ ଏକ ଲକ୍ଷ୍ୟରେ ଅନାଇଁ ରହିଛି··· ଏ ସବୁ ରୂପ ମଧ୍ୟରେ କେହିତ କାହାକୁ ବିରୋଧ କରୁ ନାହାନ୍ତି । ଏ ସବୁଥିରେ ସେ ଓ କନ୍ୟା ଏକାକାର ହୋଇ ଯାଇଛନ୍ତି ।

ସେ ଏକ ବିଚିତ୍ର ମୁହୂର୍ତ୍ତ, ଅନୁଭୂତ ମଧ୍ୟ ବିଚିତ୍ର । ଏଇ ଅନୁଭୂତିର ଶକ୍ତି ଏତେ ତୀବ୍ର ଓ ଶକ୍ତିଶାଳୀ ହେଲେ ମଧ୍ୟ ଏକା ବେଳେକେ ସହଜ ଥିଲା । ଏହି ସହଜାତ ହିଁ ପ୍ରକୃତ ସୌନ୍ଦର୍ଯ୍ୟ, ସଜ୍ଜନ ବର୍ତ୍ତମାନ ସେଇ ସୁନ୍ଦରତାଟିର ପରିପୂର୍ଣ୍ଣି, ଏଇ ପୂର୍ଣ୍ଣତା କନ୍ୟା ସକାଶେ ତାକୁ ପ୍ରାପ୍ତି ହୋଇଛି ।

ସଜ୍ଜନର ଏଇ ତନ୍ମୟତାର ପ୍ରଭାବ କନ୍ୟା ଉପରେ ମଧ୍ୟ ପଡ଼ିଲା, ଏପରିକି ସରଳ ସୁନ୍ଦର ମୁହଁ ତା'ର ପ୍ରିୟତମର, ସେ ଏକାନ୍ତ ରୂପେ ତା' ନିଜର । କନ୍ୟା ସଜ୍ଜନ ଚିନ୍ତାରେ ଭାବୁକ ନ ହୋଇ ବରଂ ଉଲଗଲା, ଇଚ୍ଛା ହେଲା ଏଇ ସରଳ ସୁନ୍ଦର ମୁହଁକୁ ଦୁଇ ହାତରେ ଚିପିଧରି ଚୁମା ଦେଇଦେବାକୁ । ଇସ୍······ ସେ ସବୁ କଣ ଭାବୁଛି ? ବର୍ଷ ବର୍ଷର ଚାପି ରହିଥିବା ବାସନା ଏବେ କେତେ ଶୀଘ୍ର ପଦାକୁ ବାହାରି ଆସିବାକୁ ଚାହୁଁଛି । ତାକୁ ବଡ଼ ଲାଜ ଲାଗିଲା । ମୁହଁ ନାଲି ପଡ଼ି ଆଖି ତଳକୁ ହୋଇଗଲା, ହଠାତ୍ ତା'ର ଏ ଦୁର୍ବଳତା ସଜ୍ଜନ କାଳେ ବୁଝି ପାରିବ ଏ କଥା ଭାବି ନିଜର ଲଜ୍ଜାକୁ ଘୋଡ଼ାଇବା ପାଇଁ କହିଲା··· ··· "କଣ କିଛି ଅନୁଭୂତି ମିଳିଲା କଳାକାର ମହାଶୟ ?"

ସଜ୍ଜନର ଏତେବେଳେ ଧ୍ୟାନ ଭାଙ୍ଗିଲା, ଲଜ୍ଜିତ ହୋଇ ଟିକେହସି କହିଲା··· "ଏଥର ମଧ୍ୟ ତୁମ ନିକଟରେ ମୁଁ ହାରିଗଲି ମାତ୍ର ଏ ହାରିବାରେ ମୁଁ ଜିତି ଯାଇଛି ।"

"ପୁଣି ସେଇ ହାରଜିତ କଥା ? ତୁମେ ଯାହା କୁହ ପଛକେ ମୁଁ ସ୍ଥିର କରିଛି ଯେ ତୁମର ଏ ଆର୍ଟିଷ୍ଟି ମୁଡ଼କୁ ଜମା ଗୁରୁତ୍ୱ ଦେବି ନାହିଁ ।"

"ଚାଲ ଉଠ ।"

"ଟିକେ ରୁହ ·· ସେଇ କବିତା ଟା କଣ ମ··· ।

"କବିତା ନୁହେଁ ଛନ୍ଦ ।"

"ସେ ଯାହା ହେଉନା କାହିଁକି ? କଣ କି ସେ··· ଓଃ···

କନ୍ୟା କଣ ସେଇଟା ?"

"କିଛି ତ ନିଶ୍ଚୟ, କିନ୍ତୁ ସେ ଯେ କଣ ମୋର ମନେ ନାହିଁ, ମୋ'ର ବୁଦ୍ଧି ଶକ୍ତି ରୂପରେ ପ୍ରୋଜବାଧା, ପୋଏଟ୍ରି ମୋର ଜମା ମନେ ରୁହେନ । ଏବେ କହିଲ ଭଲ ?"

"ତେରେ କହେ ସବ ସ୍ୱାଙ୍ଗ କରୌଁଗି... ଆହା ମନେ ପଡ଼ିଲା, ମୋର ପଖସିର ଉପର ରଖିହୌଁ। ଗୁଞ୍ଜକ ମାଇଗଲେ ପହିରୌଁଗି, ଓଢ଼ି ପିତାମ୍ବର ଲୈ ଲକଟି ବନ ଗୋଧନ ଗ୍ୱାଲିନ ସଙ୍ଗ ଫିରୌଁଗି ।

ଭାବତୋ ବୋହି ମେରୋ ରସଖାନ ସୋ ତେରେ କହେ ସବସ୍ୱାଙ୍ଗ କରୌଁଗି,

ଯା ମୁରଲି ମୁରଲୀଧରକୀ ଅଧରାମ ଧରୌଁଗି ଆହା ।

ଭାବତୋ ହେ ତୁ ମେରା ରସଖାନ... ...ଏ କନ୍ୟା ଜଷ୍ଟ ଫର ଏ ସେକେଣ୍ଡ...ଠିଆ ହୁଅ ।"

ସଜ୍ଜନ ତାର ସ୍କେଚବହି ଓ ପେନ୍‌ସିଲ କାଢ଼ିଲା । କହିଲା..." ତୁମେ..."

"କିଛି ନୁହନ, ଠିଆ ହୋଇଯାଅ ।"

ସ୍କେଚ ତିଆରି ହେଲା । କନ୍ୟା...ଶ୍ରୀରାଧା...କୃଷ୍ଣଙ୍କ ବେଶରେ ମୟୂର ଚୂଳ, ବନମାଳା, ପୀତାମ୍ବର ଏବଂ ବାଁ ହାତରେ ଲଠି । ତଳରେ ଡ଼ାହାଣକୁ ଦୁଇହାତ ଶ୍ରୀକୃଷ୍ଣଙ୍କ ହାତ...ବଂଶୀ ଅପଣ କରୁଛନ୍ତି । ଶ୍ରୀରାଧା କନ୍ୟା .. ଆଖିରେ ଲଜ୍ଜା ଓଠରେ ମୃଦୁକ ହସ, କଣ୍ଠରେ କପଟ କ୍ରୋଧ, ଦେହରେ ତ୍ରିଭଙ୍ଗି ଠାଣି ଏବଂ ଡାହାଣ ହାତରେ ମନାକରୁ ଥିବା ଅଙ୍ଗୁଳିଗୁଡ଼ିକରେ ଯୌବନର ଚପଳତା ।

କନ୍ୟାକୁ ଏ ପ୍ରକାର "ଖେଳ"ରେ ଖୁବ ମଜା ଲାଗୁଥାଏ । "ସେ କଳାକାରକୁ ପ୍ରେରଣା ଦେଉଥିବା ମହାଶକ୍ତି ରୂପେ କାମ କରୁଛି"...... ଏ ପ୍ରକାର କଲ୍‌ଚରାଲ ବିଶ୍ୱାସ ସେ ସାଧାରଣତଃ ନାପସନ୍ଦ କରିଥାଏ । ସଜ୍ଜନ......ଜଣେ ପୁରୁଷ ପ୍ରତି ନିଜକୁ ସମର୍ପିତ କରୁଛି ବାସ୍ ଏତିକି ମାତ୍ର ସେ ଜାଣିଛି । ସଜ୍ଜନ କଳାକାର, ଧନୀ ସନ୍ତାନ ଏ ଖିଆଲ ଅବଶ୍ୟ ତା' ମନରେ ରହୁଛି । ସେ ଜଣେ ଧନୀ ଓ ମହତ୍ତ୍ୱ ପୂର୍ଣ୍ଣ ବ୍ୟକ୍ତିର ସ୍ତ୍ରୀ ଓ ପ୍ରିୟତମା ହେବାକୁ ଯାଉଛି ଏ କଥା ମଧ୍ୟ ତା'ମନରେ ରହୁଛି । କିନ୍ତୁ ପ୍ରଥମ ଓ ମୁଖ୍ୟ କଥାହେଲା ସଜ୍ଜନ ଯିଏକି ଜଣେ ପୁରୁଷକୁ ସେ ତା'ର ନିଜର ବୋଲି କହିପାରିବ । ପରଦିନ ରାତରେ ସଜ୍ଜନ ଯେତେବେଳେ ଫେରିଲା ନାହିଁ ତା' ବିରହରେ କନ୍ୟା ଏକଥା ଅନୁଭବ କଲା ଯେ ଯଦିଓ ବାହାରକୁ ସେ ନିଜକୁ ଶକ୍ତ କରିବାର ତୁଳନା କରିଥାଏ, କିନ୍ତୁ ଅସଲରେ ସେ ସଜ୍ଜନ ପାଖରେ ସମ୍ପୂର୍ଣ୍ଣ ଭାବରେ ବନ୍ଧା ପଡ଼ି ଯାଇଛି । ଏକଥା

ଠିକ୍ ଯେ ଯେଉଁଦିନ ଠାରୁ ସଜ୍ଜନ ଆଖି ତା' ପ୍ରତି ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଦେଖିଥିଲା, ସେଇଦିନ ଠାରୁ ସେ ମଧ୍ୟ ସଜ୍ଜନର ପ୍ରେମରେ ନିଜକୁ ସମାହିତ କରିଥିଲା । ଏଥିରୁ ଦୂରେଇ ହୋଇ ରହିବାର ପ୍ରଚେଷ୍ଟାବେ ରେ ବିଫଳ ହୋଇଛି । ସଜ୍ଜନର ଜିଦରେ ସେ ନିଜକୁ ସମପ ଦେଇଥାଏ । ସ୍ତ୍ରୀମାନଙ୍କର ଅଧିକାର ପୁରୁଷମାନଙ୍କର ଅତ୍ୟାଚାର, ତା'ର ପୁରୁଷ ବିଦ୍ୱେଷୀ ମନୋଭାବ ନିଜକୁ ଅଧିକ ମହତ୍ତ୍ୱ ଦେବାର ଅଭ୍ୟାସ, ପଠନ ପାଠନ, ଚିନ୍ତନ ଦର୍ଶନ ଆଦି ତାର ଯେତିକି ବିଶେଷ ଗୁଣଥିଲା ଏ ସମସ୍ତ ସଜ୍ଜନର ଆଗ୍ରହ ସାମ୍ନାରେ ନିସ୍ତେଜ ହୋଇଯାଉଥିଲେ । ସଜ୍ଜନ ତା'ର ମନରେ ଇପ୍ସିତ ହିଁ ପୁରୁଷ ଥିଲା । ଯେଉଁ ନାରୀ ଏ ଯାଏ କୌଣସି ପୁରୁଷର ଲାଳସା ପୂର୍ଣ୍ଣ ଦୃଷ୍ଟିକୁ ବରଦାସ୍ତ କରି ନଥିଲା, ଯିଏ ନିଜ ଜୀବନରେ ତିନି ତିନି ଜଣ ପ୍ରେମ ଯାଚକଙ୍କୁ ଧିକ୍କାର କରି ତଡ଼ି ଦେଇଥିଲା ସେଇ ନାରୀ ଆଜି ସଜ୍ଜନ ଦ୍ୱାରା ପରାଭୂତ । ତା'ର ଏ ପରାଜୟ ପରଦିନ ସାରାରାତି ଲୁହରେ ଭିଜାଇ ମଧ୍ୟ ଅପମାନ ଜନକ ଲାଗୁ ନ ଥିଲା, କାଲି ଦ୍ୱିପହର ପର୍ଯ୍ୟନ୍ତ ବୃନ୍ଦାବନର ଗଳି କନ୍ଦିରେ ଘୂରି ଘୂରି ଶାରୀରିକ ତଥା ମାନସିକ କ୍ଳାନ୍ତ ଓ ଅବସାଦରେ ଯେତେବେଳେ ଥକି ଯାଇଥିଲା, ସେତେବେଳେ ତା'ର ଭବିଷ୍ୟତ ଅନ୍ଧକାର ଓ ଭୟଙ୍କର ଘୂର୍ଣ୍ଣୀ ସଦୃଶ ମନେ ହେଉଥିଲା, ସେ ଯେତେବେଳେ ଲକ୍ଷ୍ନୌ କମ୍ବା ମଥୁରା ଫେରି ନ ଯିବାର ସକଳ୍ପ ମନେ ମନେ କରୁଥିଲା, ନିଜର କୌଣସି ପରିଚିତ ଆତ୍ମୀୟ ବନ୍ଧୁଙ୍କୁ ଆଉ ମୁହଁ ଦେଖାଇବି ନାହିଁ ବୋଲି ସ୍ଥିର କରିଥିଲା ଠିକ ସେତିକିବେଳେ ସେବା କୁଞ୍ଜ ପାଖରେ ଗୋଟିଏ ଗଳିରେ ସଜ୍ଜନ ତା' ନାଁ ଧରି ଡାକିଲା, ସେଇ ସ୍ୱର ଶୁଣି ସେ ଯେପରି ସମ୍ମୋହିତ ହୋଇଗଲା । ଗୋଟିଏ ଗୃହ ସାମ୍ନାରେ ସଜ୍ଜନକୁ ଦେଖି ସେ ଭାଙ୍ଗି ପଡ଼ିଲା, ମୁହଁ ଖୋଲି ଅବସ୍ଥାରେ ଦୀର୍ଘଶ୍ୱାସ ବାହାରିଗଲା, ଦି ହାତରେ ସେ ଛାତିକୁ ଜାବୁଡ଼ି ଧରିଲା, ଦଶ ପାହୁଣ୍ଡ ଦୂରରେ ଠିଆ ହୋଇଥିବା ସଜ୍ଜନ ପାଖରେ ପହଞ୍ଚିବା ପାଇଁ ତା' ପାଦ ଯେପରି ଅଚଳ ହୋଇଯାଇଥିଲା, ମୁଣ୍ଡ ଘୂରାଇ ଦେଲା, ଗୋଡ଼ ଥରୁଥିଲା । ଯଦି ସଜ୍ଜନ ଶୀଘ୍ର ତାକୁ ନିଜର ଶକ୍ତ ହାତ ବଢ଼ାଇ ଧରି ପକାଇ ନଥାନ୍ତା ତେବେ ସେ ସେ ସେଠାରେ ପଡ଼ି ଯାଇଥାନ୍ତା । ତାର ଅବସ୍ଥା ଦେଖି ସଜ୍ଜନର ସମସ୍ତ ବୈରାଗ୍ୟ କୁଆଡ଼େ ଉଭେଇ ଗଲା ତାର କଠୋରତା ଯେପରି ଭାଙ୍ଗା ପଥର ପରି ବାରମ୍ବାର ତା' ହୃଦୟକୁ ଆଘାତ କରୁଥିଲା । ସଜ୍ଜନ ସେଇ ସମୟରେ ଜଣେ ବଙ୍ଗାଳୀ ବିଧବା ଘରେ ରାଧା ମାଧବ ବିଗ୍ରହଙ୍କ ଛବି ଆଙ୍କି, ବିନିମୟରେ ତା'କୁ ପାଞ୍ଚ ଟଙ୍କା ଦେଇ ଆଶୀର୍ବାଣୀ ଶୁଣୁ ଶୁଣୁ ତା' ଘରୁ ବାହାରୁ ଥିଲା, କନ୍ୟାକୁ ସେ ସେଇ ଘର ଭିତରକୁ ନେଇ ଆସିଲା । ବୈଷ୍ଣବୀ ରାଧାମାଧବଙ୍କ ସାକ୍ଷାତ ଆଶୀର୍ବାଦ ଓ ଟଙ୍କା ଲୋଭରେ ଯଥେଷ୍ଟ ପରିଚର୍ଯ୍ୟା କଲା, ଖଟରେ ବିଛଣା ପକାଇ କୂଅରୁ ପାଣିକାଢ଼ି, ସଜ୍ଜନ ଠାରୁ ଟଙ୍କା ନେଇ ବିହା କରି, ପୁରି ଲୁଚି, ତରକାରୀ, ଖୀର ଭାତ ଆଦି ରାନ୍ଧି ରାଧାମାଧବଙ୍କୁ ଭୋଗକରି ଏବଂ ଏ ଦୁହିଁଙ୍କୁ ଖୁଆଇ, ମିଠାକଥା କହି, ବୋହୂ, ମୁଣ୍ଡରେ ସିନ୍ଦୂରର ଅଭାବ ଦେଖି କୃତ୍ରିମ କୋପକରି ପରିଶେଷରେ ବିଦାୟ ସମୟରେ ଶ୍ରୀରାଧାଙ୍କ ଗଳାର ମାଳ ସଜ୍ଜନକୁ ଓ ଶ୍ରୀକୃଷ୍ଣଙ୍କ ମାଳ

କନ୍ୟାକୁ ପିନ୍ଧାଇ ବହୁ ଆଶୀର୍ବାଦକରି ବିଦାୟ ଦେଲା । ସଜ୍ଜନ ତା'ର ମନିବ୍ୟାଗ କନ୍ୟା ହାତକୁ ବଢ଼ାଇ ଦେଇ ସେଥିରେ ପଇସା କାଢ଼ି ବୈଷ୍ଣବୀକୁ ଦେବାପାଇଁ କହିଲା । ବୈଷ୍ଣବୀର ଖାଲିଘରେ ସେମାନେ ପ୍ରାୟ ୪ ଘଣ୍ଟା କଟାଇଲେ ମାତ୍ର ବିଶେଷ କିଛି କଥାବାର୍ତ୍ତା କରିପାରିଲେ ନାହିଁ, ଦେହ କିପରି ?.........ଭଲ ଅଛି......କେବେ ଆସିଲ ?......ସକାଳେ, ନିଅ ପାଣିଟିକେ ଦିଅ, ଆଉ ଟିକେ ଚାହା ଦେବ ? ... ... କନ୍ୟା ମୋତେ କ୍ଷମା କରିଦିଅ,"...ଇତ୍ୟାଦି ବାଛି ବାଛି ଦୁଇ ଚାରିଟା କଥାରୁ ଅଧିକ କଥା ହୋଇ ପାରିଲା ନାହିଁ, ଦୁଇ ଜଣ ମୌନ ସଂବେଦନାରେ ଅଭିଭୂତ ରହିଲେ । ସନ୍ଧ୍ୟାରେ ମଥୁରା ଫେରିବା ପରେ ଘରେ ପହଞ୍ଚିବା ପୂର୍ବରୁ ସଜ୍ଜନ କନ୍ୟା ପାଇଁ ସାଢ଼େ ଆଠଶହ ଟଙ୍କାର ବ୍ରୋକେଟ ଶାଢ଼ୀ କିଣିଲା, ଦାମୀ ଲୁଗାପଟା କନ୍ୟାର ମୁତା ଭାଉଜଙ୍କ ବାନ୍ଧବୀ ଓ ତାଙ୍କ ସ୍ୱାମୀଙ୍କ ପାଇଁ ମଧ୍ୟ କିଣା ହେଲା, କନ୍ୟା ଗୋଡ଼ରେ ପୁରୁଣା ଚଟି ଦେଖି ଆଗ୍ରହ କରି ନୂଆଚଟି ହଳେ ମଧ୍ୟ କିଣିଲା, ସୌଖିନ ଭ୍ୟାନିଟି ବ୍ୟାଗ ଓ ଦାମୀ ଶାଲ୍ ମଧ୍ୟ କିଣିଲା । କନ୍ୟା ଧୀର ସ୍ୱରରେ ଥରେ ଦୁଇଥର ମନା ମଧ୍ୟ କଲା, କିନ୍ତୁ ସଜ୍ଜନର ଆଗ୍ରହକୁ ସେ ଅଗ୍ରାହ୍ୟ କରିପାରିଲା ନାହିଁ । ଘଣ୍ଟେ ଦୁଇ ଘଣ୍ଟା ମଧ୍ୟରେ ପ୍ରାୟ ବାରଶ ଟଙ୍କାର ଜିନିଷ କିଣି କନ୍ୟା ଓ ସଜ୍ଜନ ଘରକୁ ଫେରିଲେ । ଘରେ ଗୃହ ସ୍ୱାମୀଙ୍କ ସାମ୍ନାରେ କନ୍ୟା ଓ ସଜ୍ଜନ ଉଭୟେ ଲୈଲା ମଜନୁଙ୍କ ପରି ଏପରି ବ୍ୟବହାର କଲେ ମୁରଲୀ ମନୋହରଙ୍କ ମନରେ ଉପୁଜି ଥିବା ସମସ୍ତ ଆଶଙ୍କା ଓ ସଂଦେହ ଦୂର ହୋଇଗଲା । ମୁରଲୀ ମନୋହରଙ୍କ ସ୍ତ୍ରୀ ଯଦିଓ କନ୍ୟାକୁ ପୂର୍ବ ବିଶ୍ୱାସ କରୁ ନ ଥିଲେ ତେବେ ବି ଏ ବିବିଧ ବ୍ୟବହାରରେ ଖୁସିଥିଲେ । ରାତିରେ ସଜ୍ଜନର ଅନୁରୋଧରେ ନୂଆ ଶାଢ଼ୀ ପିନ୍ଧି ଦୁଇଜଣ ସିନେମା ଦେଖିବାକୁ ଗଲେ ।.........ଆଉ ଆଜି ଦୁହେଁ ଗୋବର୍ଦ୍ଧନ ବୁଲି ଆସିଛନ୍ତି ।

ସଜ୍ଜନ ତାର ରାଧାକୁ ରସଖାନ୍‌ଙ୍କ ଛନ୍ଦରେ ବର୍ଣ୍ଣିତ ରାଧାଙ୍କ ପରି ଆଙ୍କିଥିଲା, ରଙ୍ଗ୍ ସ୍କେଚରେ ମୟୂର ଚୂଳ ବନମାଳା ପୀତ ବସନ ଧାରଣୀର ଚେହେରା ଅପୂର୍ବ ଦିଶୁଥିଲା । ପୁରୁଷ ବେଶରେ ମୁରଲୀ ନ ଦେବାପାଇଁ ମନା କରୁଥିବା କନ୍ୟା ରାଧାର ସ୍ତ୍ରୀ ଭାବରେ ଏଭଳି ଅଦ୍‌ଭୁତ ସୁନ୍ଦର ଢଙ୍ଗରେ ସଜ୍ଜନ ଆଙ୍କିଥିଲା ସେ ନିଜେ ତା'ର ଏଇ ସୃଷ୍ଟିରେ ମୁଗ୍‌ଧ ହୋଇ ଗଲା । ସେ ଏକ ଲୟରେ ନିଜେ ଆଙ୍କିଥିବା ସ୍କେଚକୁ ଦେଖୁଥିଲା, ପୁଣି ଗଭୀର ଲୋଭାତୁର ଦୃଷ୍ଟିରେ କନ୍ୟାକୁ ମଧ୍ୟ ଦେଖୁଥିଲା ।

କନ୍ୟାର ବ୍ରହ୍ମଚାରିଣୀ ଶରୀର ପକ୍ଷରେ ଏତେ ଶୃଙ୍ଗାର ଅସହ୍ୟ ହୋଇ ଉଠିଲା, ତା' ମନ ଉପରେ ଆଉ କାବୁ କରିପାରୁ ନ ଥିଲା । ବାଧ୍ୟ ହୋଇ ସେ ସଜ୍ଜନ ଆଡ଼େ ଅନାଇଲା । ସଜ୍ଜନର ପୌରୁଷ ଏଥିରେ ଗର୍ବିତ ହେଲା, ଉଲ୍ଲସିତ ଓ ଅଧୀର ହୋଇ ଉଠିଲା । ପାଞ୍ଚ ଛଅ ଦିନ ପୂର୍ବେ ଲକ୍ଷ୍ନୌରେ ତା' ଘରେ ସେ କନ୍ୟାକୁ ଦେଖି ଏପରି ଅଧୀର ହୋଇଥିଲା କିନ୍ତୁ ସେ ଅବସ୍ଥା ଓ ଏ ଅବସ୍ଥାରେ ଯଥେଷ୍ଟ ପାର୍ଥକ୍ୟ ଥିଲା, କନ୍ୟା

ଆଖିରେ ତା ନିଜ ଆଖିର ଆତୁରତା ଖୋଜିବା ପାଇଁ ସେ ଉଠିଲା, ଟିପିନ୍‌କେରିଅର ଦେହରେ ବାଜି ଆଗେଇ ଆସି ସେ କନ୍ୟାକୁ ନିଜ ଆଡ଼କୁ ଟାଣିନେଲା । ଶରୀର ସହିତ ଶରୀରର ସଂସ୍ପର୍ଶ ଯେପରି ବିଜୁଳିର ସୂଅ ଛୁଟାଇଲା । କନ୍ୟାର ଆଖି ପ୍ରିୟତମର ଦୃଷ୍ଟିର ମୋହିନୀ ଶକ୍ତିରେ ବନ୍ଧା ପଡ଼ିଗଲା, ତା'ର ଗୋରା ରଙ୍ଗ ଲଜ୍ଜାର ଲାଲିମା ଏବଂ ସଙ୍କୋଚର ରଙ୍ଗଦ୍ୱାରା ବହୁ ବର୍ଣ୍ଣରେ ଉଦ୍‌ଭାସିତ ହେଉଥିଲା, ତା'ର ଡ଼ାହାଣ ପାଖ ପୁରୁଷର ବାଁ ପଟରେ ବନ୍ଧା ପଡ଼ି ପୁରୁଷର ହୃତ୍‌ପିଣ୍ଡର ଶବ୍ଦ ସହିତ ମିଳିତ ହୋଇ ଯାଇଥିଲା । ପରସ୍ପର ଦେହର ସ୍ପର୍ଶ ସୁଖରେ ଉଭୟେ ଆମୋଦିତ ହେଉଥିଲେ । ଗାଲରେ ଉଭୟଙ୍କର ଗରମ ନିଶ୍ୱାସ ବାଜୁଥିଲା········· ।

"ଦେଖ ହୋ, ଯେଉଁ ବଳିଷ୍ଠ ଢଙ୍ଗ ରାସ୍ତା ଘାଟରେ ଏଭଳି ପବିତ୍ର ସ୍ଥାନରେ ଏଭଳି ଧରା ଧରି ହୋଇ ଚୁମା ଖାଇବା ଆଜିକାଲି ବ୍ୟାପିଲାଣି ।"

ଭଙ୍ଗା ମଠର ପାଚେରି ପାଖରୁ ପାକୁଆ ଗୋସାଇଁଙ୍କର ସହାସ୍ୟ ଟିପ୍ପଣୀ ଶୁଣାଗଲା, ଶୁଣୁ ଶୁଣୁ କନ୍ୟା ଲାଜରେ ନାଲିପଡ଼ି ଗଲା ଏବଂ ମୁହଁ ତଳକୁ ପୋତି ସେ ଦୂରକୁ ପଳାଇଲା । ସଜ୍ଜନ ମଧ୍ୟ ଭଙ୍ଗା ମଠ ଆଡ଼କୁ ନ ଅନାଇଁ ନଇଁପଡ଼ି ସ୍କେଚଂବହି, ପେନ୍‌ସିଲକୁ ତା' ଝୁଲାରେ ପୁରାଇଲା, କେମେରା, ଥରମସ ଓ କୋଟକୁ କାନ୍ଧରେ ପକାଇ ଛତ୍ରି ଓ ଟିଫିନ୍ କେରିଅର ଧରି ବାହାରିଲା । କଣ୍ଟା ଓ ଗୋଡ଼ି ଯୋଗୁଁ ଖାଲି ପାଦରେ କନ୍ୟା ବେଶୀଦୂର ଆଗେଇ ପାରି ନଥିଲା, ବର ଓହ୍ଲାଇ ପାରିହୋଇ ଡ଼ାଲୁ ଜମି ଆଡ଼କୁ ଆଗଭ ଆଗଭ ସଜ୍ଜନ ଦୁହିଁଙ୍କ ଲଜ୍ଜା କଟାଇବା ପାଇଁ ଅଟାରେ କହିଲା···
"ଆରେ ଓସ୍ତାଦ ଟିକେ ରୁହ, ମୁଁ ମଧ୍ୟ ଆସୁଛି ।"

କନ୍ୟା ପଛକୁ ନ ଅନାଇଁ ଅଟକିଗଲା, ସଜ୍ଜନ ତା' ନିକଟରେ ପହଞ୍ଚି କହିଲା...
"ଅୟି ବଳିଷ୍ଠ ସୁନ୍ଦରୀ ତୁମେ ଏଭଳି କୀର୍ତ୍ତିକରି ପଳାଉଛ କୁଆଡେ ?"

କନ୍ୟା ଲଜ୍ଜିତ ହୋଇ ସାମାନ୍ୟ ହସି କହିଲା·········"ଛିଃ, ତୁମେ ଭାରି ଅସଭ୍ୟ ।"

"ମାନ ହାନୀ କେଶ ତୁମ ନାଁରେ କରିଦେବି । ମୁଁ କୌଣସି ଅସଭ୍ୟତା କରିନି, ତେଣୁ ତୁମେ ମତେ ଅସଭ୍ୟ କହି ପାରିବନି । ଅୟି ବିଦେଶୀ ସୁନ୍ଦରୀ······ଆଇଏମ୍ ସରି.........ନିଜେ ଦାଣ୍ଡରେ ଅସଭ୍ୟତା କରି ମୋ ମୁଣ୍ଡରେ ଅଠା ବୋଳୁଛ ।

ସଜ୍ଜନର ଏଇ ବିନୋଦ ପୂର୍ଣ୍ଣ ଅଭିନୟ କନ୍ୟାର ସମସ୍ତ ଗାମ୍ଭୀର୍ଯ୍ୟ ଦୂର କରିଦେଲା । ସେ ତାକୁ ଦେଖି ଦେଖି ହସି ଉଠିଲା, କହିଲା ···"ତୁମେ ଭାରି ଦୁଷ୍ଟ ।

"ଥେଁକ୍ୟୁ ଫର ଦି କଂପ୍ଲିମେଂଟ ।"

"ଅଟା ନୁହଁ, ଏବେ ବି ମୋ ଗୁଡ଼ ଅଛୁଛି ।"

"ଗୁଡ଼ ଅଥବା ଜୀବନ ସଂକେତ । ତୁମେ ଟିକେ ବି ସ୍ପୋର୍ଟିଂସ ନୁହଁ ।

"ନ ହୁଏଁ ପଛକେ········"କହୁ କହୁ କନ୍ୟା ଗମ୍ଭୀର ହୋଇଗଲା ।

"ଏବେଠୁ ମୋ ମନକୁ ସମ୍ଭାଳିବାର ଦାୟିତ୍ୱ ତୁମର, କାରଣ ତୁମ ସାମ୍ନାରେ ମୁଁ ଦୁର୍ବଳ ହୋଇ ପଡ଼ୁଛି ।" ସଜ୍ଜନଙ୍କୁ ଏଭଳି ଗୃହିଲା ଯେପରି ଆଖିଦ୍ୱାରା କହୁଥିଲା ତୁମେ ଏକଥା ବୁଝୁନ କିପରି ?"

"ତୁମେ ତ ସିଧା କଥାକୁ ଓଲଟା କରୁଛ । କନ୍ୟାର ଗାମ୍ଭୀର୍ଯ୍ୟ ସଜ୍ଜନଙ୍କୁ ଭଲ ଲାଗିଲା ନାହିଁ, ବିରକ୍ତ ହୋଇ ସେ କହିଲା····· "ସେ ବଦମାସ ଲୋକଟା ଦେଖିଲା ତ ହେଲା କଣ ? ଖୁବ ମଜା ହେଲା ନା ?"

"ଯାହାକୁ ତୁମେ ମଜା ବୋଲି ହାଲୁକା କରୁଛ ସେ ମୋ ଜୀବନରେ ଅତି ପବିତ୍ର ଅନୁଭୂତି ।"

"ଆଚ୍ଛା ପାଗଳ ତ ତୁମେ, ସ୍ତ୍ରୀ ପୁରୁଷଙ୍କ ମିଳନକୁ ପବିତ୍ରତା···ଅପବିତ୍ରତାର ଡୋରରେ ଏଭଳି ବନ୍ଧା ଯାଇ ପାରିବ ନାହିଁ । ···ତୁମେ ତୁମେ ପ୍ରକୃତରେ ତୁମ ପରିବାରର ଦ୍ରୁଷ୍ଟାସ୍ୱରରେ ଏଭଳି ଆଘାତ ପାଇଛ ନଚେତ୍ ଏଥିରେ ଅପବିତ୍ରତାର କଥା ଆସିଲା କୁଆଡୁ ? ମୋର ଭାବୀ ପତ୍ନୀର ପବିତ୍ରତା ବିଷୟରେ ଦୃଢ଼ ବିଶ୍ୱାସ ରହିଛି, ଆଉ ମଧ୍ୟ ତାକୁ କେବେ ହେଲେ ମୁଁ ପ୍ରବଂଚିତ କରିବ ନାହିଁ······ଏ କଥା ମଧ୍ୟ ଜାଣେ ।"

ମୁଣ୍ଡ ତଳକୁ ପୋତି କନ୍ୟା ଶୁଣୁଥାଏ, ସଜ୍ଜନ କହି ସାରିବା ପରେ ତା' ଆଡ଼କୁ ଅନାଇଁ ଅଳ୍ପ ହସି କହିଲା···"ରାଜା ଦୁଷ୍ୟନ୍ତଙ୍କ ପରି ଭୁଲି ଯାଅଯଦି ?"

"କଣ ହେଲା ?"

"ଗଳା ପରିଷ୍କାର କରି କନ୍ୟା ପୁଣି କହିଲା······ "ତାହାର ଅଭିଶାପ ପଡ଼ିବ ଯଦି ?"

"ଅଭିଶାପ ? ଏ ଯୁଗରେ··· ···"

ଦୃଷ୍ଟି ଲଗିବାର ଅଭିଶାପ ଏ ଯୁଗରେ ମଧ୍ୟ ଚାଲୁଛି ।"

ସଜ୍ଜନ ଶୁଣି ଚୁପ ହୋଇଗଲା, ମିନିଟିଏ ଦୁଇ ମିନିଟ ଦୁହେଁ ଚୁପହୋଇ ରହିଲେ । ତାପରେ ସଜ୍ଜନ କନ୍ୟା ଆଡ଼କୁ ଅନାଇଁ କହିଲା······'ତୁମ ମନକୁ ମୋ ପ୍ରତି ବିଶ୍ୱାସ ବୁଲି ଗଲାଣି ନା ?

"ବିଶ୍ୱାସ ଜୀବନର ଆଧାର ସ୍ୱରୂପ ।" କନ୍ୟା ସରଳ ଭାବରେ କହିଲା ।

ନିଜ କଥାର ଉତ୍ତର ପାଇଲେ ମଧ୍ୟ ସଜ୍ଜନଙ୍କୁ ସନ୍ତୋଷ ମିଳିଲାନାହିଁ, ସାଧାରଣ କଥାରୁ କଥା ବିଶିଷ୍ଟ ଓ ଆଦର୍ଶର ସା'ଇତତ୍ତ୍ୱ ପର୍ଯ୍ୟନ୍ତ ପହଞ୍ଚି ଯାଇଥିଲା । ସଜ୍ଜନଙ୍କୁ ବିରକ୍ତ ଲାଗିଲା, ସେ କହିଲା……"ଏ କଥା ସତ ଯେ ମୋର ଜୀବନ ଏଭଳି ସାଧନା କରିନାହିଁ, ଧନୀ ଘରର ଏକମାତ୍ର ସନ୍ତାନ ସିଏକି ବିଶେଷ ଭାବରେ ଖାମ୍ ଖିଆଲି ଓ ଅସଂଯମୀ ଜୀବନ ଯାପନ କରିଥାଏ । ମୋ ନିଜ ଦୁର୍ବଳତା ହେତୁ ତୁମ ବିଶ୍ୱାସରେ ମୁଁ ଅବଶ୍ୟ ବହୁତ ଆଘାତ ଦେଇଛି । କିନ୍ତୁ ବିଶ୍ୱାସ କର ମୁଁ ଏତେ ଖରାପ ଲୋକ ନୁହଁ ।"

ଖରାପ ଲୋକଙ୍କୁ ମୁଁ ଡରେନି କାରଣ ସେମାନେତ ସିଧା ସଳଖ ଆଖି ଆଗକୁ ଚାଲି ଆସନ୍ତି । ସେମାନଙ୍କ ସହିତ ଲଢ଼େଇ କରିବା କିମ୍ବା ଦୂରେଇ ରହିବା ସହଜ । କିନ୍ତୁ ଖରାପ କଥାକୁ ମୋର ବେଶୀ ଡର, ଯାହାକି ବହୁତ ଭଲ ଲୋକଙ୍କ ଭିତରେ ରହିଥାଏ ଏବଂ ହଠାତ୍ ପ୍ରକାଶ ପାଇ ଅନ୍ୟକୁ କାବୁ କରିଦିଏ ।"

କନ୍ୟାର ଏଇ ଉକ୍ତି ସଜ୍ଜନଙ୍କୁ ଭଲ ଲାଗିଲା ନାହିଁ, ମନ ଉଡ଼ି ବୁଲୁଥାଏ । ଏ ଅବସରରେ ରାଧାକୃଷ୍ଣଙ୍କ ପ୍ରେମକଥା ତା'ର ମନକୁ ଅଧିକ ଆବେଗ ପୂର୍ଣ୍ଣ କରିଥାନ୍ତା କିନ୍ତୁ କନ୍ୟାର ଉକ୍ତି ତାଙ୍କୁ ଏପରି ଲାଗିଲା ଯେପରି ମଦ ପିଉଥିବା ସମୟରେ ଗଙ୍ଗା ପାଣି ଗଳାରେ ଢଳା ଗଲା । ମନ ତା'ର ବିଦ୍ରୋହ କଲା···ଆଚ୍ଛା ମଦ କାହିଁକି ଖରାପ, ଗଙ୍ଗା ଜଳ କାହିଁକି ପବିତ୍ର ? ଠିକ୍ ଅଛି ଯଦି ଭଲ ଖରାପ ହେବ ସେତ ଅଲଗା କଥା କିନ୍ତୁ ଚୁମ୍ବନଟା ଖରାପ ହେଲା କାହିଁକି ? ନାରୀ ପୁରୁଷର ସହଜ ଆକର୍ଷଣ, ଦୈହିକ ମିଳନ ଖରାପ ହେଲା କାହିଁକି ? କନ୍ୟା ତେବେ ମତେ ଏକଥା ବୋଲି କାହିଁକି ଚେତେଇଛି ଯେତେବେଳେ ଏହା ଆଦୌ ଖରାପ ନୁହେଁ । ନିଜର ବିଦ୍ରୋହୀ ଭାବନା ଦ୍ୱାରା ସାହସ ପାଇ ସଜ୍ଜନ କନ୍ୟାକୁ କହିଲା "ତୁମେ ମୋ ସେଣ୍ଟମେଣ୍ଟକୁ ଜବରଦସ୍ତି ଭୁଲ ରଙ୍ଗରେ ରଞ୍ଜିତ କରୁଛ କାହିଁକି ? ମୋ ଭିତରେ ଏପରି କିଛି ମନ୍ଦ ବିଷୟ ନାହିଁ କି କୌଣସି ଖରାପ ଭାବନାକୁ ମୁଁ ମୋ ଭିତରେ ତିଆରି କରି ରଖିନାହିଁ । ଆଉ ଶୁଣ · ଶୁଣ ··ପ୍ରଥମେ ମୋ କଥା ଶୁଣିସାର······ତୁମେ ଯାହାକୁ ଖରାପ କହୁଛ ତାହା କେବଳ ବୋକା ସମାଜ ସୁଧାରକମାନଙ୍କ ଖାମ୍ ଖିଆଲି ଧାରଣା ଅଟେ । ଏହି ମୟାଲ୍, ପାପ, ଖରାପ, ଇତ୍ୟାଦି ଶବ୍ଦ ସାଧାରଣ ମଣିଷର ସ୍ୱାଭାବିକ ବିକାଶ ପଥରେ ସବୁଠାରୁ ଅଧିକ ପ୍ରତିବନ୍ଧକ ହୋଇଅଛି । ଯଦି ତୁମ କଥା ଚଳିଯାଏ ତେବେ ବୁଝା ଯାଇଛି କି ନାରୀ ନରକର ଦ୍ୱାର ଅନ୍ୟ ମୟାଲିଷ୍ଟ୍‌ଙ୍କ କଥା ବାଦ୍ ଦିଅ, ବୁଦ୍ଧଦେବ, ଶଙ୍କରାଚାର୍ଯ୍ୟଙ୍କ ପରି ବ୍ୟକ୍ତି ମଧ୍ୟ ନାରୀ ମାନଙ୍କ ବିରୋଧ କରିଛନ୍ତି । ନାରୀ ସମସ୍ତ ମନ୍ଦକଥାର ମୂଳପିଣ୍ଡ । ଏବେ ତୁମେ କଣ କହିବାକୁ ଚାହୁଁଛ କହ ।"

କନ୍ୟା ଟିକେ ରାଗିଯାଇ କହିଲା "ବୁଦ୍ଧ ଓ ଶଙ୍କରାଚାର୍ଯ୍ୟ ଯଦି ନାରୀ ହୋଇଥାନ୍ତେ ତେବେ ବି ଲେଖିଥାନ୍ତେ ଯେ ପୁରୁଷସାକ୍ଷାତ ନରକ ଅଟେ, ଏବଂ ନାରୀ ସେ ନରକର ଚତୁର୍ଦ୍ଦିଗରେ ପାଚେରୀ ହୋଇ ପ୍ରକୃତ ଓ ଜୀବ ଜନ୍ତୁଙ୍କୁ ସେ ନରକରୁ ଅଲଗା ରଖିଛି।"

ସଜ୍ଜନଙ୍କୁ କନ୍ୟା କଥାରେ ଥଟ୍ଟା କରିବାକୁ ଇଚ୍ଛାହେଲା। କନ୍ୟା ଆହୁରି ବେଶୀ ବିରକ୍ତ ହୋଇ କହିଲା "ଆଦିମ ଯୁଗରେ ମାତୃସତ୍ତା ଯୁଗ ନିଶ୍ଚିତ ରୂପେ ଖୁବ୍ ଭଲ ହୋଇଥିବ ଯେତେବେଳେ କି ପୁରୁଷ ନାରୀ ପାଖରେ ଦବିକରି ରହୁଥିଲା।

ସଜ୍ଜନ କନ୍ୟାଙ୍କୁ ଘନିଷ୍ଠ ଭାବରେ ଲକ୍ଷ୍ୟ କରୁଥାଏ, ସୁନ୍ଦର ସରଳ ମୁହଁରେ କ୍ରୋଧର ଲାଲିମାକୁ ସଜ୍ଜନ ମୁଗ୍ଧ ଦୃଷ୍ଟିରେ ଅନାଇଁ ରହିଥାଏ। ଏହି ମୁଗ୍ଧତା ନେଇ ସେ ସହଜରେ ହାର ମାନିଗଲା, ଷ୍ଟିକ ଧରିଥିବା ଡାହାଣ ହାତ ସେ କନ୍ୟା କାନ୍ଧରେ ରଖି ଦେଇ କହିଲା... ...ପ୍ରିୟେ ତୁମେ ବିରକ୍ତ ହୁଅନି, ଏହି ସ୍ୱାଧୀନ ଦେଶର ନାଗରିକ ଆଜି ତୁପର ଦାସ ହୋଇ ରହି ସେଇ ଆଦିମ ଯୁଗରୁ ଦୂରରେ ରହିବ ନାହିଁ।"

କନ୍ୟାର ସମସ୍ତ ଉତ୍ତେଜନା ଏଇ ପରିହାସ ମୂର୍ତ୍ତି କଥରେ ଆଘାତ ପାଇଲା ମାତ୍ର କାଠ ଫଳାରେ ବନ୍ଧାଥିବା ସିଂହାସନ ତା'ର ଉତ୍ତେଜନା ମଧ୍ୟ ନିଷ୍କ୍ରିୟ ରହିଲା, "ସିଂହାସନ ରୂପ ନୀରବ ଗୋମାତାରେ ପରିବର୍ତ୍ତିତ ହୋଇଗଲା। ସଜ୍ଜନ ତାର ହାତରେ ଷ୍ଟିକ୍ ଦ୍ୱାରା ମୃଦୁ ଆଘାତ କରି କହୁଥାଏ... "ଦେଖନ୍ତୁ ପଣ୍ଡିତ କନ୍ୟା ପ୍ରସାଦ, ଆମେ ଦୁଇଜଣ ବର୍ତ୍ତମାନ ସମସ୍ତ କମ୍ପ୍ଲେକ୍ସ ଦୂରକରି ଗୋଟିଏ ଲାଇନ୍ ଉପରକୁ ଚାଲି ଆସିଲୁ। ଦୁନିଆଁରେ ଶତ ସହସ୍ର ନାରୀ ପୁରୁଷ ଯେଉଁପାନେ କି ପରସ୍ପର ସହିତ ମିଳିତ ହୁଅନ୍ତି ପୁଣି ଟ୍ରେନର ଯାତ୍ରୀଙ୍କ ପରି ଯେପରି ଅକସ୍ମାତ୍ ସେମାନଙ୍କର ପରିଚୟ ହୋଇଥାଏ ସେଇପରି ପରିଚୟ ମଧ୍ୟ ଛିନ୍ନକରି ଯେଝା ବାଟରେ ଚାଲିଯାନ୍ତି, ଆମେ ସେମାନଙ୍କ ପରି ନୋହୁଁ, ପୁରୋହିତର ଘର ଧାଡି ମନ୍ତ୍ର ପଢ଼ିବା କିମ୍ବା କୋର୍ଟରେ ଦସ୍ତଖତ କରିବା ପ୍ରେତ ଏକ ସାଧାରଣ ଫରମାଲିଟି ଏବଂ ଲକ୍ଷ୍ମୀ ପହଞ୍ଚି ସେ କାମ ତୁଟାଇ ଦେବା, ତୁମେ ବୁଝି ପାରିବନି କନ୍ୟା ଗତ କାଲିଠାରୁ ମୋ ଭିତରେ କେତେବଡ଼ ପରିବର୍ତ୍ତନ ଆସିଛି, ଧରନିଅ ଆମେ ଏତେଲ ଏକ ଘୁରିବା ସିଢ଼ିଦେଇ ଯାଉଥିଲୁ ଯେଉଁ ଠିନ କେବଳ ଅନ୍ଧକାର ଥିଲା, କାଲି ବୃନ୍ଦାବନରେ ମନେ ହେଲା ଯେପରି ଆମର ଅଧିକାର ସିଢ଼ି ଚଢ଼ିବା ଶେଷ ହୋଇ ଯାଇଛି ଏବଂ ଆମେ ଏକ ଉଜ୍ଜ୍ୱଳ ପ୍ରକାଶ ଭରା ଛାତ ଉପରେ ପହଞ୍ଚି ଯାଇଥାଇ ତୁମେ କଣ ଏହା ଅନୁଭବ କରି ପାରୁନ ?" କନ୍ୟା ମୁହଁରେ ତା ମନର ସମସ୍ତ ସନ୍ତୋଷ ଯେପରି ଆସିଠୁଳ ହୋଇଗଲା।

ତା କାନରେ ହାତରଖି ସଜ୍ଜନ ଗମ୍ଭୀର ହୋଇ କହିଲା……"ଦେଖ ମୋ ଭିତରେ କେତେ ଗୁଡ଼ାଏ ଦୁର୍ବଳତା ସ୍ଥାୟୀ ଭାବରେ ରହି ଯାଇଛି । ମୋ ଦୁର୍ବଳତା ସହିତ ତୁମକୁ ଲଢ଼ିବାକୁ ହେବ, ଏ ଅଧିକାର କେବଳ ତୁମର ରହିଛି । କିନ୍ତୁ ମୋତେ ମାସ୍ତ୍ରାଣୀ ମାନଙ୍କ ପରି ଉପଦେଶାମୃତ ଦେବନି । ଆମେ ଉଭୟେ ଖୋଲାମନରେ ଯଦି ସବୁ କଥା ଚିନ୍ତା କରିବୁ ତେବେ ସବୁଠାରୁ ଭଲ ହେବ, ଅବଶ୍ୟ କେତେକଙ୍କ ଧାରଣା ଯେ ସ୍ୱାମୀ ସ୍ତ୍ରୀଙ୍କର ଅତୀତ କଥା ଚର୍ଚ୍ଚା ହେବା ଉଚିତ୍ ନୁହେଁ, ମାତ୍ର ମୁଁ ଏକଥା ବିଶ୍ୱାସ କରେନି । କମ୍ ବୁଝିଥିବା ଲୋକଙ୍କ ପାଇଁ ଏକଥା ଠିକ୍ ହେଲେ ସୁଦ୍ଧା ଆମ ପାଇଁ ନୁହେଁ ।"

କନ୍ୟା ବିମୁଗ୍ଧ ହୋଇ କୋମଳ ସ୍ୱରରେ କହିଲା……"ତୁମ ବିଷୟରେ ଆଉ ଅଧିକ ଶୁଣି ମୋର କଣ ବା ଲାଭ, ଯାହା ଜାଣିବାର, ଯାହା ବୁଝିବାର ସବୁ ତ ଜାଣିଲି । କିନ୍ତୁ ସଜ୍ଜନ ମନେ ରଖିବ ଯେ ବିତି ଯାଇଥିବା ଇତିହାସ ସବୁବେଳେ କାମରେ ଲାଗେନି । ଆଜି ମଧ୍ୟ ଇତିହାସର ସାକ୍ଷୀ ରହିଛି । କାଲି ତୁମେ ବିଳାସୀ ଥିଲ ବୋଲି ଯେ ଆଜି ସେଇଆ ରହିଥିବ ଏକଥା ନୁହେଁ । ଯଦି ଆଜିଠାରୁ ତୁମର ନୂଆ ଜୀବନ ଆରମ୍ଭ ହୋଇଥାଏ ତେବେ ତୁମର ଇତିହାସ ମଧ୍ୟ ନୂତନ ହେବ ।"

"ତୁମେ କଣ ଭାବୁଛ ଯେ ମଣିଷର ପ୍ରକୃତି ଏତେ ଶୀଘ୍ର ବଦଳି ଯିବ ?"

"ନିଶ୍ଚୟ ବଦଳି ଯାଏ, ଯେପରି ତୁମେ ବର୍ତ୍ତମାନ କହୁଥିଲ ଯେ ସାଧାରଣ ମଣିଷଙ୍କ ଠାରୁ ଅଧିକ ଚେତନ ଶୀଳ ଏବଂ ଦାୟିତ୍ୱ ବାନ ହୋଇଥିବାରୁ ସ୍ତ୍ରୀ ଅଭାବ ଜନିତ ଯାହା କିଛି ଦୁର୍ବଳତା ତୁମ ଭିତରେ ଆଗରୁ ଥିଲା ସେ ଦୁର୍ବଳତା ଆଉ ରହିବ ନାହିଁ । ତୁମେ ଯେତେବେଳେ ମୋର ହେବ କେବଳ ମୋର ହୋଇ ରହିବ ।"

ସଜ୍ଜନ ବାହୁଦ୍ୱାରା କନ୍ୟାକୁ ଘେରାଇ କରି ସାଉଁଥିଲା । ଚୁପ ହୋଇ ବୁହେଁ ବୁଲୁଥାନ୍ତି । ସାମ୍ନାରେ ଧଳା ପଥରରେ କାରୁକାର୍ଯ୍ୟ ହୋଇଥିବା ଦୁଇ ମହଲା ମଣ୍ଡପ ରହିଥାଏ, ଟିକେ ଦୂରରେ ଗୋଟିଏ ଘର ସାମ୍ନାରେ ସେମାନଙ୍କ ଟ୍ୟାକ୍ସି ଠିଆ ହୋଇଥିବାର ଦେଖାଗଲା, କନ୍ୟା ଟ୍ୟାକ୍ସି ଦେଖି ସାରିବା ପରେ ଖିଆଲ୍ କଲା ଯେ ଏ ପର୍ଯ୍ୟନ୍ତ ସଜ୍ଜନ ସବୁ ଜନପଥରେ ଏକା ବୋହିବୁଲିଛି । ଅବଶ୍ୟ ବିଶେଷ ଜନସ୍ରୋତ ନ ଥିଲେ ସୁଦ୍ଧା ତା'ର ମନେହେଲା ଯେ ଅନ୍ତତଃ ପକ୍ଷେ ବ୍ୟାଗ, କ୍ୟାମେରା ଓ କୋଟ୍ ତ ଧରି ପାରିଥାନ୍ତା ତା'ପରେ ସେ ଦେହକୁ ଧରିଲା । ସଜ୍ଜନର ଚିନ୍ତାରେ ବାଧା ପଡ଼ିଲା, ସେ କନ୍ୟାକୁ ଅନାଇଁଲା, କନ୍ୟା ଆଖିରେ ଅଧିକାର ବୋଧ ଜାଗ୍ରତ ହୋଇ ସମର୍ପିତ ହେବାର ବାସନା ରହିଥିଲା………………………ପ୍ରଥମ କରି କନ୍ୟା ଆଖିରେ ମୌନ ନିମନ୍ତ୍ରଣ ରହିଥିଲା………………।"

# ଛଦ୍ମବେଶି

ନନ୍ଦର ଗୁପ୍ତ ପରାମର୍ଶରେ ମହାକବି ବୋଉ ଦ୍ୱାରରେ ଅଦ୍ଭୁତ ସୁନ୍ଦର ଘର ସାମ୍ନାର ନିଛାଟିଆ ରାସ୍ତାରେ ସିଗାରେଟ ଟାଣି ଟାଣି ବୁଲୁଥିଲେ । ମଝି ମଝିରେ ଖଣ୍ଡିକାଶ ଦେଇ ସଙ୍କେତ ମଧ୍ୟ ଦେଉଥାନ୍ତି ।

ଭିତରୁ କେହି ଆସିବାର ଜଣାଗଲା, କାହାର କବାଟ ଖିଲିକ ଖୋଲିବାର ହେଲା, କବାଟ ଉଚ୍ଛାଳରୁ ନନ୍ଦୋର ଶୁଖିଲାକାଶ ମଧ୍ୟ ଶୁଣାଗଲା । ମହାକବି ବୋଉ ବାରଣ୍ଡା ଦେଇ ଘର ଭିତରକୁ ଚାଲି ଯିବା ମାତ୍ରେ । କବାଟ ମଧ୍ୟ ବନ୍ଦ ହୋଇଗଲା ।

ବୈଠକ ଘର କବାଟ ଖୋଲି ଲାଇଟ ଜାଳି ନନ୍ଦୋ ବୋଉକୁ ଭିତରକୁ ଡ଼ାକିନେଲା । ବୋଉ ଭିତରକୁ ଆସିବା ବେଳେ ନନ୍ଦୋ ଇଚ୍ଛାକୃତ ଭାବେ ବୋଉ ଦେହ ସହିତ ଦେହ ଘସି ଦେଇ ଚାଲିଗଲା । ଭିତରୁ କବାଟ ବନ୍ଦକରି ବୈଠକଖାନାକୁ ନିଷ୍ପ୍ରଭ ହୋଇ ଫେରିଲା । ବୈଠକଘର କାନ୍ଥ ଅଧାପର୍ଯ୍ୟନ୍ତ ଟାଇଲ ଦିଆ ହୋଇଥାଏ । ବିଦେଶୀ ଡ଼ିଜାଇନ୍‌ରୁପ ଢାଞ୍ଚାରେ ଫାୟାରପ୍ଲେସ୍ ଓ ମ୍ୟାଣ୍ଟେଲ୍ ପିସ ମଧ୍ୟ ଥାଏ । ଫାୟାର ପ୍ଲେସ ଚାରିପଟେ ଜାଲି ଦିଆ ହୋଇଥାଏ ଏବଂ ସେଥିରେ ନକଲି ଅଙ୍ଗାର ଓ ଚଢେଇର ଡିଜାଇନ୍ ମଧ୍ୟ ହୋଇଥାଏ । ଟାଇଲ ମଧ୍ୟରୁ ଓ ରାଧାକୃଷ୍ଣ ଓ ସମାଧିସ୍ଥ ଶିବଙ୍କ ମୂର୍ତ୍ତି ମଧ୍ୟ ଶୋଭା ପାଉଥାଏ । ସୋଫା ସେଟ୍ ଚଉକି ଓ ସେଣ୍ଟର ଟେବୁଲ ପ୍ରଭୃତି ଆଉ ବିଶେଷ ଆସବାବ ସେଠାରେ ନ ଥାଏ ।

ମହାକବି ଏଣ୍ଟ୍ରେନ୍ସରେ ଜଳନ୍ତା ସିଗାରେଟ ଟିକେ ଝାଡ଼ି ବସିବାକୁ ଯିବାବେଳେ ନନ୍ଦୋ ଆସି ସେଣ୍ଟର ଟେବୁଲ୍ ପାଖରେ ଠିଆ ହେଲା । କବି କହିଲେ ନନ୍ଦୋ ରାଣୀ ! ଧକ୍କା ମାରି କଳିଜା ଉପରେ ଦାଗ ଦେଇ ଦେଲ, ଏବେ ଔଷଧ ଲଗାଅ ।"

"ଆରେ ଯାଅ ମ ।"

"ତୁମ ବାଣ ପକାଉଛ, ତୁମେ ମଧ୍ୟ କିଛି କମ୍ ନୁହଁ । ନନ୍ଦୋ ବିବି ! ବିରେହଣ ଅତି ଆତୁରରେ ନନ୍ଦୋ ଆଡକୁ ନିକଟେଇଗଲା । ନନ୍ଦୋ ନିଜବ୍ୟସ୍ତକୁ ସମ୍ଭାଳୁ ସମ୍ଭାଳୁ ପଛକୁ ହଟି ଭ୍ରୂଭଙ୍ଗୀ ଟେକି କହିଲା, ମତେ ଛୁଅଁନି, ମୁଁ ଏବେ ଗୋମାତାକୁ ଗାଧୋଇଯିବି ।"

ତୁମେ ଗୋମତୀ ଯିବା ଆଗରୁ ମତେ ଟିକେ ବଞ୍ଚାଅ । ଏଇ ଜାନୁୟାରୀର ଶୀତ ରାତିରେ ତୁମରି ହୁକୁମରେ ମୁଁ ଘରୁ ଆସିଛି । ମାନସୀ ! ହୃଦୟ କିଛି ଉଷ୍ମତା ଚାହୁଁଛି ।

'କଣ ତୁମେ ଏ ଘରକୁ ବେଶ୍ୟାଳୟ ଭାବିଲକି ? ସେମିତି କଥା କହୁଛ । ଆରେ ମୁଁ କଣ ଖରାପ କି ?

ନନ୍ଦବାବୁର ଏ ଧରଣର କଥା ମହାଜନବାବୁଙ୍କ ପରି ଓସ୍ତାଦଙ୍କୁ ବୁଝିବାରେ ବେଶୀ ସମୟ ଲାଗିଲାନି, ସେ ସଙ୍ଗେ ସଙ୍ଗେ ବିନମ୍ର ଅବତାର ହୋଇ କହିଲେ—'ନାହିଁ ସେକଥା ନୁହେଁ ଯେ—

ମୁଁ ଜାଣିଲି ତୁମ ଦୁହିଁଙ୍କ ମଧ୍ୟରେ ପ୍ରେମ ହୋଇଯାଇଛି, ମୋ ଭାଉଜକୁ ଆଠ ପ୍ରହର ଯାକ ଉଦାସ ହେବାର ଦେଖି ମୋର ଦୟା ହେଲା

'ସେତ ଠିକ୍ କଥା ତୁମେ ଯେ ଦୟା ମଣ୍ଡୀ—'

'କହୁପାରିବ ତୁମ ଠିକଣା କେମିତି ପାଇଲୁ ?'

'ଆରେ ତୁମେ ତ ସବୁ ।'

'ତମେ ତ ଆଖିରେ ଆଖି ମିଳାଇ ଚାଲିଗଲ—ଯାହେଉ ଭାଉଜର ଅବସ୍ଥା ସାଙ୍ଘାତିକ ।

'ମୋର ଅବସ୍ଥା ତତୋଧିକ ନନ୍ଦୋବାବୁ । ତୁମ ଭାଉଜ ଯେ ଖାଲି ମୋ ହୃଦୟ ହରଣ କରିଛନ୍ତି ତା ନୁହେଁ,—ମୋର ମନ, ମୋ ହୃଦୟ, ମୋ ଜୀବନ, ମୋ ପ୍ରେମ ମୋର ସୁଖ ଶାନ୍ତି—ଟଙ୍କା ଆଣିଛ ?'

'ନାହିଁ ଦେଖ ତୁମପାଇଁ ଏ ଅଧମ ମୁଁ ପ୍ରାଣ ଦେଇ ପାରେ । ଜାଣିଲ ବାବୁ ଗଞ୍ଜୁରୁ ଚାଲି ଚାଲି ଆସୁଛି । ଆଜିକାଲି କଥା ତ ଜାଣୁଛ । କଥା କଥାରେ ଖୁନ୍ ଡକାୟତି ଶହେଟଙ୍କା ପକେଟରେ ରଖି ଏଭଳି ଅନ୍ଧାର ଓ ନିଛାଟିଆରେ—କାଲି ସନ୍ଧ୍ୟାବେଳେ ତୁମେ ଯେଉଁ ଠିକ କହିବ ସେଠି ତୁମକୁ ଟଙ୍କା ପଠାଇ ଦେବି ।'

'ତୁମେ ବହୁ ତ୍ । ଚାଲାକ୍ ଫୁର୍ତ୍ତିକରି "ତୁମ ରୂପ ଗୁଣ, ତୁମ ସୌନ୍ଦର୍ଯ୍ୟର ଗୁଣ । ତୁମ ଭାଉଜଙ୍କ ଗୁଣ ପକାଇ କହୁଛି, ତୁମକୁ ମୁଁ କେବେ ଠକ ପାରିବିନି । ଆଉ ତୁମର ମୋର ତ କିଛି ଦାନକଥା କଥା ନୁହେଁ । ଏବେ ପଚାଶ ଟଙ୍କା ରଖ । ସେ ଶହେ ଟଙ୍କାରୁ ଯାକୁ କାଟିବ ନାହିଁ, ଉପରି ଏ ଟଙ୍କା ଦେଉଛି ।'

ଟଙ୍କା ଦେଖି ନନ୍ଦ ଏଭଳି ମୁହଁ କଲା ଯେପରି ଭୋକିଲା ସିଂହ ଆଗରେ ଶିକାର ବୋଲି ମାଛଟିଏ ରଖାଯାଇଛି । ମୁହଁ ବୁଲାଇ କହିଲା—ଯାଅ, ଯାଅ, ଘରେ ରଖି ଦିଅ ତୁମ ପଚାଶ ଟଙ୍କା । ମୋ ବାପ ଘରେ ଲକ୍ଷ ଲକ୍ଷ ଟଙ୍କା ରହିଛି । ମୋ ଭାଇର ରୋଜଗାର ବହୁତ । ଯଦି ସେ ଚାହିଁବ ତେବେ ପୁରା ସହରର ଅଧାଟା କିଣି ନେବ ।'

ନନ୍ଦୋ ଏଇ ବିହାର ଆଉରେ 'ସିନେମା'ର ସିନେମାବାବୁଙ୍କ ଠିକଣା କୈଳାସର ସ୍ତ୍ରୀ କମ୍ପା ଆଉ କୌଣସି ସାଙ୍ଗ ଜଣଆରେ ସିନେମାରେ ଗେଟ୍‌କିପରଠାରୁ ଜାଣିଥିଲା । ଦୁଇଦିନ ଆଗରୁ କୈଳାସର ସ୍ତ୍ରୀ ଘରେ ନନ୍ଦୋ ମହାକବି ବୋଉର ସହିତ ପରିଚିତ ହୋଇଥିଲା । ସେଠାରେ ମହାକବି ବଡ଼ ବଡ଼ ସିନେମା ଷ୍ଟାରଙ୍କ ସହିତ ତାର ବନ୍ଧୁତ୍ୱ ଓ ଅନ୍ୟାନ୍ୟ ବଡ଼ ବଡ଼ କଥା ଶୁଣାଇ ଥିଲା । କୈଳାସର ସ୍ତ୍ରୀଠାରୁ ଆରମ୍ଭ କରି ନନ୍ଦୋ, ତା ଭାଉଜ ସମସ୍ତଙ୍କୁ ସିନେମା ଷ୍ଟାର୍ କରି ଦେବାର ପ୍ରତିଶ୍ରୁତି ମଧ୍ୟ ଦେଇଥିଲା । ନନ୍ଦୋ ଆଜି ଏହି ସମୟରେ ନିଜ ବୋହୂ ଓ ବୋଉଙ୍କୁ ମିଳିତ କରାଇ ଦେବ ବୋଲି କଥା ଦେଇ ଶହେ ଟଙ୍କା ମାଗିଥିଲା । ବୋଉ ଏଥିରେ ରାଜି ହୋଇଗଲା । ଖାଲି ସେତିକି ନୁହେଁ କୈଳାସର ସ୍ତ୍ରୀ ସହିତ ସେଦିନ ଖାନାପିନା ଓ ସିଗାରେଟରେ ପ୍ରାୟ ପଇଁଚାଳିଶ ପଚାଶ ଟଙ୍କା ଖର୍ଚ୍ଚ କରି ନନ୍ଦୋକୁ ପ୍ରଭାବିତ ମଧ୍ୟ କରାଇ ଥିଲା । ଅବଶ୍ୟ ସିନେମା ଗେଟକିପର ନନ୍ଦୋକୁ ସାବଧାନ କରାଇ ଥିଲା ଯେ ବୋଉର ଅବସ୍ଥା ଜମା ଭଲ ନୁହେଁ ମାତ୍ର ନନ୍ଦୋ ବିଶ୍ୱାସ କଲା ନାହିଁ, ଓଲଟି ବୁଝି ଥିଲା ଯେ ସେ ହୁଏତଃ ନୂଆ ଗ୍ରାହକ ପାଖରେ ବୋଉକୁ ସଂପୂର୍ଣ୍ଣ ଛାଡ଼ି ଦେବାକୁ ଚାହୁଁନି । କିନ୍ତୁ ଆଜି ଯେତେବେଳେ ବିହନା ସ୍ୱରୂପ ମାତ୍ର ପଚିଶ ଟଙ୍କା ଦେଖିଲା, ନନ୍ଦୋ ଚରକିଲା ପରି କହିଲା ।

"ଆଜି ତ ସେ ଆସିପାରିବ ନାହିଁ । ମୋ ଭାଇ ଗତ ରାତିରେ କଲିକତାରୁ ଫେରିଛନ୍ତି ।"

"କିନ୍ତୁ ତୁମେ ତ ଆଜି ଦିନ ପାଇଁ କହିଥିଲ ।"

ମୁଁ କିଣ ଜାଣିଥିଲି ଯେ ମନୁଆଭାଇ ଆଜି ଆସି ପହଞ୍ଚିବେ ବୋଲି । ସେ ତ ଚିଠିରେ ଲେଖିଥିଲେ ଯେ ଆହୁରି ଆଠ ଦଶ ଦିନ ଲାଗିବ । ଯୁଦ୍ଧେ ବାପମା ସଂକ୍ରାନ୍ତି ସ୍ନାନ କରିବା ପାଇଁ ଏଲାହାବାଦ ଯିବାର ଥିଲା, ସେମାନେ ଆଜି ଗଲେ । ବାକି ମନୁଆ ଭାଇ ଅଚାନକ ଆଜି ଫେରି ଆସିଲେ ମୋର କିଣ ଦୋଷ ।"

ମହାକବି ବୋଉ ହଠାତ୍ ନନ୍ଦୋର ପାଦତଳେ ପଡ଼ିଗଲା—କହିଲା—'କିଛି ହେଲେ ଉପାୟ ବାହାର କର ନନ୍ଦୋବାବୁ । ଥରେ ହେଲେ ମୋହିନୀକୁ ମୋ ପାଖକୁ ନେଇଆସ । "ଭାବ ବିହ୍ୱଳ ହୋଇ କହି ଉଠିଲା—ଦୂରରୁ ଦେଖି ଦେଖି ମନ ମୋର ପାଗଳ ହୋଇ ଗଲାଣି, ମୋହିନୀକୁ ଯେତେବେଳେ ନିବିଡ଼ ଭାବରେ ମୁଁ ପାଇବି ତାର ଗରମ ନିଶ୍ୱାସ, ତାର ପ୍ରେମ ମଧୁର ରୂପୀ ନେଶାର ଗଭୀର ଭଙ୍ଗରେ ମୋର ହୃଦୟ । ......

"ଆରେ ଛାଡ଼ ମତେ ଏ କ'ଣ କରୁଛ ?" ନନ୍ଦୋ ରାଗିଯାଇ କହିଲା । ମହାକବି ବୋଉ ମନେମନେ ମୋହିନୀକୁ ନିଜ ଛାତି ଉପରକୁ ଆଉଜେଇ ଏ ସବୁ କହିବା ଭଙ୍ଗୀରେ କେତେବେଳେ ଯେ ନନ୍ଦୋଙ୍କୁ ଭିଡ଼ି ଧରିଛନ୍ତି ସେ ଖିଆଲ ତାଙ୍କର ନାହିଁ ।

ମହାକବି ତାଙ୍କ ଭାବନା ରାଜ୍ୟରେ ଉବୁଟୁବୁ ହେଉଥାନ୍ତି । ସେ ନନ୍ଦୋଙ୍କୁ ଆହୁରି ପ୍ରବଳ ଭାବରେ ଆକର୍ଷଣ କରି ନେଲେ । କହିଲେ "ମୋ ପ୍ରାଣେଶ୍ୱରୀ ସହିତ ମୋର ଭେଟ କରାଇଦିଅ ନନ୍ଦୋରାଣୀ ମୋ ହୃଦୟରେ ଶୋଇଥିବା କ୍ଷିପ୍ତ ଅମର ଗୀତଭାଷା ପାଇବା ପାଇଁ ବ୍ୟାକୁଳ ହେଲଣି ।

ତୁମ ଗୀତ ଥାଉ ତୁମେ ଚାଲିକି ଯାଅ "ଉମପର ଫଂଟାରସିକ ବହୁତ ଦେଖିଛୁମ ଆଗ ମୋ ଟଙ୍କା ଥୁଅ —"

ଟଙ୍କା ଆଜି ସନ୍ଧ୍ୟାସୁଦ୍ଧା ତୁମକୁ ମୁଁ ଦେଇଦେବି । ତୁମେ ଯେତେ କହୁଛ ମୁଁ ସେତେ ଦେବି । ତୁମକୁ ଦେଖି ମଧ୍ୟ ମନ ଉଜ୍ଜ୍ୱଳ ହୋଇ ଉଠୁଛି ଗୋ ନନ୍ଦୋରାଣୀ —"

"ମତେ ଏସବୁକଥା ଭଲ ଲାଗେନା ମୁଁ ମୋର ଦିଅଁ ଦେବତାଙ୍କ ସେବା ପୂଜା କରୁ କରୁ ଦିନ ସରୁନି ।"

"ଆହା, ତୁମକୁ ଭଗବାନ ଦୟା କରନ୍ତୁ—କେତେ ଦୟାବତୀ ତୁମେ ? ତୁମ ପାଦ ଧରୁଛି ।

ମହାକବି ବୋର ନଇଁ ପଡ଼ିବାରୁ ତାଙ୍କ ବାଁ ହାତରେ ସୁନା ଚେନ୍ ଲାଗିଥିବା ହାତ ଦେଖାଗଲା । ନନ୍ଦୋ ଘଡ଼ି ଉପରେ ନଜର ରଖି କବିରେଶଙ୍କ ହାତକୁ ଏଭଳି ଧରିଲା ଯେପରି ତା ପାଦ ଛୁଇଁବାରୁ ତାକୁ ନିବୃତ୍ତ କରାଉଥିଲା । ଅଥଚ ସେତେବେଳକୁ ଘଡ଼ି ଖୋଲି ତା ହାତରେ ରଖି ସାରିଥାଏ । କହିଲା ତୁମେ ବାରମ୍ବାର କାହିଁକି ଜବରଦସ୍ତ କରୁଛ । ଭାରି ଖରାପ କଥା ହେବ । କହିଦେଉଛି ମୋ ମନଆଗରି ପୂରା କଂସେଇ । ଘଡ଼ି ସେତେବେଳକୁ ହାତରୁ ଚାଲି ଯାଇଥିଲା । ନନ୍ଦୋ ପୁଣି କହିଲା ଆଚ୍ଛା ହେଉ ମୁଁ ଚେଷ୍ଟା କରୁଛି କରିବି । ଆଗକୁ ଭଗବାନ ଭରସା ।

ଘଡ଼ି ଯିବା ପରେ ମହାକବିଙ୍କ ଚେହେରା ବିଲ୍‌କୁଲ୍ ବଦଳିଗଲା । କିଛି କହିବା ପୂର୍ବରୁ ନନ୍ଦୋ ଘରୁ ବାହାରି ଯାଇଥିଲା ।

ମହାକବି ବୋର ଘଡ଼ି ହରାଇ ବ୍ୟସ୍ତ ହୋଇ ପଡ଼ିଲା । ଘଡ଼ିଟା କାହାଠାରୁ ବିଚରା ପୁଣି ମାଗି ଆଣିଥିଲା ।

ଗୋମସ୍ତା ଯିବା ଓ ବାହାର କବାଟ ବନ୍ଦ କରିବା ବାହାନାରେ ବଡ଼ ବୋହୂକୁ ନନ୍ଦୋ ତଳକୁ ଡାକି ଆଣିଲେ । ମନିଆ ସେତେବେଳେ ଗମ୍ଭୀର ନିଦରେ । ସାନ ଝିଅକୁ ଶୋଇବା ଅବସ୍ଥାରେ ନନ୍ଦୋ ତଳକୁ ନେଇ ଆସି ନିଜ କୋଠରୀରେ ଶୁଆଇ ଦେଲା ।

କିନ୍ତୁ ସେ ବଡ଼ ବୋହୂକୁ କବିରେଶଙ୍କୁ ବେଶୀ ସମୟ ଏକୁଟିଆ ରହିବାକୁ ଦେଲାନାହିଁ । ମନିଆ ଉଠି ପଡ଼ିଲାଣି—ଏ ଆଶଙ୍କା ଦେଇ ବଡ଼ ବୋହୂକୁ ସେ ଘରୁ

ଶୀଘ୍ର ବାହାର କରି ପାରିଲେ ମୁକ୍ତା ବରେନ୍ଦ୍ରେଶ ନନ୍ଦୋର ସ୍ୱଳ୍ପିକ ତୃପ୍ତି ପାଉଥିଲେ । ବଡ଼ ବୋହୂର ହାତ ଧରି ସେ କହିଲା "ଆରେ ସେ ଯେପରି ମିଛରେ କହୁଛୁ । ନନ୍ଦୋବର ବ୍ୟସ୍ତ ହୁଅନି ତୁମର ଶହେ ଟଙ୍କା ମୁଁ ଆଜି ତୁମକୁ ଦେଇ ଦେବି ।"

ବଡ଼ ବୋହୂ ପଚାରିଲା—"କି ଟଙ୍କା ?

ବରେନ୍ଦ୍ରେଶ ମଦିର ଆଖିରେ ତା' ଆଡ଼କୁ ଅନାଇଁ କହିଲା "କୋହିନୁର ପାଇଁ ଦାମ ଦେବାକୁ ପଡ଼େ ମୋହିନୀ, ସେ ମୋର ଘଡ଼ି ଖୋଲି ନେଇ ଯାଇଛନ୍ତି ।

"ତାହିକି ?"

"ଆରେ ଛାଡ଼ ସେ କଥା । କିନ୍ତୁ ଏବେ ମତେ ଘଡ଼ି ଫେରାଇ ଦେଲେ ଖୁବ୍ ଭଲ ହୁଅନ୍ତା । ମୁଁ ସନ୍ଧ୍ୟା ବେଳକୁ ଟଙ୍କା ନେଇ ଆସିବି ।

"ବଡ଼ ନାନୀ"—ମୋହିନୀ ବ୍ୟାକୁଳ ହୋଇ କହିଲା—ତୁମ ଗୋଡ଼ ତଳେ ପଡ଼ୁଛି, ତୁମେ ମାନି ଯାଅ । ସ୍ୱେ ବହୁତ ବଡ଼ କବି, ସେ ତୁମ ଟଙ୍କା ନିଶ୍ଚୟ ଦେଇ ଦେବେ ।

ନନ୍ଦୋ ମାନିଗଲା । ସେ ଘଡ଼ି ଫେରାଇ ଦେଲା, ଏବଂ ବରେନ୍ଦ୍ରେଶକୁ ବଡ଼ ବୋହୂର ସହିତ ମିଳନର ଜନିତ ଆଉ ଏକ ଅମର ଗୀତ ଲେଖିବାପାଇଁ ପୁରା ସୁବିଧା ମଧ୍ୟ ଦେଇ ଦେଲା ।"

କିନ୍ତୁ ସେଦିନ ସନ୍ଧ୍ୟାବେଳେ ଶହେଟଙ୍କା ଆଉ ମିଳିଲା ନାହିଁ । ବଡ଼ ବୋହୂ ନିଜ ଚଳ୍ପାରେ ବିଭୋର ଥିଲା । ଦ୍ୱିତୀୟ ଦିନ ସକାଳୁ ଠିକ୍ ସେଇ ସମୟରେ ବୋଉ ଆସି ପହଞ୍ଚିଲା । ଆଜି ବଡ଼ ବୋହୂ ତାଙ୍କ ପ୍ରତୀକ୍ଷାରେ ଆଗରୁ ନନ୍ଦୋ ସହିତ ବାହାର ଘରେ ବସିଥାଏ । ବୋଉ ଆଜି ପଚିଶ ଟଙ୍କା ଧରି ଆସିଥାନ୍ତି । ସେ ପ୍ରଥମେ ପଚିଶ ଟଙ୍କା ଦେଇ ତାପରଦିନ ବହୁତ ବେଶୀ ଟଙ୍କା ଦେବେ ବୋଲି କହିଲେ । ବଡ଼ ବୋହୂ ନନ୍ଦୋର ଗୋଡ଼ ତଳେ ପଡ଼ିଲା କିନ୍ତୁ ଆଜି ନନ୍ଦୋ ଅଟଳ । ସେ ବୋଉକୁ କହିଲା "ଯାଉଛ ନାଁ ପାଟି କରିବି ।" ଦ୍ୱିତୀୟଥର ସେ ବଡ଼ ବୋହୂକୁ ଅନାଇ ଜୋରରେ କହିଲା—"ଏଠାରୁ ଚାଲି—

ବଡ଼ ବୋହୂ ଦବିଗଲା । ବୋଉର ସମସ୍ତ ବାହାନା ଆଜି ଅକାମୀ ହୋଇଗଲା । ସେ ଘରକୁ ଫେରିଗଲା । ଭିତରୁ କବାଟ ବନ୍ଦ ହୋଇଗଲା ।

ବଡ଼ ବୋହୂର ମନ ନନ୍ଦୋ ବିରୁଦ୍ଧରେ ବିକ୍ଷୁବ୍ଧ ହୋଇ ଉଠୁଥାଏ । ଯେତେ ବେଶୀ ସେ ବରେନ୍ଦ୍ରଶର ଅତୃପ୍ତ ଦୃଷ୍ଟି ଓ ନିରାଶ ମୁହଁ କଥା ଭାବୁଥାଏ ସେତେବେଶୀ ତାର ବ୍ୟାକୁଳତା ବଢ଼ୁଥାଏ ଏବଂ ନନ୍ଦୋ ପ୍ରତି ତାର ବିରୁଦ୍ଧଭାବ ଅଧିକ ହେଉଥାଏ ।

କିନ୍ତୁ ସେ ମୁହଁରେ କିଛି କହିପାରୁ ନଥାଏ । କବାଟ ବନ୍ଦକରି ତାକୁ କହିଲା "ଶୁଣ ସୁଭଦ୍ରା ଏ ମରଦ ଭାରି ଦଗାବାଜ । ତୁମେ ଦେଖ ଏଭଳି ଲୋକ ଆଣି ଜୁଟାଇ ଦେବି ଯିଏ କି ତୁମକୁ ସୁନା ଗହଣାରେ ଭରିଦେବ ।

ସୁନା ଗହଣା ମୋର ଦରକାର ନାହିଁ । ମଣିଷ ଭଲ ପାଇବାପାଇଁ ସବୁବେଳେ ବ୍ୟାକୁଳ ଥାଏ, ଗହଣା ପାଇଁ ତ ଶ୍ରେଷ୍ଠ ଲୋକ ଛଡ଼ା ଭଲ ପାଇବାର ଅଭିନୟ କରିଥାନ୍ତି, କହି ବଡ଼ ବୋହୂ ଘର ଭିତରକୁ ଚାଲିଗଲା । ନନ୍ଦୋ କୋଠରୀରୁ ସାନ ଟ୍ରିଅଙ୍କୁ ନେଇ ଉପରେ ଯାଇ ଶୋଇଲା । ଖଟ ଉପରେ ଶବ୍ଦ ହେବାରୁ ମନଆର ନିଦ ଭାଙ୍ଗିଗଲା —"କଣ ହେଲା" ?

"କିଛି ନୁହେଁ ତଳକୁ କବାଟ ବନ୍ଦ କରିବାକୁ ଯାଇଥିଲି ।" ନିଦ ବାଉଳାରେ ମନଆ ବଡ ବୋହୂକୁ ନିଜ ବାହୁରେ ବାନ୍ଧି ଶୋଇ ପଡ଼ିଲା । ବଡ଼ ବୋହୂର ବିରହ ତପ୍ତ ମନ ସେତେବେଳେ ଅଶାନ୍ତ ଥିଲା । ନନ୍ଦୋ ମଧ୍ୟ ସ୍ଥାତାରେ ଏ ମିଳନରେ ତୃପ୍ତି ମିଳିବାର ଜମା ସୁଯୋଗ ମିଳିଲା ନାହିଁ । ଭାରି ବଦମାସ ସ୍ତ୍ରୀ ଲୋକ ।

ସ୍ବାଡ଼େ ନନ୍ଦୋ ମନରେ ଭୟ ପଶିଲା ଯେ ବଡ଼ ବୋହୂ ଯଦି ତା ନାଁରେ ମନଆଁ ଆଗରେ କିଛି କହିବତ ଭାରି ମୁସ୍କିଲ ହେବ । ମନଆ ସ୍ଵାଭାବିକ ଭାବରେ ନନ୍ଦୋକୁ ଘୃଣା କରିଥିଲା । ଦୋରଠାରୁ ଠକ ହୋଇ ତାର ଆଶଙ୍କା ଓ କ୍ରୋଧ ସବୁ ଯାଇ ପଡ଼ିଲା ବଡ଼ ଭାଉଜ ଉପରେ । ଆଜି ସେ ଆଉ ଗୋମତୀ ଗାଧୋଇ ଗଲାନାହିଁ । ଘରେ ଗାଧୋଇ ସାରି ସେ ମନେ ମନେ ପାଞ୍ଚିଲା ଯେପରିକି ଭାବରେ ସେ ମନଆକୁ ତା ପଟକୁ ଆଣିପାରିବ ।

ଘଣ୍ଟେ ଦେଢ଼ ଘଣ୍ଟା ପରେ ନିଜର ପ୍ରାତଃ କୃତ୍ୟ ସାରିବା ପାଇଁ ବଡ଼ ବୋହୂ ଯେତେବେଳେ ତଳକୁ ଗଲା ଏବଂ ମନଆ ମଧ୍ୟ ହ୍ରେଇଁ କରି ରେଜେଇ ଘୋଡ଼େଇ ହୋଇ ସିଗାରେଟ ପିଉଥିଲା ଠିକ ସେତିକି ବେଳେ ନନ୍ଦୋ ତାର ଭାଇ ପାଖକୁ ଆସିଲା ।

"କଣ ହେଲା ? ମନଆ କର୍କଶ ସ୍ୱରରେ ପଚାରିଲା । ବହୁ ପୂର୍ବରୁ ମନଆ ନନ୍ଦୋ ସହିତ ଭଲ ବ୍ୟବହାର କରୁ ନ ଥିଲା । ନନ୍ଦୋ ଅତ୍ୟନ୍ତ ଭକ୍ତ ସହକାରେ ମନଆ ଖଟ ପାଖରେ ତଳେ ବସି ପଡ଼ି କହିଲା—"ମୁଁ ତ ତୋର ଶତ୍ରୁ ଛଡ଼ା ଆଉ କିଛି ନୁହେଁ ।

ମନଆ କିଛି କହିଲା ନାହିଁ । ନନ୍ଦୋ ପୁଣି କହିଲା—ତୁ ମତେ ଯେତେବେଳେ ଯାହା କହିଚୁ ମୁଁ ତାକୁ ବେଦର ଚାରି ପରି ମାନିଛି । ସକାଳୁ ଗୋମତୀ ଗାଧୋଇ

ନାରାୟଣଙ୍କ ପୂଜା ସାର ଆସିଛୁ, ବାପା ବୋଉଙ୍କ କଥା କେବେ କେମିତ ନ ମାନ ଥାଇପାରେ କିନ୍ତୁ ତୋର ଅବାଧ୍ୟ ଯେ କି ଏ ସାହାସ ମୋର ନାହିଁ ।

ମନଆ ପୁଣି ଚୁପ ରହିଲା ।'' ସନ୍ଧ ସ୍ତ୍ରୀ ମତେ କେତେ ଥର ଡ଼ାକଲଣି ।

ତୁମ କଥା କେତେଥର ମତେ କାନ୍ଦ କାନ୍ଦ କହିଲଣି, କିନ୍ତୁ ତୁ ଯେଉଁ ଦିନଠାରୁ ମନା କରଛୁ ମୁଁ ତାଙ୍କୁ ମଧ୍ୟ ବାହାରୁନାହିଁ । ମୁଁ ତାଙ୍କୁ ସଫା କହିଦେଇଛି ଯେ ମତେ ମୋର ଭାଇର ହୁକୁମ ମାନିବାକୁ ହେବ, ମୋ ପାଇଁ ତାର ସମ୍ମାନ ସବୁଠୁ ବେଶୀ ।''

ମନଆ ଖଟ ଖୁରରେ ସିଗାରେଟର ପାଉଁଶ ଝାଡ଼ିଲା । ନନ୍ଦୋ ପୁଣି ଥରେ ଅଳ୍ପ ହସି କହିଲା —କଲକତାରୁ ମୋ ପାଇଁ କିଛୁ ଆଣିଲୁ ନାହିଁ । ସେଥିପାଇଁ ମୁଁ ଅଭିଯୋଗ କରୁଛୁ । କାଲି କିଛୁ କହିଲି ନ ହିଁ । ଭାଇକପାଇ ଭାଇମାନେ ଭାଇ ଭଉଣୀମାନଙ୍କୁ ଏକାଥରକେ ପାଶୋର ପକାନ୍ତି । ବୁଝିଲୁ, ଭଉଣୀ ସବୁ ଦିନ ପାଇଁ ଭଉଣୀ ହୋଇ ରହିବେ ।''

ଏତେ କଥା ପରେ ମନଆର ମନ ଟିକେ ତରଳିଲା, ମୁରୁକେଇ ହସି ପଚାରିଲା —ତୋର କଣ ଦରକାର ?

''ସକାଳୁ ଭାଇ ମୁଁ ସତ କହୁଛୁ ରୁ କପାଳ ଭଲରେ ରହ ଏଇଆ ମୁଁ ମନାଉଛୁ । ଯୁଗ ଯୁଗ ଧରି ବଞ୍ଚି ଥା । କଥା କହୁ କହୁ ହଠାତ୍ ଖଟ ଉପର ଆଡ଼କୁ ନନ୍ଦୋ ଅନାଇଲା । ସେ ଏଭଳି ଚମକି ପଡ଼ିଲା ଯେ ମନଆ ମନରେ ସ୍ୱତଃ କୌତୁହଳ ହେଲା । ନଇଁ ପଡ଼ି ପଚାରିଲା '' କଣ ? '' କଳା ସୂତାରେ ବନ୍ଧା ହୋଇଥିବା କାଗଜ । ଦେଖ ଦେଖେଁ । ହାୟ ହାୟ ଏଥିରେ ତ କିଛି ମନ୍ତ୍ରସିଦ୍ଧି ହେଲାପରି ଲାଗୁଛି । ସ୍ୱାକୁଚୁଁ ନା ମନଆ, ମନଆ ଲତେ ମୋଧ୍ୱଣ । ହେ ଭଗବାନ,'' କହି ନନ୍ଦୋ ସେ କାଗଜ ନିଜେ ଉଠାଇ ନେଲା ଏବଂ କିଛି କହିବାକୁ ଯାଉଥିବା ସମୟରେ ମନଆ କଠୋର ଦୃଷ୍ଟିରେ ତା ଭଉଣୀକୁ ଦେଖିଲା । କହିଲା'' ସତ୍ୟାନାଶୀ ଏ ତୋର କୀର୍ତ୍ତୀ ।...

ତୋର ଯାହା ମନ ତୁମତେ କହିପାରୁ ମୁଁ ବାପା ବୋଉଙ୍କ ରାଣ ପକାଇ କହୁଛୁ ଯେ ଏ କାମ ମୁଁ କରିନ । (ଉପରୁ କଳାସୂତା ଖୋଲି କାଗଜ, ଖୋଲୁ ଖୋଲୁ) ହେ ଭଗବାନ । ଏଥିରେ ତ ପାଞ୍ଚପୀରଙ୍କ ଧନ୍ଦା ରହିଛି ···

ମନଆ ମଧ୍ୟ କାଗଜକୁ ଦେଖିଲା । ଗୋଟିଏ ସିଙ୍ଗଥିବା ଜନ୍ତୁକୁ ଗୋଟିଏ ସିଙ୍ଗ ଓ ଲାଙ୍ଗୁଡ଼ ଥିବା ରାକ୍ଷାସ ମାରୁଛି । ଏଭଳି ଅଶୁଭ ଛକ ଦେଖି ମନଆ ମଧ୍ୟ ଆତଙ୍କିତ ହୋଇ ଉଠିଲା । ତାର ଦୃଢ଼ ବିଶ୍ୱାସ ଥିଲା ଯେ ଏହା ନନ୍ଦୋର କୀର୍ତ୍ତୀ । କାରଣ ଏ ଧାରଣାର କାମ କେବଳ ସେ କରିଥାଏ । ଏକାମ କରିଆରେ ହୁଏତ କିଛି

ଷଡ଼ଯନ୍ତ୍ର କରିବାର ଅଭିପ୍ରାୟ ତାର ରହିଛି । ଅତ୍ୟଧିକ କ୍ରୋଧ ବଶତଃ ସେ ଟୋପାଙ୍ଗି ଦାନ୍ତ ଚୋବାଇ କହିଲା'' ସତକଥା କହ ନନ୍ଦୋ ନହେଲେ ତୋ ଜୀବନ ନେଇ ନେବି ।''

ଜୀଃ ନନ୍ଦୋ କହିଲା'' ତୋର ଯାହାଇଚ୍ଛା ତୁ କହିପାରୁ ; ଜୀଃ ହିଃ କରୁ ମୁଁ ଯେତେବେଳେ ଏକାମ କରିନ ସେତେବେଳେ ଡ଼ରିଯିବ କାହିଁକି । ବାହାରେ ମୁଁ ଯାହାକିଛି କରେଁ, ତା ବୋଲି ଲୋକଙ୍କ ଉପରେ କରିବି ? ମୋ ଭାଇ, ମୋ ବାପା ମୋର ଆପଣାର । ଏତ ସେଇ ମାଇକିନିଆ ଯିଏ କି ନିଜ ମରଦକୁ ଛାଡ଼ି ପର ପୁରୁଷ ସହିତ ସ୍ତ୍ରୀ ପୀରତିରେ ମଜିଛି ତାର କାଣ୍ଡୀ ହୋଇପାରେ ।''

ମନିଆର ଉସ୍ତୁକତା ଓ କ୍ରୋଧ ଉଭୟ ତୀବ୍ର ହୋଇ ଉଠିଲା । ନନ୍ଦୋକୁ ପଚାରିଲା ''ସତ କହ କଥା କଣ ?''

ନନ୍ଦୋ କହିଲା'' ଏମିତିରେ ତ ମୁଁ କହି ନ ଥାନ୍ତି । କହିଃ କରୁ ଯେତେବେଳେ ମୋ ଭାଇର ଜୀବନ ନେବାକୁ କୁଚକ୍ର ହେଉଛି ସେତେବେଳେ ନିଶ୍ଚୟ ସବୁ କଥା ଫିଟାଇ ଦେବି ତୁମ ହୃଦୟ ହାରିଣୀ ସ୍ତ୍ରୀଙ୍କ କାମ ଏଇଟା ଯାହା ଯୋଗରୁ ତୋ ନିଜ ଭଉଣୀ ଆଜି ତୋ ନିକଟରେ ପର । ଆଜିକାଲି ରାଣୀଙ୍କର ପର ପୁରୁଷ ସହିତ ପୀରତି ଚାଲିଛି । ସେ ଏଠାରେ ତୁମଘର ଝରକାରେ ସାମ୍ନା ଦେଠେଇଙ୍କ ଘରେ ରହୁଥିବା ଭଡ଼ାଟିଆ ସହିତ ଚିଠି ପତ୍ର ଦିଆ ନିଆ ଚଳେଇଛି । ହଠାତ୍ ଦିନେ ମୋ ଆଖିରେ ପଡ଼ିଗଲା'' ।

''ଏ କଥା କଣ ସତ ?'' ମନିଆ ଧିରେ ପଚାରିଲା । ତା ଚେହେରା ଫିକା ପଡ଼ି ଯାଇଥିଲା । ସମସ୍ତ ଦେହ କମ୍ପୁଥିଲା ।

ମୋର ଭଲ କଣ ଲାଭ ଅଛି ଯେ ମୁଁ ଏ ସବୁ କଥାରେ ମିଛ କଥା ଲଗାଇ ଜୁଟାଇ କହିବି ? ମୁଁ ନିଜ ଆଖିରେ ଦେଖିଛି, ଜଣେ ବଡ଼ ବଡ଼ ବାଳ ରଖିଥିବା ଲୋକକୁ ଭାଉଜ ଛାତ ଉପରୁ ଚିଠି ପତ୍ର ଦିଆନିଆ କରେ । ତାର ମଧ୍ୟ ଚିଠି ଭାଉଜ ପାଖକୁ ଆସେ ।

''କୋଉଠି ଅଛି ସେ ସବୁ ଚିଠି ?'' ମନିଆ ଗର୍ଜି ଉଠି କହିଲା ନନ୍ଦୋ ଧିରେ କହିଲା'' ଏସବୁ ପରପଞ୍ଚ କାମରେ କାମରେ ମୁଁ ନାହିଁ । ଯଦି ଏ ପାଷ୍ଟପୀରଙ୍କ ମନ୍ତ୍ରସିକ୍ତ କାଗଜ ଦେଖି ନ ଥାନ୍ତି......''

ମନିଆ ଭଉଣୀର କଥାରେ କର୍ଣ୍ଣପାତ ନକରି କ୍ରୋଧରେ ହିତାହିତ ଜ୍ଞାନଶୂନ୍ୟ ହୋଇ ବଡ ବୋହୁର ବାକ୍ସ ପତ୍ର ଖୋଜିବା ଆରମ୍ଭ କରିଥାଏ । ଏଇ ସୁଯୋଗରେ ନନ୍ଦୋ ଚୁପ ଚୁପ ବାହାରକୁ ଚାଲି ଆସିଲା ।

ଅଳ୍ପ ସମୟ ମଧ୍ୟରେ ୪/୫ଟି ବାକ୍ସ ଖୋଲି ପ୍ରତ୍ୟେକଟି ଲୁଗା ଉଠାଇ ଦେଖିଲା ପରେ ତାଳି ଦିଆହୋଇ ଥିବା ଗୋଟିଏ ଟ୍ରଙ୍କର ତାଳି ଭାଙ୍ଗି ତା ଭିତରୁ ହରେକୃଷ୍ଣ ଦ୍ୱାରା ଲିଖିତ ପତ୍ର ସବୁ ଏକ ରେଶମୀ ରୁମାଲ ଭିତରୁ ପାଇଲା । ପତ୍ର ପଢ଼ୁ ପଢ଼ୁ ମଳଆର ସମସ୍ତ ଚେତନା ଲୋପ ହୋଇଗଲା, କ୍ରୋଧ ବଶତଃ ଅକ୍ଷରଃ ସବୁ ମଧ୍ୟ ଠିକ୍ ଦେଖି ପାରିଲା ନାହିଁ । ମଳଆ ଗର୍ଜନ କରି ଘର ଭିତରୁ ବାହାରକୁ ଆସିଲା । କୁଆଡେ ଗଲା ସେ ହାରାମଜାଦ ?"

ବଡ ବୋହୂ ତଳେ ଗାଧୁଆ ଘରେ ଗାଧୋଉଥିଲା । ନନ୍ଦୋ ଇଶାରାରେ ଜଣାଇ ଦେଲା ତାର ଉପସ୍ଥିତି । ଗାଧୁଆ ଘର କବାଟରେ ଧକ୍କା ମାରି ମଳଆ ଗର୍ଜି ଉଠିଲା "ଦୁଆର ଖୋଲ, ଚଣ୍ଡାଳ, ହାରାମଜାଦୀ, ଚୋର......

ବଡ଼ବୋହୂ ଅଧା ଗାଧୁଆ ଅବସ୍ଥାରେ ଓଦା ଲୁଗା ପିନ୍ଧି କବାଟ ଖୋଲିଲା । ମଳଆ ହଠାତ୍ ତା ହାତଟାଣି ଧରି ତାକୁ ଅଗଣାକୁ ଘୋଷାଡ଼ି ଆଣିଲା ଏବଂ ଭୂଇଁରେ ଧକ୍କା ଦେଇ ଅଶ୍ରାବ୍ୟ ଭାଷାରେ ଗାଳି ଦେବାକୁ ଆରମ୍ଭ କଲା । ଘୁସି, ଗୋଇଠା, ଆପଡ଼ ଖାଇ ବଡ଼ ବୋହୂର ସହିବା ଶକ୍ତି ବେଅକ୍ତିଆର ହୋଇ ତାକୁ ଚିତ୍କାର କରିବା ପାଇଁ ବାଧ୍ୟ କଲା । ଘରେ ପାଟିତୁଣ୍ଡ ବଢ଼ିଗଲା । ଶଙ୍କର ଓ ଶ୍ରେଷ୍ଠବୋହୂ ତାଙ୍କ ଘରୁ ବାହାରି ଆସିଲେ । ଘର ବାହାରେ ପାଖ ପଡ଼ୋଶୀ ଗଳିରେ ବଡ଼ ବୋହୂର ଚିତ୍କାର ଓ ମଳଆର ଗର୍ଜନ ଓ ଗାଳି ଶୁଣାଗଲା ।

ନନ୍ଦୋ ସେତେବେଳେ ପୂଜାଘରେ ବସି ଠାକୁରଙ୍କୁ ଗାଧୋଇ ଦେବାରେ ବ୍ୟସ୍ତ ।

ଶଙ୍କର ବଡ ଭାଇକୁ ବାଧା ଦେବାକୁ ଗଲାବେଳେ ମଳଆ ତାକୁ ତଡ଼ି ଦେଲା । ମଳଆ ମୁଣ୍ଡକୁ ପିତ୍ତ ଚଢ଼ିଯାଇଥାଏ, ରୁଣ୍ଡ ଫୁଲାଇ " ତୁମମାନଙ୍କ ଯୋଗୁଁ ଏ ସବୁ ହୋଇଛି । ଶଳା ତୋର ପାଇଁ ମୋ ଘରେ ଏ ବ୍ୟଭିଚାର । ଆଜି ମୁଁ ସମସ୍ତଙ୍କୁ ଖୁନ୍ କରିଗୁଡ଼ିବ । ଏତ......ମୋର ଲକ୍ଷେ ଟଙ୍କାର ଇଜ୍ଜତ୍ ପାଣିରେ ପକାଇଦେଲା । ଏଇ ଶାଳାକୁ ମୁଁ ଜୀଅନ୍ତା ପୋଡ଼ି ଦେବ । ନେ—ନେ ଶାଳୀ ଏଇଟା ହେଲା ପ୍ରେମ ଏଇଟା ଚୁମା ........ ।"

ଗୋଟିଏ ହାତରେ ତା ହାତ ଧରି ସାରା ଅଗଣାରେ ତାକୁ ମାରି ମାରି ଘୋଷାଡ଼ି ଘୋଷାଡ଼ି ବଡ଼ ବୋହୂର ଆଉ କିଛି ବାକି ରଖିଲା ନାହିଁ । ତାର ଓଦା ଲୁଗା କାଦୁଅରେ ଲଟପଟ ହୋଇ ଥାଏ । ଦେହର ଆବରଣୀ ଯେତେ ରଖିବାକୁ ଚେଷ୍ଟା କଲେ ମଧ୍ୟ ରହୁ ନଥାଏ ।

ଗଳିର କିଛି ଦେଖଣାହାରୀ ପାଟି କୁଣ୍ଡ ଶୁଣି ଘର ଭିତରକୁ ପଶି ଆସିଲେ । ବୃଦ୍ଧଆଡ଼ୁ ସମସ୍ତେ କହିଲେ" ଆରେ ହେଲା କଣ ? କାହିଁକି ଏତେ ମାରୁଛ ? ଆଉ

ମାଁର ନାହିଁ । ଆସିଥିବା ଦୁଇଜଣ ସ୍ତ୍ରୀ ଲୋକଙ୍କୁ ଡ଼ାକନେଇ ସମସ୍ତ ଇତିହାସ କହିବା ପାଇଁ ନନ୍ଦୋ ନିଜ କୋଠରୀ ଭିତରକୁ ଡ଼ାକ ନେଲା ।

"ହାୟ ଭଗବାନ" ସୁନ୍ଦୋ ପୁରତାମୀ ସବୁ କଥା ଶୁଣି କହିଲା । ଲାଜ କୋଠରୀର ଏରୁଣ୍ଡି ବନ୍ଧରେ ବସିଥିବା ପୁରତାମୀ ନିକଟକୁ ୯ୁଁଙ୍କି ପଡ଼ି ପଚାରିଲା" ପୁରତାମୀ କଣ ହେଲା ?

ମୁଣ୍ଡରେ ହାତ ଦେଇ ଦୁଃଖ ମିଶା ସ୍ୱରରେ ପୁରତାମୀ ଜୋରରେ କହିଲା- କଣ କହିବ ଆଉ ସେ ଲାଜକଥା ଭଉଣୀ, କଳି ଯୁଗ, ଏଇଟା ପ୍ରକୃତରେ ଘୋର କଳିଯୁଗ । ସ୍ୱେ ରାଜକୁମାରୀ ପରି ଚେହେରା, ଝୋଟକାଠିଆ, ସୁସ୍ଥ, ସୁନ୍ଦର ଯାହାର ସ୍ୱାମୀ ସେ କପରି ଏଭଳି କୁକର୍ମ କରିପାରେ ? ଭଗବାନ ନ କରନ୍ତୁ ଏଭଳି ବୋହୂ କାହାକୁ ନମିଳୁ । ବଦମାସ ଅଘଟ୍ଟି ଜାତି, ରଜାଘରେ ରହି ମଧ୍ୟ ମଇଳା ଗୁଣ୍ଡିବା ପ୍ରକୃତି ଯାଇନି । ସତରେ ଘୋର କଳିକାଳ । ହାୟ । ହାୟ ।"

ସବୁ ଇଂରେଜୀ ଫେଶନ୍‌ର ଗୁଣ ଅରତାମୀ ଅଦା । ଏବେ ପୁଣି ସ୍ୱରାଜ ଆସିଗଲା । ସ୍ତ୍ରୀ ଲୋକମାନେ ଏବେ ଭୋଟ ଦେବା ପାଇଁ ଅଧିକାରୀ ହେଲେ । ଯାହା ଚାହିଁବେ ସେଇଆ ଅଧିକାର କରିବେ । ଆମ ଜମ ପରି ଦୁଇ ଚାରିଜଣ ରକ୍ଷଣଶୀଳ ଲୋକେ ଏବଂ ବାପ ଅଜା ଅମଳର ଇଜ୍‌ଜତ୍ ତା ନ ହେଲେ ନାକ କାଟି ବସି ଥିବ ହୋଇ । କାଲି ଦେଖିବ କୌଣସି ଦଳ ସ୍ତ୍ରୀ ପକ୍ଷନେଇ ଛାଡ଼ପତ୍ର ପାଇଁ ନିବେଦନ କାଗଜ ପକାଇବ । ଏଭଳି ନାକ କଟିଲା ତ କଟିଲା, ବୋଝଉପରେ ଲଙ୍କା ବଢ଼ା ପରି ସାରା ସମାଜ ଛେପ ପକାଇବ ।

"ଦେଖ, ମୁଁ ଗୋଟି ଗୋଟି କରି ସବୁ କେଖଲକୁ ଦେଖିନେବି । ସମସ୍ତଙ୍କୁ ଖୁନ କରିବି । "ମନଆ ଅଗଣାରେ ଠିଆ ହୋଇ ଗର୍ଜି ଥାଏ ।

"ଆରେ ଭାଇ ଏ ସବୁ ହେଲା ବଡ଼ ଘରର ଗୁମର କଥା" ।

ନିଜ ନିଜ ଘରୁ ବାହାରି ରାସ୍ତାରେ ଖରାରେ ଠିଆ ହେବା ପୂର୍ବରୁ ଭଦ୍ରୁତ ବଣିଆ ଘର ଆଗରେ ଗିହ୍ନିମତ ଭିଡ଼ ହୋଇଥାଏ । ମିଷ୍ଟର ବର୍ମାଙ୍କ ଘର ସାମନା ରାସ୍ତା ପର୍ଯ୍ୟନ୍ତ ଏତେ ଭିଡ଼ ହୋଇଥାଏ ଯେ ସିଧା ରାସ୍ତା ପାରି ହେବା ଦୁଷ୍କର ହୋଇ ଉଠୁଥାଏ । ଧିରେ ଧିରେ ଭିଡ଼ ବଢ଼ୁଥାଏ ମଝିରେ ମଝିରେ ମନଆ ଉତ୍ତେଜିତ ହୋଇ କାନ୍ଧୁଅରେ ଲଟପଟ ହୋଇଥିବା ନିଜ ପତ୍ନୀ ଉପରେ ଦଉଡ଼ି ପାହାର ଥୋଇ ଦେଉଥାଏ । ମଝିରେ ମଝିରେ ଜନତାର ବୁଝାଇବା ଟିକା ଟିପ୍ପଣୀ ଚାଲୁଥାଏ । ଶେଷରେ କଥା ଆସି ତାର ବର୍ମାଙ୍କ ପଢ଼ଣା ଓ ସଜ୍‌ଜନର "ବୀଭତ୍ସର ଆଡ଼ଡ଼ା "ନିକଟରେ ଅଟକି ଗଲା । ନଂଦୋର କୋଠରୀରେ ଜମାହେଉ ସ୍ତ୍ରୀ ଲୋକଙ୍କ ମନ୍ତବ୍ୟ

ଜନଗତ କଥା ଯାହା କିଛି ପ୍ରଚଳିତ ହେଉଥିଲା ତାହା ବିଷ ରୂପେ ଜନମତ ତିଆରି କରିବାରେ ସହାୟକ ଥିଲା । ଏ ସମସ୍ତ କଥା ମନଆକୁ ଅଧିକ ଉତ୍ତେଜିତ କରାଉଥାଏ । "ମୁଁ ଏ ଶାଳୀ ରାଣ୍ଡୀକୁ ଆଉ ମୋ ପାଖରେ ରଖିବି ନାହିଁ । ଯାଉ ସେ ତାର ପ୍ରେମିକପାଖକୁ । ନିକଳ ବାହାର ଏଠୁ ।"

ମନଆ ବଡ଼ ଦୋକାନକୁ ପୁଣି ଘୋଷାଡ଼ି ବାହାରକୁ ନେଇ ଆସିଲା । ଅଗଣା ବାରଣ୍ଡା ଏବୁଣ୍ଡି ଇତ୍ୟାଦି ଉପରକୁ ଆବୁଡ଼ା ଖାବୁଡ଼ାରେ ଆଘାତପାଇ ବଡ଼ ବୋହୂର ଖାଅନ୍ତା ଶବ ଘର ବାହାରକୁ ଅଣାଗଲା । ବଡ଼ ବୋହୂ ଅତ୍ୟନ୍ତ କଷ୍ଟରେ ଶୀଘ୍ର ଉଠି ନିଜ ଲୁଗା ଠିକ୍ କରି ମୁହଁ ତଳକୁ ପୋତି ଧୂଳି ଧୂସରହୋଇ ପ୍ରତି ଗୃହର ଦାଣ୍ଡ ବାରଣ୍ଡା ତଳେ ବସି ପଡ଼ିଲା ।

ଭିଡ଼ ଅଧିକରୁ ଅଧିକ ହେଲା । ସହରବାସୀଙ୍କ ପାଇଁ ଏକ ନୂଆ ମୁଖରୋଚକ ଖୋରାକ ମିଳିଲା । ଏ ସ୍ତ୍ରୀର ପ୍ରେମିକ ଜଣେ ଲବ୍ଧ ଏବଂ ଅନ୍ୟ ଏକ ଧନୀ ଦୁଲାଳ ଯିଏକ ସଉକିନ୍ ପେଂଟର ମଧ୍ୟ ଅଟେ, ଏଠି ଏକ ବ୍ୟଭିଚାରର ଆଡ୍ଡା ଖୋଲିଛି । ତାର ଘର ଗ୍ରୀତ ଉପରେ ଏ ପ୍ରେମ କାହାଣୀର ସୂତ୍ରପାତ । ଏ ସମସ୍ତ କଥାରେ କନ୍ୟା ଓ ସଜ୍ଜନଙ୍କ ଚରିତ୍ରର ବିଶ୍ଳେଷଣ, ଉଡ଼ାଜାହାଜରୁ ନିବେଦନ ପତ୍ର ଫିଙ୍ଗାଯିବା କଥା ମଧ୍ୟ ପଡ଼ିଲା । ଧନୀ ବିରୁଦ୍ଧରେ ସାଧାରଣ ଜନତାର ସହଜାତ ଘୃଣା ଫଳରେ ସଜ୍ଜନକୁ ଏଭଳି ଚିତ୍ରିତ କରାଗଲା । ଯାହା ଫଳରେ ତା ବିରୁଦ୍ଧରେ ସାଧାରଣ ଲୋକମତ ପ୍ରବଳତ ହେଲା । କଥା କଥାରେ ଲୋକେ ମନଆର ସାନଭାଇ ଓ ତାର ସ୍ତ୍ରୀ, ତାରାବର୍ମାଙ୍କୁ ସେ ସ୍ୱାଇରେ ନୂଆ ଫେଶନର ଚାଲି ଦେଖାଇ ନିର୍ଲଜତା ବଢ଼ାଇବା ଦୋଷରେ ଦୋଷୀ ମଧ୍ୟ କଲେ ।

କାଦୁଅରେ ଲଟପଟ ହୋଇ, ମୁହଁ ଲୁଚାଇ ବଡ଼ ବୋହୂ ଲୋକଙ୍କ ବହୁ ପ୍ରକାର କୁମନ୍ତବ୍ୟର ଶୀକାର ହେଉଥାଏ । ପ୍ରବୀଣ ଗୋଷ୍ଠିର ଏଭଳି କୁମନ୍ତବ୍ୟ ନବୀନ ଗୋଷ୍ଠି ସହି ପାରିଲେ ନାହିଁ । ଉଭୟଙ୍କ ମଧ୍ୟରେ ଗରମାଗରମ ଯୁକ୍ତି ମଧ୍ୟ ହୋଇଗଲା । ଫଳରେ ଅନ୍ତିମ ଜନମତ ହେଲା ଯେ ନୂଆ ଓ ପୁରୁଣା ଉଭୟ ଯୁଗରେ ଭଲ ମନ୍ଦ ମିଶିରହିଛି । ଏଥି ସହିତ ସମାଜରେ ଘଟୁଥିବା ବ୍ୟଭିଚାର, ଅନାଚାରକୁ ଦମନ କରିବାକୁ ଯେ ହେବ ଏ କଥା ମଧ୍ୟ ନିଷ୍ପତ୍ତି ହୋଇଗଲା । ଜମିଥିବା ଭିଡ଼ ବହୁତ ପ୍ରକାର ନୈତିକ ସାମାଜିକ ସମସ୍ୟାଗୁଡ଼ିକ ଉପରେ ଗମ୍ଭୀର ଅନୁଧ୍ୟାନ କରି କିଛି ସିଦ୍ଧାନ୍ତ ବ୍ୟକ୍ତ କରିସାରି ଅଫିସ, ସ୍କୁଲ ଦୋକାନ, କଲେଜ ଆଦି ଯାଇ ଯିବାର ସମୟ ହୋଇ ଯିବାରୁ ଯେଝା ଘରକୁ ଯିଏ ଫେରିଗଲେ । ନୂଆ ଭିଡ଼ ଜମୁଥାଏ, ପୁରୁଣା ଭିଡ଼ କମୁଥାଏ ।

ବଡ଼ ବୋହୂ ଏଭଳି ଭାବରେ ପ୍ରହସନର ସାମଗ୍ରୀ ହୋଇ ବସି ରହିଥାଏ ।

# ସତେଇଶି

ବଡ଼ ଝିଅର ଅନ୍ଧକ୍ରୋଧ, ଜୀବନରେ ମାରି ଦେବାର ଧମକ ତଥା ବାହାର ଲୋକଙ୍କ ନିକଟରେ ନିଜର ଇଜ୍‌ଜତ ଆଡ଼ ଖିଆଲ ନେଇ ଶଙ୍କର ଲାଲ ଉପରକୁ ଚାଲି- ଆସିଲା । ଜ୍ୟେଷ୍ଠ ବୋହୂ ମଧ୍ୟ ଉତାଲା ଉପରେ ଆଡ଼ଷ୍ଟ ହୋଇ ଠିଆ ହୋଇଥାଏ । ଭୟ ଓ ଉଦ୍‌ବେଗ ମିଶି ତା ଚେହେରା ଶେତା ପଡ଼ିଯାଇଥାଏ । ଶଙ୍କରର ବୁଦ୍ଧି ସୁଦ୍ଧି ମଧ୍ୟ କାମ କରୁନଥାଏ । ଉଭୟ ଟିକେ ଆଢ଼ୁଆଳରେ ଠିଆ ହୋଇ ତଳେ ଘଟୁଥିବା ପ୍ରହସନ ଦେଖୁଥାନ୍ତି ।

ତାରାବର୍ମା ତାଙ୍କ ଘରେ ଏ ଘଟଣାର ଇତିବୃତ୍ତି ଜାଣିବା ପାଇଁ ବ୍ୟସ୍ତ ହେଉଥାନ୍ତି । ବର୍ମା ତା'ଙ୍କୁ ଉପରକୁ ଉଠିବାକୁ ବାରଣ କରି ପତ୍ନୀର ପ୍ରେରଣାରେ ନିଜେ ଉଦ୍ଭୁତ ବଣିଆ ରୂପ ଦେଇ ତଳକୁ ଓହ୍ଲାଇଲେ । ଉପରତାଲା ଉପରୁ ଉଙ୍କି ମାରି ତଳ ଅଗଣାର ପ୍ରହସନ ଦେଖୁଥିବାବେଳେ ଜ୍ୟେଷ୍ଠ ବୋହୂର ଦୃଷ୍ଟି ଉପରକୁ ଗଲା । ବର୍ମାଙ୍କୁ ଦେଖି ସେ ତାର ସ୍ୱାମୀଙ୍କୁ ଇସାରା କଲା । ବର୍ମା ମଧ୍ୟ ଦୁହିଁଙ୍କୁ ଉପରକୁ ଡାକିନେଲେ ଏବଂ ଦୀର୍ଘ ଶ୍ୱାସନେଇ କହିଲେ "ମିଷ୍ଟର ଲାଲ ଏଥର ଆପଣ ପୁଲିସକୁ ଇନ୍‌ଫର୍ମ କରି ଦିଅନ୍ତୁ । ଏ ସାଇବାଲା ସମସ୍ତେ ଦୁଷ୍ଟଲୋକ, ଏ ଶଳା ମନଆଙ୍କୁ ପ୍ରରୋଚିତ କରାଇ ମୋ ଝିଅଜଙ୍କୁ ମାରି ପକାଇବେ ।

ଜ୍ୟେଷ୍ଠ ବୋହୂ କାନ୍ଦି କାନ୍ଦି କହିଲା 'ହଁ ଠିକ୍ କଥା' ଏମାନଙ୍କୁ ଶୀଘ୍ର ଧରାଇ ଦିଅ । ନଚେତ୍ ନାନୀଙ୍କ ଜୀବନ—

ମୋର କିଛି ଆପତ୍ତି ନାହିଁ, ଖାଲି ଏତିକି ଭାବିବା କଥା ପୁଲିସ ଏନ୍‌କ୍ୱାରୀରେ ବିଚରା ମିଷ୍ଟର ସଜ୍‌ଜନ ଅକାରଣରେ ଇନ୍‌ଭଲ୍‌ଭ୍‌ଡ୍ ହୋଇ ଯିବେ । ଏବେ ତ ଆପଣ ଦେଖିଲେ ଏ ସାଇ ଲୋକେ କେବଳ ତାଙ୍କୁ ନୁହେଁ ଆମ୍ଭମାନଙ୍କୁ ମଧ୍ୟ ନାନା ଅକଥ୍ୟ କଥା କହୁଛନ୍ତି "ଶଙ୍କର ଲାଲ କହିଲା"

"ତେବେ ସ୍ତ୍ରୀଙ୍କର କଣ ହେବ ? ତାଙ୍କ ବାପା ଘରକୁ ଭଳ—

ବାପ ଘରେ ବିଚରାର ଅଛି ବା କିଏ ? ଜଣେ ମାତ୍ର ସାବତ ଭାଇ ରହିଛି ସିଏ କଣ ଏଭଳି ଅବସ୍ଥାରେ ମୋଢ଼ମାଙ୍କୁ ଆଶ୍ରୟ ଦେଇ ପାରିବ ? ସ୍ୱରୂପ କଣ କହୁଛ ? ମୋର ତ କାହିଁ ବିଶ୍ୱାସ ହେଉନି, "ତାରା କହିଲା ।

ସାନ ବୋହୂ ଦୀର୍ଘ ଶ୍ୱାସ ପକାଇ କହିଲା—"ଉହୁଁ ।"

"ପୁରୁଷମାନଙ୍କର ଏଥିପାଇଁ ହେଉଛି ଏକଚ୍ଛତ୍ର ଅଧିକାର । ସେମାନେ ସମସ୍ତ କିଛି କରି ପାରିବେ କିଛି ଦୋଷ ଆପଣଙ୍କୁ ଲାଗିବନି କିନ୍ତୁ ସ୍ତ୍ରୀ ଯଦି—"

ତାର କଥା ଉପରେ ବର୍ମା ଶଙ୍କରଙ୍କୁ କହିଲା "ତା ହେଲେ ଆପଣ ମିଷ୍ଟର ସଜ୍ଜନ ବର୍ମାଙ୍କୁ ଇନ୍‌ଫର୍ମ କରିଦିଅନ୍ତୁ ।"

"ସେ ଏଠାରେ ନାହାନ୍ତି । ବାହାରକୁ କୁଆଡ଼େ ଯାଇଛନ୍ତି ।" "ତା ହେଲେ ବରେ ହେସ୍ ମହାଶୟଙ୍କୁ ଇନ୍‌ଫର୍ମ କରାଯାଉ । ଦୋଷ ଯାହା ହେଉ ନା କାହିଁକି ସେ ତ ମୋହାନ ଦେବାଙ୍କ ଲଭର......"

"ହଁ, ହଁ ଠିକ୍ କଥା ତାଙ୍କୁ ଇନ୍‌ଫର୍ମ କରିଦିଅ ।" ତାପରେ ତାର ସ୍ୱାମୀର କଥା ସମର୍ଥନ କରି ସାନ ବୋହୂକୁ କହିଲା" ସରୂପ ଛୋଟ ଝିଅଟା ଷ୍ଟେକରା ଅଛି । କେତେ କାନ୍ଦୁଛି ଦେଖିଲ ?"

ସାନ ବୋହୂ କହିଲା" ଆଜି ତ ଆମ ଘରକୁ ଦୁଧ ଆସିନି । ତଲେ ଥିଲେ ମଧ୍ୟ... ..'

"ମୋ ଘରକୁ ଚାଲ ।" ଶଙ୍କରକୁ ଅନାଇଁ ତାପରେ କହିଲା, "ମିଷ୍ଟର ଲାଲ ଆପଣ ଯେ କୌଣସି ପ୍ରକାରେ ବରେହେଣ ମହାଶୟଙ୍କୁ ଖବର ଦିଅନ୍ତୁ ।"

"କିଏ କହିବ ତାଙ୍କ ଘର ମୁଁ ଜାଣେନି ।......କିନ୍ତୁ ମୁଁ ମହିପାଲ ବାବୁଙ୍କୁ ପାଖକୁ ଯାଉଛି । ସେ ସାହିତ୍ୟିକ ବ୍ୟକ୍ତି ବୋଧହୁଏ

"ହୁଁ ପି ଜ । ଶୀଘ୍ର ଯାଆନ୍ତୁ ।" ବର୍ମା କହିଲେ । ଚାଲନ୍ତୁ ଆପଣଙ୍କ ଘର ବାଟ ହୋଇ ଆପଣଙ୍କ ସାଇକଲ ନେଇ ଚାଲି ଯିବ ।"

"ଠିକ୍ ଅଛି ଚାଲନ୍ତୁ ।"

"ହଁ ଆମ ଘର ବାଟ ଦେଇ ବର୍ତ୍ତମାନ ଯିବାଟା ନିରାପଦ ମଧ୍ୟ ନୁହେଁ ।

"ଠିକ୍ ଅଛି ଆପଣ ଆସନ୍ତୁ ।"

ସମସ୍ତେ ବର୍ମାଙ୍କ ଘର ଛାତ ବାଟ ଦେଇ ଗଲେ । ସାନ ବୋହୂ ଛୋଟ ଛୁଆକୁ ତା ସ୍ୱାମୀକୁ ଦେଇ କହିଲା" ତୁମେ ଆଗରେ ଚାଲ, ମୁଁ ଘର କବାଟ ତାଲା ବନ୍ଦକରି ଆସୁଛି ।"

ଦେଢ଼ ଘଣ୍ଟା ଭିତରେ କର୍ଣ୍ଣେଲ ଓ ମହିପାଲ ଆସି ପହଞ୍ଚିଲେ । ଭିଡ଼ ବହୁତ କମି ଯାଇ ଥିଲେ ସୁଦ୍ଧା କିଛି ସ୍ତ୍ରୀ ପୁରୁଷ ଘରର ଆଖ ପାଖରେ ଜମି ଟୀକା ଟୀପ୍‌ପଣି

କରୁଥାନ୍ତି । ମନୁଆ ବୈଠକ ଘରେ ହଠାତ୍ ମିଳିଥିବା ଦୁଇ ଚାରି ଜଣ ହିତୈଷୀଙ୍କ ଗହଣରେ ଗମ୍ଭୀର ହୋଇ ବସି ସିଗାରେଟ ଟାଣୁଥାଏ । ନନ୍ଦୋର ଦରବାର ତା କୋଠରୀରୁ ବାହାର ଅଗଣାରେ ବସିଥାଏ । ସାନ ବୋହୂ ବଡ଼ ବୋହୂର ଝିଅକୁ ନେଇ ଭାଗି ବର୍ମାଙ୍କ ଘରେ । ଶଙ୍କର ଲାଲର ଆଗମନକୁ ପ୍ରତୀକ୍ଷା କରୁଥାଏ । ବର୍ମା ଆଜି ତାଙ୍କ କାମକୁ ଗଲେ ନାହିଁ ।

ବର୍ମା ତାଙ୍କ ଘରୁ କର୍ଣ୍ଣେଲ ଓ ମହୀପାଳଙ୍କୁ ଗଳି ମୁଣ୍ଡରେ ଆସୁଥିବାର ଦେଖି ପାରିଲେ । ଶଙ୍କର ଲାଲ ସେମାନଙ୍କ ସହିତ ନଥିଲା । ଏମାନେ କର୍ଣ୍ଣେଲଙ୍କ ଗାଡ଼ିରେ ଆସିଥିଲେ ।

ଭିଡ କଟାଇ ମହୀପାଳ ଓ କର୍ଣ୍ଣେଲ ବଡ ବୋହୂ ପାଖରେ ପହଞ୍ଚିଲେ । ଅଖଣ୍ଡ ସମାଧି ଧ୍ୟାନସ୍ଥ ଯୋଗୀଙ୍କ ପରି ଆଣ୍ଠୁ ମାଡ଼ି ମୁଣ୍ଡପୋତି ବଡ ବୋହୂ ସେଇ ପରି ବସି ରହିଥାଏ, ତଫାତ୍ ଏତିକି ଯେ କାଦୁଅ ଓ ଧୂଳିରେ ଲଟପଟ ହେଉଥିବା ଓଦା ଲୁଗା ଏବେ ଖରାରେ ଶୁଖି ଯାଇଥାଏ ।

ମହୀପାଳ ଧୀର ଗମ୍ଭୀର ସ୍ୱରରେ ତା ନିକଟକୁ ଯାଇ ମୁଣ୍ଡରେ ହାତରଖି କହିଲା —"ଉଠ ଭଉଣୀ, ମୋ ସାଙ୍ଗରେ ଆସ ।"

ବଡ଼ ବୋହୂ ମୁଣ୍ଡ ଟେକିଲାନି । କର୍ଣ୍ଣେଲ ଭିଡ଼କୁ ଅନାଇ ପାଟି କଲା "ଏଠି ଆପଣମାନେ କଣ ପାଇଁ ରୁଣ୍ଡ ହୋଇଛନ୍ତି ? ଏଠି କଣ କିଛି ନାଟ ତାମସା ହେଉଛି, ଯେ ଦେଖୁଛନ୍ତି ।

ନୂଆ ମଣିଷର ନୂଆ ପାଟି ଶୁଣି କିଛି ଗୋଳମାଳର ଆଶଙ୍କା କରି ମନୁଆ ବାହାରକୁ ବାହାରି ଆସିଲା ।

ଭିଡ଼ ମଧ୍ୟରୁ ଜଣେ କର୍ଣ୍ଣେଲଙ୍କୁ ଶୁଣାଇଲା" ତାମସା ତ ସତରେ ହେଉଛି ଲୈଲା ମଜନୂଙ୍କର —"

"ଆପଣମାନଙ୍କୁ ଲଜ୍ୟା ଲାଗୁନି ?" କର୍ଣ୍ଣେଲ ଓ ମହୀପାଳ ଉଭୟେ ଗର୍ଜିଉଠିଲେ । ମହୀପାଳଙ୍କୁ କହିବାର ଦେଖି କର୍ଣ୍ଣେଲ ଚୁପ ହୋଇଗଲା । ମହୀପାଳ କହିବାକୁ ଲାଗିଲା" ଆପଣମାନଙ୍କୁ ମଜା ଲାଗୁଛି ନା ! ଏହି ଅସହାୟ ଦୁଃଖି ସ୍ତ୍ରୀ ଲୋକର ଚୂଡାନ୍ତ ଦୁର୍ଦ୍ଦଶାରୁ ଆପଣମାନେ ଆନନ୍ଦ ପାଉଛନ୍ତି ? ମୁଁ ବାଜି ମାରି କହୁଛି, ଆପଣମାନଙ୍କ ମଧ୍ୟରେ ଯିଏ ମନ, ବଚନ ଓ କର୍ମରେ ସଂପୂର୍ଣ୍ଣ ଶୁଦ୍ଧ ଥିବ ସେ ଆସି ଏ ମହିଳାଙ୍କର ନିନ୍ଦା କରୁ । ଧରାଯାଉ ଯେ ଏ ସ୍ତ୍ରୀ ଲୋକ ବହୁତ ଖରାପ କାମ କରିଛି । କିନ୍ତୁ ଆପଣମାନଙ୍କ ମଧ୍ୟରୁ କିଏ ନିଷ୍ପାପର ଦାବିଦାର ଅଛି ? ଯାହାର ଏ ସତ୍ ସାହାସ ଅଛି ସେ ମୋ ସାମ୍ନାକୁ ଆସୁ ।

ଜମିଥିବା ଲୋକେ କ୍ଷଣକ ପାଇଁ ସ୍ଥାଣୁ ହୋଇଗଲେ । ମନୁଆ ନିଜ ଦାଣ୍ଡ ପିଣ୍ଡାରେ ଠିଆ ହୋଇ ଛାତି ଫୁଲାଇ କହିଲା— —"ଆପଣ ମାନେ କିଏ ହୋ ବାବୁ ? ଏ କଥାରେ ଅପମାନିତ ମଧୁପାଳ ଉତ୍ତେଜିତ ହୋଇ ପଚାରିଲା 'ଆପଣ ଏକଥା ପଚାରିବା ପାଇଁ କିଏ ?'

"ମୁଁ ଏ ସ୍ତ୍ରୀ ଲୋକର ସ୍ୱାମୀ"

"ତେବେ ଆପଣ ଆପଣଙ୍କ ସ୍ତ୍ରୀଙ୍କୁ ଶୀଘ୍ର ଘର ଭିତରକୁ ନେଇ ଯାନ୍ତୁ ।

"ଆପଣ ---" ମନୁଆ କିଛି କହିବା ପୂର୍ବରୁ କର୍ଣ୍ଣେଲ ଉତ୍ତେଜିତ ହୋଇ ହାତ ବଢ଼ାଇ କହିଲା" କିଣ ଆପଣ, ଆପଣ ହେଉଛନ୍ତି ? ତୁମକୁ ନିଜ ସ୍ତ୍ରୀକୁ ମାରିବା ପାଇଁ କିଏ ଅଧିକାର ଦେଲା ? ସେ ଯଦି ବ୍ୟଭିଚାରିଣୀ ତେବେ ତୁମେ ସିଧା କୋର୍ଟକୁ ଯାଇ ପାରିଥାନ୍ତ । ତୁମେ ଆଇନକୁ ନିଜ ହାତକୁ କେଉଁ ଅଧିକାର ବଳରେ ନେଲ...

"ଆପଣମାନେ କା ହେଲେ ଏ ଶାଳୀର ନାଗର —ମନୁଆ କଥା ସଂପୂର୍ଣ୍ଣ ହେବା ପୂର୍ବରୁ ମଧୁପାଳ ତା ହାତ ଧରି ତାକୁ ତଳକୁ ଘୋଷାରି ଆଣିଲା । ଏହି ଅପ୍ରତ୍ୟାଶିତ ଆକ୍ରମଣ ଫଳରେ ଆଘାତପାଇ ନିଜକୁ ପ୍ରସ୍ତୁତ କରିନେବା ପୂର୍ବରୁ ମଧୁପାଳର ଶକ୍ତ ହାତର ଚୂପୁଡ଼ାଟେ ଖାଇ ତାକୁ ଚାରିଆଡ଼ ଅନ୍ଧାର ଦେଖାଗଲା । ବାଁ ହାତକୁ ମଧୁପାଳ ଧରି ଥାଏ, ଡାହାଣ ହାତରେ ମଧୁପାଳକୁ ଆଘାତ କରିବାପାଇଁ ଚେଷ୍ଟା କଲା ବେଳେ ମଧୁପାଳ ଦୁଇ ହାତକୁ ଧରି ନେଇ ଥାଏ । ଦୁଇ ଜଣ ଜନ୍ମରତ କରୁଥିବା ବ୍ୟକ୍ତି ପରସ୍ପରକୁ ଆଘାତ କରିବା ପାଇଁ ପ୍ରସ୍ତୁତ ହୋଇଗଲେ ।

କର୍ଣ୍ଣେଲ ଜୋରରେ ଡାକିଲା" ଡ୍ରାଇଭର' ଡ୍ରାଇଭର, ଶିବମଙ୍ଗଳ ।"

ଶିବମଙ୍ଗଳ ଭିଡ଼ ଭିତରୁ ଆଗେଇ ଆସିବାର ଦେଖି କର୍ଣ୍ଣେଲ ଜୋରରେ ପାଟିକରି କହିଲା— "ଲାଲ ଜାନକୀ ଶରଣଙ୍କ ଘରୁ ଥାନାକୁ ଟେଲି ଫୋନ କରି ଶୁକ୍ଲାଜୀଙ୍କୁ ମୋ ନାଁ କହି ଶୀଘ୍ର ଡାକି ଆଣ ।"

ଭିଡ଼ରେ କିଛି ମଝି ମଝିଆ ତାମସା ଦେଖିବା ଲୋକ ଏବଂ କିଛି କପଟ କୌତୂହଳ ନେଇ ହେଟଣାହାସ ତଥା କିଛି ପୁରୁଣା କାଳିଆ ନାପସନ୍ଦ କରୁଥିବା ଲୋକେ ଥିଲେ । ପୁଲିସ ନାଁଶୁଣି ଉପରୋକ୍ତ ଶ୍ରେଣୀର ଲୋକେ ସଙ୍ଗେ ସଙ୍ଗେ ପଳେଇଲେ, କିଛି ଏପଟ ସେପଟ ହେଉଥିବା ଲୋକେ ମନୁଆ ଓ ମଧୁପାଳଙ୍କ ମଲ୍ଲଯୁଦ୍ଧରେ ହାଁ ହାଁ କରି ଉଠିଗଲେ ଏବଂ ମୁନଶୀଜୀ ପୁଲିସ ନାଁ ଶୁଣି କର୍ଣ୍ଣେଲଙ୍କୁ କହିଲେ ହଁ ହଁ ପୁଲିସ ଡାକନ୍ତୁ, ମିଲଟାରୀ ଡାକନ୍ତୁ ଆଜକାଲିର ବଡ଼ ଲୋକମାନଙ୍କ କ୍ଷମତା । ଶାଳେ ଗାଁରେ ଆସି ବ୍ୟଭିଚାର କରିବେ ଆଉ ତା' ଉପରେ ପୋଲିସର ଧମକ ଦେବେ ।

ବ୍ୟକ୍ତି ଜଣକ କହିଲା—'ଆରେ ଖବରଦାର ଯଦି ଏ ଶଳାଙ୍କୁ ପୋଲିସକୁ ଆମେ ଏକାଠି ଏଇଠି ପୋଡିଦେବା ।

ଆଉ ଜଣଙ୍କ ବାହୁରେ ଜାବୁଡ଼ି ହୋଇ ଧରା ହୋଇଥିବା ମନିଆ ଉତ୍ତେଜନାରେ ନିଶ୍ୱାସ ନେଇ ନେଇ କହିଲା 'ମୋ ସ୍ତ୍ରୀ, ମୁଁ ମାଇଲି ଭଲକଲି ଆଉ ଯିଏ ତାକୁ ରକ୍ଷା କରିବାପାଇଁ ଆସିବ ତାକୁ ମଧ୍ୟ ମାରିବି—' 'ଆରେ ଛାଡ଼ ଛାଡ଼୍ ସେ କଥା' । 'ଶଳେ ଭାରି ଧାର୍ମିକ ବନୁଛନ୍ତି' ମୋର ଲକ୍ଷେ ଟଙ୍କାର ଇଜ୍ଜତ—ଏଇ ଶାଳୀକୁ ତାର ଏଇ ନାଗରମାନଙ୍କ ସାମ୍ନାରେ—"ମନିଆ ତା ବନ୍ଧନରୁ ମୁକୁଳି ବଡ଼ ବୋହୂକୁ ଜସିକରି ଗୋଇଠାଏ ପକାଇଲା । ବଡ଼ବୋହୂ କାନ୍ଥକୁ ଲାଗିଗଲା, ମାଁନ ମୁଣ୍ଡ ଟେକିଲା ନାହିଁ । ମହୀପାଳ ଉତ୍ତେଜିତ ହୋଇ ଉଠିଲା । ଲୋକେ ଦୁହିଁଙ୍କୁ ସମ୍ଭାଳିଲେ । "ଛାଡ଼ ବାବୁ' ଆରେ ମନିଆ ତୁ କାହିଁକି ମାନୁନୁ । ଲଭ କଣ' ଆରେ, ଯଦି ତାକୁ ରଖିବୁ ନାହିଁତ ଶାଳୀକୁ ବାହାର କରି ଦେ । ତାକୁ ତା ବାପଘରେ ଛାଡ଼ିଆ ।" ମୁଆଡ଼େ ଇଚ୍ଛା ସିଆଡ଼େ ଯାଉ 'ନର୍କକୁ ଯାଉ ହାରାମ ଜାଦ, ମନିଆକୁ ଧରିଲୋକେ ଘର ଭିତରକୁ ନେଇଗଲେ । ମହୀପାଳ ଶକ୍ତିରେ ତା ଠାରୁ ଯଥେଷ୍ଟ ଶକ୍ତିଶାଳୀ ଥିବାରୁ ତାକୁ ଖୁବ୍ ଆଘାତ କରିଥିଲା । ସବୁଯାକ ଅପମାନ ଓ ଆଘାତ ମିଶି ମନିଆର କ୍ରୋଧକୁ ଆହୁରି ଦ୍ୱିଗୁଣିତ କରିଦେଇଥିଲା ।

ଲାଲା ଜାନକୀଶରଣ, ପୋଲିସ ଦାରୋଗା ଶୁକ୍ଲାଜୀ ଓ ଦୁଇଜଣ କନେଷ୍ଟବଲ ସହିତ ଆସି ପହଞ୍ଚିଲେ । ତାଙ୍କୁ ଦେଖିବା ପରେ ପାଟିତୁଣ୍ଡ କମିଲା । କିଛି ସମୟଧରି ମନିଆକୁ ବୁଝାଇବା ପରେ ମନିଆ ରାଜିହୋଇ କହିଲା ଯେ ଏବେ ତାର ସ୍ତ୍ରୀ ଆଉ କୌଣସି କାମର ହୋଇ ରହିଲାନି ଯିଏ ତାକୁ ନେବାକୁ ଚାହିଁବ ସେ ନେଇଯାଉ— ନର୍କକୁ ଯାଉସେ' ।

ମନିଆକୁ ଧରି ତା ବୈଠକଖାନା ଭିତରକୁ ଲୋକେ ନେଇଗଲେ । ଲାଲା ଜାନକୀଶରଣ କର୍ଣ୍ଣେଲ ଏବଂ ଜଣେ ଦୁଇଜଣ ବ୍ୟକ୍ତି ଭିଡ଼ ଭାଙ୍ଗିବା ଲାଗି କହିଲେ । ଶଙ୍କର ଲାଲ ଆନ୍ତରିକତା ସହିତ ସ୍ୱଜନକୁ ଉଠାଇଲା ।

ଦୁଇତିନି ଘଣ୍ଟା ପରେ ତଳକୁ ମୁହଁପୋତି ବସିଥିବା ବଡ଼ ବୋହୂ ମୁଣ୍ଡ ଉଠାଇଲା । ତା' ଚେହେରା ନିଷ୍ପ୍ରାଣ, ଅଭିବ୍ୟକ୍ତି ବିହୀନ ଥିଲା ।

ସ୍ୱପ୍ନ ମଧ୍ୟରେ ମହୀପାଳର ମନ ସମସ୍ତ ଦୃଶ୍ୟରୁ ଅଲଗା ହୋଇଯାଇ ନିଜ ଚିନ୍ତାରେ ବୁଡ଼ିଯାଇଥାଏ ।

ବର୍ମାଙ୍କ ଘରେ ବଡ଼ବୋହୂ ପହଞ୍ଚିବା ମାତ୍ରେ ତାରା ଏବଂ ସାନବୋହୂ ତାକୁ କୁଣ୍ଢାଇ ପକାଇଲେ । ବଡ଼ବୋହୂ ପଥର ମୂର୍ତ୍ତି ପରି ଠିଆ ହୋଇଥାଏ । ତା ଦେହ ସାରା ଆଘାତରେ ନାନା ପ୍ରକାର ଚିହ୍ନ ହୋଇଯାଇଥାଏ ।

ବର୍ମା ଓ ଶଙ୍କରଲାଲ୍ ଉଭୟ ବର୍ତ୍ତମାନ କଣ କରାଯାଇପାରିବ—ଏଇ ସମସ୍ୟା ଉପରେ ଆଲୋଚନା କରୁଥିଲେ । କର୍ଣ୍ଣେଲ ଲାଲା ଜାନକୀ ଶରଣଙ୍କ ସାଙ୍ଗରେ ତାଙ୍କ ଘରକୁ ଯାଉଯାଉ କହିଲା—ସେ ସ୍ତ୍ରୀ ଲୋକ ଉପରେ ମାଡ଼ ବହୁତ ହୋଇଛି । ମୁ ଡାଃ ସିଂଙ୍କୁ ଟେଲିଫୋନ କରି ବର୍ତ୍ତମାନ ଡକାଉଛି । ଭିତରେ କିଛି ସିରିୟସ ଆଘାତ ହୋଇଥାଇପାରେ । ମାଡ଼ର ରିଆକସନ ମଧ୍ୟ ଏବେ ରହିଛି । ତାଙ୍କୁ ଶୀଘ୍ର ଦୁଧ ସହିତ କିଛି ବ୍ରାଣ୍ଡି ମିଶାଇ ପିଆଇ ଦିଅ ।

ଲାଲା ଜାନକୀ ଶରଣଙ୍କ ଘରେ ସ୍ଥିର ହେଲାଯେ ଏମାମଲାର ରିପୋର୍ଟ ଥାନାରେ ନଦେବା ଉଚିତ । ସାଇ ଘଟଣା ଦାରୋଗାଙ୍କୁ କିଛି ଟଙ୍କା ଦେଇ ଘଟଣାକୁ ଚପାଇଦେଲେ ସବୁ ଦିଗରୁ ଉତ୍ତମ । ଶଙ୍କର ଲାଲକୁ ସେଠାକୁ ଡକାଇ କଥାଯାଇ ବହୁତ ବୁଝାଇବା ପରେ ସେ ପାଞ୍ଚଶହ ଟଙ୍କାର ଚେକ୍ ଲାଲା ଜାନକୀଶରଣଙ୍କ ନାଁରେ ଲେଖିଦେଲା । ଲାଲା ନଗଦ ଟଙ୍କା ଦାରୋଗାଙ୍କୁ ଚୂପ୍ କରିଦେଇଦେଲେ । "ସ୍ତ୍ରୀ" ଲୋକ ବିଷୟରେ ସ୍ଥିର ହେଲାଯେ ତାଙ୍କୁ ବରେହେଣଙ୍କ ଜିମା ଦିଆଯିବ । ଆଉ ଅନ୍ୟ କେଉଁଠିହେଲେ ତାର ସ୍ଥାନ ନାହିଁ ।

ଡାଃ ଶିଲା ଗୋଟିଏ ଅପରେସନ କେଶ ନେଇ ବ୍ୟସ୍ତ ଥିଲେ । ତେଣୁ ପେସେଣ୍ଟଙ୍କୁ ତାଙ୍କ ପାଖକୁ ନେଇଯିବା ପାଇଁ ସେ କହିଲେ । କର୍ଣ୍ଣେଲ କହିଲା ଯେ ମହୀପାଲ ବର୍ତ୍ତମାନ ପେସେଣ୍ଟଙ୍କୁ ନେଇ ତାଙ୍କ ପାଖକୁ ଯିବ ।

ମହିପାଲ କହିଲା ମୁଁ ବର୍ତ୍ତମାନ ବୋରକୁ ଖୋଜିବାକୁ ଯାଉଛି ।

"ବୋରକୁ ତୋ' ଠାରୁ ବେଶୀ ମୁ ବୁଝିନେବି । ସେ ମୋର ଧାରୁଆ ବର୍ତ୍ତମାନ ସେ ଶଳାକୁ ଧରି ଥାନାରେ ପଚଶ ଯୋତା ମାରିବାକୁ ଇଚ୍ଛା ହେଉଛି । କର୍ଣ୍ଣେଲ କହିଲା ।

"ବୋର ଘର ଠିକଣା ତୁମେଜାଣି ନଥିବ, ମୁଁ ଯାଇ ବର୍ତ୍ତମାନ ତାଙ୍କୁ ନେଇ ଆସୁଛି । ମହିପାଲ ପ୍ରକୃତରେ ବର୍ତ୍ତମାନ ଅବସ୍ଥାରେ ଶୀଳା ସହିତ ଦେଖା କରିବାକୁ ଚାହୁଁ ନ ଥିଲା । ଶିଳା ସାମ୍ନାରେ ବଡ଼ବୋହୂ ଓ ବୋର ପ୍ରସଙ୍ଗ ଆସିଲେ ତା ମନ ଅସ୍ତବ୍ୟସ୍ତ ହୋଇଯିବ । ମହିପାଲ ନିଜେ ନିଜେ ସ୍ତ୍ରୀର ଉପରେ ଅତ୍ୟାଚାର କରୁଛି, ବୋର ପରି ତାର ମଧ୍ୟ ସ୍ତ୍ରୀ ପିଲା ଥାଇ ସେ ଅନ୍ୟ ସ୍ତ୍ରୀକୁ ପ୍ରେମ କରୁଛି । ସେ ପ୍ରକୃତରେ ପ୍ରେମ କରୁଛି ତେବେ ବଡ଼ବୋହୂ ଓ ବରେହେଣଙ୍କ ପ୍ରେମ କଳୁଷିତ ହେବ କାହିଁକି । କିନ୍ତୁ ମହିପାଲ ସେଇ 'କିନ୍ତୁ' ରୁ ବର୍ଞ୍ଚିବାକୁ ଚାହୁଁଥିଲା, ଶିଳାଠାରୁ ଏବଂ ନିଜଠାରୁ ମଧ୍ୟ—ସେ କେବଳ ସ୍ୱାମୀ ଓ ପିତା, ତା'ର ନିଜର ଗାର୍ହସ୍ଥ୍ୟ କର୍ତ୍ତବ୍ୟ ରହିଛି ତାଙ୍କ

ପାଳନ କରିବା ତା'ର ଧର୍ମ । ଯା ବ୍ୟତୀତ ଆଉ ଅନ୍ୟ ଚିନ୍ତା କରିବା ତା ପକ୍ଷରେ ଅନୁଚିତ ।' ତା ବିବେକତାକୁ କହୁଥିଲା ଚିନ୍ତାକୁ ପୋଡ଼ି ପାଉଁସ କରି ଦେ ଆଉ ତୋ'ର ମନକୁ ମଧ୍ୟ ପୋଡ଼ିଜାଳି ପାଉଁସ କରିଦେ । ପଛ ଜୀବନକୁ ଭୁଲି ଯା—ଭୁଲି ଯା ।

ନିଜ ଘରେ ଶିଳା ବଡବୋହୂକୁ ବୁଝାଉଥାଏ—ପଛ ଜୀବନ ଭୁଲି ନୂତନ ଜୀବନକୁ ସ୍ୱାଗତ କର ।

କିଛି ସମୟ ପରେ ବରେନ୍ଦ୍ରେଶଙ୍କୁ ଶିଳା ଘରେ ଛାଡ଼ି ଦେଇ ମହୀପାଳ ବାହାରୁ ଚାଲିଗଲା । କର୍ଣ୍ଣେଲ, ଶିଳା ଏପରିକି ଶଙ୍କର ମଧ୍ୟ ବରେନ୍ଦ୍ରେଶଙ୍କୁ ନାନା ପ୍ରକାର କଥା କହି ଅନୁରୋଧ କଲେ ଏବଂ ଏ ଅନୁରୋଧ ରକ୍ଷା କରିବା ପାଇଁ ବରେନ୍ଦ୍ରେଶ ମଧ୍ୟ ଅଙ୍ଗୀକାର କଲା ।

ବିଦା ସମୟରେ ଶ୍ରେଷ୍ଠ ବୋହୂ ବଡପାକୁ କୁଣ୍ଢାଇ ଖୁବ୍ କାନ୍ଦିଲା, ଶଙ୍କର ଲାଲ ଓ କର୍ଣ୍ଣେଲଙ୍କ ଆଖି ମଧ୍ୟ ଛଳ ଛଳ ହୋଇଗଲା । ବଡ଼ବୋହୂ ପାଷାଣ ପ୍ରତିମା ପରି ନିର୍ବାକ ରହିଲା । ବରେନ୍ଦ୍ରେଶ ନିଜ ହୃଦୟହାରିଣୀର ହାତଧରି ଘରୁ ଦାଣ୍ଡକୁ ବାହାରିଲା । ବଡବୋହୂ ତଳକୁ ମୁଣ୍ଡ ନୁଆଁଇ ଧୀରେ ଧୀରେ ଏପରି ଯିବାକୁ ଯେପରି ପ୍ରଥମ ଥର ସେ ବୋହୂ ହୋଇଯାଉଛି । ଦୁଆର ଆଡ଼କୁ ଦୁଇ ପାଖରେ ସେ ଅଟକି ଗଲା, ଶ୍ରେଷ୍ଠ ବୋହୂ ଓ ଶଙ୍କର ଲାଲଙ୍କ ଆଡ଼କୁ ଅନାଇଁ କିଛି କହିବାକୁ ଚେଷ୍ଟା କଲା ଏବଂ ଅବରୁଦ୍ଧ କଣ୍ଠରେ କହିଲା— ପୁଅକୁ ଶାସୁ ଦେଖିବେ । ମୋ ଝିଅକୁ ସମ୍ଭାଳିବ । ମୋ ଝିଅ—ଝିଅ—

କହୁକହୁ ତା'ର ଦାନ୍ତ ପାଟି ପଡ଼ିଗଲା ଏବଂ ସଂଜ୍ଞା ହରାଇ ସେ ଅଚେତ ହୋଇଗଲା ।

× × × × × × × ×

ସେଇ ଦିନ ରାତି ଆଠଟା ସାଢ଼େ ଆଠଟା ବେଳେ ସାନ ବାଲିଏ ସ୍ୱଜନ ଘରେ ଗୋଳମାଳ ଆରମ୍ଭ କଲେ । ବଡ଼ବୋହୂ ଓ ବୋଉଙ୍କ ପ୍ରେମ ଜନିତ ଘଟଣାର ସମ୍ପୂର୍ଣ୍ଣ ଦୋଷ ସ୍ୱଜନ ଉପରେ ଲଦି ଦିଆଗଲା । ସେଇ ପୁରୁଣା କଥାର ପୁନରାବୃତ୍ତି ହେବାକୁ ଲାଗିଲା, ଏପରିକି ସ୍ୱଜନ ଯେତେବେଳେ ଏ ଘର ଭଡ଼ାକୁ ନେଇଥିଲା ସେତେବେଳେ ଏକ ଅଖ୍ୟାତ ଖବର କାଗଜରେ ବାହାରିଥିବା ସମ୍ବାଦକୁ ନେଇ ବର୍ତ୍ତମାନ ସାଇଲୋକେ ନାନା ପ୍ରକାର କୁକଥା କହିବାକୁ ଲାଗିଲେ । ସେଥିରେ ସମ୍ବାଦ ଥିଲା ଯେ ଧନୀ ଲୋକଙ୍କ ବ୍ୟଭିଚାରର ଆଡ଼ା ପାଇଁ ଘରଭଡ଼ା ନିଆଯାଇଛି । ନିଜ ସାଇଲୋକେ କହୁଥିଲେ ଯେ ଏ ଭଳି ଘଟଣା ଯେ ଘଟିବ ସେମାନେ ଆଗରୁ ଜାଣିଥିଲେ । ମନଆର ବନ୍ଧୁବର୍ଗ ମଧ୍ୟ ଉତ୍ତେଜିତ ଥାନ୍ତି । ନେତା ଶାଳଗ୍ରାମ ଏବଂ ଲାଲା ଜାନକୀ ଶରଣ ମଧ୍ୟ ଲୋକଙ୍କୁ ଉସ୍କାଉ

ଥାନ୍ତି । ଅସଙ୍ଗଠିତ ଜନତା ସଙ୍ଗଠିତ ହୋଇ ସଜ୍ଜନ ଘର ଆଡ଼କୁ ମାଡ଼ି ଆସିଲେ । ସେମାନେ ଘର ଭାଲି ଭାଙ୍ଗି ପକାଇଲେ । ସଜ୍ଜନର ସମସ୍ତ ଫେନ୍‌ସିଂ ଟଣି ଟୁକୁରା ଟୁକୁରା କରି ଦେଲେ । ରଙ୍ଗ ଟ୍ୟୁବ ସବୁ ଜୋଡ଼ା ଦେଇ ଫେପ୍ପିଦେଲେ । ଫ୍ରେଟ ଘର ଭିତରେ ସ୍ୱାସ୍ଥ୍ୟ କୋଡ଼ିଏ ଜଣ ଉଦ୍‌ଭ୍ରାନ୍ତ ବ୍ୟକ୍ତି ପଶି ମନଇଚ୍ଛା ଯାହା କରିବାର କରିଯାଉଥାନ୍ତି । କାନ୍ଥରେ ଟଙ୍ଗା ହୋଇଥିବା ଚାରିଗୋଟି ଛବି ଉପରେ କପଡ଼ା ପଡ଼ିଲା । ଷ୍ଟୋଭ, ଚାହା ବାସନ ଓ ଷ୍ଟୁଲ୍ ଫୋପଡ଼ା ହୋଇ ଛବିଗୁଡ଼ିକୁ ନଷ୍ଟ କରାଗଲା । ବିଛଣା ଚାଦର ଫାଲଫାଲ ହୋଇଚିରି ହେଲା । ଷ୍ଟୋଭର କିରୋସିନ ପଡ଼ି ବିଛଣା ତକିଆର ଅବସ୍ଥା ମଧ୍ୟ ତଦନୁଯାୟୀ ହୋଇଥାଏ । ସେଥିରେ ପୁଣି ଦିଆସିଲି ମାରି ଜଳାଗଲା । ସାରା ଘର ଖଣ୍ଡିଆ କାଚ ଭଙ୍ଗା ଚାହା ବାସନ, ଚିରା ଛବି ଏବଂ ଚାଦରରେ ଭରି ଯାଇଥାଏ ।

ଆଖ ପାଖ ଘରମାନଙ୍କରୁ ଛାତ ଓ ଝରକା ଦେଇ ଏହି ଭଳିଆ ଅଭିଯାନର ଦୃଶ୍ୟ ଲୋକେ ଦେଖୁଥାନ୍ତି । ଭନଗାରୁକା ଏବଂ ହଂସାରେ ପରିପୂର୍ଣ୍ଣ ଚିତ୍କାର ତଥା ଦେଖଣାହାରିଙ୍କ ଆଲୋଚନା ବାତାବରଣକୁ ଅଦ୍ଭୁତ ଭୟଙ୍କର କରୁଥାଏ । ଦେଖଣାହାରିଙ୍କ ଭିଡ଼ କ୍ରମଶଃ ବଢ଼ୁଥାଏ ଯିଏ ଯେଉଁଠି ଶୁଣୁଥାଏ, ସେ ଏ ତାମାଶା ଦେଖିବାକୁ ଚାଲି ଆସୁଥାଏ । ତଳେ ରାସ୍ତାରେ ଭିଡ଼, ପାଖ ଆଖରେ ଭିଡ଼ ଏବଂ ସଜ୍ଜନ ଘରେ ଓ ଛାତ ଉପରେ ପ୍ରତିଶୋଧ ନେବା ଲୋକଙ୍କ ଭିଡ଼—ଏଇ ଭିଡ ଓ ଗଣ୍ଡଗୋଳ ଭିତରେ ହଠାତ୍ ଦେଠେଇଙ୍କ ଦୁଆର ଖୋଲିଲା । ଗୋଟିଏ ହାତରେ ସିନ୍ଦୂରଥିବା ମୁଣି ନେଇ ବଡ଼ବଡ଼ ଡ଼ୋଳାକାଢ଼ି, କଳା ଦାନ୍ତ କାମୁଡ଼ି ଗାଳି ଦେଇ ଓ ମନ୍ତ୍ର ପଢ଼ି ପଢ଼ି ଦେଠେଇ ବାହାରିଲେ ।

ଦେଠେଇଙ୍କୁ ଦେଖି ଦେଖଣାହାରିଙ୍କୁ ଆଉରି ମଜାଲାଗିଲା କିନ୍ତୁ ଦେଠେଇ ଦୁଇମୁଠାରେ ସିନ୍ଦୂର କାଢ଼ିଭିଡ ଉପରକୁ ପକାଉ ଥାନ୍ତି ଓ ମନ୍ତ୍ର ପଢ଼ୁଥାନ୍ତି—

ଓ ନମୋଃ ନାରାୟଣ, ଶଙ୍କର କାଉଁରି କାମକ୍ଷାଙ୍କ ଆଜ୍ଞା, କାଳିଙ୍କ ଆଜ୍ଞା, ପାଞ୍ଚପିରଙ୍କ ଆଜ୍ଞା, ଡାକିନ ଡ଼ାକିନୀ ଆସନ୍ତୁ ଶତ୍ରୁଙ୍କୁ ଖାଆନ୍ତୁ । ସମସ୍ତଙ୍କୁ ନିପାତ କରନ୍ତୁ, ନିର୍ବଂଶ କରନ୍ତୁ । ଭୈରବ, ଚାଣ୍ଡାଳ ସମସ୍ତେ ଆସି ଶତ୍ରୁଙ୍କ ଖାଆନ୍ତୁ, ଭୟଙ୍କର ଆଖି, କଠୋର ଓ ରୁକ୍ଷ ମୁଁହ କଳାକଳା ବଡବଡ଼ ଦାନ୍ତ ଦେଖାଇ ଦପଟର ଭିଡ଼ ଉପରକୁ ମନ୍ତ୍ରପଢ଼ି ସିନ୍ଦୂର ଫୋପାଡ଼ି ଦେଠେଇ ଯେତେବେଳେ ଆଗକୁ ଗଲେ ସେତେବେଳେ ଲୋକଙ୍କ ଉପରେ ଅଦ୍‌ଭୁତ ପ୍ରଭାବ ପଡ଼ିଲା । ଦେଠେଇଙ୍କ ସିନ୍ଦୂର ଓ ମନ୍ତ୍ରରେ ଲୋକେ ଭୟଭୀତ ହୋଇଗଲେ । ଅନେକ ଅବଶ୍ୟ ଦେଠେଇଙ୍କୁ ଚଡ଼ାଇବାପାଇଁ ଚିତ୍କାର କଲେ କିନ୍ତୁ ଦେଠେଇଙ୍କ ମନ୍ତ୍ର ଓ ସିନ୍ଦୂର ସମସ୍ତଙ୍କୁ ପରାଜିତ କରିଦେଲା । ଭିଡ଼ ଭାଙ୍ଗି ଗଲା, ଲୋକେ ଡରରେ ଇତସ୍ତତଃ ପଳାଇବାକୁ ବାଟ ପାଇଲେ ନାହିଁ ଉପରକୁ ଉଠିବାବେଳେ

ଦେଠେଇ ଭିଡ ଭିତରେ ପଡ଼ିଗଲା ଲୋକଙ୍କ ଧକ୍‌କାରେ ଆଘାତ ପାଇ ଆବେଶ ବଶତଃ ଜଣେ ବୁଢ଼ାର ମୁହଁକୁ ସିନ୍ଦୂର ବୋଲା ବୋଲା ହୋଇଥିବା ହାତ ଓ ନଖରେ ରାମ୍ପୁଡ଼ି ପକାଇଲେ । ବୁଢ଼ା ଏଇ ଅପ୍ରତ୍ୟାଶିତ ଆକ୍ରମଣରେ ଡ଼ରିଯାଇ ଚିତ୍କାର କଲା — ଆଖ ପାଖରେ ଲୋକେ ସଙ୍ଗେ ସଙ୍ଗେ କୁହାକୁହି ହେଲେ ଯେ ଦେଠେଇ ରକ୍ତ ପିଉଛନ୍ତି ।

ତଳୁ ଗ୍ରେଟ ସିଢ଼ିଦେଇ ଉପର ଗୁଡବାଟେ ସଜ୍ଜନ ଘରକୁ ଆସିବାବେଳେ ଦେଠେଇ ଭିଡ଼ରେ ଧକ୍‌କା ଖାଇ ଖୁବ୍ ବଡ଼ ପାଟିରେ ଚିତ୍କାର କରି, ଗାଳିଦେଇ ଉପରେ ପହଞ୍ଚିଲେ । ସିଢ଼ି ପାଖରେ କେହି ଜଣେ ହଠାତ୍ ଦେଠେଇଙ୍କ ସିନ୍ଦୂର ମୁଣି ତାଙ୍କ ଉପରେ ଅଜାଡ଼ି ଦେଲା । ସିନ୍ଦୂର ରମଣ୍ଡିତ ଦେଠେଇଙ୍କ ରୂପ ଆଉ ତା ସାଙ୍ଗରେ ଗାଳି ଆହୁରି ଭୟଙ୍କର ହୋଇଗଲା ।

ଅଳ୍ପ ସମୟ ମଧ୍ୟରେ ଭିଡ ସଂପୂର୍ଣ୍ଣ ଭାଙ୍ଗିଲା, ଶେଷରେ ଦେଠେଇ ବିଜୟୀ ହେଲେ । ଖର ଦୂଷଣଙ୍କ ଦ୍ୱାରା ପ୍ରେରିତ ସୈନ୍ୟ ବାହିନୀକୁ ଏକା ରାମଚନ୍ଦ୍ର ଓ ଲକ୍ଷ୍ମଣ ହରାଇ ଯେଉଁ ରେକର୍ଡ଼ ସୃଷ୍ଟି କରିଥିଲେ ଏତେଦିନ ପରେ ଦେଠେଇ ଆଜି ତାର ପୁନରାବୃତ୍ତି କଲେ ।

ଫେରିବା ବାଟରେ ବର୍ମାଙ୍କ ଘର ସାମ୍ନାରେ କେତେକ ଲୋକ ପାଟିତୁଣ୍ଡ କଲେ ଅଶ୍ରାବ୍ୟ ଭାଷାରେ ଗାଳିଗୁଲଜ କଲେ । ଦୁଆର ବାଡେଇଲେ । ମନିଆ ଘର ପାଖରେ ଥିବାରୁ ଆକ୍ରମଣକାରୀ ଜନତାଙ୍କ ସହାନୁଭୂତିରେ ବେଶୀ ଉତ୍ତେଜିତ ହୋଇଉଠିଲା । ଏ ଭିଡ଼ରେ ଯେଉଁମାନେ ସାମିଲ ଥିଲେ ସେମାନେ ମୁଖ୍ୟତଃ ସମାଜରେ ପାଶ୍ଚାତ୍ୟ ସଭ୍ୟତାର ବିରୋଧି ଥିଲେ । ତାରା ଓ ବର୍ମା କବାଟ ଭାଂଗିଯିବା ଭୟରେ ଭୟଙ୍କର ଡରି ଯାଇଥିଲେ । ଗ୍ରେଟ ବୋହୂ ଓ ଶଙ୍କର ତାଙ୍କ ଘରେ ଚୁପ ହୋଇ ବସିଥିଲେ । ମନିଆ ମଦ ନିଶାରେ ବେହୋଶ ହୋଇ ପଡ଼ିଥିଲା ।

ସେଇଦିନ ବହୁତ ରାତି ଯାଏ ଦେଠେଇ ଲନ୍‌ଠନ ଆଲୁଅରେ କନ୍ନୋମଲଙ୍କ ନାଡ ଆଙ୍କିଥିବା ଛୁଣ୍ଡା ଛବି ସବୁ ସଜାଡୁଥିଲେ । !!

# ଅଠେଇଶି

ଘରକୁ ଫେରି ଦେଠେଇ ଗାଧୋଇଲେ । ସଂସାରର ସମସ୍ତଙ୍କ ସପ୍ତପୁରୁଷ ଉଦ୍ଧାର କରୁ କରୁ ଦେଇଁଙ୍କ ଦୀପ ଜଳାଇଲେ, ପୁଣି ବିଲେଇଛୁଆଙ୍କ ଗିନାରେ ଦୁଧ ଢାଳି ସେମାନଙ୍କୁ ଡାକିଲେ । ଦେଠେଇଙ୍କ ଡାକ ଶୁଣିଶୁଣି ଲଳିତା, ବିଶାଖା ଲାଂଗୁଡ଼ ହଲାଇ ହଲାଇ ଚାଲି ଆସିଲେ, ମାତ୍ର କସନା ଆସିଲା ନାହିଁ । ଦେଠେଇ ଚିନ୍ତାରେ ପଡ଼ିଲେ, କୁଆଡ଼େ ଗଲା ଛତରା, କସନା, କ ସନା ଡାକି ଡାକି ସାରାଘର ଖୋଜି ଆସିଲେ । ନପାଇଲେ ନା ହାଲିଆ ହୋଇ ଖଟରେ ଗଡ଼ି ପଡ଼ିଲେ । ବିରାଡ଼ିଛୁଆ ଏବେ ବଡ଼ ହୋଇଗଲେଣି । ସବୁବେଳେ ଘରେ ରହନ୍ତି ନାହିଁ । ଛାତରୁ ଛାତକୁ ଡେଇଁ ସାରାସାଇ ବୁଲୁ ଥାନ୍ତି । ଦେଠେଇଙ୍କ ପାଇଁ ସାଂଘାତିକ ସମସ୍ୟା, ଯେ ପର୍ଯ୍ୟନ୍ତ ଧନଛୁଆଙ୍କୁ କିଛି ନ ପିଆଇଛନ୍ତି ନିଜ ଖାଇବା ବନ୍ଦ । ଏବେ ମଧ୍ୟ କସିନ ଅନୁପସ୍ଥିତ ଥିବାଯୋଗୁଁ ନିଜେ ମଧ୍ୟ ଖାଇ ପାରିଲେ ନାହିଁ । ଏ ଛୁଆଙ୍କ ମା ଯିଏକି ଏତେବଡ଼ ପାପ ତାଙ୍କ ଘରେ ଥୋଇ ଦେଇ ଯାଇଛି ତାଙ୍କୁ ତାଙ୍କର ସଉତୁଣୀ ମନେକରି ମନକୁମନ ଅଭିସଂପାତ କରିବାକୁ ଲାଗିଲେ ।

କସନାର ଦୁଧ ନ ପିଇବାକୁ କନ୍ହୋମଲଙ୍କ ନାଢର ଏତେ ଷଢ଼ ହେବାକୁ କାଲି ତାଙ୍କ ସଉତୁଣୀ ପୁଅର ଏତେ ନିର୍ବନ୍ଧ ହେବ, ଭୋଜିଭାତ ହେବ, ଯନ୍ତ୍ର ଦୁଇଟା ଠିକ୍ ଜାଗାରେ ମଶାଣିରେ ପୋତା ହେଲାକି ନାହିଁ ଏକଥା ନନ୍ଦୋଂଗିଣି ଏପର୍ଯ୍ୟନ୍ତ ଫେରି କିଛି ଖବର ଦେଲା ନାହିଁ । ଇତ୍ୟାଦି ନାନା ଚିନ୍ତାରେ ଦେଠେଇ ଏପରି ଅସ୍ତବ୍ୟସ୍ତ ହୋଇ ପଡ଼ିଲେ ଯେ ସାଇବାଲଙ୍କ ଗଣ୍ଡଗୋଳ ତା ତୁଳନାରେ କିଛି ଗୁରୁତ୍ୱପୂର୍ଣ୍ଣ ନ ଥିଲା ସଜ୍ଜନ ଘରେ ଆକ୍ରମଣ କରିଥିବା ଲୋକଙ୍କ ଚିନ୍ତା ମଧ୍ୟ ଦେଠେଇଙ୍କ ମନକୁ ଛଟପଟ କରୁଥାଏ । ରହି ରହି ମନରେ ହିଂସା ଆସୁଥାଏ ଏବଂ ନିଜ କଳ୍ପନାରେ ଏବେ ମଧ୍ୟ ସେ ଭିଡ଼ ଉପରକୁ ମନ୍ତୁରା ସିନ୍ଦୁର ଫୋପାଡ଼ି ସମସ୍ତଙ୍କ ସର୍ବନାଶ ମନାସୁଥାନ୍ତି ।

ଥାନା ଘଟଣାରେ ଗୋଟାଏ ବାଜିଲା । ଲଳିତା ବିଶାଖା ଘର କୋଣରୁ କୌଣସି ଶିକାର ଉପରେ କବ୍‌ଜା କରୁଥାନ୍ତି ଏବଂ ବିଚରା ମୂଷା ପରିଣାହିଁ ଚିତ୍କାର କରି ଶେଷରେ ମୃତ୍ୟୁ ମୁଖରେ ପଡୁଥାଏ । ପୁଣିଥରେ ଦେଠେଇଙ୍କ ମନ ଗାଳିରେ ପୂର୍ଣ୍ଣ ହୋଇଗଲା । ବିଲେଇ ଛୁଆ ସବୁ ବଢ଼ି ଶିକାରୀ ହୋଇ ଉଠିଲେ ତେଣୁ ଦେଠେଇଙ୍କ ବୈଷ୍ଣବ ସଂସ୍କାର ଲଳିତା ବିଶାଖା ଓ କସ୍‌ନାଙ୍କ ଏ ବୃତ୍ତିକୁ ଅତ୍ୟନ୍ତ ଘୃଣା କଲେ ମଧ୍ୟ ଏ ଛୁଆଙ୍କୁ ପାରିବା ତାଙ୍କର ଅସାଧ୍ୟ ଥିଲା ।

ଦେଠେଇଙ୍କ କାନରେ ଏକ ଜାନ୍ତବ ଶବ୍ଦ ଶୁଣାଗଲା । ଲଳିତା ବିଶାଖାଙ୍କ ମଧ୍ୟରେ ଜଣକ କବ୍‌ଜାରେ ଶିକାର ରହିଥିବାରୁ ଅନ୍ୟ ଜଣକୁ ସେ ଶିକାର ପାଇବା ପାଇଁ ନାନା କୌଶଳ କରୁଥିଲା ଶେଷରେ ଉଭୟ ଉଭୟଙ୍କ ଉପରକୁ ଖାଁକୁ ଖାଁ- କରି କୁଦ ପଡ଼ିଲେ । ସାରା ଘରେ କୁରୁକ୍ଷେତ୍ରର ଦୃଶ୍ୟ ଦେଖାଗଲା । ଲଳିତା ବିଶାଖା ଘର ସାରା ଦୌଡ଼ି ଉଭୟଙ୍କ ସହିତ ଲଢ଼ୁଥାନ୍ତି ।

'ମର—ଗାତକୁ ଯାଅ—ମର ସବୁ' ବଦମାସ ଯେତକ ସଢରେ ମଧ୍ୟ ଦୁଇ ଦଣ୍ଡ ଶାନ୍ତ ନାହିଁ, ଓଃ ଥରେ ଦୁଇଥର ଉଠି ବିଲେଇଙ୍କ କଳିରେ ବାଧା ଦେବାପାଇଁ ଦେଠେଇ ଖୋଜିଲେ କିନ୍ତୁ ସାରା ଦେହ ମନରେ ଅସୀମ କ୍ଳାନ୍ତ ଅନୁଭବ କରୁଥାନ୍ତି, ସମସ୍ତ ଦେହର ହାଡ ଭିତରୁ କଷ୍ଟ ହେଉଥାଏ ଆଜ ଭିଡ଼ଦ୍ୱାରା ଯେଉଁଭଳି ସେ ଆକ୍ରାନ୍ତ ହୋଇଥିଲେ ସେ ପରି ଆଉ କେବେ ହୋଇ ନ ଥିଲେ । ଭିଡ଼ର ଧକ୍‌କାରେ କେତେ ବେଳେ ଆଗକୁ ପେଲି ହୋଇ ଯାଉଥିଲେ ତ କେତେବେଳେ ପଛକୁ, ତାଙ୍କ ମନ୍ଦୁର ସିନ୍ଦୁର ଉପରେ ଜନତା ଏଭଳି ଅସ୍ତବ୍ୟସ୍ତ ହୋଇ ପଡ଼ିଲେ ଯେ ଆତଙ୍କିତ ଜନତା ମନ୍ଦୁର ସିନ୍ଦୁରରୁ ବଞ୍ଚିବା ପାଇଁ ପଳାଉଥିଲେ । ଦେଠେଇଙ୍କ ପ୍ରତି ଲୋକଙ୍କ ଘୃଣା ଫଳରେ ତାଙ୍କୁ ଆଜ ବହୁତ ଧକ୍‌କା ଧକି ପେଲାପେଲି ଖାଇବାକୁ ପଡ଼ିଲା ଜୋତାରେ ତାଙ୍କ ଗୋଡ଼ ଚକଟି ବହୁ ଲୋକ ପଳାଇଲେ । ଅବଶ୍ୟ ଦେଠେଇ ଜିତିଲେ ମଧ୍ୟ ତାଙ୍କର ଅବସ୍ଥା ବାରଣ୍ଡା ଦକଡ଼ା ହୋଇଗଲା ।

ହଠାତ୍ କୌଣସି ଆଉ ସ୍ତ୍ରୀ ଲୋକର କୁନ୍ଥାଇବା ଶବ୍ଦ ତାଙ୍କୁ ଶୁଣାଗଲା । ତାଙ୍କ ଗାଲଗୁଲ ବନ୍ଦ ହୋଇଗଲା, ମୁହଁ ଉପରୁ ରେଜେଇ କାଢ଼ିଦେଲେ । ଠିକ୍ ପାଖ ଘରେ ଯେପରି କୌଣସି ସ୍ତ୍ରୀଲୋକ ପ୍ରସବ ବେଦନାରେ ଚିତ୍କାର କରୁଥିଲା ; କିଏ ହୋଇପାରେ କାହା ଘରର… ଏ କୌତୂହଳ ଦେଠେଇଙ୍କୁ ଆଉ ଶୁଆଇଦେଲାନି । ଉଠି ବସି ପଡ଼ିଲେ ଦେଠେଇଙ୍କୁ ବସିବା ଦେଖି କପୁନ ଜିଏକ ଲଳିତା ବିଶାଖାଙ୍କ ଠାରୁ ଦୁଇ ଲମ୍ଫ ଥିଲା ଉଠି ତାଙ୍କ କୋଳ ଉପରେ ଚଢ଼ିବସିଲା । କିନ୍ତୁ ଦେଠେଇଙ୍କ ମନ ଆଉ କୁଆଡେ ଥିଲା ପଡ଼ିଶାଘରେ କିଏ ପ୍ରସବ ବେଦନାରେ ଏପରି କଷ୍ଟ ପାଉଛି ଅନୁମାନ କରୁ କରୁ ହଠାତ୍ ଦେଠେଇ ଠିକ୍ ଭାବରେ ଜାଣି ପାରିଲେ ଯେ ତାଙ୍କର ଘରେ ରହୁଥିବା ଭଡାଟିଆ ତାର ବମୀ ହିଁ କଷ୍ଟରେ କାତର ହୋଇଛି ।

ଦେଠେଇଙ୍କ କ୍ରୋଧ ଭିତରୁ ଯେପରି ସୁଦର୍ଶନ ଚକ୍ର ପରି ତାଙ୍କ କଲିଜାକୁ କାଟୁଥାଏ । ରାଣ୍ଡୀଟା ମଲେ ତ ଭଲ ହୁଅନ୍ତା ପୁଅ ଯନମ କରିବ ବୋଲି କଷ୍ଟ ପାଉଛି ହେଁ ।

ତାପ୍ତିର ପ୍ରସବ ବେଦନା ଜନିତ ଚିତ୍କାର ଦ୍ୱାରା ଦେଠେଇ କିନ୍ତୁ ବାରମ୍ବାର ଅନ୍ୟମନସ୍କ ହୋଇ ପଡ଼ୁଥାନ୍ତି । ପ୍ରଥମ ଚିନ୍ତା ନିଜ ସଉତୁଣୀ— ଏବର୍ଷ ତାର ନାତିର ଜନ୍ମ ଉତ୍ସବ ନେଇ । ସଉତୁଣୀର ନାତିର ଜନ୍ମରେ ନାଚ, ଗୀତ ବାଜା ରୋଷଣୀ । କାଲି ସଉତୁଣୀ ସାରା ସହରର ଚର୍ଚ୍ଚା ହୋଇ ବସିବ । ତା' ନାତୁଣୀ ବୋହୂର ମିଜାଜ ମଧ୍ୟ ସେଇ ପରି ହେବ । ତାପରଦିନ ପରେ ବଡ଼ଘର— ପୁଣି ନାତିର ପିଲାପିଲି ହେବ, ତାଙ୍କର ସଉତୁଣୀ ଗଣ୍ଡି ଶେଷରେ ଗୋସେଇଁ ମା ହୋଇ ସ୍ୱର୍ଗକୁ ନିଶ୍ଚିନ୍ତି ବାନ୍ଧିବ ନିଜ ବାପା ରାଜା ସାହେବ କଥା ମନେ ପଡ଼ି ଦେଠେଇଙ୍କ ମନ କ୍ରୋଧ ଓ ଘୃଣାରେ ଭରି ଉଠିଲା । ଦୁଃଖର ଆବେଗ ଫଳରେ ସେ ବସି ପାରିଲେ ନାହିଁ । କୋଳରେ କାଞ୍ଚନ ଶୋଇ ପଡ଼ିଥିଲା ରେଯୋଇ ଉଠାଇ ଦେବାରୁ କାଞ୍ଚନର ନିଦ ଭାଙ୍ଗିଗଲା । କିନ୍ତୁ ଦେଠେଇ ଉଠିଲେ ନାହିଁ କିମ୍ବା ବଳେଇ ଛୁଆକୁମଧ୍ୟ ଦେଖିଲେ ନାହିଁ । ତାପ୍ତିର ଯେଉଁ ପ୍ରସବ ବେଦନା (ଏବେ ଶୀଘ୍ର ଶୀଘ୍ର ଉଠୁଥିଲା ।) ତା ମଧ୍ୟ ଦେଠେଇଙ୍କ ମନକୁ ଆକୃଷ୍ଟ କରିପାରିଲା ନାହିଁ । ସେ କେବଳ ନନ୍ଦୋର କଥାହିଁ ଭାବୁଥିଲେ । ନନ୍ଦୋ ତାଙ୍କ ସଉତୁଣୀ ଘରେ ଓ ମଶାଣୀରେ ଯନ୍ତ୍ର ଟେପ ଥୁଇଦେଇ ଆସିଥିବେ । ସତ୍ୟନାରାୟଣ କରନ୍ତୁ କାଲି ସନ୍ଧ୍ୟାକୁ ଠିକ୍ ଯେତେବେଳେ ଢୋଲକ ବଜା ହେବ ସେତେବେଳେ ଅଟୋଲ୍ଟଇମ 'ସଉତୁଣୀନାତି) କଟାଗଛପରିତଳା ପଡ଼ିବ । ସାରା ଆନନ୍ଦ ନିମିଷକରେ ଛାରଖାର ହେବ ତାଙ୍କ ସଉତୁଣୀ ବୋବାଳି ଛାଡ଼ିବ ମୁଣ୍ଡପିଟି ହେବ, ତାଙ୍କସ୍ୱାମୀ ମୁଣ୍ଡରେ ହାତଦେଇ ବସିଯିବେ, କଉଳା ହାହାକାର ପଡ଼ିଯିବ । ଏସମସ୍ତ ଭାବ ଭାବିଦେଠେଇ ଏକ ହିଂସ୍ର ଆନନ୍ଦରେ ମଗ୍ନ ହୋଇ ଉଠିଲେ ନିଦ କୁଆଡ଼େଗଲା ପାନ ଖାଇବା ପାଇଁ ଉଠିଲେ । ଦେଠେଇ ଉଠି ମୁଣ୍ଡପାଖ ଲଣ୍ଠନର ଶିଖା ଟେକିଲେ । ପୂଜାଘର ଅଗଣାରେ ଲଣ୍ଠନ ରଖି ହାତ ଧୋଇବାକୁ ଆସିଲେ । ତାପ୍ତିର ପ୍ରସବ ବେଦନା ବହୁତ ପାଖରେ ଶୁଭାଗଲା । ପାଣି ଯେଉଁଠି ରଖା ହୋଇଥିଲା ତାର ପାଖରେ ଯେଉଁ ବନ୍ଦ କବାଟ ଖୋଲି ସିଧା ତାପ୍ତି ଘର ପର୍ଯ୍ୟନ୍ତ ଯିବାର ବାଟଥିଲା ଦେଠେଇ ହାତ ଧୋଇ କବାଟରେ କାନ ଦେଇ ଶୁଣିଲେ । ସେ କବାଟ ପରେ ଏକ ଅନ୍ଧାରୁଆ ସଂକୀର୍ଣ୍ଣ ଗଳିଦେଇ ଗଲେ ଯାଇ ତାପ୍ତିର ଶୋଇବା ଘର ପାଖରେ ପହଞ୍ଚିପାରିବ । ତାପରେ ଅଗଣା, ବାରଣ୍ଡା ପରେ ଯାଇ ସେ ଘର । କାନ ଲଗାଇ ଶୁଣୁଶୁଣୁ ଦେଠେଇ ନିଜ କଳ୍ପନାରେ ତାପ୍ତି ପାଖରେ ଯାଇ ପହଞ୍ଚି ସାରିଥିଲେ । ତାର ବେଦନା କ୍ଳିଷ୍ଟମୁହଁକୁ ଦେଖି ହସୁଥିଲେ ଏବଂ ଅଜସ୍ର ଗାଳି ଦେଉଥିଲେ । ନିଜର ଏଭଳି ଉର୍ବର କଳ୍ପନା ଅନୁଯାୟୀ ତାପ୍ତିର ଅନ୍ତିମ ଅବସ୍ଥା ଚିନ୍ତା କରୁକରୁ ଦେଠେଇ ପୂଜାଘରୁ ତାଙ୍କ ପାନ ଦାନି କାଢ଼ିଲେ । କାଞ୍ଚନ, ଲଳିତା, ବିଶାଖା ତିନିଜଣ ଯାକ ଲଣ୍ଠନକୁ ଘେରି ତାଙ୍କ ପାନଦାନୀକୁ ଜଗି ବସିଥିଲେ ତିନିଛୁଆ ଯାକ ଗୋଲ ଗୋଲ ମୁହଁକରି ଦେଠେଇଙ୍କ ପାନ ଭାଙ୍ଗିବା ଏକାଗ୍ରତା ସହକାରେ ଦେଖୁଥାନ୍ତି । ଧଳା ଦେହରେ ହଳଦିଆ ଓ କଳା ଡୋରିକଟା ହୋଇଥିବା ଏ ତିନି ବଳେଇଛୁଆ ଭାରି ଉଚ୍ଛଳ ଦିଶୁଥାନ୍ତି ।— ଘୃଣାର ସ୍ରୋତରେ ବୋହି ଯାଉଥିବା ଦେଠେଇଙ୍କୁ ହଠାତ୍ ଏ ତିନିଛୁଆଙ୍କ ଚେହେରା ଭାରି ଭଲ

ଲାଗିଲା, ତାଙ୍କ ସଉରୁଣୀଙ୍କର ଯେଉଁ ପ୍ରକାର ଗନ୍ଧ ହେଉଥିବ ଠିକ୍ ସେଇ ଧରଣର ଗନ୍ଧ ସେ ମଧ୍ୟ ଅନୁଭବ କଲେ । ଅଲେଇଣେ କେତେ ନାସ୍ତିକଙ୍କ ଘର ଗୃହିଁଛନ୍ତି । ଯେତେବେଳେ ହତ୍ୟା କରନ୍ତି ସେତେବେଳେ ଏ ଜନ୍ତୁ ପଣିଆ ଥାଏ କୁଆଡ଼େ ?

ଦେଠେଇ ପାନ ଧୋଇବା ପାଇଁ ଗିନାରେ ପାଣି ଆଣିଥିଲେ, ବିଶାଖା ସେଥିରେ ମୁହଁ ମାରିଦେଲା । ଦେଠେଇ ପୁଣିଥରେ ରାଗିଗଲେ । ଯେଉଁଦିନଠାରୁ ବିଲେଇ-ଛୁଆ ଆସିଛନ୍ତି ସେଦିନୁ ଦେଠେଇଙ୍କ ଧର୍ମକର୍ମ ସମସ୍ତ ଦିନରେ ଶହେଥର ଭ୍ରଷ୍ଟ ହୁଏ । ବିଲେଇଛୁଆ ମଇଲା କରନ୍ତି ଗାଳି ଦେଇ ଦେଇ ଦେଠେଇ ସେ ମଇଳା ଉଠାନ୍ତି । ବିଲେଇଛୁଆ ତାଙ୍କ ରୋଷେଇଘର, ପୂଜାଘର କୁଆଡ଼େ ବା ନ ଯାନ୍ତି ? ମୂଷା ମାରି ମୁହଁକୁ ପଞ୍ଜାରେ ପୋଛି ସିଧା ଆସି ଦେଠେଇଙ୍କ କୋଳରେ ବସନ୍ତି, ବୈଷ୍ଣବ ଦେଠେଇ ସେତେବେଳେ ଲଳିତା ବିଶାଖା ଓ କିସାନାଙ୍କୁ ଅଖାଦ୍ୟ ଖାଉଥିବା ଯୋଗୁଁ ଗାଳି ଗୁଲଜ କରି ଘୃଣା ସହିତ ପାଖରୁ ତଡ଼ନ୍ତି—କିନ୍ତୁ ଏ ଛୁଆଏ ପାଖକୁ ଆସିବା ପାଇଁ କଚାଳ କରନ୍ତି । କଚାଳ କରି ଗେଲ୍ହା ହେବା ବିରାଡ଼ିଙ୍କର ଏକ ବିଶେଷ ଗୁଣ ଅଟେ । ଦେଠେଇ ଶେଷରେ ହାରିଯାନ୍ତି । ହାରିଯାଇ ଏ ଛୁଆଙ୍କୁ କୋଳକୁ ଆଣିବାକୁ ବାଧ୍ୟ ହୁଅନ୍ତି । ଅଖାଦ୍ୟ ଖାଉଥିବା ଅସନା ବିଲେଇଛୁଆ ଦେଠେଇଙ୍କ କିଷ୍ଟି ଓ ଲଳିତା ବିଶାଖା ହୋଇ ତାଙ୍କ ହାତ ଚାଟନ୍ତି, ଦେଠେଇଙ୍କ ମୁହଁକୁ ମଧ୍ୟ ନିଜର ଗ୍ରେଟିଆ ଜିଭ ଦ୍ୱାରା ଘଷି ପକାନ୍ତି । ତାଙ୍କର କିଷ୍ଟି ଓ ଲଳିତା ବିଶାଖା ଖେଳୁଖେଳୁ ଠାକୁରଙ୍କର ସିଂହାସନ ଉପରେ କୁଦି ପଡ଼ନ୍ତି । ପିତଳ, ତମ୍ବା ଓ ପଥର ଦ୍ୱାରା ନିର୍ମିତ ଦେଠେଇଙ୍କ ଦଅଁ ଦେବତା ସବୁ ଓଲଟି ପଡ଼ନ୍ତି । ଏସବୁ ଦେଠେଇଙ୍କୁ ସହିବାକୁ ହୁଏ । ଗଡ଼ୁରୁଗାଡ଼ୁରୁ ହୋଇ ଦେଠେଇ ଆଉ ଏକ ଗିନାରେ ପାଣି ଆଣିବାକୁ ଉଠିଲେ । ତାଙ୍କର ପ୍ରସବ ବେଦନା ପାଇଁ ଚାଳିଶ ବର୍ଷ ପୂର୍ବେ ଦେଠେଇଙ୍କର ପ୍ରଥମ ଓ ଅନ୍ତିମ ପ୍ରସବ ବେଦନା କଥା ମନେ-ପକାଇ ଦେଲା । ଦେଠେଇ ପାନ ଝାଙ୍ଗି ଝାଙ୍ଗି ତାଙ୍କର ଚିତ୍କାର ଶୁଣୁଥା'ନ୍ତି । ପାନଗୁଡ଼ିକ କୁଟ୍ଟାପଣ କରି ପାଟିରେ ପାନ ପୂରାଇଲେ । ଦୋକ୍ତା ଟିକେ ଧରି 'କେସିରକସ୍' କହି ମୁହଁରେ ଦେଲେ, ହାତ ଧୋଇଲେ, ଶାନ୍ତ ଗମ୍ଭୀର ହୋଇ ଉଠି ଲଣ୍ଠନ ଧରି ଠାକୁର ଘରକୁ ଗଲେ ଏବଂ ଭଣ୍ଡାର ଘରୁ ଗୁଡ଼ିନେଞ୍ଜା ବାହାର କଲେ ।

ବର୍ଷ ବର୍ଷ ପରେ ଦେଠେଇଙ୍କ ପଟୁଆଳି ଘରର ଆରପଟର ଦୁଆର ଫିଟିଥିଲା । ଯାହାକି ବର୍ତ୍ତମାନ ତାଙ୍କର ଅଧିକାରରେ ଥିଲା ।...

× × ×

କଷ୍ଟ ବଢୁଥାଏ । ବର୍ମା କିଛି ବ୍ୟବସ୍ଥା କରିପାରି ନାହାନ୍ତି ଏଭଳି ପରିସ୍ଥିତିରେ ସେ ଅତ୍ୟନ୍ତ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଏଇ ସହରରେ ବର୍ମାଙ୍କ ବାପମାଆ ରହନ୍ତି, ତାଙ୍କର ବାପ ମାଆ ମଧ୍ୟ, କିନ୍ତୁ ତାହାଙ୍କ ସହଯୋଗ ପାଇବା ଅସମ୍ଭବ । ଏ ସାଇ

ବାଲ୍ୟେ ମଧ୍ୟ ସେମାନଙ୍କର ପ୍ରେମ ବିବାହକୁ ଘୃଣା ଚକ୍ଷୁରେ ଦେଖନ୍ତି । ନିଜର ପ୍ରେମ ପ୍ରତି ସମାଜ ଯେଉଁ ଘୃଣା ଦେଇଛି ସେଥିରେ ସେ ଯାହା ଉତ୍ତେଜିତ ହେଉଥିଲେ ତା' ଏଇ ମୂହୂର୍ତ୍ତରେ ତାଙ୍କର ଭଲ ପାଇବାର ପ୍ରତୀକ ଯତ୍ନ ନେବା ପୂର୍ବରୁ ପ୍ରାଣପ୍ରିୟା ତାରାର ଏ କଷ୍ଟ ଦେଖି ଆହୁରି ବଢ଼ି ଯାଇଥିଲା । ତାରାର ପ୍ରାଣରକ୍ଷା ପାଇଁ ସେ ପାଗଳ ପ୍ରାୟ ହୋଇ ଉଠିଲେ । ତାରା ତାଙ୍କୁ ନିଜ ପାଖରୁ କୁଆଡେ ଯିବାପାଇଁ ଛାଡୁ ନଥାଏ, କିନ୍ତୁ ବର୍ମା ଯିଦ୍ କରି ବାହାରୁ ଧ'ଇ ଖୋଜି, ଡାକିବା ପାଇଁ ଲୁଗା ପିନ୍ଧି ବାହାରିଲେ । ବାରଣ୍ଡାକୁ ଆସି ଦେଖିଲେ ସାମ୍ନା ଅଗଣାରେ ସେପଟେ ଗ୍ରେଷେଇ ହେବା ଜାଗା ପାଖ ଗଳି ଯେଉଁଠି କି ଜାଳେଣି କାଠ ଇତ୍ୟାଦି ରୁହେ ସେଠାରୁ ସ୍ୱଳ୍ପ ଆଲୋକ ରେଖା ମଧ୍ୟରୁ ଏକ ଆକୃତି ଏପଟକୁ କ୍ରମଶଃ ଆଗେଇ ଆସୁଛି । ଆକୃତି ଗ୍ରେଷେଇ ହେବା ପିଣ୍ଡା ପାଖକୁ ଚାଲି ଆସିଲା । ସ୍ତ୍ରୀ ଲୋକର ଆକୃତି···ଧଳା ଶାଢ଼ି ପିନ୍ଧିଛି···ଏକଦମ ତ ହାଣୀ ପରି ଚେହେରା...

ଏଘର ଭୂତ ପ୍ରେତଙ୍କ ଆଡ୍ଡାସ୍ଥଳୀ ବୋଲି ବୁଝାଯାଏ । ସାରାଦିନର ଆତଙ୍କ ଏ ସମସ୍ତର ଆତଙ୍କ ସବୁ ମିଶି ଦେଠେଇଙ୍କ ଚେହେରା ପ୍ରେତ ଛଡ଼ା ଆଉ କିଛି ମନେ-ହେଲାନି । ବର୍ମାଙ୍କ ହାତ ଗୋଡ଼ ଅସାଡ଼ ହୋଇଗଲା, କଥା କହି ପାରିଲାନି—କେବଳ ଏକ ପ୍ରକାର ଆତଙ୍କିତ ଚିତ୍କାର ପାଟିରୁ ବାହାରିଲା । ବର୍ମା ପିଣ୍ଡା ଉପରେ କଟାଗଛ ପରି ପଡ଼ି ବେହୋଶ ହୋଇଗଲେ ।

ଘର ଭିତରେ ତାରା କଷ୍ଟ ପାଇ ଏକଦମ୍ କାବୁ ହୋଇ ପଡ଼ିଥାଏ । ସ୍ୱାମୀଙ୍କ ଏ ଚିତ୍କାର ଶୁଣି ଯେପରି କୂଅ ଭିତରେ ପଡ଼ିଗଲା । ସ୍ୱାମୀଙ୍କ ଚିତ୍କାର କରିବାର ହେତୁ ଜାଣିବାର ଇଚ୍ଛା, ତା' ନିଜର ଉଠି ନ ପାରିବାର ଅକ୍ଷମତା ଏ ସବୁ କଥା ତା ମନରେ ସେତେବେଳେ ଉଠିଲା ନାହିଁ, ସ୍ୱାମୀର ଚିତ୍କାର ତା' ଭିତରେ ଆତଙ୍କ ସୃଷ୍ଟି କଲା । ତା ଗ୍ରୁତି ଭିତରେ ହାହାକାର କରି ଉଠିଲା । ଗର୍ଭସ୍ଥ ସନ୍ତାନ ମଧ୍ୟ ପୃଥିବୀ ଆଲୋକ ଦେଖିବା ପାଇଁ ବ୍ୟାକୁଳ ହେଲା । —ତାରା ଆଖିରେ ଅନ୍ଧାର ଘୋଟି ଆସିଲା ଅସହାୟ ଅବସ୍ଥାରେ ତାରା ଯେପରି ନିଜକୁ ଯମ ହାତରେ ସମର୍ପି ଦେଲା । ଖାଲି ଅନ୍ଧକାର··· ନିବିଡ଼ ଅନ୍ଧକାର ତାରାର ଚେତା ବୁଡ଼ିଗଲା ।

ଦେଠେଇ ଶୀଘ୍ର ଅଗଣା ଅତିକ୍ରମ କରି ପିଣ୍ଡା ଉପରକୁ ଉଠିଲେ, ସେଠାରେ ସୋଫା ଉପରେ ବର୍ମା ବେହୋଶ ହୋଇପଡ଼ିଥିଲେ । ଅଳ୍ପ ସମୟ ତାଙ୍କୁ ଦେଖିବା ପାଇଁ ଅଟକିଲେ ପରେ ଘର ଭିତରକୁ ଚାଲିଗଲେ । ତାରାର ଅବସ୍ଥା ଦେଖି ତାଙ୍କ ଦେହରେ ବିଜୁଳି କରେଣ୍ଟ ଚାଲିଗଲା ପରି ମନେହେଲା । ସେ ସ୍ଥିର ଚିତ୍ତରେ ଏ ପରିସ୍ଥିତି ମୁକାବିଲା କରିବା ପାଇଁ ସ୍ଥିରକଲେ, ଏକୁଟିଆ, ଦୁର୍ବଳ ଶରୀର ହୋଇ ମଧ୍ୟ ଦେଠେଇ ନିଜ ସାହାସ ଦ୍ୱାରା ଦୁନିଆଁ ଜୟକରି ପାରିଲେ ।

ଚେତା ଫେରିବା ପରେ ବର୍ମା ଘର ଭିତରକୁ ଆସିଲେ । ଦେଓଠେଇ ତାଙ୍କୁ ପ୍ରଣବ କରିବାରେ ସାହାଯ୍ୟ କରୁଥାନ୍ତି । ସେ ବର୍ମାଙ୍କୁ ଗାଳି ଦେଇ ସେଠାରୁ ବିଦାକଲେ । ଦେଓଠେଇଙ୍କ ରୂମରେ ଯେ ଦୈବୀକୃପା ପାଇଛନ୍ତି ଏକଥା ବର୍ମାଙ୍କୁ ଅକଳ୍ପନୀୟ ଲାଗୁଥାଏ । କିନ୍ତୁ ନିଜ ଭିତରେ ଯଥେଷ୍ଟ ଶକ୍ତି ଫେରିପାଇଥାନ୍ତି, ଦେଓଠେଇ ଭିତରୁ ତାଙ୍କୁ ପାଣି ଗରମ କରିବାକୁ ଆଦେଶ ଦେଉଥାନ୍ତି, ଚୁଲ୍ଲୀ ଆଣିବାକୁ କହିଲେ, ବର୍ମା ଚୁପ ହୋଇ ତାଙ୍କ ଆଜ୍ଞା ପାଳନ କରୁଥାନ୍ତି । ଗ୍ରେଷେଇ ଘର ବାରଣ୍ଡାରେ ଷ୍ଟୋଭ ଜାଳି ଇବାର ଉପକ୍ରମ କରୁ କରୁ ସେ ଘର ଭିତରୁ ନବାଗତର ଅସ୍ପଷ୍ଟ ଏବଂ ଆଶ୍ଚର୍ଯ୍ୟ କନକ କୁଆଁ କୁଆଁ ଶୁଣିଲେ । —ମନରେ ପୁଲକ ଜାଗିଲା ସାଙ୍ଗେ ସାଙ୍ଗେ ତାଙ୍କର ସଙ୍କଟ ଅବସ୍ଥା ମନରେ ଆସିଲା । ଷ୍ଟୋଭ ଜାଳିବା ଭୁଲି ସେ ଦୌଡ଼ି କରି ଘର ଦୁଆର ପର୍ଯ୍ୟନ୍ତ ଆସିଲେ କିନ୍ତୁ ଦେଓଠେଇଙ୍କ ଉପରେ ଅଟକି ଗଲେ । ପ୍ରଥମେ ସାହାସ ଭୁଲେଇଲା ନାହିଁ ପରେ ରହି ରହି ପଚାରିଲେ 'ଦେଓଠେଇ କଣ ହେଲା' ?

ଦେଓଠେଇ ଖୁବ୍ ରାଗି ଯାଇ କହିଲେ—'ଆରେ ପାଣି ଗରମ କଲୁ କି ନାହିଁ । ବାପ ହେଉଛୁ ସତ୍ୟାନାଶିଆ ।'

ବର୍ମା କିଛି କହିବା ପାଇଁ ସାହାସ କରିପାରିଲେ ନାହିଁ । ବ୍ୟସ୍ତ ସମସ୍ତ ହୋଇ ରୋଷାଇ ଘରକୁ ଧାଇଁଲେ ।

ଆଜି ସେ ଦେଓଠେଇଙ୍କର ଏକ ଅକଳ୍ପନୀୟ ରୂପ ଦେଖିଲେ ତାଙ୍କ ଉପରେ ବିଭିନ୍ନ ପ୍ରକାର ଜାଡ଼ିମନ୍ତ୍ର କରିବାବାଲା ତାଙ୍କ ସନ୍ଦେହ ଶଙ୍କା କରୁଥିବା ଘୃଣ୍ୟ ଦେଓଠେଇ ଆଜି ସେ ଏ ସଙ୍କଟରୁ ତାଙ୍କୁ ରକ୍ଷା କରିବାକୁ ଆସିଛନ୍ତି, ଏକଥା ସେ ବିଶ୍ୱାସ କରିପାରୁ ନଥିଲେ । ଏଭଳି ନିଷ୍କାମ ସେବା, ପରପାଇଁ ଏଭଳି ଭଲ ପାଇବା ଆଜି କପରି ଦେଓଠେଇଙ୍କ ଭିତରେ ଅଛି ଏକଥା ତାଙ୍କ ପାଇଁ ଏକ ରହସ୍ୟ ହୋଇ ଉଠିଲା । ଘୃଣ୍ୟ ଦେଓଠେଇ ବର୍ତ୍ତମାନ ତାଙ୍କ ଦୃଷ୍ଟିରେ ସାକ୍ଷାତ ଦେବୀ ଥିଲେ—ଭବିଷ୍ୟ ମଙ୍ଗୀ ଠାକୁରାଣୀ ।

× × ×

# ଅଣତିରିଶ

ଆଜି ସକାଳୁ କନ୍ୟା ଓ ସଜ୍ଜନ ମଥୁରାରୁ ଫେରିଲେ । ଷ୍ଟେସନରେ ସଜ୍ଜନ କନ୍ୟାକୁ ବହୁତ ଆଗ୍ରହର ସହିତ ତା ଘରକୁ ଯିବାକୁ କହିଲା । କିନ୍ତୁ କନ୍ୟା ରାଜି ହେଲା ନାହିଁ । କର୍ଣ୍ଣେଲ ଭାଇ ଖରାପ ଭାବରେ ଏହା ତାହାର ବାହାନା ଥିଲା । ସଜ୍ଜନ ମଧ୍ୟ ନିଜ ଆଗ୍ରହକୁ ଆହୁରି ଅଧିକ ବଢାଇବା ଉଚିତ୍ ମନେ କଲା ନାହିଁ । ଗୃଗଦିନ ଭାଲି ପ୍ରାୟ ଚବିଶ ଘଣ୍ଟା କନ୍ୟା ସହିତ ରହି ନୂଆ ଭାବରେ ସଜ୍ଜନ ଜାଣି ସାରିଥିଲା, ଯେ କନ୍ୟାର ଇଚ୍ଛା ବିରୁଦ୍ଧରେ ତାକୁ ବଶ କରିବା ସହଜ କାମ ନୁହେଁ । ଅନ୍ୟାନ୍ୟ ଆଧୁନିକାଙ୍କ ଠାରୁ କନ୍ୟା ସମ୍ପୂର୍ଣ୍ଣ ଭାବରେ ବ୍ୟତିକ୍ରମ ଥିଲେ । ସେ ସଜ୍ଜନର ମା ପରି ଜିଦ୍‌ଖୋର ଥିଲା । ସଜ୍ଜନ ଗତ ଗୃଗଦିନ ଧରି କନ୍ୟାକୁ ପାଇବା ପାଇଁ ଯେତେ ଅଧିର ହୋଇଥିଲା । ତାଠାରୁ ଦୂରେଇ ଯିବାକୁ ମଧ୍ୟ ସେତିକି ବ୍ୟାକୁଳ ହୋଇଥିଲା । କିନ୍ତୁ ତାର ଜିଦ୍ ଏ ଉଭୟ କଥା କନ୍ୟାର ଜିଦ୍ ସାମନାରେ ବାରମ୍ବାର ପରାସ୍ତ ହୋଇଥିଲେ । ଏ ପରାଜୟ ତାକୁ ବିଜୟ ପାଇବା ପାଇଁ ବହୁତ ଉତ୍ତେଜିତ କରୁଥିଲା । ସଜ୍ଜନ ନିଜର ଏ ଉତ୍ତେଜନାକୁ ମନରେ ଦବାଇ କନ୍ୟା ସାମାନାରେ ଜଣେ ସଭ୍ୟ ସୁ-ସଂସ୍କୃତ ମଣିଷ ଭାବରେ ଠିଆ ହେବାକୁ ଚେଷ୍ଟା କରୁଥିଲା । ସେ ତାର ବର୍ବରତାର କଳଙ୍କ ଲୁଚାଇବାକୁ ଗ୍ହୁଁ ଥିଲା ଯାହାର ପରିଚୟ କି କନ୍ୟା ପାଇ ସାରିଥିଲା । ସେ କନ୍ୟାର ହୃଦୟ ପାଇବାକୁ ଗ୍ହୁଁ ଥିଲା—ତାର ଦେହ ପାଇବାକୁ ହେଲେ ପ୍ରଥମେ ତାର ହୃଦୟକୁ ପାଇବାକୁ ହେବ – ଏବଂ ଏହିତ ଗଲା କାଲିର କଥା, ସୁନ୍ଦର-ତାକୁ ବିନାଶ କରୁଥିବା ବଟର ଲୋକଙ୍କ ସମ୍ପର୍କରେ କିଛି ତର୍କ କଲାବେଲେ ବନକନ୍ୟା ସଜ୍ଜନକୁ ଅର୍ଥପୂର୍ଣ୍ଣ ଗ୍ହାଣୀରେ ଅନାଇ କହିଲା– "ଦେଖ ତୁମର ଏ କଥା ଯେପରି ଭୁଲି ନଯାଅ" ନିଜ ପାଖରେ ହାରିଯାଇ ସଜ୍ଜନ ଏକଥା ନଭୁଲି ଯିବା ଚେଷ୍ଟାରେ ରହିଛି ତା'ପରେ ସେ କନ୍ୟାକୁ ଚଢେଇବା ତ ଦୂରର କଥା କୌଣସି ପ୍ରକାର ଅଙ୍ଗରେ ମଧ୍ୟ କରିନି । ଟ୍ରେନରେ ମଧ୍ୟ ସେ କନ୍ୟାକୁ ଅଜନ୍ତା, ଆବୁ, ଏଲୋରା, ଖଜୁରାହୋ କମ୍ବା ଚିଦମ୍ବରମ ମନ୍ଦିର ଇତ୍ୟାଦିର ଶିଳ୍ପ ଭାସ୍କର୍ଯ୍ୟ ସଂବନ୍ଧରେ କହୁଥିଲା— ଅଥଚ ଦୁଇବର୍ଥ ଥିବା କୁପେ କମ୍ପାର୍ଟମେଣ୍ଟରେ ପାଇ ମଧ୍ୟ ସଜ୍ଜନ ନିଜକୁ ନିୟନ୍ତ୍ରିତ ରଖି କେବଳ ଶିଳ୍ପ ଓ ସୌନ୍ଦର୍ଯ୍ୟ ବିଷୟରେ ଚର୍ଚ୍ଚା କଲା । କନ୍ୟା ସାମ୍ନାରେ ନିଜକୁ ଭଦ୍ର ଭାବରେ ରଖି ପାରିଲା ଯେ ଶେଷରେ ଉପରବାର୍ଥରେ ମନରେ କାମର ଅସନ୍ତୋଷର ଶୋଇବାକୁ ଗଲା ।

ଆଜି ସକାଳୁ ଷ୍ଟେସନରେ କନ୍ୟା ତର ପ୍ରସ୍ତାବକୁ ଅଗ୍ରାହ୍ୟକରିବା ଦେଖି ମନେ କ୍ଷୁବ୍‌ଧ ହୋଇ ମଧ୍ୟ ଏଜନ୍ମ ଲଇକ ଇଚ୍ । କହି ସଭ୍ୟ ମୁଦ୍ରା ଜରିଆରେ କଳାକାର ଜନୋଚିତ ଭବ୍ୟତାର ଭଣ୍ଡାମି କରିଥିଲା ।

ମଥୁରାରୁ ଟେଲିଗ୍ରାମ ପଠାଯାଇଥିଲା ତେଣୁ ଷ୍ଟେସନରେ ତା' ଡ୍ରାଇଭର ଗାଡ଼ି ନେଇ ପହଞ୍ଚିଥିଲା । କନ୍ୟାକୁ କର୍ଣ୍ଣେଲଙ୍କର ଔଷଧ ଦୋକାନଠାରେ ଛାଡ଼ି ଦେବାକୁ ସଜ୍ଜନ ଗଲା । ସେତେବେଳେ କର୍ଣ୍ଣେଲ ସାହେବ ଲଲ ଜାନକୀ ଶରଣଙ୍କୁ ନେଇ ଔଷଧ ଦୋକାନ ପଛପଟ ଘରେ ବସିଥିଲେ । ଗତ ରାତିରେ ସଜ୍ଜନ ଘରେ ହୋଇଥିବା ଆକ୍ରମଣର ଖବର ପାଇ କର୍ଣ୍ଣେଲ ଭୟଙ୍କର ରାଗିଯାଇଥାନ୍ତି । ଲୁଟ ତାରଜ ଖବର ସହିତ ଲଲ ଜାନକୀ ଶରଣ ଚିତ୍ର ପ୍ରଦର୍ଶନୀ ବିଷୟରେ ମଧ୍ୟ କହିବାକୁ ଆସିଥାନ୍ତି । କର୍ଣ୍ଣେଲ ଜାନକୀ ଶରଣଙ୍କୁ ଖୋଲଖୋଲ ଉତ୍ତର ଦେଇ ସାରିଥିଲେ । ଲଲ ଜାନକୀ ଶରଣ ଯିବାକୁ ବାହାରିଥିଲେ—ଠିକ୍ ସେହି ସମୟରେ ସଜ୍ଜନ ଓ କନ୍ୟା ଆସି ପହଞ୍ଚିଲେ ।

ଦୁହିଁଙ୍କୁ ଦେଖି କର୍ଣ୍ଣେଲ ଖୁସି ହେଲେ । ଏ ଯୁଗଳ ମୂର୍ତ୍ତିଙ୍କୁ ଜାନକୀଶରଣ ଅର୍ଥ ପୂର୍ଣ୍ଣ କୁଟିଳ ଦୃଷ୍ଟିରେ ଅନାଇଲେ ।

କର୍ଣ୍ଣେଲ ପାଟିକରି ଚାକରକୁ କହିଲେ - 'ମୋଟର ଗାଡ଼ିରୁ ବିନୋଦଙ୍କ ଜିନିଷ ନେଇ ଉପର ଘରେ ରଖ ।' ଲଲ ଜାନକୀ ଶରଣ ଏଇ ସୁଯୋଗରେ ସଜ୍ଜନକୁ କହିଲେ—ଆରେ କୁଆଡ଼େ ଚାଲିଗଲ ତୁମେ ? ପ୍ରଦର୍ଶନୀ ପାଇଁ ମାତ୍ର ଦୁଇ ଦିନ ରହିଲା ଏ ଖିଆଲ ଅଛିତ ? ଆଉ ମୁଁ ଏ ଭଳି ପୋଷ୍ଟର ଚାରିଆଡ଼େ ଦେଇଛି ଯେ ସର୍ବତ୍ର ତୁମ କଥା ସବୁରି ମୁହଁରେ ।

ସଜ୍ଜନକୁ ଭାରି ଖରାପ ଲାଗୁଥାଏ । ନିଜକୁ ଦବେଇ ଦବାପାଇଁ ଚେଷ୍ଟା କରି ମଧ୍ୟ ସେ ସମ୍ଭାଳି ପାରିଲା ନାହିଁ, କହିଲା—'କାଲି ମଥୁରାରେ ଏବଂ ରାସ୍ତାସାରା ଲୋକେ ମତେ ମଧ୍ୟ କହୁଥିଲେ ଯେ ଲଲଜୀ ଆପଣଙ୍କର ବହୁତ ବଢ଼ିଆ କାମ କରିଛନ୍ତି ।

ଲଲ ଜାନକୀ ଶରଣଙ୍କ ମୁହଁ ଫିକା ପଡ଼ିଗଲା କହିଲେ, ହଁ ଭାଇ ଏବେ ତୁମେ ଜାଣ ଓ ତୁମ କାମ ଜାଣେ । ଆମ ପକ୍ଷରେ ଯେତିକି ସମ୍ଭବ ସେତିକି କରିଦେଲୁ । କାଲି ରାତିରେ ବିଚରା ସାଳୀଗ୍ରାମ ଗଳରେ ଖସିପଡ଼ି ଗୋଡ଼ ଭାଙ୍ଗି ପଡ଼ିଛନ୍ତି ।'

ସଜ୍ଜନ ସଙ୍ଗେ ସଙ୍ଗେ ଚୁ, ଚୁ ଶବ୍ଦକରି କହିଲା ଆରେ ପଡ଼ିଲେ କିପରି ? ଲଲ ଜାନକୀ ଶରଣ ମୁରୁକି ହସି କହିଲେ—ଶୁଣୁଚିତ ତୁମ ଘରବାଲି ବୁଢ଼ି ତାଙ୍କ ଉପରେ କଣ ଗୁଣି ଗାରେଡ଼ି କରିଥିଲା ।'

ସଜ୍ଜନ ହସି ଉଠିଲା—କାହିଁକି ? କଣ ହେଲା ? ତାଙ୍କର ଶାଳୀଗ୍ରାମ ସହିତ···

ତୁମେ ଏହିକ୍ଷଣି ଆସି ପହଞ୍ଚିଛ । ଟିକିଏ ସୁସ୍ଥ ହୁଅ, କର୍ଣ୍ଣେଲଙ୍କ ଠାରୁ ସବୁ କଥା ଶୁଣିବ । ହଉ ଭାଇ ଯାଉଛୁ । ରାଜା ସାହେବଙ୍କ ଘରକୁ ଯିବାକୁ ହେବ—କାହିଁକି ? ସବୁ ଖବର ଭଲତ ?

"ଆରେ ଆଜି ନବାନ୍ନ ପାଇଁ ଭୋଜି ହେଉଛି ।"

"ଠିକ୍ କଥା ମୁଁତ ଭୁଲି ଯାଇଥିଲି" ...ସଜ୍ଜନ କହିଲା । ଆଜିକାଲି ତୁମର ହୋଇଛି କଣ କହିଲ ! କୋଉ ଚିନ୍ତାରେ ରହୁଛ ଯେ ସବୁ କଥା ଭୁଲି ଯାଉଛ । ହଉ ଭାଇ, କର୍ଣ୍ଣେଲ ଯାଉଛୁ । ଜୟ ରାମଚନ୍ଦ୍ରଙ୍କର ।" ଯାଉ ଯାଉ ଲାଲ ଜାନକୀଶରଣଙ୍କୁ ସଜ୍ଜନ କହିଲା—"ରାଜା ସାହେବଙ୍କୁ କହିଦେବ ଯେ ମୁଁ ବର୍ତ୍ତମାନ ଯାଇ ପହଞ୍ଚିବି ।"

ଲାଲ ଜାନକୀ ଶରଣ ଯିବାପରେ ସ୍ବାଡ଼ୁ ସିଆଡ଼ୁ ଅନେକ କଥା ପଡ଼ିଲା । କର୍ଣ୍ଣେଲ କନ୍ୟାକୁ କହିଲା--ତୁମେ ମଥୁରା ଯିବା ଫଳରେ ବହୁତ କାମ ହୋଇଗଲା, ବର୍ତ୍ତମାନ ତୁମ ବାପାକୁ ଗିରଫ କରଉଛୁ ଆଉ ସାଳୀଗ୍ରାମ ବଦମାସକୁ ଏଭଳି ଶିକ୍ଷା ଦେବ ଯେ ଜୀବନସାରା ଭୁଲିବ ନାହିଁ, କର୍ଣ୍ଣେଲ ସହିତ ଚାଲିବ ନା ?

ସାଳୀଗ୍ରାମ ପ୍ରସଙ୍ଗ ଆସିବାମାତ୍ରେ ତା ଗୋଡ଼ ଭାଙ୍ଗିବା ଓ ଦେଠେଇଙ୍କ ଗୁଳି ଗାରେଣ୍ଡ କଥା ପଡ଼ିଲା, କର୍ଣ୍ଣେଲ ହଠାତ ଗମ୍ଭୀର ହୋଇଗଲା । ସେ ଗତଦିନର ସମସ୍ତ କଥା, ରାତରେ ସଜ୍ଜନ ଘର ଆକ୍ରମଣ ହୋଇଥିବା ଓ ଲୁଟ ତରାଜ କଥା କହିଲା । ଶୁଣୁଶୁଣୁ ସଜ୍ଜନ କନ୍ୟା ଦୁହେଁ ଉତ୍ତେଜିତ ହୋଇଗଲେ । ସଜ୍ଜନ ଘରକୁ ଫେରିବା ପୂର୍ବରୁ ନଜର କୋଠରୀର ଦଶା ଦେଖିଯିବାକୁ ସ୍ଥିର କଲା ।

× × ×

ନଜର ତଥାର ଚନ୍ଦଶାଳା'କୁ ଏପରି ଧ୍ବସ୍ତ ଅବସ୍ଥାରେ ସଜ୍ଜନ ଚିହ୍ନିକୁ ଭୁଲିଗଲା । ତା' କୋଠରୀ ଗୋଟିଏ କଟା ହୋଇଥିବା ଲଣ ପରି ଦିଶୁଥିଲା । ଛବିଗୁଡ଼ିକର ଛିଣ୍ଡା ଅଂଶ ଏଠି ସେଠି ପଡ଼ିଥାଏ । ଗୋଟିଏ କଣରେ ଅଧା ଜଳା ଗ୍ରେଟ ଟେବୁଲର ଦୁଇଟି ଗୋଡଥାଇ କଙ୍କାଳ ପରି ଦିଶୁଥାଏ । ସୁରେଇର ଭଙ୍ଗା ଖପରା ବନ୍ଧା ହୋଇଥିବାରୁ ଛବିର କାଚ ଖଣ୍ଡ (ଯାହାକୁ ଦେଠେଇ ସାଉଣ୍ଟି ଗୋଟିଏ କଣରେ ରଖିଥିଲେ ) ସେ ସବୁ ଯେପରି ତା' ଛାତରେ ଗଳିଯାଉଥାଏ । ଗଦିରୁ ତୁଳା ସବୁ ବାହାର ପଡ଼ିଥାଏ ଗୋଟିଏ ଜିନିଷ ମଧ୍ୟ ଅଭଙ୍ଗା ନଥିଲା । ସଜ୍ଜନ କନ୍ୟା ଏବଂ କର୍ଣ୍ଣେଲ ତିନିହେଁ ବହୁ ସମୟ ଧରି ଚୁପ୍‌ଚାପ ଠିଆହୋଇ ଦେଖିଲେ । ଦୁଇଟି ପିସ୍ତଲରୁ ଗୁଳି ବାହାରିପଡ଼ିବା ପରି

ସଜ୍ଜନର ଆଖି ଦେଖାଯାଉଥାଏ । ସଜ୍ଜନ ଏପରି ରୂପ ହୋଇ ରହିବା ଦେଖି କନ୍ୟା ଡରିଗଲା । ସଜ୍ଜନଙ୍କୁ ପ୍ରଚଣ୍ଡ କ୍ରୋଧରୁ ଅନ୍ୟମନସ୍କ କରାଇବା ପାଇଁ ସେ କିଛି କହିବାକୁ ଚାହୁଁଥିଲା କିନ୍ତୁ କିଛି କହିବା ତା' ପକ୍ଷରେ ସମ୍ଭବ ହୋଇ ପାରିଲା ନାହିଁ । ଏଇ ଶ୍ରେଷ୍ଠ ଘର ତାର ନୂଆ ସଂସାରର ପ୍ରବେଶ କରିଥିଲା ଏଭଳି ପ୍ରଥମେ ସେ ସଜ୍ଜନଙ୍କୁ ଭେଟିଥିଲା । ପ୍ରଥମ ଯେଉଁଦିନ ସେ ଦୈନିକ 'ନବଜୀବନ'ରେ ଚାକିରି ପାଇଥିଲା, ସେଦିନ ମହାବୀରଙ୍କ ପ୍ରସାଦ ନେଇ ଏଠାକୁ ଆସିଥିଲା, ସଜ୍ଜନ ମୁଣ୍ଡରେ ମହାବୀରଙ୍କ ପ୍ରସାଦ ଛୁଆଁଇ ଥିଲା, ପ୍ରଥମେ ତାଙ୍କୁ 'ତୁମେ ବୋଲି ସମ୍ବୋଧନ କରିଥିଲା ଏବଂ ମନରେ ଯେତେବାଧା ଥିଲା ସମସ୍ତ ବାଧା ଅତିକ୍ରମ କରି ସେ ସଜ୍ଜନର ଅତି ନିକଟକୁ ଚାଲି ଆସିଥିଲା । ଅଯାଚିତରେ ସେ ଦିନ କଥା ସବୁଗୁଡ଼ିକ ତା' ମନେ ପଡ଼ିଲା—ସେଦିନ ଜେଲରେ ସତ୍ୟନାରାୟଣ କଥାର ଶେଷ ଅଧା ଅଙ୍କିତ ହୋଇଥିଲା, ଖଟ ଉପରେ ମହାକବି ବୋଲି ବସିଥିଲେ । ଡାକ୍ତର ଶିଳାସିଂହ ମଧ୍ୟ ଆସିଥିଲେ । ତାହା ଉଆରହେଲା...କେତେ ସୁନ୍ଦର ସେ ଦିନ ସବୁଥିଲା । ଏ ଘର ଭିତରର ଦୃଶ୍ୟ ମଧ୍ୟ କେତେ ଆକର୍ଷକ ଥିଲା । ସେଇ ସୁନ୍ଦର ସବେ ସଜ୍ଜିତ ଘରକୁ ଏଭଳି ଧ୍ୱଂସ ବିଧ୍ୱସ୍ତ ଦେଖି ତା ମନରେ ଗଭୀର ଦୁଃଖ ହେଉଥାଏ । ପିଛ କଥା ମନେ ପଡ଼ିଲା—ସେ କହିଲା 'ତୁମ କଥା ଅକ୍ଷରେ ଅକ୍ଷରେ ସତ—"

ସଜ୍ଜନ ଧିରେ ତା' ଆଡ଼କୁ ଅନାଇଁଲା କର୍ଣ୍ଣେଲ ମଧ୍ୟ ଦେଖିଲା—କନ୍ୟା କହିଲା—"ସଂସାରରେ ଏଭଳି ମଣିଷ ବହୁ ସଂଖ୍ୟାରେ ରହିଛନ୍ତି ଯେଉଁମାନେ କ ସୌନ୍ଦର୍ଯ୍ୟଦ୍ୱାରା ଠିକ ଭାବରେ ଅନୁପ୍ରେରିତ ନ ହୋଇ; ତା' ପ୍ରତି ଶ୍ରଦ୍ଧା ପୂର୍ଣ୍ଣ ନ ହୋଇ ତାକୁ ବିନାଶ କରିବାରେ ହିଁ ଏକ ପୈଶାଚିକ ଆନନ୍ଦ ଅନୁଭବ କରିଥାନ୍ତି । ମଥୁରାର ପ୍ରାଚୀନ ଜାତୀ ନଷ୍ଟକରିବା ଇତିହାସର ଧ୍ୱଂସକାରୀମାନଙ୍କଠାରୁ ଆଜି ତୁମର ସୁନ୍ଦର ଛବିଗୁଡ଼ିକ ନଷ୍ଟ କରିଥିବା ଲୋକେ କୌଣସି ଅଂଶରେ କମ ବର୍ବର ନୁହନ୍ତି ।"

କର୍ଣ୍ଣେଲ କହିଲେ 'ଆହେ, ମୁଁ ତ ମୂଳରୁ କହିଥିଲି ଯେ ଧଳ, ସାଇ ଭଦ୍ରଲୋକଙ୍କ ବାସସ୍ଥାନର ଅଯୋଗ୍ୟ ଅଟେ । ଏଠି ବଦମାସ ଲୋକେ ହିଁ ବସ୍ତି କରିଛନ୍ତି । ସଜ୍ଜନ ପୁଣି ଏଭଳି ଲୋକଙ୍କ ମନର ସୁନ୍ଦର ପଣିଆ ଦେଖିବା ପାଇଁ ଏଠି ଆସିଥିଲା—ଦେଖିଲ ତ ସୁନ୍ଦର ପଣିଆ ।"

ସଜ୍ଜନ ରାଗିବା ସ୍ୱରରେ କହିଲା—"ଏଠିକା ଲୋକେ ଯଦିଭାବେ ଥାନ୍ତି ଯେ ଏହା ପରେ ଡରିଯାଇ ମୁଁ ଏଠାରୁ ପଳାଇବ ସେ କଥା ଭୁଲ୍ । ମୁଁ ଏଇଠି ରହିବ । ଏଇ ମୂର୍ଖମାନଙ୍କ ବର୍ବର ତାରକୁ ଦେଖିନେବ । ହୁସ୍—କୋଉଠିକାର— ଏମାନେ ପୁଣି ଅଭିଜ୍ଞା ଇଲେସ ଦେଶର ଲୋକେ । ମନ ହେଉଛି ଏମାନଙ୍କ ମୁଁହ ପୋଡ ଦେବାକୁ । "ଶିଳଙ୍କ ଘର କଣ କହୁଚୁଲିଛ ପୋଡ଼ି ଯାଇବ ? ଏତେ ନଷ୍ଟ ହି ହୋଇ ପାରିବ ? କନ୍ୟା କଥା ଶୁଣି ସଜ୍ଜନ ଦୀର୍ଘଶ୍ୱାସ ପକେଇଲା ।

କର୍ଣ୍ଣେଲ କହିଲା—ମୋ ମତରେ ତୋର ଏକଜିବିସନ ଏବେ କ୍ୟାନସଲ୍ କରିଦେ । ଏଠିକା ଲୋକ ତୋର ବିରୋଧ କରିବେ । ସେ ଦିନ ଯଦି କିଛି ଦୁର୍ଘଟଣା ଘଟିବ ତାହେଲେ ଭାରି ଅସୁବିଧା ହେବ । "ହିଜ୍ ଏକ୍ସଲେନ୍ସି' ଆସୁଛନ୍ତି । ନାମୀ, ଗୁଣୀ ବହୁବ୍ୟକ୍ତି ଆସିବେ, ସେମାନଙ୍କ ଆଗରେ ତୋର ବଡ଼ ଅପମାନ ହୋଇଯିବ ।

କନ୍ୟା କହିଲା 'ନାହିଁ ଭାଇ, ପ୍ରଦର୍ଶନୀ ନିଶ୍ଚୟ ହେବ । ନ କରିବାର ଅର୍ଥ କେବଳ ଦୁର୍ବଳତାର । ପ୍ରଦର୍ଶନୀ ଏଠିକା ଲୋକଙ୍କ ମନରେ ଶିକ୍ଷା ପ୍ରସାରର ମାଧ୍ୟମ ହେଲେ ଯାଇ ସଜ୍ଜନର ଏଠାରେ ରହିବା ପ୍ରକୃତ ପକ୍ଷରେ ସାର୍ଥକ ହେବ ।

ସଜ୍ଜନ କ୍ରୋଧରେ କହିଲା -'ମୁଁ ଏଇଠି ରହିବ । ମୁଁ ଏଇ ବଦମାସଲୋକଙ୍କ ଛାତି ଉପରେ ହିଁ ରହିବ । ଏଇ ରିଏକ୍ସନାରି ଏଲିମେଣ୍ଟଙ୍କ ଠାରୁ ଡରି ପଳାଇବା ସଜ୍ଜନ ଜାଣେ ନାହିଁ ।"

ଛାତ ଉପରେ ଦେଠେଇ ଏକ ପୁଟୁଳି ଧରି ଆସୁ ଥିବାର ଦେଖାଗଲା । କନ୍ୟା ତାଙ୍କୁ ଦେଖି ହାତ ଜୋଡ଼ିଲା । ଦେଠେଇ କିଛି ନ କହି ତାକୁ ଚାହିଁ ରହିଥିଲେ । ସଜ୍ଜନ ଆଡ଼କୁ ପୁଟୁଳି ବଢ଼େଇ ଦେଇ ଦେଇ କହିଲେ—'କର୍ଣ୍ଣେଲଙ୍କ ନାତି, ଏଥିରେ ତମ ଛବି ସବୁ ରହିଛି । ଅଠା ଢଆସ୍ତି ଜଳଦେବି ଆଜି, ସବୁତକ ବସି ଯୋଡ଼ିଦେବା । କ୍ରୋଧରେ ପ୍ରଚଣ୍ଡ ଜୁଆର ମନର ସାଗର କୂଳରେ ଶୀଘ୍ର ପଛକୁ ହଟିଗଲା । ଦେଠେଇଙ୍କ ଏଇ କଥା ପଦକ ତା ମନରେ ସମସ୍ତ ରାଗ ନିଭେଇଦେଲା ଦେଠେଇଙ୍କ ମମତା ମହାପ୍ରଳୟ ସମୟରେ ମନୁଙ୍କ ନୌକା ପରି ଆସି ପହଞ୍ଚିଲା । ସଜ୍ଜନ ପୁଟୁଳି ଗ୍ରହଣ କଲା । ଦେଠେଇ ଆକ୍ରମଣ କାରୀଙ୍କୁ ଅଭିଶମ୍ପାତ କରୁକରୁ କହିଲେ—'ଯେଉଁମାନେ ତୋର କ୍ଷତି କରିଛନ୍ତି ଆଠଦିନ ମଧ୍ୟରେ ନିର୍ବଂଶ ହୋଇ ମରିବେ ସତ୍ୟାନାଶିଆସବୁ । ତୁ ଆଉ ଏ ଘରେ ତୋ ଜିନିଷ ପତ୍ର ରଖିନାହିଁ । ମୋର ବୈଠକ ଖାନା ବ୍ୟବହାର କର । "କହୁ କହୁ କହୁ ସେ କର୍ଣ୍ଣେଲ ଓ କନ୍ୟାଙ୍କ ଆଡ଼କୁ ଅନାଇ କହିଲେ ।' ତୁମେ ସବୁ ବାହାରକୁ ଯାଅ । ଯାଅ କହୁଛି ।"

କନ୍ୟା ଶୀଘ୍ର ବାହାରିଗଲା । କର୍ଣ୍ଣେଲଙ୍କୁ ଭାରି ଖରାପ ଲାଗିଲା । ସେ କିଛି କହିବାକୁ ଯାଉଥିବା ମାତ୍ର ସଜ୍ଜନ ତା ହାତ ଚିପି ଇଶାରା କଲା—କର୍ଣ୍ଣେଲ ମଧ୍ୟ ବାହାରକୁ ଚାଲିଗଲା ଦେଠେଇ ସଜ୍ଜନର ପାଖକୁ ଚାଲି ଆସି ଧିରେ କହିଲେ—"ଦେଖ କଲ୍ଲୋମଲଙ୍କ ନାତି, ତୁ ଏବେ ବାହା ହୋଇ ପଡ଼ । ତୋ ବୋହୂକୁ ଗହେ ତୋଳା ସୁନା ଦେବି । ସେ ରାଣ୍ଡି କିଏ ? ଅଲାଜୁକ କାହିଁକା, ମର୍ଦ୍ଦଙ୍କ ଆଗରେ ମୁଣ୍ଡରେ ଲୁଗା ନ ଦେଇ ବୁଲୁଛି ।"

ସଜ୍ଜନ ଆଜି ଆଉ ଗତ ଥର ପରି ଦେଠେଇଙ୍କୁ କନ୍ୟା ସମ୍ପର୍କରେ ମିଛ କହି ଠକି ପାରିଲା ନାହିଁ । ସେ ସିଧା ସଳଖ କହିଲା—"ଦେଠେଇ ସେ ଭାରି ଭଲ ସ୍ତ୍ରୀ

ଲୋକ ତୁମେ ଯଦି ତୁମ ଘରେ ମତେ ରଖିବ ହେଲେ ସେ ମଧ୍ୟ ରହିବ । ଦେଠେଇ କିଛି କହିଲେ ନାହିଁ । କ୍ଷଣକ ପାଇଁ ସଜ୍ଜନ ଆଖିରେ ଆଖି ମିଳାଇ କହିଲେ—"କଳିଯୁଗ ଆସିଗଲା— ସେ ମଧ୍ୟ ଆସିବ—ଆସୁ ସତ୍ୟାନାଶୀ, ଆସି ନିଜ ମଣିଷ ପାଖରେ ରହିବ ମୋର କହିବାର କଣ ଅଛି ? ମୋ ପାଖର କବାଟ ବନ୍ଦ କରି ରଖିବ ।" ଦେଠେଇ ଆଉ ଦଣ୍ଡେ ବି ରହିଲେ ନାହିଁ, ହଠାତ୍ ଯେପରି ଆସିଥିଲେ ଠିକ୍ ସେହିପରି ଫେରିଗଲେ ।

# ତରୁଣୀ

ରାଜାସାହେବଙ୍କ ଘରେ ଜାତୀ ଜଙ୍କାରର ଉପଲକ୍ଷେ ଖୁବ୍ ଧୁମ୍‌ଧାମରେ ଭୋଜଭାତ ହେଉଥାଏ । ଦୁଇ ପ୍ରଦେଶର ଗଭର୍ଣ୍ଣର, ତିନିଜଣ କେନ୍ଦ୍ରୀୟ ମନ୍ତ୍ରୀ, ସ୍ଥାନୀୟ ସମସ୍ତ ପ୍ରାଦେଶିକ ମନ୍ତ୍ରୀ, ଉପମନ୍ତ୍ରୀ, ବହୁ ଭୂତପୂର୍ବ ଜମିଦାର ଓ କାନପୁର କଲିକତାର ଦୁଇତିନି ଜଣ କୋଟିପତି ଉପସ୍ଥିତ ଥା'ନ୍ତି । ମହଫିଲ୍ ଖୁବ୍ ଜମିଥାଏ । ମହୀପାଳ ଏହି ଅବସରରେ ନିଜ ସ୍ୱଭାବ ସୁଲଭ ଭଙ୍ଗୀରେ ରହସ୍ୟ ଆରମ୍ଭ କରିଦେଲେ । ଖିଆପିଆ ସାରି ସେମାନେ ଲନ୍‌କୁ ଆସିବାରୁ ସଜ୍ଜନ କହିଲା "ମହୀପାଳ, ତୁମେ ବହୁତ କ୍ଳାନ୍ତ । କିଛି ଦିନ ପାଇଁ ବାହାରକୁ ଯାଇ ସୁସ୍ଥ ହୋ'ଇଆସ ।" ମହୀପାଳ ମନରେ ଠିକ୍ ଏହିପରି ଏକ ଅବସାଦ ଗ୍ରସ୍ତ ଅନୁଭବ ଥିଲା । ବନ୍ଧୁର ପରାମର୍ଶ ତା' ମନକୁ ବେଶ୍ ପାଇଗଲା । ସେ କହିଲା........."ହଁ ବନ୍ଧୁ, ମୋ ମାନସିକ ବିରକ୍ତି ପାଇଁ ଅନେକ ସମୟରେ ମୋତେ ନିଜକୁ ଖରାପ ଲାଗୁଛି । ତୁମ ପ୍ରସ୍ତାବ ମନ୍ଦ ନୁହେଁ । ସଂଯୋଗ ବଶତଃ ମୋ ମାମୁଁ ପୁଅ ଘରର ଚିଠି ବି ଆସିଛି । ଭାବୁଛି ଏଥର ସାଂସାରିକ ଚିନ୍ତାରୁ ବଳପୂର୍ବକ ଅବ୍ୟାହତି ନେଇ ତା' ଗାଁ ଆଡ଼େ ବୁଲି ଆସିଲେ ଭଲ ହେବ । ...... ......ନିଶ୍ଚୟ ଏବେ ଚାଲିଯିବି ।"

ନିଜର ଚିନ୍ତାରେ ଅଭିଭୂତ ହୋଇ ମହୀପାଳ ଘରକୁ ଚାଲିଗଲା । ସଜ୍ଜନ ନିଜକୁ ଏକାକୀ ଅନୁଭବ କରି ଘରକୁ ଯିବାକୁ ବାହାରିଲା ବେଳେ ପୂର୍ବ ପରିଚିତା ମିସେସ୍ ଚନ୍ଦା ରାଜାଦାନ ସାଙ୍ଗରେ ଆକସ୍ମିକ ଦେଖା ହୋଇଗଲା । ମିସେସ୍ ଚନ୍ଦା ରାଜାଦାନ ସଜ୍ଜନର ଅବିବାହିତ ଜୀବନର ଜ୍ୱଳନ୍ତ ମଧ୍ୟାହ୍ନରେ ଛୁଇଁଥିଲେ । ସେ ଆଜି ଘରକୁ ଫେରିବା ପାଇଁ କୌଣସି କାରକୁ ଖୋଜୁଥାଏ । ଚନ୍ଦା କାହାରି ବିବାହିତା ନୁହେଁ ବରଂ ଅନେକଙ୍କର ରକ୍ଷିତା । ତା ରୂପ ଯୌବନ ବେଶ୍ ଆକର୍ଷକ । ବନକନ୍ୟାର ସ୍ୱଭାବ ଧରି ଅନନ୍ତା ପୂର୍ଣ୍ଣ ଆଚରଣ ସଜ୍ଜନର ଆଭିଜାତ୍ୟ ଓ କଳାକାର ସୁଲଭ ଅହଙ୍କାର ତଥା କାମନାର ଲାଳସାକୁ ଦ୍ୱିଗୁଣିତ କରିଥାଏ । ଫଳରେ ଚନ୍ଦା ସାଙ୍ଗରେ ଏ ସାକ୍ଷାତ ଅତ୍ୟନ୍ତ ଅନୁକୂଳ ବୋଧହେଲା ।

ସେଦିନ ରାତିରେ ମଦନିଶାରେ ଆତ୍ମବିସ୍ମୃତ ହୋଇ ସ୍ୱାଭିମାନିନୀ ବନକନ୍ୟାକୁ ଦଣ୍ଡଦେବା ଲାଗି ସଜ୍ଜନ ମନେ ମନେ ସ୍ଥିର କଲା ଯେ ସେ ଚନ୍ଦା ରାଜଦାନକୁ ବିବାହ କରି ପତିତା-ଉଦ୍ଧାର ଆଦର୍ଶ ଉପସ୍ଥିତ କରିବ ।

ପରଦିନ ସକାଳୁ ରାଜାସାହେବଙ୍କ ବଡ଼ପୁଅ ନିଜେ ଆସି ସଜ୍ଜନକୁ ଡାକି ନେଲେ । ରାଜାସାହେବ ଲାଲ ଜାନକୀ ସରଣ ଓ ସାଲିଗ ରାମ ସିଂହଏଁ ଗୋଡ଼ ଉପରେ ଗୋଡ଼ ପକାଇ ବସିଥାନ୍ତି । ରାଜ ସାହେବଙ୍କ ପ୍ରସ୍ତାବରେ ଓ ଅନ୍ୟ ଦୁଇଜଣଙ୍କ ବାଧ୍ୟତାରେ ଅନନ୍ୟୋପାୟ ହୋଇ ସଜ୍ଜନ ପ୍ରତିଶ୍ରୁତି ଦେଲା ଯେ ସେ ବନକନ୍ୟାର ପିତା ସଂକ୍ରାନ୍ତୀୟ କେସ୍‌ରେ କୌଣସି ସହାୟତା ଦେବନାହିଁ । ଦୁଇଦିନ ଧରି ବନକନ୍ୟା ଓ କର୍ଣ୍ଣେଲ ସହିତ ତା'ର ମତାନ୍ତର ହୋଇଥାଏ ତଥା ତା' ଘରେ ଥାଏ । ଅନ୍ୟଦିଗରେ ବନକନ୍ୟା ଓ କର୍ଣ୍ଣେଲ କେସ୍ ସଂକ୍ରାନ୍ତୀୟ କାର୍ଯ୍ୟ ଆଗେ ବଢ଼ାଇବାର ସମ୍ବାଦ ଖବର କାଗଜରୁ ପଢ଼ି ସଜ୍ଜନ କ୍ଷୁବ୍ଧ ହେବାକୁ ଲାଗିଲା । ଉଦ୍‌ଭ୍ରାନ୍ତ ଭାବେ ତିନିଦିନ ବିତାଇ ଚତୁର୍ଥ ଦିନ ବିଦାନନ୍ଦଙ୍କୁ କିଛି ପର୍ନିଚର, ସାଜସଜ୍ଜା ସାମଗ୍ରୀ ଓ ଆବଶ୍ୟକୀୟ ବସ୍ତୁ ତାଇ (ବଡମା) କୋଠରୀରେ ପହଁଚାଇ ଦେବାକୁ ଆଦେଶ ଦେଲା । ଦ୍ୱିପହର ବେଳେ ସେ ନିଜେ ଯାଇଁ ତାଇ ଘରେ ପହଁଞ୍ଚିଗଲା । ଲଳିତା, ବିଶାଖା ଓ କସ୍ତୁନ୍ ଏକାଠି ଦୌଡ଼ି ପଳାଉଥିଲେ । ଦେଠେଇ ସେମାନଙ୍କୁ ଧରି ଆଣିବାକୁ ସଜ୍ଜନକୁ କହିଲା, ସଜ୍ଜନ ସେମାନଙ୍କୁ ଆଣି ଖମ୍ବରେ ବାନ୍ଧିଲା ।

.........ଦେଠେଇ, ମୋର ଜିନିଷ ପତ୍ର ସବୁ ଆସିଯାଇଛି ତ ?"

.........ହଁରେ । ମୁଁ ସବୁ ଜିନିଷ ପତ୍ର ଠିକ୍‌ଠାକ ସଜାଡ଼ି ଦେଇଛି । ତୋ'ର ବୈଠକଖାନା ଶଶୁରଙ୍କ ବୈଠକଖାନାରେ ହିଁ ଠିକଣା ହୋଇଛି । ଆଚ୍ଛା (କର୍ଣ୍ଣମୋଳର ନାତି) ତୁ କଣ ବଢ଼ିନ୍ କଶୋଶ୍ୱ ପୁଅର ଏକୋଇଶାକୁ ଯାଇଥିଲୁ ?"

.. ......ହଁ ଦେଠେଇ ।

......ଜାଫତ୍ କିମିତି ହେଲା ? ଶୁଣିଲି ବହୁତ ଲୋକ-ବାକ ହୋଇଥିଲେ ।"

ସଜ୍ଜନ ଜାଣିଶୁଣି ମିଛ କହିଲା, "ନା ଦେଠେଇ ବେଶୀ ନୁହେଁ ଛ'ସାତଶହ ପର୍ଯ୍ୟନ୍ତ ଲୋକ ଆସିଥିଲେ ।"

........କେତେ ପ୍ରକାର ମିଠାଇ ହୋଇଥିଲା ?

ସଜ୍ଜନର ମନେ ପଡୁନଥିଲା । ଏହାଛଡ଼ା ଏ ସମୟରେ ନିରର୍ଥକ ପ୍ରଶ୍ନୋତ୍ତରରୁ ସେ ମୁକ୍ତି ଖୋଜୁଥିଲା । ସେ କହିଲା "ଗଣିଲେ ବହୁତ ହେବ ।"

କିଛିକ୍ଷଣ ନିରବ ରହି ଦେଠେଇ କହିଲା, "କର୍ଣ୍ଣମୋଳର ନାତି, ତୁ ବାହା ହେଇଯା । ଏମିତି ବଡ଼ ଭୋଜିଭାତ କରିବା ଯେ ରାଣ୍ଡଙ୍କ କଲିଜାରେ ନିଆଁ ଲାଗିବ । କହ ଠିକ୍ କରିବା ? ତତେ ଝିଅକୁ ଦେଖାଇ ଦେବି । ଖୁବ୍ ଶାନ୍ତ ସୁଧାର ଝିଅ ।" ସଜ୍ଜନ ଏ ସମସ୍ୟାର ମୁକ୍ତି ଖୋଜୁଁଥିଲା । କହିଲା ... ....."ଦେଠେଇ, ମୋ କୋଷ୍ଠୀରେ ଲେଖା ହୋଇଛି ଯେ ଯଦି ମୁଁ ଏଇ ଦୁଇବର୍ଷ ମଧ୍ୟରେ ବାହାହୁଏ ତା'ହେଲେ ମରିଯିବି ।"

ଏକଥା ଶୁଣି ଦେଠେଇ ଚମକି ପଡ଼ିଲେ । ସେ ପୁଣି କହିଲା "ଜନମ କୁଣ୍ଡଳୀ ମୁଁ ଭଲଭାବେ ମିଳେଇ ଦେଖିବି, ଯାହା ସାଙ୍ଗରେ ପୂରା ମିଳିଯିବ ହେବ ତାକୁହିଁ ତୋ ପାଇଁ କନିଆଁ କରି ଆଣିବି"………ପୁଣି ଧିରେ ଧିରେ କିଛି ରହସ୍ୟ ଜନକ କଥା କହିଲା ଭଳି କହିଲା" ଏ କଣ୍ଟ୍ରୋଲର ନାତି କାହାପାଇଁ କିଛି କାରଜ (କାର୍ଯ୍ୟ) କରିବାକୁ ମୋ ମନରେ ବଡ଼ ଇଚ୍ଛାଅଛି । ଏ ସଣ୍ଡେ ସ୍ୱରୂଚନ୍ଦ୍ର ତାଙ୍କର ଏକା ପୁଅନାତି ଅଛନ୍ତି, ମୋର କେହି ନାହାନ୍ତି ଦେଖିବି, ମୁଁ ଏବେବି ଏଟୋକାର ଜନମ ଉତ୍ସବ କରିବି ଯେ "

ଏତିକି ବେଳେ କବାଟ ଖଡ଼ ଖଡ଼ ଶୁଣି ଦେଠେଇ ଦୁଆର ମୁହଁକୁ ଚାଲିଗଲା । ସଜ୍ଜନ ବାରଣ୍ଡା ଉପରେ ପଦଚାରଣା କରି ଗଲି ଆଡ଼କୁ ମୁହେଁଇଲା । ଲାଲା ଜାନକୀ ଶରଣ ପିଣ୍ଡା ଉପରେ ବସି ଫଳବାଲା ସାଙ୍ଗରେ ମୂଲ କରୁଥିଲେ । ସଜ୍ଜନକୁ ଦେଖିବା ମାତ୍ରେ ଲାଲାଜୀ କହି ଉଠିଲେ "କି ? ବଡ଼ମା କୋଳରେ ଆସି ବସି ଗଲଣି ।" ସଜ୍ଜନ ଏ ପ୍ରକାର ଅଟ୍ଟାର ଉତ୍ତର ଦେବା ମୁଡ଼ରେ ନଥିଲା, ଲାଲା ଜାନକୀ ଶରଣଙ୍କୁ ଦେଖି ସେ ସଙ୍କୁଚିତ ବୋଧ କଲା । ଲାଲାଜୀ କହିଲେ—"ଆସ ଆସ ଦ' ମିନିଟ ବସି ଯାଅ ।"

ଲାଲାଜୀଙ୍କ ଘର ସାମନା ପିଣ୍ଡି ଉପରକୁ ସଜ୍ଜନ ଉଠିଲା । ଲାଲାଜାନକୀ ଶରଣ କହିଲେ………"ପିଲାଏ ମୁରବୀ ମାନଙ୍କୁ ଆଡ଼େଇ ଦେଲେବି ମୁରବୀ ମାନଙ୍କର କିଛି ଯାଏ ଆସେନା । ସେମାନେ ସେମିତି ରହିବେ, ହଁ, ରାଜାସାହେବ ଆଜିର ଖବର କାଗଜପଢ଼ି ଖୁବ୍ ବ୍ୟସ୍ତ ହୋଇ ପଡ଼ିଛନ୍ତି । ଦିନବେଳା ତାଙ୍କର ଟେଲିଫୋନ ଆସିଥିଲା ।"

ଲାଲାଜୀ ଆଉ କିଛି କହିବା ପୂର୍ବରୁ ସଜ୍ଜନ କହି ଉଠିଲା "ଏଥିରେ ମୋର କିଛି ହାତ ନାହିଁ ଲାଲାଜୀ, ମୁଁ ଏ ମାମୁଲାର ବହୁତ ଦୂରରେ "

………କିନ୍ତୁ କଣ୍ଟ୍ରୋଲ ?

………କଣ୍ଟ୍ରୋଲ ଏ ବିଷୟରେ ମୋର କିଛି ମତାମତ ନେଇନାହିଁ ।

…… ଓ……ଏମିତି କଥା ନା ?" ଲାଲାଜୀ ବ୍ୟଙ୍ଗପୂର୍ଣ୍ଣ କଣ୍ଠରେ ଏତକି କହି ହସିଲେ । ଲାଲାଜାନକୀ ଶରଣଙ୍କର ଏ ଅର୍ଥ ପୂର୍ଣ୍ଣହସ ଓ କଥା ସଜ୍ଜନକୁ ଖରାପ ଲାଗିଲେ ବି ସେ କିଛି କହିଲା ନାହିଁ । ବରଂ ମନେ ମନେ ନିଜକୁ ଅପରାଧୀ ମନେକଲା ।

ଲାଲା ଜାନକୀ ଶରଣ ପୁଣି କହିବାକୁ ଲାଗିଲେ "ଆରେ ଭାଇ, ମୋତେ ପଇଁଷଠୀ ବର୍ଷ ଚାଲିଲା । ଚଉରାଳିସ୍ ସମ୍ବତ୍‌ରେ ମୋର ଜନ୍ମ । ତୁମର ବାପ ମୋଠୁ ବୟସରେ ବହୁତ ଛୋଟ, ଏବେ ଆମ୍ଭେ ତୁମ୍ଭଙ୍କୁ କ'ଣ କହିବା, ଭଗବାନଙ୍କ ଦୟାରୁ

ତୁମ୍ଭେ ପାଠଶାଠ ଦୁ' ଅକ୍ଷର ପଢ଼ି ବିଦ୍ୱାନ ହୋଇଛ, ସବୁ ବିଷୟରେ ସମଝଦାର ହୋଇଛ, କେବଳ ଇଙ୍ଗିତରେ ତୁମ ସାଙ୍ଗରେ କଥା କହିବା ଆମ୍ଭର କର୍ତ୍ତବ୍ୟ । ସଭକଙ୍କର କିଛି କ୍ଷତି ନାହିଁ, କିନ୍ତୁ ନିଜକୁ ସମ୍ଭାଳି ରଖି ଯାହା କରୁଛ କର । ନଗୀନ ଚନ୍ଦ୍ରକୁ ବି ମୋ ପକ୍ଷରୁ ଏଇ ପରାମର୍ଶ ଦେବ । ଯେଉଁ ଝିଅ ନିଜର ବାପର ହୋଇ ପାରିଲାନି ସେ ଆଉ କାହାର ହେବ ।"

ସଜ୍ଜନ ଚୁପ୍ ରହିଲା । ବନକନ୍ୟା ସମ୍ପର୍କରେ ଲଲ୍ଲା ଯେଉଁ ଧାରଣା ପୋଷଣ କରିଛନ୍ତି ତାହା ନିରର୍ଥକ ହେଲେବି ତାର ପ୍ରତିବାଦ କରିବାକୁ ବି ସେ କିଛି ଖୋଜି ପାଇଲା ନାହିଁ ।

ଲଲ୍ଲାଜାନକୀ ଶରଣ ନିଜର ଦୁଇଟି ବଡ଼ ବଖରା ଘର ଦେଖାଇଲେ । ଅବଶ୍ୟ ଘରଗୁଡ଼ିକ ଚିତ୍ର ପ୍ରଦର୍ଶନୀ ଯୋଗ୍ୟ ନଥିଲା । ସେଗୁଡ଼ିକ ପର୍ଯ୍ୟାପ୍ତ ଆଲୋକିତ ନୁହଁନ୍ତି । ସଜ୍ଜନ ଇଲେକ୍ଟ୍ରିକବାଲାକୁ ଡାକି ବ୍ୟବସ୍ଥା କରିବାକୁ କହିଲା । ପରଦିନ ସକାଳ ଆଠଟାରେ ପୁଣିଥରେ ଆସିବାକୁ କହି ସେ ପୁଣି ତାଇ ଘରକୁ ଲେଉଟିଗଲା । ଦେଠେଇ ଘରେ ବନକନ୍ୟା ବସିଥାଏ । ତାକୁ ଦେଖି ନ ଦେଖିଲା ଭଳି ଏକ ଆଟ୍ମଚେୟାର ଉପରେ ଶୋଇଯାଇ ଅନ୍ୟ ଦିଗକୁ ମୁହଁ କଲା ।

କନ୍ୟା ପଚାରିଲା........."କ'ଣ ରାଗିଛ ?

"................."

"ରାଗିବାର ତ କିଛି କାରଣ ନାହିଁ ।"

"ମୋ କି ଅଧିକାର ଅଛି ଯେ ମୁଁ ତୁମ ଉପରେ ରାଗିବି ।"

"ମୋର ସ୍ୱପ୍ନରେ ସୁଦ୍ଧା ବିଶ୍ୱାସ ନଥିଲା ଯେ ତୁମେ ଅନ୍ୟାୟର ପକ୍ଷଭୁକ୍ତ ହେବ ।"

ସଜ୍ଜନ ଚିଡ଼ି ଉଠିଲା, କହିଲା "ମୁଁ ନ୍ୟାୟର ପକ୍ଷଭୁକ୍ତ ହେବା ଯୋଗୁ ବଦନାମ ହୋଇଛି ।"

"........ତେବେ ପୁଣି......?

"ମୁଁ ଏବେ ଏଥିରେ ତୁମର ଅନ୍ୟାୟ ଦେଖୁଛି ।"

"...........କ'ଣ ?

ଏଇ କ'ଣର ଉତ୍ତର ସଜ୍ଜନ ଖୋଜି ପାଇଲାନି । କନ୍ୟା ପୁଣି କହିଲା......ମୁଁ ମା ବାପାଙ୍କ ସାଙ୍ଗରେ ଅନ୍ୟାୟ କରୁଛି ? ତୁମେ କ'ଣ ଏବେ ଉଚିତ ମନେ କରୁଛ

ଯେ'ନାଗ୍ଣ ସବୁକାଗାରେ ଦଳିତ ହୋଇ ରହୁ ସଜ୍ଜନ ଚଣ୍ଡ ଉଠି କହିଲା "ଆଜ୍ଞା ନା, ନାଗ୍ଣକୁ ଏବେ ଆଉ ଦଳିତ କିଏ କହିବ ? ବରଂ ପୁରୁଷମାନେ ହିଁ ଦଳିତ ହୋଇ-ଗଲେ ।

"·········ସଜ୍ଜନ ମୁକ୍ତ ସଙ୍ଗତ କଥା କହ । ରାଗୁଛ କାହିଁକି ? ମୁଁ କ'ଣ ତୁମକୁ କୌଣସି ପ୍ରକାର ଧୋକା ଦେଇଛି ? ଯେବେ ମୁଁ ପ୍ରଥମ କରି ତୁମ ଘରକୁ ଆସିଥିଲି ସେଇଦିନୁ କ'ଣ ଏକଥା ସ୍ପଷ୍ଟ ହୋଇ ଯାଇନି ?"··············ମୁଁ ଏସବୁ କିଛିର ଅଭିଯୋଗ କରନ୍ତି । ମୋର ଅଭିଯୋଗ ଏହି ଯେ ଯେତେବେଳେ ମୁଁ ତୁମକୁ ମନାକଲି ତୁମେ କଣ ମାତ୍ର ଗୃହଦିନ ରହି ପାରିଲନି ?

"······ : ସଜ୍ଜନ, ତୁମ ପାଖରେ ବଡ଼ ବଡ ଲୋକଙ୍କ ସୁପାରିଶ୍ ଆସି ପହଁଚିଛି, ମୋ ବାପାଙ୍କୁ ବଞ୍ଚାଇବା ପାଇଁ ନୁହେଁ "ସାଲଗଗ୍ରାମ"ର ମାନରକ୍ଷା ପାଇଁ । ମୁଁ ବା କାହିଁକି ଦାୟୀ ହେବ ? "ସାଲଗଗ୍ରାମ" ଅପଦସ୍ଥ ହେଲେ ବା କଂଗ୍ରେସ ଲୋକେ ବଦନାମ ହେଲେ ମୋର କ'ଣ ଅଛି ?"

············ମିସ୍ ବନକନ୍ୟା, ମୁଁ ତୁମର ପଲିଟିକାଲ୍ ଗ୍ଲାକୁ ଖୁବ୍ ବୁଝିଗଲି ଏବେ············"।

············ସଜ୍ଜନ, ତୁମେ ଭଲଭାବେ ଜାଣ ଯେ ପ୍ରକୃତ ଘଟଣାଟା କ'ଣ, ଅଯଥାରେ ମୋତେ ଯୁକ୍ତ କରିବାକୁ ଭଲ ଲାଗେନା ।

············ଆଉ ମୁଁ ବ ଯୁକ୍ତ କରିବାକୁ ଚାହେଁ ନା, "ଏତକ କହି ସଜ୍ଜନ ମୁହଁ ଫେରାଇ ନେଲା । ବନକନ୍ୟା ସଜ୍ଜନ ପାଖକୁ ଉଠିଆସି ଠିଆ ହେଲା, ସଜ୍ଜନ ମୁଣ୍ଡରେ ହାତ ସଂଚାଳନ କରି ପଚାରିଲା "ଏବେ ଆଉ କିଛି କହିବନି ?

················ ··· ନା ।

······ ················ ···କେତେଦିନ ପର୍ଯ୍ୟନ୍ତ ।

·· ······ ········ସବୁଦିନ ପାଇଁ ।

········· ··ନକୁହ, ମୁଁ କାନ୍ଦି କହିବ ।

ସଜ୍ଜନକୁ କନ୍ୟାର କରସ୍ପର୍ଶ ଉତ୍ତେଜିତ କରୁଥାଏ । ଏ ଉତ୍ତେଜନା ବ ଏତେବେଳେ ସଜ୍ଜନକୁ ବିରକ୍ତିକର ଲାଗୁଥାଏ । ବନକନ୍ୟାର ସ୍ପର୍ଶ ସୁଖଦ ଓ ଶୀତଳ ଥିଲା ·· ········ ଅତି କମ୍‌ରେ ଅନ୍ତତଃ ଏତିକ ତା'ର ଅନୁଭବ ହେଉଥିଲା । ଏ ସ୍ପର୍ଶ ମାଧ୍ୟମରେ କନ୍ୟା ଯେପରି ତା ଅନ୍ତରର ସମସ୍ତ ପଵିତ୍ରତାକୁ ଅର୍ପଣ କରୁଛି । ସଜ୍ଜନ

ଭିତରେ ଥିବା "ଅପବିତ୍ରତା" ବିରକ୍ତ ହୋଇ ଉଠୁଥାଏ, ପବିତ୍ର-ଅପବିତ୍ର ଭାବନା ସଜ୍ଜନ ମନରେ ପରିଷ୍କାର ଅସ୍ତ୍ର ପ୍ରକାଶ କରୁଥାଏ । ଆଉ ତା ସହିତ ସେ ନିଜ ଅପବିତ୍ରତାକୁ ପବିତ୍ର ମନେକରି ବନକନ୍ୟାର ପବିତ୍ରତାକୁ ଅପବିତ୍ର ରୂପ ଦେବାକୁ ମାନସିକ ସଂଘର୍ଷ ମଧ୍ୟ କରୁଥାଏ । ସଜ୍ଜନ ହଠାତ୍ ଉଠିବସି କହିଲା ..........."ଏ କଥା ମୋତେ କହୁନ, ମୋର ପଇସା, ମୋ ଇଜ୍ଜତ ଓ ଆଭିଜାତ୍ୟକୁହିଁ କହୁଛ ।"

"ଏକଥା ମୁଁ ଦ୍ୱିତୀୟ ଥର ଶୁଣୁଛି ।"

"ତୁମେ ସର୍ବଦା ନିର୍ଲଜ୍ଜଭାବେ ଏଇକଥା ଶୁଣୁଥିବ ।"

ବନକନ୍ୟାର ମୁହଁ କ୍ରୋଧରେ ଲାଲ ପଡ଼ିଗଲା । ପର ମୁହୂର୍ତ୍ତରେ ନିଜକୁ ସମ୍ଭାଳି କରି କହିଲା "ଯେଉଁଦିନ ମୋର ଏଇ ବିଶ୍ୱାସ ହେବ ଯେ ତୁମେ ପ୍ରକୃତରେ ଏଇଆ ବୁଝିଛ ସେଇ ଦିନଠୁ ତୁମକୁ ମୁହଁ ଦେଖାଇବିନି ।" ଏତିକି କହି ବନକନ୍ୟା ସଜ୍ଜନ ପାଖରୁ ଚାଲିଗଲା ।

............ଏ କଲ୍ଲମୋଲର ନାତି ।

............ହଁ ଦେଓଠେଇ ।

..............ଶୁଣ ଏଇ ଯେଉ ତୋର ସାଙ୍ଗ ଚିଅଛି, ତାକୁ କହିଦେ, ତାର ପୁଅର ମାଇଁ ହେଇ ମୁଁ ଷଠୀ କରିବାକୁ ତିଆରଅଛି । ଯେମିତି ସେ ସବାଖାଇ, ସେମିତି ଅଧର୍ମୀ, ତାପାଇଁ (ମାଇଁ) କେଉଁଠୁ ଆଣିବ କହି । ସଜ୍ଜନ ତୁରନ୍ତ ଅଧିକାର ଜାହିର କଲାଭଳି କନ୍ୟା ଆଡ଼କୁ ଚାହିଁ କହିଲା "ହଁ ହଁ ଦେଓଠେଇ । କନ୍ୟା ବି ତୁରନ୍ତ କହି ଉଠିଲା" ନିଶ୍ଚୟ ହେବ ଭାଇଜି, ମୁଁ କଣ ଅଧର୍ମୀ ନୁହେଁ । ଦେଓଠେଇ ଏତିକିବେଳେ ଗଳିର କୁକୁର ଗୋଟାଏ ଭିତରକୁ ଦୌଡ଼ି ଆସିବାରୁ ତାକୁ ଘଉଡ଼ାଇ ଦେବାପାଇଁ ଚୋଠେଇ ବାହାରକୁ ଗଲା । କୁକୁରଟା କିନ୍ତୁ ବାହାରକୁ ନଯାଇ ବାରଣ୍ଡା ଉପରକୁ ଦୌଡ଼ିଗଲା । ତାଇ ପାଟିକରି ତା ଉପରେ ଗାଳି ଗୁଲଜ ବର୍ଷିଲେ ।

ସଜ୍ଜନ ବାରଣ୍ଡା ଉପରକୁ ଯାଇ କୁକୁରକୁ ଘଉଡ଼ାଦେଇ ଫାଟକ ପାଖକୁ ଗଲା । ଫାଟକ ବନ୍ଦ କରୁକରୁ ସଜ୍ଜନର ଦୃଷ୍ଟି ତଳରେ ଯାଉଥିବା ରାମଜୀବାବାଙ୍କ ଉପରେ ପଡ଼ିଲା । ବାବା ରାମଜୀ ସଜ୍ଜନକୁ ଦେଖିବା ମାତ୍ରେ ସ୍ୱଭାବ ସୁଲଭ ଭଙ୍ଗୀରେ କହି ଉଠିଲେ "ଜୟ ବାବା ରାମ ଭଗତ, କ'ଣ ହେଉଛି ।" ଦନ୍ତ ବିହୀନ ପାକୁଆ ପାଟିର ହସ ଓ ଛୋଟ ଛୋଟ ଆଖିରେ ସ୍ନେହର ଚମକ ଯେପରି ଉଛୁଳି ପଡ଼ୁଛି । ସଜ୍ଜନ ରାମଜୀ ବାବାଙ୍କୁ ଦେଖିବା ମାତ୍ରେ ମନରେ ତା'ର ସୁପ୍ରଭାତ ଚମକ ସୃଷ୍ଟି ହେଲା, ଯେପରି ଚୋରି କରୁକରୁ ଧରାପଡ଼ି ଯାଇଛି । ବାବା ଦେଓଠେଇଙ୍କର ଫାଟକ ଆଡ଼କୁ ମୁହାଁଇଲେ । ପଛରେ ତାଙ୍କର

ଚେଲା ଚେଲାଟି ବେଶ୍ ଡାଗଡ଼ା । ହାତରେ ତାର ତୁମ୍ବା ଓ କମଣ୍ଡଳୁ । ସେମାନଙ୍କ ପ୍ରବେଶ ପରେପରେ ସଜ୍ଜନ ଫାଟକ ଆଉଜାଇ ସେ ଦୁହିଁଙ୍କୁ ଅନୁସରଣ କଲା । ବାରଣ୍ଡା ଉପରେ ଠିଆ ହୋଇ ଦେଠେଇ ଏ ସାଧୁବେଶ ଧାରୀ ବାବାଜୀଙ୍କୁ ଦେଖି ପାଦରେ ତାଙ୍କର ମୁଣ୍ଡିଆ ମାରିଲା ।

......... ସୁଖୀ ହ, ସୁମତି ହ, ଶାନ୍ତ ହ ।

............ମହାରାଜ କେଉଁଠୁ ଆସିଲେ ?

........... ରାମଜୀ ଘରୁ ଆସିଲି । ଯେଉଁଠୁ ତୁ ଆସିଚୁ ପ୍ରେମଭଗବତୁଣୀ ।

............ଆରେ ଏକଥା ତ ସଭିଏ ଜାଣନ୍ତି ବାବା । ସଭିଙ୍କର ଜନ୍ମ ତ ସେଇ ଥାନରୁ । ଆପଣ ପାଗଳମାନଙ୍କର ଇଲାଜ କରନ୍ତି ବୋଲି ମୁଁ ଶୁଣିଛି ।

............ହଁ ବେଟି । ମୁଁ ପାଗଳମାନଙ୍କର ଚିକିତ୍ସା କରେ, ଯେଉଁଠି ପାଗଳମାନେ ଥା'ନ୍ତି ମୁଁ ସେଇଠି ସେବା କରିବାକୁ ପହଁଚ ଯାଏ । କ ଣ ରାମଭଗତ ।

ଏତିକି କହି ରାମଜୀ ବାବା ସଜ୍ଜନ ଆଡ଼କୁ ଚାହିଁଲେ, ସଜ୍ଜନର ମନେ ହେଲା ଯେପରି ଏକଥା ତାକୁହିଁ ଲକ୍ଷ୍ୟକରି କୁହା ଯାଉଛି । ସେ ମୁଣ୍ଡନେଇଁ ଚୁପ୍ ରହିଲା ।

ସଜ୍ଜନ ସେମିତି ମୁଣ୍ଡ ତଳକୁ ପୋତି ଠିଆ ହୋଇଥାଏ, ବାବାଜୀ ଥରେ କନ୍ୟା ଆଡ଼କୁ ଚାହିଁ ତାଇକୁ ପଚାରିଲେ, ''ଏ ଜଣ ତୋ'ର ଝିଅ ମା ?

............ମୋର ସେ ଗାତଚୁଲି କାହିଁକି ଝିଅ ହେବ ବା ?

...... .... ହଁ ତୋ'ର ଝିଅ ତ ଇଏ । ତୁ ତା'ପାଇଁ ଶହେ ତୋଲା ସୁନା ନେଇ ବସିଚୁ, ସେଇଥି ପାଇଁ ଗାଳି ଗୁଲଜ କରୁଛୁ ।

...... .. ମୁଁ କାହାର ଋଣ ଏବ ଚଳ ଧାରେନା । ହଁ ଶହେ ତୋଲା ସୁନା ମୁଁ ଏହାର ପାଇଁ (ସଜ୍ଜନକୁ ଲକ୍ଷ୍ୟକରି)..... ତା' କନିଆ ପାଇଁ ରଖିଚ, ଦେବି । ସେ ଯଦି ମୋ ପସନ୍ଦ ମୁତାବକ ବାହାହୁଏ ।

............କନା ବା'ହାଘରରେ ଏ ଶହେ ତୋଲା ସୁନା ଦାନ ଦେଇଦେ ।

............ନା ବାବାଜୀ ।

............ପରୋପକାର ହେବଲେ, ଯଦି ଚୋର ହେଇଯିବ କ'ଣ ଆଉ ହେବ କହିଲୁ ?

............ମୋ ଘରେ ଚୋରହେବା ଖବର ତୁମକୁ ଜଣା ବାବାଜୀ ?

............ମୋଘରେ ସତକୁ ସତ କ'ଣ ସ୍ୱର୍ଗ ହୋଇଛି କି ? ମୁଁ ତ ଏମିତି ଉଦାହରଣ ଦେବାପାଇଁ କହିଦେଲି । ଏତିକି କହି ବାବାଜୀ ହସି ଉଠିଲେ ।

ବାବାଜୀ ପୁଣି କହିଲେ, "ସ୍ୱର୍ଗ ହୋଇ ଯାଉଛି ବୋଲି ଶହେ ତୋଳା ଯା'ଙ୍କୁ ନାହିଁ ତାକୁ ଦାନ କରିଦେବାକୁ ତୁ ଠିକ୍ କରିଛୁ ରାମଭଗବତୁଣୀ ।

...... ... ହଁ ବାବାଜୀ କଥାଟା ଯାଇଁ ସେଇଠ । ଏତିକି କହି ଦେଠେଇ ହସିବାକୁ ଲଗିଲା । ଉଜ୍ଜ୍ୱଳ ଆଖିରେ ତା' ହସ ଉଛୁଳି ପଡ଼ୁଥାଏ । ପୁଣି କହିଲା ..... "ମୋର କଏବା ଅଛି, ମଲାପରେ ମୁଁ କ'ଣ ନରକ ଯିବକି । ଯେତେ ପୋଡ଼ା ମୁହିଁଙ୍କର ମୋ ଉପରେ ଅହନ୍ତ ସେମାନେ ଅହିନର୍କରେ ପଡ଼ିବେ । ତୁମେ ଦେଖିବ ମହାରାଜ, ମୁଁ ମଲାବେଳକୁ ସବଗରୁ ମୋ ପାଇଁ ବିମାନ ଆସିବ, ବିମାନ ଆସି ମୋତେ ନେଇଯିବ ।

............ଆଲୋ ରାମ ଭଗବତୁଣୀ ତୁ ନିଶ୍ଚେ ବିମାନରେ ଯିବୁ । ତୋ ପାଇଁ ଶ୍ରୀକୃଷ୍ଣ ଭଗବାନ ବୈକୁଣ୍ଠରୁ ଇସ୍‌ପେସାଲ ବିମାନ ପଠାଇବେ । ସେ ତୋ ଉପରେ ପରମ ସନ୍ତୁଷ୍ଟ । ସେ ବର୍ତ୍ତମାନ ବୈକୁଣ୍ଠରେ ବସି ଭାବୁଛନ୍ତି ଯେ ରାମଭଗବତୁଣୀ କେବେ ବୈକୁଣ୍ଠ ଆସିବ ଓ ସେ (ଶ୍ରୀକୃଷ୍ଣ) ନିଜେ ତାର ଚେଲା ହୋଇ ତା'ପଛରେ ଧାଇଁବେ । ବାବାଜୀ ଖୁବ୍ ଯୋରରେ ହସି ଉଠିଲେ । ଏ କଥାରେ ସମସ୍ତଙ୍କୁ ହସ ଲଗିଲା, ଦେଠେଇ କିନ୍ତୁ କିଛି ଖରାପ ମନେ କଲା ନାହିଁ । ସେ ଚୁପ୍ ହୋଇ ବସିଲା ।

ବାବାଜୀ ମୁହଁ ବୁଲାଇ ସଜ୍ଜନଙ୍କୁ ଚାହିଁଲେ । ସଜ୍ଜନ ନିସ୍ତେଜ ହୋଇ ବସିଥାଏ, ବାବାଜୀଙ୍କ ସାମନାରେ ସେ ମୁଣ୍ଡଟେକି ପାରୁ ନଥାଏ । ବାବାଜୀ କହିଲେ "ନିଜର ବିଜୟ ଦିବସରେ ଖୁବ୍ ମଉନ ହୋଇଚ ରାମଭକତ, ରାମଜୀ ।"

............ ବାବାଜୀ ଶୁଣ ଟିକେ । "ଦେଠେଇ ଇଶାରାରେ ବାବାଜୀଙ୍କୁ ଡାକି ଧୀରେ ଧୀରେ ପଚାରିଲା ।

...... .....ତମକୁ କିଛି ଯନ୍ତର ମନ୍ତର ଜଣାଅଛି ?

..... ..... ହଁ ରାମ ଭଗବତୁଣୀ । ଅଙ୍ଗିମା, ଶଙ୍ଗିମା, ଡାଙ୍ଗିମା.........
ଯାହାକୁ କହିବୁ ତାକୁ ମାରିବି ।

............ବାବାଜୀ, ମୋ ସଉତୁଣୀର ନାତିକୁ ତା ଲେନ ସମୟରେ ମାରି ଦେଇ ପାରିବ ?

............ଏହା ଦ୍ୱାରା କ'ଣ ହେବ ରାମଭଗବତୁଣୀ ?

............ମୋ ଛାତି ଭିତରେ ନିଆଁ ଜଳୁଛି । ସଉତୁଣୀ ରାଣ୍ଡିର ବଂଶ ମୋର ଆଖି ଆଗରେ କଟିବ । ଆଚ୍ଛା, ମୋ ହିଁଅ ଯିନା ରହିଲାନି, ନହେଲେ ତା ବଂଶ

ଏମିତି ବଡ଼ ଆଶ୍ରା । ଭଗବାନଙ୍କ କୃପାରୁ ମୋ ପାଖରେ ବହୁତ ସମ୍ପତ୍ତି ଅଛି । ଠାକୁରଙ୍କ ଚରଣରେ ସବୁ ସମର୍ପି ଦେବି । ତୁମେ ଖାଲି ଏତିକି କହିଦିଅ କେବଳ ଶହେ ତୋଳା ସୁନା ଏ କନ୍ଧମୋଲର ନାତି ପାଇଁ…… ……।

……ମୁଁ କହିବି ରାମ ଗଉଡ଼ୁଣୀ, ତୁ ଏବେ ଗୋଟାଏ କିଛି ବଡ଼ ମହୋତ୍ସବ କର । ଆଜି ଏଇ ରାମଜୀ ସାଙ୍ଗରେ ଏଇ ସୀତାଜୀଙ୍କୁ (ସଜ୍ଜନ ଓ କନ୍ୟାକୁ ଲକ୍ଷ୍ୟ କରି) ।………

………ଏସବୁ ମିଛ ମାଷ୍ଟର ଲୀଳାଖେଳା ମୁଁ କରିବିନି ମହାରାଜ, ତୁମକୁ ସତ କହିବି ? ଏ ଦୁ'ଜଣଙ୍କ ରଙ୍ଗଲୀଳା ମତେ ଭଲ ଲାଗୁନାହିଁ । ନା ଜାତି ନା ଧରମ, ଛି, ଛି …… …

ଦେଠେଇ ବଡ଼ ପାଟିରେ ଭାଷଣ ଦେଉଥାଏ, କନ୍ୟା ଓ ସଜ୍ଜନ ଘରେ ସେମିତି ଠିଆ ହୋଇଥାନ୍ତି । ବାବାଜୀଙ୍କ ପାଗଳ ଚେଲା ଚକାଆସନ ପକାଇ ପାଟିରୁ ଲାଳ ଗଡ଼ାଉଥାଏ । ଦେଠେଇ ବେଶ୍ ଉତ୍ତେଜିତ ଭଙ୍ଗୀରେ କହିଯାଉଥାଏ .. …..ମତେ କାହାକୁ ଡରନାହିଁ । ଏ କନ୍ଧମୋଲର ନାତି ମୋର ଗୋଟାଏ ଉପକାର କରିଛି, ସେଥିପାଇଁ ମୁଁ ତାକୁ ଖାତିର କରେ । ସ୍ୱା'ର ବାପା, ଦାଦାଙ୍କୁ ଦେଖିଛି, ମୋ ଶଶୁର ଅମଳରେ ସ୍ୱା'ଙ୍କର ଆମର ଖୋଜାଲୋଡ଼ା ହେଉଥିଲା । ସ୍ୱା'ଙ୍କୁ ମୁଁ କହୁଛି ଏ ଧନ୍ଦା ଛାଡ଼ି ମୋ ପସନ୍ଦ ମୁତାବକ ବାହା ହୋଇଯା । ସବୁ ଖର୍ଚ୍ଚ ମୁଁ କରିବି, ମୋ ମନରେ ଗୋଟାଏ ଇଚ୍ଛା ଅଛି । ମୋର ନାତି ନାତୁଣୀ ହୁଅନ୍ତେ, କାହାକୁ ବଡ଼ କରନ୍ତ ବ୍ରତ କରନ୍ତି……
ଦେଠେଇ ଆଖି ଛଳ ଛଳ ହୋଇ ଆସିଲା, ଆଖିରେ ତା'ର ଲୁହ ଛଳ ଯେପରି ବହୁବର୍ଷ ପରେ ଦେଖିବାକୁ ମିଳିଲା । ବାବା ରାମଜୀ ବି ଯେପରି ସେ ଆବେଗ ପୂର୍ଣ୍ଣ ମୁହୂର୍ତ୍ତରେ ଦ୍ରବୀଭୂତ ହୋଇଗଲେ । ଲୋମମୂଳ ଟାଙ୍କୁର ଉଠିଲା, ଲୋଳିତ ମୁଖମୁଦ୍ରା କ୍ରମଶଃ ଗମ୍ଭୀର ହେଲା । ସେ କହିଲେ…… ..

…… ତୁ ସୀତା ରାମର ବାହା-ଘର କରିଦେ, ମନର ବାସନା ମେଣ୍ଟେଇଦେ । ସୀତାଜୀ ଛଡ଼ା ଆଉ ସୁଧାର କରଣୀ କିଏ ମିଳିବ । ମୋର ରାମଜୀ, ତୋର ସୀତାଜୀ ଖୁବ୍ ଧୂମଧାମରେ ବାଜିତ ବାହାହେବ ।

ଦେଠେଇ ଗମ୍ଭୀର ହୋଇ ଶୁଣୁଥିଲା । ତା ମୁହଁରୁ ଜଣା ପଡ଼ୁଥିଲା ଯେ କଥାର ପ୍ରଭାବ ପଡ଼ିଛି, କିନ୍ତୁ ସେ ଚମକି ପଡ଼ି କହିଲା………ତୁମେ ଏ ବନକନ୍ୟାକୁ ସୀତାଜୀ କହି ମୋର ଝିଅ କରିବାକୁ କହୁଛ ?

…… ..ଆରେ ଏକଥା ନୁହେଁ ରାମ ଭକ୍ତୁଣୀ, ମୁଁ କହୁଛି ଭଲ ମୁହୂର୍ତ୍ତ ଆଣି ରାମଜୀ……,ସୀତାଜୀ ବାହାଘର କରି ପ୍ରତିଷ୍ଠା କରିବା । ମୋର ରାମଜୀ ମୁରଲୀ, ତୋର

ସୀତାଙ୍ଗ । ତୁ ତୋର ବୁଁଅ ମୋର ସାଂଗରେ ବା'ଘର ପାଇଁ ମୋ ପାଖରେ ନବନ୍ଧ ମାଗିବୁ ।

........ ମୁଁ ସୀତାରାମର ବାହାଘର କରିବନି ।

.........କାହିଁକି ଲୋ ରାମ ଭଗତୁଣୀ ?

... ...ଏଥିରେ ଇଷ୍ଟ ପୁରୁଷ କଥା ଅଛୁ, ମୁଁ ରାଧା କୃଷ୍ଣନର ବାହାଘର କରିବ ।

.........ଆଲୋ ରାଧା ତ ଚର କୁମାରୀ ସୁହାଗିନୀ ସେ ।

........ ତେବେ ଏଇଥର ମୁଁ ତାଙ୍କର ବା'ଘର କରିବ, ବେଶ୍ ଭଲ କଥାଟିଏ ଆସି କହିଲ ବାବାଜୀ, ଭଲ ହେବ ।

........ ହିଁ, ଖାଲି ଭୂଲ୍ଲାଟାରେ ମୁଁ ଆସିନି ରାମ ଭଗତୁଣୀ । ଏ ନବନ୍ଧ ମାମଲା, ମୋ ରାମଜୀ ତୁମଠାରୁ ଅନେକ ଯୌତୁକ ମାଗିବ । ପ୍ରଥମେ ଗୋଟିଏ ବାଳକା ବିଦ୍ୟାଳୟ ତୁମକୁ ଖୋଲିବାକୁ ପଡ଼ିବ, ଦ୍ୱିତୀୟରେ ଆମ ପାଗଲ ଆଶ୍ରମରେ ଗୋଟିଏ କେବିନ୍ କରିଦେବ... ..ପାଗଲ ରୋଗୀଙ୍କ ପାଇଁ ·· · ।

... .....ଭଲକଥା, ମୁଁ ଦେବ । "ଏତିକି କହି ଦେଠେଇ ବାବାଙ୍କ ପାଦ ଛୁଇଁଲା । ......"ଆଚ୍ଛା ବାବାଜୀ ଯାଉଛୁ......ମୋ ଠାକୁର ଘରକୁ ଯିବାବେଳ ହୋଇଗଲାଣି ।"

ଦେଠେଇ ଯାଉଁ ଯାଉଁ କନ୍ୟା ଆଡ଼କୁ ଚାହିଁ କହିଲା ଶୁନଲୋ, ପୁଅର ଜନମ ଦିନ ତୁ ଆସିବୁ । ବାବାଜୀ ତୁମେ ବି ଆସିବ ସେ ଦିନ ମୁଁ ଭୋଜିଭାତ କରିବ । ଦେଠେଇ ଏତକ କହି ଖୁବ୍ ଫୁର୍ତ୍ତିରେ ଚାଲିଗଲା । ରାମଜୀ ବାବା ତାପରେ ସଜ୍ଜନ, କନ୍ୟା ଓ ଶିଷ୍ୟ ଆଡ଼କୁ ଚାହିଁଲେ । ବିଚରା ପାଗଲ ଶିଷ୍ୟ ଜଡ଼ଭରତ ଭଳି ତୁମଣ୍ଡ ଧରି ବସିଥାଏ । ବାବାଜୀ ତୁରନ୍ତ ତା'ଆଡ଼କୁ ଅଗ୍ରସର ହୋଇ କହିଲେ · ......କରେ ରାମ ଭଗତ ।

.........ହିଁ ବାବାଜୀ, "ସରଳ ହସ ହସି ଶିଷ୍ୟଜଣଙ୍କ ଜଡ଼ତା ଭାଙ୍ଗିଲା ।

କନ୍ୟା ଆଡ଼କୁ ଚାହିଁ ବାବାଜୀ କହିଲେ "କିଛି ଜଳ ନେଇ ଆସ ମା, "କନ୍ୟା ଘର ଭିତରେ ପାଣି ଖୋଜି ବସିଲା ଘର କୋଣରେ ଘଡ଼ା ଥୁଆ ହୋଇଥାଏ, କନ୍ୟା ସେଇ ଆଡ଼କୁ ଗଲା ବାବାଜୀ ସଜ୍ଜନ ଆଡ଼କୁ ଚାହିଁ କହିଲେ ''ତୁମକୁ ତ ମୁଁ ରାମଜୀ ବୋଲି ଭାବିଥିଲି, ତୁମେ ରାମଜୀ ନୁହଁ, ସଜ୍ଜନ ତୁମ ନାମ ନୁହେଁ ?'' ବାବାଜୀଙ୍କ କଣ୍ଠର ପରିହାସ ତରଳ ସଜ୍ଜନର ମନେ ହେଲା ଘଡ଼ାରେଥିବା ଥଣ୍ଡା ପାଣିତକ ଯେପରି ତା'ଉପରେ ଢାଳି ହୋଇପଡୁଛି ।

# ଏକତରଫି

ସନ୍ଧ୍ୟା ପ୍ରାୟ ଆଠଟା ବେଳେ କର୍ଣ୍ଣେଲ ଦୋକାନରୁ ଘରକୁ ଯିବା ପୂର୍ବରୁ ବନ କନ୍ୟାକୁ ଭେଟିବାକୁ ଗଲେ, ଭିତରୁ କବାଟ ବନ୍ଦଥାଏ । ଝର୍କାବାଟେ ଆଲୁଅ ଛିଟିକା ବାହାରକୁ ପଡୁଥାଏ । କର୍ଣ୍ଣେଲ କବାଟରେ ଠକ୍ ଠକ୍ କଲେ । ……କିଏ ? "ନୀରବରେ କ୍ରନ୍ଦନରତା ବନକନ୍ୟା ଅଶ୍ରୁ ବିଚଳିତ ସ୍ୱରରେ ପ୍ରଶ୍ନକଲେ । କର୍ଣ୍ଣେଲ କନ୍ୟାର ମନସ୍ଥିତି ବେଶ୍ ଅନୁମାନ କରିପାରିଲେ, କିଛି କ୍ଷଣ ଯିବାପରେ ଗମ୍ଭୀର ହୋଇ କହିଲେ, ବନ୍ଲୋ, କବାଟ ଖୋଲ ।"

ଭିତରେ ଚେୟାର ଘୋଷାଡ଼ି ହେବାର ଶବ୍ଦ ହେଲା, ପୁଣି କିଛି ପଦଶବ୍ଦ । ତା' ପରେ କବାଟ ଖୋଲିଲା । କନ୍ୟାର ମୁହଁ ପାଣ୍ଡୁର ଦିଶୁଥାଏ । ମାନସିକ ଅସ୍ଥିରତା ମୁହଁରେ ବିବର୍ଣ୍ଣତା ରୂପେ ପ୍ରକାଶ ପାଉଥାଏ । ଶିକୁଳି ଫିଟାଇ କନ୍ୟା ପୁଣି ବସିଥିବା ଚେୟାର ନିକଟକୁ ଫେରିଗଲା । ସାମନାରେ ପଡ଼ିଥିବା ଚେୟାର ଉପରେ କର୍ଣ୍ଣେଲ ବସିଲେ, କର୍ଣ୍ଣେଲର ଦୃଷ୍ଟି ତଳକୁ ଥାଏ ମୁଖ ମଣ୍ଡଳ ଚିନ୍ତାମଗ୍ନ । କନ୍ୟା ତା'ର ଚେୟାର ପାଖରେ ନୀରବରେ ଠିଆ ହୋଇଥାଏ । କର୍ଣ୍ଣେଲ ନୀରବତା ଭଂଗ କରି କହିଲେ "ବସ୍ ବନ୍ଲୋ" କନ୍ୟା ବସିଲା ।

କର୍ଣ୍ଣେଲ ପଚାରିଲେ "ସଜ୍ଜନ ସାଙ୍ଗରେ ଭେଟ ହୋଇଛି ? "

……… ହଁ ।

… …ତାର ଘରକୁ ତାର ଜନକ ପଠ ଚାଲି ଆସିଛି ?…… ।

… …ହଁ, ଆସି ଯାଇଛି ।

ପୁଣି ନୀରବତା…… ।

କର୍ଣ୍ଣେଲ ଭୂମିକା…ବାନ୍ଧି ଶେଷକରି ଅସଲ କଥା ପଚାରିଲେ……ସେତୋ ଉପରେ ବହୁତ ରାଗିଥିବ । କନ୍ୟା ଚୁପ୍‌ରହିଲା, ଅଶ୍ରୁ ଆବେଗକୁ ଚାପିରଖି ମୁଣ୍ଡନୋଇଁ ବସି ରହିଲା ।

କର୍ଣ୍ଣେଲ ତା'ବଧୂଟି (ସଜ୍ଜନ) ପକ୍ଷରୁ ସଫାଇ ହେଲଭଳି କହିଲେ ।

......ଅସଲ କଥା ରାଜାସାହେବଙ୍କ କଥାରେ ସେ ଲୁଚି ଯାଇଛି । କିନ୍ତୁ ସବୁ ଯାଗାରେ ଏପ୍ରକାର ହାମ୍‌ବଡ଼ା ନୀତି ଚଳେନା । ମଣିଷ କଥାର କିଛି ଗୋଟାଏ ମୂଲ୍ୟଅଛି ......ଶୁଣ । ତୁ କିଛି ଚିନ୍ତା କରନା ବନ୍ଧୋ, ଦୁ' ଦିନ ବାଦ ସବୁ ଥଣ୍ଡା ହୋଇଯିବ । ମୁଁ ତାଙ୍କୁ ଠିକ୍ ଜାଣେ ।" କର୍ଣ୍ଣେଲ ହସି ହସି କନ୍ୟାର ଗୁରୁତ୍ୱକୁ ହାଲୁକାରୁ ଆହୁରି ହାଲୁକା କରିବାକୁ ଯତ୍ନକଲା, ତଥାପି ବାତାବରଣ ଓଜନିଆ ଥାଏ ।

ତା' ପରେ ପୁଣି ପୂର୍ବଭଳି ନୀରବତା ଛାଇଗଲା । କର୍ଣ୍ଣେଲ ଘର ଆଭ୍ୟନ୍ତରକୁ ଅନୁଦ୍ଦେଶ୍ୟ ଦୃଷ୍ଟି ସଂଚାଳନ କରି କହିଲା......"ଆଜି ତୁ ବେପେଇ ଲାଗୁନୁ ବନ୍ଧୋ ।'

କନ୍ୟା ପୁଣି ଚୁପ୍ ରହିଲା ।

ତୋ ଦେହ ଭଲନାହିଁ ତ କହ ମୁଁ ଏବେ ତୋ ପାଇଁ ପିଲ୍ ମଗାଇ ଦେବି ।

...ନା ଭାଇ ।

...ତୁ କିଛି ଚିନ୍ତା କରନା ବନ୍ଧୋ, ମୁଁ ତୋତେ କଥା ଦେଉଛି ସବୁଠିକ୍ ହୋଇଯିବ । ଏମିତି ଖଟାମିଠା ଅନୁଭବ ତ ଲାଗିରହେ । ମୋ ସୁନା ଭଉଣୀଟା ପରି, କିଛି ଚିନ୍ତା କରନା ।" କର୍ଣ୍ଣେଲ ପୁଣି କହିବାକୁ ଲାଗିଲା ।

...ଗୋଟାଏ କଥା ପଚାରିବି, କହିବ ତ ?

...ହୁଁ ।

...ତମ ଦୁହିଁଙ୍କର କିଛି ଗୋଟାଏ ଠିକଣା ହୋଇଛି ?

.. ଦେଖ ବନ୍ଧୋ, ଦୁନିଆ ଖୁବ୍ କଠିନ । ମୁଁ ପରିଷ୍କାର କରି କହିବାକୁ ଚାହେଁ ଯେ ଏ ଦୁନିଆରେ ନାରୀମାନଙ୍କର ମାମଲା ଖୁବ୍ ଡେଲିକେଟ୍ । ତୁ ଯେତେ ସ୍ୱାଧୀନ ହେଲେବି...ତୁ ଯଦି ସଜ୍ଜନଙ୍କୁ ବାହା ହେବାକୁ ଚାହୁଁ ମୋତେ ସଫା ସଫା କହିଦେ ।"

କନ୍ୟା ଚୁପ୍‌ହୋଇ ଚଟାଣ ଉପରେ ଆଙ୍ଗୁଳି ଘଷୁଥାଏ । କର୍ଣ୍ଣେଲ ପୁଣି ପଚାରିଲା...ତୁମେ ଦୁହିଁଙ୍କର ଏଭଳି କିଛିକଥା ଠିକ୍ ହୋଇଛି କହ ।

ହୁଁ ।

...ବାହାଘର କଥା ଉଠିଛି ?

...ହୁଁ ଉଠିଛି ।

......କେବେ ? ଏଇ ନିକଟରେ ?

କନ୍ୟା ମୁଣ୍ଡ ହଲାଇ କରି ହଁ କହିଲା ।

……ତୋତେ ସେ ଏ ବିଷୟରେ କ'ଣ କହିଥିଲା ? ମୋତେ ଲାଜ କରନା, କହ । କେବେ ବା' ଘର ହେବ ସେ ବିଷୟରେ ସେ କିଛି କହିଛି ?

……ମଥୁରାରେ ଠିକ୍ ହୋଇଥିଲା ଯେ ଏଠିକି ଫେରିବାପରେ ଶୀଘ୍ର ଆୟୋଜନ ହେବ ।

……ତା ହେଲେ ମୁଁ ଏ ମାମଲାକୁ ଅଧିକ ବିଳମ୍ବ କରିବା ଠିକ୍ ଭାବୁ ନାହିଁ । ସଜ୍ଜନ ଥରେ ସଂସାର ସହିତ କମିଟେଡ୍ ହୋଇଗଲେ ସବୁ ଠିକ ହୋଇଯିବ ।

… ମୁଁ କାହା ଉପରେ ବୋଝ ହେବାକୁ ଚାହେଁନା ଭାଇ ।

…. ଏଥିରେ କାହା ଉପରେ ବୋଝ ହେବାର ପ୍ରଶ୍ନ ଉଠୁନି । ତୁମ ବେଶ୍ ଜାଣିଥିବ ଯେ ସଜ୍ଜନ ଗୋଟିଏ ଭଲ ନ ହେଲେବି ଖରାପ ନୁହେଁ ।

କର୍ଣ୍ଣେଲ କିଛି ସମୟ ପରେ ଚାଲିଗଲା । ସେ ଯିବାପରେ କନ୍ୟା । କବାଟ ବନ୍ଦକରି ନିସ୍ତେଜ ଭାବେ ଖଟଉପରେ ଶୋଇଗଲା । ସେତେବେଳେ ଠକିଗଲା ଭଳି ଅନୁଭବ କରୁଥିଲା । କ୍ଳାନ୍ତ ଓ ଟସ୍‌କିତର ଗ୍ଳାନିରେ ସେ ଆଚ୍ଛନ୍ନ ହୋଇ ପଡ଼ିଥିଲା ଭଳି ବୋଧ କରୁଥିଲା ।

ପରଦିନ କର୍ଣ୍ଣେଲ ଶ୍ରୀଘ୍ର ସଜ୍ଜନର ଘରେ ପହଞ୍ଚିଲା । ତା'ପରେ ତାକୁ ଦେଖି ମନରେ ଭାରି ଖଟକା ଲାଗିଲା । ତଥାପି ସେ ଗମ୍ଭୀର ଥାଏ । ଚେଷ୍ଟା କରୁ କରୁ ଧରା ପଡ଼ିଗଲା ଭଳି ସଜ୍ଜନର ଅବସ୍ଥା ହୋଇଗଲା । ସେ ଦୁହେଁ ଡ୍ରଇଁ ରୁମକୁ ଚାଲିଗଲେ । ଦୁହେଁ ଚୁପ୍ ହୋଇ ବସିଥାନ୍ତି । କିଛି ସମୟପରେ ଚା ଆସିଲା, କର୍ଣ୍ଣେଲ ଏବେ ଆରମ୍ଭ କଲା……"ତୋ'ର ଏ ଆଟିଷ୍ଟଗିରି ଆଦୌ ବରଦାସ୍ତ କରିବାର ନୁହେଁ " ଏଭଳି ନିର୍ବୋଧତା କରିବାର ଗୋଟାଏ ବୟସ ସୀମା ଅଛି ।"

ସଜ୍ଜନ ବି ଭୟଙ୍କର ରାଗିଗଲା । ଏଭଳି ଗାଳି ଖାଇବାକୁ ସେ ମୋଟେ ପ୍ରସ୍ତୁତ ନ ଥିଲା, ସେ କହିଲା …ମୁଁ ପିଲାଟିର ନୁହେଁ କର୍ଣ୍ଣେଲ ।

……ତୁ ପିଲାଟି ଠାରୁ ବି ହୀନ । ତୁ ପଶୁଣରା ଆର୍ଟିଷ୍ଟ ଟି ହେଉଛୁ…… ଇଣ୍ଟଲେକ୍‌ଚୁଆଲ ହୋଇଛୁ ……।" କର୍ଣ୍ଣେଲ, ମୁଁ ଏଇନେ ଖୁବ୍ ସିରିୟସ ମୁଡ଼ରେ ଅଛି ।"

….. ମୁଁ ବି ସିରିୟସ ମୁଡ଼ରେ ଅଛି ସଜ୍ଜନ । ଏକ ପକ୍ଷରେ ତୁ ଖବର କାଗଜରେ ନାମଜାଦା ଦେଖେଇ ହେଉଛୁ, ଅନ୍ୟ ପକ୍ଷରେ ନିଜ ଉପରେ ତୋର ନିୟନ୍ତ୍ରଣ ନାହିଁ ।

ସଜ୍ଜନ ଚୁପ୍ ରହିଲା । ମୁକୁରୁ (ଚାକର) ପ୍ଲେଟରେ ଜଳଖିଆ ଆଣି ଟେବୁଲ ଉପରେ ରଖିଲା, କର୍ଣ୍ଣେଲ ବିରକ୍ତ ଯାଇ କହିଲେ......

... ନେଇଯା ଏସବୁ । ଏଇନେ ମୋର କିଛି ଦରକାର ନାହିଁ । ମୁକୁରୁ ପ୍ଲେଟ ନେଇ ଚାଲିଗଲା ।

......ଗୋଟାଏ ପାଖରେ ଶାନ୍ତ ସୁଧୀର ଝିଅଟିକୁ ପ୍ରେମର ଛଳନା କରୁଛୁ । ବା' ହେବାର ପ୍ରତିଶ୍ରୁତି ଦେଇ ଘରଣୀ କରିବାର ଅଧିକାର ସାବ୍ୟସ୍ତ କରୁଛୁ...... ଅନ୍ୟ ପକ୍ଷରେ ଘରେ ଶାଳୀ ବେଶ୍ୟାଟାକୁ ଲୁଚେଇ ରଖିଚୁ । ସଜ୍ଜନ ଥରେ ମୁହଁ ଟେକି କର୍ଣ୍ଣେଲଙ୍କୁ ଚାହିଁଲା । ମୁହଁ ତା'ର ତଳକୁ ନଇଁଗଲା, ଭଲ ହେଉଥାଏ, ତଥାପି ସେ ନିଜଙ୍କ ଭଳି ମୁଣ୍ଡ ଟେକେଥାଏ । କର୍ଣ୍ଣେଲ ପୁଣି କହିଲେ "ଯଦି ବନ୍ଦୋ ଏ ଗଣ୍ଡିକ ଏଠି ଦେଖିବ, କହିଲୁ ଏ ବିଚାରୀର ଅବସ୍ଥା କଣ ହେବ ?"

......ମୁଁ କାହାକୁ ଲୁଚେଇ କିଛି କରୁନି ।" ସଜ୍ଜନ ମୁହଁ ଖୋଲିଲା ।

......ବାଃ ଖୁବ୍ ଫ୍ରାଙ୍କନେସ୍ ଦେଖାଉଛୁ । ଏ ପ୍ରକାର ଫ୍ରାଙ୍କନେସ୍‌ର ଅର୍ଥ କଣ ଜାଣୁ ? ମୁଁ ଦେଖିବିତ ଦୁନିଆ ସାମନାରେ ମହାନତାର ଛଳନା ଦେଖାଇ ଘର ଭିତରେ ତୁ କମିତି ଏ ବ୍ୟଭିଚାର କରୁ ।

......କର୍ଣ୍ଣେଲ, ମୁଁ ଏହାକୁ ବା' ହେବ ।

କର୍ଣ୍ଣେଲ ଯେପରି ପର୍ବତ ଶିଖର ତଳକୁ ଗଡ଼ିପଡ଼ିଲେ । କିଛି ସମୟ ନୀରବ ରହି କହିଲେ......

......ତୁ ବନ୍ଦୋକୁ ପ୍ରତିଶ୍ରୁତି ଦେଇଛୁ ?

......ମୁଁ ମୋର ସିଦ୍ଧାନ୍ତ ବଦଳାଇ ଦେଇଛି ।

......କାହିଁକ ?

କାହିଁକ'ର ପ୍ରଶ୍ନ ନାହିଁ ।

......କାହିଁକ ନୁହେଁ ବାବୁ ? ତୁ ଏକ ସରଳାକୁ ଦେଇଥିବା ପ୍ରତିଶ୍ରୁତି ଭଙ୍ଗ କରିଛୁ ।

......କଥା ଦେଇଥିଲି ମାନୁଛି । ମାତ୍ର ତା ପ୍ରତି ମୁଁ ଖରାପ ବ୍ୟବହାର କରିନି ।

...ଖରାପ କରିନ ? ନଷ୍ଟ ଚରିତ୍ର ନାରୀର ଦୂଷିତ ଦେହତ ଅନାୟାସରେ ମିଳୁଛି, ଭଲ ଝିଅଟିର ଅନିଚ୍ଛା ଯୋଗ ହିଁ ତଥାପି ଖରାପ ବ୍ୟବହାର କରିବାର ସୁଯୋଗ ତୋତେ

ମିଳନାହିଁ ବୋଲି କହୁ । ତୁ ଶୁଣିନେ ସଜ୍ଜନ ବନ୍ଦନା ସାଙ୍ଗରେ ତୋର କେବଳ ଗୋଟିଏ ସମ୍ପର୍କ ନୁହେଁ ଦୁଇ ପ୍ରକାର ସମ୍ପର୍କ ତୁଟିବ । ତୁ ଦେଇଥିବା କଥା ମାନି ନପାରୁ କିନ୍ତୁ ମୁଁ ନିଜକୁ ଜଣେ ଭଦ୍ର ପୁରୁଷ ବୋଲି ମନେକରେ । ଯାହା ସାଙ୍ଗରେ ଥରେ ବନ୍ଧୁତା ବାନ୍ଧିଛି ତା 'ପ୍ରତି କେବେ ବିମୁଖ ହେବିନି । ମୁଁ ତୋର ମୁହଁ ଆଉ କେବେ ଦେଖିବିନି ।" ଏତିକି କହି କର୍ଣ୍ଣେଲ ଘଣ୍ଟି ବଜାଇ ମୁକୁରୁକୁ ଡାକିଲା, ମୁକୁର ଆସିବା ମାତ୍ରେ କର୍ଣ୍ଣେଲ କହିଲା ·...ଟେଲିଫୋନଟା ଏଠିକି ନେଇଆ । ହାଲୁଆ ଓ ବ୍ରେଡଟା ଟୋଷ୍ଟକରି ନେଇଆ । ଆଦେଶ ନେଇ କର୍ଣ୍ଣେଲବସି ରହିଲା । ମୁକୁରୁ ଗଲାପରେ ସେ ସଜ୍ଜନକୁ ଲକ୍ଷ୍ୟକରି କହିଲା :—......

ମୁଁ ଆଜି ତାକୁ ଏ ଘରୁ ବାହାର କରି ସାରିଲା ପରେହିଁ ଯିବି ।

......କର୍ଣ୍ଣେଲ, ଏ ମୋର ବ୍ୟକ୍ତିଗତ ମାମଲା ।

......ସଜ୍ଜନ, ଏବି ମୋର ନିଜ ବ୍ୟକ୍ତିଗତ ମାମଲା ।

......ତୁ ମୋତେ ଚିନ୍ତା କରିବାକୁ ଅବସର ଦେ ।

......ମୋ ପାଖରେ ସମୟ ନାହିଁ ସଜ୍ଜନ ।

......ସେ ଦିନ ତୁ ରାଜାସାହେବ ପାଖରେ ଜାନକୀ ଶରଣ ଓ ସାଲିଗ୍ରାମ ସାମନାରେ......

...…ମୁଁ ତ କଥା ଦେଇନଥିଲି ଯେ ବନ୍ଦନାକୁ ଜବରଦସ୍ତି ରାଜି କରିନେବି ବୋଲି । ସେଠାରେ ରାଜାସାହେବଙ୍କ ସମ୍ମାନ ନିହିତ ଥିଲା ।

......ଏବେ କ'ଣ ରାଜାସାହେବଙ୍କ ସମ୍ମାନରେ ପ୍ରଶ୍ନ ଉଠୁନି ?

......ମୋ ପାଖରେ ରାଜାସାହେବ କନ୍ୟାଠାରୁ ବେଶୀ ବଡ଼ । ନେ ଚା' ପି, ଥଣ୍ଡା ହୋଇଗଲାଣି । ରହ ମୁଁ ମୁକୁରୁକୁ ଡାକୁଛି" ଏତିକି କହି ସଜ୍ଜନ କଲିଂବେଲ୍ ଟିପିଲା ।

କର୍ଣ୍ଣେଲ କହିଲା :—"ରାଜାସାହେବଙ୍କୁ ଜଣା ଯେ ସେ କମିଡିକା ଝିଅ । ସେ କ'ଣ କେବେ ଅନ୍ୟାୟ ପକ୍ଷଭୁକ୍ତ ? ସାଲିଗ୍ରାମ ରାଜାସାହେବଙ୍କ ବାହୁଚ୍ଛାୟା ତଳେ ଥାଇ ମୋ ସାଙ୍ଗରେ ଝମେଲା କରିବ ଆଉ ମୁଁ ତାକୁ ବରଦାସ୍ତ କରିପିବି ? ବନ୍ଦନା ସାଙ୍ଗରେ ତୋ' ବାହାଘର ହେବ ନିଶ୍ଚୟ ଏବଂ ଖୁବ୍ ଶୀଘ୍ର । ବ୍ରେକର ଆସିଲା, ଚା ଆଣିବାକୁ ସଜ୍ଜନ ଆଦେଶ ଦେଲା ଆଉ ଗୋଟିଏ ବ୍ରେକର ଆସି ପ୍ଲେଟରେ ହାଲୁଆ ଇତ୍ୟାଦି ଜଲଖିଆ ରଖିଗଲା । ସଜ୍ଜନ କିଛି ସମୟ ଗମ୍ଭୀର ରହି କହିଲା......ବା'ଘର ଜୀବନରେ ଗୋଟିଏ ବଡ଼ପ୍ରଶ୍ନ ।"

……ତେବେ ତୋତେ ବୁଝି ବିଚାର ସମ୍ପର୍କ ବଢ଼ାଇବା ଉଚିତ ଥିଲା । ଦେଖ୍ ସଜ୍ଜନ, ମୁଁ ଏ ଦୁନିଆକୁ ଠିକ୍ ଦେଖିଛି, ଠିକ୍ ଭାବେ ଚିହ୍ନିଛି । ଗତ ଦଶବର୍ଷ ମଧ୍ୟରେ ତୋ ସଂଗରେ ବହୁତ ପ୍ରଜାପତି ମୁଁ ଦେଖିଛି । ସେମାନଙ୍କ ମଧ୍ୟରୁ କାହାକୁ ଭଗିନୀସ୍ନେହ ଭଉଣୀ ବୋଲି ଆପଣାର କରିନାହିଁ । ବିନ୍ଦୋକୁ ମୁଁ ପ୍ରଥମ ଦେଖାରେ ଚିହ୍ନି ଯାଇଛି । ବର୍ତ୍ତମାନ ତ ତା' ଆଚରଣ ସାଙ୍ଗରେ ମୁଁ ବେଶ୍ ପରିଚିତ । ଟୋଷ୍ଟା ସେକା ହୋଇ ଆସିଲା, ଚା' କେଟଲୀ ଆସିଗଲା । ସଜ୍ଜନ ଗୋଟିଏ ଟୋଷ୍ଟ ଉଠାଇ ନେଲା ଏବଂ ମୁକୁନ୍ଦକୁ ଚା' ଢାଳିବାକୁ କହିଲା ସେ କର୍ଣ୍ଣେଲର ଆକ୍ରମଣରୁ ବଂଚିବ ପାଇଁ କିଛି ଗୋଟାଏ ବାଟ ଖୋଜୁଥିଲା । ସେ ଚିନ୍ତାରୁ ମୁକ୍ତି ପାଇବାକୁ ବ୍ୟସ୍ତଥିଲା । ସେ ନିଜ ନିଜକୁ ବୁଝିପାରୁ ନ ଥିଲା, ବାବା ସୁମଣ୍ଡ, କର୍ଣ୍ଣେଲ୍ ସେ ନିଜେ ଓ ବନକନ୍ୟାର ନିର୍ମଳ ବ୍ୟକ୍ତିତ୍ୱ ବି ଏ ନିରର୍ଥକ ଅଭିମାନର ବିରୁଦ୍ଧ ଥିଲା । ମଥୁରା-ବ୍ରଜରେ ବନକନ୍ୟା ସଂଗରେ ଘୂରିବାନ ଧରି ଏକାନ୍ତରେ ରହିବା ସତ୍ତ୍ୱେ ବି ସହବାସ ପାଇଁ କନ୍ୟାର ଅନିଚ୍ଛା ହିଁ ରାଜାସାହେବଙ୍କ ମହଫିଲରେ ଅନ୍ୟାୟସ୍ତରେ ମିଳିଥିବ ଚରିତ୍ରାଭିଦାନ ପ୍ରବୃତ୍ତିର ସଂସ୍କାର ବାସନାକୁ ଶାଣିତ କରିଥିଲା । କନ୍ୟା ସମ୍ପର୍କିତ ଯଦି କିଛି ଅଭିଯୋଗ ଥାଏ ତା' ହେଉଛି ସଜ୍ଜନର ଦୁର୍ବଳ ଇଚ୍ଛାରେ ସେ (କନ୍ୟା) ଭାସି ନଯିବା ।"

ଦୁଇକପ୍ ଚା ଦୁଇ ସାହେବଙ୍କ ସାମନାରେ ରଖି ମୁକୁନ୍ଦ ଶଙ୍କୁଚିତ ହୋଇ ଠିଆହେଲା । କର୍ଣ୍ଣେଲ ତାକୁ ସେଠାରୁ ଚାଲି ଯିବାକୁ କହିଲା । ମୁକୁନ୍ଦ ଚାଲି ଯିବାକୁ କର୍ଣ୍ଣେଲ ପଚାରିଲା……ବିନ୍ଦୋ ଠି ତୁ ଏଭଳି କ'ଣ ତ୍ରୁଟି ଦେଖିଲୁ ଯେ ତା' ପ୍ରତି ବିରକ୍ତି ଆସିଛି ।

……ସେ ବଡ ସ୍ୱାଭିମାନିନୀ, ( )

……ଅନ୍ୟକୁ ସମାଲୋଚନା କରିବା ଆଗରୁ ପ୍ରଥମେ ନିଜକୁ ବିଚାର କର ।

ପୁଣି ନୀରବତା ଛାଇଗଲା । ଦୁହେଁ ଚା ପିଉ-ଥାନ୍ତି । ଚା ପର୍ବ ସରିଲା ପରେ ବ୍ୟାରର ଆସି କପ୍ ପ୍ଲେଟ ଉଠାଇନେଲା, ଘଡ଼ିରେ ସେତେବେଳକୁ ସାଢ଼େସାତଟା ବାଜିଲାଣି । କର୍ଣ୍ଣେଲ କହିଲା :—……ଏବେ ଉଠ, ଚାଲ । ଲୁଗା ବଦଳାଇବୁ ନା ଏମିତି ଯିବୁ ?

… ନା, ଏମିତି ଯିବି," ସଜ୍ଜନ ଉଠି ଠିଆହେଲା । କର୍ଣ୍ଣେଲ ସେମିତି ବସି ବସି କହିଲା… …ଦେଖ ଏବେ ଏଟା ନିଶ୍ଚିତ ଯେ ସେମାନେ ଆମକୁ ବଦନାମ କରିବାକୁ କିଛିନା କିଛି ଉପାୟ ବାହାର କରିବେ । ତୁ ସେଥିରେ କେବେ ବିଚଳିତ ହେବୁନି । ମୁଁ ବିନ୍ଦୋର ବି ଠିକଣା ବ୍ୟବସ୍ଥା କରିବି । ଠିକ୍ ପୁରୁଷ ପୁଅ ଭଳି କାମ କରିବା ଦରକାର ।"

...କର୍ଣ୍ଣେଲ ମୋତେ ଟିକେ ଚିନ୍ତା କରିବାକୁ ସମୟ ଦେ ।

...କାହିଁକି ସମସ୍ତ ଲୋକ୍ତ୍ରୁ । ଶ୍ମଶାନରେ ଘରକରି ଡାଆଣୀ କ ଡରିଲେ କି ହେବ ? ଦେଖ୍, ମୁଁ ତୋର ମୁହଁ ଦେଖି କହୁଛି, ଏମୋର ଅନ୍ତରର କଥା । ମହୀପାଳଠୁ ତୋ' ଉପରେ ମୋର ଅଧିକ ବିଶ୍ୱାସ ଅଛି । ସଜ୍ଜନ ମୁହଁ ତଳକୁ କରି ଚୁପ୍‌ଚାପ ଠିଆ ହୋଇଥାଏ ।

କର୍ଣ୍ଣେଲ ଉଠିପଡ଼ି ଘଣ୍ଟିର ସୁଇଚ୍ ଦବାଇବା ମାତ୍ରେ ମୁକୁରୁ ଆସି ହାଜର ହେଲା । କର୍ଣ୍ଣେଲ ମୁକୁରୁ ଉଦ୍ଦେଶ୍ୟରେ କହିଲା—ମୁକୁରୁ, ସେ ମେମ୍ ସାହେବ ଯେତେବେଳେ ଉଠିବେ ତାଙ୍କୁ ଚା' ଖାଇବାକୁ ଦେଇ କହିବୁ ଯେ ଆଜି ସାହେବଙ୍କ ସାଙ୍ଗରେ ଆଉ ଦେଖା ହେବନି । ସାହେବ ଆଜି ମୋ ସାଙ୍ଗରେ ଖାଇବେ । ଦେଖ୍ ସେ ମାଇକିନା ଯେପରି ଘରର ଜିନିଷ ପତ୍ର ଏପାଖ ସେପାଖ ନକରେ । ବୁଝିଲୁ ?"

କର୍ଣ୍ଣେଲର ସତର୍କ ବାଣୀ ସାରିବା ମାତ୍ରେ ସଜ୍ଜନ ଆଦେଶ ଦେଲା... ... ଯୋସେଫ୍‌କୁ କହି ଗାଡ଼ି ବାହାର କରିବ ମୁକୁରୁ ।

ସଜ୍ଜନର ଗତି କ୍ରମଶଃ ତରଳ ଆସୁଥିଲା, ସେ ନିଜେ ନିଜ ପାଖରେ ପରାଜିତ ଭଳି ବୋଧ କରୁଥିଲା । କର୍ଣ୍ଣେଲ ପଛେ ପଛେ ସେ ଏଭଳି ମୁଣ୍ଡ ନୋଇଁ ଚାଲୁଥାଏ ଯେ ମନେହେବ ଯେପରି ଗୋଟିଏ ପ୍ରବଳ ବିଦ୍ରୋହୀ ନିରସ୍ତ ହୋଇ ପୁଲିସ ଘେରରେ ଚାଲିଛି ।

# ବନ୍ତଣି

ଆଜ ସଜ୍ଜନର ଖୁବ୍ ଖରାପ ଯୋଗ ଥିଲା । ସାଲଗ୍ରାମର ଗ୍ଲ ଧର୍ମ ପଡ଼ିଲା । ଖବର କାଗଜରେ ଛପା ହୋଇଥିଲା ଯେ ପ୍ରଦର୍ଶନୀ ଓ୍ୟାର୍ଡ କମିଟି ପକ୍ଷରୁ ହେଉଛ । "ହର ଏକ୍‌ସେଲେନ୍‌ସି" (ଲାଟ ସାହେବଙ୍କ ପତ୍ନୀ) ପ୍ରଦର୍ଶନୀ ଉଦ୍‌ଘାଟନ କରିବେ ଏବଂ ରାଜଧାନୀର ସମସ୍ତ ମୁଖ୍ୟ ଶିଳ୍ପୀମାନଙ୍କର ସହଯୋଗ ଏଥିପ୍ରତି ରହିଛି । ସହରର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ଲାଲା ଜାନକୀ ଶରଣଙ୍କ ବାସ ଭବନରେ ଏହା ଅନୁଷ୍ଠିତ ହେବ । ମଧ୍ୟବର୍ଗୀୟ ଜନ ଜୀବନକୁ ସାଂସ୍କୃତିକ ଦୃଷ୍ଟିରୁ ଉନ୍ନତ କରିବା ପାଇଁ ଏହା ଆୟୋଜିତ ହେଉଛି । ବସ୍ତି ଅଞ୍ଚଳରେ ଏ ପ୍ରକାର ଆୟୋଜନର ପ୍ରଥମ ସୁଯୋଗ ସହରର ପ୍ରସିଦ୍ଧ ଜନନେତା ଶ୍ରୀ ସାଲଗ୍ରାମ ଜୟସଓ୍ୱାଲଙ୍କ ଅପୂର୍ବ ବୁଦ୍ଧିମତ୍ତାର ସାର୍ଥକ ପରିଣତି ଇତ୍ୟାଦି ଇତ୍ୟାଦି । ଏତିକ ପଢ଼ି ସଜ୍ଜନ ମନେ ମନେ ରକ୍ତଗ୍ଭଉଥିଲା ଙ୍କେବାଇଲା ଭଳି ହେଉଥାଏ । ସକାଳୁ ସକାଳୁ କର୍ଣ୍ଣେଲ ବେଶ୍ ଦୁପଦ ମିଠାକଥା ଶୁଣାଇଲା ଓ ତା' ପରେ ଖବର କାଗଜରେ ସାଲଗ୍ରାମର ଏ ଗ୍ଲ...

ବାରଟା ବାଜିବା ଭିତରେ ସେ ସମସ୍ତ ଚନ୍ଦଗ୍ଭଉଡ଼କ ଲାଲା ଜାନକୀ ଶରଣଙ୍କ କୋଠରୀରେ ପହଞ୍ଚିଲା । କର୍ଣ୍ଣେଲ ଓ କନ୍ୟା କେହି ସେଠାରେ ନଥାନ୍ତି । ଲାଲାଜାନକୀ ଶରଣ ବ୍ୟାକୁଳ ହେଲାଭଳି ଭଙ୍ଗୀରେ କହିଲେ—ଭାଇ, ଅନେକ ସମୟ ହେଲା ମୁଁ ତମ ବାଟ ଗ୍ଭହିଁ ବସିଛି ।"

ସଜ୍ଜନ କିଛି କହିଲା ନାହିଁ । ବୋଝିଆ ମୁଣ୍ଡରୁ ଚନ୍ଦଗ୍ଭଉଡ଼କର ବୋଝ ଓହ୍ଲାଇବାକୁ ଜାନକୀ ଶରଣ ବ୍ୟଗ୍ର ହେଉଥାନ୍ତି । ନିଜ ଗ୍ଭକରକୁ ବୋଝ ଓହ୍ଲାଇବାକୁ କହିଲେ । ଅନଭିଜ୍ଞ ଗ୍ଭକର ଟୋକା ବୋଝ ଓହ୍ଲାଇଲା କିଛି ଗଡ଼ବଡ଼ କରିବାରୁ ସଜ୍ଜନ ନିଜେ ବୋଝିଆ ମୁଣ୍ଡରୁ ବୋଝ ଓହ୍ଲାଇବାକୁ ଲାଗିଲା । ସାବଧାନରେ ସବୁ ଜିନିଷ ଓହ୍ଲାହୋଇ ତଳେ ରହିଲା ପରେ ବୋଝିଆ ଗ୍ଲ ଗଲାରୁ ଜାନକୀ ଶରଣ ନିଜର ନକଲି ଦାନ୍ତ ଦେଖାଇ କହିଲେ "ବହୁତ ଅଙ୍କ ପଡ଼ିଥିବ ଭାଇ, ଖୁବ୍ ମେହନତ କରିବାକୁ ପଡ଼ିଥିବ । ଏ ସାଲଗ୍ରାମ ଯେଉଁ ବଦମାସୀ କରି ବସିଲା ନା, ତୁମକୁ କଣ କହିବି !" ଲାଲା ଜାନକୀ ଶରଣ ମୁହଁ ଓହଳାଇ ବସି ରହିଲେ । ସାଲଗ୍ରାମ ବିରୁଦ୍ଧରେ ଏ ପ୍ରକାର ଅଭିଯୋଗ କରିବାଟା ସଜ୍ଜନକୁ ଆଶ୍ଚର୍ଯ୍ୟଜନକ ବୋଧ ହେଲା । ସେ କିଛି କହିବାକୁ ଯାଉଥିଲା ମାତ୍ର ଲାଲାଜୀ କହି ଉଠିଲେ;" ଆମେ ରାଜାସାହେବଙ୍କୁ ଫୋନ କରି ତାଙ୍କର

ପରାମର୍ଶ ଏ ମାମଲାରେ ନେଇଛୁ .. ଏବେ ସେ ତୁମ ଉପରେ··· ତୁମ୍ଭେ ତ ସବୁ ଜାଣ ! ସେ ତ ଏମିତ ତୁମ ଉପରେ ବଗିଡ଼ି ଥାନ୍ତି । କିନ୍ତୁ ଏବେ ଯଦି କର୍ଣ୍ଣେଲ ବର୍ମ୍ମା ଥା'ନ୍ତା ରାଜାସାହେବ କଣ ଏହିଭଳି ବଗିଡ଼ି ପାରିଥାନ୍ତେ ? ରାଜାସାହେବ ଟେଲି-ଫୋନରେ ସାଲଗ୍ରାମ ଉପରେ ଖୁବ୍ ବିରକ୍ତ ହେଉଥିଲେ, ଆମ୍ଭେ କହିଲୁ ସେ ନିରୁପାୟ ହୋଇ ଏ ସବୁ କରିଥିବ । ରାଜାସାହେବ ତୁମ୍ଭକୁ କହିଛନ୍ତି ଏ ସମୟରେ ଖୁବ୍ ବୁଦ୍ଧି ବଳରେ କାମ କରିବାକୁ ହେବ । ପ୍ରଦର୍ଶନୀ ନିଷ୍ପତ୍ତି କରିବାକୁ ହେବ । ହିର ଏକ୍‌ସିଲେନ୍‌ସିଙ୍କ ମାମଲା ସେଇ । ଏ କାମ ସରିଲା ପରେ ମୁଁ ସାଲଗ୍ରାମର ଖବର ବୁଝିବି ।

ସଜ୍ଜନ ରାଗ ତମ୍ ତମ୍ ହୋଇ କହିଲା—ମୁଁ ଏଇନେ ଏ ସବୁ ଚାର୍ଜ ଉଠାଇନେବି, ସାଲଗ୍ରାମର ମନବୋଧ ହେଇଯିବ ! କେଉଁ ଶିଳ୍ପୀ ସ୍ତ୍ରୀକୁ ତାର ଚାର୍ଜ ଦେବ !

···ହଁ ହଁ ଭାଇ ତାତ ଠିକ୍ କଥା··· ।

...ଗୁଡ଼, ମତେ ପବ୍ଲିସିଟି ଦରକାର ନାହିଁ । ଭଗବାନଙ୍କ ଦୟାରୁ ମୋର ବେଶ୍ ନାଁ ହେଲାଣି । ସାଲଗ୍ରାମକୁ କେବଳ ଗୋଟିଏ ସହରର ଲୋକେ ଜାଣନ୍ତି । କିନ୍ତୁ ସଜ୍ଜନ ବର୍ମାର ନାଁ କେବଳ ଭାରତ ବର୍ଷର ନୁହେଁ ବିଲାତର ଖବର କାଗଜରେ ଅନେକ ଥର ଚର୍ଚ୍ଚା ହୋଇଛି ।

...ଆରେ ବେଟା, ମୁଁ ସବୁ ଜାଣେ । ତୁମ୍ଭେତ ମୋର ପୁଅ ସମାନ । ଯେଏ କେଉଁଠି ତୁମର ତାରିଫ୍ କରିଦେଲତ ମୋର ଗୁଡ଼ ଖୁସିରେ ମୋଟ ହୋଇଯାଏ । କିଏ କହିବ, ତୁମ୍ଭ ଘରେ ତ କେହି ତୁମ୍ଭର ଏ ପ୍ରତିଷ୍ଠା ଦେଖିବାକୁ ରହିଲେ ନାହିଁ । (ଧୋତି କାନରେ ଆଖି ପୋଛିବା ଅଭିନୟ କଲେ) ଶ୍ରୀହରିଙ୍କ ଇଚ୍ଛା । ଚିରଞ୍ଜିବୀ ହୁଅ ଭାଇ, ଭଗବାନ ତମକୁ ଶତାୟୁ କରନ୍ତୁ । ତୁମର ପାଇଁ ଆଜି ମୋ ଦୁଆରେ 'ହିର ଏକସିଲେନସୀ' ଓ ବଡ ବଡ଼ ଲୋକଙ୍କ ପାଦ ପାଦ ପଡ଼ିବ । ବଞ୍ଚିଥିବା ଯାଏଁ ତୁମର ଯଶଗାନ କରିବି ।

କିଛି ସମୟ ନୀରବ ରହି ଜାନକୀ ଶରଣ ବିଚଳିତ ହେଲାଭଳି କହିଲେ, ତୁମେ ପୁଅ ଏ ପର୍ଯ୍ୟନ୍ତ କିଛି ଖାଇ ନଥିବ, ଆସ, ମୋ ଘରେ ଦି'ଟା ଖାଇ ନିଅ ।

···ଆଜ୍ଞା ନା, ଆଜି ମତେ କର୍ଣ୍ଣେଲ ଘରେ ଖାଇବାକୁ ନିମନ୍ତ୍ରଣ ଅଛି । ସେ କଣ ଏ ପର୍ଯ୍ୟନ୍ତ ଆସିନି ।

···ନା, ଆସିଥିଲେ ତ ଚାଲିଗଲେଣି, କର୍ଣ୍ଣେଲ ମୋ ଉପରେ ବହୁତ ଖପା ! ତା ସାଙ୍ଗରେ ସେ ଝିଅଟା ବି ଆସିଥିଲା । 'ତା ନାଁ କଣ ଟି ଯେ···ଯାହାପାଇଁ ରାଜାସାହେବ ଓ ତୁମ ମଧ୍ୟରେ ସଂପର୍କଟା ତିକ୍ତ ହୋଇଛି । ନଗେନ ସିହ (କର୍ଣ୍ଣେଲ)

ବଦମାସୀର ଶେଷ ସୀମାରେ ପହଂଚଯାଇଛି । ଖରାପ ସ୍ୱଭାବର ପୁଅ । ତୁମର ସାଙ୍ଗ ହେଲେ ବି ସେ ମୋର ପରିଚିତ । ଆରେ ଭାଇ, ତା ବାପା ମୋତିଚନ୍ଦଜୀ ସଙ୍ଗରେ ଆମ୍ଭର ବେଶ୍ ଭଲ ସଂପର୍କ ଥିଲା ।

ମାତ୍ର ମୁଁ ସ୍ୱଳପ କରି କହିବି ଯେ ଯେଉଁ ଘରୁଆ ଘରର ଆଭିଜାତ୍ୟ, ଭଲ ଆଚରଣ ତୁମଠି ଅଛି ସେଥିରୁ ଜାଣିହୁଏ ତା'ଠି ନାହିଁ, ତୁମର ସେ ସାଂଗ......ମହିପାଲ ବି ସେମିତି । ତାକୁ ମୁଁ ଜାଣେ । ସେ ମୋ ଭେଣୋଇ ରୂପରତନ ସାଙ୍ଗରେ ମିଶି ଖବର କାଗଜ ବାହାର କରୁଥିଲା । କଥା ହେଉଛି ଆଭିଜାତ୍ୟ ହେଉଛି ଗୋଟାଏ ଅଲଗା କଥା । ସମସ୍ତଙ୍କଠି ତାର ପ୍ରକାଶ ହୁଏନା । ସେମାନେ ତ ଆମ୍ଭଭଳି ପୁରୁଷେ ଦ'ପୁରୁଷେ ଲକ୍ଷ୍ମୀଙ୍କ କୃପା ପାଇନାହାନ୍ତି । ଘରୁଆ ଘରର ପିଲା ଛୁଆ ଭଲ ଭଲ ବ୍ୟବହାର ଶିଖିବେ କେଉଁଠୁ ? ଗୁଡ଼ । ତୁମେ ରୁଟି ଦ'ଖଣ୍ଡ ଖାଇନଅ ।

.........ନା, ମୁଁ ଥରେ କର୍ଣ୍ଣେଲ ସାଙ୍ଗରେ ଦେଖା କରିବି । କେଉଁଠି କି ସେ ଗଲା ଆପଣଙ୍କୁ କିଛି କହି ଯାଇଛି ? ଲାଲାଜାନଙ୍କ ଶରଣ କିଛି ସମୟ ଗମ୍ଭୀର ହୋଇ ରହିଲା ପରେ କହିଲେ......ନଗିନଚନ୍ଦ କର୍ଣ୍ଣେଲ କହିଗଲେ ଯେ ମୋ ଘରେ ଚିତ୍ର ପ୍ରଦର୍ଶନୀ ହେବ ନାହିଁ । ସେ...ସେ... କଣଟି ତା ନାଁ ·····ତାଇ ଘରେ କୁଆଡେ ପ୍ରଦର୍ଶନୀର ଆୟୋଜନ ହେବ ।"

କର୍ଣ୍ଣେଲର ଏ ନିଶ୍ଚିତ ପଦକ୍ଷେପର ଘୋଷଣା କଥା ଲାଲାଜୀଙ୍କ ଠାରୁ ଶୁଣି ସଜ୍ଜନ ବିସ୍ମିତ ହେଲା । ହଠାତ୍ ସେ ଉଠିପଡ଼ି କହିଲା ·····ମୁଁ ଏଇନେ ଆସୁଛି ।"

......ଟିକେ ଶୁଣି ଯାଅ ପୁଅ...... ।

......ମୁଁ ଏଇନେ ଆସୁଛି...... । ସଜ୍ଜନ ଅପେକ୍ଷା ନକରି ତାର କୋଠୀକୁ ଚାଲିଗଲା ।

କନ୍ୟା, କର୍ଣ୍ଣେଲର ଛଅଜଣ ଚାକର ବାବା ରାମଜୀ ଓ ତାଙ୍କର ସୁସ୍ଥ ହୋଇଯାଇଥିବା ପାଗଳ ରୋଗୀ ଚାରିଜଣ ସାଜସଜ୍ଜା କରୁଥାନ୍ତି । 'ଦେଇ ଓ 'ନନ୍ଦୋ' ପାଖରେ ଠିଆହୋଇ ଦେଖୁଥାନ୍ତି । ସଜ୍ଜନ ଯେତେବେଳେ ପହଞ୍ଚିଲା କୌଣସି ହସ କଥା ପକାଇ ସେମାନେ ସଭିଏଁ ହସୁଥିଲେ ।

......ଆସ ରାମଜୀ । ଦେଖ ଆଜ ଏ 'ମଙ୍ଗଳ କାମ ହେଉଛି । ବାବାଜୀ କହିଲେ ।

ସଜ୍ଜନର ପ୍ରବେଶ ମାତ୍ରେ କନ୍ୟା ଗମ୍ଭୀର ହୋଇଗଲା । ସେ ମୁଣ୍ଡ ନୋଇଁ ଫୁଲ କାଟିବାକୁ ଲାଗିଲା ।

ଦେଠେଇ କହିଲା……ଏ' ଜନୁମୋଲର ନାଟ ତ : ଦୁଃଖ କରନା । ସବାଖିଆ ଜାନକୀ ଶଇଣର ମୁଁ ବଂଶ ନାଶ କରିଦେବି ।

……ଆରେ ଯା'ମ ଦେଠେଇ : ତୋ କଥାରେ କିଛି ବାଗ ବରଗ ନାହିଁ ।" ନନ୍ଦୋ କହିଲା ।

……ସବାଖାଇ ତୁ କଣ ଜାଣୁ ? ଯାଃ…… । ନନ୍ଦୋ ତାଇର ଏ ପ୍ରକାର ଗାଳି ଶୁଣି ଅପ୍ରତିଭ ହୋଇଗଲା । ପାଞ୍ଚଲୋକଙ୍କ ଆଗରେ ତାଇ କି ଦ' ପଦ ଶୁଣେଇ କହିବାର ଅଭିମାନ ତା'ର ଆହତ ହେଲା ।

ଦେଠେଇ ତାକୁ ବେଶ ଆହୁରି ଦ' ପଦ କଣ କଡ଼ାକଥା ଶୁଣେଇ ଦେଲା ।

……ହେ ରାମ ଭଗବୁଣୀ, ଛାଡ଼ । ଶୁଭ କାର୍ଯ୍ୟରେ ଏ'ଗୁଡ଼ା ବକ'ନା । "ବାବାଜୀ ପୁଣି ସଜ୍ଜନକୁ ଲକ୍ଷ୍ୟକରି କହିଲେ : କି' ରାମଜୀ ; ଯେଉଁ କାମରେ ଯାଇଥିଲ ସଫଳ ହେଲାତ ?

…· ହଁ ଆଜ୍ଞା । ସବୁ ଛବି ରଖିଆସିଲି ।

……ଶୁଣିଲି ଏ ଲୋକେ ତୁମ ସାଙ୍ଗରେ ମିଚଚା କରୁଛନ୍ତି । କିଛି ଚିନ୍ତା ନାହିଁ ରାମଜୀ ! ଏଇତ ସଂସାର ।"

ପୁଣି ଦେଠେଇ ଓ ନନ୍ଦୋ ଭିତରେ ଖଚ ଖଚ ଆରମ୍ଭ ହୋଇଗଲା । ନନ୍ଦୋ ଆସ୍ତେ ଆସ୍ତେ କଣ ବଡ଼ ବଡ଼ ହେଉଥାଏ । ଦେଠେଙ୍କର ତା' ଉପରେ ଖପା ହୋଇ କହିଉଠିଲା ..ଆଣ୍ଟୁ କୋଡ଼ୀ ! ଭଉତ ବଢ଼ି ବଢ଼ି କଥା କହୁଚ । ଏମିତ ପାନେ ଦେବି ଯେ ମନଘର ଧରିଯିବ । ଗଳ କନ୍ଦରେ ପାଗିଳୀ ହୋଇ ବୁଲୁଥିବୁ । ଏ ବାବାଜୀତ ତତେ ଠିକ୍ କରି ପାରିବେନ ।

……ଧେତ୍ ରାମ ଭଗବୁଣୀ "ଏତିକି କହି ବାବାଜୀ ନନ୍ଦୋକୁ ଧମକ ଦେଲାଭଳି ଦୃଷ୍ଟିରେ ଚାହିଁଲେ ।

ସଜ୍ଜନ ଏ ପ୍ରକାର କଳହରୁ ମଜା ନେବାର ମୁଡ୍‌ରେ ନଥିଲା । ସେ ମନେ ମନେ କର୍ଣ୍ଣେଲକୁ ଖୋଜୁଥିଲା କିନ୍ତୁ କାହାକୁ ପଚାରିବ ? ରେ କନ୍ୟାକୁ ପଚାରିବାକୁ ଚାହୁଁଥିଲା । ବାବା ରାମଜୀ ସାମନାରେ ନିଜକୁ ପବିତ୍ର ସାବ୍ୟସ୍ତ କରିବାକୁ କନ୍ୟାପ୍ରତି ତାର ନିଷ୍ପାପ ଅନୁରାଗ ପ୍ରଦର୍ଶନ କରିବାକୁ ଚାହୁଁଥିଲା । କିନ୍ତୁ କିପରି ସେ ଅନୁରାଗ ପ୍ରକାଶ କରିବ ? କିପରି ପଚାରିବ ? ଦ୍ୱିଧାଗ୍ରସ୍ତ ଚିତ୍ତରେ ଅଚାନକ ପଚାରି ବସିଲା…… କନ୍ୟା କର୍ଣ୍ଣେଲ କେଉଁଠି ?

……ଖାଇବା ବ୍ୟବସ୍ଥା କରୁଛନ୍ତି ସେ ।

……କେଉଁମାନଙ୍କର ଖାଇବା ବ୍ୟବସ୍ଥା ?

……ଏ ମାନଙ୍କର, ମୋର, ସମସ୍ତଙ୍କର ।

……ତୁ କଣ ଖଇନୁ କନ୍ନମୋଲର ପୋତେ ? ମୋତେ କହୁନୁ କାହିଁ ? ପୂର୍ବ ଗଣ୍ଡାଏ ଗୁଣି ଦେବାକୁ ମତେ କେତେ ସମୟ ଲାଗିବ ? ……ସଜ୍ଜନକୁ ଲକ୍ଷ୍ୟ କରି ତାଇ କହିଲା ।

……ନାଁ ଦେଓେଇ । ମୋ ଖାଇବା ଏଇନେ ଆସୁଥିବ ।

କର୍ଣ୍ଣେଲ ଆସିବା ପରେ ଦୁହେଁ ନିଜ ନିଜର ଅନୁଭବ ପରସ୍ପରକୁ କହିଲେ । କର୍ଣ୍ଣେଲ ସାଙ୍ଗରେ ଜାନକୀ ଶରଣ ବେଶ୍ ଦି' ପଦ କଡ଼ା କଡ଼ା କଥାରେ ବିନିମୟ ହୋଇଥିଲା ।

……ମୁଁ ତାଙ୍କୁ ସାଫ୍ ସାଫ୍ କହି ଆସିଛି ରାଜାସାହେବ ହୁଅନ୍ତୁ ବା ଲାଟ୍ ସାହେବ ହୁଅନ୍ତୁ କାହା କଥାରେ ତା'ଘରେ ପ୍ରଦର୍ଶନୀ ହେବନାହିଁ । ଯଦି ସେମାନେ ଏ ପ୍ରକାର ଖେଳ ଖେଳିଛନ୍ତି; ଆମକୁ ତାର ଜବାବ ଦେବାକୁ ପଡ଼ିବ । ମୁଁ ତ କିଛି ଭୁଲ କରିନି ?"……ଏତିକି କହି କର୍ଣ୍ଣେଲ ସଜ୍ଜନ ମୁହଁକୁ ଚାହିଁଲା ।

……ନା' ଠିକ୍ ହୋଇଛି ।

……ତୁ ଯାଇ ସବୁ ଚିତ୍ର ଏଠିକି ନେଇଆ । ଏ ଜାଗା ପ୍ରଦର୍ଶନୀ ପାଇଁ ଫାଷ୍ଟକ୍ଲାସ୍ ହୋଇଛି ।

ସଜ୍ଜନ ଲାଲଜୀ ଘରୁ ଚିତ୍ର ଗୁଡ଼ିକ ଫେରାଇ ଆଣିବାକୁ ଗଲା । ଲାଲଜୀ କିନ୍ତୁ ଆଗଭଳି ଫୁଲ୍ଲ କଥା ନ କହି ମୁହଁରେ ତାଉ ଦେଇ କଥା ଆରମ୍ଭ କରିଦେଲେ । ଚିତ୍ର ବିନିମୟରେ ଏ ପ୍ରକାର କଥା ଶୁଣି ସଜ୍ଜନ ଉତ୍ତେଜିତ ହେଲା । ଲାଲଜୀ ସଫା କହିଦେଲେ ଯେ 'ହିଜ୍ଏକସ୍‌ଲେନ୍‌ସୀଙ୍କ "ଦ୍ୱାରା ଉଦ୍‌ଘାଟନ ହୋଇଗଲା ପରେ ଚିତ୍ରଗୁଡ଼ିକ ଫେରାଇ ଦିଆଯିବା କଥା ବିଚାର କରାଯିବ । ଭଦ୍ର, ସଂଭ୍ରାନ୍ତ ଓ ଅଭିଜାତ ବଂଶର ସନ୍ତାନ ଲାଲଜୀଙ୍କୁ ଭଦ୍ର, ସଂଭ୍ରାନ୍ତ, ଅଭିଜାତ ପରିବାରର ଯୁବକ ସଜ୍ଜନ ବର୍ମାଠାରୁ ଏ' ଭଳି ଦି' ଚାରିପଦ ଶୁଣିବାକୁ ପଡ଼ିଲା ଯଦ୍ୱାରା ଲାଲ ଜାନକୀ ଶରଣ ଟୁବ୍ ବୋଧକଲେ । ସଜ୍ଜନ ପ୍ରକୃତରେ ଖୁବ୍ ଉତ୍ତେଜିତ ଥିଲା, ସେ ଆସିବାରୁ କର୍ଣ୍ଣେଲ ତାକୁ ଶାନ୍ତ୍ୱନା ଦେଲା । କହିଲା…ଏବେ ନ ଦେଲୁ, ସାଢ଼େ ଚାରି ବାଜିବାକୁ ତ ଡେରିନାହିଁ । ଉଦ୍‌ଘାଟନ ବେଳେ, 'ହିଜ୍ଏକସ୍‌-ଲେନ୍‌ସୀ" ସାମନାରେ ମୁଁ ଜାନକୀ ଶରଣ ଓ ସାଳଗ୍ରାମ ଇତ୍ୟାଦିଙ୍କୁ ଏକ୍‌ସ୍‌ପୋଜ କରିବି । ନଚେତ ମୋ ନା ନଗିନଚାନ୍ଦ କର୍ଣ୍ଣେଲ ନୁହେଁ । ତୁ ଚୁପ୍‌ଚାପ ବସ । କର୍ଣ୍ଣେଲ ଦେଓେଇ ଘରକୁ ସଜାଇବାରେ ଲଗିଲା ।

ଲଲ୍ଲ ଜାନକୀ ଶରଣ ବି ନିଜର କୋଠୀର ପ୍ରତିଟି ଖମ୍ବକୁ ସଜାଉଥାଏ । ଅବଶ୍ୟ ତାର ସାଜ ସଜ୍ଜା ପଶଚ୍ଛନ୍ନ ହେଉ ନଥିଲା । ଘରଠୁ ବାହାର ପର୍ଯ୍ୟନ୍ତ ରଙ୍ଗୀନ ବିଜୁଳି ବଲବ୍‌ର ମେହେରାବ ଲଗାଉଥାଏ । ଘରଠୁ ମୁଖ୍ୟ ରାସ୍ତାର ଛକ ପର୍ଯ୍ୟନ୍ତ ଦୁଇ-ଫର୍ଲିଙ୍ଗ ରାସ୍ତା ଦଉଡ଼ିରେ କାଗଜ ଫୁଲ୍ ବନ୍ଧା ହୋଇ ଝୁଲୁଥାଏ ।

ସଜ୍ଜନ କ୍ରୋଧରେ ଜଳୁଥାଏ । କର୍ଣ୍ଣେଲ ଆରାମ ଚୌକିରେ ବସି ବସି ଢୁଳାଉଥାଏ । ବାବାରାମଜୀ ନିଜ ପାଗଳ ଚେଲାକୁ ସାଙ୍ଗରେ ଧରି ଚାଲିଗଲେଣି । କର୍ଣ୍ଣେଲର ଚାକରମାନେ ଅଗଣାରେ ବସିଥାନ୍ତି । କର୍ଣ୍ଣେଲ ଦେଠେଇ ସାଙ୍ଗରେ 'ତାଙ୍କ' ଘରକୁ ଚାଲି ଯାଇଥାଏ ।

ସାଢ଼େ ଛଅଟା ବେଳକୁ ଲଲ୍ଲଜାନକୀ ଶରଣର ଚାକର ଆସି ଖବର ଦେଲା ଯେ ରାଜାସାହେବ ଡ଼ାକୁଛନ୍ତି । କର୍ଣ୍ଣେଲ ଆଖିବୁଜି କହିଲା" ନା, ଯିବା ଦରକାର ନାହିଁ ।" ସଜ୍ଜନ କିଛି କହୁ ନଥାଏ । ଚାକର ପୁଣି ତା' ଆଡ଼କୁ ଚାହିଁଲା । ···ହଁ ମୁଁ କହିଦେଲି ତ ସେ ଯିବ ନାହିଁ । ଯାଃ ପ'ଳା ।' ବିରକ୍ତ ହୋଇ କର୍ଣ୍ଣେଲ କହିଲା ।

ଚାକର ଯିବାକୁ ବସିବାରୁ ସଜ୍ଜନ କର୍ଣ୍ଣେଲକୁ କହିଲା.........."ମୁଁ ଟିକେ ବୁଲିଆସେ, ରାଜାସାହେବ······ମୁଁ କହୁଛି, ତ ଯାଇ ପାରିବୁନି ସଜ୍ଜନ ।"

ସଜ୍ଜନ ସେମିତି ବସି ରହିଲା । ପାଞ୍ଚ ମିନିଟ ପରେ ରାଜାସାହେବଙ୍କ ମହିଆ ପୁଅ ଆସି ସଜ୍ଜନକୁ ପୁଣି ଖବର ଦେଲା । ସଜ୍ଜନ ଦ୍ୱିଧାରେ ପଡ଼ିଲା, କଣ କରିବ । କଣେଇ କରି କର୍ଣ୍ଣେଲକୁ ଚାହିଁଲା । କର୍ଣ୍ଣେଲ ବି ଅପସ୍ତୁତ ବୋଧ କରୁଥାଏ ।

ସଜ୍ଜନକୁ ଇଶାରା ବି ଦେଇ ପାରୁନଥାଏ । ତଥାପି କହିଲା...' ଦେଖନ୍ତୁ ତ୍ରିଭୁବନଜୀ, ଏକ ପକ୍ଷୀୟ ନିଷ୍ପତ୍ତି ନେବାଟା ଭଲ କଥା ନୁହେଁ । ସାଲଗରାମ ତ ମୋ ଆଗରେ କିଛି ନୁହେଁ । କିନ୍ତୁ ଆମ ସଭିଙ୍କର ଆପୋଷ ନିଷ୍ପତ୍ତିରେ ଲଲ୍ଲଜନକୀ ଚରଣ···"

······ଅରେ କର୍ଣ୍ଣେଲ ଏବେ ତା'ର ମାନସମ୍ମାନର କଥା......"

······ଆମର ବି ଆତ୍ମସମ୍ମାନ ବୋଲି ଗୋଟାଏ ଜିନିଷ ଅଛି ।

······ସଜ୍ଜନ ତୁମେ ଆସ ।" ତ୍ରିଭୁବନଦାସ ସଜ୍ଜନର ହାତଧରି ଟାଣିନେଲା, ନିରୁପାୟ ହୋଇ ସଜ୍ଜନ ଚାଲିଗଲା ।

ଯେତେବେଳେ 'ହିରଏକସ୍ଲେନସୀ"ଙ୍କ ଗାଡ଼ି ସଡକ ଉପରେ ରହିଲା, ରାଜାସାହେବଙ୍କ ନେତୃତ୍ୱରେ ଦଳେ ପଇସାବାଲା, ସ୍ୱୟଂ ପ୍ରତିଷ୍ଠିତ ଓ ନିଜକୁ ବଡ଼ ମନେ କରୁଥିବା ଦଳେ ଲୋକ ସ୍ୱାଗତ କରିବାକୁ ଆଗେଇଗଲେ । ଏ ପ୍ରକାର ନିର୍ବୋଧ ସମାବେଶରେ ସଜ୍ଜନ ନିଜକୁ ଶହିଦ ହେଲା ଭଳି ଅନୁଭବ କରୁଥାଏ । ଗଳି ରାସ୍ତାରେ

ଜାନକୀ ଶରଣ ଘର ପର୍ଯ୍ୟନ୍ତ ଲାଟ ସାହେବଙ୍କ ନିମନ୍ତେ ଲାଲରଙ୍ଗର ପାବଚ୍ଛ ବିଛା ହୋଇଥାଏ ସେ ବାଟେ ଚାଲିଗଲା ବେଳେ ଉପରେ ସଜଡ଼ା ହୋଇଥିବା ଫୁଲ ସାହେବଙ୍କ ଉପରେ ବୃଷ୍ଟି ହେବାକୁ ଲାଗିଲା ଓ ଏକ ଫୁଲ ମାଳ ସ୍ୱତଃ ତାଙ୍କ ଗଳାରେ ଲମ୍ବିଗଲା । ଜାନକୀ ଶରଣଙ୍କ ଘର ଆଗରେ ଶୋଭା ସମାବେଶ ହୋଇଥାଏ । ଡାକ୍ତର, ଓକିଲ, ପଇସାବାଲା, ସରକାରୀ ଅଫିସର, ବସ୍ତିର ଲୋକ ଓ ନଗରର ପ୍ରମୁଖ କଳାକାର ସେ ଗଳିର ଶୋଭା ବର୍ଦ୍ଧନ କରୁଥାନ୍ତି । ଏ ଭିଡ଼ଭିତରେ ସହରର ମାନ୍ୟଗଣ୍ୟ ନୂତନ ଓ ପ୍ରବୀଣ କଳାକାର ବୃନ୍ଦ ଅଲଗା ବାଛି ହୋଇ ପଡ଼ୁଥାନ୍ତି । ଅସଂଖ୍ୟ ଆଲୁଅ ଭିତରେ ଉଜ୍ଜ୍ୱଳ ନକ୍ଷେତ୍ର ପରି । ସେମାନଙ୍କ ପଦାର୍ପଣରେ ଗଳି ନିଜକୁ ଧନ୍ୟ ମନେ କରୁଥାଏ ଯେପରି : ପୁଲିସର କଡ଼ା ବ୍ୟବସ୍ଥା ହୋଇଥାଏ । ବାବୁସାଲଗ୍ରାମ ଓ ଜାନକୀ ଶରଣ ·· ଏ ଦୁହିଁଙ୍କୁ ସନ୍ଦେହ ଥାଏ ଯେ କଣ୍ଟ୍ରୋଲ ଓ କନ୍ୟା ଦୁହେଁ ମିଶି କିଛି ଗୋଟାଏ ବିଘ୍ନ ଅଘଟଣ ଘଟାଇ କରିପାରନ୍ତି ।

ଉଦ୍‌ଘାଟନ ହେଲା । ରାଜାସାହେବ 'ହିଜଏକସ୍‌ଲେନସୀ ''ଙ୍କ ପ୍ରଶଂସାରେ ଶତମୁଖ ହୋଇ ଉଠିଲେ । ସେ ତାଙ୍କୁ ବୁଝାଇ ଦେଲେ ଯେ ଏଠାକାର ସ୍ଥାନୀୟ ଗଣ୍ୟମାନ୍ୟ ଭଦ୍ରବ୍ୟକ୍ତି ମାନେ ସର୍ବୋତ ଭାବେ ରାଜଭକ୍ତ ତଥା ଦେଶ ଭକ୍ତ ଅଟନ୍ତି । ସେ ସାଲଗ୍ରାମର ନେତାଗିରିର ଉଚ୍ଛ୍ୱସିତ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ସଜ୍ଜନ ସଂପର୍କରେ ମଧ୍ୟ ଦୁ' ପଦ ମନଭୁଲା ମିଠା କଥା କହିଲେ ।

ଲାଲଜାନକୀ ଶରଣଙ୍କ ଗୋଡ଼ ତଳେ ଲାଗୁ ନଥାଏ । ସେ କୌଣସି ପ୍ରକାର ମାଇକ୍ରୋଫୋନ ନିଜ ମୁହଁ ପାଖକୁ ନେଇ ନେତାଗିରି ଆରମ୍ଭ କରିଦେଲେ । ନିଜ ଭାଷଣରେ ସେ ସଜ୍ଜନର ନାମୋଚ୍ଚାରଣ ନ କରି ବରଂ··· ପ୍ରଦର୍ଶନୀରେ ଭାଗ ନେଇଥିବା କଳାକାରମାନଙ୍କୁ ରାଷ୍ଟ୍ରୀୟ ସଂସ୍ଥା ସହିତ ସହଯୋଗ କରିଥିବା ଯୋଗୁ ଧନ୍ୟବାଦ ଅର୍ପଣ କଲେ । "ହିଜଏକସଲେନସୀ" କଳାର ମହିମା ବର୍ଣ୍ଣନା କରି ନିଜ ପାଖରେ ଠିଆ ହୋଇଥିବା ଲଚ୍ଛମୀର ବୟୋବୃଦ୍ଧ କଳାକାରଙ୍କୁ ଉଲ୍ଲେଖ କଲେ । ରାଜାସାହେବଙ୍କୁ ଏ ପ୍ରକାର ଆୟୋଜନ ନିମିତ୍ତ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ଲାଲଜାନକୀ ଶରଣଙ୍କ କୋଠୀର ବଡ଼ ହଲର ଦ୍ୱାର ଦେଶରେ ଟଙ୍ଗା ହୋଇଥିବା ଫୁଲଦାର କର୍ଣ୍ଣଟରେ କାଟି ପ୍ରଦର୍ଶନୀ ଉଦ୍‌ଘାଟନ କଲେ । ତାଳି ବାଜିଲା ସାହେବ ଭିତରକୁ ପ୍ରବେଶ କଲେ । ଅନ୍ୟମାନେ ତାଙ୍କୁ ଅନୁସରଣ କଲେ । ଭିତରେ ପ୍ରବେଶ କରିବା ମାତ୍ରେ ସଜ୍ଜନ ବିସ୍ମିତ ହୋଇଗଲା । ସହରର ଅନେକ ପ୍ରମୁଖ ବ୍ୟକ୍ତି ଓ ସାଥୀ କଳାକାରମାନଙ୍କ ଆଗରେ ସେ ମୁଣ୍ଡ ଟେକି ପାରିଲାନି । ପ୍ରାୟ ପଚିଶଟି ଚିତ୍ରକୁ ପାଖାପାଖି ଦୁଷ୍ଟିକଟୁ ହେଲା ଭଳି ପୋଜରେ ଟଙ୍ଗାଇ ଦିଆଯାଇଛି । ଚିତ୍ର ଗୁଡ଼ିକର ଅଭିବ୍ୟକ୍ତି ଲାଲାଙ୍କ ଚତୁର ବୁଦ୍ଧିର ଯଥେଷ୍ଟ ବାହାରେ । କେବଳ ଫାଟକ ପାଖରେ ଗୋଟିଏ ଜନପ୍ରିୟ ସଭିଙ୍କର ଦୃଷ୍ଟି

ଆକର୍ଷଣ କଲାଭଳି ଥିଲା । ତା ହେଉଛି ବିଜୁଳି ଦ୍ୱାରା ଆୟୋଜିତ ଭାରତମାତା ହାତରେ ତିରଙ୍ଗା ପତାକାର ଉତ୍ତୋଳନ । କଳାକାର ମାନେ ନିଜ ନିଜ କଳାକୃତିର ଏ ପ୍ରକାର ଦୁର୍ଦ୍ଦଶା ଦେଖି ଆଚମ୍ବିତ ହୋଇଗଲେ । ସଜ୍ଜନ ସେଠାରୁ ମୁହଁ ଲୁଚାଇ ବାହାରକୁ ପଳାଇ ଗଲା । ରାଜାସାହେବ ଓ ଜାନକୀ ଶରଣ ଏ ସମୟରେ ଲାଟ ସାହେବଙ୍କ ପତ୍ନୀ ଓ ଆଉ କେତେ ଜଣ ଜଣାଶୁଣା ଲୋକଙ୍କ ଖବର ବୁଝିବାରେ ବ୍ୟସ୍ତ । କର୍ଣ୍ଣେଲ ଓ କନ୍ୟା ଘରର ଗୋଟିଏ କୋଣରେ ଠିଆ ହୋଇଥାନ୍ତି ।

"ହିଜଏକସଲେନସୀ" ଯେତିକି ଛବି ଉପରେ ନିଜର ଦୃଷ୍ଟି ପଡ଼ିଲା ସେତିକି ମାତ୍ର ଦେଖି ନେଲେ । ପ୍ରବୀଣ ଚିତ୍ରକାର ନିଜ ଛବି ଗୁଡ଼ିକର ଏ ପ୍ରକାର ଦୁରୁପଯୋଗକୁ ବରଦାସ୍ତ ନକରିପାରି ସେ ସ୍ଥାନରୁ ନିଷ୍କ୍ରାନ୍ତ ହୋଇଗଲେ ।

ସଜ୍ଜନର କେତେଜଣ ସାଥୀ ଯୁବ କଳାକାର ଆପୋଷରେ ପ୍ରଦର୍ଶନୀ ବିଷୟ ଚର୍ଚ୍ଚା କରିବାକୁ ଲାଗିଲେ । ମନେ ହେଉଥିଲା ଯେପରି ବିଜୁଳିର ତିରଙ୍ଗା ପତାକା ଉଡ଼ାଇବା ପାଇଁ ଏତେ ଗୁଡ଼ାଏ ମୌଳିକ କଳାକୃତିକୁ ଗୁଲାମ କରାଯାଇଛି । ତିରଙ୍ଗା ପତାକାର ଗୁଲାମ ହେବାରେ କିଛି ଆପତ୍ତି ନାହିଁ । ମାତ୍ର ଭାରତ ମାତା ଓ ତିରଙ୍ଗା ପତାକାକୁ ଏ ସମୟରେ ଶିଖଣ୍ଡି ରୂପରେ ଏଭଳି ପ୍ରଦର୍ଶନ କରିବାର ଅର୍ଥ କଣ ହୋଇ ପାରେ ତାହାହିଁ ଶିଳ୍ପି ମାନଙ୍କୁ ଆଲୋଡ଼ିତ କରୁଥିଲା । ଏ ଆୟୋଜନର ନେପଥ୍ୟରେ କେତେକ ପ୍ରତିଷ୍ଠା ଲୋଭୀ ବ୍ୟକ୍ତି, କଳା ଓ କଳାକାରଙ୍କୁ ଇତର ବସ୍ତୁ ରୂପେ ନିଜର ସୁଖ୍ୟାତି ପାଇଁ ବ୍ୟବହାର କରିଛନ୍ତି । ଏବଂ ସଜ୍ଜନ ଏ ଘଟଣାରେ ଏଜେଣ୍ଟ ରୂପେ କାମକରି କଳାକାର ବନ୍ଧୁମାନଙ୍କ ପ୍ରତି ଅନ୍ୟାୟ କରିଛି ।

ଏ ଆଲୋଚନା ବେଳେ "କନ୍ୟା" ପାଖରେ ଠିଆ ହୋଇଥିଲା । ଏକଥା ଶୁଣି ସେ ବିଶେଷ କ୍ଷୁବ୍ଧ ହେଲା । କର୍ଣ୍ଣେଲ ସେତେବେଳେ ସେଠାରେ ନଥିଲା । ବସ୍ତିର ଲୋକମାନେ ଚିତ୍ର ଗୁଡ଼ିକ ସାମନାରେ ଠିଆ ହୋଇ ଦେଖୁଥିଲେ । ଏ ଚିତ୍ର ଗୁଡ଼ିକ ଦର୍ଶକ ମାନଙ୍କ ପାଇଁ ଅର୍ଥହୀନ ଥିଲା ।

ଜଣେ ନବଯୁବକ ଶିଳ୍ପ ଆଲୋଚନା କରୁ କରୁ ଭାଷଣ ଦେବାର ମୁଡ୍‌ରେ ପହଞ୍ଚିଗଲା । ହଲରେ ପ୍ରବେଶ କରୁଥିବା ଦର୍ଶକମାନଙ୍କୁ ଉଦ୍ଦେଶ୍ୟ କରି ପ୍ରଦର୍ଶନୀର ଅବ୍ୟବସ୍ଥା ପ୍ରତି ସେମାନଙ୍କ ଦୃଷ୍ଟି ଆକର୍ଷଣ କରୁଥାଏ ।

ଅନ୍ୟ ଜଣେ ଶିଳ୍ପୀ ତାଙ୍କୁ ଲକ୍ଷ୍ୟକରି କହିଲା······"ଆରେ······ତମେ ତ ପ୍ରତିଷ୍ଠିତ ନାଗରିକ ନୁହଁ, ଏତେ ବକ ବକ ହାଲିଆ ହେଲେବି ତମକୁ କେହି ଏଠାରେ ଚା' କପେ ଦେବନି ।"

...ଆରେ ଆମେ ପ୍ରତିଷ୍ଠିତ ନୁହଁ ତ ଆଉ କଣ ? ଏଇ ଶଳା ଲଲ ଲୁଲ ଲୋକ କାପରି ପ୍ରତିଷ୍ଠିତ ହୋଇଗଲେ ? ଅନ୍ୟଜଣକ କହିଲା......"ସେମାନଙ୍କୁ ତ ସରକାର ପ୍ରତିଷ୍ଠା ଦେଇଛି । ସରକାରୀ ତାଲିକାରେ ଏଇମାନଙ୍କର ନାମ ମିଳିବ । ଆମର ବା ତମର ଏଥିରେ ସ୍ଥାନ ନାହିଁ ।"

......ସେମାନଙ୍କର ଯଦି ଆମକୁ ଖାତିର ନାହିଁ, ଆମର ଏ ପ୍ରଦର୍ଶନୀରେ ସେମାନେ କାହିଁକି ? ସଜ୍ଜନ ଗଲା କୁଆଡ଼େ ?

କନ୍ୟା ଏ ପ୍ରକାର ଉତ୍ତେଜନାର ଉତ୍ତର ଦେବାକୁ ଆଗେଇ ଆସିଲା । ସେ ତା'ର ଓଜସ୍ୱିନୀ ଭାଷାରେ ଆରମ୍ଭ କଲା .....ଏମାନେ ସଜ୍ଜନଙ୍କୁ ଠକିଛନ୍ତି । ଚିତ୍ର ମଗାଇ ଆଣି ଏଠାରେ ପ୍ରଦର୍ଶିତ କରନ୍ତି । ମାନଙ୍କ ପାଇଁ କଳା...ସଂସ୍କୃତି ପ୍ରତି ଆଗ୍ରହ ପ୍ରକାଶ କରିବାଟା ତୁଚ୍ଛ ଛଳନା । ଏଇ ବାହାନାରେ ବଡ ବଡ଼ ଲୋକଙ୍କୁ ଡ଼କାଇ ନିଜର ପବ୍ଲିସିଟି କରିବା ସେମାନଙ୍କର ଅଭିପ୍ରାୟ ।

ଅନ୍ୟଜଣେ ହସି ହସି କହିଲା..."ହଁ, ପବ୍ଲିସିଟି କରିବାତ ଏ ପ୍ରକାର ନେତା ମାନଙ୍କର ମନୋପଲି ହୋଇ ଗଲଣି । ବଡ ବଡ଼ ସାହିତ୍ୟିକ କଳାକାର ଓ ବୈଜ୍ଞାନିକ ମାନଙ୍କର କନ୍‌ଫରେନ୍‌ସ ଡ଼ାକନ୍ତି । ଏ ପ୍ରକାର ସମାବେଶରେ ନିଜେ ପଦେ ଦ୍ୱି' ପଦ କହନ୍ତି । ଖବର କାଗଜରେ ଦେଖିଲା ବେଳକୁ କେବଳ ସେମାନଙ୍କର ବକ୍ତୃତା, ଫଟୋ ପ୍ରକାଶ ପାଇଛି । ବିଚରା କଳାକାର ବା ବୈଜ୍ଞାନିମାନଙ୍କୁ କିଏ ପଚାରେ । ସେମାନଙ୍କର ନାମ ପର୍ଯ୍ୟନ୍ତ ଉଲ୍ଲେଖ ହୁଏନା ।

...ଆପଣ ମାନେ ଏମାନଙ୍କୁ ସହଯୋଗ କାହିଁକି କରୁଛନ୍ତି ? ଶଳାଙ୍କୁ ଠେଙ୍ଗା ଦେଖାନ୍ତୁ । ଏଇ ଯେ ନେତା, ଉପନେତା ମାନେ ନିଜକୁ ବଡ଼ ବୋଲି ଦେଖାଇ ହେଉଛନ୍ତି ସେମାନଙ୍କୁ ବାଚ୍ଛଂଦ କରନ୍ତୁ । ତାକୁ ଉପଯୁକ୍ତ ମଣିଷ ।

...ସଜ୍ଜନ ତ କହିଥିଲା ଯେ, ବସ୍ତି ଲୋକଙ୍କୁ କଳାକୃତିର ମହତ୍ତ୍ୱ ବୁଝାଇ ଦିଆଯିବ ବୋଲି, ଗୋଟିଏ ଗୋଟିଏ ଚିତ୍ର ସହିତ କାର୍ଡ଼ ଲଗାଇ ଚିତ୍ର ଗୁଡ଼ିକର ଅଭିବ୍ୟକ୍ତ ପ୍ରାଞ୍ଜଳ କରିଦିଆଯିବ ବୋଲି ସେ କହିଥିଲା । କିନ୍ତୁ କାହିଁ ?

......ହଁ ଆଜ୍ଞା, ସେଇଆ ତ ହେବାର ଥିଲା, କିନ୍ତୁ ଆମକୁ କିଛି କହିବାର ସୁଯୋଗ ମଧ୍ୟ ଦିଆ ହେଲା ନାହିଁ । ଯେ ପର୍ଯ୍ୟନ୍ତ ଚିତ୍ର ଗୁଡ଼ିକ ପାଇ ନଥିଲେ ସେ ପର୍ଯ୍ୟନ୍ତ ଖୁସାମଦ କରୁଥିଲେ । ପାଇବା ମାତ୍ରେ......"

ଅନ୍ୟଜଣେ ନମ୍ର କଣ୍ଠରେ କହିଲା..."ସ୍କାଣ୍ଡୁ ସ୍ୟାଣ୍ଡୁ ବକନାହିଁ । ପାଖ ଘରେ ବଡ଼ ବଡ଼ ଲୋକମାନେ ଅଛନ୍ତି ।

......ରକ୍ଷା ହେବା ତମର ବଡ଼ ବଡ଼ ଲୋକଙ୍କୁ । ଏଇ ଶଳା ବଡ ଲୋକଙ୍କ ପାଇଁ ଆମର କଳାକୁ ଅପମାନ କରାଯିବା କନ୍ୟା କହିଲା......"ଆମେ ପ୍ରଦର୍ଶନୀ ପାଇଁ ଅନ୍ୟ ଏକ ସ୍ଥାନ ଠିକ କରିଛୁ । ଏଇ ପାଖାପାଖି । ସେଠାରେ ଆମେ ସବୁ ପ୍ରକାର ବନ୍ଦୋବସ୍ତ କରିଛୁ । ଯଦି ଏମାନେ ଆମର ଚିତ୍ର ଗୁଡ଼ିକ ଏଭଳି ଜବରଦସ୍ତି ରଖି ନଥାନ୍ତେ ତେବେ ଏଠାରେ ନହୋଇ ସେଠାରେ ହୋଇଥାନ୍ତା । "ହରଏକନସଲେନୀ" ଦ୍ୱାରା ନହୋଇ କେଉଁ କଳାକାର ଦ୍ୱାରା ହୋଇଥାନ୍ତା । ଯଦି ଆପଣମାନେ ଏ ବିଷୟରେ ଏକମତ ଥାନ୍ତୁ ତେବେ ଏଇ ମୁହୂର୍ତ୍ତରେ ଏ ଚିତ୍ର ଗୁଡ଼ିକୁ କାଢ଼ି ଦିଅନ୍ତୁ ....।

ଚାରିଆଡ଼େ ସେଇ ଗୋଟିଏ ଗୁଞ୍ଜନ ଶୁଭିଲା "କାଢ଼ିଦିଅ ସବୁ ଚିତ୍ର କାଢି ଦିଅ"..... ...।

ଶିଳ୍ପୀମାନେ ଏତେ ବେଶୀ ଉତ୍ତ୍ୟକ୍ତ ଥିଲେ ଯେ ଚିତ୍ରଗୁଡ଼ିକ କାଢ଼ିବାକୁ ଲାଗିଲେ । ଦର୍ଶକମାନଙ୍କ ମଧ୍ୟରୁ କେତେଜଣ ମଧ୍ୟ ସହଯୋଗ କରିବାକୁ ଆଗେଇ ଆସିଲେ । ଏହି ସମୟରେ ଲାଲଜାନକୀ ଶରଣର ଦୁଇପୁଅ ପୁଲିସ ସହିତ ପ୍ରଦର୍ଶନୀ ଗୃହକୁ ପଶି ଆସିଲେ ।

......ଖବରଦାର, କେହି ଯେପରି ଚିତ୍ର ଗୁଡ଼ିକରେ ହାତ ନଦିଅନ୍ତୁ ।

ଜାନକୀ ଶରଣଙ୍କ ଏ ପୁଅ ଦ୍ୱିଜଙ୍କ ହୁଙ୍କାର ସିଂହ ମେଳରେ ବିଲୁଆ ବୋବାଳି ଭଳି ଶୁଭିଲା । ପରିଣାମ ବି ସେଇଆ ହେଲା । ଶିଳ୍ପୀମାନେ ଖୁବ୍ ରାଗିଗଲେ । ସେମାନଙ୍କ ସାଙ୍ଗକୁ ଅନେକ ଯୁବକ ଦର୍ଶକ ବି ଉତ୍ତେଜିତ ହୋଇ ଉଠିଲେ, ହଲଭିତରେ କ୍ରୋଧର ହୁଙ୍କାର ଉଠିଲା ।

ପାଖଘରେ ଗ୍ରୀନ୍ ପର୍ଦ୍ଦା ସରିବା ପୂର୍ବରୁ ଏ ପ୍ରକାର ହଟ୍ଟଗୋଳ ଆରମ୍ଭ ହୋଇଗଲା । ରାଜାସାହେବ, ହାଲସରାମ, ଜାନକୀ ଶରଣ ... ... ସମସ୍ତଙ୍କ ମିଜାଜ ବିଗିଡ଼ିଗଲା । ଆମନ୍ତ୍ରିତ ଅତିଥୀ ବର୍ଗ ଫୁସ୍ ଫାସ୍ ହେବାକୁ ଲାଗିଲେ ।

କନ୍ୟା ପ୍ରଦର୍ଶନୀ ଗୃହରେ ଜନତାର ପ୍ରତିନିଧି ରୂପେ ଅଗ୍ନିବର୍ଷୀ ଭାଷଣ ଦେଉଥାଏ । ବାତାବରଣ ଖୁବ୍ ଉତ୍ତେଜିତ ଥାଏ । ସମସ୍ତ କଳାକାର ବନକନ୍ୟାକୁ ସମର୍ଥନ କରିଥାଆନ୍ତି, ସେ କହୁଥାଏ ଯେ ଯଦି ଏ ଚିତ୍ରଗୁଡ଼ିକୁ ସାଙ୍ଗରେ ନେଇ ଯିବାକୁ ଏମାନେ ବାଧା ଦେଇ ଉପରୋଧ କରନ୍ତି ତେବେ କାଲି ସଂଗଠିତ ହୋଇ ସମସ୍ତ କଳାକାର ଏ ଏ ବୁର୍ଜୋୟା ଗୋଷ୍ଠୀ ବିରୁଦ୍ଧରେ ସ୍ୱରଉତ୍ତୋଳନ କରିବେ । ସମ୍ବାଦ ପତ୍ର ଓ ଅନ୍ୟାନ୍ୟ ପ୍ରଚାର ମାଧ୍ୟମରେ ଏମାନଙ୍କୁ ଅପମାନ କରାଯିବ । ... ... ଡାକ, ପୁଲିସକୁ ଡାକ ବା ଆଉ କାହାକୁ ଡାକ । ଏ ଚିତ୍ର ସବୁକୁ ଏଠାରୁ ହଟାଇ ନିଆ ଯିବାର କେହି ପ୍ରତିବନ୍ଧକ ହୋଇ ପାରିବେନି । ଏ ଚିତ୍ର ଏଠାରୁ ଯିବ ଅଥବା ଆମର ଲାଶ୍ ଏଠାରୁ ଯିବ ।"

କନ୍ୟାର ଏ ଉତ୍ତେଜିତ ଘୋଷଣା ସଙ୍ଗେ ସଙ୍ଗେ କର୍ଣ୍ଣେଲ ଦୁଇଜଣ ଯୁବକଙ୍କୁ ସାଙ୍ଗରେ ଧରି, ସିଡ଼ି ଦେଇ ପହଞ୍ଚିଲେ । "ହିଜଏକସଲେନସୀ" ସେ ସମୟରେ ବିଦାୟ ନେଇ ଯିବାକୁ ବସିଥାନ୍ତି । ତାଙ୍କ ସାଙ୍ଗରେ 'ଗଣ୍ୟମାନ୍ୟ' ବ୍ୟକ୍ତିଙ୍କ ଶୋଭା ଯାତ୍ରା ମଧ୍ୟ ଚାଲିଥାଏ । ସେମାନଙ୍କ ଭିତରେ ଯାଉଥିବା ଲାଲଜାନକୀ ଶରଣଙ୍କୁ ଲକ୍ଷ୍ୟକରି କର୍ଣ୍ଣେଲ କହିଲେ "ଛବି ଗୁଡ଼ିକ ନେଇଯିବାକୁ ଦିଅ, ଏ ପୁଲିସ ବାଲାଙ୍କୁ ବାହାରକୁ ହଟାଇ ଦିଅ । ନ ହେଲେ ଟ୍ରିମିଟ ଖେଳରୁ ମହାଭାରତ ସୃଷ୍ଟି ହେବ । ଇଲେକସନ ଭୁଙ୍ଗ ଛୁଟିଯିବ ।"

ରାଜାସାର ଦ୍ୱାରକାଦାସ, ଲାଲଜାନକୀ ଶରଣ, କୁଟିଳ ଦୃଷ୍ଟିରେ କର୍ଣ୍ଣେଲଙ୍କୁ ଚାହିଁ ଚାହିଁ ବାହାରକୁ ଚାଲିଗଲେ । କର୍ଣ୍ଣେଲ ତାଙ୍କ ଘରେ ବିଭିଷଣ ଭଳି ରାମଙ୍କର ପରାମର୍ଶ ଦାତା ହୋଇଛନ୍ତି । କନ୍ୟା ଉତ୍ତେଜିତ ବାତାବରଣକୁ ଶାନ୍ତ କରି ଏକ ରଚନାତ୍ମକ ରୂପ ଦେବାକୁ ଯତ୍ନ କରୁଥାଏ । କାନ୍ଥରୁ ଓହ୍ଲାଇ ଦିଆଯାଇଥିବା ଛବିଗୁଡ଼ିକ ଯେପରି କେଉଁ ଗାଏବ ନହୁଏ ସେଥିପ୍ରତି ସେ ତୀକ୍ଷ୍ଣ ଦୃଷ୍ଟି ରଖିଥାଏ ।

ସମସ୍ତ ଚିତ୍ର ଓହ୍ଲାଇ ଦିଆଗଲା । ପୁଲିସ ବା ଜାନକୀ ଶରଣର ଲୋକମାନେ କେହି ହସ୍ତକ୍ଷେପ କଲେନାହିଁ । ସମସ୍ତ ଶିଳ୍ପିମାନେ ମୂଲିଆ ଭଳି ସେଗୁଡ଼ିକୁ ବାହାରକୁ ବୋହି ଆଣିଲେ । ଜାନକୀଶରଣର ଘରୁ ବାହାରୁ ବାହାରୁ କର୍ଣ୍ଣେଲ ଘୋଷଣା କଲେ "ଭାଇମାନେ ... ... କାଲି ସନ୍ଧ୍ୟାକୁ ଦେଠେଇଙ୍କ ଘରେ" ଉଦ୍‌ଘାଟନ ଉତ୍ସବ ହେବ ।"

ପ୍ରଦର୍ଶନୀର ଅସଫଳତାରେ ଲଜ୍ଜାରେ ଅବନତ ହୋଇ ସଜ୍ଜନ ସମସ୍ତଙ୍କ ଅଲକ୍ଷ୍ୟରେ ଆଗରୁ ସେ ସ୍ଥାନ ଛାଡ଼ି ଯାଇଥିଲେ ।

# ତେଇଶି

କର୍ଣ୍ଣେଲ ଘରେ ରାତି ବାରଟା ପର୍ଯ୍ୟନ୍ତ ପ୍ରଦର୍ଶନୀକୁ ସଫଳ କରିବାର ଆୟୋଜନ, ଆଲୋଚନା ଚାଲିଥାଏ, କନ୍ୟା ବି ସେଠାରେ ଥାଏ । ପ୍ରଦର୍ଶନୀକୁ ପୁନଶ୍ଚ ଉଦ୍‌ଘାଟନ କରାଯିବ ... ... ଏଇ କଥା ସ୍ଥିର ହେଲା । କୌଣସି ମାଟିକାମ କରୁଥିବା ବିଧବା ଦ୍ୱାରା ପ୍ରଦର୍ଶନୀ ଉଦ୍‌ଘାଟନ କରାଯାଏ ବୋଲି ଯୁବ ଚିତ୍ରକାର ମଦନ ପ୍ରସ୍ତାବ ଦେଲା । ସେ କହିଲା ଯେ ତା'ର ଏକକ ଚିତ୍ର ପ୍ରଦର୍ଶନୀର ଉଦ୍‌ଘାଟନ ଗତବର୍ଷ କେଉଁ ଲାଟ, ଗଭର୍ଣ୍ଣର ବା ମନ୍ତ୍ରୀଙ୍କ ଦ୍ୱାରା କରାଇ ନଥିଲା, ଲକ୍ଷ୍ନୌର ଖେଳନା ତିଆରି କରୁଥିବା ଶ୍ରୀରେବତୀ ରାମ ଦ୍ୱାରା କରିଥିଲା । ଉଦ୍‌ଘାଟନ ଉତ୍ସବରେ ଡକ୍ଟର ରାଧା କମଲ ମୁଖାର୍ଜୀ ଉଦ୍‌ଘାଟନ ଭାଷଣ ଦେଇଥିଲେ । ଏ ପ୍ରଦର୍ଶନୀ ପାଇଁ ଏଭଳି ଅଭିନବ ଉଦ୍‌ଘାଟନ କରାଗଲେ ଭଲ ହୁଅନ୍ତା ବୋଲି ମଦନ ଯୁକ୍ତି କରିଥିଲା । ଅନ୍ୟମାନଙ୍କୁ ବିଶେଷତଃ କନ୍ୟା ଓ କର୍ଣ୍ଣେଲ ମନକୁ ପ୍ରସ୍ତାବଟି ପାଇଗଲା । ଏହି ଅନୁରୂପ ଉଦ୍‌ଘାଟନ ସମାରୋହର ପ୍ଲାନ ପ୍ରସ୍ତୁତ କରାଗଲା । ଇଉନିଭରସିଟିର ପ୍ରଫେସର, ସାହିତ୍ୟିକ, ସାମ୍ବାଦିକମାନଙ୍କୁ ସମାଦାର କରି ଆଣିବାକୁ ସ୍ଥିର କରାଗଲା । କାରଣ କର୍ଣ୍ଣେଲ ଜାଣିଥିଲା ଯେ ଜାନକୀ ଶରଣ, ସାଲିଗ୍ରାମ ଇତ୍ୟାଦି ଆଜିର ପ୍ରତିଶୋଧ କାଲି ଅବଶ୍ୟ ନେବେ ।

ରାତିରେ କର୍ଣ୍ଣେଲ ଓ କନ୍ୟା ଦୁହେଁ ବସି ଏଇସବୁ କଥା ଆଲୋଚନା କରୁଥିଲେ । କନ୍ୟା ଦ୍ୱିଧାଗ୍ରସ୍ତ ହେଉଥାଏ ! ସଜ୍ଜନ ପ୍ରତି ତାର ଧ୍ୟାନ ଟାଣି ହୋଇ ଯାଉଥାଏ । କର୍ଣ୍ଣେଲ କଥା ପ୍ରସଙ୍ଗରେ ଏହା ଥରେ ଦୁଇଥର ଲକ୍ଷ୍ୟ କରିଛି, ମାତ୍ର ଏ ସମୟରେ ସାଲିଗ୍ରାମ ଇତ୍ୟାଦିଙ୍କ ସାଙ୍ଗରେ ଟକ୍କର ଦେବାର ନକଶା ତିଆରି କରିବାରେ ସେ ଏତେ ପରିମାଣରେ ଅଭିଭୂତ ଥିଲା ଯେ କନ୍ୟାର ମନୋଭାବ ପ୍ରତି ଧ୍ୟାନ ଦେବାକୁ ତା'ର ସମୟ ନଥିଲା । ଗୋଟିଏ ପରେ ଗୋଟିଏ ସ୍କିମ ତିଆରି ହେଉଥାଏ, ଦୁଇଟି ଲାଉଡ୍‌ସ୍ପିକର ମଧ୍ୟ ଲାଗିଥାଏ । ଗୋଟିଏ ଘର ଭିତରେ ଅନ୍ୟଟି ଘର ବାହାରେ । ବୁଦ୍ଧିଜୀବୀ, ପ୍ରଫେସର, ସାହିତ୍ୟିକ, କଳାପ୍ରେମୀ, ଓକିଲ, ଡାକ୍ତର ସମସ୍ତେ ବକ୍ତୃତା ଦେବେ । ସେମାନେ ପ୍ରଦର୍ଶନୀ ସଂପର୍କରେ ମନ୍ତବ୍ୟ ଦେବେ ଯାହାଦ୍ୱାରା ଜନତା ଉପରେ କିଛି ପ୍ରଭାବ ପଡ଼ିବ । ମଝିରେ ମଝିରେ ଭଜନର ରେକର୍ଡ଼ ମଧ୍ୟ ଲାଗିବ । ଅଚାନକ କର୍ଣ୍ଣେଲ ମନରେ ଗୋଟିଏ ନୂଆ ଆଇଡ଼ିଆ ହେଲା, ସେ ପାଟିକରି କହିଲା ... ... ବନ୍ଦୋ ଲକ୍ଷେଟଙ୍କୋ ମୁଣ୍ଡର ଆଇଡ଼ିଆ ଆସିଛି । କାଲିଠାରୁ ତିନିଦିନ ଧରି ପ୍ରଦର୍ଶନୀ ଚାଲିବ । ମୁଁ ତିନିଦିନ ଧରି ପିଲାଙ୍କୁ ମିଠାଇ ବାଣ୍ଟିବାର ବ୍ୟବସ୍ଥା କରିଛି । ଅତିବେଶୀ

ହେଲେ ୫/୬ଶହ ଟଙ୍କା ଲଗିବ, ଆରେ ସ୍ବଉଜଣ ବଡ଼ ଲୋକଙ୍କୁ ମିଠାଇ ଦେଲେ କିଏ ଜାଣିବ । ପିଲମାନେ ମିଠେଇ ପାଇଲେ ଗଳା କନ୍ଧରେ ଯଶଗାନ କରିବେ ।...... ତୁ କଣ ଭାବୁଛୁ ?”

...... ନା, ମୁଁ କିଛି ଭାବୁନି । ମୁଁ ତ ଆପଣଙ୍କ କଥା ଶୁଣୁଛୁ, ଭଲ ହେବ ଯେ ପାଞ୍ଚ ଛ'ହଜାର ପିଲଙ୍କୁ ମିଠାଇ ବାଣ୍ଟିବାରେ ଯେଉଁ ଖର୍ଚ୍ଚ ...... ।”

...... ଶୁଣ୍ ହେଲୋ, ଏ ବିଷୟରେ ସନ୍ଜନର ଚିନ୍ତା କରିବାରେ କିଛି ନାହିଁ । ମୁଁ ତୋତେ ଆଜିର ଏ ଘଟଣାର ପ୍ରତିକ୍ରିୟା ସମ୍ପର୍କରେ ପୁଣି ପୁଣି ଗୋଟିଏ ଚିଠି ଦେଉଛି ଶୁଣ, ପ୍ରଦର୍ଶନୀରୁ ମୁନ୍ଦି ଲୁଗ୍ଭଇ ସେଣ୍ଟରଙ୍କ ଭଲ ନବାବ ପୁତ୍ରମାନେ ପଳେଇ ଛନ୍ତି । କିଛି ସମୟ ପରେ ସେମାନେ ସଡ଼କ ଉପରେ ରେମ୍-ଡ୍ରାଇଙ୍ଗି କରିଥିବେ । ତା'ପରେ ମଦ ଖାଇ ଘରକୁ ଯାଇ ସ୍ତ୍ରୀଙ୍କ ଉପରେ କିଛି ଗୋଟାଏ ବାହାନା କାଢ଼ି ବିଗିଡ଼ି ଥିବେ ।

...... ହଁ ମୁଁ ବି ବେଳେ ବେଳେ ପିଇଦିଏଁ, ଅବଶ୍ୟ ଏଟା ଗୋଟାଏ ଖରାପ ଅଭ୍ୟାସ, କଥା ହେଉଛି ମୁଁ ବହୁତ ବୟସ ପର୍ଯ୍ୟନ୍ତ ଅଭିବାହିତା ରହିବାର ମତଲବରେ ଅଛି । ଏଥିରେ ବଡ଼ଙ୍କୁ ଅଭ୍ୟାସକୁ ଆପଣାର କରିବାକୁ ପଡ଼େ । ସନ୍ଜନ ଭିତରେ ବି ଏଇଭଳି କେତେକ ବଦ୍‌ଗୁଣ ରହିଛି । ଏମନ୍ତ ବଦ୍‌ଗୁଣ କାହାର ନାହିଁ କହିଲ ? ଏଥିରେ ତୋ'ର ଖରାପ ଭାବିବାରେ କିଛି ନାହିଁ ।”

...... ନା, ମୋର ଏଥିପାଇଁ କିଛି ଅଭିଯୋଗ ନାହିଁ । ଆପଣଙ୍କ ପାଞ୍ଚ ଛ' ହଜାର ପିଲଙ୍କୁ ମିଠାଇ ବାଣ୍ଟିବା ପ୍ଲାନ୍ କରୁଥିଲେ ......”, କର୍ଣ୍ଣେଲ ହସିଲ କହିଲ “ପାଞ୍ଚ ଛ' ହଜାର ପିଲଙ୍କୁ ମୁଁ ମିଠାଇ ବାଣ୍ଟିବି ଏବେ ନୁହେଁ । ତୋ' ବାହାଘର ଦିନ, ଏବେ ମାତ୍ର ହଜାର ଦୁ' ମିଠାଇ ବାଣ୍ଟିବାର ସ୍କିମ୍ କରୁଛି ।

କଥା ଏମିତି ଚାଲିଥାଏ, ହଠାତ୍ ଟେଲିଫୋନର ଘଣ୍ଟି ବାଜିଲା । ଜଗନ୍ନାଥ ସ୍ବାଇଁ, ହରଖଗୃହ ଯନ୍ତ୍ରୀ ଫୋନ୍ କରିଥିଲା । ତା'କଥାରୁ ଜଣାଗଲା ଯେ “ରାଜା ସାହେବ କର୍ଣ୍ଣେଲ ଓ ସନ୍ଜନ ଉପରେ ଭୟଙ୍କର ବିଗିଡ଼ି ଯାଇଛନ୍ତି । ଅଳ୍ପ ସମୟ ପୂର୍ବରୁ ତାଙ୍କ ଦରବାରରେ ଯେଉଁ ବୈଠକ ହୋଇଥିଲା ସେଥିରେ କେତେକ ବଡ଼ବଡ଼ ଲୋକଙ୍କ ବ୍ୟତୀତ ସାଲିଗ୍ରାମ ଓ ଜାନକୀଶରଣ ଉପସ୍ଥିତ ଥିଲେ । ତୁମମାନଙ୍କ ବିରୋଧରେ ଅଭିଯୋଗ ଯେ ତୁମମାନଙ୍କର ଚାଲିଚଳନ ଠିକ୍‌ନୁହେଁ । କେଉଁ ଗୋଟାଏ କମ୍ୟୁନିଷ୍ଟ ଝିଅକୁ ରଖିଛ, ତୁମେମାନେ କମ୍ୟୁନିଷ୍ଟ ପାର୍ଟିରେ ସାମିଲ ହୋଇଛ । ଏଥିପାଇଁ କାଲି ଯେଉଁ ସମୟରେ ତୁମର ପ୍ରଦର୍ଶନୀ ହେବ, ସେତିକି ବେଳେ ଲାଲ ଜାନକୀଶରଣର ଘର ସାମନା ଚଉତରା ଉପରେ ଲାଉଡ୍‌ସ୍ପିକର ଲଗାଇ ସ୍ବଉଜଣ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ବୈଠକ

କରି ତୁମମାନଙ୍କର ଖରାପ ଆଚରଣ ସମ୍ପର୍କରେ ପ୍ରଚାର କରାଯିବ । ପୁଣି ଅଳ୍ପଦିନ ତଳେ ସଜ୍ଜନ କୋଠରୀରେ ଯେଉଁ ବ୍ୟଭିଚାର (ଚିତ୍ରା ଓ ସଜ୍ଜନଙ୍କୁ ନେଇ) ହୋଇଥିଲା ସେ ସମ୍ପର୍କରେ ମଧ୍ୟ କୈଫିୟତ ମଗାଯିବ । ଯେ ହେତୁ ରାଜାସାହେବ ଏ ଘଟଣାରେ ଆଗ୍ରହୀ ଓ ସକ୍ରିୟଭାବେ ଅଂଶ ଗ୍ରହଣ କରିବେ ତେଣୁ ଲୋକଙ୍କ ମନରେ ଏହାର ପ୍ରଭାବ ଗଭୀର ଭାବେ ପଡ଼ିବ । ରାଜାସାହେବ ନିଜେ ଅବଶ୍ୟ କାଲିର ସେ ମିଟିଂକୁ ଯାଉ ନାହାନ୍ତି, ତେବେ ତାଙ୍କର ପ୍ରିୟପରିଜନ ଓ ମାନ୍ୟଗଣ୍ୟ କେତେ ଜଣଙ୍କୁ ଏଥିପାଇଁ ଫୋନ୍‌କରି ମିଟିଂରେ ଉପସ୍ଥିତ ହେବାକୁ କହୁଛନ୍ତି ।”

କର୍ଣ୍ଣେଲ ଗମ୍ଭୀର ହୋଇ ସବୁ ଶୁଣୁଥାଏ, ଶେଷରେ ସେ କହିଲା – ଦେଖନ୍ତୁ ଜଗତ ବାବାଜୀ, ଆମ ମନରେ କି ପ୍ରକାର ଭାବ ଅଛି ସେ କଥା ଭଗବାନଙ୍କୁ ଜଣା । ମୋ ମନରେ ଏ ଝିଅକୁ ନେଇ ଯଦି କିଛି ପାପ ରହିଥାନ୍ତା ତେବେ ଦାଦା ଗୁରୁଜୀ”ଙ୍କ ଚରଣ ଭେଟିବା ସମ୍ଭବ ହୁଅନ୍ତା ନାହିଁ । ମୁଁ ବଦଗୁଣକୁ ଡରେ, ମାତ୍ର ବଦନାମକୁ ମୋର ଟିକେ ଖାତିର ନାହିଁ ।”

ପରୀକ୍ଷିତ ଗମ୍ଭୀର ହୋଇ ଉଠିଲା । କନ୍ୟାକୁ ଯଦିଓ କର୍ଣ୍ଣେଲ ସମସ୍ତ କଥା କହିଲାନି ତଥାପି ପରୀକ୍ଷିତ ତା' ଆଗରେ ପରିଷ୍କାର ହୋଇଗଲା । କନ୍ୟାର ମୁହଁ କ୍ରୋଧ ଓ ଲଜ୍ଜାରେ ଲାଲ ହୋଇ ଉଠିଲା । କର୍ଣ୍ଣେଲ ହସି ହସି କହିଲା “ଭଗବାନ ଯାହା କରନ୍ତି ସମସ୍ତଙ୍କ ମଙ୍ଗଳ ପାଇଁ କରନ୍ତି । ଏବେ ମନେ ହେଉଛି ଯେ ରାଜାସାହେବଙ୍କ ଜାତକରେ ଅପଦସ୍ତ ହେବାର ଯୋଗ ଅଛି । ଏ ପର୍ଯ୍ୟନ୍ତ ସାଳଗ୍ରାମର ନେତାଗିରି ଛଡ଼ାଇବାକୁ ବସିଥିଲେ ଏବେ ରାଜାସାହେବଙ୍କ “ଜମିଦାରି ସାଙ୍ଗରେ ବାଜି ଲଗାଇବାକୁ ପଡ଼ିବ । ଆମେ ସାଦାସିଧା ବାଟରେ ଚାଲୁଁ । ଏମାନେ ଯେଉଁଠି କୁଞ୍ଚି ଗଳେଇବାକୁ ବାଟ ନାହିଁ ସେଠି ଶାବଳ ପୂରାଇବାକୁ ବସୁଛନ୍ତି । ମୁଁ ଏ ପର୍ଯ୍ୟନ୍ତ ଏଭଳି ବେକୁବ୍ କାମ କରିନାହିଁ । ମଣିଷର ଚାଲିଚଳଣିରୁ ତା'ସହିତ ଆଚାର ବ୍ୟବହାର ନିର୍ଦ୍ଧିଷ୍ଟ ହୋଇଥାଏ । ଠିକ୍ ଯେମିତି ରୋଗୀଚିହ୍ନ ଦେଖି ଡାକ୍ତର ପ୍ରେସକ୍ରିପସନ ଲେଖେ । ଜାଣ ବନ୍ଧୋ, ମୁଁ ଏ ପରିସ୍ଥିତିରେ କ'ଣ କରିବାକୁ ଯାଉଛି ? କାଲି ସକାଳୁ ତୋତେ ଓ ତୋର ଭାଉଜକୁ ପ୍ରଦର୍ଶନୀର ନିମନ୍ତ୍ରଣ ପତ୍ର ଦେଇ ସବୁ ବଡ଼ ବଡ ଲୋକଙ୍କ ନିକଟକୁ ପଠାଇବି । ... ... କିଏ କହିବ ...... ସଜ୍ଜନ ଦ୍ୱାରା ସାଗ ଶିଝିବ ନାହିଁ । ...... ମୁଁ ମହୀପାଳକୁ ସକାଳୁ ସକାଳୁ ଟେଲିଗ୍ରାମ କରି ଡକାଉଛି । ବନ୍ଧୋ, ମୋ ନାମରେ ଗୋଟିଏ ଲେଖା ଖବର କାଗଜରେ ଛାପି ଦେ” । ମୁଁ ତୁମମାନଙ୍କୁ ମୋ ମନର କଥା ସବୁ ବତାଇ ଦେବି ... ...”

କନ୍ୟା ଭାବନାରେ ବୁଡ଼ି ଯାଇଥିଲା, ପୁଣିଥରେ ଧକ୍କା ଖାଇବାର ଦୁର୍ଘଟଣା ଆସୁଛି । ତା'ର ମନ ଯେପରି କହୁଥିଲା ସେ ସଜ୍ଜନକୁ ହଜେଇ ବସିଛି । ସଜ୍ଜନ ତା

ଜୀବନରେ ଅଭିଶାପ ଭଳି ଉଦୟ ହୋଇଛି ଯେପରି । ନିଜେ ଅନାସକ୍ତ ରହିବା ଉପରେ କେତେ ଗର୍ବ କରୁଥିଲି ... ... ଅଥଚ ଆଜି ଯେପରି ସେ ଧୋକ୍କା ଖାଇଛି ।

— — —

ପ୍ରଦର୍ଶନୀ ସଙ୍ଗେ ସଙ୍ଗେ ମହିଳା ସମାବେଶ ସଫଳତାର ସହିତ ଅନୁଷ୍ଠିତ ହେଲା, ଏ ଅପୂର୍ବ ସଫଳତା ରାଜାସାହେବ, ବାବୁ ସାଲିଗ୍ରାମ ଓ ଲଲିଜାନକୀ ଶରଣଙ୍କ ମୁହଁ ଉଜଳ କରିଦେଲା । ଜନସଂଘ, ପ୍ରଜା ସୋସାଲିଷ୍ଟ, କମ୍ୟୁନିଷ୍ଟ ଆଦି ସମସ୍ତ ବିରୋଧୀ ଦଳଙ୍କୁ କଂଗ୍ରେସ ବିରୋଧରେ ପ୍ରଚାର କରିବା ପାଇଁ ଗୋଟାଏ ସୁଯୋଗ ମିଳିଗଲା । ବନକନ୍ୟା ବାପାର ଷିରଫ୍ ଦ୍ୱାରା ବନକନ୍ୟା ଓ ସଜ୍ଜନ ଦୁହିଁଙ୍କ ମଧ୍ୟରୁ ଯାହା ଓ ଏଥିପାଇଁ ପ୍ରମାଣ ସଂଗ୍ରହର ରୋଚକ ଓ ରୋମାଞ୍ଚକର କଥା ଯାହା ବନକନ୍ୟା ଓ ସଜ୍ଜନଙ୍କୁ ଜଣାନଥିଲା ତାହା ବିରୋଧୀ ଦଳ ପକ୍ଷର ପ୍ରଚାର କରାଗଲା । ଅପବାଦର ଦୁନିଆରେ ନିର୍ବାଚନ ଅବହାଓ୍ୱାରେ ସଜ୍ଜନ ଓ ବନକନ୍ୟା ଦୁହେଁ ୧୯୫୨ ମସିହାର ଲଇଲା ମଜନୁ ହୋଇଗଲେ । କର୍ଣ୍ଣେଲ ମଧ୍ୟ ଗୁପ୍ତଭାବେ ଲାଉଡ୍ ସ୍ପିକର ଧରି ନିଜର ନିରପେକ୍ଷ ପ୍ରଚାର ଚଳାଇଥାଏ ......

"ଆମେ କେବଳ ନାରୀ ଜାତି ଉପରେ ହେଉଥିବା ଅତ୍ୟାଚାର ବିରୋଧର ସ୍ୱର ଉଠାଉଛୁଁ । ଆମେ ଏ ନିର୍ବାଚନ ଅବକାଶରେ ସଚେତନ ରହିବା ଉଚିତ୍ । ଏ ନିର୍ବାଚନରେ ଯେଉଁ ଉଦ୍ଦେଶ୍ୟ ନିହିତ ଅଛି ତାହା ଜନତା ଦ୍ୱାରା ଏବଂ ଜନତାର ଅଭିଲାଷ ପୂର୍ତ୍ତି ନିମନ୍ତେ ସଫଳ ହେଉ । ଏତିକ ଆମର ନିବେଦନ ।"

ତୃତୀୟ ଦିନ ସାଲିଗ୍ରାମର ପ୍ରଚାର ବ୍ୟବସ୍ଥାରେ ମଧ୍ୟ ପରିବର୍ତ୍ତନରେ ମଧ୍ୟ ଘଟିଲା । ଓ୍ୱାଡ଼ରେ ଦୁଇଜଣ ମନ୍ତ୍ରୀଙ୍କ ପ୍ରଚାର ଗାଡ଼ିକୁ ଘେରାଉ କରି ଲୋକମାନେ ଗାଳି ଆରମ୍ଭ କରିଦେଲେ । ବାତାବରଣ ଉତ୍ତେଜିତ ହେବାକୁ ଲାଗିଲା ।

ଶେଠ୍ ରୂପରତନ ଓ ଜଣେ ମନ୍ତ୍ରୀ ମହୋଦୟ କର୍ଣ୍ଣେଲ, ସଜ୍ଜନ, ବାବୁ ସାଲିଗ୍ରାମ ଓ ଲଲିଜାନକୀ ଶରଣଙ୍କ ମଧ୍ୟରେ ଏକ ବୁଝାମଣା କରିବା ପାଇଁ ରାତ୍ରି ଭୋଜିର ଆୟୋଜନ କଲେ । ସଜ୍ଜନ ବହୁତ ଉତ୍ତେଜିତ ଥିଲା । ଚିତ୍ର ପ୍ରଦର୍ଶନୀ ଓ ମହିଳା ସମାବେଶ ଶେଷ ପରେ ସେ ନିଜକୁ ମୁକ୍ତ ମନେ କରିଛି । ଚରିତ୍ରରୂପୀ ଅସ୍ତ୍ର ଦ୍ୱାରା ତା'ର ଚେତନା ଆହତ । ଆତ୍ମିକ ଗ୍ଲାନିରେ ଅଭିଭୂତ ହୋଇ ସେ ଜଡ ପାଲଟି ଯାଇଥିଲା । ଚରିତ୍ରର କୁଟିଳ କଣ୍ଟକ ତାକୁ ପଥର କରି ଦେଇଛି । ତା'ର ପ୍ରିୟ ପରିଚାରକମାନେ ମଧ୍ୟ ଏଇ ଦୁଇଦିନ ହେଲା ତାର ମୁହାଁମୁହିଁ ହେବାକୁ ଭୟ କରୁଛନ୍ତି । ସେମାନେ ଲକ୍ଷ୍ୟ କରୁଛନ୍ତି ଯେ ତାଙ୍କ ମାଲିକର ମାନସିକ ଜଡ଼ତା ଆଗାମୀ ଝଡ଼ର ଝଙ୍କାର ଯେପରି ସୃଷ୍ଟି କରୁଛି । କିଛି ଜିନିଷର ଫରମାଇସ୍ ନାହିଁ । ମଦ ସିଗାରେଟ ଲୋଡ଼ା ନାହିଁନ୍ତି, ଗ୍ଲ' କଫି ବହୁତ

କମ୍ । ମାଲିକ ଅନେକ ସମୟ ଧରି ପଥର ଭଳି ବସି ରହୁଛନ୍ତି । ବଡ଼ଦବାନଜୀ କର୍ଣ୍ଣେଲ ଏଣେ ମେଳାରେ ବ୍ୟସ୍ତ ରହିବା ଯୋଗୁ ସେ ସଜ୍ଜନ ସାଙ୍ଗରେ ସାକ୍ଷାତ କରି ପାରୁ-ନଥିଲେ । କର୍ଣ୍ଣେଲ ଆଶ୍ୱାସ ଦେଇ କହିଲା ଯେ "ମୁଁ ସମୟ ପାଇଲେ ଯିବି, ଭାବିବାର କିଛି ନାହିଁ ।

......ଆଉତ କିଛି ନାହିଁ ସନ୍ଦେହ......କେବଳ ତାଙ୍କ ମୋଡ଼ ଉପରେ..." ଦବାନଜୀ ଚିନ୍ତିତ ସ୍ୱରରେ କହିଲେ ।

......ଆପଣ ଘର ଉପରେ ନଜର ରଖିଥିବେ ।

......ତା'ତ କରୁଛି । ତଥାପି......

......ଆପଣ ଯା'ନ୍ତୁ । ଏଥିରେ ଆଶଙ୍କା କରିବାର କିଛି ନାହିଁ । ମୁଁ ଠିକ୍ ଜାଣେ ଯେ ସଜ୍ଜନ କେବେହେଲେ ନିଜପାଇଁ କିଛି ଦୁର୍ଘଟଣା ସୃଷ୍ଟି କରିବ ନାହିଁ ।"

କର୍ଣ୍ଣେଲର ଗାଡ଼ି ଦିନ ଦଶଟାରେ କନ୍ୟାକୁ ନେଇ ସଜ୍ଜନର ଘରେ ଛାଡ଼ି ଦେଇ ଆସିଲା ।

କନ୍ୟା ସଜ୍ଜନର କୋଠରୀରେ ପଶିଥିଲା ସଜ୍ଜନ ସୋଫା ଉପରେ ବସି ସେତେ-ବେଳେ ସିଗାରେଟ୍ ଟାଣୁଥାଏ । କବାଟ ଖୋଲିବା ମାତ୍ରେ କନ୍ୟାକୁ ଦେଖି ସିଏ ଚମକି ପଡ଼ିଲା...ଟର୍ଚ୍ଚ ଲାଇଟ୍ ପଡ଼ିବା ମାତ୍ରେ ଚୋର ଯେମିତି ଅକସ୍ମାତ ଅପ୍ରତିଭ ହୁଏ...... ବିଚଳିତ ହୋଇ ସିଗାରେଟକୁ ହାତରେ ଧରି ଲୁଚାଇବାକୁ ଚେଷ୍ଟାକଲା । ସତେ ଯେପରି ସେ କିଛି ଗୋଟାଏ ଅପରାଧ କରୁ କରୁ ଧରା ପଡ଼ି ଯାଇଛି, ହାତ ତାର ତାତି ଗଲା । ସେତେବେଳକୁ ତା'ର ହୋଶ୍ ଆସିଲା କନ୍ୟା ହସି ହସି ତା' ଆଡ଼କୁ ଆସୁଛି, ବେଶ୍ ସହଜ, ସ୍ୱଚ୍ଛନ୍ଦ । ପାଖକୁ ଆସି ନିଜର କୋଟକୁ ସଜ୍ଜନ କୋଳକୁ ଫିଙ୍ଗ୍ ଦେଇ କହିଲା :—"ଏ ଆଜିକାଲି କେଉଁ ପ୍ରକାର ଆର୍ଟିଷ୍ଟିକ୍ ମୁଡ୍‌ର ଜୁଆର ଉଠୁଛି କି ?" ସଜ୍ଜନର ରୁଖିଆ ମୁଣ୍ଡରେ ହାତ ସଞ୍ଚାଳନ କରୁ କରୁ କନ୍ୟା ପୁଣି କହିଲା -"ତୁମର ଏ ଆର୍ଟିଷ୍ଟିକ ଓ ଆଚରଣ ଏବେ ଆଦୌ ପସନ୍ଦ କରିବାର ନୁହେଁ । ଏବେ ତୁମେ ମୋ ପାଇଁ କିଛି ତ୍ୟାଗକର ମୁଁ ତୁମ ପାଇଁ ସେହିପରି ଅନୁରୂପ ତ୍ୟାଗ କରିବି, ତେବେ ଯାଇଁ ଠିକ୍ ହେବ, କୁହ' କରିବତ ?

ସଜ୍ଜନର ଆଖି କନ୍ୟା ସାଙ୍ଗରେ ମିଳାଇବାକୁ ଅତି କୁଣ୍ଠିତ ବୋଧ କଲା । ସଜ୍ଜନର ଭିନ୍ନ ହୃଦୟର କନ୍ୟା ଆଖିରେ ଯେପରି ଭାରସାମ୍ୟ ଯାଞ୍ଚ କରୁଥିଲା । କନ୍ୟାର ଆଖି ବି ସଜ୍ଜନର ଦୁର୍ବଳ ସରଳ ଅଥଚ ଅଭିମାନୀ ଆଖି ଦୁଇଟି ଭିତରେ ନିଜର ସ୍ଥିତି ଖୋଜୁଥିଲା । କନ୍ୟା କହିଲା —:"ଏଇ ତିନି ଚାରିଦିନ ହେଲା ତୁମକୁ ମୁହୂର୍ତ୍ତିକ ପାଇଁ ବି

ଭୁଲିପାରି ନଥାଉ ଏମିତି କାର୍ଯ୍ୟବ୍ୟସ୍ତତା ତୁମର ଆଚରଣ ପ୍ରଥମେ ମୋତେ ବିବ୍ରତ କରିଥିଲା । କିନ୍ତୁ ମେଳା ଓ ସାମାଜିକ ପ୍ରତିଦ୍ୱନ୍ଦ୍ୱିତା ମୋ ଭିତରେ ନୂତନ ପ୍ରାଣ ସଞ୍ଚାର କରିଛି । ଆମେ ସମସ୍ତେ ଗୋଟିଏ ଉଦ୍ଦେଶ୍ୟରେ ଅଜସ୍ର ସଂଘର୍ଷ ସାମନା କରୁଛେ ।"

ବନକନ୍ୟା ସଜ୍ଜନର ଆତ୍ମଗ୍ଳାନି ଭରା ଜଡ଼ ମୁହୂର୍ତ୍ତିରେ ହଠାତ୍ ଶୃଙ୍ଖଳା ସୃଷ୍ଟି କଲା । ସେ ପ୍ରାଣ ପ୍ରାଚୁର୍ଯ୍ୟରେ ଭରା ଗୋଟିଏ ତରଙ୍ଗଭୂଲା ଯେପରି ବହି ଆସୁଛି । ତାର ପ୍ରତିଟି ପଦକଥା, ଉତ୍ତେଜିତ ମନରେ ତାଜା ଗୋଲାପର ମହକଭରା ସଜ୍ଜନଙ୍କୁ ବୋଧ ଦେଉଥାଏ । ସେ ଯେଉଁ ପ୍ରସଙ୍ଗରେ ସୂତ୍ରଧର କହୁଥିଲା ତା'ର ନାୟକ ମାନଙ୍କ ମଧ୍ୟରୁ ସଜ୍ଜନ ଜଣେ । ସେ ସଜ୍ଜନର (ନିଷ୍କ୍ରିୟ) ମନରେ ସନ୍ତୋଷ ଭରିବାକୁ ଲାଗିଲା. "କନ୍ୟା" ଦୂର ସଂପର୍କରେ ପରଦା ହଟାଇ ନିକଟରେ ଅତି ନିକଟରେ ଆସିଲା ।

କନ୍ୟା କହିଲା "ସଜ୍ଜନ, ମୁଁ ଆଜି ଦୁଇଘଣ୍ଟା ଛୁଟି କଟାଇବାର ମୁଡ଼୍‌ରେ ଏଠାକୁ ଆସିଛି । ମୋ ପାଇଁ କିଛି ଖାଇବା ପିଇବାର ଯୋଗାଡ଼ କର । ଘଣ୍ଟାଏ ଦେଢ଼ ଘଣ୍ଟାପରେ ମୁଁ ଚାଲିଯିବି ।"

— ତା' ହେଲେ ମଗାଇ ନିଅ ।

—ନା, ସେଇଦିନୁ ମୁଁ ତୁମ ଚାକରମାନଙ୍କୁ ଆଦେଶ ନ ଦେବାକୁ ପ୍ରତିଜ୍ଞା କରିଛି ।

—ସଜ୍ଜନ ତୁରନ୍ତ ଉଠି କଲିଂବେଲ୍ ଦବାଇଲା । କବାଟ ଖୋଲିବା ସଙ୍ଗେ ସଙ୍ଗେ ସଂଚିତ୍‌ସିଂହ କାନ୍ଧରେ ଗାମୁଛା ପକାଇ ଘର ଭିତରକୁ ଆସିଲା ।

— ପୂଜାରୀ ଆଜିଠାରୁ ଏ ଘର ଯା'ଙ୍କର ହେଲା । ମୋର ନୁହେଁ, ଅନ୍ୟ କାହାରି ବି ନୁହେଁ, ବୁଝିଲ ? "ଏତିକି କହୁଥାରେ ସଜ୍ଜନର ସାରା ସ୍ନାୟୁମଣ୍ଡଳ, ମୁଖର ଭଙ୍ଗୀ ସପନ୍ଦନରେ ଭରିଗଲା । ଭାବାବେଗରେ ସମସ୍ତ ଶରୀର ଥରି ଉଠିଲା, ଉତ୍ତେଜିତ ହୋଇ ତା'ର ହାତ ଘଣ୍ଟିର ସୁଇଚ୍ ଉପରେ ଚାପି ହୋଇ ପଡ଼ିଥାଏ । ତା'ର ଏ ଉତ୍ତେଜିତ ଭାବ କନ୍ୟାର ଦୃଷ୍ଟି ଆକର୍ଷଣ କଲା । ସେ ହସି ହସି କହିଲା "ଏବେ ଟିକେ ଘଣ୍ଟି ବଜାଇବା ବନ୍ଦ କର ।"

ଲମ୍ବା ଘଣ୍ଟି ଶବ୍ଦଶୁଣି ସାହେବଙ୍କ ଛ'ଜଣ ଚାକର ଏକସ ଆସି ପହଞ୍ଚିଲେ । ଏଭଳି ଅନ୍ୟମନସ୍କ ଉତ୍ତେଜନା ପ୍ରତି ସଚେତନ ହୋଇ ସଜ୍ଜନ ପ୍ରକୃତିସ୍ଥ ହେଲା । ଚାକରମାନେ ବି ବିସ୍ମିତ ଅଥଚ ଆତ୍ମସନ୍ତୋଷରେ ଖୁସି ହେଲେ । ଯା' ହେଉ ଅନେକ ଦିନ ପରେ ତାଙ୍କର ସାହେବ ଆଜି ମଣିଷ ଭଳି ମଣିଷ ହେବାକୁ ଚେଷ୍ଟା କରୁଛନ୍ତି । ଘରକୁ ଜଣେ (ଉପଯୁକ୍ତ) ଯୋଗ୍ୟ ଘରଣୀ ବି ଆସିଛନ୍ତି । ସଜ୍ଜନ ଚାକରମାନଙ୍କୁ

ଲକ୍ଷ୍ୟକରି କହିଲା :—"ତୁମକୁ ବକ୍‌ସିସ୍‌ ମିଳିବ, ଏମାସରେ ସମସ୍ତଙ୍କୁ ଦୁଇଗୁଣ ଦରମା ମିଳିବ । ଆଜିଠୁଁ ୟାଙ୍କର ହୁକୁମ୍‌ ମାନିବ ।"

କନ୍ୟାର ସାମ୍ୟବାଦୀ ମନକୁ ଏ ପ୍ରହସନ ଭଲ ଲାଗିଲା ନାହିଁ । ସଜ୍ଜନ କନ୍ୟା ଆଡକୁ ଚାହିଁ ହସି ହସି କହିଲା :—"ଏବେ ହୁକୁମ୍‌ ଦିଅନ୍ତୁ—"

ବନକନ୍ୟାକୁ ଜୀବନର ନୂଆ ବାତାବରଣରେ ନୂଆ କାମ କରିବାକୁ ଲଜ୍ଜା ବୋଧ ହେଲା । ତା'ର ଗଣ୍ଡଦେଶ ଲାଲ୍‌ ହୋଇଗଲା, ସେ ସଜ୍ଜନକୁ କହିଲା "କ'ଣ ତାମାଶା କରୁଛ, ସେମାନଙ୍କୁ ତମେ କହନ୍ତୁ ?—ନା, ତୁମେ କୁହ ।

ଖୁବ୍‌ କଷ୍ଟରେ କନ୍ୟା ଚାକରମାନଙ୍କୁ ଲକ୍ଷ୍ୟକରି କହିଲା :—"ଆରେ କିଛି ଜଳଖିଆ ନେଇ ଆସ । ଆଉ ଘଣ୍ଟାଏ ଦେଢ଼ ଘଣ୍ଟା ପରେ ମିଲ୍‌ ଆଣିବ ।"

—ଆଜ୍ଞା ମେନ୍ୟୁ କ'ଣ କୁହନ୍ତୁ ।

ସଙ୍କଟରେ ପଡ଼ି କନ୍ୟା କହିଲା :—"ଆଜି ଯା' ଇଚ୍ଛା ତା' କରିଦିଅ । ଦେଖ, ମୁଁ ଦେଢ଼ଟା ବେଳେ ଏଠୁ ଚାଲିଯିବି ।"

ଚାକରମାନେ ଚାଲିଗଲେ । ଦୁହେଁ ଦୁହିଁଙ୍କୁ ନୂଆ ଦୃଷ୍ଟିରେ ଦେଖିବାକୁ ଲାଗିଲେ । ସଜ୍ଜନ ଏବେ ବି ନିଜକୁ ପୁରାପୁରି ସଂଯତ କରି ପାରୁନି...ଏଇଭଳି ଅନୁଭବ ହେଉଥାଏ । କନ୍ୟା ସହିତ ନିଜର ନୂଆ ସଂପର୍କ ଘୋଷଣା କରି ନୂଆ ଜୀବନରେ ପ୍ରବେଶ କରିବାରେ ସେ ଆଶ୍ୱସ୍ତି ଅନୁଭବ କରିବାକୁ ଲାଗିଲା । ଚମ୍ପା ସାଙ୍ଗରେ ତା'ର ଉପସ୍ଥିତ ଅଭିମାନର ପ୍ରତିକ୍ରିୟା ଜନିତ ତା' ଚେତନା ଉପରେ ଯେଉଁ ମୋଟା ଆବରଣ ପଡ଼ିଥିଲା ତାହା କ୍ରମଶଃ ଦୂରୀଭୂତ ହେବାକୁ ଲାଗିଲା, ସଜ୍ଜନ ସନ୍ତୁଷ୍ଟ ଓ ପ୍ରକୃତିସ୍ଥ ହେଲା ।

ସେଇଦିନ ରାତିରେ ସେଠି ରୂପରତନ, ସାଲିଗ୍ରାମ ଓ ଜାନକୀ ଶରଣଙ୍କ ସାଙ୍ଗରେ ବୁଝାମଣା କରିବା ନିମନ୍ତେ ସଜ୍ଜନ ଓ କର୍ଣ୍ଣେଲଙ୍କୁ ଡାକିଥିଲେ । ଜଣେ ମିନିଷ୍ଟର ବି ସେଠରେ ଉପସ୍ଥିତ ରହିବାର ସମ୍ଭାବନା ଥିଲା । କର୍ଣ୍ଣେଲ କହିଲା ଯେ ଏହି ବୈଠକରେ ବନକନ୍ୟାର ଉପସ୍ଥିତି ଓ ତା'ର ମତାମତ ସବୁଠାରୁ ବେଶୀ ମହତ୍ତ୍ୱପୂର୍ଣ୍ଣ । ସେଠ ରୂପରତନ କର୍ଣ୍ଣେଲର ଏ ଶର୍ତ୍ତ ମାନିବାକୁ ପଡ଼ିଲା ।

ସଜ୍ଜନର ସେଦିନଟି ବହୁତ ଭଲରେ କଟିଥିଲା । ବନକନ୍ୟା ତା'ର ଚାରି ପାଞ୍ଚ ଦିନର ଅନୁଭୂତି ସଜ୍ଜନ ଆଗରେ ବସି ବସି ଗପିଥିଲା । ସେ କମିଟି ଘର ଘର ବୁଲି ପ୍ରଦର୍ଶନୀର ନିମନ୍ତ୍ରଣ ଦେବାକୁ ଗଲା । ବିଭିନ୍ନ ଘର ଗୁଡ଼ିକ ବୁଲି କି' ପ୍ରକାର ଅଭିଜ୍ଞତା ତା'ର ହେଲା । ପ୍ରଦର୍ଶନୀକୁ ଆସିଥିବା ମହିଳାମାନଙ୍କ ମନୋଭାବର ବର୍ଣ୍ଣନା ଶୁଣୁ ଶୁଣୁ ସଜ୍ଜନ ଏଭଳି ଅଭିଭୂତ ହୋଇ ପଡ଼ିଲା ଯେ ନିଜର "ଅପରାଧ" ପାଇଁ ପଶ୍ଚାତ୍ତାପ

କରିବାକୁ ଅବକାଶ ମିଳିଲା ନାହିଁ । କନ୍ୟା କାଭଳି ଆବେଗ ଜଡ଼ିତ କଣ୍ଠରେ ସବୁ କହି ଯାଉଥାଏ । କେବେ କେବେ ସେ ଯେପରି ନିଜକୁ ଭୁଲି ଯାଉଥାଏ । ସଜ୍ଜନ ଯେପରି ଗୋଟିଏ ସ୍ୱପ୍ନର ସାକ୍ଷାତକାର କରୁଛି···ଏଇଭଳି ତା'ର ମନେ ହେଉଥାଏ । ଖରାବେଳଟା ଏଇ-ଭଳି ଗୋଟିଏ ଆମୋଦ ଦାୟକ ପରିବେଶ ଭିତରେ କଟିଗଲା । କନ୍ୟା ଚାଲିଗଲା ପରେ ବହୁ ସମୟ ଧରି ନିଜ ଭିତରେ ତନ୍ମୟ ହୋଇ ବସି ରହିଥିଲା । ବାବା ରାମଜୀଙ୍କ କଥା ତା'ର ମନେ ପଡ଼ିଲା । ଦ୍ୱିଧାଗ୍ରସ୍ତ ଚିତ୍ତରେ ରାମଜୀଙ୍କ ମଠକୁ ଯିବାକୁ ଅବଶେଷରେ ସ୍ଥିର କରି ବାହାରିଲା ।

ଦିନ ତୃତୀୟ ପ୍ରହରର ଖରା ଗୋମତୀ କୂଳରେ ବିଛାଡ଼ି ହୋଇ ପଡ଼ିଥାଏ । ବାବାଜୀଙ୍କ ପାଗଳ ଚେଲାମାନେ ଖୋଲା ପଡ଼ିଆରେ କସରତ କରୁଥାନ୍ତି । ବାବାଜୀ ସେମାନଙ୍କ ଖେଳ କସରତ ଦେଖୁଥାନ୍ତି ।

ଘାଟ ପାଖରେ ପହଞ୍ଚି ବାବାଜୀଙ୍କର ମୁହାଁ ମୁହିଁ ହେବାକୁ ସଜ୍ଜନ ଅସହଜ ବୋଧ କରୁଥାଏ । ତଥାପି ସେ ତାଙ୍କ ଆଡ଼କୁ ଚାଲିବାକୁ ଲାଗିଲା । ନିକଟସ୍ଥ ହୋଇ ବାବାଙ୍କର ପାଦ ଛୁଇଁବା ପୂର୍ବରୁ ସେ ତାକୁ ସମାଦରି କରି କୋଳାଗତ କରିନେଲେ ।

—"ରାମଜୀ, ଆଜି ତୁମକୁ ଏଠି ଦେଖି କୋଟିନିଧି ପାଇଲା ଭଳି ମନେ ହେଉଛି ।" ବାବାଜୀ ଆଗ୍ରହାତିଶଯ୍ୟରେ ଏତିକି କହି ପକାଇଲେ । ପାଗଳ ମାନଙ୍କର ବ୍ୟାୟାମ, ପ୍ରାର୍ଥନା ଓ ସେମାନଙ୍କୁ ଔଷଧ ଦେବା କାର୍ଯ୍ୟ ଶେଷକରି ବାବାଜୀ ନିଶ୍ଚିନ୍ତ ହୋଇ ସଜ୍ଜନ ସାଙ୍ଗରେ କଥାହେଲେ । ଅନେକ ସମୟ ଧରି ଦୁହେଁ ଆଳାପରତ ରହିଲେ । ବାବାଜୀ କହିଲେ...ପଛକଥା ଭାବିବା ଠାରୁ ନିକମ୍ମା ପଣ ଆଉ କିଛି ନାହିଁ । ତୁମେ କାହିଁକି ଭାବୁନ ଯେ ଏ ପ୍ରକାର କୁ ସଙ୍ଗରୁ ଗୋଟାଏ ଅନୁଭବ ଲାଭ କଲବୋଲି ? ଏବେ ସେ ଅନୁଭବରୁ ଫାଇଦା ଉଠାଅ । କେଉଁ କଥାକୁ ଦୁଃଖ କରୁଛ ? ଯାହା ବିତି ଯାଇଛି ତାକୁ ଭୁଲି ଯାଇ ଆଗାମୀ ଦିନ ପାଇଁ ଶୁଦ୍ଧପୂତ ରୂପେ ଅତିବାହିତ କରିବାର ବ୍ୟବସ୍ଥା କରିବା ଦରକାର ।

ଚାଲୁ ଚାଲୁ ବାବାଜୀ କହିଲେ :—"ଯେ ଯାହା କହୁ ପଛେ ମୁଁ ଏ କେବେ-ହେଲେ ମାୟାକୁ ମିଥ୍ୟା କହିବିନି । ଭଗବାନ ଯଦି ସତ୍ୟ, ତେବେ ତାଙ୍କର ସୃଷ୍ଟି ମାୟା ହେବ କିପରି ? ମିଥ୍ୟା ହେବ କାହିଁକି ? ଯଦି ଏ ସୃଷ୍ଟି ସତ୍ୟ ତେବେ ତାକୁ ଯଥେଚ୍ଛା, ମୁକ୍ତ ଭାବେ ଭୋଗକର । ଯେଉଁଠି ଅସତ୍ୟର ସନ୍ଧାନ ପାଉଛ ସେଠାରେ ତା' ବିରୋଧରେ ଦୃଢ଼ସ୍ୱର ଉଠାଅ । ।"

—ତାହାହିଁ ହେବ, ।" ସଜ୍ଜନ ବାବାଜୀଙ୍କ ପାଦଛୁଇଁ ଶପଥ କଲାଭଳି କହିଲା । ତା'ର ମନ ସମ୍ପୂର୍ଣ୍ଣ ହାଲୁକା ହୋଇ ଯାଇଥିଲା । ତା' ମନର ସମସ୍ତ ବିକାର ଭାବ ଧୋଇ ହୋଇ ଯାଇଥିଲା । ତାକୁ ଠିକଣା ବାଟ ମିଳିଗଲା ଭଳି ବୋଧ ହେଉଥିଲା ।

ଚିନ୍ତା କ୍ରପସ୍ୱରେ ବାବାଜୀ ପରାମର୍ଶ ଦେଇ କହିଲେ :—"ତାକୁ କେଉଁଠି ଭଲ ଯାଗା ଦେଖି ବାହା କରାଇ ଦିଅ, ନତୁବା କିଛି ଗୋଟାଏ ଧନ୍ଦାରେ ଲଗାଇ ଦିଅ ଏବଂ ଭରଣ ପୋଷଣର ଖର୍ଚ୍ଚ ବ୍ୟବସ୍ଥା କରିଦିଅ । ଯଦି ସେ କିଛି କାମ ନକରେ ତେବେ ତାକୁ କିଛି ଦିଅନା । ଯେ ନିକମ୍ମା ତା' ପ୍ରତି ଦୟା ପ୍ରଦର୍ଶନ କରିବା ବୋକାମି ଅଟେ ରାମଜୀ ।"

ସଜ୍ଜନ ସନ୍ଧ୍ୟାବେଳକୁ ଦେଠେଇ ଘରକୁ ଗଲା । ତା' ଘରେ ମହିଳାମାନଙ୍କ ପାଇଁ ବ୍ୟବସ୍ଥା ହୋଇଥିବାରୁ କର୍ଣ୍ଣେଲ ବର୍ମାଘର ବାରଣ୍ଡାରେ ଚେୟାର ପକାଇ ବସିଥାଏ । ସଜ୍ଜନ ବି ସେଠାରେ ବସିଗଲା । ଗଳିରେ ଝିଅ ବୋହୂମାନେ ଦଳବାନ୍ଧି ପାଟି ଗୋଳକରି ଯାଆଆସ କରୁଥାନ୍ତି । କର୍ଣ୍ଣେଲ ସଜ୍ଜନକୁ କହିଲେ ଯେ ' ମେଳାଟା ବେଶ୍ ଜମୁଛି । କନ୍ୟା ବଡ଼ ମନ ଯୋଗ ସହକାରେ ସବୁ କାମ ନିଜେ ଦେଖୁଥାଏ । ପ୍ରଦର୍ଶନୀରେ ଅନେକ ହାତ ତିଆରି ଜିନିଷ ବିକ୍ରି ହେଉଥାଏ, ମହିଳାମାନେ ଚା' ପାନ ମୁଙ୍ଗଫଳୀ ଓ ଚାଟ ଦୋକାନ ଖୋଲିଥାନ୍ତି । କନ୍ୟା କେତେଜଣ ଯୁବତୀଙ୍କ ଭିତରେ ହିରୋଇନ ବନିଥାଏ । ଦଶଟି ଝିଅ ବରାବର ଅଇଁଠା ପତ୍ର ସଫା କରିବାରେ ଲାଗିଥାନ୍ତି । ଛୋଟିଆ ଯାଗାଟିରେ ଏତେ ଲୋକ ସମାବେଶ ହେଲେ ବି ମଇଳା ଆବର୍ଜନା ଟିକିଏ ହେଲେ ନାହିଁ । ଝିଅମାନଙ୍କର ନୃତ୍ୟଗୀତ ଓ ଛୋଟ ଛୋଟ ନାଟକର ଅଭିନୟ ବେଶ ଜମୁଥିଲା ପ୍ରଦର୍ଶନୀରେ ବିକ୍ରି ଲବ୍ଧ ଧନ ବି ଖୁବ୍ ଉତ୍ସାହଜନକ । କର୍ଣ୍ଣେଲ ଉତ୍ସାହିତ ହୋଇ କହିଲା ଖୁବ୍ ଶୀଘ୍ର ଏଇଭଳି ଏକ ପ୍ରଦର୍ଶନୀର ଆୟୋଜନ ଅମିନାବାଦରେ କରାଯିବ । ଯେଉଁ ମହିଳାମାନେ ଅସହନୀୟ ବ୍ୟଥା ବେଦନାରେ ଅତିଷ୍ଠ ତା' ପାଇଁ । ଏ ପ୍ରକାର ପ୍ରଦର୍ଶନୀର ଆୟୋଜନର ସନ୍ତୋଷ ଦେବ ।

ଏଥିରୁ ନୂଆ ପ୍ରକାର ଫୂର୍ତ୍ତି ମିଳିଥାଏ ।" ସଜ୍ଜନ ଖୁବ୍ ଆଗ୍ରହରେ କର୍ଣ୍ଣେଲ କଥା ଶୁଣୁଥାଏ । ସେ କନ୍ୟାକୁ ବିବାହ କରିବାର କଥା ମଧ୍ୟ ଉଠାଇଲା । କର୍ଣ୍ଣେଲ ପଣ୍ଡିତ ଶିବନାଥ ଶାସ୍ତ୍ରୀ ସାଙ୍ଗରେ କଥାହୋଇ ଲଗ୍ନ ଠିକ୍ କରିବାକୁ କହିଲା ।

ଆଠଟାରେ ଯେତେବେଳେ କର୍ଣ୍ଣେଲ ଓ ସଜ୍ଜନ ବର୍ମାଘରୁ ଦେଠେଇଙ୍କ କୋଠରୀକୁ ଗଲେ ସେଠାରେ ସେତେବେଳେ କନ୍ୟା ସାଙ୍ଗରେ ଭେଟ ହେଲା । ସେଦିନ ରାତିରେ ସେଠ ରୂପରତନ ଘରେ କର୍ଣ୍ଣେଲ, ସଜ୍ଜନ, ବାବୁ ସାଲିଗରାମ ଓ ଜଣେ ମିନିଷ୍ଟରଙ୍କ ଉପସ୍ଥିତିରେ ବୈଠକ ବସିଲା । ସେଠ ରୂପରତନ ଏଥର ନିର୍ବାଚନରେ ଠିଆ ହେଉ ନଥାନ୍ତି । ସେ ତାଙ୍କର ବିଜିନେସ୍ ବଢ଼ାଇବାକୁ ଆମେରିକା ଯାଇ କେତେକ ନୂଆ ମେସିନ୍‌ର ଏଜେନ୍‌ସି ଆଣିବା ଉଦ୍ଦେଶ୍ୟରେ ଥା'ନ୍ତି ! ତେଣୁ ସେ ନିଜକୁ ନିରପେକ୍ଷ ବୋଲି ଘୋଷଣା କରୁଥାନ୍ତି ।

ମିନିଷ୍ଟର କହିଲେ : ..."କର୍ଣ୍ଣେଲ ସାହେବ ଆପଣଙ୍କଠାରୁ ଆମେ ଏଭଳି ଆଶା କରୁନଥିଲୁ ।"

ରୂପରତନ କହି ଉଠିଲେ :···"ନିର୍ବାଚନ ତ ଗୃହଶାସନର ମାମଲା । ମାତ୍ର ପଇସାର ଲୁଣ୍ଠନ ଏକ ଅଲୌକିକ କଥା ।"

ଆମେ ଆମ ପକ୍ଷରୁ କିଛି ଦୁରଭିସନ୍ଧି କାମ କରନ୍ତୁ । ମାତ୍ର ଆମ ସାଙ୍ଗରେ ଯଦି କିଏ ସ୍ତଳ ଖେଳେ ଆମେ ତେବେ କା ଗ୍ରହ ।"

...“ଆପଣମାନେ ତ ସବୁ ନାଟର ମୂଳ” ବାବୁ ସାଲଗ୍ରାମ ଅଭିଯୋଗ କଲେ ।

...ଆମେ ଏକ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉଠାଇଛୁ କର୍ଣ୍ଣେଲ କହିଲା ।

“ରୂପରତନ କହି ଉଠିଲେ” ଆରେ ଭାଇ ଆମେ ତ ଥିଲୁ ତୁମେ ସଜ୍ଜନ ବା ମହିପାଳ କେହି ଥିଲେ ଆସି କହିଥିଲେ ଆମେ କ’ଣ କଥାଟା ମେଣ୍ଟେଇ ପାରି ନଥାନ୍ତ ?

...ସମସ୍ତେ ଏହିଭଳି କହିଥାନ୍ତି । ମୁଁ ତ ଖୋଲାଖୋଲି ଭାବେ କହୁଛି ଯେ ସାଲଗ୍ରାମ ନିଜର ନିର୍ବାଚନ ସ୍ୱାର୍ଥରେ ଜଣେ ମହିଳାର ଜୀବନ ନେଇ ଖେଳି ପାରନ୍ତି ।

ଆରେ ବାବା, ତୁମେ ଏକଥା ବି କହୁଛ କର୍ଣ୍ଣେଲ ସାହେବ, ମୋର କୌଣସି ଉଦ୍ଦେଶ୍ୟ ନଥିଲା । ମାତ୍ର ପୁଲିସ···

...ଛାଡ଼ ଏ ଝଲିଟ ସ୍ୱମାଧାନ ଆଜି ମୋତେ ଫିଟାନ୍ତୁ ନାହିଁ । ଆପଣଙ୍କ ସତସଙ୍ଗରୁ ମୁଁ ଏସବୁ ବେଶ୍ ଶିଖିଛି ।

...ଛାଡ଼ ଏ ବାଜେ କଥା ସବୁ । ବର୍ତ୍ତମାନର କଥା କୁହ । ମିନିଷ୍ଟର ସାହେବ କାଜୁଦାନାକୁ ଦାନ୍ତରେ କାମୁଡ଼ି କାମୁଡ଼ି ଏକଥା କହିଲେ :··· “ଏକଥା ଆପଣମାନେ ମନେ ରଖିବା ଉଚିତ ହେବ ଯେ କଂଗ୍ରେସ ଭଲ ହେଉ ବା ମନ୍ଦ ହେଉ ଦେଶକୁ ସମ୍ଭାଳି ରଖିବାକୁ ଏକମାତ୍ର ଜାତୀୟ ରାଷ୍ଟ୍ରିୟ ସଂସ୍ଥା । ଏ ସମୟରେ କଂଗ୍ରେସର ବିରୋଧ କରିବା ଅର୍ଥ ଦେଶପ୍ରତି ଅବିଚାର କରିବାକୁ ବୁଝାଇବ ।”

...ଆଜ୍ଞା ମୁଁ କହିବି ଯେ ନାରୀଜାତି ପ୍ରତି ଅନ୍ୟାୟ କରିବାର ଅର୍ଥ ମାନବତା ପ୍ରତି ଅବିଚାର କରିବା ।

···ତା’ହେଲେ ଆପଣ କମ୍ୟୁନିଷ୍ଟ ପାର୍ଟି···

···ଆପଣ ପାର୍ଟି ଦୃଷ୍ଟିରୁ କାହିଁକି ସବୁକଥା ବିଚାର କରୁଛନ୍ତି । ମୋ ଭାଇକି କେଉଁ ପାର୍ଟିର ନଥିଲା ବା ମୋର ପିତା କେବେ ହେଲେ କଂଗ୍ରେସର ସମର୍ଥକ ନଥିଲେ ।

…ଆରେ ଗଳ୍ପକଥାକୁ ଧରି ବସିଲେ କିଛି ଲାଭ ନାହିଁ ।

‥ ଲାଭନାହିଁ କିମିତି । ସବୁ ଘଟଣାର ମୂଳତ ସେଇଠି ।

ତୁମେ ଏବେ ପକ୍କା କମ୍ୟୁନିଷ୍ଟ ପାଲଟି ଗଲଣି ଦେଖୁଛି ।" ସେଠ ରୂପରତନ କର୍ଣ୍ଣେଲଙ୍କୁ ଲକ୍ଷ୍ୟକରି କହିଲେ ।

ସଜ୍ଜନ ସେଠ ରୂପରତନ କଥାର ପ୍ରତିବାଦ କରି କହିଲା :… "ତୁମେତ ସବୁ କଥାକୁ "ଗାଳି ଗୁଲଜ" ଭଳି ମନେ କରୁଛ ।"

ମିନିଷ୍ଟର ସାହେବ ହସି ହସି କହିଲେ : ‥ "ଆମ ସଜ୍ଜନ ସାହେବ ଚଳ ଆଜ୍ଞା ଆଜ୍ଞ ନଜେ କାହା ହାତ ଧଆର ପିଲା ବନିଗଲେଣି ।"

ମିନିଷ୍ଟରଙ୍କ ଏ ଅର୍ଥବୋଧକ ରସିକତାରେ ସାଲଗ୍ରାମ ରୂପରତନ ଇତ୍ୟାଦି ହସି ଉଠିଲେ । ମିନିଷ୍ଟର ତା'ପରେ ପୁଣି କନ୍ୟାଙ୍କୁ ଲକ୍ଷ୍ୟକରି କହିଲେ :…"ବନକନ୍ୟାଜୀ ମୁଁ ଆପଣଙ୍କୁ ଓ ଆପଣଙ୍କ ପାର୍ଟିକୁ ଅଭିନନ୍ଦନ ଜଣାଉଛି । କାରଣ ଆପଣ ଆମ ପୁରୁଣା ବନ୍ଧୁମାନଙ୍କୁ ଖୁବ୍ ଶୀଘ୍ର ଆମଠୁ ଛଡ଼େଇ ନେବାରେ ସଫଳ ହୋଇଛନ୍ତି ।"

ବନକନ୍ୟା ତୁରନ୍ତ କହି ଉଠିଲା :… "ଆପଣଙ୍କୁ ବରଂ କଂଗ୍ରାଚୁଲେସନ ଜଣାଇବାର କଥା । କାରଣ ଏହିଭଳି ଲୋକଙ୍କଠାରୁ ଆପଣ ବିଚ୍ଛିନ୍ନ ହୋଇଛନ୍ତି । ମୁଁ ଜଣାଇ ଦେବାକୁ ଚାହେଁ ଯେ ମୁଁ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ ନୁହେଁ କିମ୍ବା ପାର୍ଟି ପକ୍ଷରୁ "ମାତହାରି" ରୂପେ ନିଯୁକ୍ତପାଇଁ ଏ ଲୋକଙ୍କୁ ଭୁଲାଇ ନେଉନାହିଁ, "କୁହ କୁହ କନ୍ୟାର ମୁହଁ କ୍ରୋଧରେ ଲାଲ୍ ପଡ଼ିଗଲା ।

ମିନିଷ୍ଟର ସାହେବ ଗମ୍ଭୀର ହୋଇଗଲେ, ଅନ୍ୟ ଲୋକ ଟିକେ ସଙ୍କୁଚିତ ହୋଇ କନ୍ୟା ମୁହଁକୁ ଚାହିଁ ରହିଲେ । କର୍ଣ୍ଣେଲ୍ ହସି ହସି କହିଲା :…"ଏତକ ନା ଆଉ କିଛି ଶୁଣିବାକୁ ଇଚ୍ଛା ଅଛି ?"

‥ ନା, ମୁଁ କାହାକୁ ଅପମାନିତ କରିବା ଉଦ୍ଦେଶ୍ୟରେ ଏକଥା କହୁନି । କେବଳ ମୋତେ ଖରାପ ଲାଗିବାରୁ କହିଲି ।' କନ୍ୟା ସଂଯତ ସ୍ୱରରେ କହିଲା ।

ସଜ୍ଜନ କନ୍ୟାକୁ ଚାହିଁ କହିଲା :… "ଏ ମିନିଷ୍ଟର ସାହେବଙ୍କୁ ଦି'ପଦ କଡ଼ା କଥା ଶୁଣାଇଦିଅ । ମିନିଷ୍ଟର ହେଲେ କ'ଣ ହେଲା ସେ ମୋର ପୁରୁଣା ବନ୍ଧୁ ।

ମିନିଷ୍ଟର ସାହେବ ସଜ୍ଜନ କଥାକୁ ସମର୍ଥନ କରି ଉଚ୍ଚ କଣ୍ଠରେ ହସିବାକୁ ଲାଗିଲେ । ସେଠ ରୂପରତନ ଦେଖିଲେ ଉତ୍ତେଜିତ ବାତାବରଣ କ୍ରମଶଃ ହାଲୁକା ଓ

ଅନୁକୂଳ ହୋଇ ଆସୁଛି, ସେ କହି ଉଠିଲେ :··· "ଅନେକ ଦିନୁ ଆମର ପରିଚୟ, ମହୀପାଳ ସାଙ୍ଗରେ ଜଣାଶୁଣା ହୋଇଛିନୁ ।"

କ୍ରମଶଃ ପରିବେଶଟା ଜବରଦସ୍ତ ବନ୍ଧୁତ୍ୱ ପୂର୍ଣ୍ଣ ମନେ ହେଲା । ମିନିଷ୍ଟର ସାହେବଙ୍କ ବନ୍ଧୁକୁ (ସଜ୍ଜନ) ବେଟା ବୋଲି ସମ୍ବୋଧନ କରିବାର ସୁଯୋଗ ଲାଲଜାନକୀ ଶରଣ ଛାଡ଼ିଲେ ନାହିଁ । ସାଲିଗ୍ରାମ ବି ପାର୍ଟିର ପୂର୍ବ ପରିଚୟ ଦେଇ ଖୁସାମଦ ଆରମ୍ଭ କରିଦେଲେ । ମିନିଷ୍ଟର ସାହେବ ହସି ହସି ଉଠି ଠିଆ ହେଲେ । ଅନ୍ୟମାନେ ବି ନିଜ ନିଜର ଚେୟାର ଛାଡ଼ି ଠିଆ ହେଲେ । ମିନିଷ୍ଟର, ସାଲିଗ୍ରାମ ଆଡ଼କୁ ଚାହିଁ କହିଲେ :··· "ଏବେ ତ ସବୁ ଠିକ୍ ହୋଇଗଲା ପୁଣି କର୍ଣ୍ଣେଲ ଆଡକୁ ମୁହଁ କରି କହିଲେ, :··· "ଦେଖ ତୁମ ପ୍ରଦର୍ଶନୀରେ କଂଗ୍ରେସର କିଛି ପବ୍ଲିସିଟି ହେବା ଦରକାର । ଆଜ ସନ୍ଧ୍ୟାକୁ କିଛି ପୋଷ୍ଟର ଇତ୍ୟାଦି ପଠେଇ ଦିଆଯିବ । ···ଦେଖନ୍ତୁ ମୁଁ ଗୋଟିଏ ସିଧାକଥାର କଥା କହୁଛି ଏହାକୁ ପାର୍ଟି ସ୍ପିରିଟ୍‌ରେ ନେବା ଠିକ୍ ହେବନାହିଁ···ହଁ, ମୁଁ ତୁମ କଥାରେ ଏକ ମତ ଦେଉଛି କନ୍ୟା ।

ଏ ସାଂସ୍କୃତିକ ସମାବେଶକୁ ରାଜନୈତିକ ଉଦ୍ଦେଶ୍ୟ ସିଦ୍ଧି ନିମନ୍ତେ ବ୍ୟବହାର କରାଯିବା ଠିକ୍ ନୁହେଁ କହିଲା ସଜ୍ଜନ । ମିନିଷ୍ଟର ସାହେବ ସଜ୍ଜନ ଓ କନ୍ୟାକୁ ଲକ୍ଷ୍ୟକରି କହିଲେ :···"ତୁମେ ଦୁହେଁ ଜଣେ ଜଣଙ୍କର ପରିପୂରକ ହୋଇଯାଇଛ ଦେଖୁଛି । ବାହାଘର କେବେ ହେଉଛି ?

ଲାଲଜାନକୀ ଶରଣ ଓ ପରେ ରୂପରତନ ଏକା ବେଳକେ ହସି ଉଠିଲେ ସତେ ଅବା ମିନିଷ୍ଟର ଏକ ମଜ୍ଜା କଥା କହିଛନ୍ତି । କର୍ଣ୍ଣେଲ କହିଲା ଆଉ ଡେରି ନାହିଁ କେଉଁ ଦିନ ମୋ ପାଖରୁ ଆପଣମାନଙ୍କୁ ଏଥିପାଇଁ ନିମନ୍ତ୍ରଣ ପାଇଯିବେ । ଅଚ୍ଛା ଖୁବ୍ ଖୁସିର କଥା । ମୁଁ ତୁମ ଦୁହିଁଙ୍କୁ ବଧାଇ ଦେଉଛି । "ମିନିଷ୍ଟର ସାହେବ ହସି ହସି ସଜ୍ଜନ ସାଙ୍ଗରେ ହାତ ମିଳାଇଲେ । ତା'ପରେ ବୈଠକର ପରିସମାପ୍ତି ଘଟିଲା । ବହୁଦିନ ଧରି ଗୋଟିଏ ଓଜନିଆ ଓ ଉଷ୍ମ ବାତାବରଣ ହାଲୁକା ବୋଧ ହେଲା ।

# ଚଉତରିଶି

ବର୍ମା ଘରର ବାରଣ୍ଡାରେ ଏକ ଲମ୍ବା ବେଞ୍ଚ ଓ ଦୁଇଟି ଚେୟାର ଉପରେ ବର୍ମା, ଶଙ୍କରଲାଲ, ସଜ୍ଜନ, କଣ୍ଟ୍ରୋଲ ଓ ମହିପାଲ ବସିଥାନ୍ତି । ମହିପାଲ ସେଦିନ ସକାଳୁ ସକାଳୁ ମାମୁଁ ଘରୁ ଫେରିଥାଏ । ବର୍ମା ପୁଅର ଷଠୀ ଉତ୍ସବ ଉପଲକ୍ଷେ 'ଡାଇ' ପକ୍ଷରୁ ଆୟୋଜିତ ଭୋଜିରେ ଯୋଗ ଦେବାକୁ ଆସିଥାଏ । ଭୋଜନ ପରେ ପରେ ସେମାନେ ସବୁ ଆରାମ କରୁଥାନ୍ତି । ଭିତରେ ମହିଳାମାନଙ୍କର ଖିଆପିଆ ଚାଲିଥାଏ । ମଝିରେ ମଝିରେ ଝିଅ ବୋହୂମାନଙ୍କ ତୁଣ୍ଡରୁ ଲୋକଗୀତ ପଦେ ଅଧେ ଭାସି ଆସୁଥାଏ । ତକିଆ ଉପରେ ଭର ଦେଇ ମହିପାଲ ନିବିଷ୍ଟ ଚିତ୍ତରେ ସେ ଲୋକଗୀତକୁ ଲେଟର ପେଡ଼ ଉପରେ ଟିପି ରଖୁଥାଏ । କଣ୍ଟ୍ରୋଲ ହସି ହସି କହିଲା :..."ଆରେ ତୁ ଏବେ ସାହିତ୍ୟ ଛାଡ଼ି ଢୋଲକକ ଗୀତ ଲେଖ ।" ମହିପାଲ କିଛି କହିଲାନି, ସଜ୍ଜନ ଥଟାରେ କହିଲା :... ଦେଖ କଣ୍ଟ୍ରୋଲ ! ତୋ କଥାର ଜବାବ ପର୍ଯ୍ୟନ୍ତ ସେ ଦେଉନି ।"

"ଆରେ ଜବାବ ଦେବ କ'ଣ ? ଶଳାର ଆଦତ (ଅଭ୍ୟାସ) ଏଇଆ । ସେଦିନ ମୁଁ ସ୍ତ୍ରୀକୁ ଦେଢ଼ଟଙ୍କା ଖର୍ଚ୍ଚ କରି ଟେଲିଗ୍ରାମ କଲି । ଆମେ ଏ ଅପୋଜିସନକୁ ଡରିମରି ତାକୁ ଡାକାଇଲୁ ଯେ ଶ୍ରୀମାନ ଚୂପଚାପ ବସିଥାନ୍ତି ।"

"ଆରେ ବାବା ! ମାମୁଁ ଘର ଖାନା ଛାଡ଼ି ମୁଁ କାହିଁକି ଭଲା ଏଠିକି ଆସିଥାନ୍ତି ?"

...ତେବେ ଆଜି କୁଆଡ଼େ ଆସିଲୁ ?

ଦେଢେଇଙ୍କ ଘରେ ଭୋଜି ଖାଇବାକୁ ।

...ଆରେ ଦେଢେଇ ତ ତୋତେ ନିମନ୍ତ୍ରଣ କରିନଥିଲା, ମୁଁ ଏମିତି କହିଦେଲି ଯେ ତୁ ଚଟାପଟ ଦୌଡ଼ି ଆସିଲୁ ।

...ଆରେ ବ୍ରାହ୍ମଣ କେଉଁ ନିମନ୍ତ୍ରଣକୁ ଅପେକ୍ଷା ରଖେ ... ... ... ଆଚ୍ଛା, କ ଗୀତ !

ସମସ୍ତଙ୍କ ଧ୍ୟାନ ଭିତରୁ ଆସୁଥିବା ଗୀତର ଲହର ଉପରେ କେନ୍ଦ୍ରିଭୂତ ହେଲା । ମହିପାଲ ଗୀତର ସେ ପଙ୍‌କ୍ତିଟି ଲେଖି ଲେଖି ଆବୃତ୍ତି କରିବା ମାତ୍ରେ ଅନ୍ୟ-

ମାନେ ହସି ଉଠିଲେ । କର୍ଣ୍ଣେଲ ହସୁ ହସୁ କହିଲା :... "ଏବେ ବାଜେକାମ ବନ୍ଦ କର କହୁଛୁ ... ଗୋଟାଏ ବେକାର ଧନ୍ଦା ନେଇ ବସିଲ" କର୍ଣ୍ଣେଲ ମହିପାଲ ହାତରୁ କାଗଜ ଟାଣିନେଲା । ମହିପାଲ ବ୍ୟସ୍ତ ହୋଇ ପ୍ରତିରୋଧ କରୁ କରୁ କହିଲା ... "ଆରେ ଏ କ'ଣ କରୁଛୁ । ମୋର ଅତି ଦରକାରୀ କାଗଜ ଏଟା ।" ସଜ୍ଜନ କହିଲା :... "ଯାହା କୁହ ଭାଇ, ଦେଠେଇ ଆମର ବଡ଼ ବିଚିତ୍ର ଚରିତ୍ରର ମହିଳା ଜଣେ ।"

...ଆରେ କଥା କହନା, ଏ ପିଲାଟା ଜନ୍ମ ହେବା ଦିନୁ ଦେଠେଇ ସାହାଯ୍ୟ ଆମକୁ ମିଳୁଛି କହିଲେ ସଜ୍ଜନ" ବର୍ମା କହିଲା ।

...ତାହିଁକି, କଣ ଏମିତି ହେଲା କି ? "କର୍ଣ୍ଣେଲ ପଚାରି ବସିଲା ।

...ଆଗରୁ ମୋ ଉପରେ ଓ ମୋ ଓ୍ୱାଇଫଙ୍କ ଉପରେ ଦେଠେଇ ଭୟଙ୍କର ବିରକ୍ତ ହେଉଥିଲା । ଆମ ଦୁହିଁଙ୍କୁ ଅଧର୍ମୀ, ମ୍ଳେଛ ... ଏମିତି କେତେ କଣ କହି ଯାଉଥିଲା । ଆମ ଦୁହିଁଙ୍କୁ ତ ସେ ହୁଏତ ଘୃଣା କରୁଥିଲା । ମାତ୍ର ମୋର ଏ ଛୁଆଟା ହେବା ଦିନୁ ସବୁ ଯେମିତି ବଦଳି ଯାଇଛି । ଛୁଆ ପଛରେ ସେ ପ୍ରାଣପଣେ ଲାଗିଛି । ତାକୁ ଲାଳନ ପାଳନ କରିବାର ସମସ୍ତ ଦାୟିତ୍ୱ ସେ ନିଜ ଉପରକୁ ନେଇଛି । ଭଲ ଭଲ ଖାଦ୍ୟଦ୍ରବ୍ୟ ମୋ ସ୍ତ୍ରୀକୁ ଦେଇ କହୁଛି ଯେ ଏ ସବୁ ମୁଁ ତୋତେ ଏଇଥି ପାଇଁ ଖାଇବାକୁ ଦେଉଛି ଯେ ଛୁଆପାଇଁ ତୋ ସ୍ତନରେ ବେଶୀ କ୍ଷୀର ହେବ ।" ସମସ୍ତେ ବର୍ମାର କଥା ଶୁଣି ହସିବାକୁ ଲାଗିଲେ । ଭିତରୁ ଢୋଲକ ଗୀତ ଶୁଭୁଥାଏ ।

"ସୁନା ମୋର ବାବନାଭୂତ ଦେଖି ଡରିଗଲାରେ......

ଦେଠେଇ ଘର ସାରା ଆଜି ମଜାମଜଲିସରେ ପୂର୍ଣ୍ଣ । 'ତାଗି'ର ରୋଷେଇ ଘରେ ଖଦା ଲାଗିଥାଏ । ମିଠାଇବାଲା କାମରେ ଲାଗିଥାଏ । ଆରପାଖ ବାରଣ୍ଡା ଉପରେ ଢୋଲକ ଗୀତର ଆସର ଜମିଥାଏ । ଦେଠେଇଙ୍କ ଘରେ ମହିଳାମାନଙ୍କର ଭିଡ଼ । ପୂଜାରୀ ଓ ପୂଜାପଣ୍ଡାମାନେ ବସି ଗପ କରୁଥାନ୍ତି । ସ୍ତ୍ରୀ ଲୋକମାନେ ଥାଳରେ ଖାଦ୍ୟଦ୍ରବ୍ୟ ଧରି ଉପର ଘରକୁ ଯା'ଆସ କରୁଥାନ୍ତି । ବ୍ରାହ୍ମଣ ଭୋଜନ ଓ ପଣ୍ଡିତ ଭୋଜନ ସରି ଯାଇଥାଏ । ପାଖ ପଡ଼ଶା ଏପରିକି ନିଜ ସଜ୍ଜରୁଣୀ ଘରକୁ ଦେଠେଇଙ୍କ ନିମନ୍ତ୍ରଣ କରିଥାଏ । ମହିଳାମାନଙ୍କର ପଙ୍ଗତ ବସିଥାଏ । ସର୍ବତ୍ର 'ଦେଠେଇ'ଙ୍କ ଦ୍ୱାରା ଆୟୋଜିତ ଏ ଜନ୍ମ ଦିନର ଭୋଜି ବିଷୟରେ ଚର୍ଚ୍ଚା ଚାଲିଥାଏ । ସଭିଏଁ ଏ ପ୍ରକାର ଆୟୋଜନରେ ବିସ୍ମୟ ପ୍ରକଟ କରୁଥାନ୍ତି । 'ନନ୍ଦୋ'ର ଛାତି ଖାଲି ବିଦାରି ହେଉଥାଏ । ତଥାପି ସେ ଆସି ଅନ୍ୟାନ୍ୟ ସ୍ତ୍ରୀ ଲୋକଙ୍କୁ ଘେରି ବସି 'ଦେଠେଇ'ଙ୍କ ଦୁର୍ଗୁଣ ଗାଉଥାଏ ।

“ସାନଅପା” ଓ ‘ଆଉ କନ୍ୟା’ ‘ତାରା’ ଘରେ ଥା’ନ୍ତି । ତାରା ସାଙ୍ଗରେ ବସି କଥା ହେବାକୁ ଆଜି ପ୍ରଥମ ଥରପାଇଁ କନ୍ୟାକୁ ପ୍ରଚୁର ଅବସର ମିଳିଛି । ‘ସାନଅପା’ ସାଙ୍ଗରେ ତ ତାର ଆଜି ପ୍ରଥମ ଥରପାଇଁ ସାକ୍ଷାତ, ଏ ସମୟରେ ସେମାନେ ‘ବଡ଼ଅପା’ କଥା ପକେଇଥାନ୍ତି । ‘ସାନଅପା’ ଓ ‘ତାରା’ ଦୁହେଁ ‘ବଡଅପା’ ଖୁବ୍ ମନେ ପକାଉଥାନ୍ତି । ସେ ଯଦି ଆଜି ଏଠି ଥା’ନ୍ତା, ଖୁବ୍ ମଜା ହୋଇଥାନ୍ତା, କନ୍ୟାକୁ ‘ବଡଅପା’ର ସବୁକଥା ଆଜି ମାଲୁମ ହେଲା । ସାନଅପା’ କହିଲା ଯେ ‘ଶଙ୍କରଲାଲ୍’ ‘ନରହେଣ’ ଘରେ ‘ବଡଅପା’କୁ ଭେଟିବାକୁ ଯାଇଥିଲା । ‘ବଡଅପା’ ଖୁବ୍ ଉଦାସ ଦିଶୁଥିଲା । ଶଙ୍କରଲାଲ୍‌କୁ ‘ବଡ଼ଅପା’ ସାଙ୍ଗରେ ମୁହଁକୁ କଥା ହେବାକୁ ବି ସୁବିଧା ମିଳିଲାନି । ଆଗରୁ ତ ବେଶ୍ ବନ୍ଧୁତା ଦେଖାଇ ହେଉଥିଲା, ଏବେ କଥା ହେବା ଦୂରେ ଥାଉ ଅପା ସାଙ୍ଗରେ ବି ଟିକେ କଥା ହେବାକୁ ଦେଲାନି । ଭବିଷ୍ୟତରେ ବି ଦେଖା କରିବାର ବାଟ ବନ୍ଦ କରିଦେଲେ । ଶଙ୍କରଲାଲ୍ କହୁଥିଲା ଯେ, ‘ବରହେଣ ର ପାରିବାରିକ ବାତାବରଣ ଅତ୍ୟନ୍ତ ଖରାପ । ଘରେ ଗୋଟିଏ ମାତ୍ର କୋଠରି । କ୍ରମଶଃ ସେ ଘର ଖଣ୍ଡିକ ରୁକ୍ଷ ହୋଇ ଉଠୁଛି । ପର୍ଦ୍ଦା ଟଙ୍ଗାଇ ଘର ବଖରାକୁ ଦୁଇଭାଗ କରାଯାଇଛି । ଯେତେବେଳେ ଶଙ୍କରଲାଲ ସେଠି ପହଞ୍ଚେ, ‘ନରହେଣ’ ଦଳେ ଲଫଙ୍ଗାକୁ ସାଙ୍ଗରେ ଧରି ମଦ ପିଉଥାଏ ଏବଂ ଭଲଗାର କଥା କହୁଥାଏ । କନ୍ୟା ଏକଥା ଶୁଣି ଖୁବ୍ କ୍ଷୁବ୍ଧ ହେଲା । ଆଜିର ସାମାଜିକ ସ୍ଥିତିରେ ନାରୀ ଜନ୍ମ ପାଇବା ଯେପରି ଏକ ଅଭିଶାପ । ତାକୁ ‘ବଡ଼ଅପା’ର ଅନ୍ତିମ ଅବସ୍ଥା ସ୍ପଷ୍ଟ ଦିଶୁଥାଏ… ଜୀବନ୍ତ ଏମିତି ଦିନେ ଅକାଳରେ ଝରି ପଡ଼ିବ । ସେ ନିଜର ସ୍ୱର୍ଗୀୟା ଭଉଜର ଅବସ୍ଥା ଚିନ୍ତା କରି ଅଭିଭୂତା ହୋଇପଡ଼ିଲା । ସ୍ତ୍ରୀ ପୁରୁଷ ପରସ୍ପରର ସମ୍ମାନ ରକ୍ଷା କରିବାକୁ ପ୍ରସ୍ତୁତ ନୁହଁନ୍ତି । ସାଧାରଣତଃ ସ୍ତ୍ରୀ ଆର୍ଥିକ ଦୃଷ୍ଟିରୁ ପୁରୁଷର ଆଶ୍ରିତା ଅଟେ, ତାର ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ନାହିଁ । ଏ ଦେଶର ନାରୀ ଶତାବ୍ଦୀ ବ୍ୟାପୀ ଏ ଦୁଃଖ ସହି ଆସୁଛି । ସୀତା ଓ ଦ୍ରୌପଦୀଙ୍କୁ ବି ଏହା ସହ୍ୟ କରିବାକୁ ପଡ଼ିଥିଲା ।

ତିନି ଚାରି ଜଣ ସ୍ତ୍ରୀ ଲୋକ ଢୋଲକ ଉପରେ ଗୀତ ଗାଉଥାନ୍ତି । ସଭିଙ୍କର କଣ୍ଠସ୍ୱର ତାଳଲୟ ବିବର୍ଜିତ । ସେମାନଙ୍କ ଭିତରୁ ଜଣଙ୍କ ନାଁ ‘ସୁନ୍ଦର’ । ବୟସ ପଞ୍ଚାବନ ବର୍ଷ । ଆଗଦାନ୍ତ ଦି’ଟା ତାର ଭାଙ୍ଗି ପଡ଼ିଛି । ଗୀତ ଗାଇଲାବେଳେ ସେହି ଭଙ୍ଗା ଦାନ୍ତର ଶୂନ୍ୟସ୍ଥାନରୁ ଲୟଭଙ୍ଗ ହେବାର ସ୍ୱର ସୃଷ୍ଟି ହେଉଛି । ଆଉଜଣକ ନାଁ ଶରବତୀ’ । ଗାଉଣା ବାଜଣାରେ ଖୁବ୍ ସଉକ । ଦେହସାରା ଗହଣା ଭର୍ତ୍ତି । ପଇସାବାଲା ସ୍ୱାମୀକୁ ବି ତାର ଖାତିର ନଥାଏ । ସଦାବେଳେ ସ୍ୱାମୀ ଉପରେ ସେ ଖଡ଼୍ଗ-ହସ୍ତା । ଘରକୁ ତାର ଏକାନ୍ତରେ ପର ପୁରୁଷଙ୍କ ଯାତାୟତ ହେବାର ଶୁଣାଯାଏ । ଏକଦା ଗାଉଣା ବାଜଣାରେ ଖ୍ୟାତି ଲାଭ କରୁଥିବା ବୟସ୍କା ‘ସୁନ୍ଦର’

'ଶରବତୀ' ଉପରେ ଚିଡ଼ିମିଡ଼ି ହୁଏ । ଆଉ ଜଣେ ହେଲା କିଶନ ସିଂର ବନ୍ଧୁ । ସେ ଝାଞ୍ଜ ବଜାଉଥାଏ । କିଶନ ସିଂର ବନ୍ଧୁ ବିଧବା । ସେ ନିଜ ପାଖ ପଡ଼ିଶାଙ୍କ ମଧ୍ୟରେ 'ନାରଦ ମୁନି' ରୂପେ ପରିଚିତ । ଶହରର ଅଛି ଯେ ଜଣେ ବଡ଼ ପ୍ରତିଷ୍ଠିତ ପଣ୍ଡିତଜୀ ସାଙ୍ଗରେ ତାର କୁଆଡ଼େ ଅବୈଧ ସମ୍ବନ୍ଧ ରହିଛି । ଝଡ଼ା ଫୁଙ୍କା ଦବା-ଦାରୁ ବିଷୟରେ ତାକୁ କିଛି କିଛି ଜଣା ଅଛି । ମାଲ୍ୟାଣୀ ଭଳି ତାର କାର୍ଯ୍ୟକଳାପ । ପରାମର୍ଶ ଦେବାକୁ ଓ ମିଠା ମିଠା କଥା କହି ମନ ଜିଣିବାକୁ ସେ ଆଗଭର । ବେଶ୍ ମନଲେସ ରହସ୍ୟ ବି କହିପାରେ । ସେମାନଙ୍କ ପାଖରେ 'ଗୋକୁଳଦ୍ୱାର' ର ଭିଖାରିଆଣୀ ବସିଥାନ୍ତି । ନିଜ ଦାଢ଼ୀ ଉପରେ ହାତ ବୁଲାଇଆଣି ଗୀତ ଗାଉଥିବ । ସ୍ତ୍ରୀ ଲୋକଙ୍କୁ ଶୁଣାଇ ଶୁଣାଇ କହୁଥାନ୍ତି "ପୋଡ଼ାମୁହାଁ ଷଣ୍ଡ ! ତୁମକୁ ଗୀତ ଗାଇ ଆସୁନି । ମୁଁ ପିଲାଦିନେ ଖୁବ୍ ଭଲ ଗାଉଥିଲି । ରହାସ ମଣ୍ଡଳୀରେ ମୁଁ ରାଧିକା ହେଉଥିଲି .. ।"

ତେବେ ଆଜି କିଆଁ ଏ ରୂପ ଭେକ ଧରି ବଇଚୁ ? ଆଣ୍ଠୁ କୁଞ୍ଚା ! ଦଶହାତ ଦାଢ଼ୀ ଲମ୍ବେଇ ମୋ ଗୀତର ଖୁଣ ବାଛୁ ବସିଲୁ । ମଲା ମୋର...ହୁଁ ।" 'ଶରବତୀ' ନିଜର ପତଳା ଅଥଚ କଠୋର ସ୍ୱରରେ ଏତିକି କହିଲା । ଭିଖାରିଆଜୀ ଆଉ 'ସୁନ୍ଦର ବୁଢ଼ୀ' ନୁହନ୍ତି ଯେ 'ଶରବତୀ'ର ସୁନା ଗୁନ୍ଦୀ ଭରି ଯୁବତୀ ତୁଣ୍ଡର କଥାରେ ଦବିଯିବେ । ସେ ହାତ ହଲାଇ କହିଲେ ତୋ ଗୀତର ଖୁଣ କାଢ଼ିବନି ? କଣ୍ଠ ସ୍ୱରତ ରେଲଗାଡ଼ିର ସିଟି ଭଳି ଶୁଭୁଛି" ପାଖରେ ବସିଥିବା ସ୍ତ୍ରୀ ଲୋକମାନେ ହସିଉଠିଲେ । 'ଶରବତୀ' ରାଗରେ ଜଳିଗଲା । କିଶନ ସିଂ ବନ୍ଧୁ କହିଲା... "ଏମିତି କୁହନା ପଣ୍ଡାଜୀ । ଶରବତୀ ରାଗିଲେ ଆଉ ସମ୍ଭାଳି ପଡ଼ିବ ନାହିଁ ।"

...ଆରେ ମୁଁ ସ୍ୱା' ରାଗକୁ ଡରିବ ନା' କଣ ? ସ୍ୱାକୁ ନା ଭଲ ଗୀତ ଗାଇଆସୁଛି ନାଁ' ସ୍ୱାର କଣ୍ଠସ୍ୱର ଭଲଅଛି । ... ଦେଖ...ଦୁନିଆଁ ସାରା ସଭିଏଁ କହୁଛନ୍ତି 'ଶରବତୀ' ଭଲ ଗୀତ ଗାଉଛି ବୋଲି ହେଲେ ତୁମକୁ କିଆଁ ତା' ଗୀତ ରୁଚୁନି ?"

ଶରବତୀର ନିନ୍ଦା ଶୁଣି ସୁନ୍ଦରବୁଢ଼ୀ'କୁ ଯେପରି ପାରଲୌକିକ ସନ୍ତୋଷ ମିଳିଲା । ସେ କହିଲା...'ହଁ "ଭିଖାରିଆଜୀ" ବେଶ ଭଲ ଗୀତ ଗା'ନ୍ତି । ଗୋକୁଳଦ୍ୱାର ପାଖରେ ତାଙ୍କ ଗୀତ ଯିଏ ଶୁଣିଛି ସେ ଜାଣିଛି ତାଙ୍କର ବାହାଦୁରି ।"

.. ଆରେ ସେଠିତ ଖାଲି ଭଜନ ହେଉଥିଲା । ଦେ ଢୋଲକ ମୋ ଆଡ଼କୁ..."ଏତିକି କହି ଭିଖାରିଆଜୀ ଢୋଲକ ଟାଣିନେଇ ଗୀତ ଆରମ୍ଭ କରିଦେଲେ ।"

"(ଆରେ) ଦୁନିଆରେ ଜନମ ସୁଖ ଦୁଃଖ ଭୋଗପାଇଁ

ମୋ ମନର ଆଶା ଯାଗେ ବଗିଚ୍ଚରେ ବୁଲାବୁଲି ପାଇଁ

ପ୍ରିୟ ମୋତେ ନେଇ ଚାଲ ତହିଁ……

(ବଗିଚ୍ଚରେ) ଏଠି ହାସ୍ୟ କାମ ଦାମ କିଛି ନାହିଁ

ଏଠି କେତେ ଭଲ ଲୁଗା ସଫା କରିବାପାଇଁ ।"

ବାହାରେ ବସିଥିବା ମହିପାଳ ଖୁବ୍ ଯୋରରେ ହସିଉଠିଲା । ସେଠି ବସିଥିବା ସମସ୍ତେ ହସିଉଠିଲେ । ସେତେବେଳେ ଶଙ୍କର ଲାଲା ଓ ବର୍ମାର ଅନୁରୋଧରେ ସଜ୍ଜନ ନିଜର ବ୍ରଜଭାଷା ସମ୍ବନ୍ଧୀୟ ସାହିତ୍ୟ ଚର୍ଚ୍ଚା କରୁଥିଲା । ଏ ସାଂସ୍କୃତିକ କଥାବାର୍ତ୍ତା ମଝିରେ ମହିପାଳର ଠୋ ଠୋ ହସ ବଡ଼ ଅଡ଼ୁଆ ବୋଧହେଲା । ବିରକ୍ତ ହୋଇ କର୍ଣ୍ଣେଲ ପଚାରିଲା… "ଏ' କି ପ୍ରକାର ବୌଦ୍ଧିକତା ?" ମହିପାଳ ଭିତରୁ ଆସୁଥିବା ଗୀତ ପ୍ରତି ଧ୍ୟାନ ଆଗ୍ରହରେ ଆକର୍ଷଣ କରି କହିଲା…"ଏ ଗୀତ ନିଶ୍ଚୟ କେଉଁ ଘରୋଇ ମହିଳା କମ୍ପୋଜ କରିଛି । ବିଚାରୀ କେଉଁ ଅନ୍ଧାର ଘର କୋଣରେ କାମ କରିକରି ଥକି ପଡିଥିବା ନିରସ ନବଯୁବତୀ ତା'ର କଳ୍ପନାର ପ୍ରିୟତମ ସାଙ୍ଗରେ କେଉଁ ରମଣୀୟ ସ୍ଥାନକୁ ବୁଲିଯାଇଛି । ସେଠାରେ କିଛି ଘର କାମରେ ଅଭ୍ୟସ୍ତା ମହିଳା ନିଜକୁ ନିଷ୍କ୍ରିୟ ବୋଧକରି ଲୁଗା ସଫା କରିବାର ପ୍ରୋଗ୍ରାମ କରି ବସିଛି… ଏଇ ହେଉଛି ଆମ ସମାଜର ନାରୀ-ମନ" ।

…ଶୁଣ' ବନକନ୍ୟା କବାଟ ପାଖରେ ଠିଆ ହୋଇ ମୃଦୁ କଣ୍ଠରେ ସଜ୍ଜନ ଉଦ୍ଦେଶ୍ୟରେ ଡ଼ାକିଲା । ସଜ୍ଜନ ଉଠି ବନକନ୍ୟା ପାଖକୁ ଚାଲିଗଲା । ଦୁହେଁ କିଛି ସମୟ ଚୁପ୍‌ଚାପ କଥା ହେଲେ । ସେ ଦୁହିଙ୍କ ଗୋପନୀୟ କଥାର ମର୍ମ ହେଲା ଯାହାକୁ କେନ୍ଦ୍ର କରି ଆଜିର ଏ ସଭିଛିବ ସେହି ଶିଶୁଟିକୁ କଣ ପ୍ରେଜେଣ୍ଟେସନ ଦିଆଯିବ !

ମହିପାଳ ସମସ୍ତଙ୍କୁ ଶୁଣେଇ ଶୁଣେଇ କହିଲା "କହୋ କର୍ଣ୍ଣେଲ ! ବା'ଘର ପୁଅଙ୍କୁ ମିଆଁ ବିବୀ ଏ ପ୍ରକାର ଚୁପ୍‌ଚୁପ୍ କଥାବାର୍ତ୍ତା ହେବା କଣ ଠିକ୍ ?" କନ୍ୟା ମୁହଁରେ ଲଜ୍ଜାର ରକ୍ତିମା ବୋଳି ହୋଇଗଲା । ସଜ୍ଜନ ହସି ହସି କହିଲା…"ଆରେ ବାବା ଯେବେ ମିଆଁ ବିବୀ ରାଜି ତୋ କ୍ୟା କରେଗା କାଜୀ ?"

ଅନ୍ୟମାନେ ହସି ଉଠିଲେ । ଖୁସିରେ ଆତ୍ମହରା ହୋଇ କନ୍ୟା ନିଜର ଭାବୀ ସ୍ୱାମୀକୁ ଗର୍ବଭରା ଦୃଷ୍ଟିରେ ଚାହିଁଲା । ସଜ୍ଜନର ଧ୍ୟାନ ସେ ଆଡ଼ ନଥିଲା । କର୍ଣ୍ଣେଲ ସହର୍ଷ ଦୃଷ୍ଟି ଫେରାଇନେଲା । ମହିପାଳର ହୃଦୟରେ ଈର୍ଷା ଓ ଲାଳସାର କ୍ଷତ ସୃଷ୍ଟି ହେଲା । ସଜ୍ଜନ' ମୃଦୁ ସ୍ୱରରେ କହିଲା—"ଯେଉଁ ପ୍ରେଜେଣ୍ଟେସନ କହିବ, ତା' ଆଣି ଦେବି" ସେତେବେଳେ ମନ ତାର ଗର୍ବରେ ଫୁଲି ଉଠୁଥିଲା । ସ୍ୱାମୀର ଭୂମିକା

ନିର୍ବାହ କରି ସେ ନିଜର ପତ୍ନୀ ସାଙ୍ଗରେ ବ୍ୟବହାରିକ ତଥା ସାଂସାରିକ ପରାମର୍ଶ କରୁଥିଲା । ଏ ନୂଆ ପ୍ରକାର ଅନୁଭବ ସେ ସମୟରେ ମନକୁ ତାର ଉଲ୍ଲାସରେ ଭରି ଦେଉଥିଲା ।

ସ୍ୱାମୀ ପାଖରେ ଫରମାଇଶ' କରିବାକୁ ଆସି କନ୍ୟାର ସଙ୍କୋଚ ପୁରାପୁରି ଦୂର ହୋଇ ନ ଥିଲା । ଶଙ୍କରଲାଲର ପତ୍ନୀ ସ୍ୱରୂପା ପୁଅପାଇଁ ତୋଳାଏ ଓଜନର ଝିନ୍ଝିନା ଓ ଚେନ୍ ଆଣିଥାଏ । ସ୍ୱରୂପା ଓ ତାଙ୍କର କଥାରେ ସର୍ବଦା 'ଆମର ଇଏ' 'ଆମର ଇଏ'··· ପତିକୁ ଇଙ୍ଗିତ କରି ହେଉଥିବା କଥାବାର୍ତ୍ତାର ବାତାବରଣ ସେ ବିରକ୍ତ ହୋଇ କନ୍ୟା ଆସିଥିଲା ଫରମାଇଶ କରିବାକୁ । ହେଲେ ସେମାନଙ୍କଠାରୁ ମୂଲ୍ୟବାନ ଉପହାର ବିଷୟରେ ଆଦେଶ ଦେବାକୁ ସେ ସଙ୍କୋଚ ବୋଧ କରୁଥାଏ । ସଜ୍ଜନ ବି ନିଜର ସ୍ୱୀକୃତି ଦେଇ ସାରିଛି । କନ୍ୟାର ଇଚ୍ଛା ସବୁ କଥାରେ ସଜ୍ଜନକୁ ନିଜ ମୁଠିରେ ଆବଦ୍ଧ କରି ରଖିବ । ସାଧାରଣ ମଧ୍ୟବିତ୍ତର ଅଭାବ ଭିତରେ ପାଳିତା ଓ ପ୍ରଗତିଶୀଳ ବିଚାର ସମ୍ପନ୍ନ ବନକନ୍ୟା' ନୂଆ ଉନ୍ମାଦନାରେ ଜୀବନର ସ୍ୱାଦ ଚାଖିବାକୁ ଧିରେ ଧିରେ ଯେପରି ଆଗେଇ ଆସୁଛି । ମନର କଥା ମନରେ ରଖି ପାରୁନିକି କହି ବି ପାରୁନି ! ସଜ୍ଜନ ପଚାରିବାରୁ କହିଲା···"ଏମାନେତ ମୋ ପାଇଁ ମୂଲ୍ୟବାନ ଶାଢ଼ୀ ଆଣିଛନ୍ତି । 'ସ୍ୱରୂପା' ଝିଅପାଇଁ ସୁନାର ଝିନ୍ଝିନା ଆଣିଛି···ମୁଁ ଆଉ ବା କଣ କହିବି···ତୁମେ ଏଥିକୁ ଯାହା ବିଚାର କରିବ । ନଚେତ୍ ଭାଇ ସାହେବଙ୍କ ସାଙ୍ଗରେ ପରାମର୍ଶ କରି ଠିକ୍ କରିବ ।" ଏତିକି କହି ବନକନ୍ୟା ଚାଲିଗଲା ।

ଘର ଭିତରୁ ଢୋଲ ଶବ୍ଦ ଆସୁଥାଏ । ସଜ୍ଜନ ଏ ସମୟରେ ଏସାରିକ ଚିନ୍ତାରେ ଅଭିଭୂତ ଥାଏ । ଯେତେବେଳେ ସେ ଦୁହେଁ କଥା ହେଉଥିଲେ ବର୍ମା ମହିପାଳକୁ ପଚାରିଲା" 'ଷଠୀ' କାହାକୁ କହନ୍ତି ? ପ୍ରଶ୍ନର ଉତ୍ତର ଦେଇ ମହିପାଳ କହିଲା "ମୁଁ ତ ଏ ବିଷୟ ଉପରେ ବିଶେଷ ଧ୍ୟାନ ଦେଇନି, ତେବେ ଏହା ଏକ ତାନ୍ତ୍ରିକ ଉପଚାର । ପିଲା ଜନ୍ମର ଷଷ୍ଠ ଓ ଦ୍ୱାଦଶ ଦିନ ବିଶେଷ ତାତ୍ପର୍ଯ୍ୟ ପୂର୍ଣ୍ଣ । ହିନ୍ଦୁ ମତାନୁସାରେ ସେଦିନ ଷଷ୍ଠୀ ଦେବୀଙ୍କର ପୂଜା କରାଯାଏ ।

ସଜ୍ଜନ ଭାବୁଥିଲା କି ପ୍ରକାର ଉପହାର ଦେଲେ ଭଲ ହେବ । ପରିସ୍ଥିତି ଦୃଷ୍ଟିରୁ ବର୍ମାଭଳି ସାଧାରଣ ମଧ୍ୟବର୍ଗୀୟ ଲୋକ ସାଙ୍ଗରେ ସମ୍ପର୍କ ରଖିବାକୁ ବାଧ୍ୟ ହୋଇଛି ସେ ଜାଣୁ ଏ ପ୍ରକାର ସମ୍ପର୍କ ସ୍ଥାପନାକୁ ସହଜ ଭାବରେ ଗ୍ରହଣ କରିବାକୁ ସେ ଆନ୍ତରିକ ଚେଷ୍ଟା କରିନାହିଁ । ମୁହଁରେ ମିଠା କଥା କହି, ବନ୍ଧୁତା ଜମେଇବା ଓ ସମ୍ପର୍କ ସୃଷ୍ଟି କରିବା ଦୁଇଟି ଅଲଗା କଥା । ସେ କନ୍ୟାକୁ ବଡ଼ ଲୋକର ପତ୍ନୀ ମନେ କରି ମୂଲ୍ୟବାନ ଶାଢ଼ୀ ଦେଇଛି । କନ୍ୟା ପକ୍ଷରୁ

କିଛି ଉପହାର ନିଷ୍ଟୟ ସଜ୍ଜନର ମର୍ଯ୍ୟାଦା ମୁତାବକ ହେବା ଦରକାର । ବହୁତ ବେଶୀ ମୂଲ୍ୟର ହେବା ବି ଠିକ୍ ନୁହେଁ । କାରଣ ଭବିଷ୍ୟତରେ ଏ ଲୋକ ବନ୍ଧୁତାର ଦ୍ୱାହି ଦେଇ ଗୋଡ଼ ଲମ୍ବାଇ ବସିବେ । ମହିପାଲ ବୁଝାଉଥିଲା ।" ଷଷ୍ଠୀ ଦିନଠାରୁ ଭାଗ୍ୟବାଦର ସୃଷ୍ଟି ହୋଇଥାଏ ବୋଲି ଆମର ବିଶ୍ୱାସ ଅଛି । ଆଜି ଦିନ ବିଧାତା କାହାକୁ ରାଜା କାହାକୁ ରଙ୍କ କରିଦିଏ । କିଏ ବେଇମାନ ହୁଏ ଆଉ କିଏ ପରମ ସାତ୍ତ୍ୱିକ । କିଏ ବା ସାତ୍ତ୍ୱିକ ସଂସ୍କାରର ହୋଇ ବି ଭାଗ୍ୟ ଚକ୍ରରେ ପଡ଼ିଯାଇ ବହୁତ ଖରାପ ହୋଇ ଯାଇଥାଏ ।

...ତା' ପରେ ?

...ଏହା ସତ ଯେ ଭାଗ୍ୟର ଲେଖାକୁ କେହି ଲଙ୍ଘନ କରି ପାରେନା" । କର୍ଣ୍ଣେଲ କହିଲେ ।

...ତୁମେ ଭାଗ୍ୟକୁ ବିଶ୍ୱାସ କର ମହୀପାଳ ?"

...ନମାନି ମଧ୍ୟ "ମାନେ"

...ଭାଗ୍ୟକୁ ଯଦି ମାନିଛ ଏ ଧନୀ ଦରିଦ୍ର ଶିକ୍ଷା ଅଶିକ୍ଷା ଇତ୍ୟାଦି ବିଭେଦ.......

...ଏଥିପାଇଁ ସାମନ୍ତୀ, ପୁଞ୍ଜିପତି ବର୍ଗଙ୍କୁ ମୁଁ କାହିଁକି ଦାୟୀ କରେ... ଏଇକଥା ପଚାରିବାକୁ ଚାହୁଁ ତ ?"

...ହୁଁ ।"

...ସଜ୍ଜନ ! ନୂଆ ଚେତନା ଅନୁଭବରୁ ସୃଷ୍ଟି ହୋଇଥାଏ । ଅନୁଭବ ସିଦ୍ଧ କରିବାକୁ ବ୍ୟକ୍ତି ବା ସମାଜକୁ ଯାହା କରିବାକୁ ହୁଏ, ସହିବାକୁ ପଡ଼େ, ତାହା ହେଉଛି ବ୍ୟକ୍ତିର ଭାଗ୍ୟ । ତା' ଭାଗ୍ୟର ସାମାଜିକ ଦାୟିତ୍ୱ ରହିଛି । କହୁ କହୁ ମହିପାଲର ସ୍ୱର ଗମ୍ଭୀର ହୋଇ ଉଠିଲା । ପୂର୍ବ ଜନ୍ମରେ ମଣିଷ ଯାହା କରିଥାଏ ଏ ଜନ୍ମରେ ତାହା ଭୋଗ କରେ । ଏ ଜନ୍ମରେ ସେ ଯାହା କରିଛି ତାର ପରିଣତି ଏ ଜନ୍ମ ବା ପର ଜନ୍ମରେ ଭୋଗ କରିବ । କୃତ କର୍ମର ପରିଣତି ଅଲଙ୍ଘନୀୟ । ତାକୁ ଭୋଗିବାକୁ ହିଁ ପଡ଼ିବ, କେହି ଏଥିରୁ ତାକୁ ଉଦ୍ଧାର କରିପାରିବେ ନାହିଁ ।" ଗମ୍ଭୀର ସ୍ୱରରେ ମହିପାଲ ଏଭଳି ସ୍ୱଗତୋକ୍ତି କରୁଥିଲା ଯଦ୍ଦ୍ୱାରା ବୋଧ ହେଉଥିଲା ଯେ ସେ ଯେପରି ଏକାନ୍ତ ଏକାକୀ ଏ କଥା କହୁଛି । ଅନ୍ୟ କାହାରି ଉପସ୍ଥିତି ସେଠାରେ ନାହିଁ ।

ଗତ ଦୁଇ ଦିନରେ ଗଭୀର ଅବସାଦରୁ ଅନୁଭବରୁ ସଜ୍ଜନଙ୍କୁ ଏପରି ବୋଧ ହେଲା ଯେ ମହୀପାଳ ଯେପରି କୌଣସି ଅପକର୍ମ ପାଇଁ ପଶ୍ଚାତାପ କରୁଛି । କାରଣ ଜାଣିବାକୁ ଇଚ୍ଛା ହେଲା । ପୁଣି ଦୁଇଜଣ ବାହାର ଲୋକ . ଶଙ୍କରଲାଲ ଓ ବର୍ମାଙ୍କ ଉପସ୍ଥିତି ପ୍ରତି ତାର ଧ୍ୟାନଗଲା । ଏ ପ୍ରକାର ସଚେତନତା ସତ୍ତ୍ୱେ ସଜ୍ଜନର ଇଚ୍ଛା ହେଲା ଯେ ସେ ସମସ୍ତଙ୍କ ସାମନାରେ ମହୀପାଳଙ୍କୁ ଏ ଅନୁତାପର କାରଣ ଜିଜ୍ଞାସା କରିବ । ମହୀପାଳର ମୁହଁ ଗମ୍ଭୀର ଚିନ୍ତାରେ ଝଲକରେ ଆଚ୍ଛନ୍ନ ହେଲାଭଳି ବୋଧ ହେଉଥିଲା । ପୂର୍ବର ପରିହାସ ତରଳତା ସେଠାରେ ନାହିଁ, ସଜ୍ଜନ ଆଶ୍ୱସ୍ତ ହେଲା । ପ୍ରତିଦ୍ୱନ୍ଦ୍ୱୀ କଳାକାର ମିତ୍ର ପ୍ରତି ତା' ମନର ଗୁପ୍ତ ହିଂସା ହିଁ ଏ ପ୍ରକାର ଆଶ୍ୱସ୍ତିରେ ମିଶି ଯାଇଛି ଯେପରି । ସଜ୍ଜନ ମହୀପାଳଙ୍କୁ ଲକ୍ଷ୍ୟକରି କହିଲା......"କେଉଁ ଗଭୀର ପାପର ସ୍ମୃତି ଏଇନେ ଆଚ୍ଛନ୍ନ କଲା ?"

ମହୀପାଳ ଚମକି ଉଠିଲା, ଅଚାନକ ଗିରଫ ହେଲାଭଳି ବୋଧ ହେଲା ତାର । ତୁରନ୍ତ ସପ୍ରତିଭ ହୋଇ ସାମାନ୍ୟ ହସି ନିର୍ମଳ ହେବାକୁ ଚେଷ୍ଟାକରି ଆଧ୍ୟାତ୍ମିକ ମୁଡ଼୍‌ରେ କହିଲା···ଜୀବନ ଟାତ ପାପମୟ, କେଉଁ ପାପର କଥା ଆଉ କହିବ ?" କଥାଟା ସଜ୍ଜନ ଦେହରେ ଲାଗିଲା । ସେ ଏ ପ୍ରଶ୍ନ ପଚାରି ନିଜେ ଅନୁତପ୍ତ ବୋଧ କଲା । ସେ ନିଜେ କଣ କମ୍ ପାପୀ ? ତାକୁ ଯଦି ମଜାରେ କେହି ଏ ପ୍ରକାର ପ୍ରଶ୍ନ ପଚାରି ବସେ ? ଭାବାବେଗରେ ସେ କହିଲା ··"ମୁଁ ବି ବହୁତ ବଡ଼ ପାପୀ ବନ୍ଧୁ : ତୁମର ସିଦ୍ଧାନ୍ତ ଅନୁଯାୟୀ କିଏ ଜାଣେ ପରଜନ୍ମରେ ମୁଁ କ'ଣ ଭୋଗିବି ।"

···ଆରେ, ଆମେ ସଭିଏଁ ପାପୀ । ସଭିଏଁ ନିଜ କର୍ମଫଳ ଭୋଗ କରୁଛେ । କର୍ଣ୍ଣେଲ୍ କଥାଟାକୁ ଲଘୁକରି ବାତାବରଣକୁ ହାଲ୍‌କା କରିବାକୁ ଚାହିଁଲା ।

···ହାଲୋ"। ଡ଼ା : ଶୀଳା ଓ ଂ କନ୍ୟା ସାଥୀରେ ଦୁଆର ମୁହଁରେ ଠିଆ ହୋଇ ସମବେତ ସଂବୋଧନ କଲା । କଥାରେ ତାର ଫୁର୍ତ୍ତି । ମହୀପାଳଙ୍କୁ ଦେଖି ତା'ର ଫୁର୍ତ୍ତି କ୍ରମଶଃ ନିଷ୍ପ୍ରଭ ହୋଇ ଆସିଲା । କନ୍ୟା ସଜ୍ଜନଙ୍କୁ ଲକ୍ଷ୍ୟକରି କହିଲା "ଏ ପର୍ଯ୍ୟନ୍ତ ତୁମେ ଗଲନି ?"

···ଆସ୍ତୁ, ଯାଉଛୁ ଏବେ ।" ବିଚଳିତ ସ୍ୱରରେ ସଜ୍ଜନ ଏତିକି କହିଲା ।

···ବିଲକୁଲ ଠିକ୍ । ଏ ଦୁର୍ଜନ ପ୍ରତି ଠିକ୍ ଏମିତି ଆଚରଣ ଉପଯୁକ୍ତ ।"

···ଆରେ ଯୋଡା ମାଡ଼ି ବି ଦିଅ । ଆଜିର ଦୁନିଆଟା ତ ଆପଣମାନଙ୍କର ମନୋପଲି...."ହସି ହସି ସଜ୍ଜନ କହିଲା । ସେଥିକି ଆମର ଡ଼ର ନାହିଁ । ହେଲେ ଡ଼ର ହେଉଛି ଆମ କୋମଳ ଯୋଡା ଏହାଦ୍ୱାରା ନଷ୍ଟ ହେବ ସିନା । ଆମର ନୁକ୍‌ସାନ

ହେବ ଏବଂ ପୁରୁଷ ମାନଙ୍କ ନିର୍ଲଜ ଅଭ୍ୟାସ ବଦଳିବ ନାହିଁ ।" ଶୀଳା କଥାରେ ସମସ୍ତେ ଉଚ୍ଚ ସ୍ୱରରେ ହସିବାକୁ ଲାଗିଲେ ।

ମିଃ ବର୍ମା ଚେୟାରରୁ ଉଠି ଡ଼ାଃ ଶୀଳାକୁ କହିଲେ ..."ଆସନ୍ତୁ ଡ଼ାକ୍ତର ସାହେବା ।" ସେଠାରେ ବସିବାକୁ ଅଧିକ ସେ ସ୍ପେସ୍ ନଥିଲା । ମିଃ ବର୍ମା ସଫାଇ ଦେବାକୁ ଯାଇ କହିଲେ···"କଣ କରିବା, ବସିବାକୁ ବି ସ୍ଥାନର ଅଭାବ । ଘରସାରା ତ ମହିଳାମାନଙ୍କ ରାଜୁତି ।

···ମୁଁ ଯାଉଛି "ମହିପାଲ ଚଳିକୁ ମୁହଁକରି ଉଠିବାକୁ ଲାଗିଲା ।

···କାହିଁକି, ବସୁନା ।" ଡ଼ା : ଶୀଳାର ସ୍ୱରରେ ଆଗ୍ରହ । ଆଖି ଯେପରି କିଛି ଯାଚନା କରିବାର ଭଙ୍ଗୀ । ଯେଉଁଦିନ କର୍ଣ୍ଣେଲ ମହିପାଲକୁ ଶୀଳା ଘରୁ ନେଇ ଆସିଥିଲା ତା'ପରେ ଆଜି ହେଉଛି ସେମାନଙ୍କ ସାକ୍ଷାତର ପ୍ରଥମ ଦିନ ।

ମହିପାଲ ଆଖି ଟେକି ଅତି ଅସହାୟ ଦୃଷ୍ଟିରେ ଶୀଳାକୁ ଚାହିଁଲା । ପୁଣି କହିଲା···"ନା, ମୋତେ ଏବେ ଯିବାକୁ ହେବ···ବୁଦ୍ଧ, ମୁଁ ବି ଯିବି । କର୍ଣ୍ଣେଲ । ଟିକେ ଶୁଣ ତ !" ସଜ୍ଜନ କହିଲା ।

ମୁଁ ଆସିବା ମାତ୍ରେ ସମସ୍ତେ ଚାଲି ଯିବାକୁ ବସିଲେ ?" ଶୀଳା ହସି ହସି ଅଥଚ ସାମାନ୍ୟ ଦୁଃଖ ଭରା ସ୍ୱରରେ କହିଲା । ·· ନା, କର୍ଣ୍ଣେଲକୁ ତୁମର ଅର୍ଦ୍ଦଲୀ ରୂପେ ଛାଡ଼ି ଯାଉଛୁ । ଆଉ ମୁଁ ବି ଏଇ ସଙ୍ଗେ ସଙ୍ଗେ ଫେରି ଆସିବି । ଏବେ ସମ୍ପୂର୍ଣ୍ଣ ସ୍ୱାଧୀନ ଜୀବନରୁ ମୁଁ କ୍ରମଶଃ ଗୋଲାମ ହେବାକୁ ଯାଉଛି "ଏତିକି କହି ସହାନୁଭୂତି ଦୃଷ୍ଟିରେ କନ୍ୟାକୁ ଚାହିଁଲା ।···ପୁରୁଷମାନେ ସ୍ତ୍ରୀ ମାନଙ୍କୁ ପାଦତଳେ ରଖନ୍ତି, ବା ମୁଣ୍ଡ ଉପରେ ବସାନ୍ତି କିନ୍ତୁ ନିଜର ସମାନ ସ୍କନ୍ଦ ବୋଲି ଭାବନ୍ତି ନାହିଁ । ଆଖିରେ ମିଠା ଅଭିଯୋଗ ନେଇ କନ୍ୟା କହିଲା । କଥାରେ ଅଭିଯୋଗ ଯେତିକି ମଧୁରତା ତା'ଠୁ ଅଧିକ ।

ସଜ୍ଜନର ମନେ ହେଲା ଯେପରି କନ୍ୟାର ଏ ପ୍ରେମ ଅତି ନିର୍ମଳ, ଅତି ମାତ୍ରାରେ ଛଳନା ଶୂନ୍ୟ ଅଟେ । ସେ ଇଚ୍ଛା କରିମଧ୍ୟ ଏ ପ୍ରକାର ଶୁଦ୍ଧତା ନିଜ ଭିତରେ କାହିଁକି ଅନୁଭବ କରି ପାରୁନି···ତାହାହିଁ ଭାବୁଥିଲା । ସେ ନିଜେ ନିଜକୁ କାହିଁ ଅନ୍ୟଠାରୁ ସ୍ୱତନ୍ତ୍ର କରି ରଖିଛି ? କନ୍ୟାର ପ୍ରେମ ଗଙ୍ଗାରେ ତା' . କଳୁଷିତ ପ୍ରେମର ମିଳନ ହେଉଛି । ସେ କି'ଣ କେବେ ନିର୍ମଳ ହୋଇ ପାରିବନି ?

\+ \+ \+ \+ \+ \+ \+ \+

ମହିପାଲ ଓ ସଜ୍ଜନ ଦୁହେଁ ଏକାଠି ଗଳି ରାସ୍ତାରେ ଚାଲୁଥିଲେ ଚୁପ୍ ଥିଲେ । ଦୁହିଁଙ୍କ ମନ ଭୟଙ୍କର ଭାବେ ଆନ୍ଦୋଳିତ ହେଉଥିଲା ।

“ମୁଁ ଖୁବ୍ ନୀଚ – କନ୍ୟା ଭଳି ସଚ୍ଚରିତ୍ର ଯୁବତୀର ଯୋଗ୍ୟ ନୁହେଁ । କିନ୍ତୁ ମୁଁ ନିଶ୍ଚୟ ନିର୍ମଳ ହେବି ।” ସଜ୍ଜନ କନ୍ୟାର ନିର୍ମଳତାକୁ ଆଖି ଆଗରେ ରଖି ନିଜେ ସେଥିରେ ଦ୍ରବୀଭୂତ ହେବାର ଅନୁଭବ କଲା ।

“ମୁଁ ଖୁବ୍ ତୁଚ୍ଛ । ଜୀବନକୁ ମୋର ଶତ ଧିକ୍କାର ।” ମଦ୍ୟପାଳ ସ୍ୱଗତୋକ୍ତି ଛଳରେ ମୁଖର ହୋଇ ଉଠିଲା ।

ଗଳିରାସ୍ତା ନିର୍ବାଚନ ଚର୍ଚ୍ଚାରେ ମୁଖରିତ । କିଏ କହୁଥାଏ କଂଗ୍ରେସ ବେଶ୍ ଆଗେଇଛି, ଆଉ କିଏ ଜନ ସଂଘର ଜୟନାଦ କରୁଛି । ଦ୍ୱିପ୍ରହର ପରର ଶଭମରରେ କିଶାନ ମଜଦୂର ପ୍ରଜାପାର୍ଟିର କାଣ୍ଡିଡେଟ ନିଷ୍କ୍ରିୟ ହୋଇ ପଡ଼ିଥାଏ । ଘୋଡ଼ାସବାର, ଉଦିତ ସୂର୍ଯ୍ୟ, ଡଙ୍ଗା, ଫୁଲ, ଇଂଜିନ ଇତ୍ୟାଦି ନିର୍ବାଚନ ଚିହ୍ନର ଚର୍ଚ୍ଚା ବି ହେଉଥାଏ ।

# ପରିହରଣ

ଗଳି ଭିତରୁ ଦୁହେଁ ବଡ଼ ରାସ୍ତା ଉପରକୁ ଆସିଲେ । ଗୋଲେଇ ଦରଜା ପାଖ ଛକ, ଲୋକ ଗହଳିରେ ପୂରିଥିଲା । ଲାଉଡ ସ୍ପିକରର ଶବ୍ଦ ପବନରେ ଭାସି ଆସୁଥିଲା । ଭିକ୍ଟୋରିଆ ପାର୍କର ଦୁଇ ପାଖରେ ବସିଥିବା ଯେତେସବୁ ଚା ଆଉ ପାନ ଦୋକାନରେ ପଡ଼ିଥିବା ବେଞ୍ଚ ଗୁଡ଼ିକରେ ଆଉ ବସିବା ପାଇଁ ଯାଗା ନଥିଲା । ଭିକ୍ଟୋରିଆ ପାର୍କରେ ଭୋଟଦିଆ ଚାଲିଥିଲା । ପୋଲିସ୍, କାଖରେ ଫାଇଲ ଜକା ସରକାରୀ କର୍ମଚାରୀ, ଅଫିସର, ମଟର, କାର, ସବାରୀ, ପାଲିଙ୍କି—ଏହି ଜନସମାଗମକୁ ଅଧିକ ଘନ କରି ତୋଳୁଥିଲା ।

ସଜ୍ଜନ ଆଜି ଏ ଭିଡ଼ରେ ନିଜର ଗାଡ଼ିର ରକ୍ଷଣାବେକ୍ଷଣ ତଥା କୌଣସି ଭଙ୍ଗାରୁଜା ଜନିତ ଅପ୍ରୀତିକର ପରିସ୍ଥିତିର ମୁକାବିଲା କରିବା ପାଇଁ ନିଜ ଡ୍ରାଇଭର ସାଙ୍ଗରେ ନେଇ ଆସିଥିଲା । କେବଳ ଲୋକମାନଙ୍କର ପାଟିତୁଣ୍ଡରେ ନିର୍ବାଚନର ବାତାବରଣ ମୁଖରିତ ହେଉଥିଲା । ଖୁବ୍ ଭଲ ଭାବରେ ଆୟୋଜନ କରାଯାଇଥିଲା । ସଜ୍ଜନ ଓ ମହିପାଲ ଗାଡ଼ି ପାଖକୁ ଆସିବା ସମୟରେ ଡ୍ରାଇଭର ସେଠାରେ ନଥିଲା । ସଜ୍ଜନ ଭୀଷଣ ରାଗିଗଲା । ମହିପାଲ କହିଲା ଆଚ୍ଛା···ଗୁଡ଼···ଏସବୁ ଦିନରେ ସେ କେତେସମୟ ଏକୁଟିଆ ଗାଡ଼ିରେ ବସିରହିଥିବ ? ଏଇଠି କୋଉଠି ଥିବ । ସେ ଆସୁଆସୁ ଚାଲି ପାନ ଖାଇବା । ମଣିଷ କେତେବେଳୁ ପାନ ଖଣ୍ଡେ ଖାଇନି । କିନ୍ତୁ ସଜ୍ଜନର ଲକ୍ଷ୍ୟ ଡ୍ରାଇଭର ଉପରେ ପୁରା ଥାଏ । କନ୍ୟା ତା ପାଇଁ ହୁଏତ ପ୍ରତୀକ୍ଷା କରିଥିବ । ଚାରିଟା ସମୟରେ ଦେଠେଇଙ୍କ ଘରେ ସ୍ତ୍ରୀ ଲୋକଙ୍କର ଭିଡ଼ ଜମିଯିବ । ସେ ଭିଡ଼ ଭିତରୁ ତାକୁ ଡାକିବା ମୁସ୍କିଲ ହୋଇଯିବ । କାଲିଠାରୁ ସେ କନ୍ୟାକୁ ବିଶେଷ ଭାବରେ ପ୍ରେମ କରୁଛି । କାଲି ଚମ୍ପାକୁ ରୂପ ରତନ ଘରେ ଭେଟିଥିଲା । ଚମ୍ପାକୁ ସେ ପସନ୍ଦ କରୁଥିଲେ ମଧ୍ୟ ଚମ୍ପା ଯେ କନ୍ୟା ହୋଇ ନପାରେ ଏ ବଦ୍ଧମୂଳ ଧାରଣା ତାର ଥିଲା । ଚମ୍ପା ତାର ରକ୍ଷିତା ହୋଇପାରେ କିନ୍ତୁ ପତ୍ନୀ ନୁହେଁ । ସେ ପତ୍ନୀ ଚାହୁଁଥିଲା । ସେ ନିଜର ଅନିୟମିତ ଜୀବନ ପ୍ରତି ବିତସ୍ପୃହ ହୋଇଉଠିଲା । ଆଜି ପର୍ଯ୍ୟନ୍ତ ସ୍ତ୍ରୀର ଦାୟିତ୍ୱ ନେଇନଥିବା ଜୀବନକୁ ସେ ଘୃଣା କରି ସ୍ତ୍ରୀର ବନ୍ଧନ ଚାହୁଁଥିଲା । ଜାଲରେ ଛନ୍ଦି ହୋଇଥିବା ହାତୀ ପରି ସେ ମୁକ୍ତ ହୋଇ ବନ୍ଧନ ଚାହିଁଥିଲା । ବ୍ରଜ ଭୂମିରେ କନ୍ୟା ସହିତ ବୁଲି, ପ୍ରେମ ନିବେଦନ ପୂର୍ବକ କନ୍ୟାର ସର୍ବସ୍ୱ ଲୁଣ୍ଠନ କରିବା ପାଇଁ ସଜ୍ଜନ ଯେଉଁ ଷଡ଼ଯନ୍ତ୍ର କରୁଥିଲା ତାର ପରିଣତି ବିଫଳ ହୋଇଗଲା । ଏହି ବିଫଳତାର ଗ୍ଲାନି ସମଗ୍ର ବ୍ରଜ ଭୂମିରେ ନେଇଁ ଉଠୁଥିଲା । କିନ୍ତୁ ତା'ର ଅବଚେତନ ମନ ଭିତରେ ସୁପ୍ତ

ଅବସ୍ଥାରେ ଥିବା କାମପ୍ରବୃତ୍ତି ରାଜାସାହେବଙ୍କ ଗହଣରେ ଚନ୍ଦାକୁ ଦେଖି ଚେଇଁ ଉଠିଥିଲା । ଚନ୍ଦା ପାଇଁ ଯେ ସେ ଏପରି ହେଲା ତା ନୁହେଁ, ଅନ୍ୟ ଯେ କେହି ମିଳିଥିଲେ ମଧ୍ୟ ସେ ସେଇ ମୁହୂର୍ତ୍ତିରେ କାମନାକୁ ଚରିତାର୍ଥ କରିଥାଆନ୍ତା । କିନ୍ତୁ ଏଇଥର ସେ ଏମିତି ସ୍ତ୍ରୀ ସହିତ ସହବାସ—ଚନ୍ଦା ସହିତ ସହବାସ ନୈତିକ ଦୃଷ୍ଟିରେ ପରଖି ନିଜେ ନିଜକୁ ଦୋଷୀ କରୁଥିଲା । ସେ ନିଜ ମନର ଗଭୀର ଚିତ୍ର ଦେଖିପାରିଲା ଏବଂ ନିଜ ପ୍ରତି ତାର ଘୃଣା ଜାତ ହେଲା । କନ୍ୟା ଠିକ୍ ଏହି ସମୟରେ ସଜ୍ଜନର ସୁସଂସ୍କାରର ପ୍ରତୀକ ଭାବେ ଆସି ତାର ନିରହଙ୍କାର ପ୍ରେମ ଦ୍ୱାରା ତାକୁ ଗଢି ତୋଳୁଛି । ସାଗ୍ରାହନ ଏବଂ ରୂପରଞ୍ଜନ ଘରୁ ଫେରିବା ରାତି ଠାରୁ ସେ କନ୍ୟାକୁ ପତ୍ନୀ ରୂପରେ ମଧ୍ୟ ଦେଖି ଆସିଥିଲା । ତାର ସ୍ପର୍ଶ, ସ୍ମୃତି, ତାର ରୂପ, ସବୁକିଛି ତାକୁ ନିର୍ବିକାର ଚେତନା ଆଣି ଦେଉଥିଲା । ତାକୁ ସମୁନ୍ନତ ଦୃଢ଼ କରୁଥିଲା । ଉନ୍ନତ ହେବାପାଇଁ ପ୍ରେରଣା ଯୋଗାଉଥିଲା । ଡ୍ରାଇଭରର ଅନୁପସ୍ଥିତି ତାକୁ ଅସହ୍ୟ ହେଉଥିଲା । ଏପରିକି ଗାଡ଼ିର ଗ୍ଲବ ହଜାଇଥିଲେ ମଧ୍ୟ ଏପରି କଷ୍ଟ ପାଇନଥାଆନ୍ତା । ସେ ଡ୍ରାଇଭର ଉପରେ ପୁରାପୁରି ରାଗି ପାରିଲା ନାହିଁ । ମହିପାଲ ଠିକ୍ କହୁଛି । ସେ ଲବ୍ଧ୍ୱା ଏମିତି ଦିନରେ କେତେବେଳଯାଏ ଏକୁଟିଆ ଗାଡ଼ିରେ ବସି ଥାଆନ୍ତା, ସେ ବି ପୁଣି ମଣିଷ ।

ମାନବିକତା ଓ କନ୍ୟାର ଆଦେଶ ପାଳନର ସଂଘର୍ଷରେ ସଜ୍ଜନ ଅଟକି-ଯାଇଥିଲା । ମହିପାଲ ତା ହାତକୁ ଧରି ଯୋର୍‌ରେ ଟାଣି କହିଲା ଆସମ, ଅଳ୍ପଠାରୁ ସ୍ତ୍ରୀର ଦାସ ହୁଅନା । ଅବଶ୍ୟ ଭଲ ସ୍ତ୍ରୀର ଦାସ ହୋଇ ରହିବା ଆମଭଳି ଲୋକ ପକ୍ଷରେ କଲ୍ୟାଣକାରକ । ଜମୁନା ତେଲ ଦୋକାନରେ ପାନ ଅପେକ୍ଷାରେ ଠିଆ ହୋଇ ସେମାନେ ପାଟକୁ ପାଟକୁ ଲାଗିଥିବା ଲାଲ ମହାରାଜଙ୍କର ଗୃହା ଦୋକାନରେ ବସି ଲୋକମାନଙ୍କର କଥା ଶୁଣିବାକୁ ଲାଗିଲେ । ନିର୍ବାଚନ ଖବର ଶୁଣିବାକୁ ମିଳୁଥିଲା । ସଜ୍ଜନ ଓ ମହିପାଲକୁ ଏହା ଶୁଣିବାକୁ ମଜା ଲାଗୁଥିଲା । ପାନ ଖାଇଲେ, ସଜ୍ଜନ କହିଲା···ଆସ ଯିବା ?···

ମହିପାଲ ନଶୁଣିଲାପରି ଠିଆ ହୋଇ ରହିଲା । ସଜ୍ଜନ ତାକୁ ଦ୍ୱିତୀୟବାର କହିଲାରୁ ଉତ୍ତର ଦେଲା । ବର୍ତ୍ତମାନ ତୁମେ ଯାଅ । ମୁଁ ଏଠି ଟିକିଏ ବୁଲିବି । ଭଲ ଲାଗୁଛି ।

ତୁମେତ କୌଣସି କାରଣରୁ ଏଠୁ ଉଠୁ ନଥିଲ ।....ନା, ଏମିତି ତୁମେ ଚାଲେବ ଯାଅ । କିନ୍ତୁ ଯିବ କିମିତି ? ତୁମ ଡ୍ରାଇଭର···

ସଜ୍ଜନ ତାର ଚେହେରାକୁ ନୀରବରେ ଦେଖୁଥିଲା । ସତେ ଯେପରି କିଛି ଅଧ୍ୟୟନ କରୁଛି । ତାପରେ ସେ କହିଲା ..ନ ଆସିବତ ବସ୍‌ରେ ଚାଲିଯିବି···

ସଜ୍ଜନ ଚାଲିଗଲା, ମହିପାଲ ପାର୍କଆଡ଼କୁ ଆଗେଇଲା । ଭିଡ଼ଟି ରଙ୍ଗ ବେରଙ୍ଗ ଓ ବେଶ୍ ଜମିଥିଲା, ନିର୍ବାଚନ ଚର୍ଚ୍ଚା ଛଡ଼ା ଆଉ କିଛି କଥା ସତେଯେମିତି ନଥିଲା ।

ବୃଦ୍ଧା, ରୋଗୀ ଓ ଅସମର୍ଥ ସମସ୍ତେ ଭୋଟ ଦେବାକୁ ଆସୁଥିଲେ । ସ୍ତ୍ରୀମାନଙ୍କ ଭିତରେ ମଧ୍ୟ ବହୁତ ଉତ୍ସାହ । ଗଣତନ୍ତ୍ରର ପରମ୍ପରାକୁ ବହୁତ ପୁରୁଣା ଯୁଗରୁ ମାନି ଆସୁଥିବା ଭାରତର ସ୍ତ୍ରୀ ମାନଙ୍କୁ ଇତିହାସରେ ପ୍ରଥମ ଥର ପାଇଁ ଭୋଟ ଦେବାର ଅଧିକାର ମିଳିଥିଲା । ଅଧିକାଂଶ ସ୍ତ୍ରୀ ଲୋକ ନିଜ ସ୍ୱାମୀର ଇଚ୍ଛାନୁସାରେ ଭୋଟ ଦେଇ ଆସିଥିଲେ । କେତେକ ନିଜ ଅଧିକାରର ସ୍ୱତନ୍ତ୍ର ଉପଭୋଗ ମଧ୍ୟ କଲେ । ଜଣେ ଭଦ୍ର ଲୋକ ବାରମ୍ବାର ନିଜ ସ୍ତ୍ରୀକୁ ଜନସଂଘର ଦୀପର ଜ୍ୟୋତି ଜାଗରଣ ପାଇଁ ଆଦେଶ ଦେଉଥିଲେ କିନ୍ତୁ ତାଙ୍କର ସ୍ତ୍ରୀ କଂଗ୍ରେସର ବଳଦ ଆଗରେ ମୋହର ଦେବାପାଇଁ ଚାହୁଁଥିଲେ । ଦୁହିଁଙ୍କ ମଧ୍ୟରେ ଟଣା ଓଟରା ହେଲା । ଉତ୍ସାହିତା ହୋଇ ପତ୍ନୀ ନିଜର ଘର ଭାବି ସ୍ୱାମୀଙ୍କ ଉପରେ ରାଗିଯାଇ କହିଲେ,...ଦେଖ, ଆଜି ମୁଁ ଜୀବନରେ ପ୍ରଥମ ଥରପାଇଁ ଭୋଟ-ଦେବାକୁ ଆସିଛି । ମୋ ମନ ଯାହାକୁ ହେବ ତାକୁ ମୁଁ ଭୋଟ ଦେବି । ଆଉ ତୁମକୁ ବର୍ତ୍ତମାନ ରାଣ ପକାଉଛି, ତୁମେ ଯଦି ବର୍ତ୍ତମାନ ମୋତେ ବାଧା ଦେବ ତାହା ହେଲେ ମୋର ଶବ ଦେଖିବ ।

ସ୍ୱାମୀ-ସ୍ତ୍ରୀଙ୍କର ଏହି ବୃଥାଉଦ୍ଦୀପକ ଚାଲିଥିଲାବେଳେ ପାଖରେ ଚାଲିଯାଉଥିବା ଜଣେ ପୁଲିସଷ୍ଟାମୀର ହାତକୁ ଧରି ପକାଇଲେ । ନିର୍ବାଚନ କ୍ଷେତ୍ରରେ ପ୍ରବର୍ତ୍ତାଇବା ଅପରାଧ ।

ଛକରେ କେତେକ ସ୍ୱାଧୀନତା ପ୍ରଶଂସା କରୁଥିବା ଲୋକ ଆଜି ଖୁବ୍ ସିଧା ସଳ ଓ କଡ଼ା ଜବାବ ଦେଲେ । ତାଙ୍କୁ ପଚରାଗଲା,...ବାପର ନା ? ଉତ୍ତର ମିଳିଲା, 'ଟଙ୍କା' ।

ପୁଣି ପଚରା ଗଲା 'ସ୍ୱାମୀର ନାମ', ଉତ୍ତର ମିଳିଲା 'ଟଙ୍କା' । ସେମାନଙ୍କ ମଧ୍ୟରୁ ବାଇଶି, ତେଇଶି ବର୍ଷର ଜଣେ ଲୋକ କହିଲା, 'ନାହିଁ ।' ଆମ୍ଭମାନଙ୍କୁ ଯେ ଧରି ଭୋଟଦେବା ଲାଗି ଏଠାକୁ ଆଣିଛି ସେ ଏକ ମହାପୁରୁଷ ।

ନିର୍ବାଚନର ଚିହ୍ନମାନଙ୍କରେ ମହୀପାଳ ମିଳିଗଲା । ଏହି ନିର୍ବାଚନ ତା ପକ୍ଷରେ ଏକ ପ୍ରହସନ ପରି ଜଣାପଡ଼ୁଥିଲା । ଏକ ପକ୍ଷରେ ଭାରତର ଏହି ଅପୂର୍ବ ଗଣତାନ୍ତ୍ରିକ ନିର୍ବାଚନ ସା-ବାଳକମାନଙ୍କୁ ନିଜ ମତ ଦେବାର ଅଧିକାର ଦେଇ ସମାଜକୁ ନିଜ ମନଇଚ୍ଛା ସରକାର ଗଢ଼ିବାର ସ୍ୱେଚ୍ଛାଚ୍ଚର ସ୍ୱାଧୀନତା ଦେଇଥିଲା । ପ୍ରାଚୀନ ଭାରତର ସାମନ୍ତବାଦୀ ଶାସନ ସ୍ତ୍ରୀ, କାରିଗର, ବ୍ୟବସାୟୀ ଓ ଭୃତ୍ୟକୁ ନିଜର ସରକାର ଗଠନ କରିବାର ଅଧିକାର ଦେଇନଥିଲା । ଜନତା ଉପରେ ଶାସନ କରିବା ଅଧିକାର କେବଳ କ୍ଷତ୍ରିୟ ସାମନ୍ତମାନଙ୍କରହିଁ ଥିଲା । ଏକ ପକ୍ଷରେ ବିଶେଷ ପ୍ରଗତି ନାମରେ ଆଜିର ଗଣତାନ୍ତ୍ରିକ ନିର୍ବାଚନ, ନିତାନ୍ତ ଅର୍ଥହୀନ ହୋଇପଡ଼ିଛି । କେବଳ ତର୍କରେ ଅର୍ଥ ନାଶ ହେଉଛି । ହଠାତ୍ ମହୀପାଳର ଧ୍ୟାନ କଲିକତାର ସେୟାର ମାର୍କେଟ ଭିତରେ

ହେଉଥିବା ବିରାଟ କୋଳାହଳ ଆଡ଼କୁ ଗ୍ଭଲିଗଲ । ବଜାରର ଗୁଣ୍ଡାମି ଓ ଗଣତାନ୍ତ୍ରିକ ସାର୍ବଭୌମ ନିର୍ବାଚନ ଲଢ଼ିବାର ହଟ୍ଟଗୋଳ ପ୍ରାୟ ଏକଧର୍ମୀ ଥିଲ । ଧନ ଓ କ୍ଷମତାକୁ ଜାବୁଡ଼ି ଧରିବା ପାଇଁ ଯେ ଏହି ବିଶୁଙ୍ଖ ପାଗଳାମି ପୂର୍ଣ୍ଣ ନ୍ୟାୟ, ତାହା ମହିପାଳକୁ ଦ୍ରବ୍ୟ କରୁଥିଲ । ଖ୍ରୀଷ୍ଟିଆନ୍ ସଭ୍ୟତାର ୧୯୫୦ ବର୍ଷ ଓ ଭାରତୀୟ ସଭ୍ୟତାର ତାଠାରୁ ଅଧିକ ୩।୪ ହଜାର ବର୍ଷ ପୂର୍ବର ଏହି ଉଚ୍ଚ ନୈତିକତାର ଗର୍ବ ନେଉଥିବା ଲୋକମାନେ ମଧ୍ୟ ଆଜିର ସଭ୍ୟ ଜନତାର ବିଗ୍ଭରକ, ସମାଜ ସେବକ, ହୋଇ ନ୍ୟାୟ ନାମରେ ଅନ୍ୟାୟକୁ ପ୍ରଶ୍ରୟ ଦେଉଛନ୍ତି । ଗଣ୍ଡଗୋଳ ସୃଷ୍ଟି ପରେ ସଦ୍‌ବୁଦ୍ଧି କେବେ ସୃଷ୍ଟି ହୋଇପାରେନା । ଏହି ସଙ୍କୀର୍ଣ୍ଣ ସ୍ୱାର୍ଥ ନୈତିକତାବିହୀନ ଚକ୍ରାନ୍ତ ଆଜି ମାନବକୁ ବିପଥଗାମୀ କରୁଛି । ସେ କେବଳ ଷଡ଼ଯନ୍ତ୍ରର ଶିକାର ହୋଇଯାଉଛି ।

ମହିପାଳ ବିରକ୍ତ ହୋଇଉଠିଲା । ସ୍ୱଗରେ କଥା କହୁ କହୁ ଅଜାଣତରେ ଜିଭ କାମୁଡ଼ି ହୋଇଯାଇ, ମନ ଚଞ୍ଚଳ ହୋଇଉଠିଲା । ଗୋଟିଏ ବିରାଟ ମନ ଆଗରେ ଅନ୍ୟ ସ୍ୱପ ମନଟି ଲାଜରେ ଝାଉଁଳି ପଡ଼ିଲା । ସଭ୍ୟତା, ସଂସ୍କୃତି, ଆଦର୍ଶ, ନ୍ୟାୟ, ସତ୍ୟ, ସୌନ୍ଦର୍ଯ୍ୟ, ମାନବିକତା ପ୍ରଭୃତି ଶବ୍ଦଗୁଡ଼ିକୁ ବାରମ୍ବାର ବିଗ୍ଭର କରି ନିତି ନୂଆ ଅର୍ଥରେ ଦେଖୁଥିବା କଳାକାର ଓ ସାହିତ୍ୟିକୁ ଆପେ ଆପେ ଅପରାଧରେ ପଡ଼ିଗଲା । ତାର ସାହିତ୍ୟିକ ମନ ତାର ବିଗ୍ଭରକୁ ହରଣ କରିଥିଲା । ଅନେକ କାରଣରୁ ଏପରି ମାନସିକ ଅଶାନ୍ତି ମଧ୍ୟରେ ସେ ପ୍ରାୟ ପାଗଳପରି ହୋଇଯାଇଥିଲା ।

ଏ ସମୟରେ ମହିପାଳ ନିଜର ମାନସିକ ଅସ୍ଥିରତାକୁ ସହି ପାରିଲା ନାହିଁ । ସେ ସ୍ୱଗ୍ଭ କଦ୍‌ରେ ନିଜର ମର୍ଯ୍ୟାଦାକୁ ପାଦରେ ଦଳିଦେଲା । ନା ମୋତେ ନିଜର ସ୍ଥିତି ଶକୁନ୍ତଳାର ବିବାହ ଦେବାକୁ ହେବ । ଯୌତୁକ ଏବଂ ଲୌକିକ ପରମ୍ପରାରେ ଅଯଥା ସୁଧାରିବାକୁ ପଡ଼ିବ । ଖର୍ଚ୍ଚ କରୁଥିବା ଧନକୁ ଅନୈତିକ ଓ ଅସାମାଜିକ କାର୍ଯ୍ୟ ମାନ ମଧ୍ୟ ମୋତେ ଏ ସମସ୍ତ କରିବାକୁ ପଡ଼ିବ । ଏପରି ସାମାଜିକ ପରିବର୍ତ୍ତନ ଏକାକୀ ମୋ ଦ୍ୱାରା ହୋଇପାରିବ ନାହିଁ । ଯେଉଁ ପର୍ଯ୍ୟନ୍ତ ଦୁନିଆ ଏଭଳି ଅଯଥା ମର୍ଯ୍ୟାଦାକୁ ମାନିଚାଲିବ ସେ ପର୍ଯ୍ୟନ୍ତ ଜଣେ ନିର୍ବିକାର ମହିପାଳ କିଛି କରି ପାରିବ ନାହିଁ । ସେ କଲ୍ୟାଣୀର ମନକୁ କେତେଦିନ ଗ୍ଭପି ରଖିବ । ଶକୁନ୍ତଳାର ବିବାହକୁ ସେ ଖୁବ୍ ଜାକଜମକର ସହିତ କରିବାକୁ ଗ୍ଭହେଁ । ଏହା ଦ୍ୱାରା ତାର ବିଶାଳ ହୃଦୟର ପରିଚୟ ମିଳିବ। ଆଜିକାଲି କେଉଁ ସ୍ତ୍ରୀ ତାର ନଣନ୍ଦର ସୁଖ ସୁବିଧା ପାଇଁ ଏତେ ଚିନ୍ତା କରିବ ? "ଆଚ୍ଛା, ଏହି ଗୋଟିଏ ମାସ ମଧ୍ୟରେ 'ଶକୁ' ପାଇଁ ଗୋଟିଏ ଉତ୍ତମ ଯୋଗ୍ୟ ବର ଖୋଜିବି । କୌଣସି ପ୍ରକାରେ ଯନ୍ତ୍ରାଗ୍ଭରରେ ବିବାହ ପରେ ମୁଁ ତ ପୁଣି ଜଣେ ଗୃହସ୍ଥ । ନିଜର ପିଲାଙ୍କୁ କିଏବା ଆଦର ନକରେ ? ଭାଇ, ଭଉଣୀ ପାଇଁ ମୁ ଯଦି ଏତେ କଷ୍ଟ ସ୍ୱୀକାର କଲି ତେବେ କଣ ନିଜର ପିଲାମାନଙ୍କର ଉନ୍ନତି କାମନା କରିବିନାହିଁ ? ହଁ, କଲ୍ଲୁ—ଚୋର — ସ୍ୱାର୍ଥ...କୁଳାଙ୍ଗାର... ।

ମହିପାଲର ୨ୟ ମନ ତାର ଏ ସମସ୍ତ ବିଷୟକୁ ତାର ସ୍ୱର୍ଗସ୍ଥ ପିତୃଦେବଙ୍କ ସ୍ୱରରେ ଧିକ୍କାର କଲା ଏବଂ ଏହା ତା ମନ ମଧ୍ୟରେ ବିନା ପରିଶ୍ରମରେ ଚିନ୍ତା କରି ମଧ୍ୟ ସେ ନିଜର ଦୁର୍ବଳତା ବିଷୟରେ ଭାବୁଥିଲା । ଦୁର୍ବଳତା ସମାଜର ଅପାରଗତା ବୋଲି ମଧ୍ୟ ବିଷୟ ଚିନ୍ତା କରୁଥିଲା । ବ୍ୟକ୍ତି ଓ ସମାଜ ଉଭୟ ଦୋଷପୂର୍ଣ୍ଣ । ଯେଉଁ ପର୍ଯ୍ୟନ୍ତ ସମାଜ ନ ବଦଳିଛି, ସେ ପର୍ଯ୍ୟନ୍ତ ବ୍ୟକ୍ତି କିଛି କରିପାରିବ ନାହିଁ ? ଚରିତ୍ରର ଚରିତ୍ର ଉପରେ ପ୍ରଭାବ ପଡ଼େ । ସମାଜ ଗଠନ ହେଲେ ସମାଜ ଦ୍ୱାରା ବ୍ୟକ୍ତିର ଉନ୍ନତି ଘଟେ । ବ୍ୟକ୍ତି ଓ ସମାଜର ସମନ୍ୱୟ ପାଇଁ ଏହା ମୂଳଭୂତ ଆଧାର । ଏହା ଦ୍ୱାରା ପରିବାର ଗଢ଼ି ଉଠେ । ଆଜିର ବ୍ୟକ୍ତି ଓ ସମାଜ ଉଭୟ ଏକ ପ୍ରକାର କ୍ରାନ୍ତିକାରୀ ବାତାବରଣ ମଧ୍ୟରେ ପରସ୍ପରର ଆକର୍ଷଣ ବିକର୍ଷଣ ମଧ୍ୟରେ ପାଳିତ ହେଉଛନ୍ତି । ଆଜିର ବ୍ୟକ୍ତି ଏତେ ବାଧ୍ୟ ଓ ବିବଶ ଯେ ସେ ଯଦି ନୀତି ନିୟମରେ ଉଚ୍ଚ ଉଚ୍ଚ ମାନ୍ୟତାକୁ ନଷ୍ଟ ଭ୍ରଷ୍ଟ କରିଦିଏ ତଥାପି ମଧ୍ୟ ତାକୁ କ୍ଷମା କରିବା ଉଚିତ ।

୨ୟ ମନ—ଏଥର ପିତାଙ୍କ ଆଦେଶ ସ୍ୱରରେ ନୁହେଁ, ଆଉଥରେ ଚେତେଇ ଦେବାରୁ ମହିପାଲ ମାନସିକ କଷ୍ଟ ପାଉଥିଲା । ବିକଶିତ ଚେତନାର ଆଲୋକ ମହିପାଲଙ୍କ ନିଜର ଅନ୍ତର୍ଦୃଷ୍ଟି ଉଦ୍‌ଘାଟନରେ ବାଧା ଦେଉଥିଲା । ତାର ନିଜର ସାହସ ସେ ସମୟରେ ତା ପାଇଁ ଅଧିକ ମୂଲ୍ୟବାନ ଥିଲା । ବ୍ୟସ୍ତତାର ଶୀର୍ଷରେ ବ୍ୟତିବ୍ୟସ୍ତ ହୋଇ ମହିପାଲ ତତକ୍ଷଣ ଦୃଷ୍ଟିରେ ନିଜର ଚତୁର୍ଦ୍ଦିଗକୁ ଦେଖିବାରେ ଲାଗିଲା । ମଝି ରାସ୍ତାରେ ଆସି ଛିଡ଼ା ହୋଇଗଲା । କାର୍ ନିକଟକୁ ଆସି ହାତ ଉଠାଇ ଅଟକାଇଲା । କାର୍ ଅଟକିଲା ।

ଆରେ ଗୁରୁ ତୁମେ, ଏଠାରେ ? ରୂପରତନ ପଚାରିଲା ଆସିବ ? ତୁମ ପାଖରେ ଟିକେ କାମ ଥିଲା "ଆସ, ବୁଲିଯିବା, ଇଲେକ୍‌ସନ୍‌ରେ ମୋର ସେମିତି କିଛି ଇଂଟେରେଷ୍ଟ ନାହିଁ । ଏହି କେବଳ ଧମ୍ ଧାମ୍ ଦେଖିବା ପାଇଁ ବୁଲି ଆସିଲି ।

ରାସ୍ତାରେ ମହିପାଲ ପଚାରିଲା, ଏଥର ତୁମେ କାହିଁକି ଛିଡ଼ା ନ ହେଲ ରୂପରତନ ? "ସତ କହିବି ଗୁରୁ, ବଣିଆର ପୁଅ ପ୍ରଥମେ ତାର ନିଜର ଧନ୍ଦା ଦେଖେ, ତା ପରେ ଅନ୍ୟ କିଛି ।"

ମହିପାଲ ମନେ ମନେ ଚିନ୍ତା କରିବାକୁ ଲାଗିଲା ଯେ, ଏ ସେହି ରୂପରତନ ଯେ କି କେବେ ସମାଜବାଦୀ ଭାବନା ପ୍ରଚାର କରୁଥିଲା, ଯେକି ଜନହିତପାଇଁ ବଡ଼ ବଡ଼ କଥା କହି ତାକୁ ଠକିଥିଲା । ହଠାତ୍ ରୂପରତନ ତାର କାନ୍ଧ ଉପରେ ହାତରଖି କହିଲା "ମହିପାଲ, ମୋପାଇଁ ମିନିଷ୍ଟ୍ରୀର ଚାନ୍‌ସ ତ ନାହିଁ । ମୋଠାରୁ ବଡ଼ ବଡ଼ ପ୍ରଭାବଶାଳୀ ବ୍ୟକ୍ତି ପ୍ରାର୍ଥୀ ଅଛନ୍ତି । ଏଥର ଡେପୁଟି-ମିନିଷ୍ଟରସିପ୍ ମଧ୍ୟ ବଣ୍ଟା ଯାଇଛି । କିନ୍ତୁ ଏ ସବୁ ମୋତେ ପସନ୍ଦ ନୁହେଁ । ୨ୟ କଥା ହେଉଛି, ମୁଁ ଯଦି ମୋର ଅଧିକ ସମୟ

ବଜ୍‌ନେସ୍‌ରେ ନ ଲଗାଇବ ତେବେ ଯୁଗ କେତେ ଖରାପ ଆଡ଼କୁ ଯାଉଛି, ଏକଥା ତମେ ତ ଜାଣିଛ ।

"ଆରେ ତୁମଭଳି ଲକ୍ଷପତି ମଧ୍ୟ ସମସ୍ୟାପାଇଁ କାନ୍ଦୁଛି । ହାଃ ହାଃ ହାଃ ହାଃ ।"

"ହାଃ ହଃ ହଃ, ଯିଏ ସମସ୍ତ ଚଲାଉଛି ସେମାନେ ମଧ୍ୟ ସେହି ଚକଡ଼ଳକୁ ଆସିଯାଉଛନ୍ତି । ସବୁବେଳେ ସାବଧାନ ରହିବାକୁ ପଡ଼ୁଛି । "ରୂପରଞ୍ଜନ ଗମ୍ଭୀର ହୋଇ କହିଲା ।"

"ତୁମେ ପଲ୍‌ଟିକ୍‌ସର ଧଳା ଗୁଣ୍ଡ଼ା ବଡ଼ ଭଲକରୁଛ । "ନା, ଏମିତି କିଛି ଗୁଣ୍ଡ଼ାନାହିଁ, ଆଚ୍ଛା ଗୁଣ୍ଡ଼ା ଗୋଟିଏ ପ୍ରପୋଜାଲ୍ ଦେଉଛି । ନଜର ସବୁ ନୂଆ ବହି ମୋତେ ଦେଇଦିଅ । ମୁଁ ତୁମର ପୁରୁଣା ବହି ଗୁଡ଼ିକର କପିରାଇଟ୍ ତୁମକୁ ଫେରାଇଦେବି ଓ ରୟାଲଟିବେସିସ୍ ଉପରେ ନେଇନେବି । ୨୦% ରୟାଲ୍‌ଟି କୁହ, ହେଲାତ ?

ମହିପାଲ ଚନ୍ତା କରିବାକୁ ଲାଗିଲା । ବର୍ତ୍ତମାନ ପୁଣିଥରେ ତାକୁ ତାର ନଜର ପୋଜିସନ୍ ଢିଆରି କରିବାକୁ ହେଉଛି । ଏଥିପାଇଁ ମୋତେ ପୁଣି ପ୍ରଲୋଭନ ଦେଖାଉଛି । କିନ୍ତୁ ଏହାଠାରୁ କାମ ଆଦାୟ କରିବାକୁ ହେବ । ଜବାବ ଦେବା ଖାତିରରେ କହିଲା "ମୋର ସବୁ ଦଗରୁ ଲାଭଅଛି । ଆଗକୁ ସତର୍କ ।"

ରୂପରଞ୍ଜନ କହିଲା "ପୁରୁଣା କଥାକୁ ଭୁଲିଯାଅ ଗୁରୁ" ସେ ସମୟରେ ତୁମେ ସିଦ୍ଧାନ୍ତର ସ୍ୱପ୍ନକୁ ସାକାର କରିବାର ଉଦ୍ଦେଶ୍ୟରେ ଥିଲ, ନଚେତ, ସତ କହୁଛି, ତୁମକୁ ନେଇ ମୋର ମନ କେବେହେଲେ ମଳିନ ହୋଇନାହିଁ । ସେହି ପ୍ରେମଭାବ, ସେହି ଶ୍ରଦ୍ଧା ଓ ସମ୍ମାନ" ।

କହିବାର ପ୍ରୟୋଜନ ନାହିଁ । ମୁଁ ବ୍ୟବହାରରୁ ଜାଣି ପାରୁଛି । ଆଚ୍ଛା ଗୁଣ୍ଡ଼, ମୋର ବହି ପାଇଁ କେତେ ଏଡ୍‌ଭାନ୍‌ସ ଦେବ ?

ବହି କେତେ ଅଛି ?

ମୋର ଢନଖଣ୍ଡ ବହିର ନୂତନ ଏଡ଼ିସନ୍ ବାହାରି ନାହିଁ । ପ୍ରକାଶକ ବଡ଼ ଅର୍ଥଲୋଭୀ ଥିଲ । ଆଚ୍ଛା, ଗୋଟିଏ ନୂଆ କଥା ଆଜିକାଲି ଉଠାଇଛି ।

"ଆଚ୍ଛା, ଢନ ଚାରି ହଜାର ଯାହା ମାଗିବ ଦେଇଦେବି, ଆଉ ମୋର ପୁରୁଣା ବହି ଉପରେ ?

"ଦେଖୁଛି ଗୁରୁ ପୂର୍ବ ଅପେକ୍ଷା ଚତୁର ହୋଇଗଲଣି" ।

"ଅନୁଭବ ମୋତେ ଶିଖାଉଛି"

ଏହା ଠିକ୍ କଥା । ଏବେ ତୁମର ଆହୁରି ସଂପର୍କ ରହିବ । କିଛି ଚିନ୍ତା ନାହିଁ । ଯେତେ ଚାହିଁବ ସେତେ ନେବ । କଣ କିଛି ପୁଣି ସାପ୍ତାହିକ ପ୍ରକାଶ କରିବାର ବିଚାର କରିଛ ? ହଁ, ବାହାର ମଧ୍ୟ କରିପାରିବ । ତୁମକୁ ଏଭଳି ଦେଖି ଏହି କଥାପାଇଁ ଇନ୍ସପେରେଶନ ମିଳୁଛି । ଭାବୁଛି ଏଥର ପ୍ରକାଶନ କାର୍ଯ୍ୟ ପ୍ରଥମେ କରିବି । ଏଥର ମୁଁ କିଛି ନୂତନ ଏକ୍ସପେରିମେଣ୍ଟ କରିବାକୁ ଇଚ୍ଛା କରୁଛି । ପେଙ୍ଗୁଇନ୍ ସିରିଜ୍ ଭଳି ଭାରତୀୟ ଭାଷାର ଶ୍ରେଷ୍ଠ ଉପନ୍ୟାସ ଗୁଡ଼ିକର ଗୋଟିଏ ସିରିଜ ଚଳାଇବି । ପବ୍ଲିସିଟି ଆମେରିକାନ୍ ଷ୍ଟାଇଲ୍ ଅନୁସାରେ । ଭାରତବର୍ଷର ପ୍ରତ୍ୟେକ ବଡବଡ଼ ସହରରେ ମହିପାଲ ଶୁକ୍ଳର ଉପନ୍ୟାସ ଉପରେ—ଆଇ-ମିନ୍, ସେ ସବୁ ଅଥର୍ସ, ଯେଉଁମାନଙ୍କର ବହି ମୁଁ ପବ୍ଲିସ୍ କରିବି, ସେମାନଙ୍କ ଉପରେ ସାହିତ୍ୟିକ ଗୋଷ୍ଠୀର ପେପର୍ସ ପଢାଯିବ, ପ୍ରତ୍ୟେକ ସ୍କୁଲ, କଲେଜ, ଇଉନିଭର୍ସିଟି, ବଡବଡ଼ ରେଷ୍ଟୁରାଣ୍ଟ, ଷ୍ଟେସନ୍, ପ୍ଲାଟ୍‌ଫର୍ମ, ଖବରକାଗଜ – ପ୍ରତ୍ୟେକ ସ୍ଥାନରେ ତୁମର ପବ୍ଲିସିଟି । ମୋର ଦୃଢ଼ ବିଶ୍ୱାସ, ଏପର୍ଯ୍ୟନ୍ତ କୌଣସି ଭାରତୀୟ ପ୍ରକାଶନ ହିନ୍ଦୀ ବହିର ବଜାର ପାଇଁ ଚିନ୍ତା କରିନାହାନ୍ତି ।

ଗାଡ଼ି ଯାଇ ସେଠ୍‌ଜୀଙ୍କର କୋଠା ନିକଟରେ ପହଞ୍ଚିଲା । ମହିପାଲର ଖୁସି ହୋଇଗଲା । କିଛିକ୍ଷଣ ପୂର୍ବର ଅବସାଦ ମେଣ୍ଟିଗଲା । ସେ ଅନୁଭବ କରିବାକୁ ଲାଗିଲା ଯେ ତାର ଶୁଭ ସମୟ ଫେରି ଆସିଲା ।

ରୂପରତନର ଘର, ତାର ଲାଇବ୍ରେରୀରେ ଦୀର୍ଘ ଦୁଇଘଣ୍ଟା ସ୍କିମ୍ ବନାଇବାରେ ବିତିଗଲା । ମହିପାଲ କହିଲା "ମୋର ଗୋଟିଏ କାମ କରିଦେବ ?"

"କୁହ"

"ମୋତେ ଗୋଟିଏ ହାର ବିକ୍ରୀ କରିବାକୁ ହେବ"

"ସୁନାର ?"

"ନା, ନବରତ୍ନର"

"କେଉଁଠାରୁ ପାଇଗଲ ?"

"ମାର ହାର— ବହୁତ ଓଜନ"

"କାହିଁକି ବିକ୍ରୀ କରୁଛ ?"

'ଭଉଣୀର ବିବାହ କରିବାକୁ ହେବ"

"କେତେ ଖର୍ଚ୍ଚ ହେବ ?"

"ପନ୍ଦର ହଜାର"

"ବହୁତ ବେଶୀ, ମହୀପାଲ, ପୁଣି ଆଗକୁ ତୁମ ଉପରେ ବହୁତ ଦ ସ୍ତିତ୍ୱ ରହିଛି । କଣ ଅଜା ଘରଠାରୁ ବର୍ତ୍ତମାନ ମଧ୍ୟ ସାହାଯ୍ୟ" । ଯେଉଁ ଦିନଠାରୁ ମୁଁ ଗଙ୍ଗୁ ଓ ଓ୍ୱାଇଫକୁ ନେଇ ଆସିଲି, ସେହି ଦିନଠାରୁ ଗୋଟିଏ ହେଲେ ପଇସା ସେଠାରୁ ନେଇନାହିଁ ଏବଂ ବର୍ତ୍ତମାନ ତାଙ୍କର ଅବସ୍ଥା ଶୋଚନୀୟ । ଜମିଦାରୀ ବୁଡିଗଲା । ପଅରଦିନ ସ୍ୱଚସ୍ତଂଙ୍କ ଘରେ ଡକାୟତି ହୋଇଗଲା ।

"ଆଚ୍ଛା"

'ହଁ' ମୁଁ ସେଠାରେ ଥିଲି, ମୋ ହାତରେ ଜଣେ ଡକାୟତର ମୃତ୍ୟୁ ହୋଇଛି ।

' ଆଉ କିଛି ଖବର ନାହିଁ । ଡକାୟତି କଥା ଶୁଣିଥିଲି" । ସେଦିନ ପ୍ରତ୍ୟକ୍ଷ ଅନୁଭବ ହେଲି" । ତୁମର ମାମୁଁ ଘରର କେହି……

"ହଁ, ଗୋଟିଏ ଚାକର ସେହି ସମୟରେ ମରିଗଲା । ଜଣଙ୍କର ଅବସ୍ଥା ସଙ୍କଟାପନ୍ନ ଥିଲା । ବୋଧହୁଏ ବର୍ତ୍ତମାନ ଶେଷ ହୋଇଯାଇଥିବ । ଆଉ ଦୁଇଜଣ ସାମାନ୍ୟ ଆଘାତ ପାଇଛନ୍ତି" ।

"ଜିନିଷ କଣ ଯାଇଛି ?"

"ଦେଢ଼ ଲକ୍ଷ ଟଙ୍କାର ଜୁଏଲାରୀ ଯାଇଛି । ବହୁତ କ୍ଷତି ହୋଇଛି" ?

"ହଁ, ତାହାତ ହୋଇଛି"

"ମୁଁ ସେଥିପାଇଁ ଆସୁର ଚନ୍ତିତ"

"କେଉଁ କଥା ପାଇଁ ?"

"ଆରେ ସେହି ହାର"

"ହଁ ହଁ ନେଇଆସ ମୁଁ ଦେଖିବି । ଏ ଡାକୁମାନଙ୍କର ଇନଷ୍ଟିଚ୍ୟୁସନ୍ ମଧ୍ୟ ପୂର୍ବ କାଳର କମ୍ୟୁନିଜମ୍ । ଧନୀମାନଙ୍କୁ ଲୁଟ୍ କରି ଗରିବଙ୍କୁ ବାଣ୍ଟିବା" ।

"ମୁଁ ଏହାକୁ ସାମନ୍ତବାଦୀର ମୂଳଦୁଆ ବୋଲି ଭାବୁଛି । ଡାକୁମାନେ ଅଧିକ ଶକ୍ତିଶାଳୀ ହୋଇ ରାଜା ହୋଇ ଯାଇଥିଲେ । ମହାଜନମାନଙ୍କର ଦାସତ୍ୱରୁ ଜନ ଜୀବନକୁ ମୁକ୍ତ କରି—

"କଣ ? ମୁଁ ବୁଝି ପାରିଲି ନାହିଁ"

"ମହେଞ୍ଜୋଦାରୋ ଓ ହରପ୍ପା ଭଳି ରାଜ୍ୟ ଓ ନଗରୀକୁ ନଷ୍ଟ କରି ଏ ସାମନ୍ତମାନେ ଧ୍ୱଜ ଉଠାଇଥିଲେ ଯେ, ପୃଥିବୀ ଉପରେ ବଞ୍ଚେଇଯାଅ । ପୃଥ୍ୱୀ (ଜମି)

ତାହାର, ଯେ, ଏହାକୁ କର୍ଷଣ କରେ । ସମନ୍ତ ରକ୍ଷକ ଏବଂ ବ୍ୟବସ୍ଥାପକ ହୋଇଥିବା ଯୋଗୁଁ କୃଷକ ଉତ୍ପନ୍ନର ଏକଷଷ୍ଠାଂଶ ଭାଗ କର ସ୍ୱରୂପ ନେଉଥିଲେ । ବଳକା ଲାଭ କୃଷକର ଥିଲା । ଏଥିପାଇଁ ପ୍ରଥମେ ଯେଉଁ କୃଷକ ମହାଜନର ମଜୁରିଆ ଥିଲା, ବର୍ତ୍ତମାନ ସ୍ୱତନ୍ତ୍ର ହୋଇ ଧନୀ ହେଉଛି । ଏହା ସେହି ସମୟର ଏକ ମହତ୍ୱ ପୂର୍ଣ୍ଣ ପ୍ରଗତି'' ।

''ତୁମେ ମୋ ଦୃଷ୍ଟିରେ 'ହିଷ୍ଟ୍ରି'କୁ' ନିଜ ଖିଆଲରେ ନଷ୍ଟ ଭ୍ରଷ୍ଟ କରୁଛ'' ।

''ନା, ଏମିତି କିଛି କଥା ନୁହେଁ, କିନ୍ତୁ ଏହା ସତ୍ୟ ଯେ ଭାରତୀୟ ଇତିହାସର ଏକ ପ୍ରକୃତ ରୂପ ରେଖ ପ୍ରସ୍ତୁତ ହେଉଅଛି । ମହେଞ୍ଜୋଦାରୋ ଓ ହରପ୍ପାର ଆବିଷ୍କାର କେବଳ କୌତୁହଳର ବସ୍ତୁ ନୁହେଁ । ତାହା ଆମର ଅନେକ ବୈଦିକ ଓ ପୌରାଣିକ କାହାଣୀକୁ ନିରର୍ଥକକୁ ସାର୍ଥକ କରୁଛି ଏବଂ ଆମକୁ ଆମର ବିକାଶ କ୍ରମକୁ ବୁଝିବାପାଇଁ ସହାଯ୍ୟ କରୁଛି । ଉଦାହରଣ ସ୍ୱରୂପ 'ପୁରନ୍ଦରଙ୍କୁ' ନିଆଯାଉ, ନଗରଗୁଡ଼ିକୁ ଜଳେଇବା ବାଲା 'ଇନ୍ଦ୍ର' ନିଶ୍ଚିତ ରୂପରେ ସାମନ୍ତ ମାନଙ୍କର ପ୍ରତୀକ ଥିଲା । ନଗର ରାଜ୍ୟର ଶାସକ ସାମନ୍ତମାନଙ୍କର ଶତ୍ରୁ ଥିଲେ । କାରଣ ଏମାନେ ବ୍ୟବସାୟୀ ଥିଲେ । କୃଷି ଏମାନଙ୍କର ଏକ ପ୍ରଧାନ ଜୀବିକା ନଥିଲା । ଏମାନେ ଯେତିକି କୃଷି ଦରକାର କରୁଥିଲେ ସେତିକି କରୁଥିଲେ । ଆର୍ଯ୍ୟ ସାମନ୍ତମାନେ ଜନସାଧାରଣଙ୍କର ଉତ୍ପାଦନ ବ୍ୟବସ୍ଥା ବଦଳାଇ ଦେଲେ । ଲୋକମାନଙ୍କର କୃଷି ପ୍ରତି ଆସ୍ଥା ବଢ଼ିଲା । ଯେଉଁ କର୍ମ ପଟୁ କାରିଗର ନିଜର ପେଟ ପାଇଁ ବ୍ୟବସାୟୀ ଓ ମହାଜନମାନଙ୍କର ଆଶ୍ରିତ ଥିଲେ ସେମାନେ କୃଷି କର୍ମକରି ସ୍ୱତନ୍ତ୍ର ହୋଇଗଲେ । ''ଉତ୍ତମ କୃଷି, ମଧ୍ୟମ ବ୍ୟବସାୟର ଧ୍ୱନି'' ଚାରିଆଡ଼େ ଖେଳିଗଲା । ଏହାର ପ୍ରଭାବରେ ସାମାଜିକ ରୂପରେ ଆମୂଳଚୂଳ ପରିବର୍ତ୍ତନ ହେଲା ।

''ଇଟ୍-ଇଜ୍ ରିଅଲି ଇଂଟେରେଷ୍ଟିଂ 'ତୁମେ-ତୁମେ କିଛି ପିଇବ ? ରୂପରଞ୍ଜନ ପଚାରିଲା ।

''ନା, ମୋତେ ଘରକୁ ଯିବାକୁ ହେବ'' ।

''ପିଇକରି ସ୍ତ୍ରୀ ସମ୍ମୁଖକୁ ଯିବାକୁ ଡର ମାଡ଼ୁଛି । ହଃ ହଃ, ତାହାହେଲେ ଏଠାରେ ରହିଯାଅ, ପୁରୁଣା ଅଭ୍ୟାସ, ତୁମର ଶ୍ରୀମତୀ ମଧ୍ୟ ଜାଣନ୍ତି । ମୁଁ କହି ଦେଇଛି ।''

''ଅରେ ଘରକୁ ନିଶ୍ଚୟ ଯିବି । ସେହି ହାର ମଧ୍ୟ ନେଇ ଆସିବି । ମୂଲ୍ୟବାନ ବସ୍ତୁ ଅରକ୍ଷିତ...''

''ଅରକ୍ଷିତ କାହିଁକି, ତୁମର ଓ୍ୱାଇଫ୍ ପାଖରେ ହାର ନିଶ୍ଚୟ ଥିବ ।''

"ହଁ, ତାଙ୍କର ପାଖରେ ଅଛୁ । ତାଙ୍କର ପାଖରେ ଅଛୁ । ତଥାପି ଯେଉଁ ଦଳଠାରୁ ଢ଼କାସ୍ୱତ ହେଲା ।"

"ତୁମେ ସେମିତ ଅପଦାର୍ଥ ବ୍ରାହ୍ମଣ ହୋଇ ରହିଗଲ ।

ମହୀପାଳ ଲଜ୍ୟାର ହସ ହସି କହିଲା "ନାଁ, ଅରେ ଯିବ । ଆଚ୍ଛା, ଆଜ ତୁମ ଘରେ ରହିଯିବ, ଘରେ କହି ଆସିବ ।"

ରୂପରତନର ହାତ ଘଣ୍ଟିର ସ୍ୱିଚ୍‌ରେ ପଡ଼ିଲା । ଅର୍ଦ୍ଦଳୀ ଆସିଲା ।

"ଗାଡ଼ି ବାହାର କରିବାକୁ କୁହ । ପଣ୍ଡିତ ମହାଶୟ ଯିବେ ।"

# ଛତିଶି

ହୋଲି ପୂର୍ବର ଏକ ସନ୍ଧ୍ୟା । ସଜ୍ଜନ ସାରା ଦିନ ଗୋଟିଏ ଚିଠି ଉପରେ କାମ କରିସାରିବା ପରେ ଭିତରପଟ ବାରଣ୍ଡାରେ ବସି ଚାହା ପିଉଥିଲା । ଏହି ସମୟରେ ହଠାତ୍ ପୁରୁଣା ଦରୱାନ ଆସି କହିଲା "ହଜୁରୁଙ୍କର ଶାଶୂ ଆସିଛନ୍ତି । ସଙ୍ଗରେ ହଜୁରୁଙ୍କର ଶଳା ସାହେବ ଏବଂ ଜଣେ ସ୍ତ୍ରୀ ଲୋକ ମଧ୍ୟ ଆସିଛନ୍ତି । ନୂତନ ଅତିଥିର ନାମ ଶୁଣି ସଜ୍ଜନ ଚମକି ପଡ଼ିଲା । ଅତିଥିମାନଙ୍କର ଆଗମନର ସୂଚନା ସେ ପାଇସାରିଥିଲା, ଯେତେ-ବେଳେ ବୈବାହିକ ସମ୍ବନ୍ଧ ଅଛି, ସେତେବେଳେ ଶ୍ୱଶୁର ଘରର ସମ୍ପର୍କୀୟ ଯେ ଆସିବେ ଏଥିରେ କିଛି ନାହିଁ । କିନ୍ତୁ ଏପରି ହଠାତ୍ ?

ସ୍ୱର୍ଗତଃ ରାୟବାହାଦୂର କନ୍ହୋମଲ୍ଲଙ୍କ ଆର୍ଟିଷ୍ଟ ପୌତ୍ର ଏବଂ ଜଗଦମ୍ବର ଜାମାତାଙ୍କ ଡ୍ରଇଁ ରୁମର ଚାରିଆଡ଼କୁ ଟିକିନିଖି କରି ଚାହିଁବା ମାଷ୍ଟର ଜଗଦମ୍ବା ମହାଶୟଙ୍କର ସ୍ତ୍ରୀ ନିଜ କନ୍ୟାର ସୌଭାଗ୍ୟ ଉପରେ ଈର୍ଷା କରୁଥିଲେ । ତାଙ୍କ ପାଖରେ ତାଙ୍କ ହତଭାଗିନୀ ବୋହୂ ମଧ୍ୟ ବସିଥିଲେ । ଅନ୍ୟ ଏକ ସୋଫା ଉପରେ ସଜ୍ଜନର ଶଳା ସାହେବ । କପାଳରେ ସିନ୍ଦୁରଟିପା ଲଗାଇ ଆଖି ବନ୍ଦ କରି ସିଂହାସନରେ ଧ୍ୟାନମଗ୍ନ ମୁଦ୍ରାରେ ବସିଥିଲେ ।

ସଜ୍ଜନ ଗର୍ବର ସହିତ 'ହଲ' ମଧ୍ୟରେ ପ୍ରବେଶ କଲା । ଶାଶୁଙ୍କୁ ଦେଖିଲା, ଓଢ଼ଣାଟା ମୁଣ୍ଡ ଉପରକୁ ନଇଁ ଆସିଥିଲା । ଯୁବତୀ ଅବସ୍ଥାରେ ନିଶ୍ଚୟ ସୁନ୍ଦରୀ ହୋଇଥିବେ, ପାନ ବୋଳରେ ଓଠ କଳା, ଆଖିରେ ଲେଞ୍ଜୁରି । ଦେଖିଲେ ଜଣାଯାଉଥିଲା, ଯେପରି କେତେ ଦିନରୁ ଗାଧୋଇ ନାହାନ୍ତି । ଯୁବତୀଟି ପର୍ଦ୍ଦା ପଥାର ବିପକ୍ଷରେ ଥିଲା କିନ୍ତୁ ପରିଧାନ ତାର ଫଜଳ ଥିଲା । ତାଙ୍କର ସୁନ୍ଦର ଶ୍ୟାମଳ ବର୍ଣ୍ଣର ଚେହେରା ଉପରେ ମଳିନତା ଓ ଉଦାରତା ଢାଙ୍କି ହୋଇଥିଲା । ପ୍ରଥମ ଦେଖାରେ ଶଳା ସାହେବ ବଡ଼ ଆଶ୍ଚର୍ଯ୍ୟ ହୋଇ ମନେ ମନେ ହସିଲେ । ସଜ୍ଜନକୁ ଦେଖିଲା ମାତ୍ରେ ତାର ଶାଶୁ ଓ ଶଳା ସଉଜ ଛିଡ଼ା ହେଲେ । ଶଳା ମହାଶୟ ମଧ୍ୟ ଆଖିଖୋଲି ବେକ ବୁଲାଇ ନିଜର ଭଗ୍ନୀପତିକୁ ଏପରି ଦେଖିଲେ, ସତେ ଯେପରି ଶିବ କାମଦେବଙ୍କୁ ଭସ୍ମ କରିପକାଉଛନ୍ତି । ବଜରଙ୍ଗ ବଜରଙ୍ଗ ଉଚ୍ଚାରଣ କରି ବେକ ତଳକୁ କଲେ ଏବଂ ଆଣ୍ଠୁକୁ ହଲାଇ ହଲାଇ ବସି ରହିଲେ । ସଜ୍ଜନ ହାତ ଯୋଡ଼ି ପ୍ରଣାମ କରନ୍ତେ ଶାଶୁ ଆଶୀର୍ବାଦ କଲେ "ମୋ ଝିଅର ପୂର୍ବ ଜନ୍ମର ସୁକୃତ ଓ ପୁଣ୍ୟ ବଳରୁ ଏପରି ଘର ଓ ସ୍ୱାମୀ ପାଇପାରିଛି । ସତ

କହୁଛୁ ପୁଅ, ତୁମର ଚାକରମାନଙ୍କ ସହିତ ମଧ୍ୟ ଆମେ ସମାନ ନୋହୁଁ । ତୁମ ଭଳି ଜ୍ୱାଇଁ ପାଇବା ଆମର ଭାଗ୍ୟ । ଏହା କହି ଶାଶୁ ନିଜ ଅଣ୍ଟାରେ ଖୋସା ହୋଇଥିବା ଗୋଟିଏ ରୁମାଲ ଖୋଲିବାକୁ ଟଙ୍କା ବାହାର କଲେ ଓ ସଜ୍ଜନଆଡ଼କୁ ଚାହିଁ କହିଲେ ।

·· ତମେ···

···କଣ ?···

ଏତକ ନିଜେ ନିୟମ ଅନୁଯାୟୀ ବାହା ହୋଇଥିଲେ, ସବୁକିଛି ଦେବାକୁ ପଡ଼ିଥାଆନ୍ତା ! ଆପଣଙ୍କ ସାଙ୍ଗରେ ଜବାବ ହୋଇଥାଆନ୍ତା । ପ୍ରଥମ ଦେଖାରେ ଫଳଦାନ ତିଲକ ଗୃହ ପ୍ରବେଶ, ବଦାସ୍ତୀ ଆଦି କେତେ କଣ ଦେବାକୁ ନେବାକୁ ପଡ଼ିଥାଆନ୍ତା । ତୁମେତ ଆମକୁ ଗୋଟିଏ ପଇସା ମଧ୍ୟ ଖର୍ଚ୍ଚ କରାଇବାକୁ ଦେଇନ । ସଜ୍ଜନର ଶାଶୁ ନିଜର ସ୍ନେହଭରା ଆଖିରେ ବାତ୍ସଲ୍ୟ ମମତା ଜ୍ୱାଇଁ ଉପରେ ଅଜାଡ଼ି ଦେଇ ତାର ଡାହାଣ ହାତ ଅଙ୍ଗୁଳିରେ ରତ୍ନ ମୁଦି ପାଖକୁ ଚିଲା ହେଉଥିବା ସୁନା ମୁଦିଟି ପିନ୍ଧାଇ ଦେଲେ । ପୁଣି ଶୁଭକାମନା କରି ଆଶୀର୍ବାଦ କରିବାକୁ ଲାଗିଲେ । ଶାଶୁର ବ୍ୟବହାରରେ ସ୍ନେହ ଥିଲେ ମଧ୍ୟ ସଜ୍ଜନକୁ ଏହା ଶସ୍ତା ଓ କୃତ୍ରିମ ମନେହେଲା ।

"ହରି ଓଁ ବଜରଙ୍ଗ" ଶଳା ମହାଶୟ ସମାଧିରୁ ପୁଣି ଚେଇଁ ଉଠିଲେ । ଗୋଟିଏ ନିଃଶ୍ୱାସ ଛାଡ଼ିଲେ ଓ ମିଞ୍ଜି ମିଞ୍ଜି ଆଖିକୁ ସ୍ଥିର କରି ଭଗ୍ନୀ ପତିଙ୍କୁ ଦେଖିବାକୁ ଲାଗିଲେ । ତାଙ୍କର ମୌନତାରେ ସଜ୍ଜନ ଭୟ ପାଇଲା । ଦୁର୍ବଳ, ରକ୍ତହୀନ ଶରୀର ନେଇ ଦୁଃଖିନୀ ଶଳାଭାଉଜ ସଙ୍କୋଚିତ ହୋଇ ବସିଥିଲା ।

"ନିଜ ଭଗ୍ନୀ ପତିର ମୁହିଁ ମିଠା କରରେ ପୁଅ, ଚାହିଁଛୁ କ'ଣ ? (ସଜ୍ଜନ ପ୍ରତି) ନିଜ ଭଉଣୀକୁ ଏ ବହୁତ ଭଲପାଏ । ଏଥିମରୁ ଭଉଣୀର ମଧ୍ୟ ନିଜ ଭାଇପ୍ରତି ଭାରି ସ୍ନେହ ··· କଣ କହିବ, ସବୁ ଭାଗ୍ୟର ଦୋଷ ·· "

ବାହାର ପୋର୍ଟିକୋରେ କାର ରହିଲା, କାରର କବାଟ ଖୋଲିଲା ଓ ବନ୍ଦ କରିବାର ଶବ୍ଦ ହେଲା । ସଜ୍ଜନ ହୃଦୟକୁ କିଛିଟା ଶାନ୍ତ ଅନୁଭବ କଲା । ଦେହରେ ଏକ ପ୍ରକାର ଅଶାନ୍ତି ଆସିଲା । କବାଟ ଆଡ଼କୁ ଦୃଷ୍ଟି ଉଠିଗଲା । ବନ୍ଧୁମାନଙ୍କ ଗହଣରେ ସଜ୍ଜନ ଅପ୍ରସ୍ତୁତ ହୋଇଗଲା । ସଜ୍ଜନ ହଲ୍‌କୁ ଆସି ଦେଖିଲା, କନ୍ୟା ସିଲକ୍ ଶାଢ଼ୀ ସହିତ ଫିକା ବାଦାମୀ ରଙ୍ଗର ପଶମ ବ୍ଲାଉଜ ଓ ଫିକା ଚକୋଲେଟ୍ ରଙ୍ଗର ଶାଲ୍ ଏବଂ ଧଳା ରଙ୍ଗର ଚପଲ ପିନ୍ଧି ଆସୁଥିଲା, ତାକୁ ଖୁବ୍ ସୁନ୍ଦର ମାନୁଥିଲା ।

ମାଷ୍ଟର ଜଗଦମ୍ବା ସହାୟଙ୍କର ଧର୍ମପତ୍ନୀ ୯ ମାସ ପରେ ନିଜ ଝିଅକୁ ଚାହିଁ ଚାହିଁ ଦେଖୁଥିଲେ ; ଝିଅ ତାଙ୍କର ଏବେ ବୋହୂ ହୋଇଛି । ଚେହେରାରେ ଗାମ୍ଭୀର୍ଯ୍ୟ, ଚାଲି ଚଳନ, ହାବ-ଭାବରେ ମଧ୍ୟ ପରିବର୍ତ୍ତନ ଆସିଛି । କିନ୍ତୁ ମା, ଭାଇ ଆଡ଼କୁ ଦେଖି

କନ୍ୟା ଯେପରି ଖୁସି ହୋଇ ଉଠିଲା । ଏଥିରେ ମା' କିଛି ଅତୀତକୁ ଫେରିଗଲେ । ସେ ଠିକ୍ ଆଜି ଝିଅ ପରି ଥିଲା । କନ୍ୟାକୁ ଦେଖି ମାଠାରୁ ଅଧିକ ଭାବରେ ସ୍ୱାହଜର ମଳିନ ଓ ବିଷଣ୍ଣ ଦୃଷ୍ଟି ବିକଶିତ ହେଲା । ସେହି ଦୃଶ୍ୟ ସଜ୍ଜନର ହୃଦୟରେ ଅତି ମାର୍ମିକତାର ଚିତ୍ର ଆଙ୍କିଥିଲା । ସମ୍ପର୍କ ଯେ କେତେ ଦୃଢ଼ ଓ କେତେ ସହଜ— ତାକୁ ଯେତେ ଧରିରଖିବାର ଚେଷ୍ଟା ହେବ ତା ସେତେ ମଧୁର ଓ ଦୃଢ଼ ହେବ । କନ୍ୟାର ବଡ଼ଭାଇ ମହାଶୟ ସୋଫା ଉପରେ ଯଥାବତ୍ ଯୋଗାସନରେ ବସିଥିଲେ । ଥରେ ଚକ୍ଷୁ ଖୋଲି ମା, ଝିଅଙ୍କ ମିଳନ ଦୃଶ୍ୟ ଦେଖିଲେ, ପୁନଶ୍ଚ ଏହାକୁ ମାୟା ଭାବି ନିଜ ସମାଧିରେ ଲୀନ ହୋଇଗଲେ ।

କନ୍ୟା ସ୍ୱାହଜକୁ ଆଲିଙ୍ଗନ କଲା । ହସି ହସି ପରୋକ୍ଷରେ ମା ସହିତ କଥା ହେଲା । ସ୍ୱାଇର ପାଦ ଛୁଇଁଲା, କିନ୍ତୁ ତାଙ୍କର ସମାଧି ଭଙ୍ଗ ହେଲା ନାହିଁ । ସମାଧି ମୁଦ୍ରାରେ ତାଙ୍କର ଭ୍ରୁକୁଟୀ କୁଞ୍ଚିତ ମୁଖ ମଣ୍ଡଳର ଶୂନ୍ୟ ଚିତ୍ର ଏଭଳି ପ୍ରତୀତ ହେଉଥିଲା ଯେପରି କୌଣସି କାର୍ଟୁନିଷ୍ଟର ଚମତ୍କାରିତା ଫୁଟି ଉଠିଛି । ଏ ଶଳାତ ହତରେ ସମସ୍ତଙ୍କର ଶଳା । ସଜ୍ଜନ ଏହାକୁ ପରିହାସ ଓ ବିଦ୍ରୂପ କରିବା ଢଙ୍ଗରେ ଭାବିଲା ।

ସଜ୍ଜନର ଶାଶୁ ନିଜର ଝିଅ ଗଳାରେ ମାଳା ପିନ୍ଧାଇ ଥିଲେ । ସେଥିରେ କିଛି ମମତା ବା ପବିତ୍ରତା ନଥିଲା ।

ହରି ଓଁ, ବଜରଙ୍ଗ । ବଜରଙ୍ଗ, ଶଳା ମହାଶୟଙ୍କର ସମାଧି ଭଙ୍ଗ ହେଲା । ସମସ୍ତଙ୍କୁ ଉଦାସ ଦୃଷ୍ଟିରେ ଚାହିଁଲେ । ମା, କହିଲେ, "ଆରେ ପୁଅ, ତୁ କଣ କରେ, ଭଉଣୀକୁ ଦେଖିବାକୁ ଆସି ପୁଣି ।"

"କଣ ମହାଶୟ, ମିଷ୍ଟର ସଜ୍ଜନ, ବର୍ମା, ମୁଁ ଆପଣଙ୍କ ଘରେ ବସି ବିଡ଼ି ପିଇ ପାରେକ ?

ସ୍ୱାଇ, ଆପଣ ଏମିତି କ'ଣ କହୁଛନ୍ତି । ଯଦି ଚାହୁଁଛନ୍ତି ତେବେ ପିଇପାରନ୍ତି । କନ୍ୟା ସ୍ୱାଇକୁ ଜୋର ଦେଇ ସଚେତ କରିବାକୁ ଚାହିଁଲା ।

ସଜ୍ଜନ ନିଜର ପକେଟରୁ ସିଗାରେଟ କେଶ୍ ଓ ଲାଇଟର ବାହାର କରି ଶଳା ଆଡ଼କୁ ବଢ଼ାଇଲା । ଶଳା, ବଜ୍ରଙ୍ଗ, ମୁଁ ଏଠାରେ ଆପଣଙ୍କର କୌଣସି ଜିନିଷ ଗ୍ରହଣ କରି ପାରିବି ନାହିଁ ।"

ସଜ୍ଜନ ନିଜର ସିଗାରେଟ୍ କେଶ୍ ଫେରାଇ ଆଣି ପକେଟରେ ରଖିଦେଲା । କନ୍ୟାକୁ କହିଲା "ମୁଁ ଯାଉଛି ଡାର୍ଲିଂ । ମୋର ଟିକିଏ କାମ ଅଛି । ତୁମେ ମା ଆଦିଙ୍କର…

"ପୁଅ ତୁମ ପାଖରେ ଗୋଟିଏ କାମ ଅଛି । ଶାଶୁ ଜ୍ୱାଆଇଙ୍କୁ କହିଲେ । ସଜ୍ଜନ ରହିଗଲା, ବରକନ୍ୟା ନିଜର ସ୍ୱାମୀର ଚେହେରାକୁ ପଢ଼ିବାରେ ଲାଗିଲା । ଖରାପ ଲାଗିଲା ନାହିଁ । ଗମ୍ଭୀରତାର ଶକ୍ତ ଆବରଣ ତଳେ ରୂପା ଲହରୀ କାଟୁଥିବା ହସ ଓଠ ଉପରେ ଭଉଁରୀ କାଟୁଥିଲା । ଶାଶୁ ଜୁଆଁଇଙ୍କୁ ନିକଟରେ ବସିବାକୁ କହିଲେ । କିନ୍ତୁ ସଜ୍ଜନ—"ମୋର ଏପରି ଅଭ୍ୟାସ" କହି ଛିଡ଼ା ହୋଇ ରହିଲା । ମାଷ୍ଟର ଜଗଦମ୍ବା ସହାୟଙ୍କର ସ୍ତ୍ରୀ କିଛି କହିବାକୁ ଯାଉଥିଲେ । ଏହି ସମୟରେ ସେ କହିବାକୁ ଲାଗିଲେ, ଝିଅ ।

"ଆଜ୍ଞା"

"ତୁମେ ଜାଣ ମୁଁ ଆଜି ଏଠାକୁ କାହିଁକି ଆସିଛି ? କାଲି ରାତିରେ ମୋର ଏହି ବିଷୟରେ ଶଙ୍କରଙ୍କ ସହିତ ବହୁତ ଯୁକ୍ତି ତର୍କ ହୋଇଛି । ସେ କହିଲେ ଯେ ପୁଅ ତୋର ଭଉଣୀ ଘରକୁ ଯିବା ଉଚିତ । ମୁଁ କହିଲି, ମୁଁ କେବେହେଲେ ଯିବି ନାହିଁ । ଏହା ଉପରେ ଶଙ୍କର ଓ ମୁଁ ଦୁହେଁ ନିଜ ନିଜର ଜିଦ୍ ଉପରେ ରହିଲୁ । ପୁଣି ଆଲଚଣ୍ଡର ଲୋକେ ମଧ୍ୟସ୍ଥତା କଲେ ।

ସମସ୍ତେ ତା ଆଡ଼କୁ ଅନାଇଁ ନୀରବରେ ଶୁଣୁଥିଲେ । କନ୍ୟାର ମା ସଜ୍ଜନ ନିକଟରେ ନିଜର କଥା କହିବାକୁ ବ୍ୟଗ୍ର ଥିଲେ, କିନ୍ତୁ ପୁଅଙ୍କର କଥାରସ୍ରୋତ ବହି ଚାଲିଥିଲା । କହିଲେ—ଭଉଣୀ ବର୍ତ୍ତମାନ ମୋର ସିଦ୍ଧି ପୂର୍ବାପେକ୍ଷା ଢେର ବଢ଼ିଯାଇଛି ବୁଝିଲୁ ? ଯଦି ଇଚ୍ଛା କରିବି ତୋ ଘରର ସମସ୍ତ ଆସବାବ ପତ୍ର ମାତ୍ର ଏକ ସେକେଣ୍ଡରେ ମୋ ଘରେ ପହଞ୍ଚାଇ ଦେବି । କିନ୍ତୁ ନା, ମୁଁ ମାୟା ମୋହରେ ପଡ଼େନାହିଁ । ଯେତେବେଳେ ମୋ ପାଖକୁ ସିଦ୍ଧି ଆସିଲା, ମୋତେ କହିଲା ଯେ, ଯଦି ତୁମେ ଇଚ୍ଛା କରିବ ନିଜ ତକିଆ ତଳେ ପ୍ରତି ଦିନ ଏକ ଲକ୍ଷ ଟଙ୍କାର ନୋଟ୍ ପାଇବ । ମୋ ସ୍ଥାନରେ ଯଦି ମା ଥାଆନ୍ତା ତେବେ ମାୟା ମୋହର ଚକ୍ରରେ ପଡ଼ିଯାଆନ୍ତା, କିନ୍ତୁ ମୋତେ ମୋର ଗୁରୁ ବଜରଙ୍ଗବଳୀ ଧୀରେ ଧୀରେ ଆସି କାନ ପାଖରେ କହିଗଲେ ଯେ 'ବତ୍ସ ତୁମର ସହାୟ, ମିଥ୍ୟା ମାୟାରେ କେବେ ପଡ଼ିବ ନାହିଁ । ମୁଁ ତୁମକୁ ଭଗବାନଙ୍କର ଦର୍ଶନ କରାଇଦେବି ।"

ପୁଅ, କଣ ଗୁଡ଼ାଏ ଏପରି ବକି ଚାଲିଛୁ । ଟିକିଏ ସ୍ଥିର ହୁଅ, ସଂଯତ ହୁଅ । କନ୍ୟାର ମା କହିଲେ ।"

ତୁମେ ଏହାକୁ ଅଶ୍ଳିଷ୍ଟ କଥା କହୁଛ ? ତୁମର କଣ ମୋର ସିଦ୍ଧି ଉପରେ ବିଶ୍ୱାସ ନାହିଁ ? ସଜ୍ଜନର ଶଳା ନିଜର ମା ଉପରେ ଗର୍ଜି ଉଠିଲେ । ବୋହୂର ଚେହେରା ଭୟରେ ଫିକା ହୋଇଗଲା । ବୋହୂ ଧୀରେ ଧୀରେ ନିଜର ଶାଶୁକୁ କହିଲେ "ମା" କହିଦିଅ, ବିଶ୍ୱାସ ଅଛି ।

ବୃଦ୍ଧ ମହାଶୟ ଖୁବ୍ ଜୋରରେ ଦାନ୍ତ କଡ଼ମଡ଼ କରି ଆଖି ଲାଲ ଲାଲ କରି ତୁଳି ତୁଳି ନିଜର 'ମା' ଆଡ଼କୁ ଆସୁଥିଲେ । ସଜ୍ଜନ ଶଳାର ବାହୁ ଧରି ଜୋରରେ ଠେଲି ଦେଇ କହିଲେ "ଚୁପ୍ ହୋଇ ସେଠାରେ ବସନ୍ତୁ ।"

ଶଳା ମହାଶୟ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ କଣ ଗୁଡ଼ାଏ ଧୀରେ ଧୀରେ ଗୁଣୁ ଗୁଣୁ ହେଲେ "ମୋତେ ବିଡ଼ି ପିଇବାକୁ ଦେଉ ନାହାନ୍ତି । ମୁଁ ଶଙ୍କରଙ୍କ ନିକଟରେ କହିବି । ସେ ଏହାର ବିଚାର କରିବେ । କ୍ରୋଧରେ ଆଖି ଲାଲ କରି ଦାନ୍ତ ରଗଡ଼ି ଶଳା ମହାଶୟ କହିଲେ ଏବଂ ରହି ରହି ଗରମ ନିଶ୍ୱାସ ଛାଡ଼ିବାକୁ ଲାଗିଲେ ।

ମାଷ୍ଟର ଜଗଦମ୍ବା ସହାୟର ଧର୍ମପତ୍ନୀ ନିଜର ଝିଅକୁ କହିଲେ "ସେହି ଦିନଠାରୁ ଏହାର ଏପରି ଅବସ୍ଥା ହୋଇଛି । ଏକୁ ଯେତେ ମନା କଲେ ବି ସେ ମାନୁନି । ଘରର ଅବସ୍ଥା ଆଉ କହିବି ? (ସଜ୍ଜନ ପ୍ରତି) ପୁଅ, କାହାଘରେ କ'ଣ ଦୋଷ ଦୁର୍ବଳତା ନାହିଁ ? ଆମର ଘର ଏମିତି କଣ ପାପ କରି ପକେଇଛି ? ତୁମେ ନିଜେ ଏହାର ନ୍ୟାୟ କର ।"

ସେ କଥାକୁ ବର୍ତ୍ତମାନ ରଖିଦିଅ 'ମା' । କନ୍ୟା 'ମା' ଆଡ଼କୁ ନ ଚାହିଁ ବଢ଼ୁଥିବା ମାନସିକ ଦୁଃଖକୁ ନିଜର ଚେହେରାରେ ପ୍ରକାଶ କରି କହିଲା ।

ନନ୍ଦୁ ବାବୁ, ଓରଫ୍, କୃଷ୍ଣ ସହାୟ କହି, ହଠାତ୍ ଉଠି ଗୋଲ ଟେବୁଲ ଉପରେ ରଖା ଯାଇଥିବା ମିଠାଇ ହାଣ୍ଡିରେ ହାତ ପୁରାଇଲେ । ମା, ନିଜ ଝିଅର କଥାରେ ଉତ୍ତର ଦେବା ବନ୍ଦ କରି ତାକୁ ଧମକ ଦେଇ କହିବାକୁ ଲାଗିଲେ "ନନ୍ଦା, ତୋର ବୁଦ୍ଧି ସବୁ ଲୋପ ହେଲାଣି । ସାନ ଭଉଣୀ ଘରେ···"

ସବୁ ମାୟା, ସବୁ ମିଛ, ଆଉ କିଛି କୁହ ନାହିଁ । କହି ନନ୍ଦୁ ବାବୁ କେତେଗୁଡ଼ାଏ ଏକା ଥରକେ ବାହାର କରି ପାଟିରେ ପୁରାଇଲେ ।

ମାଷ୍ଟର ସାହେବଙ୍କ ଧର୍ମପତ୍ନୀ ଝିଅ ଜୋଇଁଙ୍କ ଆଡ଼କୁ ଦୟନୀୟ ଦୃଷ୍ଟିରେ ଚାହିଁ ଧୀରେ ଧୀରେ କହିଲେ "ଏଭଳି ଅବସ୍ଥା" ଏହାପାଇଁ ବର୍ତ୍ତମାନ ଘରେ କେହି ଶୋଇ ବସିପାରୁ ନାହାନ୍ତି, କେହି କିଛି କାମ ଧନ୍ଦା କରିପାରୁ ନାହାନ୍ତି । ରୋଷେଇ ଘରେ ପଶି କେବେ କେବେ ରନ୍ଧା ଭାତ ତରକାରି ଫିଙ୍ଗି ଦେଉଛି । କେତେବେଳେ ବାହାରର ଜୀବ ଜନ୍ତୁମାନଙ୍କୁ ଖୁଆଇ ଦେଉଛି । କଣ କହିବି, ଏହା ହାତରୁ ମାଡ ଖାଇ ଖାଇ ଆମର କେବଳ ଜୀବନ ଯିବାକୁ ବାକି ଅଛି । ତୁ ନିଜର ବାପାକୁ ଜେଲ ଦେଇଛୁ । ବର୍ତ୍ତମାନ ଏହାକୁ ମଧ୍ୟ ପାଗଳ ଖାନାକୁ ପଠାଇ ଦେ । ଝିଅ ଏବଂ ଆମକୁ ଟିକିଏ ଟିକିଏ ବିଷ ଦେ ।" ତାଙ୍କ ଆଖିରେ ଲୁହ ଓ କଣ୍ଠ ବାକ୍ରୁଦ୍ଧ ହୋଇଗଲା । ଆଖି ପୋଛିଲେ, ତାଙ୍କର ଆଖିର ଲେଂଜସ ପୋଛି ହୋଇଗଲା ।

ହଠାତ୍ ସଜ୍ଜନ କନ୍ୟାର କାନ୍ଧ ଉପରେ ହାତ ରଖି କହିଲା'' ଏଙ୍କୁ ବାବାଙ୍କଙ୍କ ପାଖରେ ପହଞ୍ଚାଇ ଦେବକି ?''

କନ୍ୟା ନିଜ ମନର ବ୍ୟଥା ଓ ଅନିଶ୍ଚୟତାକୁ ସ୍ୱାମୀର ଆଖିରେ ଭରି ଦେଇ କହିଲା'' ମା'ଙ୍କୁ, ପଗ୍ଚର ନିଅ ।''

ମା ଶୁଣିନେଲା, କହିଲା'' ପାଗଳ ହୋଇଗଲା'' ଘରେ ଆଉ କେହି ପୁରୁଷ ଲୋକ ନାହାନ୍ତି, ଏଥିପାଇଁ ଘରେ ବାଘ ହୋଇଯାଇଛୁ । ପୁଣି ହଠାତ୍ ଜୁଆଁଇଁଙ୍କର ପାଦ ତଳେ ପଡ଼ିଗଲା । ସଜ୍ଜନ ବ୍ୟସ୍ତ ହୋଇଗଲା । ଶାଶୁଙ୍କ ଦୁଇ ହାତକୁ ଧରି ଉଠାଇ କହିଲେ । ''ଏ ଆପଣ କଣ ? କରୁଛନ୍ତି ? ଉଠନ୍ତୁ ।''

ପୁଅ, ମୋର ସୌଭାଗ୍ୟ ମୋତେ ଫେରାଇଦିଅ । ଈଶ୍ୱର ତୁମକୁ ସବୁକିଛି ଦିଅନ୍ତୁ । ଏ ଯାହା ହେଉନା କାହିଁକି, ସେ ମୋର ଜୀବନର ଭରସା । ଏଇଥିପାଇଁ କେତେ ଦୁଃଖ କଷ୍ଟ ସହୁଛି ।''

''ବାବୁ, ଆଇନ୍ କାନୁନ୍‌ର ଇଏ କାମ ଆମ ହାତରେ କିଛି କରିବାର ''ନାହିଁ ।

''ମୁଁ ତତେ କିଛି କହୁନି ଟିଅ । ଯାହା ବଳରେ ତୁ ତୋର ବାପାକୁ ଜେଲଖାନାରେ ପୁରାଇଲୁ, ସେ ସେତେବେଳେ ମୋର କେହି ନ ଥିଲା, କିନ୍ତୁ ଏବେ ସେ ମୋର ପୁଅ । ମୋର ମଧ୍ୟ ଦାବୀ ଅଛି ।''

କନ୍ୟାର ରାଗରେ ଜଳିଗଲା । ନିଜ ଶାଶୁର ଅଧିକାର ଜାହିରକୁ ଦେଖି ସଜ୍ଜନ ମନେ ମନେ ବ୍ୟତିବ୍ୟସ୍ତ ହୋଇଗଲା କିନ୍ତୁ କନ୍ୟାର କ୍ରୋଧକୁ ଦେଖି ସେ ନିଜକୁ ସମ୍ଭାଳି ନେଲା, ମିଠା କଥା ଦ୍ୱାରା କାମ ହାସଲ କରିବାକୁ ଯାଇ ଶାଶୁଙ୍କୁ କହିଲା ''ପୁରାପୁରି ଆପଣଙ୍କର ଦାବୀ ଅଛି । ମୁଁ ମନାକରୁନାହିଁ, କିନ୍ତୁ ଏ ସମ୍ବନ୍ଧରେ ଆପଣ ମୋତେ କିଛି ନ କହିଲେ ଭଲ ହେବ । ପ୍ରକୃତରେ ମୋ ହାତରେ କିଛି ନାହିଁ । ସରକାରଙ୍କ ତରଫରୁ ତାଙ୍କ ଉପରେ ମୋକଦମା ଚାଲିଛି ।

''ସମସ୍ତେ କହୁଛନ୍ତି ପୁଅ, ତୁମେ ଜାମିନ୍ ହେଲେ ସେ ଆସି ପାରିବେ । ତୁମର ସବୁ ଜାଗାରେ ହାତ ଅଛି ।''

ସ୍ୱାମୀ ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ବନକନ୍ୟା 'ମା'କୁ କହିଲା ''ମା, ମୁଁ ତୁମକୁ ହାତ ଯୋଡ଼ୁଛି, ଆଉ ଯାହା କିଛି କୁହ ସେ ତୁମର ସେବା କରିବେ । କିନ୍ତୁ ଏଙ୍କୁ କିଛି ଭୁଲ କାମ କରିବା ପାଇଁ '' ।

''ଭୁଲ କାହାର ନ ହେଉଛି ?

"ବାପା ଭୁଲ କରି ନାହାନ୍ତି, ଅପରାଧ କରିଛନ୍ତି"

"ସେ ତ ଅପରାଧ କରିନାହାନ୍ତି" ମାଷ୍ଟର ସାହେବଙ୍କ ଧର୍ମପତ୍ନୀର ସ୍ୱର ତୀକ୍ଷ୍ଣ ଜୋର ହୋଇଗଲା । କ୍ରୋଧାନ୍ୱିତା ହୋଇ ଏକ ନିଶ୍ୱାସରେ କହିପକାଇଲେ "ଏ ସବୁ ତୋର ଖୁଡ଼ୀର କାମ । ତାଙ୍କୁ କାହିଁକି ଧରୁନାହୁଁ । ସେ ରାଣ୍ଡୀ ଯାହା ଯାହା କରି ମୋର ମନ୍ତେ ଜଳେଇଛି (ଧକେଇ ଧକେଇ କାନ୍ଦିଲା) ମୋର ଘରେ ନିଆଁ ଲଗାଇଛି, ତାଘରେ ସେମିତି ନିଆଁ ଜଳୁଛି ଆହୁରି ଜଳିବ । ତା ଦେହରେ ପାତକ ହେଲଯାଉ ।"

"ପାଣି, ମିଠେଇ ତଣ୍ଟିରେ ଲାଗି ଯାଇଥିଲା । ସଜ୍ଜନ ଦେଖିଲା, ଶଳା ମହାଶୟ ଗୋଟିଏ ହାତ ହାଣ୍ଡି ମଧ୍ୟରେ ରଖି ଅନ୍ୟ ହାତରେ ଗଳା ଆଉଁସି ଆଉଁସି କାରୁଣିକ ମୁଦ୍ରାରେ ବସିଥିଲେ । ସଜ୍ଜନ ଆଗକୁ ଯାଇ ଘଣ୍ଟି ର ସ୍ୱିଚ୍ ଟିପିଲା । ଜଣେ ଚାକର ଶୀଘ୍ର ଆସି ପହଞ୍ଚିଲା । 'ପାଣି ଆଣ' କହି ହଠାତ୍ ସଜ୍ଜନର ଧ୍ୟାନ ଏହି କଥା ଉପରେ ଗଲା ଯେ, ବୋଧହୁଏ ଚାକରମାନେ ପର୍ଦ୍ଦା ପଛରେ ଛିଡ଼ା ହୋଇ ଏହି ତାମସା ଦେଖୁଥିବେ । ପୁଣି ପରସ୍ପର ମଧ୍ୟରେ କୁହାକୁହି ହେବେ, ଥଟ୍ଟା ପରିହାସ କରିବେ । ସଜ୍ଜନ ସମ୍ମୁଖରେ ନିଜର ଏହି ବିଚିତ୍ର ଶଳା ଓ ଏହି ତାମସା ଦେଖେଇବା-ବାଲି ମଇଳା ଲୁଚଟିଆ ଶାଶୁ ବୁଢ଼ୀ ତାର ମସ୍ତିଷ୍କକୁ ବିବ୍ରତ କରୁଥିଲେ । ଏମାନେ ତାର ବନ୍ଧୁ, ତାର ପତ୍ନୀର ନିଜ ଭାଇ ଓ 'ମା' । ସେମାନଙ୍କୁ ନିଜର ବନ୍ଧୁ ବୋଲି କହିବାକୁ ହେବ । କି ଅପନିନ୍ଦା, କନ୍ୟା ଏ ଘରକୁ ଆସି ଘରର ମର୍ଯ୍ୟାଦା କମାଇଲା । ତାର କୌଣସି ବ୍ୟବହାରରେ ଅଭଦ୍ରତା ବା ଅଶ୍ଳୀଳତା ପ୍ରକାଶ ପାଇନାହିଁ ବରଂ ସମ୍ଭ୍ରାନ୍ତ ବଂଶର ଝିଅର ସମ୍ଭ୍ରାନ୍ତ ବଂଶୀୟଙ୍କ ଅପେକ୍ଷା ଦୋଷ ବାହାର କରିବାରେ ଅଧିକ ଦକ୍ଷ । ଏ ସବୁ ମୋର ଶଳା ଓ ଶାଶୁ ମିଶି ଆଜି କନ୍ୟାର କୁଳୀନତା ବିଷୟରେ ବଡ ଭୁଲ ଇମ୍ପ୍ରେସନ୍ ଦେଇଯିବେ ।

ପାଣି ଆସିଗଲା । ଶାଳକଙ୍କ ହାତ ବର୍ତ୍ତମାନ ସୁଦ୍ଧା ହାଣ୍ଡି ଭିତରେ ଥିଲା, ଅନ୍ୟ ହାତରେ ଗିଲାସ ନେଇ ଘଟ ଘଟ କରି ପାଣି ପିଇଗଲା । ଲୁଚକରି ସେ ହରି ଓଂ ବଜ୍ରଙ୍ଗ—ବଜ୍ରଙ୍ଗ ଧ୍ୱନି ଲଗାଇଲା । ପୁଣି ପାଖରେ ଛିଡ଼ା ହୋଇଥିବା ଭଗ୍ନୀ ପତିଙ୍କୁ ଦେଖି କହିଲା "କଣ ମହାଶୟ, ମିଃ ସଜ୍ଜନ ବର୍ମା, କିଛି ସାଧନା କରୁଛ କି ନାହିଁ ?"

ସଜ୍ଜନ ଏ ପ୍ରଶ୍ନରେ ଲଜ୍ଜିତ ହେଲା । ଚାକର ଛିଡ଼ା ହୋଇଥିଲା, ଏଥିପାଇଁ କିଛି କହି ପାରିଲା ନାହିଁ । ସେ କନ୍ୟା ପାଖକୁ ଆସିଲା, ତାକୁ ଟିକିଏ ଅନ୍ୟ ଆଡ଼େ ନେଇ ଧୀରେ ଧୀରେ କହିଲା "କନ୍ୟା, ଈଶ୍ୱରଙ୍କ ରାଣ ତମେ ଏମାନଙ୍କଠାରୁ ଦୂରେଇ ଯାଅ । ଶହେ ପଚାଶ ଯାହା ସାହାଯ୍ୟ ମାଗୁଛନ୍ତି ଦେଇଦିଅ" ।

ବାହାର ପୋର୍ଟିକୋରେ କାହାର କାର୍ ଆସି ଛିଡ଼ା ହେବାର ଶବ୍ଦ ଶୁଭିଲା । ସଜ୍ଜନ ଅଣ୍ଠ ହଠିଲା । କେହି ବାହାର ଲୋକ ହୋଇଥିବ ତ ଏହି ଶଲାକୁ ଦେଖି ମନରେ କଣ ଭାବିବ । ୨ସ୍ତ ଗୃହର କୋଠରୀରେ ପହଞ୍ଚି କହିଲା" ହଜୁର୍ ଡାକ୍ତର ସାହେବା (ଡାକ୍ତରାଣୀ) ଆସିଛନ୍ତି" । ସଜ୍ଜନ କନ୍ୟା ଆଡ଼କୁ ଦେଖୁ ଦେଖୁ କହିଲା "ଶୀଳା ଆସିଛୁ, ତୁମେ ତାକୁ"

ତୁମେ ତାଙ୍କୁ ରସିଭ୍ କରନାଥ । ମୁଁ ବର୍ତ୍ତମାନ ଏମାନଙ୍କୁ ବଦାକରି ଦେଉଛୁ । ସଜ୍ଜନ ବାରଣ୍ଡାକୁ ଆସିଲା । "ହାଲୋ" ଡାଃ ଶୀଲାର ଶବ୍ଦ ଏବଂ ସ୍ମିତ ହାସ୍ୟରେ ଆଜ ସଜ୍ଜନଙ୍କୁ କ୍ଳାନ୍ତ ଦେଖି ପାରଲା । "ହାଲୋ ଶୀଲା, ଏ ସମୟରେ ରୋଗୀମାନଙ୍କୁ ଛାଡ଼ି କେମିତ ଚାଲି ଆସିଲ ।"

"ଜାପଲଙ୍ଗ ରୋଡ଼ରେ ଗୋଟିଏ ରୋଗୀକୁ ଦେଖିବାକୁ ଯାଇଥିଲି । ଏହି ବାଟେ ତୁମ ସହିତ ଗୋଟେ ମିନଟ ପାଇଁ ସାକ୍ଷାତ କରିବାକୁ ଆସି ଗଲି ।"

"ଆସ, ଉପରକୁ ଯାଇ ବସିବା" ।

"ନା, ବାହାରକୁ ଆସ । ତୁମକୁ ଗୋଟିଏ କଥା କହିବାର ଅଛି ।

ପୋର୍ଟିକୋ ବାହାରେ ବଗିଚା ଧାରରେ ଦୁହେଁ ଚାଲିବାକୁ ଲାଗିଲେ । ଦୁହେଁ ଚୁପ୍ ଥିଲେ ।

ଲନ୍‌ରେ ପ୍ରବେଶ କରିବା ପାଇଁ, ଲତା ଗୁଳ୍ମର ବାଉଁଶ ଫାଟକ ପର୍ଯ୍ୟନ୍ତ ଆସି, ଡାଃ ଶୀଲା ହଠାତ୍ ଛିଡ଼ା ହୋଇଗଲା । "କହିଲ, ଦୁର୍ଜନ,, କହୁ କହୁ ଶୀଲା ରହିଗଲା ଅଙ୍କ କରୁଣ ଦୃଷ୍ଟିରେ ସଜ୍ଜନଙ୍କୁ ଦେଖି, ବେଦମ ଭରା କଣ୍ଠରେ ପଚାରିଲା 'ଭଣି' ତୁମର ବନ୍ଧୁ ଏବେ ଆଉ ମୋ ସହିତ କେବେ ହେଲେ ମିଶିବେ ନାହିଁ ?"

ସଜ୍ଜନର ହୃଦୟରେ ଏକଥା ଦୁଃଖ ଦେଲା । କହିଲା "ସେ ଆଜକାଲି ଆଉ ତୁମ ସହିତ ମିଶୁନାହିଁ, ଏ କଥା ମୋତେ ଜଣା ନ ଥିଲା" ।

କେତେମାସ ହୋଇଗଲା । ବାସ୍, ଭୋଜ ଦନ ସେହି ଚହଳ ଉପରେ ଦେଖା କରିଥିଲେ । ଇଟ୍ ଓ୍ୱାଜ୍ ଇନ୍ ଜାନୁଆରୀ - ବୋଧହୁଏ ୨୫ ତାରଖ ଥିଲା ।

"ସେମିତ କଛି ବଶେଷ କଥା ହୋଇଥିଲା ?"

କଣ କହିବ, ଆଇ ହାବ୍ ନୋ ଗ୍ରଜ୍ ଏଗେନଷ୍ଟ ହିଜ୍ ଓ୍ୱାଇଫ, କନ୍ତୁ ଏହା ସତ୍ୟ ଯେ, ସେ ମହିପାଲ ପର ଜଣଅସ୍‌କୁ ଚୁହିଁ ପାରନ୍ତି ନାହିଁ । ଏବେ କେତେ ଦୁର୍ବଳ ହୋଇଗଲେଣି । ମୁଁ କାଲି ତାଙ୍କୁ ଅମିନାବାଦରେ ସଡ଼କ ପାରହେଉଥିବାର ଦେଖିଲି ।

ଆଇ କ୍ୟାଣ୍ଟ ବୟର ଦଣ୍ ଏନ ମୋର୍" । କହୁ କହୁ ଡାଃ ଶୀଳାର ବାକ୍‌ରୁଦ୍ଧ ହୋଇ ଆସିଲା । ସେ ନିଜର ଭେନଟି ବ୍ୟାଗ ଖୋଲି ରୁମାଲ ବାହାର କଲା ।

ଶୀଳାର କାନ୍ଧ ଉପରେ ହାତ ରଖି ତାକୁ ସାନ୍ତ୍ୱନା ଦେଉ ଦେଉ ସଜ୍ଜନ କହିଲା "ଡୋଣ୍ଟ୍ ବି ଫୁଲିସ୍ ଶୀଳା" ମୁଁ ଜାଣେ, ମହିପାଲ ତୁମ ପାଇଁ କେତେ ଚଞ୍ଚଳ ହେଉଛି, ସେ ତୁମକୁ ଛାଡ଼ି ରହି ପାରିବ ନାହିଁ ।

ମୁଁ ମିସେସ୍ ଶୁକ୍ଲାଙ୍କଠାରୁ ତାଙ୍କର ପତିଙ୍କୁ ଛଡାଇବି ନାହିଁ । କିନ୍ତୁ ମୁଁ ଫିଲ୍ କରୁଛି ଯେ ମହିପାଲ ଉପରେ ମୋର ବି ହକ୍ (ଦାବୀ) ଅଛି ।

ସଜ୍ଜନ ଗମ୍ଭୀର ଚିନ୍ତାରେ ପଡ଼ିଲା । ଜଣେ ପରିଣୀତା ଓ ଅନ୍ୟ ଜଣେ ପ୍ରଣୟିନୀ । କାହାକୁ ପ୍ରକୃତରେ ସ୍ୱୀକାର କରିବାର କଥା । ପ୍ରେମ କଣ କୌଣସି ଶାସ୍ତ୍ର କଥା ମାନି ହୋଇ ଚାଲି ପାରିବ । ଯଦି କାହା ସହିତ କାହାର ମନ ମିଳିଲେ ତେବେ ତାକୁ ବାଧା ଦେବ କିଏ ? କିଛି ସମୟ ପୂର୍ବର ପ୍ରସଙ୍ଗ ତାର ମନେ ପଡ଼ିଲା, ଯେତେବେଳେ ତାର ଶାଶୁ ନିଜର ପତି ଓ ଖୁଡ଼ୀଙ୍କ ପ୍ରେମ ବଖାଣୁ ଥିଲା "କିନ୍ତୁ ଏ କଥାରେ ଅବଶ୍ୟ ସମ୍ପୂର୍ଣ୍ଣ ଭିନ୍ନ ।"

ଶୀଳା କହିଲା "ତୁମେ ତାଙ୍କୁ ମୋ କଥା କହିଦେବ ନିଶ୍ଚୟ" ମୁଁ ନିଶ୍ଚୟ ତୁମ ପାଖକୁ ପଠାଇଦେବି । କାଲି ସକାଳେ ତା ପାଖକୁ ଯିବ ।"

"ତୁମେ ଏ କଥାକୁ କାହାର ପାଖରେ ପ୍ରକାଶ କରିବ ନାହିଁ । କନ୍ଟ୍, ଭିଭନ୍ ଟୁ ଇଓର୍ ଓ୍ୱାଇଫ୍"

"ନା, ନା, ମୋତେ ବିଶ୍ୱାସ କର, ଆଉ ତୁମେ ଆଦୌ ଦୁଃଖ କରନାହିଁ ।"

"ଆଚ୍ଛା, ଠିକ୍ ଅଛି, ଏଣ୍ଡ ହାଓ ଇଜ୍ ଇଓର୍ ଓ୍ୱାଇଫ୍ ?" ସଜ୍ଜନ ମହା ବିପଦରେ ପଡ଼ିଲା । କନ୍ୟା ଭିତରେ ଅଛି, କହିଲେ ବୋଧହୁଏ ଡାଃ ଶୀଳା ତା ସହିତ ଦେଖା କରିବା ପାଇଁ ସେଠାକୁ ଚାଲିଯିବ । ସେଠାରେ ତାର ଶଳା ଆଉ ଶାଶୁ ଅଛନ୍ତି ।

ସଜ୍ଜନ ଏଭଳି ପରିସ୍ଥିତିରେ 'ହଁ—ନା' କିଛି ନ କହି କଥା ବଦଳାଇ କହିଲା" ତୁମର ଦୁଃଖିତ ହେବାର କୌଣସି କାରଣ ନାହିଁ, ଶୀଳା । ତୁମେ ଜାଣ, ମହିପାଲ ଏତେ ବଡ଼ ଆର୍ଟିଷ୍ଟ ଓ ସ୍କଲର ହୋଇ ମଧ୍ୟ ଜଣେ ଅସ୍ଥିର ବୁଦ୍ଧିର ଲୋକ । ଏନି ଓ୍ୱେ, ଆଇ ପ୍ରମିଜ୍ 'ମୁଁ ତାକୁ ତୁମ ପାଖକୁ ନେଇ ଆସିବି' ।"

ତାଙ୍କର ଶଳାର ବିବାହରେ ବୋଧହୁଏ କେହି ଆମ ସମ୍ବନ୍ଧରେ କିଛି କହିଥିଲା । ସେହି ସମୟରେ ତାଙ୍କ ସ୍ତ୍ରୀ ମଧ୍ୟ ଏହି ବିଷୟ ନେଇ ବହୁତ ଅଶାନ୍ତି ସୃଷ୍ଟି କରିଥିଲେ । ମହିପାଲ ସେଥିପାଇଁ ଦୁଇଦିନ ମୋ ଘରେ ଥିଲେ ।

"ଆରେ, ମୋତେ ଏସବୁ ଜଣା ନାହିଁ ।"

ତୁମେ ମଥୁରା ଯାଇଥିଲ । ଏ ସମସ୍ତ କଥା ମୁଁ ତୁମକୁ ସଙ୍କେତରେ ଏଥିପାଇଁ କହିଦେଲି । ଯଦ୍ୱାରା ତୁମେ ସେ ସମସ୍ତଙ୍କୁ ବୁଦ୍ଧିମତ୍ତାର ସହିତ ହେଣ୍ଡେଲ କରିପାରିବ । 'ଆଚ୍ଛା' ମୁଁ ଯାଉଛି । ଶୀଳା ଦୁଇ ପାଦ ଆଗେଇଗଲା । ପୁଣି ଛିଡ଼ା ହେଲା, ଦୃଷ୍ଟି ତଳକୁ କରି କହିଲା "ଭୁଲିଯିବାଟି ମହିପାଳର ଚରିତ୍ରରେ ସବୁଠାରୁ ବଡ଼ ଦୋଷ । ଏଥର ସେ ନିଜର ସେହି ଭୁଲା ପଣିଆକୁ ଛାଡ଼ି ଗୋଟିଏ ନୂଆ ଦାୟିତ୍ୱକୁ ଜବରଦସ୍ତ ନିଜର ମୁଣ୍ଡ ଉପରେ ଲଦୁଛନ୍ତି । ମୁଁ ତାଙ୍କୁ ବହୁତ ଭଲ ଭାବରେ ଜାଣେ । ସେ ବହୁଦିନ ପର୍ଯ୍ୟନ୍ତ ନିଜ ଉପରେ ଏହି ଅତ୍ୟାଚାରକୁ ବରଦାସ୍ତ କରିପାରିବେ ନାହିଁ । ଡରୁଛି କାଳେ ତାଙ୍କର କିଛି ହୋଇଯିବ ।"

ସଜ୍ଜନ ପୋର୍ଟିକୋ ଆଡ଼କୁ ଯାଉ ଯାଉ ସଂକେତ ଦେବା ଛଳରେ କହିଲା "ଶୀଳା ଧାରଣା ବଦଳାଅ ନାହିଁ, ମହିପାଳ ବର୍ତ୍ତମାନ ମଧ୍ୟ ସେହି ପରିମାଣରେ ଭୋଳା, କାଲି, ହଁ···, କାଲିତ ସେ ସକାଳେ ଏଠାକୁ ଆସିଥିଲା 'ଏଣ୍ଡ ଉଇଲମ୍ସ୍ 'ଦି ଲଭ୍' ଆମେ ରାତି ୧୦.୩୦ ପର୍ଯ୍ୟନ୍ତ କଥାବାର୍ତ୍ତା ହେଉଥିଲୁ, ସ୍ତ୍ରୀ ପୁରୁଷର ଚନ୍ଦ୍ର ଉପରେ ଓ ଆର୍ଯ୍ୟ—ଅନାର୍ଯ୍ୟ କଲ୍‌ଚରର୍ ଉପରେ । ମୁଁ ତୁମ ପାଖରେ ସତ କହୁଛି ଯେ, ଯଦି ତାର ଭୁଲପଣିଆ ନଷ୍ଟ ହୋଇଯାଇଥାଆନ୍ତା ତେବେ ତା ପାଖରେ ଏ ସମସ୍ତ କଥା ପାଇଁ ଉତ୍ସାହିନ ଥାନ୍ତା । ତୁମେ ବିଶ୍ୱାସ କର, ଅଧିକ କହିବା ଭଲ କାମ ସେହି କରିଛି । ଥକ ନାହିଁ, ବ୍ୟସ୍ତ ହୋଇନାହିଁ ।"

"ଲେଖୁଛନ୍ତି ?"

ସଜ୍ଜନ ରହିଗଲା, 'ନା' ବୋଧହୁଏ ତାକୁ ସମୟ ମିଳୁ ନାହିଁ । ମୁଁ ତୁମର ଇଚ୍ଛା ଖୁବ୍ ବୁଝୁଛି ଶୀଳା କିନ୍ତୁ ମୋର ମତରେ ତାଙ୍କର ଲେଖିବାର ଶକ୍ତି ଯଥେଷ୍ଟ ଅଛି । ଦେଖିବାକୁ ଗଲେ ମୁଁ କେତେମାସରେ ମଧ୍ୟ ଗୋଟିଏ ଛବି ତିଆରି କରିପାରିନାହିଁ ।

"ହଁ, ଆଚ୍ଛା ମୁଁ ଯାଏ···

ରହିବା ଉପରେ ସଜ୍ଜନ ବିଶେଷ ଜୋର ଦେଲା ନାହିଁ । ଡ୍ରଇଁ ରୁମ୍‌ରେ ପହଂଚ ଦେଖିଲା, ମିଠେଇ ହାଣ୍ଡିଗୁଡ଼ିକ ଗାଲିଚ୍ଚ ଉପରେ ଭଙ୍ଗାହୋଇ ପଡ଼ିଛି, କନ୍ୟାର କାନ ମୂଳରୁ ରକ୍ତ ବାହାରୁଥିଲା । ବୋଧହୁଏ କିଛିକ୍ଷଣ ପୂର୍ବେ ଏଭଳି ଅଘଟଣ କିଛି ଘଟିଛି । ସଜ୍ଜନର ଶଳା ଷଣ୍ଡଜ ନିଜ ଲୁଗା କାନିରେ କନ୍ୟାର ଗାଲ ପୋଛୁଛନ୍ତି । 'ମା' ଛିଡ଼ା ହୋଇ ଦେଖୁଛନ୍ତି ଓ ଶଳା ମହାଶୟ ପୁନଶ୍ଚ ସମାଧି ମୁଦ୍ରାରେ ବସିଛନ୍ତି ।

କନ୍ୟାକୁ ଆଘାତ ଲାଗିଥିବାର ଦେଖି ସଜ୍ଜନର କ୍ରୋଧ ବଢ଼ିଗଲା । ତାକୁ ଦେଖି ବନକନ୍ୟାର 'ମା' ନିଜର ମୂକ ବ୍ୟବହାର ଛାଡ଼ି ଝିଅର ଆଘାତ ପାଇଁ ବ୍ୟାକୁଳ

ହୋଇଉଠିଲେ । ସଜ୍ଜନଙ୍କୁ କହିଲେ 'ଦେଖ,—ପୁଅ ମୋର ଭାଗ୍ୟ କପଟ, ତୁମେ ଏହାକୁ ପାଗଲ ଖାନାକୁ ପଠାଇଦିଅ । ଗୋଟିଏ ଉପକାରିତ କରିଛ, ଆଉ ଗୋଟିଏ ମଧ୍ଯ କର ।

ସଜ୍ଜନର ଇଚ୍ଛା ହେଉଥିଲା ନିଜ ଶଳାକୁ ଖୁବ୍ ପିଟନ୍ତା । ଇସ୍ତ୍ରୀ ଗାଲର ଉପରେ ମାଟି ହାଣ୍ଡିର ଖପର ବଡ଼ ଅସୁନ୍ଦର ଦେଖାଯାଉଥିଲା । ଜଣାନାହିଁ କେଉଁଠାରୁ ଭଙ୍ଗା ମାଟି ପାତ୍ର ସହିତ ମୂର୍ଖର ସମ୍ବନ୍ଧ ତାଙ୍କ ମନରେ ଏ ସମୟରେ ଜମିଯାଇଥିଲା ଓ ଏଦୃଶ୍ୟ ତାକୁ ଉତ୍ତେଜିତ କରୁଥିଲା । ଶାଶୁକୁ ଜବାବ ନଦେଇ ସେ ନିଜର ପତ୍ନୀକୁ କହିଲା "କନ୍ୟା, ମା ସହିତ ଦେଖାକରି ସାରିଛ ତ, ଏଥର ଭିତରକୁ ଯାଅ ।"

"ତାହାହେଲେ ପୁଅ, ତୁମର ଦରବାରରେ ଆମର ଶୁଣାଣୀ ହେଲା ନାହିଁ ? 'ଶାଶୁ କହିଲେ' ।

"ଆଜ୍ଞା, ନା—ମୁଁ ଖରାପ କାମରେ କେବେହେଲେ କାହାରକୁ ସାହାଯ୍ୟ କରେନାହିଁ । କନ୍ୟା ଯାଅ "ଭାଉଜକୁ ମୁଁ ନିଜ ପାଖରେ ରଖି ନେଉଛି, ମା । ପୁଣି ପହଂଚାଇ ଦେବ ।"

ନା, ଆମର ପାପୀ ଘରର କୌଣସି ଲୋକ ତୁମ ଘରେ ରହିଲେ ଅଛୁଆ ହୋଇଯିବନି ?ପୁଅରେ ଉଠ୍, ଏଥର ଯିବା । ଯେତେବେଳେ ଆମର ଭୁଲ ହୋଇଛି ଆଉ ଅନ୍ୟକୁ କଣ କହିବା । ଆରେ ଯିଏ ନିଜ ବାପକୁ ସାରା ଦୁନିଆ ଆଗରେ ହେଙ୍ଗ୍‌ରି ପିଟି ଜେଲ୍ ଦିଆଇଲା ସେ ଝିଅ ସହିତ ସମ୍ବନ୍ଧ ରଖିବାଟା ମୋର ମସ୍ତବଡ଼ ଭୁଲ ହୋଇଛି । କିନ୍ତୁ ଏତିକ କହିଯାଉଛି ଯେ ମନୁଷ୍ୟ ନିଜର ସୌଭାଗ୍ୟ ଦେଖି ଗର୍ବରେ ଫୁଲି ଯିବା ଉଚିତ୍ ନୁହେଁ । ଯଦି ଭବିଷ୍ୟତରେ ଏହି ତୋର ପତି ଏପରି କିଛି ଭୁଲ କରିବ ।"

ଏପର୍ଯ୍ୟନ୍ତ ସଜ୍ଜିତ ରହିଥିବା କନ୍ୟା ଆଉ ନିଜକୁ ସମ୍ଭାଳି ପାରିଲା ନାହିଁ । ତାହାର ଚେହେରା ଓ ମନ ଉଭୟରେ ଉତ୍ତେଜନା ସୃଷ୍ଟି ହେଲା । କହିଲା' ସେ କେବେ କାହାର ଖରାପ ଚିନ୍ତା କରନ୍ତି ନାହିଁ । ଆଉ କାହାର ଅପକାର ମଧ୍ଯ କରନ୍ତି ନାହିଁ । ସେଙ୍କ ଦୁନିଆରେ କେତେ ଜଣ ଅଛନ୍ତି ?

ଆଉ, ଆଉ ବହୁତ ହୋଇଗଲାଣି । କନ୍ୟା, ଏବେ ତୁମେ ଯାଉନାହିଁ କାହିଁକି ? ସଜ୍ଜନ ନିଜର ପତ୍ନୀକୁ ଆଦେଶ ଦେବା ସ୍ୱରରେ କହିଲା ଓ କଲିଂବେଲ ଚିପିଲା । ନୌକର ଆସି ପହଞ୍ଚିଲା" ଗ୍ରମଗୁଲାମ, ମା ପାଇଁ ଗୋଟିଏ ଘୋଡାଗାଡ଼ି ଆଣ, ଏ ମଇଳା ଗୁଡ଼ିକୁ ସଫାକର !

ସଜ୍ଜନ ମିଜାଜ୍ ଗରମ ହୋଇଯାଇଥିଲା । ଏ ସମୟରେ ଜନସାଧାରଣଙ୍କ ପ୍ରତି ନିଜର ଦୟା ଭୁଲି ସେ ବିଶୁଦ୍ଧ ଏଗଷ୍ଟୋକ୍ରାଟିକ୍ ମୁଡ୍‌ରେ ଥିଲା । କନ୍ୟାର ହାତକୁ

ଝାଣିଆଣି କହିଲା 'ସ୍ମୃତି' । ସେ ତାକୁ ରହିବାକୁ ଦେଲାନାହିଁ । ସ୍ମୃତି ସ୍ମୃତିକୁ ସ୍ୱାମୀଙ୍କୁ ଆଦେଶ ଦେଲା ଯେ ବର୍ତ୍ତମାନ ପାଇଁ ସେ ଏଠାରେ ରହୁ ।

ବାହାର ଗ୍ୟାଲେରୀରୁ ଗୋଟିଏ ଗ୍ରହରକୁ ଡ୍ରଇଂ ହଲ୍‌ରେ ଏହି ନିର୍ଦ୍ଦେଶ ଦେଇ ପଠେଇଲ ଯେ ସେହି ପାଗଳ ଉପରେ ପୂର୍ଣ୍ଣ ଦୃଷ୍ଟି ରଖିବ । ଯେପରି ସେ କୌଣସି ଜିନିଷକୁ ନଷ୍ଟ ନ କରେ ।

ଏହି ଘଟଣାରେ କନ୍ୟା ଅତ୍ୟନ୍ତ ମର୍ମାହତ ହୋଇଥିଲା । ସଜ୍ଜନ ତାର ଉପଗ୍ରହ ପାଇଁ ବଳାସବ୍ୟସନର ଆୟୋଜନ କଲା, କିନ୍ତୁ କନ୍ୟା ସେ ସମସ୍ତ କଥା ମନାକଲା, ସୋହାଗରେ ସନ୍ତୁଷ୍ଟ ବନକନ୍ୟା ନିଜ ସ୍ୱାମୀର ଦୃଷ୍ଟିକୁ ଅନ୍ୟଆଡ଼େ ଫେରାଇବାକୁ ଚାହିଁଥିଲା । କିନ୍ତୁ ସଫଳ ହୋଇପାରିଲା ନାହିଁ । ନିଜର ସ୍କୁଲର କଥା କହିଲା, କେତେ ଘରର ସ୍ତ୍ରୀ ଲୋକମାନେ ସିଲେଇ କରିବା ଓ ବୁଣାବୁଣି କାମରେ ତା ପାଖକୁ ଆସିଥିଲେ । ସେ ସମ୍ବନ୍ଧରେ କିଛି ଚର୍ଚ୍ଚା କଲେ । କିନ୍ତୁ ପ୍ରତ୍ୟେକ କଥା ଯାହା ଆରମ୍ଭ ହୁଏ ତାହାର ସମ୍ପର୍କ କୌଣସି ପ୍ରକାରେ ଆଜି ସନ୍ଧ୍ୟାର ଘଟଣାରୁ ବାହାର ଆସୁଥିଲା ଏବଂ ସନ୍ଧ୍ୟାର ଘଟଣା ଉପରେ କନ୍ୟାର ବାପଘର ସମ୍ବନ୍ଧରେ ଗୋଟିଏ ହେଲେ ଶବ୍ଦ ମଧ୍ୟ ମୁହଁରୁ ବାହାରୁ ନଥିଲା ।

ପ୍ରତ୍ୟକ୍ଷରେ ଅନ୍ୟାନ୍ୟ କଥା-ବାର୍ତ୍ତା ହୋଇଥିଲେ ମଧ୍ୟ କନ୍ୟାର ମନ ଗୋଟିଏ କଥାରେ କେନ୍ଦ୍ରୀଭୂତ ଥିଲା । ସେ ନିଜ ବାପକୁ ଦଣ୍ଡଦେଇ ନ୍ୟାୟ କରିଛି ବା ଅନ୍ୟାୟ ପାପ କରିଛି ବା ପୁଣ୍ୟ-ଏହି ପ୍ରଶ୍ନ ତାକୁ ସବୁବେଳେ କଷ୍ଟ ଦେଉଥିଲା । ଅନେକ ସ୍ତ୍ରୀ ଯେଉଁମାନେ କି ତାର ସାମାଜିକ କାର୍ଯ୍ୟରେ ସହଯୋଗୀ ଅଥବା ବିରୋଧୀ ହୋଇଆସନ୍ତି, ସେମାନେ ପରୋକ୍ଷରେ ବା ପ୍ରତ୍ୟକ୍ଷରେ ଏହା କହନ୍ତି ଯେ କନ୍ୟା ପିତା ବିରୁଦ୍ଧରେ ଛିଡ଼ା ହୋଇ ବଡ଼ ଅନ୍ୟାୟ କରୁଛି । ଏଭଳି ଅସାଂସ୍କୃତିକ କାର୍ଯ୍ୟ କରିଛି, ଯାହାକି ଭାରତୀୟ ସଂସ୍କୃତିର ବାହାରେ । ଆଜି ମଧ୍ୟ ତାର ମା ମୁହଁରେ କହିଥିଲା । ସଜ୍ଜନ ଯେତେବେଳେ ଶୀଳା ସହିତ ସାକ୍ଷାତ ପାଇଁ ବାହାରକୁ ଯାଇଥିଲା, ସେତେବେଳେ କନ୍ୟାର ମା ତାକୁ ଏଭଳି ଭୟ ଦେଖାଇବାର ଚେଷ୍ଟା କରିଥିଲା ଯେ ବଡ଼ ଲୋକଙ୍କର କଥାରେ କଣ ଠିକଣା ଅଛି । ଆଜି ବାହା-ହୋଇଛନ୍ତି, କାଲି ଯେତେବେଳେ ମନ ନ ମାନିବ ଛାଡ଼ି କରିଦେବେ । ଯେତେବେଳେ ଜାତି କୁଟୁମ୍ବ ମଧ୍ୟରେ ନିୟମରେ ହେଉଥିବା ବିବାହର ବନ୍ଧନ ମଧ୍ୟ ଛିଣ୍ଡିଯାଉଛି । ତେବେ ଏପରି ନକଲି ବାହାଘର ଉପରେ କଣ ଭରସା ଅଛି ? କନ୍ୟାକୁ ସେ ସମୟରେ ଏ କଥା ଖରାପ ଲାଗୁଥିଲେ ମଧ୍ୟ ତାକୁ ପଚ୍ଛ କରି ଦେଇଥିଲା, କିନ୍ତୁ ପରେ ଯେତେବେଳେ ମା ତାର ସ୍ୱାମୀକୁ ଆଲଙ୍କର ପୁଣି ଏପରି କଥା କହିଲା, ସେତେବେଳେ ତାର ଶିରା ପ୍ରଶିରାରେ କିଏ ଯେପରି ଅଗ୍ନି ସଂଯୋଗ କଲା । 'ମା' ମୋର ସ୍ୱାମୀ ଉପରେ ଈର୍ଷା ପୋଷଣ

କରୁଛି । ମୋର ଚରିତ୍ର ଉପରେ ମା' ସନ୍ଦେହ କରୁଛି, ଏ ବିଷୟ ତା ମନରେ ଘମାଣ୍ଟ ବାନ୍ଧିଗଲା ଓ ତାର 'ମା' ଉପରେ ସେ ଅତି ରାଗିଗଲା । ଏହା ଶୁଣି ବାପାବାବୁ ଖାଲି ମିଠେଇ ହାଣ୍ଡିକୁ ନିଜ ଭଉଣୀ ଉପରେ ଫିଙ୍ଗୁଥିଲା ଏବଂ ବାପାଙ୍କୁ ମୁକ୍ତ କରିବାପାଇଁ ସାହାଯ୍ୟ ନ କରିବାକୁ ମା'କୁ କହୁଥିଲା । ବାମ କାନ ମୂଳ ପାଖ ଗାଲରେ ହାଣ୍ଡିରେ ଧକ୍କା ଲାଗି ହାଣ୍ଡିଟି କନ୍ୟାର କାନ୍ଧପାଖେ ପଛକୁ ପଡ଼ି ଭାଙ୍ଗିଗଲା । ଗାଲରେ ଖୁବ୍ ଆଘାତ ଲାଗିଲା, ରକ୍ତର ଧାର ଛୁଟିଲା । କନ୍ୟା ଜୀବନରେ ସାଇଁ ହାତରୁ ମାଡ଼ଖାଇବା ଏହା ହେଉଛି ପ୍ରଥମ । ମା, ବାପ ଓ ଖୁଡ଼ୀଠାରୁ ବହୁତଥର ମାଡ଼ ଖାଇଛି । ବିଧବା ଖୁଡ଼ୀ ତାର ନିଜର କାମ ପିପାସା ଚରିତାର୍ଥ କରିବାପାଇଁ ପରପୁରୁଷଙ୍କ ସହିତ ମିଶିବା ଉଦ୍ଦେଶ୍ୟରେ ଗତ ବର୍ଷ ପର୍ଯ୍ୟନ୍ତ ତାକୁ ପିଟିଛି । ଯେଉଁଥିପାଇଁ ଘରେ ବହୁତ ଗଣ୍ଡଗୋଳ ହୋଇଥିଲା ଓ ବାପା ତାର ପକ୍ଷ ନେଇ କହୁଥିବା ମାକୁ ମଧ୍ୟ ଖୁବ୍ ପିଟିଥିଲା । ସ୍ତ୍ରୀ ଲୋକମାନଙ୍କୁ ମାରିବା ତା ଘରର ଏକ ଚିରାଚରିତ ପ୍ରଚଳିତ ପ୍ରଥା । ଯେତେବେଳେ ମା'ର ଗ୍ରହ, ନକ୍ଷତ୍ର ଅନୁକୂଳ ଥାଆନ୍ତି ଖୁଡ଼ୀର ବାଡ଼ି ପୂଜା ହୁଏ । ନନ୍ଦର ଅଗ୍ରଜିନୀ ବୋହୂ କେବଳ ନିଜର ସ୍ୱାମୀ ହାତରୁ ମାଡ଼ ଖାଉଛି ଓ ଜମାର ସ୍ୱର୍ଗୀୟା ଭାଉଜ (କକା ପୁଅ ଭାଇର ସ୍ତ୍ରୀ) ମଲାବାର ଏକବର୍ଷ ପୂର୍ବେ ଯେଉଁ ଦିନଠାରୁ ସେ କନ୍ୟାର ମା'ଠାରୁ ଷଡ଼ଯନ୍ତ୍ର ଦ୍ୱାରା ନିଜର ନୃଶଂସ ଘୃଣିତ ବକାସୁରର ପଶୁ ବୃତ୍ତିର ଶିକାର ହେଲା, ସେହି ଦିନଠାରୁ ଶାଶୂ ଖୁଡ଼-ଶାଶୂ ଓ କନ୍ୟାର ରାକ୍ଷସ ପିତା ହାତରୁ ବାରମ୍ବାର ମାଡ଼ ଖାଉଛି । ବିବାହିତା ଶ୍ରୀମତୀ ଜନକନ୍ୟା ବର୍ମା ସାଇଁ ହାତରୁ କେବେ ମାଡ଼ ଖାଇନାହିଁ (କାରଣ ସାଇଁ ପ୍ରେମ ତାର ମମତା ଅଖଣ୍ଡ ଥିଲା) କିନ୍ତୁ ନିଜର ବାପଘର ଜୀବନର ସମସ୍ତ କଳହ ଓ ମାଡ଼ପିଟ ତାର ଚେତନାକୁ କ୍ଷତ ବିକ୍ଷତ କଲା ।

ଏହି ସମୟରେ ଗୁଇନାର କୁଟି କର୍ମ ବହୁ ମୂଲ୍ୟ ପଲଙ୍କ ଉପରେ ଯେଉଁ ନରମ ତୁଳି ର ଗଦି ପଡ଼ିଥିଲା । ତା ଉପରେ ବହୁ ଥରରେ ନିଜର ମୁଣ୍ଡ ରଖି ଶୋଇ, ବଡ଼ଘର, ଅନେକ ଚାକର ବାକରଙ୍କ ମାଲିକାଣୀ ପ୍ରିୟବର ପ୍ରିୟା ସୁହାଗିନୀ, ନିଜର ପୂର୍ବ ଜୀବନର ସ୍ମୃତିକୁ ମନରେ ଆଣି ଛଟପଟ ହେଉଥିଲା । କିପରି ଏହି ସମସ୍ତ ପାପ ତା ଜୀବନରୁ ଧୋଇଯିବ, ଗୋଟିଏ କଥା ଯାହାକି ତାର ସ୍ୱାମୀଙ୍କ ମନରେ ଜାଗିଥିଲା ତାହା ତା ମନକୁ ମଧ୍ୟ ସଂକ୍ରମିତ କଲା । ନିଜର ବାପଘର ଲୋକମାନଙ୍କୁ ନିଜର ବୋଲି ଭାବିବାକୁ ତାକୁ ବଡ଼ ଲଜ୍ୟା ଲାଗୁଥିଲା ଏହି ଲଜ୍ୟାରେ ସେ ଲଜ୍ଜିତ ହେଉଥିଲା ।

ସନ୍ଧ୍ୟାର ଘଟଣା ଉପରେ କଥାବାର୍ତ୍ତା । କରିବାର ଇଚ୍ଛା ବହୁ ସମୟରୁ ଘାଣ୍ଟି ହୋଇ ବର୍ତ୍ତମାନ ବାହାରି ପଡ଼ିଲା । କନ୍ୟା କହିଲା "ସମ୍ପର୍କ ମଧ୍ୟ କିପରି ଅଦ୍ଭୁତ ଜିନିଷ, କେବଳ ଜୋଡ଼ିବା ଜାଣେ, ଛିଣ୍ଡାଇବା ନୁହେଁ ।"

“କେବଳ ଚରିତ୍ରଶୀଳ ଓ ସତ୍‌ଲୋକମାନଙ୍କ ପାଇଁ କିନ୍ତୁ କିନ୍ତୁ ପଲଙ୍କ ପାଖରେ ପଡ଼ିଥିବା ଗ୍ଲଲନାରେ କୁଟିକର୍ମ କରଣ୍ଡୈକ ଉପରେ ସଜ୍ଜନ ଆଉ ଟିକିଏ ଘୁଞ୍ଚିଇ ନେଇ ନିଜ ଗୋଡ଼କୁ ପଲଙ୍କ ଉପରେ ରଖିଲେ ।

ହଁ, କିନ୍ତୁ ସମ୍ପର୍କକୁ କେହି ମଧ୍ୟ କୌଣସି ଅବସରରେ ଛିଣ୍ଡାଇ ପାରେ ନାହିଁ । ଧରିନିଅ କାଲି ଯଦି ତୁମେ ମୋ ସହିତ ସମ୍ପର୍କ ତୁଟାଇ ଅନ୍ୟ କାହାର ସହିତ ମିଶିବାର ଆକର୍ଷଣରେ ଆକର୍ଷିତ ହୁଅ ଯେଉଁଭଳି ତୁମେ ମୋ ପ୍ରତି ଆକର୍ଷିତ ହୋଇଥିଲ’ ।

“କହିଯାଅ, କହିଯାଅ’ ତୁମର ଏହି ଆଘାତ କରା ପରିହାସକୁ ମୁଁ ଖୁବ୍ ଧୈର୍ଯ୍ୟର ସହିତ ବରଦାସ୍ତ କରୁଛି ।”

କନ୍ୟା ହସିଲା କହିଲା “ମୁଁ କେବଳ ଗୋଟିଏ ଉଦାହରଣ ଦେଉଛି ।” ଏପରି କଣ ହୁଏ ନାହିଁ ? ଆଜି ମିଳିଲା, କାଲିକି ବାହା ହେଲା, ଅପର ଦିନକୁ ଡ଼ାଇଭର୍ସ, ଅପରଦିନକୁ ପୁଣି ଆଃ ନୂଆ ମିଳନ ନୂଆ ବିବାହ, ନୂଆ ଡ଼ାଇଭର୍ସ । କିନ୍ତୁ ମୁଁ ପଚାରୁଛି ଛାଡ଼ି ଦେବା ପରେ ମଧ୍ୟ ଯଦି ସାକ୍ଷାତ ହୁଏ ତେବେ ଭୂତ ପୂର୍ବ ପତି-ପତ୍ନୀ କଣ ନିଜର ପୁରୁଣା ସଂପର୍କକୁ ଭୁଲି ପାରିବେ ?

“ମୋ ମତରେ ନୁହେଁ । ମହାକବି ବାୟରନ୍ ଓ ତାର ସ୍ତ୍ରୀର ପ୍ରେମ ବିଚ୍ଛେଦ ପରେ ଅଧିକ ଗାଢ଼ ହେଲା । କିନ୍ତୁ ଏଥିରେ ମୋର ଉଦାହରଣ କେଉଁଠାରୁ ଆସିଥିଲା ?”

ବାଃ, ତୁମେ ତ ପରିହାସରେ ନିପଟାସ୍ୱରେ କହୁଥିବା କଥାକୁ ମଧ୍ୟ ଗମ୍ଭୀର କରି ଦେଉଛ । ଏହାର ଅର୍ଥ ହେଉଛି ଯେ ତୁମ ମନରେ ନିଶ୍ଚୟ କେଉଁଠି ଆଘାତ ରହିଛି ।”

କନ୍ୟା କହିଲା “ଏ ସୁସମୟପାଇଁ ଏହି ପ୍ରଶ୍ନ ତୁମଙ୍କୁ ମଧ୍ୟ ଦୋହଲେଇ ପାରେ ସଜ୍ଜନ ଅଭିନୟ ଭଙ୍ଗୀରେ କହିଲା “କନ୍ୟା ମୁରୁକି ହସିଲା “କହିଲା ମୋର ଏହି ଅସାବଧାନତା ପୂର୍ଣ୍ଣ ପରିହାସ ଓ ମୋର ସବ୍‌କନ୍‌ସସ୍‌ରେ କେହି ଚେଇଁ କହୁଅଛି, ଏମ୍ପାତ ?”

“ଏସ୍, ମଁ-ଡେମ୍ ଜେଲ୍, ଇଫ୍ ୟୁ ଡୋଂଟ ମାଇଣ୍ଡ” ।

ଆଚ୍ଛା ଯାଆନ୍ତୁ ଆପଣଙ୍କ ମନପରି ମୋ ମନ ଚଢ଼ିଆଖାନା ନୁହେଁ । ଏହି ପରିହାସର ଏସୋସିଏସନ୍ ବଢ଼ାଇବ ଆପଣଙ୍କୁ ?”

"ପଥ ପ୍ରଦର୍ଶନ"

ଯେତେବେଳେ ତୁମେ ଡ଼ାଃ ଶୀଳା ସିଂଙ୍କ ସହିତ ଥିଲ ସେହି ସମୟରେ ମା ମୋତେ ଏ ଭସ୍ମ ଦେଖାଇଥିଲା । ମୋର ହସ ସେହି ସମୟରେ ମୋର ବାଧା ମଧ୍ୟ ମାନିଲା ନାହିଁ କହି, କନ୍ୟାର ମୁଖରେ ହସ ଖିଲ ଖିଲ ହୋଇ ଫୁଟି ଉଠିଲା ।

ସଜ୍ଜନର ଦୃଷ୍ଟି ସ୍ଥିର ହେଲା । ହସ ଓ ବୌଦ୍ଧିକତାର ଏହି ଆଡ଼ମ୍ବର ପଛରେ ଅଗରବତୀ ଧୂଆଁର ରେଖା ଭଳି ଲହରୀ ଖେଳୁଥିବା କନ୍ୟାର ଭସ୍ମ ଉପରେ ସଜ୍ଜନର ସହାନୁଭୂତି ସୂଚୀପତ୍ର ଲେଖିଲା । ନିଜର ସରଳ ସୁନ୍ଦର ଓ ସୁଦକ୍ଷା ପତ୍ନୀର ଶାନ୍ତ ଚେହେରା ଉପରେ ପ୍ରେମର ସ୍ରୋତ ବହିଗଲା । ସଜ୍ଜନ ଗମ୍ଭୀର ହୋଇ ଶାନ୍ତ ମଧୁର ସ୍ୱରରେ କହିଲା "କନ୍ୟା ଗୋଟିଏ କଥା ଜୀବନସାରା ବାରମ୍ବାର ଓ କୌଣସି ସମୟରେ ମଧ୍ୟ ପରୀକ୍ଷା କର, ତୁମର ଏହି ଜୀବନ ସାଥୀଠାରେ ଲକ୍ଷ ଲକ୍ଷ ଦୋଷ ଥାଇପାରେ, ଆଉ ଅଛି ମଧ୍ୟ କିନ୍ତୁ ଗୋଟିଏ ଭଲଗୁଣ ଅଛି । ମୁଁ ଯେ ପର୍ଯ୍ୟନ୍ତ ଉଦ୍ୟତ ନ ହୋଇଛି ସେ ପର୍ଯ୍ୟନ୍ତ ଆହୁରି କଥାଅଛି କିନ୍ତୁ ମୋର ମନ ଯେତେବେଳେ କାହା କଥା ଉପରେ ଜମିଯାଏ ତେବେ ସେହି କଥା ପଥର ନୁହେଁ ବରଂ ପାହାଡ଼ ହୋଇଯାଏ । ତୁମେ କେବେ ଥରେ ପରୀକ୍ଷା କରି ଦେଖିପାର ।

# ସର୍ଟିଫିକେଟ

ହୋଲିର ପରଦିନ ସଜ୍ଜନର ଘରକୁ ବାବା ରାମଜୀ ଓ ତାଙ୍କର ସମସ୍ତ ପାଗଳ ଶ୍ରେଣୀ 'ଯେଉଁମାନେ ଟିକେ ମାନସିକ ସ୍ୱାସ୍ଥ୍ୟ ଲାଭ କରିସାରିଥିଲେ । ସଜ୍ଜନ ସମସ୍ତଙ୍କ ନିମନ୍ତ୍ରଣ ଥିଲା ଯେଉଁ ବସ୍‌କୁ ଚାରିଘଣ୍ଟା ପାଇଁ ଭଡ଼ାରେ ନେଇଥିଲା । ସେଥିରେ ବାବାଜୀ ତାଙ୍କର ରୋଗୀ ଶିଷ୍ୟମାନଙ୍କ ସହିତ ଆସିଥିଲେ । ସଜ୍ଜନର ସୁସଜ୍ଜିତ କୋଠରୀରେ ସେ ନିଜର ବାବା ରାମଜୀ ଦାସଙ୍କୁ ଦାସ ସାକ୍ଷାତ ଶିବଙ୍କ ଭଳି ମନେ ହେଉଥିଲେ । ସେ ତା ମାଙ୍କର ଠାକୁର ଘର ସାମ୍‌ନାରେ ସମସ୍ତଙ୍କୁ ବସାଇଲା । କନ୍ୟା ରୋଷେଇ ଘରେ ଥିଲା । ସଜ୍ଜନ ଯେତେ ହେଉଥିଲା ଉତ୍ସାହରେ ଥିଲା । ମାଉ ମୃତ୍ୟୁପରେ ଆଜି ପ୍ରଥମ ତା ଘରେ ପୂଜା ହେଉଛି ।

ସନ୍ଧ୍ୟାରେ କର୍ଣ୍ଣେଲ ଓ ମହିପାଲ ମଧ୍ୟ ସପରିବାରରେ ଆସିବେ । ସବୁ ରୋଗୀଙ୍କୁ ଛୋଟ ଛୋଟ ଯତ୍ନରେ ପ୍ରସ୍ତୁତ ମିଷ୍ଟାନ୍ନ ଓ ଗୋଟିଏ ଗୋଟିଏ ଟଙ୍କା ବକ୍‌ସିସ୍ ଦିଆଯିବ । ତତ୍ ସଙ୍ଗେ ସଙ୍ଗେ ଗୋଟିଏ ଗୋଟିଏ ଜାମା, ଧୋତି ଓ ହଳଦିଆ ପଗଡ଼ି ମଧ୍ୟ ଦିଆଯିବାର ଆୟୋଜନ ଥିଲା ।

ଆଜି ସକାଳଠାରୁ କନ୍ୟା ଅତ୍ୟନ୍ତ ବ୍ୟସ୍ତ । ରୋଗୀମାନଙ୍କୁ ମଧ୍ୟ ନିଶ୍ୱାସ ମାରିବାକୁ ସମୟ ନଥାଏ । କନ୍ୟା ସମସ୍ତଙ୍କୁ ଆଶ୍ୱସ୍ତ କରି ଦେଇଥାଏ ଯେ କାଲି ଉତ୍ସବ ସେ ସମସ୍ତଙ୍କୁ ଛୁଟି ଦେଇଦେବ ।

ସଜ୍ଜନ ମନ୍ଦିରକୁ ନାନା ରଙ୍ଗର ଫୁଲରେ ସଜାଇଲା, ରଙ୍ଗ ଛିଟିକା ପଡ଼ିଥିବା ଲୁଗା ଠାକୁରଙ୍କୁ ପିନ୍ଧେଇଲା । ରୁପାର ବଡ ବଡ଼ ଗିଲାସରେ ରଙ୍ଗ ଭରି ସୁନାର ଦୁଇଟି ଛୋଟ ଛୋଟ ପିଚ୍‌କାରି ଠାକୁରଙ୍କ ସମ୍ମୁଖରେ ରଖା ହୋଇଥାଏ । ମାଟିର ଚଉ ଉପରେ ବଡ଼ବଡ ଗୋଲାପ ଫୁଲର ମାଳ ଲମ୍ବା ହୋଇଥାଏ ବାବାଜୀ ସଜ୍ଜନର ପ୍ରସନ୍ନତା ଦେଖି ପଚାରିଲେ "କଣ ରାମଜୀ ଏପରି ଆନନ୍ଦ ପ୍ରଥମେ କେବେ ମିଳିଥିଲା ।

"ନା ବାବା । "

"ଗୃହସ୍ଥ ଆଶ୍ରମଠାରୁ ବଳି ଆଉ କିଛି ଆଶ୍ରମ ନାହିଁ ବୁଝିଲ ।"

ଏହା କେମିତି ବାବା ? ମୁଁ ତ ଶୁଣୁଛି ଯେ ସନ୍ୟାସୀଙ୍କୁ ବଳି ଆଉ ସୁଖୀ କେହି ନାହିଁ ।

"ଯୋଗୀ ସନ୍ୟାସୀମାନଙ୍କର ସୁଖ ଅନ୍ଧ ଅଦ୍ଭୁତ ଧରଣର । ଏଥିରେ କିଛି ସନ୍ଦେହ ନାହିଁ । କିନ୍ତୁ ଆମର କାଳର ଉପଯୁକ୍ତ ସିଦ୍ଧାନ୍ତ ହେଉଛି କର୍ମଜ୍ଞାନର ଫଳ ଏକୁଟିଆ କେଲେ, କିଛି ନାହିଁ ରାମଜୀ । ପ୍ରକୃତ ଆନନ୍ଦ କର୍ମ ଯୋଗରେ ଆଉ କର୍ମ ଯୋଗର ପରୀକ୍ଷା କ୍ଷେତ୍ର ହେଉଛି ଗୃହସ୍ଥ ଆଶ୍ରମ ।"

କିନ୍ତୁ ସମସ୍ତ ଦୁଃଖର କାରଣ ଗୃହସ୍ଥାଶ୍ରମରେ ନିହିତ । ଏଇ ପରଗାଁ ମନୁଷ୍ୟ, ଜଣେ ଅନ୍ୟ ଜଣଙ୍କ ଉପରେ ଅତ୍ୟାଚାର କରେ । ନାନା ପ୍ରକାରର ପାପ କରେ । —

ଆଉ ମଧ୍ୟ ଗହସ୍ଥରେ ରହି ମନୁଷ୍ୟ ବହୁତ ପୂଣ୍ୟକରେ, କରିବପାରେ । ଗାର୍ହସ୍ଥ ଜୀବନ ପାଳନ ନ କଲେ ସଂସାର ତିଷ୍ଠିବ କେମିତି ରାମଜୀ ? ଆମ ଭଳି ସମସ୍ତେ ଲେଙ୍ଗୁଟିଧାରୀ ହୋଇଗଲେ ଏ ସୃଷ୍ଟି କପରି ଚଳିବ ?

ନ ରହିଲେ ମଧ୍ୟ କିଛି କ୍ଷତି ନାହିଁ ବାବା । ଚୀନ୍ କଣ କରୁଛି ? ବର୍ତ୍ତମାନ ଏଟମବମ ତିଆରି ହେଲାଣି, ଶୁଣୁଛି ହାଇଡ୍ରୋଜେନ୍ ବମ୍ ମଧ୍ୟ ତିଆରି ହୋଇଗଲାଣି, ଜଣାନାହିଁ ଆଉ କଣ କଣ ଅସ୍ତ୍ର ତିଆରି ହେବ—ତେବେ ଏ ସୃଷ୍ଟିରେ କି ଲାଭ ?"

ବାବା ରାମଜୀ ହସିଲେ, କହିଲେ—" ଭଗବାନଙ୍କୁ ମାନୁଛ ?" ସଜ୍ଜନ ଏ ପ୍ରଶ୍ନରେ ଆଶ୍ଚର୍ଯ୍ୟ ହୋଇଗଲା, ପୁଣି ନିଜକୁ ସମ୍ଭାଳି କହିଲା—" ମହାରାଜ, ମୁଁ ନିଜକୁ ବୁଝିପାରୁ ନାହିଁ, ମୁଁ ଭଗବାନଙ୍କୁ ମାନେ । ଏଇ କିଛିଦିନ ତଳେ ମୁଁ ମଥୁରା ଯାଇଥିଲି, କୃଷ୍ଣଙ୍କ ଜନ୍ମଭୂମି ଦେଖି । ମନେହେଲା ଭଗବାନ ବୋଧହୁଏ ମୂଳ ଅଟନ୍ତି । ଆମର ଏହି ପୃଥିବୀରେ ରାମ-କୃଷ୍ଣ ଆଦି ଅବତାର ହୋଇ ଶେଷରେ ମୁନି ରୂପେ ଜନ୍ମ ହୋଇଛନ୍ତି ।

ରାମଜୀ ଏହା ଯଥାର୍ଥ, ମୁଁ ମଧ୍ୟ ମାନୁଛି । ଭଗବାନ କେବଳ ମନୁଷ୍ୟ ରୂପରେ ନୁହନ୍ତି କିନ୍ତୁ ପ୍ରତ୍ୟେକ ଜୀବ ମାତ୍ରରେ ବିଦ୍ୟମାନ ହିଁ, ଏହା କହିପାରନ୍ତି, ମନୁଷ୍ୟ ଚେତନା ଭିତରେ ତାଙ୍କର ପ୍ରକାଶ ଅଧିକ, ଏଥିପାଇଁ ତ ଭଗବାନ ବ୍ୟାସଦେବ କହିଯାଇଛନ୍ତି ଯେ, ମନୁଷ୍ୟଠାରୁ ଆଉ ବଡ଼ କେହି ନାହାନ୍ତି । ତେବେ କଣ ଏତେ ପୂଣ୍ୟର ଜନ୍ମ ଆତ୍ମଘାତ କରି ମରିବ ? ଏ କଥା ଚିନ୍ତା କଲେ ମଧ୍ୟ ବିଚିତ୍ର ମନେହୁଏ । ରାମ ସର୍ବବ୍ୟାପୀ । ତାଙ୍କ ଉପରେ ବିଶ୍ୱାସ ରଖିଲେ ହେଲା ।

ସଜ୍ଜନ ମନରେ ଗୋଟିଏ ଜିଜ୍ଞାସା ଉତ୍ପନ୍ନ ହେଲା, କିନ୍ତୁ ପ୍ରଶ୍ନ କରିବାକୁ ସାହାସ ହେଲାନାହିଁ । କଥା ମୁଁହ ପର୍ଯ୍ୟନ୍ତ ଆସୁ ଆସୁ ବନ୍ଦ ହୋଇଗଲା । ବାବା ରାମଜୀ ତାଙ୍କର ଛୋଟ ଛୋଟ ଉଜ୍ଜଳ ଆଖିରେ ଚାହିଁ ମୁରୁକି ହସିଲେ, ପୁଣି କହିଲେ—ଅଭ୍ୟାସ

କରି କରି ସମସ୍ତଙ୍କ ଭିତରେ ଭଗବାନଙ୍କୁ ଦେଖୁଛୁ । କିନ୍ତୁ ପରମ ରୂପରେ ଦର୍ଶନ ଆଜି ପର୍ଯ୍ୟନ୍ତ ମଧ୍ୟ ଆମକୁ ମିଳି ନାହିଁ । ସ୍ୱାମୀଜୀ । ଯେଉଁମାନେ ଦେଖୁଛନ୍ତି ସେମାନେ କହନ୍ତି ଯେ ଅନୁଭବ ଦ୍ୱାରା ସ୍ୱାମୀଜୀ ମଧ୍ୟ ପରମସିଦ୍ଧ ରୂପେ ଜୀବମାନଙ୍କୁ ପ୍ରାପ୍ତ ହୁଅନ୍ତି । ତାଙ୍କ କଥା ପ୍ରତି ଆମର ଶ୍ରଦ୍ଧା ଅଛି । ସେ ସତ୍ୟ କେବଳ ଅନୁଭବରେ । ଏଥିପାଇଁ ଚେଷ୍ଟା କରୁଛୁ । ଭାଗ୍ୟରେ ଥିଲେ ମିଳିବ, ନମିଳିଲେ ଦୁଃଖନାହିଁ । ଏହି ନିଷ୍କାମ ସେବାରେ ପରମ ସୁଖ ମିଳୁଅଛି । ଆମେ ଏହି ପୃଥିବୀରେ ଜୀବନ୍ତ ଜାଗ୍ରତ ଭଗବାନଙ୍କୁ ବିଚରଣ କରୁଥିବାର ଦେଖୁଛୁ । ସେଥିରେ ଆମେ ପରମ ସନ୍ତୁଷ୍ଟ ।

ଆଉ ବାବାଜୀ, ଆପଣତ ବସି ବସି ଅନ୍ୟର ମନକଥା ଜାଣି ପାରୁଛନ୍ତି, ଭବିଷ୍ୟତ ଦର୍ଶନ କରୁଛନ୍ତି—"

ବାବାଜୀ ଚଞ୍ଚଳ ହୋଇ ଉଠିଲେ—ସ୍ୱାମୀଜୀ, ଏଥିରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ । ଅନୁଭବ ଦ୍ୱାରା ସବୁ କିଛି ସିଦ୍ଧ ହୁଏ ଆଉ ଅନୁଭବ ସାଧନାରୁ ସିଦ୍ଧିଲାଭ କରେ ।

"ସକଳ ପଦାରଥ ଯ୍ୱା ଜଗମାହିଁ ।

କର୍ମହୀନ ନର ପାଓତ ନାହିଁ ।"

ସଜ୍ଜନ ଚିନ୍ତାମଗ୍ନ ହେଲା । ଯେଉଁ ଦୁନିଆ ରହସ୍ୟମୟ ପରି ଲାଗେ······ ଯେଉଁଥିପାଇଁ ଭାରତବର୍ଷ ସଂସାରରେ "ରହସ୍ୟମୟ ଭାରତ" ନାମରେ ପ୍ରସିଦ୍ଧ ····· ତାହା ବାବାଜୀଙ୍କ କଥାରେ କେତେ ସରଳ ଆଉ ସାଧନା ଦ୍ୱାରା ସୁଲଭ୍ୟ ମଧ୍ୟ । ସେ ସାଧନା କିପରି ? ସେ କଣ କରି ପାରିବ ନାହିଁ ।

କାହିଁକି ପାରିବ ନାହିଁ ସ୍ୱାମୀଜୀ ? ମନୁଷ୍ୟ ପାଇଁ କିଛି ଅସମ୍ଭବ ନାହିଁ । ତାର ଇଚ୍ଛାର ଦୃଢ଼ତା ଉପରେ କେବଳ ନିର୍ଭର କରେ ।

ଏହି କଥାର ଲହରୀ ତା ମନ ଗଭୀରରୁ ଗଭୀରକୁ ଚାଲିଗଲା । ସଜ୍ଜନକୁ ଅନୁଭବ ହେଲା ସତେ ଯେପରି ସେ କ୍ଷଣିକ ମଧ୍ୟରେ ସିଦ୍ଧି ଲାଭ କରିବେ । ଏହିପରି ଭାବାବେଗ ଯୋଗୁଁ ତା ଶରୀରରେ ସ୍ଫୁର୍ତ୍ତିରେ ଆନନ୍ଦ ଆଉ ଉନ୍ମତ୍ତତା ଭରିଗଲା ।

'ହଁ' ସିଦ୍ଧ ହୋଇସାରିଲା ପରେ ସବୁ କିଛି କ୍ଷଣକ ମଧ୍ୟରେ ସମ୍ଭବ କିନ୍ତୁ ସେଥିପାଇଁ ସମୟ ଆଉ ଶକ୍ତିର ପ୍ରୟୋଜନପଡ଼େ । ଯାହା ପାଖରେ ସଂଯମ ଓ ଧୈର୍ଯ୍ୟ ନାହିଁ ସେ ଅନେକ ସାଧକ ହୋଇ ନ ପାରେ ।

'କିନ୍ତୁ ମୋର ବିଶ୍ୱାସ' ମୁଁ କରି ପାରିବି ।"

ତେବେ ଠିକ୍ ଅଛୁ । ନିଜର ବିଶ୍ୱାସକୁ କର୍ମର କଷଟି ପଥରରେ ପରୀକ୍ଷା କର ।

"ମୋତେ କଣ କରିବାକୁ ପଡ଼ିବ ?"

"ସେବା"

"କାହାର ?"

"ରାମଙ୍କର । ଯେଉଁ ରାମ ସର୍ବଘଟରେ ବିଦ୍ୟମାନ ନିଜର ପ୍ରଭୁଙ୍କର" ବାବାଜୀ, କ୍ଷମା କରିବେ, ଗୋଟିଏ କଥା ମୁଁ ଭଗବାନଙ୍କର ଦାସ କାହିଁକି ହେବି ?"

'ନ ହୁଅ, ବାତ୍ସଲ୍ୟ ଭାବରେ ପୂଜାକର, ସଖା ଭାବରେ ଭଜନ କର । ଆତ୍ମଭାବରେ ଭଜନ କର । ଯେ କୌଣସି ଭାବରେ ଭଜନ କର, ପ୍ରତ୍ୟେକ ଅବସ୍ଥାରେ ତୁମକୁ ସେବକ ହେବାକୁ ପଡ଼ିବ । ମା ନିଜର ସନ୍ତାନର ସେବା କରେ । ମିତ୍ର, ମିତ୍ରର ସେବାକରେ । ମନୁଷ୍ୟ ଅସ୍ମିତା ହେତୁ ଏହି ସେବା ମଧ୍ୟ । ରାମଙ୍କ ସେବା କ'ଣ ଶ୍ରେଷ୍ଠ ଜନକ ? ମନେ ଅଛୁ, ଏହା ପୂର୍ବରୁ ମଧ୍ୟ ଆପଣ ଏ ବିଷୟରେ ପ୍ରଶ୍ନ କରି ସାରିଛନ୍ତି ।

ସଜ୍ଜନ ଲଜ୍ଜିତ ହୋଇ କହିଲା—'ହଁ, ମହାଶୟ ଏ ଗର୍ବର ମୋର ତର୍କ ବୁଦ୍ଧିକୁ ଆହୁରି ବଢ଼େଇ ଦେଇଛି ।

ଗର୍ବ ଖରାପ ନୁହେଁ, କାରଣ ଏହା ରାମଙ୍କର । ରାମ ସର୍ବଘଟରେ । ଅତଏବ ସେହି ଉଚ୍ଚପଣିଆ ପ୍ରତି ଭାବନା ରଖ । ଆମେ ତ ରାମଜ, ନ ପଢ଼ି, ନ ଦେଖି ଅନୁଭବ ଦ୍ୱାରା ଯେଉଁ ଚିନ୍ତା ଉତ୍ପନ୍ନ ହୁଏ ତାହାକୁ ଶୁଣୁ, ତାକୁହିଁ କହୁ । ତୁମେ ତ ବହୁତ ବୁଲିଛ, ପଢ଼ିଛ, ଶୁଣିଛ, ବିଦ୍ୱାନଙ୍କ ସତସଙ୍ଗ କରିଛ—କେତେ ବଡ଼ବଡ଼ ମନ୍ଦିର, ଭବନ, ମୂର୍ତ୍ତି, ବିଜ୍ଞାନର ଚମତ୍କାରିତା, ସବୁଥିରେ ରାମଙ୍କର ଶକ୍ତିକୁ ଅନୁଭବ କରିଛ । ସେହି ଶକ୍ତିକୁ ଭଜନ କର । ସେଥିରେ ଲୀନ ହୋଇଯାଅ ।"

'ବଡ଼ କଷ୍ଟ··· ।'

ହଁ, କଷ୍ଟ ଆମକୁ ମଧ୍ୟ ଲାଗେ । —ଆଉ ଆପଣତ ରାମଜୀ ଏତେ ସୁନ୍ଦର ଚିତ୍ର ଆଙ୍କି ପାରୁଛନ୍ତି । ଆମେ ତ କାହିଁ ଆଙ୍କି ପାରନାହୁଁ । ଆମପାଇଁ ସେ ବଡ଼ କଠିନ କାମ । ଆପଣ ଏତେ କଠିନ କାମ କିପରି କରି ପାରୁଛନ୍ତି ରାମଜୀ ।

ସଜ୍ଜନ ଶ୍ରଦ୍ଧାରେ, ଆବେଗରେ ବାବାଜିଙ୍କ ଚରଣ ତଳେ ନତମସ୍ତକ ହେଲା । ବାବାଜୀ ଅତ୍ୟନ୍ତ ସ୍ନେହରେ ତାକୁ ଉଠାଇ କହିଲେ—ଗୀତାରେ ଭଗବାନ କହିଛନ୍ତି ଯେ ଅଭ୍ୟାସ ଦ୍ୱାରା ଯୋଗ ହୁଏ । ଯୋଗ କର୍ମସୁ କୌଶଳ—ଅର୍ଥାତ୍ କର୍ମର କୁଶଳତା ହିଁ ଯୋଗ । କାୟ, ମନ, ବାକ୍ୟରେ ଏକ ହେଲେ ତାହା ସତ୍ୟ ।

"ମହାରାଜ, ଏହା ବଡ଼ କଠିନ । ମାୟା ମୋହ ବିକାର ଯେତେସବୁ ସଂସାରରେ ରହି ଗୃହସ୍ଥ ବନ୍ଧନରେ ରହି—"

ରାମଜୀ ଏ ସମସ୍ତ ଅଜ୍ଞାନୀମାନଙ୍କ ମତ ଜ୍ଞାନୀ ମାନଙ୍କର ନୁହେଁ । ଇଏ ଯେଉଁମାନେ ଏଟମ୍ ବମ୍ ତିଆରି କରୁଛନ୍ତି ସେମାନେ କେଉଁ ବଣ, ଜଙ୍ଗଲ, ଗୁମ୍ଫାରେ ଅଛନ୍ତି ସେମାନେତ ତାଙ୍କ ସାଧନାରେ ସିଦ୍ଧି ପାଇଛନ୍ତି ।

"ସେତ କାମନା ମାତ୍ର ସାଧନା ।"

ଏହାଠିକ୍, ତୁମେ କିଛି ନୂତନର ସୃଷ୍ଟି କର । ଯାହାର ଚେତନା ଯେତେ ବିସ୍ତୃତ ହେବ ତାର ସୃଷ୍ଟି ମଧ୍ୟ ସେତେବଡ଼ ଦ୍ୱନ୍ଦ୍ୱ ମଧ୍ୟରେ ଚେତନାର ଉଦ୍ଭବ, ତା ନହେଲେ ବିକାଶ ହେବ କିପରି ? ରାମଜୀ ଯୋଗ ମାନଙ୍କର ମାନେ ତ ଏହି ସୃଷ୍ଟି ରାମଙ୍କ ଲୋକଙ୍କ ପାଇଁ ଉଦ୍ୟମ ।

କନ୍ୟା ଆସି ପହଞ୍ଚିଲା ବାବାଜୀ କହିଲେ..."କ'ଣ ସୀତା ଦେବୀ କନ୍ୟା ଲକ୍ଷ୍ମୀଙ୍କର ସୌଭାଗ୍ୟ ଅନୁଭବ କଲ ?"

କନ୍ୟା ଲଜ୍ଜିତ ହେଲା । ସ୍ମିତ ହାସ୍ୟ କରି ତଳକୁ ଚାହିଁ କହିଲା—"ଆଜ୍ଞା ହଁ, ବାବାଜୀ, ମୋ ଦ୍ୱାରା ଯେତିକି ସମ୍ଭବ ସେତିକି ମୁଁ କରିବି ।"

କାହିଁକି ? ଏହିଠି ପରା, ତୁମର କେତେ ମହଲା ଘର । କେତେ ଚାକର ବାକର । କ'ଣ କାହିଁ ତୁମର ? ମଜାରେ ଉପରେ ଶୋଇରହି ହୁକୁମ ଜାରି କରୁଛ ?

ବାବାଜୀଙ୍କର କହିବାର ଭଙ୍ଗୀ ଆଉ ଚକ୍ଷୁର ଆନନ୍ଦ ଭରା ଝଲକରେ ପତି ପତ୍ନୀ ଦୁଇଜଣ ଉଲ୍ଲସିତ ହୋଇ ଉଠିଲେ । ସଜ୍ଜନ ବାବାଜୀଙ୍କର ଆଡ଼କୁ ହାତ ବଢ଼ାଇ କହିଲେ—ଚଞ୍ଚଳା ଲକ୍ଷ୍ମୀ ତ ଏହି ମୋ ଘରେ ବିରାଜିତା, ମହାରାଜ : ମୁଁ ତାର ଆଉ କି କରିବି ।

ସୁଖ ଦୁଃଖ ତ କେବଳ ଭାବରେ ଅଛି, ରାମଜୀ । ଯେଉଁଥିରେ ସୁଖ ସେଥିରେ ଲକ୍ଷ୍ମୀ ଅଛନ୍ତି । ଆଉ କିଛି ନୁହେଁ, ରାମଜୀ— ଯେପରି ପ୍ରାତଃକାଳରେ ସୂର୍ଯ୍ୟ ନାରାୟଣ ଅନ୍ତରୀକ୍ଷକୁ ଗର୍ଭରେ ରହନ୍ତି ଓ ଆକାଶ ଉପରେ ତାହାର ଚମତ୍କାରିତା ବ୍ୟାପିଯାଏ— ସେହିପରି ଏ ତେଜମୟ ପର୍ଯ୍ୟବେଷଣ ପ୍ରକାଶ ।

ସଜ୍ଜନ ଲକ୍ଷ୍ମୀଙ୍କର ଏ ନୂତନ ପରିଭାଷା ଶୁଣି ଚମତ୍କୃତ ହେଲା । ବାବାଜୀ କହି ଚାଲିଲେ—"ବଙ୍ଗଳାରେ. ରାମକୃଷ୍ଣ ପରମହଂସ ମହାରାଜ ହାତରେ ସୁନା ଓ ଅନ୍ୟ ହାତରେ ମାଟି ନେଇ ଦେଖେଇ ଦେଇଥିଲେ ନିଜ ମନରେ ସମଭାବରେ ଦୁହେଁ ସମାନ

ହେଉଥିଲେ । କେମିତି କରୁଥିଲେ କାହିଁକି ନା ସେ ଅନନ୍ତ ଶ୍ରୀ ରେ ବିଭୂଷିତ ହୋଇ-ଥିଲେ । ରାଜା ଜନକଙ୍କ ଚାକର ବାକର ସୈନ୍ୟ ସାମନ୍ତଙ୍କ ଭବନ, ମହଲ କେଉଁ କଥାରେ ଊଣା ଥିଲା ? ଭଗବାନଙ୍କର ଶ୍ୱଶୁର, ଜଗଦମ୍ବାଙ୍କ ପିତା, ଗୃହସ୍ଥାଶ୍ରମୀ, ରାଜା ଥିଲେ ତଥାପି ତାଙ୍କର ଏହି ସୁଖ ପାଇଁ କୌଣସି ମୋହ ନଥିଲା କାହିଁକି ? ଏଇଥିପାଇଁ ଯେ ସେ ଅନନ୍ତ ଶ୍ରୀ ରେ ବିଭୂଷିତ ଥିଲେ ।"

'ଶୁଣିବାକୁ ତ ଭଲ ଲାଗୁଛି, ବାବାଜୀ, କିନ୍ତୁ କିଛି ବୁଝି ହେଉନାହିଁ । କନ୍ୟା କହିଲା । ଆମେ ଯେଉଁ ବାତାବରଣରେ ରହୁ ତାର କଣ ପ୍ରଭାବ ସେଥିରେ ପଡ଼ୁନାହିଁ । ମୁଁ ନିଜ ଜୀବନକୁ ଅନୁଭବ କରିଛି । ଏତେ ବର୍ଷ ପର୍ଯ୍ୟନ୍ତ ଲକ୍ଷ୍ମୀ ପତିଙ୍କର ସୁଖ ପର୍ଷୀଙ୍କ ପ୍ରତି ଘୃଣା ରଖି ମଧ୍ୟ ଆଜି ଯେତେବେଳେ ସେହି ବାତାବରଣ ମଧ୍ୟକୁ ଆସିଛି ତେଣୁ ହଠାତ୍ ଏହି କଥା ପାଇଁ ମନା କରିପାରୁ ନାହିଁ । ଏହି ବୈଭବ ବିଳାସରେ ନିଜର ଗୋଟିଏ ଆନନ୍ଦ ଅଛି, ଯାହାକି ଧୀରେ ଧୀରେ ଓ ସଂଯମୀରୁ ଅତି ସଂଯମୀ ମନୁଷ୍ୟକୁ ମଧ୍ୟ ମନା କରି ଦେଉଛି । ମୋର ନୈତିକ ସାମାଜିକ ବିଚାର ହୋଇ ପରେ ମୋତେ ସମ୍ଭାଳି ରଖିଛି—

ହଁ, ଝିଅ, ଏହି ନିୟମସଂଯମକୁ ଆଚାର ବ୍ୟବହାର ତ ବାସ୍ତବିକ ଶ୍ରୀ । ବର୍ତ୍ତମାନ ତୁମ ପାଖରେ ଅଳ୍ପ ସମ୍ପତ୍ତି ଅଛି । ଏଥିପାଇଁ ବାହାରର ବିଭବରେ ତୁମେ ପ୍ରଭାବିତ ହୋଇ ଯାଉଛ—ଯେପରି ଦରିଦ୍ର, ଲକ୍ଷପତି ଦ୍ୱାରା ପ୍ରଭାବିତ ହୁଏ, ଲକ୍ଷପତି କୋଟିପତି ଦ୍ୱାରା ପ୍ରଭାବିତ ହୁଏ । ତୁମକୁ ଗୋଟିଏ ଦୃଷ୍ଟାନ୍ତ ଦେବି । ରାଜା ଜନକ ବିଦେହ କଥିତ ହେଉଥିଲେ । ତେଣୁ ସମସ୍ତ ମୁନିଋଷିଙ୍କୁ ଏହା ଭୟ ହେଲା ଯେ, ଆମେ ତ କନ୍ଦମୂଳ ଖାଉଁଛୁ, ତପସ୍ୟା କରୁଛୁ ଓ ଏ ରାଜା ହୋଇ ମଧ୍ୟ ଅମର ପଦବୀ ପାଇଯିବ । ଜଣେ ମହାତ୍ମା ଥିଲେ । ସେ ଅତ୍ୟନ୍ତ କ୍ରୋଧିତ ହୋଇ ଜନକରାଜାଙ୍କ ଦରବାରକୁ ଆସିଲେ ଓ କହିଲେ ଯେ ଆମେ ଏହା ବୁଝିପାରୁ ନାହୁଁ ଯେ ତୁମେ ଏତେ ରାଜ ସୁଖ ଭୋଗକରି ମଧ୍ୟ କିପରି ବିଦେହୀ ହୋଇ ପାରିବ । ଭଗବାନଙ୍କ ଚରଣ ତଳେ ତୁମର ମନ କିପରି ସ୍ଥାନ ପାଇବ । ମହାତ୍ମା କହିଲେ, କହିବ ଯଦି କିଛି ନଚେତ୍ ଆମେ ଆଜି ତୁମର ସମସ୍ତ ଆଡ଼ମ୍ବର ପଦାରେ ପକାଇ ଦେବୁ । ରାଜା ଜନକ କହିଲେ, ମହାରାଜ, ଆପଣ ସୁସ୍ଥ ହୁଅନ୍ତୁ । ଭୋଜନ ଆଦି କରନ୍ତୁ । ତେବେ ବସି ବିଚାର କରିବା । ସେ ମହାତ୍ମାଙ୍କୁ ରାଜା ବହୁତ ସମ୍ମାନ ଦେଖାଇଲେ । ଯେତେବେଳେ ସେ ଅସ୍ଥାନ-ଧ୍ୟାନ, ପୂଜା-ପାଠରୁ ବିରତ ହେଲେ ରାଜା ତାଙ୍କୁ ରୋଷେଇ ମହଲକୁ ନେଇଗଲେ । ସୁନାର ଚୌକି, ସୁନାର ଥାଳି ଓ ବିଭିନ୍ନ ପ୍ରକାରର ସ୍ୱାଦିଷ୍ଟ ଖାଦ୍ୟ ସାମଗ୍ରୀ ଖୁବ୍ ଭଲ ବ୍ୟବସ୍ଥା ହେଲା । ତାପରେ ରାଜା ଜନକ ଏପରି ଏକ କୌଶଳ କଲେ ଯେ, ଯେଉଁ ଆସନ ଉପରେ ବସି ସେହି ମହାତ୍ମା ଭୋଜନ କରିବେ ତା ଉପରେ ଏକ ଖୋଲା ତରବାରୀ ସରୁ ସୂତାରେ ବାନ୍ଧି ଝୁଲାଇ ଦିଆଗଲା । ମହାତ୍ମା ବଡ଼ ଅଡୁଆରେ ପଡ଼ିଲେ । ଭୋଜନ

କରିବାକୁ ବସନ୍ତେ ତାଙ୍କର ସମସ୍ତ ଧ୍ୟାନ ନିଜ ମସ୍ତକ ଉପରେ ଝୁଲୁଥିବା ତରବାରିରେ କେନ୍ଦ୍ରୀଭୂତ ହେଲା । ରାଜା ପଚାରିଲେ—ମହାରାଜ, ଦହିକଞ୍ଜି କିପରି ହୋଇଛି ? ଲଙ୍କା ଉଚିତ ଲାଗୁଛି ଆଦି । ମହାତ୍ମା ହଁ ହଁ କରି ଟାଳି ଦେଉଥିଲେ । ଯେତେବେଳେ ମହାତ୍ମାଙ୍କ ଭୋଜନ କରି ସାରିଲେ ସେତେବେଳେ ପୁଣି ଜନକଜୀ ତାଙ୍କୁ ସେହି ପ୍ରଶ୍ନ ପଚାରିଲେ । ମହାତ୍ମା କହିଲେ ମହାରାଜ, ଏ କଥା ଯେ ମୋର ସମସ୍ତ ମନଧ୍ୟାନ ମୋର ମସ୍ତକ ଉପରେ ଝୁଲୁଥିବା ତରବାରି ପାଖରେ ସୀମିତ ରହିଲା । ରାଜା କହିଲେ – ବେଶ ଏହା ହିଁ ରହସ୍ୟ । ଧ୍ୟାନ ଯେଉଁଠାରେ ରଖିବ ସେଠାରେ ରହେ ।

ଦୁଇଟି ଚୁମ୍ବକର ସମ ଆକର୍ଷଣରେ ସଜ୍ଜନ ସ୍ତବ୍ଧ ହୋଇଗଲା । କିନ୍ତୁ ଏ ସ୍ତବ୍ଧତା ତାକୁ ଜଡ଼ କରୁ ନଥିଲା । ଭିତରର ଚୁମ୍ବକୀୟ ଆକର୍ଷଣ ତାର ରକ୍ତର ଶିରା ପ୍ରଶିରାରେ ଖେଳିଯାଉଥିଲା । କନ୍ୟା ବାବାଜୀଙ୍କୁ ଭୋଜନ କରାଇବାପାଇଁ ନେଇଗଲା । ସଜ୍ଜନ ନୀରବରେ ତାଙ୍କୁ ଶରଣ କଲା ।

ବାବାଜୀଙ୍କ ଆଦେଶାନୁସାରେ ତାଙ୍କର ଖାଦ୍ୟ ପ୍ରସ୍ତୁତ କରାଯାଇଥିଲା । ହୋଇ ଯୋଗୁ ତାଙ୍କ ତରକାରୀରେ ମସଲା କମ୍ପା ଲଙ୍କା ମରିଚ ପଡ଼ି ନଥିଲା ଆଉ ତାହା-ପରେ ଆଜି ସମସ୍ତଙ୍କୁ କ୍ଷୀର ପିଇବା ପାଇଁ ସେ ଅନୁମତି ମଧ୍ୟ ଦେଇଥିଲେ । କନ୍ୟା ମଧ୍ୟ ବିଭିନ୍ନ ପ୍ରକାର ଫଳର ଯୋଗାଡ଼ କରିଥିଲା । ଆସନ ଉପରେ ବସି ବାବାଜୀ ପତି ପତ୍ନୀଙ୍କ ଆଡ଼କୁ ଦେଖି କହିଲେ—

ବ୍ରାହ୍ମଣ ଓ ସାଧୁମାନଙ୍କୁ ଭୋଜନ ଦେବା ଆଗରୁ ଦକ୍ଷିଣା ନିର୍ଣ୍ଣୟ କରାଯାଏ । ରାମଜୀ, କୁହ ଆମକୁ କେତେ ଲେଖାଏଁ ଦକ୍ଷିଣା ଦେବ ।

ଚନ୍ଦ୍ରାର ଗୋଟିଏ ଲହର ସଜ୍ଜନର ମନରେ ଖେଳିଗଲା କିନ୍ତୁ ତାକୁ ନିୟନ୍ତ୍ରଣ କରି ସେ ସହଜ କଣ୍ଠରେ—ଆଜ୍ଞା କହନ୍ତୁ ।

ତମେ କଣ ତମର ସମସ୍ତ ସମ୍ପତ୍ତି ଆମକୁ ଦକ୍ଷିଣା ଦେଇ ପାରିବ ରାମଜୀ ?

କନ୍ୟା ସଜ୍ଜନ ଆଡ଼କୁ ସ୍ଥିରନେତ୍ରରେ ଚାହିଁ ରହିଲା । ସଜ୍ଜନ ମୁଣ୍ଡ ନୁଆଁଇ, ସ୍ତମ୍ଭୀତ ଭାବେ ଛିଡ଼ା ହୋଇ ରହିଥିଲା । ବାବାଜୀ କହିଲେ—ଏଥିରୁ ଟିକିଏ କମ ହେଲେ ଆମେ ସନ୍ତୁଷ୍ଟ ହେବୁ ନାହିଁ, ରାମଜୀ ।

ସଜ୍ଜନ କହିଲା—ଇଚ୍ଛାତ ଅଛି । ବାବାଜୀ, କିନ୍ତୁ କହି ପାରୁନାହିଁ ଯେ ଏହା ଉପରେ ସର୍ବଦା ସ୍ଥିର ରହି ପାରିବି । କିଛି ଦିନ ସମସ୍ତ ଦିଅନ୍ତୁ ଭାବିବାର କହିବି ।

ତେବେ ସେ ପର୍ଯ୍ୟନ୍ତ କ'ଣ ଆମ୍ଭେମାନେ ଏହି ଥାଳୀ ଆଗରେ ବସି ରହିବୁଁ । ରାମଜୀ ?

କନ୍ୟା ନିଜର ସ୍ୱାମୀ ଆଡ଼କୁ ପୁଣି ଚାହିଁଲା । ସଜ୍ଜନର ଚେହେରା ଉପରେ ତାର ଅନ୍ତରର ଦ୍ୱନ୍ଦ୍ୱ ପ୍ରକଟିତ ହେଉଥିଲା ।

ବାବାଜୀ ପୁଣି କହିଲେ । ରାମଜୀ, ତୁମେ ଯାହା କିଛି ଭାବୁଛ ତା ଉପରେ ସ୍ଥିର ବୁଦ୍ଧି ନଚେତ୍ ତାକୁ ଭୁଲି ଭୁଲି ଜଗତ ଯେଉଁ ଚକ୍ରରେ ବୁଲୁଛି ସେହି ଚକ୍ରରେ ବୁଲ । ଚନ୍ଦ୍ରା, ଈଶ୍ୱର ଆଉ କେତେ ଧନଯାଏ କରୁଥିବ ? କେବଳ ଚନ୍ଦ୍ରା-ଈଶ୍ୱରର ହିସଙ୍କ୍ର ଅବସ୍ଥା ।

'ଆପଣ କଣ ସମସ୍ତଙ୍କୁ ଏହି ଦକ୍ଷିଣା ମାଗନ୍ତି ବାବାଜୀ ?' ସଜନ ପଚାରିଲା, ଏକଥା ଶୁଣି ତୁମର କଣ ଲାଭ ହେବ ? ଭାବନାଅ ଯେ ଆଜି ପ୍ରଥମ ଥର ତୁମର ଏହି ମାୟା ଦେଖି ଆମ ମନରେ ମଧ୍ୟ ଲକ୍ଷ୍ମୀଙ୍କର ପାଇଁ ଲୋଭ ଆସୁଛି ।

ସଜ୍ଜନ କନ୍ୟା ଆଡ଼କୁ ଚାହିଁଲା । କନ୍ୟା ତା ମନର ଭାବ ବୁଝି କହିଲା···'ମୁଁ ସର୍ବଦା ଅଭାବ ଭିତରେ ଗଢ଼ି ଆସିଛି ତେଣୁ ମୋତେ ଧନର ଅଭାବରେ କିଛି କଷ୍ଟ ହେବ ନାହିଁ ।

“ତେବେ ମୋତେ ମଧ୍ୟ ବାଧିବ ନାହିଁ । ବାବାଜୀ, ଆପଣଙ୍କର ଆଦେଶ ମାନି ନେଉଛି । ସୁଖ ତ ଜୀବନରେ ବହୁତ ଭୋଗ କରିଛି । ବର୍ତ୍ତମାନ ଅନ୍ତରର ଜ୍ଞାନ ପାଇଁ ଇଚ୍ଛୁକ । ଆପଣ ଏବେ ଭୋଜନ କରନ୍ତୁ । ପଥରଦାନ କଚେରୀ ଖୋଲିବା ମାତ୍ରେ ମୁଁ ଆପଣଙ୍କ ନାଁରେ ସବୁ ସମ୍ପତ୍ତି ଲେଖିଦେବି ।

କେଉଁ କଚେରୀରେ ? ବାବାଜୀ, ଖିଲି ଖିଲି ହୋଇ ହସିଲେ । ଏଇଠିତ ଆମର ଲେଖାପଢ଼ା ହୋଇଗଲା । ରାମଜୀ, ବର୍ତ୍ତମାନ ଏ ଧନ ଆଉ ତୁମର ନୁହେଁ । ତୁମେ କେବଳ ଆମର କୋଷାଧ୍ୟକ୍ଷ । ତୁମେ କେବଳ ବେତନ ଭୋଗୀ ।

ଠିକ୍ ଅଛି, ଏହାହିଁ ହେବ । ଏହି ଧନ ଉପରୁ ଆଜିଠାରୁ ମୋର ଅଧିକାର କାଢ଼ି ନେଲି ।

ହଁ, ରାମଜୀ, ଏହି ସାହାଯ୍ୟରେ ତୁମକୁ ସ୍ଥିର ରହିବାକୁ ପଡ଼ିବ । ଗୋଟିଏ ଗୋଟିଏ ମୁହୂର୍ତ୍ତର ଚନ୍ଦନ ତୁମକୁ ପ୍ରଭୁ କରି ଗଢ଼ିବ । ତୁମେ ପ୍ରଭୁ ହେବାକୁ ଚାହିଁ ତ ? ହୁଅ ।”

ସେଦିନ ରଙ୍ଗ ଭଙ୍ଗ ହୋଇ ପୂର୍ଣ୍ଣ,···? ସଜ୍ଜନ ଚନ୍ଦ୍ରା ସାଗରରେ ଭାସି ବୁଲିଲା । ସେହି ମୁହୂର୍ତ୍ତରେ କୌଣସି ଚନ୍ଦ୍ରା ବୋଧଗମ୍ୟ ହେବା ଅସମ୍ଭବ ଥିଲା ଆଉ ତାର ଆବଶ୍ୟକ ମଧ୍ୟ ନଥିଲା ସେ ଭାବର ସମୁଦ୍ରର ଅତଳ ଗର୍ଭରେ ବୁଡ଼ି ଯାଉଥିଲା, ତାହାର ଆଖପାଖ ଓ ଉପର ତଳେ ସେହି ସମୁଦ୍ରର ଜୀବଜନ୍ତୁ ସୁନ୍ଦର ଅସୁନ୍ଦର ତୀବ୍ର ବେଗରେ ଘୂରିବୁଲୁଥିଲେ ଓ ତା ଚନ୍ଦ୍ରା ମଧ୍ୟ ତା ସାଙ୍ଗରେ···

# ଅଠତିରିଶ

ବାବାଜୀଙ୍କ ଭୋଜନ ସାରି ଯିବାର ପ୍ରାୟ ଦୁଇ ଘଣ୍ଟା କଟି ଯାଇଥିଲା । ପୋର୍ଟିକୋରେ ବାହାରେ ଛିଡ଼ା ହୋଇଥିବା ବସ୍‌ରେ ବାବାଜୀଙ୍କୁ ବସାଇ ପତି ପତ୍ନୀ ତଳର ଗୋଲେଷ୍ଟ ଘର ପର୍ଯ୍ୟନ୍ତ ଏକାଠି ଫେରିଲେ । ସଜ୍ଜନ ଉପରକୁ ଚାଲିଗଲା, ଆଉ କନ୍ୟା ଚାକରମାନଙ୍କୁ ଖୁଏଇବା ପାଇଁ ମିଏକ୍ଟ ଓ ଭଣ୍ଡାର ଘର ବନ୍ଦ କରିବା ପାଇଁ ତଳେ ରହିଲା ।

କନ୍ୟା ସେତିକବେଳକୁ କିଛି ନା କିଛି କାମରେ ଲାଗି ରହିଲେ । ଚାକରମାନଙ୍କୁ ଖୁଆଇ ପିଆଇ, ବକ୍‌ସିସ୍ ଦେଇ ଦୁଇଘଣ୍ଟା ପାଇଁ ଛୁଟିଦେଲା । ଠାକୁରଙ୍କ ଘରେ ଥିବା ପୂଜା ବାସନ ସବୁ ମାଜିଲା, କିଛି ସମୟ ପର୍ଯ୍ୟନ୍ତ ଶାଶୁର ଫଟୋକୁ ଏକ ଲକ୍ଷ୍ୟରେ ଦେଖିବାକୁ ଲାଗିଲା, ଠାକୁରଙ୍କ ଆଗରେ ଥିବା ଦୀପରେ ଘିଅ ଭରିଲା, ସଳିତା ତେଜାଲା ଫୁଲଦାନୀର ଓ ଆଉ ସୌନ୍ଦର୍ଯ୍ୟକୁ ଅନୁଭବ କଲା । କୋଠରୀର ଛାତ ଓ କାନ୍ଥ ଉପରେ ପୁରୁଣା ଥିଲା । ତାହାକୁ ଅନ୍ୟମନସ୍କ ଦୃଷ୍ଟିରେ ଦେଖିବାକୁ ଲାଗିଲା । ତାପରେ ଘରର କବାଟ ବନ୍ଦକଲା ।

ବାହାରର ମଣ୍ଡପ ଉପରକୁ ସେ ଆସିଲା । ଲନ ଅତିକ୍ରମ କରି ଅନ୍ୟ ଆଡ଼େ ରୋଷେଇଘର ବାରଣ୍ଡାରେ ଧୀରେ ପଦ ଚାଳନା କରି ଅନ୍ୟ ମନସ୍କ ଭାବରେ ଏହି ଆଡୁ ଉପରକୁ ଯିବା ପାହାଚରେ ଚଢ଼ିଲା ।

ଏହି ଘରେ ବହୁ ମୂଲ୍ୟବାନ ଜିନିଷରେ ପୂର୍ଣ୍ଣ ଥିଲା । ଷ୍ଟୁଡ଼ିଓ ଘରେ ସଜ୍ଜନ ବସିଥିଲା, ସେ ଘରକୁ ଛାଡ଼ି କନ୍ୟା ବହୁତ ସମୟ ପର୍ଯ୍ୟନ୍ତ ଇତସ୍ତତଃ ବୁଲିବାକୁ ଲାଗିଲା । କେଉଁଠି ଟିକିଏ ସମୟ ପାଇଁ ଠିଆ ହେଲା, କେଉଁଠି ବସିଲା କେତେବେଳେ ଅବା ପୁରୁଣା ମୂର୍ତ୍ତି ଓ ଫର୍ନିଚର ଉପରେ ଲାଗିଥିବା ଧୂଳି ସଫା କଲା···ଏହି ପରି ଭାବରେ ନିଜର ମନକୁ ସେ ଆଶ୍ୱସ୍ତ କରୁଥିଲା । ଏହି ଘର, ଏହି ଘରର ପ୍ରତ୍ୟେକ ବସ୍ତୁ ତାହାର । ସେ ଗୃହର ଅଧିକାରିଣୀ । ପାଞ୍ଚ ଛ' ମାସ ପୂର୍ବରୁ କନ୍ୟା ସ୍ୱପ୍ନରେ ମଧ୍ୟ ଏହି କଥା କଳ୍ପନା କରିପାରି ନଥିଲା । ନିଜର ବାପ ଘରର ବାତାବରଣରେ ଅସନ୍ତୁଷ୍ଟ, ଅଭାବରେ ପାଳିତା, କିନ୍ତୁ ଅନ୍ତରରେ ଅସନ୍ତୋଷକୁ ବାହାରର ସଂଯମର ରୂପ ଦେଇ ନିଜର ଅବୋଧମହତ୍ତ୍ୱାକାଙ୍‌କ୍ଷାକୁ ନେଇ କେତେବେଳେ ସାହିତ୍ୟ ଆରାଧନାରେ କେତେବେଳେ ଅଭିନୟ କଳାରେ ଅଉ କେତେବେଳେ ରାଜନୀତିରେ ଅଗ୍ରସର ହେଉଥିବା ଏହି ଯୁବତୀ

ଜମିଦାରୀ ଆଉ ବୈଭବ ସଂବନ୍ଧରେ ଅନେକ ପଢ଼ିପଢ଼ି ତ ଅବଶ୍ୟ କରିଥିଲା, କିନ୍ତୁ କେବେ ମନଭରି ଦେଖିବାର ଅବସର ପାଇନଥିଲା, କିମ୍ବା ସୁଯୋଗ ମଧ୍ୟ ନଥିଲା। ସେ ଜମିଦାରୀକୁ ଘୃଣା କରୁଥିଲା, ଜମିଦାରମାନଙ୍କୁ ବିଦ୍ରୂପ କରୁଥିଲା। କିନ୍ତୁ ସଜ୍ଜନକୁ ଯେତେବେଳେ ସେ ଭଲପାଇଲା ଓ ସେ ତାଙ୍କ ପ୍ରତି ଆକର୍ଷିତ ହେଲା।' ସେହି ଦିନଠାରୁ ସଜ୍ଜନ ସହିତ ତାର ଏହି ବୈଭବ ପ୍ରତି ଅଜାଣତରେ ଲୋଭ ମଧ୍ୟ ବଢ଼ିଯାଇଥିଲା। ବିବାହ ପରେ ସଜ୍ଜନ ନିଜର ସମସ୍ତ ସଂପତ୍ତିର ଦାୟିତ୍ୱ ତାକୁ ସମର୍ପଣ କରିଦେଲା। ଥରେ ସେ ନିଜର ସୌକ ପାଇଁ ସେ ମା, ଆଇ ଓ ବୁଢ଼ୀ (ମାତା-ମାତାମହୀ-ପ୍ରମାତା ମହୀ)ର ପୁରୁଣା ହୀରାଜଡ଼ିତ ଗହଣା ସବୁ ପିନ୍ଧାଇ 'ବୋହୂରାଣୀ' ରୂପରେ ତାର ଫୋଟୋଟିଏ ଉଠାଇ କରିଥିଲା ସେତେବେଳେ ଲକ୍ଷେ ଅଶି ହଜାରର ସଂପତ୍ତି ନିଜ ଶରୀରରେ ଲଦି ତାକୁ କେମିତି କେମିତି ଅସ୍ୱସ୍ତି ମନେ ହେଉଥିଲା। ଏବେ ତ ଏସବୁ ଘର ନିଜ ବୈଭବ ପାଇ ସେ ଅଭ୍ୟସ୍ତା ହୋଇଗଲାଣି। ଏବେ ତ ଆଉ ତାକୁ ଅସ୍ୱସ୍ତି ମନେ ହୁଏ ନାହିଁ। କିନ୍ତୁ ଆଜି ସବୁ ଛାଡ଼ିଦେବାର ଯନ୍ତ୍ରଣା ତାଙ୍କୁ ପୁଣି ଅସ୍ୱସ୍ତି କରିଦେଲା। ବୈଜ୍ଞିକ ଦୃଷ୍ଟିରୁ କନ୍ୟା ଏହି ତ୍ୟାଗର ବିରୋଧିତା କରି ପାରିବ ନାହିଁ। ତଥାପି ତ୍ୟାଗ କରି ମଧ୍ୟ ତାର ମନ ଉଦାସ ରହି ରହି ମୁକ୍ତ ବାଡ଼ି ବସୁଥିଲା। ଯଦ୍ୟପି ଏ ସମସ୍ତ ସମ୍ପତ୍ତିକୁ ବାବା ଘାମଜୀ ନିଜ ସହିତ ଉଠାଇ ନେଇ ଯାଇ ନାହାନ୍ତି। ତଥାପି ତାକୁ ମନେ ହେଉଥିଲା ସେ ଯେମିତି ସବୁ ହରେଇ ଦେଇଛି, ନାହିଁ। ତାର 'ନିଜର' ବୋଲି କିଛି ସମ୍ପତ୍ତି ନାହିଁ।

ଏହି ଉଦାସୀନତା ତା ନିଆଁ ଜୀବନ ଉଲ୍ଲାସକୁ ସ୍ତିମିତ କରି ଦେଇଥିଲା। ବର୍ତ୍ତମାନ କ୍ଷଣ ଗୁଡ଼ିକ ଯଥାର୍ଥ ଆଧ୍ୟାତ୍ମିକ ଦୃଷ୍ଟିରେ ଏ ତ୍ୟାଗ ସମ୍ପୂର୍ଣ୍ଣ। ଏହାକୁ ପାଳନ କଲେ ଗୃହସ୍ଥ ସୁଖୀ ରହେ କିନ୍ତୁ ଏହାର ଅର୍ଥ ଏହା ନୁହେଁ ଯେ ଆମେ ଗୃହସ୍ଥ ନୋହୁଁ। ଏହା ମୋର ଗୃହ। ମୁଁ ସୁଖୀ। ମୁଁ ସୌଭାଗ୍ୟବତୀ। ନିଜର ଗୃହ ଓ ସୁଖ ସୌଭାଗ୍ୟକୁ ମୁଁ ସ୍ୱଚ୍ଛନ୍ଦରେ ଭୋଗ କରିପାରିବି।

ମନର ଅବସାଦ କେତେକାଂଶରେ ଲଘବ ହେଲା। ସ୍ୱାମୀ କଥା ତାର ମନେ ପଡ଼ିଲା। କନ୍ୟା ଉଠିଲା ନିଜର ଶୋଇବା ଘର ଭିତରକୁ ଗଲା। ସଜ୍ଜନ ସେଠାରେ ନ ନଥିଲା। କନ୍ୟା ନିଜର ପ୍ରିୟତମ ନିକଟକୁ ଗଲା, ସଜ୍ଜନର ମଳିନ ଉଦାସ ଚେହେରା ଦେଖିଲା·····ଦେହ ଛାଡ଼ିଯାଇ ଥିବା ଭଳି ମନେ ହେଲା। କନ୍ୟା ନିଜର ପ୍ରିୟତମ ସମ୍ମୁଖରୁ ମଳିନ ବିଷଣ୍ଣ ଚେହେରା ନେଇ ଯିବାକୁ ଚାହୁଁ ନ ଥିଲା, ଏ ବିଷୟରେ ତାଙ୍କୁ ସେ ଦୁଃଖଦେବାକୁ ଚାହୁଁ ନଥିଲା। ସାବୁନରେ ମୁହଁ ଧୋଇଲା ନୀଳରଙ୍ଗର ସିଲ୍କ ବାଙ୍ଗଲୋରୀ ଶାଢ଼ୀ ବାହାର କଲା ପୁଣି ହୀରାର ସେଟ ବାହାର କରି ପିନ୍ଧିଲା। କାନରେ କାନଫୁଲ ନାକରେ ନାକଫୁଲ, ବେକରେ ହାର, ଡାହାଣ ହାତରେ ସ୍ୱର୍ଣପଟ ଚୁଡ଼ି, ବାମ ହାତରେ ହୀରାର ଜଡ଼ିତ ଚୁଡ଼ି। ସଜ୍ଜନର କିଣିଥିବା ହୀରାର ଏହି ନୂଆ

ସେଠିକୁ ଆଜି ବନକନ୍ୟା ପ୍ରଥମ ଥର ପାଇଁ ସିଦ୍ଧଥିଲା । ଦେହରେ ଝଲସି ଉଠୁଥିବା ଶରୀର ଜ୍ୟୋତିରେ କନ୍ୟାର ମନ ଉତ୍ଫୁଲ୍ଲିତ ହେଉଥିଲା । ଦର୍ପଣରେ ସେ ତାର ସୁନ୍ଦର ଚେହେରାକୁ ବାରମ୍ବାର ଦେଖି ମୁଗ୍ଧ ହେଉଥିଲା ।

ସଜ୍ଜନ ନିଜର ଷ୍ଟୁଡ଼ିଓ ଭିତରେ ଫଟୋ ଉଠାଉଥିଲା । କନ୍ୟାକୁ ଦେଖିବା ମାତ୍ରେ ଆନନ୍ଦର ଢେ଼ଉ ବିସ୍ମୟାଭିଭୂତ ହୋଇଗଲା 'ଆରେ' କହି ସେ କନ୍ୟାକର ଆପାଦ ମସ୍ତକ ଚାହିଁ ଚାହିଁ ଦେଖୁଥିଲା ।

“ଏମିତି କଣ ଚାହିଁଛ ଯେ ?

“ମୁଁ ଭାବିଲି ତୁମେ କିଛି ଅନୁରୋଧ କରିବ । ଏତେ ମନ ନେଇ ଏଥିରୁ ମୋ ପାଇଁ କିଣିଥିଲ । “କନ୍ୟା କହିଲା' ପୁଣି କିଛି ସମୟ ରହି ଗମ୍ଭୀର ହୋଇ କହିଲା ……ତ୍ୟାଗ କରିବା ପୂର୍ବରୁ କିଛି ସମୟ ପାଇଁ ଭୋଗ କରିବାକୁ ଇଚ୍ଛା ହେଲା ।

ସଜ୍ଜନ ପ୍ରେମରେ ତାର ଚିବୁକ ସ୍ପର୍ଶ କରୁ କରୁ କହିଲା ମୁଁ ଏତେ ସମୟ ପର୍ଯ୍ୟନ୍ତ ଗମ୍ଭୀର ଚିନ୍ତାରେ ନିମଗ୍ନ ଥିଲି । “ତା ଭିତରେ ତମେ……

କନ୍ୟା ଚକ୍ଷୁରେ ପ୍ରେମପୂର୍ଣ୍ଣ ସଙ୍କେତ ଦେଇ ତାକୁ ଦେଖିବାକୁ ଲାଗିଲା । ସଜ୍ଜନ କହିଲା—'ଦେଖ କନ୍ୟା ଅଭାବ ଶକ୍ତିଦିଏ ଅଥବା ମାରିଦିଏ । ମୁଁ ଭାବୁଛି ଯେ ଆମେ ଅଭାବ ଠାରୁ ଶକ୍ତି ପାଇବୁ । ଅଧିକ କରାଯାଇପାରେ କିନ୍ତୁ ଏହା ସହିତ ଆଉ ଗୋଟିଏ କଥା ମଧ୍ୟ ନିହିତ । ମୋ ମନରେ ଅନେକ ଅତୃପ୍ତି ମଧ୍ୟ ରହିଛି ।

ଯଥା ସେମିତି କିଛି ନୁହେଁ ମ, କେବଳ ଆରମ୍ଭରେ ତୁମକୁ ସଙ୍ଗରେ ନେଇ ଚାଲିଯାଆନ୍ତି ଦୂର, ଆହୁରି ଦୂର ଏହା ମୋର ଇଚ୍ଛା । ଯଦି ମୁଁ ଏହି ଇଚ୍ଛାକୁ ଦବେଇବାକୁ ଚାହିଁବି ତେବେ ହୁଏତ ଦବାଇ ଦେବି କିନ୍ତୁ ସେଥିରେ ମୋତେ ଶାନ୍ତି ମିଳିବ ନାହିଁ ।'

କହୁ କହୁ ସଜ୍ଜନ ଚୁପ୍ ହୋଇ ଚିନ୍ତା କରିବାକୁ ଲାଗିଲା । କନ୍ୟା ତା ପାଖରେ ଚୌକି ଟାଣି ଟାଣି ବସି ଯାଇଥିଲା । ସେ ତାକୁ ଗଭୀର ପ୍ରେମରେ ଚାହିଁ ଚାହିଁ ଦେଖୁଥିଲା । ସେଇ ଦୃଷ୍ଟିରେ ବାସନା ଥିଲା, ମାଦକତା ମଧ୍ୟ ଥିଲା, କିନ୍ତୁ ତାହା ଉତ୍ତପ୍ତ ପବନ ଭଳି ଚଞ୍ଚଳ କରୁନଥିଲା ବରଂ ପ୍ରାତଃ କାଳୀନ ସମୀର ଭଳି ଦେହ ମନକୁ ଏକ ଅପୂର୍ବ ତୃପ୍ତିରେ ଭରି ଦେଉଥିଲା ।

କନ୍ୟା କହିଲା····· ବୁଲିବାକୁ ମୋର ମଧ୍ୟ ଇଚ୍ଛା ହେଉଛି । ହଁ କନ୍ୟା, ମୁଁ ନିଜପାଇଁ ଅଧିକ ସୁଖ ଚାହେଁ ନି । ଯେତେ କମ୍‌ରେ ହୋଇପାରେ । କିନ୍ତୁ କେତେକ ଜିନିଷକୁ ମୁଁ ହଠାତ୍ ଛାଡ଼ିପାରିବିନାହିଁ । ଏକଥା ଅର୍ଥ ନୁହେଁ ଯେ ମୁଁ ନିଜକୁ ଠକାଉଛି ।

କିନ୍ତୁ ମୁଁ ନିଜର ପରିଧିକୁ ଧୀରେ ଧୀରେ ବଢ଼ାଇବାକୁ ଚାହୁଁଛି । ହଁ ଯେଉଁ ଜିନିଷ ପୈତୃକ ଓ ଯାହା ମୋତେ ଉଚିତ୍ ବୋଧହୁଏ ତାହା, ଏହା ଯେ ଭବିଷ୍ୟତରେ ହେବାକୁ ଥିବ ନିଜର ସନ୍ତାନ ସନ୍ତତିଙ୍କର ମୋହକୁ ବାହାନା କରି ମୁଁ ଏହି ପୂର୍ବ ପୁରୁଷଙ୍କ ସମ୍ପତ୍ତିକୁ ଉଡ଼ାଇ ନଷ୍ଟଭ୍ରଷ୍ଟ କରିଦେବି ନାହିଁ । ମୋ ପାଖରେ, ମୋଟା ମୋଟି ବର୍ତ୍ତମାନ ଆଠଲକ୍ଷ ପର୍ଯ୍ୟନ୍ତ ପୁଞ୍ଜି ଅଛି (ମୂଳଧନ) ଛାଡ଼ା ବହୁତ ଟଙ୍କା, ପାଖା ପାଖି ଏତିକି ଟଙ୍କା, ଆଗମ ପାଇ ଉଡ଼ାଇ ନେଉଛନ୍ତି । ପାଖାପାଖି ଚାରି ପାଞ୍ଚ ଲକ୍ଷ କୋର୍ଟ ଅଫ୍ ଓ୍ୱାର୍ଡସଙ୍କ ସମୟରେ ଲୁଟ ହୋଇଗଲା······ଛାଡ଼ ଯାହା କିଛି ହେଉନା କାହିଁକି ମୁଁ ନିଜର ଅଧା ସମ୍ପତ୍ତିକୁ ଶୀଘ୍ର ଟ୍ରଷ୍ଟ କରିଦେବି । ଆମ୍ଭେମାନେ ଏହାଦ୍ୱାରା ସମାଜ ଉପଯୋଗି କାମ କରିବା ।

କନ୍ୟା ଉତ୍ସାହିତ ହୋ'ଇ ଉଠିଲା । କହିଲା—'ତୁମେ ନା ମୋର ମନ କଥା କହିଲ । ଦେଖ, ତୁମ ପାଖେ ମୁଁ ନିଜର ମନ କଥା ମୁହଁ ଖୋଲି କହିଦିଏଁ । ବିଶ୍ୱାସ କର, ଯେତେବେଳେ ମୁଁ ତମକୁ ଭଲ ପାଇଲି ସେତେବେଳେ ତୁମେ ଯେ ଜଣେ ଅତି ଧନୀଘରର ସନ୍ତାନ ଏକଥା ମୋର ମନେନଥିଲା । ମୁଁ କେବେ କଳ୍ପନା କରୁଥିଲି ଯେ ତୁମ ସହିତ ମୋର ବିବାହ ହେବ । ତାଛଡ଼ା······ଏହି ଘରର ପ୍ରଭୁ ପତ୍ନୀ ହେବାର କଳ୍ପନା ମୋ ମନ ଭିତରେ ଯେ ନଥିଲା ତା ନୁହେଁ······ ··········ଏହି ଘରକୁ ଆସି ସାରିଲାପରେ ଐଶ୍ୱର୍ଯ୍ୟ ବିଭବ ମୋର ମୋହ ହେଲା । ତୁମର ବ୍ୟବହାର ମୋ ମନରେ ମୋହ ସୃଷ୍ଟି କରାଇଲା······ ମୁଁ ନିଜର କଥା ଠିକ୍ ରୂପେ ତୁମ ପାଖରେ ବ୍ୟକ୍ତ କରି ପାରୁନଥିଲି । ତୁମେ କଣ ବୁଝୁଥିବ ।

ସଜ୍ଜନ କହିଲା······"ମୁଁ ବୁଝୁଛି । "ଆଜି ବାବାଜୀ ଯେତେବେଳେ କହିଲେ, ସେ ସମୟରେ ମୁଁ ଅଧିକ ବିଚଳିତ ହେଲିନାହିଁ, ମୋତେ ଏପରି ଲାଗିଲା, ମୋ ପାଇଁ ତ ଏ ତ୍ୟାଗ ଅତ୍ୟନ୍ତ ସହଜ । କିନ୍ତୁ ଏକୁଟିଆ ଏତେ ସମସ୍ତ ପର୍ଯ୍ୟନ୍ତ······କହୁ କହୁ କନ୍ୟା ରହିଗଲା, ଚୁପ ହୋଇଗଲା, ମୁଣ୍ଡ ନୁଆଁଇଲା ।

ସଜ୍ଜନ ଉଚ୍ଛଳ ହୋଇ ହସି ଉଠିଲା । କନ୍ୟା ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଦେଖିବାକୁ ଲାଗିଲା ନିଜକୁ ଅପରାଧୀନି ଭଳି ଅନୁଭବ କରି ପଡ଼ୁଇଗଲା । ସଜ୍ଜନ ଦୁଇବାହୁକୁ ତାର ଗଳାରେ ଛନ୍ଦି ତାର ଓଠକୁ ନିଜ ଆଡ଼କୁ ଟାଣି ଆଣିଲା, କହିଲା······'ଖୁବ୍ ସରଳା, ······ସୁନ୍ଦର" ।

ସଜ୍ଜନ ଛିଡ଼ା ହେଲା, ଟିକିଏ ଅଳସ ଭାଙ୍ଗିଲା, ନିଜର ଅର୍ଦ୍ଧପୂର୍ଣ୍ଣ ଚକ୍ଷୁ ଆଡ଼କୁ ସତର୍କ ଦୃଷ୍ଟି ରଖି କହିଲା······ସରଳ.. ନିଷ୍କପଟ ଲୋକ ପାଇଁ ଏପରି କଥା ଜୀବନ

ମୁଖର ପ୍ରଶ୍ନ ଆଣେ । କୌଣସି ସଂସାରୀଲୋକ ଆଗରେ ଏକଥା କୁହାଗଲେ ଆମକୁ
ପାଗଳ ଭାବି ହସିବ । ହଃ ହଃ କହିବ, ଏହାନ ସତ୍ୟ ଯୁଗରେ ହୋଇଥିବ, କଳି ଯୁଗରେ
ଏହାର କଳ୍ପନା ମଧ୍ୟ ପାଗଳାମୀ । ......"ଆସହିବା" ।

"ପଇସାର ମୋହକୁ ମୁଁ ମଧ୍ୟ ଆଜି ମାରିଲି"

କନ୍ୟା ଉଠ୍ ଉଠ୍ କହିଲା... ... ଏହାକୁ ମାନିବା ବାଲି ମୁଁ ଏଭଳି ଲୋକଙ୍କୁ ଦେଖୁଛି ଯେ,
ତୁମେ କହୁ ମାନ ନାହିଁ । ଏହାକୁ ମାନିବା ବାଲି ମୁଁ ଏଭଳି ଲୋକଙ୍କୁ ଦେଖୁଛି ଯେ,
କିଏ କହିବ ? ଏମିତି ବି ଲୋକଅଛନ୍ତି ସାରା ଜୀବନ ଖାଇବା ପାଇଁ ମଧ୍ୟ ଖର୍ଚ୍ଚ କରନ୍ତି
ନାହିଁ । ରୋଗ ହେଲେ ନିଜ ପାଇଁ ଔଷଧ ମଧ୍ୟ ଖର୍ଚ୍ଚ କରନ୍ତି ନାହିଁ । ତାଙ୍କର ଧନ ନିଜ
କାମରେ ଆସେ ନାହିଁ କି ଅନ୍ୟା ଉପକାରରେ ମଧ୍ୟ ... ........

"ମୁଁ ଶୁଣିଛି, ଏପରି ଲୋକମାନେ ସାପ ହୁଅନ୍ତି । "କଥା ହସି ହସି ଉଡ଼ାଇବାକୁ
ଭାର ନେଇ ବସିଲା, କହିଲା ଆରେ । ସାପ ହିଁ ସେକଥାତ ମୋତେ ମଧ୍ୟ ସତ୍ୟ ବୋଲି
ମନେ ହେଉଛି । ଯଦିଓ ଏବେ ମଧ୍ୟ ସମ୍ପୂର୍ଣ୍ଣ ବିଶ୍ୱାସ ହେଉନାହିଁ ।"

କନ୍ୟା ତାର ସମ୍ମୁଖରେ ବସି, ମୁହଁ ଦେଖିବାକୁ ଲାଗିଲା ।

ସଜ୍ଜନ କହିଲା, "ଆମର ଏଠି ମଧ୍ୟ ଯୋଡ଼ା ସାପର ଯୋଡ଼ାଥିଲା "

"କେଉଁଠି ?"

"ଠାକୁର ଦରଜା ସାମ୍ନାରେ ।"

"ଠ – ଠାକୁ... .... ..."

ହଁ, ତା ତଳେ ଗୋଟିଏ ତଳ ଘର ଅଛି । କେବେ କଥା ହୋଇନାହିଁ,
ନଂଚେତ୍ ତୁମକୁ କେତେ ଦିନୁ ସେହି ସ୍ଥାନ ଦେଖେଇ ସାରନ୍ତିଣି, ତାଙ୍କ ମାରିବା ପରେ
ସେହି ସ୍ଥାନ ଉପରୁ ବନ୍ଦ କରି ଦିଆଯାଇଛି । ମୁଁ ନିଜେ ମଧ୍ୟ ତା ଭିତରକୁ କେବେ
ଯାଇନାହିଁ । ହଁ, ବାଲ୍ୟାବସ୍ଥାରେ ଥରେ ଖୋଲୁ ଖୋଲୁ ଦେଖିଥିଲି ।

"ତାହା ହେଲେ ସେଥିରୁ ସାପ ଥିଲେ ?"

"ହଁ, ତାଙ୍କ ସେଗୁଡ଼ିକ ମରାଇ ଦେଇଥିଲେ । ତାହା ପରେ କେତେ ମାସ
ମଧ୍ୟରେ ସେ ମଧ୍ୟ ମରିଗଲେ । ଆମର ଏଠାରେ ସବୁ ଲୋକଙ୍କର ଏହି ବିଶ୍ୱାସ ଥିଲା ଯେ
ତାଙ୍କର ମୃତ୍ୟୁ କେବଳ ଏହି କାରଣରୁ ହିଁ ହୋଇଥିଲା ।

ମା କହୁଥିଲା ଯେ ମୋର ଗୋସେଇଁବାପା ଯେତେବେଳେ ଏହି କୋଠରୀ
ତିଆରି କରାଇଲେ ସେତେବେଳେ ଆମ ପୁରୁଣା ଘରୁ ସେହି ଯୋଡ଼ିକୁ ସୁନା ହାଣ୍ଡିଟରେ
ଆଣାଇଥିଲେ । ମୋର ଗୋସେଇଁ ବାପା ବଡ଼ ବିଦ୍ରୋହୀ ପ୍ରକୃତିର ଥିଲେ । ସେହି

ସମୟରେ ଇଂଲଣ୍ଡଗଲେ । ଫେରି ଆସିବା ପରେ ପ୍ରାୟଶ୍ଚିତ୍ତ ମଧ୍ୟ କଲେ ନାହିଁ । କିନ୍ତୁ ସମସ୍ତେ କୁହନ୍ତି ଯେ ତାଙ୍କର ସେହି ଯୋଡ଼ି ଉପରେ ଖୁବ୍ ବିଶ୍ୱାସ ଥିଲା । ସେହି ଯୋଡ଼ି ଆମର ପୂର୍ବ ପୁରୁଷ ରଘୁମଲ୍ଲଜୀ ଓ ତାଙ୍କ ପତ୍ନୀଥିଲେ । ସେ ନବାବ ସିଆବତ ଅଲ୍ଲୀଖାଙ୍କ ସହିତ ଦିଲ୍ଲୀରୁ ଲକ୍ଷ୍ନୌ ଆସିଥିଲେ ।''

''ତାପରେ କଣ ହେଲା ?''

''ତାଙ୍କର ଲୁଗା ବ୍ୟବସାୟ ଥିଲା । ସେ ବଡ଼ ଚତୁର ଓ ପ୍ରଭାବ ଶାଳୀ ଥିଲେ । ନବାବଙ୍କୁ ନିଜ ହାତ ମୁଠାରେ ରଖିଥିଲେ । ଏଠାକୁ ଆସି ସେ ଲକ୍ଷ ଲକ୍ଷ ଟଙ୍କା ଉପାର୍ଜନ କରିଥିଲେ ଓ ମରିବା ପରେ ଲୋକ କହନ୍ତି ଯେ, ସେ କୁଆଡ଼େ ନିଜର ପତ୍ନୀକୁ ସ୍ୱପ୍ନରେ କହିଥିଲେ ଅସର୍ପି (ଧନରତ୍ନ)ର ଯେଉଁ ହଣ୍ଡା ଉପରେ ମୁଁ ବସିଛି ଏହାର ଆଖ ପାଖରେ ଗୁଡ଼ିଏ ହଣ୍ଡାକୁ କେହି କିଛି ବାହାର କରିବ ନାହିଁ । ଯେତେବେଳେ ପରିବାର ଉପରେ କିଛି ସଙ୍କଟ ଆସିବ । ସେତେବେଳେ ଆବଶ୍ୟକତା ଅନୁସାରେ ଗୋଟିଏ ହଣ୍ଡାରୁ ଧନରତ୍ନ ନେବାକୁ ଦେବ ଓ ଗିନାଏ ଦୁଧ ମୋ ପାଇଁ ରଖିଦେବା ଦରକାର ।''

''ପୁଣି ?

''ପୁଣି କଣ, ତାଙ୍କର ଇଚ୍ଛା ଅନୁସାରେ ସବୁ କରାଗଲା ।''

''ତାହାହେଲେ ସେ ସ୍ୱପ୍ନରେ ପ୍ରକୃତରେ ସାପ......''

''ହଁ । କିଛି ଦିନପରେ ତାଙ୍କର ପତ୍ନୀ ମରିଗଲେ । ସେତେବେଳେ ଲୋକମାନେ ସେଠାରେ 'ଯୋଡ଼ି ଦେଖିଲେ ।

''ତାହା ହେଲେ ସେହି ଧନକୁ କେହି ନେଇପାରିଲେ ନାହିଁ ?''

ନା, ବୋଧହୁଏ ଦରକାର ମଧ୍ୟ ନ ଥିଲା । ରଘୁମଲ୍ଲଜୀଙ୍କ ଉପରେ ପାଞ୍ଚ ପୁରୁଷ ପର୍ଯ୍ୟନ୍ତ ଆମର ଏଠାକାର ଧନ ବଢ଼ି ଚାଲିଲା । ଆମର ପୂର୍ବ ପୁରୁଷ ବଡ଼ ଚତୁର ଓ ବ୍ୟବହାର କୁଶଳ ଥିଲେ । ଦରବାରରେ ତାଙ୍କର ବଡ଼ ସମ୍ମାନ ଥିଲା । ଯୁଆଡ଼େ ପବନ ବହୁଥିଲା ସେ ଆଡ଼କୁ ଛତା ଦେଖାଉଥିଲେ । ବ୍ୟାପାରୀରୁ ସାହୁକାର ହେଲେ । ସାହୁକାରରୁ ତାଲୁକାଦାର, ଶେଷରେ ଆମ ଘେ ସେଇଁବାପ । ସିଏ ଏହି କୋଠୀ ତିଆରି କରାଇଥିଲେ, ସେ ପରୀକ୍ଷା ସ୍ୱରୂପ ଗୋଟିଏ ହଣ୍ଡାରୁ କିଛି ଅସର୍ପୀ ବାହାର କରି ସେ ସମୟରେ ଅଲଗା କରିନେଲେ, ଯେଉଁ ସମୟରେ ଆମର ଖଜଣା ଏଠାକୁ ଅଣା ଯାଉଥିଲା । ତାଙ୍କୁ ରାତିରେ ସ୍ୱପ୍ନ ହେଲାଯେ ଯଦି ସେହି ଅସର୍ପୀକୁ ଫେରାଇ ନ ଦେବେ ତେବେ ତୁମର ପୁଅ ବୋହୂ ମୃତ୍ୟୁ ମୁଖରେ ପଡ଼ିବେ । ସେ ପରଦିନ ସେହି ଅସର୍ପୀକୁ ହଣ୍ଡାରେ ପକାଇ ଦେଲେ । ମୋର ଜେଜେବାପା ତାକୁ କେବେ ଛୁଇଁ ନାହାନ୍ତି । ସେ

ବିଚରା ଯୌବନ ଅବସ୍ଥାରେ ଇହଧାମ ଛାଡ଼ିଲେ । ଇଲାକା (ଜମିଦାରୀ) କୋର୍ଟ ଅଫ୍ ଓ୍ୱାର୍ଡ଼ସକୁ ଚାଲିଗଲା । ବହୁତ ଟଙ୍କା ସେହି ସମୟରେ ବରବାଦ ହୋଇଗଲା ତାପରେ ତାଙ୍କ ବୟସ୍କ ହେଲେ । ବିଲାତ ଗଲେ । ଫେରି ଆସିଲାବେଳକୁ ପୁରା ବଦଳି ଯାଇଥିଲେ । ସେ ବହୁତ ଟଙ୍କା ଦରକାର କଲେ । ସାପ ଜୋଡାକୁ ନିଜର ଜଣା ଝୁଙ୍କରେ ମରାଇଦେଲେ । କିଛି ଦିନ ପରେ ସେ ମରିଗଲେ । 'ମା' କହୁଥିଲେ ଯେ ସେହି ସାପ ଅଭିଶାପରୁ ହିଁ ଏହି ଅବସ୍ଥା ହୋଇଛି ।

"ଆଉ ସେହି ଅସର୍ପୀ ?"

"ତାଙ୍କ ଜାଲ ରଖିଥିଲେ ।"

"ସେହି ତଳଘରେ ବର୍ତ୍ତମାନ କଣ ଅଛି ?"

"ଜଣା ନାହିଁ ।"

ଗୋଟିଏ ନିଶ୍ୱାସ ଛାଡ଼ି କନ୍ୟା କହିଲା —"ସାପଙ୍କ ଦ୍ୱାରା ଧନର ରକ୍ଷଣାବେକ୍ଷଣା ବିଷୟରେ ମୁଁ ମଧ୍ୟ ବହୁତ କଥା ଶୁଣିଛି କିନ୍ତୁ କେବେ ବିଶ୍ୱାସ କରିପାରି ନାହିଁ ।"

"ବିଶ୍ୱାସ ମୁଁ ମଧ୍ୟ କରି ପାରୁନାହିଁ କିନ୍ତୁ ମା ସେମାନଙ୍କୁ ଦେଖିଥିଲା । ସେହି ସାପ ଜୋଡ଼ୀ ସହିତ ଆମ ଘରର ଇତିହାସ ଜଡ଼ିତ । ଭାରି ଆଶ୍ଚର୍ଯ୍ୟ କଥା ? ଏପରି କଥାକୁ ବିଶ୍ୱାସ ନ କରି ବି କରିବାକୁ ପଡ଼େ ।

"ସତ କଥା, ଏ ଦେଶ ବିଚିତ୍ରତାରେ ଭରି ରହିଛି । ବଡ଼ ଜବରଦସ୍ତ ବିରୋଧାଭାସ ଆମର ଏଠାରେ ଅଛି । ଗୋଟିଏ ପାଖରେ ତର୍କ, ଜ୍ଞାନ ଦର୍ଶନ, ଗଣିତର ଆଦି ଏତେ ଜବରଦସ୍ତ ପରମ୍ପରା ଓ ଅନ୍ୟପାଖରେ ଏ ସାପ ଚମତ୍କାରିକ ଯୋଗୀ ଜେଠେଇର ଯାଦୁ-ମନ୍ତ୍ର ଆଦି । ଯଦି ଏହା ଉପରେ ବିଶ୍ୱାସ କରିବୁ ଅନ୍ଧ ବିଶ୍ୱାସ ବ୍ୟତୀତ · ..."

କିନ୍ତୁ, କନ୍ୟା, କିପରି ବିଶ୍ୱାସ କରିବନି ଲୁହ ? ବାବାଙ୍କୁତ ଦେଖିଛୁ ।

କନ୍ୟା କହୁଣୀ ଉପରେ ମୁଣ୍ଡ ରଖି ଶୋଇଗଲା । ସଜ୍ଜନକୁ ଚାହିଁ ଚାହିଁ ଦେଖୁଥାଏ ।

ସଜ୍ଜନ କହିଲା···ମୋହ ଓ ତ୍ୟାଗ ···"

"ସାପ ଓ ଯୋଗୀ···ଦୁହେଁ······"

"ବୁଦ୍ଧିଙ୍କର ପରମ୍ପରା ପ୍ରାଚୀନ ମଧ୍ୟ । ଆଉ ସୀମାଗତ ଭାରତବର୍ଷ ମହେଞ୍ଜୋଦାରୋ ଓ ହରପ୍ପା ସମସ୍ତଙ୍କୁ ଧନ ଉପାର୍ଜନ କରିବାକୁ ଜାଣେ ଆଉ ତାହାକୁ ଉପଯୋଗ କରିବାକୁ ମଧ୍ୟ ସବୁଠାରୁ ଆଶ୍ଚର୍ଯ୍ୟ ସମସ୍ତ ଭୋଗକୁ ତ୍ୟାଗ କରି ଯୋଗ ସାଧନ ମଧ୍ୟ କରିବାକୁ ଜାଣେ ।

"ମେମ୍ ସାହେବ ।" ବାହାରୁ ବୃଦ୍ଧ ବେୟରର କଣ୍ଠ ଶୁଭିଲା । ଆସ ଶୀଘ୍ର ।।" କନ୍ୟା ଉଠି ବସିଲା ।

"ହଜୁର, ଚା ଆଣିବି ?

"ଆଣ ।" ସଜ୍ଜନ କହିଲା । ବେୟର ଚାଲିଗଲା ।

କୋଠରୀରେ ନୀରବତା ଛାଇ ଗଲା । କିଛି ସମୟପରେ ଚା ଜଳଖିଆ ଆସିଲା । ସଜ୍ଜନ ଓ ବନକନ୍ୟା ଯେପରି ନିଜର ଅନ୍ତର୍ନିହିତ ସତ୍ୟ ଓ ମିଥ୍ୟା ଉଭୟଙ୍କୁ ଡରି ମୌନ ହୋଇ ଯାଇଥିଲେ ।

ସଜ୍ଜନ ଚୁପ୍‌ଚାପ ଚା' ପିଇବାକୁ ଲାଗିଲା, କନ୍ୟା ହାତରେ ଚା ଥଣ୍ଡା ହୋଇ ଯାଉଥିଲା । ଶେଷରେ ସେ କହିଲା···"ସଜ୍ଜନ, ଆମେ ଯଦି ବିଚଳିତ ହୋଇଯାଉଁ, ତେବେ ଏହାଠାରୁ ବଳି ଲଜ୍ୟାର କଥା କିଛି ନାହିଁ । କଳା ସାପର ଦାନ୍ତ ଯଦି ଆମେ ଏହାକୁ ଝଡ଼ାଇ ନପାରୁ......'

"ଛନ୍ନା କଲି କନ୍ୟା । ବାବା ରାମଜୀ ଆମକୁ ଏମିତି ଦୁଃଖ ମଧ୍ୟରେ ପକାଇ ଦେଇଗଲେ । ସେଥିରୁ ଆମକୁ ଉଦ୍ଧାର ପାଇବାକୁ ପଡ଼ିବ । ଅଗ୍ରସର ହେବାକୁ ପଡ଼ିବ । ଆମେ ଯୋଗୀ ଓ ଭୋଗୀ ଏକା ସାଙ୍ଗରେ ହୋଇ ପାରିବୁ ନାହିଁ । ଆମକୁ ନିଜ ପାଇଁ ଗୋଟିଏ ବାଟ ବାଛିବାକୁ ପଡ଼ିବ ।"

"ବାଛି ନେଇଛୁ, ଆମେ ଗୃହସ୍ଥ । ଆମର ଭୋଗ ତ୍ୟାଗର ଉଭୟ ସମାନ୍ତର ।

# ଅଣଗ୍ଳଲଣ

ହୋଲି......ହୋଲି ।"

କଳା, ଲାଲ, ବାଇଗଣୀ, ନୀଳ, ହଳଦିଆ ରଙ୍ଗ ମୁହଁରେ, ହାତରେ, ଗୋଡ଼ରେ ବୋଳି ହୋଇ, ଭଙ୍ଗ ବେରଙ୍ଗରେ ଚିତ୍ର ବିଚିତ୍ର ହୋଇ ପୁରୁଣା ଚିରା ଲୁଗା ପିନ୍ଧି, ଗୋଟିଏ ଜୋକରକୁ ଗଧ ଉପରେ ବର ବେଶରେ ବସାଇ ଟିଣ ବଜାଇ, ପଚାସଢ଼ା ଟମାଟୋ ପିଙ୍ଗି ଲୋକଙ୍କ ମୁହଁରେ କଳା ବୋଳି, କାଦୁଅରେ ବୁଡ଼ାଇଥିବା ଖଣ୍ଡିଏ ଅଖା-ଧରି, ଏହି ବରଯାତ୍ରୀଦଳ ମହିପାଲି ଘର ଆଗବାଟ ଦେଇ ଯାଉଥିଲେ । ହୋଲିର ଏହି ଉଚ୍ଛ୍ୱସିତ ଶବ୍ଦରେ ସଢ଼କର ମାଟି ପବନ ପ୍ରକମ୍ପିତ ହେଉଥିଲା । ସମ୍ମୁଖସ୍ଥ ଶିବାଳୟ ପାଖରେ ଥିବା ମଣିପର ମୋଡ଼ ଅତିକ୍ରମ କରି ସଜ୍ଜନର ଜଣେ ଗୃଜର ସାଇକେଲ ଉପରେ ଆସୁଥିଲା । ଦଳକୁ ନିଜ ଆଡ଼କୁ ଆସୁଥିବାର ଦେଖି ସେ ସାଇକେଲରୁ ଓହ୍ଲାଇ ପଡ଼ିଲା ଓ ମଣ୍ଡପକୁ ଆଉଜି ଛିଡ଼ା ହୋଇଗଲା । ସତେ ଯେମିତି ସମ୍ମୁଖରେ ବଳଦର ଶିକାର । ସେମାନେ ହୋଲି ଗୀତ ଗାଇ ସଜ୍ଜନର ଅନୁଚରମାନଙ୍କ ଉପରକୁ ଲମ୍ଫ ପ୍ରଦାନ କଲେ । ହୋସିଆର ଓ ମଜଭୁତ ମଧ୍ୟ ଥିଲା । ସାଇକେଲକୁ ଦୁଇ ହାତରେ ଉଠାଇ ଜଇଭଲି କରି ଗରଜି ଉଠିଲା । ଖବରଦାର । ସାଇକେଲ ସହିତ ଡେଇଁବି, କହିଦେଉଛି । ଦୁଇତିନି ଜଣଙ୍କୁ ତ ଦବେଇ ଦେବି ତାପରେ ଯାଇ ମିଶି ମୋତେ ମାରି ଦେଇପାରୁ ।"

ହୋଲି ଖେଳୁଥିବା ପିଲାମାନେ ନିଜର ପଶୁ ବୃତ୍ତି ଦ୍ୱାରା ସୁଂଘି ନେଲେ ଯେ ଶିକାର ବଳଦ ନୁହେଁ ବରଂ ଏହା ଯୁଦ୍ଧ ସିଂହ । ଛିଦୁ ଆଖି ମିଟମିଟ କରି ମଣ୍ଡପର କାନ୍ଥରୁ ଟିକିଏ ତେରେଛା ହୋଇ ସାଇକେଲ ଉଠାଇ କୁଶଳତାର ସହିତ ଛିଡ଼ା ହୋଇଥିଲା । ଲଫଙ୍ଗାମାନେ 'ହୁର୍ରେ' 'ଲୁଇ' ଇତ୍ୟାଦି ଶବ୍ଦକରି ଓଠକୁ ଗୋଲାଆକାର ଭନ୍ଟ ଭଳି କରି ଦେଖାଇଲେ, ସବୁ ପ୍ରକାରର ଗାଳିଦେଲେ ପିଚକାରୀ ଓ ରଙ୍ଗରେ ଧୋଇଦେଲେ । ଅଖାପକାଇବାର ଉପକ୍ରମ କଲେ । ଛିଦୁ ମଧ୍ୟ ଆଗକୁ ଯାଇ ସେମାନଙ୍କ ମୁଣ୍ଡ ଉପରେ ସାଇକେଲ କଚାଡ଼ିବାର ଭୟ ପ୍ରଦର୍ଶନ କଲା । ରଙ୍ଗର ବର୍ଷାରୁ ନିଜ ଆଖିକୁ ରକ୍ଷା କରି ବାହାରିଲା । ଛିଦୁର ହାତ ବୋଝ ଉପରେ ନଳିତା ବଡ଼ା ଭଳି ବୋଧକରି ସ୍ୱତଃ ଅବନମିତ ହେଲା, ହଠାତ୍ ସ୍ତବ୍ଧ ହୋଇ ଯାଇଥିବା ଉତ୍ତେଜନା ଯୋଗୁଁ, ତଥା ସାଇକେଲର ସୁରକ୍ଷା ନିମିତ୍ତ ତାହାର ହାତ ଯେଉଁଠାରେ ଥିଲା ସେହିଠାରେ ଜଡ଼ ହୋଇଯାଇଥିଲା, ସେ କିଛି ସମୟପାଇଁ ଗଳାରେ ବସିଗଲା ।

ମହିପାଳ ନିଜ ଛାତ ଉପରୁ ଏହି ଦୃଶ୍ୟ ଦେଖୁଥିଲା । ଗତ ପାଞ୍ଚ ଦିନରୁ ବିଶେଷ କରି ଆଜି ସକାଳଠାରୁ ସେ ଏହି ପ୍ରକାରର ଅନେକ ଦୃଶ୍ୟ ଦେଖିସାରିଲାଣି ଓ ଦେଖୁଅଛି । ମଣ୍ଡପ ଉପରେ ଦଳ ବାନ୍ଧି ହୋଲି ଗୀତ ଗାଇ ପାଟିତୁଣ୍ଡ କରୁଥିବା ପିଲାମାନଙ୍କଠାରୁ କୌଣସି ପ୍ରକାର ରକ୍ଷା ପାଇଯାଏ କିନ୍ତୁ ବାହାର ଲୋକଙ୍କ ଉପରେ ତାର କାବୁ ଖାଟେ ନାହିଁ । ସମ୍ଭବତଃ ଏହି ହୋଲି ଗୀତ ମଧ୍ୟରେ ତାର ପ୍ରୌଢ଼ ଶରୀର ଜୀବ୍ୟାତ୍ମକରୂପେ ଭାଗନେଇ ନପାରିଲେ ମଧ୍ୟ, ନବଯୁବକର ମନରେ ରସ ସଞ୍ଚାର ହୁଏ । ହୋଲିରେ ଏହି ରଙ୍ଗ, ଯୁଦ୍ଧ ଏହି ସ୍ୱାଭାବିକ ଓ ଅସ୍ୱାଭାବିକ ଉନ୍ମାଦ ଗାଳି । ଗୁଲୌଜ ସବୁ କିଛି ତାକୁ ଏକ ପ୍ରକାର ଅତ୍ୟନ୍ତ ସ୍ୱାଭାବିକ ଓ ଭଲ ଲାଗେ । ହୋଲିରେ ଏହି ପାଞ୍ଚଦିନ ସମାଜକୁ ଅନୁପ୍ରାଣିତ କରିଦିଏ···ଶ୍ରେଷ୍ଠ ବଡ଼ ସମସ୍ତେ ଏକରଙ୍ଗରେ ରଞ୍ଜି ଯାଆନ୍ତି । ବଡ଼ବଡ଼ ସମ୍ଭ୍ରାନ୍ତ ଓ ପ୍ରତିଷ୍ଠିତ ଯୁବକ ମଧ୍ୟ ଚିରା ଛିଣ୍ଡା ଲୁଗା ପିନ୍ଧି, ରଙ୍ଗ ବିରଙ୍ଗ ମୁହଁ କରି ସଡ଼କ ଉପରେ ଦେଖାଯାଆନ୍ତି । ଅନେକ ରଙ୍ଗରେ ଖେଳୁଥିଲେ ମଧ୍ୟ ସମାଜ ଏକ ରଙ୍ଗରେ ରଞ୍ଜିତ ହୁଏ । ଗଳି, କାନ୍ଥ, କବାଟ, କୁକୁର, ଗାଈ, ବଳଦ, ଗଧ, ଛେଳି ଆଦି ସମସ୍ତେ ରଙ୍ଗୀନ ଦେଖାଯାଆନ୍ତି । ଗଳିର ଚଟାଣରେ କାନ୍ଥରେ ଓ ଲୋକମାନଙ୍କର ମୁହଁରେ ମଦନ ରତିଙ୍କର ଜୋଡ଼ା ଗାଳି ରୂପରେ ନିଜର ବ୍ରହ୍ମାନନ୍ଦ ସହୋଦରରୂପକୁ ସ୍ପଷ୍ଟ କରିଦିଏ—ହୋଲିର ଏହି ଚହଲ ଗିହଳ ମଧ୍ୟରେ କେବଳ ଏହି ଗୋଟିଏ ଜିନିଷ ମହିପାଳକୁ ଭଲଲାଗେ ନାହିଁ । ପୃଥିବୀର ସର୍ବୋତ୍ତମ ସୁଖ ଏଭଳି ଗାଳି-ରୂପେ କାହିଁକି ରୂପାୟିତ ହୁଏ ? କଣ ପୁରୁଷ ନିଜେ ନିଜକୁ ଓ ସ୍ତ୍ରୀକୁ ଏହିଭଳି ଅପମାନିତ କରେ ? ଏଥିରେ ତାକୁ କି ରସ ମିଳେ ? ହୋଲି ରସ ଓ ଶୃଙ୍ଗାରର ଉତ୍ସବ । ସେଥିରେ ଗାଳି କାହିଁକି ଥାଏ ?

ସଜ୍ଜନ ତାଙ୍କର ନିଜ ମାଲିକଠାରୁ ଏହି ପ୍ରସ୍ତାବ ନେଇ ଆସିଥିଲା ଯେ ଲୋକମାନେ ନିର୍ଦ୍ଦିଷ୍ଟ ସମୟ...ସନ୍ଧ୍ୟା ଛଅ ଘଣ୍ଟା ବଦଳରେ ସାତ ଘଣ୍ଟା ବେଳଟାରେ ଆସିଯାଆନ୍ତୁ ଯଦ୍ଦ୍ୱାରା ସମସ୍ତେ ନୌଟଙ୍କୀ ପାଇଁ ଯାଇପାରିବେ ।

ମହିପାଳ ହସି ହସି କହିଲା – ନିଜ ସାହେବଙ୍କୁ କହିବ ଯେ ଆମେ ଶହନଜଙ୍ଗ ରୋଡ଼ରେ ନୁହେଁ ମାଛ ଚଟ ମହଲ୍ଲାରେ ରହୁଁ । ନିଜର ସାହେବଙ୍କୁ ନିଜର ଚେହେରା ଦେଖାଇଦେବ ଓ କହିବ ଯେ କଣ ଏହି ଅବସ୍ଥାରେ ଆମ୍ଭମାନଙ୍କର ମଧ୍ୟ କାମ କରାଇବାକୁ ଚାହୁଁଛ ?

ସୁକର ଲଜ୍ୟାରେ ହସିବାକୁ ଲାଗିଲା । ମହିପାଳ ତାହାକୁ କଣ୍ଟ୍ରୋଲ ପାଖକୁ ଯିବାକୁ ଇଙ୍ଗିତ କଲା । ଶକୁନ୍ତଳାକୁ ଡକାଇ ଆଦେଶ ଦେଲା ଯେ ଛୁନ୍ନୁର ଖାଦ୍ୟପାଇଁ ବ୍ୟବସ୍ଥା କରିବା ଦରକାର, ତାର ଲୁଗାପଟା ପୁରା ଭିଜିଯାଇଛି । ଶୀଘ୍ର ତାକୁ ମହିପାଳର ଗୋଟିଏ ପୁରୁଣା ଧୋତି ଓ କୁର୍ତ୍ତା ଦିଆଯିବା ଦରକାର । କେବଳ ଏତିକି ନୁହେଁ

ମଧୁପାଳ, ଚନ୍ଦ୍ରର ବାହାଦୁରି ପାଇଁ ସନ୍ତୁଷ୍ଟ ହୋଇ ତାକୁ ଦଶଟଙ୍କା ସିନେମା ଦେଖିବା ପାଇଁ ପୁରସ୍କାର ଦେଲେ । ଚନ୍ଦ୍ରର ଚେହେରାରେ ପ୍ରସନ୍ନତା ଖେଳିଗଲା । ମଧୁପାଳ ପୁଣି ଉପରକୁ ଚାଲିଗଲେ ।

ମଧୁପାଳର ଘରେ ଏହି ସମୟରେ ବହୁତ ପରିବର୍ତ୍ତନ ହୋଇଯାଇଥିଲା । ଯନ୍ତ୍ର-ତନ୍ତ୍ର ବୈଭବର ଚମତ୍କାରିତା ପ୍ରସାରିତ ହୋଇଥିଲା । ମଧୁପାଳର ଶ୍ରେଷ୍ଠ ବୈଠକ ଘରୁ ଲେଖାପଢ଼ି ଜିନିଷ ମେଜ, ଚୌକି ଷ୍ଟୁଲ, ଫାଇଲ ଆଦି କେଉଁଆଡ଼େ ଉଭେଇ ଯାଇଥିଲା । ଆର୍ଟ ସ୍କୁଲରୁ ଆସିଥିବା ସାଂଚୀ ଶିଳ୍ପର ଡିଜାଇନ ବାଲା ସୋଫାସେଟ୍, ଖଟ ଉପରେ ପ୍ରିଣ୍ଟ ଚାଦର, ପର୍ଦ୍ଦା, ଏଷ୍ଟ୍ରେ, ଟେବୁଲ ଲ୍ୟାମ୍ପ ବୁଦ୍ଧ ଆଦି ମିଶି, ମଧୁପାଳର ସାହିତ୍ୟିକ ବୈଠକକୁ ଜଣାନାହିଁ କେଉଁଠାରେ ନିକ୍ଷେପ କରିଦେଇଥିଲା । ଲେଖା ପଢ଼ାର ହିସାବ କିତାବ ବର୍ତ୍ତମାନ ଦୁଆରବନ୍ଧ ବାହାରେ ଶ୍ରେଷ୍ଠ ବାରଣ୍ଡାରେ କାଠର ପାର୍ଟିସାନ୍ ଲଗାଇ ତିଆରି ହୋଇଥିବା ଗୋଟିଏ ଶ୍ରେଷ୍ଠ ଘରେ ବସାଯାଇଥିଲା । କୋଠରିଟି ଏପର୍ଯ୍ୟନ୍ତ ପୂର୍ଣ୍ଣ ରୂପେ ତିଆରି ହୋଇ ପାରି ନଥିଲା । ଏଥିପାଇଁ ବହିଭରି ଯାଇଥିବା ବ୍ୟାଗ ଓ କାଠର ସଟା ଗୋଟିଏ ପାଖରେ ରଖାଯାଇଥିଲା । ଉପର ଘରର ଏପରି କିଛି ନିର୍ଦ୍ଦିଷ୍ଟ ପରିବର୍ତ୍ତନ ତ ହୋଇନାହିଁ; ତଥାପି ସୌଖିନତା ଚାରିଆଡ଼େ ବ୍ୟାପିଛି । ହୋଲିର ଉତ୍ସବ ପାଇଁ କିଣା ହୋଇଥିବା ସମସ୍ତ ପରିବାର ବର୍ଗଙ୍କର ମୂଲ୍ୟବାନ ଯୋତା, ଲେଙ୍କର ଶୁ ବଢ଼ିଆ ଡିଜାଇନର ମହିଳା ସେଣ୍ଡଲ ତଥା ଚପଲ ଆଦିକୁ ନେଇ ସାରା ଘରର ଚାକଚକ୍ୟ ଏବଂ । କହି ଦେଉଥିଲା ଯେ ଘରର ଯନ୍ତ୍ର ଜାତକ ବଦଳି ଯାଇଛି । ମଧୁପାଳ ବୈଠକରେ ଛତୁକୁ ପିଲାମାନଙ୍କର ଦାପ୍ତିଦ୍ୱ ପୁଷ୍ଟ ଗାଲକୁ ଦେଖି ଦେଖି ରୋଷେଇ ଘରକୁ ଚାଲିଗଲେ ।

କଲ୍ୟାଣି ଆଜି ବଡ଼ ବ୍ୟସ୍ତ ଥିଲା । ତାକୁ ରୋଷେଇରୁ ଫୁରସତ ନାହିଁ । କାଲି ସମ୍ବନ୍ଧୀମାନଙ୍କ ଘରକୁ ଖାଦ୍ୟ ଯିବ । କଲ୍ୟାଣୀ ଓ ମଧୁପାଳ ପ୍ରଥମ ସମ୍ବନ୍ଧୀ କରିଛନ୍ତି । ତାହା ମଧ୍ୟ ଭଣିଜାର । କଲ୍ୟାଣୀ ସାରା ଦୁନିଆ ଅର୍ଥାତ୍ ସମସ୍ତ କୁଟୁମ୍ବକୁ ବିଶେଷ କରି ମିତ୍ର-ସମ୍ବନ୍ଧୀ, ଜ୍ଞାତିମାନଙ୍କୁ ଏହା ଦେଖାଇ ଦେବାକୁ ଚାହେଁ ଯେ ସେ ମଧ୍ୟ ବଡ଼ଲୋକ । ତାର ପତି ଏତେବଡ଼ ଲେଖକ ଯେ ତାର କୋଡ଼ିଏ ହଜାର ଟଙ୍କାର ଆମଦାନୀ ଗୋଟିଏ ଥରରେ ବ୍ୟାଙ୍କର ଗୋଟିଏ ଚେକ୍‌ରେ ହୁଏ । କଲ୍ୟାଣୀର ଚେହେରାରେ ସୁହାଗର ଜ୍ୟୋତି ବରଷୁଥିଲା । ନାକରେ ହୀରା ନାକଫୁଲ, କାନରେ ମୋତିର କାନଫୁଲ, ଗଳାରେ ସୁନାର ମାଳ, ଅଣ୍ଟାରେ ସୁନାର ଅଣ୍ଟାସୂତା, ହାତରେ କାଚ ଚୁଡ଼ି ସହିତ ସୁନାର ଡାଇମଣ୍ଡ କଟ୍ ବଲ । ଗୋଡ଼ରେ ଘଙ୍ଗୁରି ଲଗା ନୂଆ ସାଞ୍ଜି ଯାହାକୁ ତାର ସୁହାଗ ଦେବତା (ପତି) ଆଗ୍ରହରେ ଆଣିଛନ୍ତି । କଲ୍ୟାଣୀ ଲକ୍ଷ୍ନୌରେ ବାଜପେୟୀ ବଂଶ ସହିତ ସମ୍ବନ୍ଧ ଯୋଡ଼ୁଛି । ଜୁଇଁ

ସେକ୍ରେଟେରିଏଟ୍‌ରେ ୫୦୦/୮୦୦ ର ଗ୍ରେଡର । ବଡ଼ଭାଇ ଜଙ୍ଗଲ ଠିକା ଦିଅନ୍ତି । ଜ୍ୱାଇଁଠାରୁ ଛୋଟ ଏମ୍‌. ଏ ପଢ଼ୁଅଛି । ଶାଶୁ ନଣନ୍ଦ ନାହାନ୍ତି, ତାହା ବଡ଼ ସୁଖର କଥା । ଜ୍ୱାଇଁ ସଂଯୁକ୍ତ ପରିବାରରେ ରହିଲେ ମଧ୍ୟ ଘରଠାରୁ ପରା ସ୍ୱତନ୍ତ୍ର । ଅବଶ୍ୟ ଗୋଟିଏ ଘରେ ରହନ୍ତି, ଗୋଟିଏ ଖାଇବା ସ୍ଥାନରେ ମଧ୍ୟ ବସି ଖାଆନ୍ତି । କିନ୍ତୁ ଭାଇଙ୍କୁ ମାସିକ ଖର୍ଚ୍ଚ ଦେଇଦିଅନ୍ତି । ଘରର ହିସାବ କିତାବରେ ଭାଇମାନଙ୍କ ସହିତ ସ୍ପଷ୍ଟ ଓ ପରିଷ୍କାର ମଧ୍ୟରେ ମିଶି ଯଥେଷ୍ଟ । ଶକୁନ୍ତଳା ଭଗବାନଙ୍କ ଦୟାରୁ ବଡ଼ ସୁଖରେ ଚାଲିଗଲା । ଦୁନିଆଁ କହିବ ଯେ ଦେଖ ବଡ଼ମାମୁଁ-ମାଇଁ ଥାଉଁ ଥାଉଁ ଆମର ଏଭଳି କଷ୍ଟ ଦାୟକ ବିବାହ କରିଛନ୍ତି । । ଜ୍ୱାଇଁ ବଡ଼ ବିବେକୀ । କେବଳ ଦଶହଜାରରେ ମାନିଗଲା । ଆଜିର ମଧ୍ୟ ଦଶହଜାର ଯୌତୁକ ଦେବାବାଲାର ସାହାସ ଓ ସମ୍ବଳ ଦେଖିବା କଥା । ମହିପାଳ ପିଢ଼ା ଉପରେ ବସିଗଲା ଓ ନୂଆ ପାତ୍ରରେ ଭରି ହୋଇଥିବା ସ୍ୱାଦିଷ୍ଟ ଖାଦ୍ୟକୁ ଦେଖିବା ସଙ୍ଗେ ସଙ୍ଗେ ରୋଷେଇ ଘରେ ଥିବା ନିଜର ଘରଣୀକୁ ଯିଏ କି ସ୍ନେହ ଓ ମୋହର ଗହଣାରେ ଗୁଡ଼ି ଯାଇଥିଲା, ସନ୍ତୋଷ ସହିତ ଦେଖିଲା । ମହିପାଳର ଦୃଷ୍ଟିରେ କର୍ତ୍ତା, ପିତାର ସନ୍ତୋଷର ଦର୍ପ ଚମକି ଉଠୁଥିଲା । ରାଜଶ୍ରୀ' ମାକୁ ସାହାଯ୍ୟ କରୁଥିଲା । କଲ୍ୟାଣୀ ନିଆଁ ଆଞ୍ଚରେ ପିଡ଼ିତା ହୋଇ ବ୍ୟଥିତ ଚେହେରାକୁ କଡ଼େଇରେ ଛଣା ଯାଉଥିବା ପାମ୍ପଡ଼ ଆଡ଼ୁ ଫେରାଇ ସ୍ୱାମୀ ଆଡ଼କୁ ନିକ୍ଷେପ କଲା—' କିଏ ଆସୁଛି ?

"ଶାହାଞ୍ଜପ ରୋଡ଼ବାଲା ସମ୍ଭ୍ରାନ୍ତ, ଦୁନିଆଁର ସର୍ବଶ୍ରେଷ୍ଠ ଠିକାର ଶ୍ରୀମାନ ସଜ୍ଜନ ସାହେବ ବାହାଦୁରଙ୍କ କୋଠିରୁ ଚପରାସୀ ଆସିଛି । ମହିପାଳ ଏପରି ଢଙ୍ଗରେ କହିଲା ଯେ, ଯଦ୍ୱାରା ମା' ଝିଅଙ୍କର କ୍ରୋଧ ମଧ୍ୟ ତୃପ୍ତ ହୋଇଗଲା । ସେମାନେ ଖିଲ ଖିଲ ହୋଇ ହସିଉଠିଲେ ।

କଲ୍ୟାଣୀ ପଚାରିଲା-କଣ ହୁକୁମ ଆସିଛି ?

କଣ ନିମନ୍ତ୍ରଣ କେନ୍‌ସଲ ହେବ ?

ମହିପାଳ ହସିଲା, କହିଲା—ନା, ଡବଲ ହେବ । ଛଅଟାରେ ଆମେ ନୌଯାତ୍ରା କରିବୁଁ, ଗ୍ରୁପ୍‌-ଜଳଖିଆ ପ୍ରୋଗ୍ରାମ ରହିବ ଓ ରାତ୍ରି ଭୋଜନ ପରେ ଏଲଫିନଷ୍ଟନରେ 'ସଂସାର' ଦର୍ଶନକୁ ପୂର୍ବ ନିଷ୍ପତ୍ତି ଅନୁସାରେ କରା ହୋଇଛି ।

'ସଂସାର' ପୁଣି ପିକ୍‌ଚର ଲେଖା' । ରାଜଶ୍ରୀ ମୁହଁ ବିକୃତ କରି କହିଲା—" ବାପା ଆମେ ସମସ୍ତେ ବୋର ହୋଇଯିବା । ସପୁରର ଅପିଲ ଅଛି ବାପ୍‌ । ଏତେ ବଡ଼ ଆର୍ଟିଷ୍ଟର ସ୍ତ୍ରୀ, ଏତେ ପ୍ରଗତିଶୀଳା ହୋଇ ମଧ୍ୟ ଖୁଡ଼—"

“ଖୁଡ଼ୀ ଏହାପାଇଁ ଦୋଷ ନୁହଁନ୍ତି, ତୁମ ମା ଓ ତୁମର କଣ୍ଟ୍ରୋଲ ଖୁଡ଼ୀ ଦୁଇଜଣଙ୍କର ନଷ୍ଟାମି ପଡ଼ୁଛି ।”

ଏହାଠାରୁ ବରଂ ଭଲ ହୁଅନ୍ତା, ଆମେ ‘ବାହାର’ ଦେଖନ୍ତୁ । ‘ନାଗନାଥ ଯେଭଳି ସାପ ନାଥ, ‘ବାହାର’ରେ କଣ ପ୍ରାଗ୍ରେସିଭ୍‌ଜମ୍ ଅଛି ମହୀପାଳ ଝିଅକୁ ମିଠାକଡ଼ା ସହିତ କହିଲା—ଅନ୍‌ନେଚୁରାଲ, ଅଶ୍ଳୀଳ ପିକ୍‌ଚରଗୁଡ଼ାଏ ଆସୁଛି । ଏ ଦୃଷ୍ଟିରୁ ଦେଖିଲେ ‘ବାହାର’ ଅପେକ୍ଷା ‘ସଂସାର ଲକ୍ଷେ ଗୁଣରେ ଭଲ ।’

ରାଜଶ୍ରୀ ଚୁପ ରହିଲା । ଥାଳୀରେ ଛଣା ପାମ୍ପଡ଼କୁ ଡବାରେ ଭର୍ତ୍ତି କରିବା ସମୟରେ ତାର ଟିକିଏ ଅନ୍ୟମନସ୍କତା ପାଇଁ ହାତ ହଲିଯିବାରୁ ୨।୩ ଖଣ୍ଡ ପାମ୍ପଡ଼ ତଳେ ପଡ଼ିଗଲା । ଛଣାଯାଇଥିବା ପାମ୍ପଡ଼କୁ ଅନ୍ୟ କରେଇରେ ପକାଇବା ସମୟରେ କଲ୍ୟାଣୀର କର୍ମ ସଂଲଗ୍ନ ଦୃଷ୍ଟି ଝିଅର ଅନ୍ୟମନସ୍କତା ଉପରେ ପଡ଼ିଲା । ସେ ଟିକିଏ ଝିଙ୍କାରି ଉଠି କହିଲା—ମୁଁ ଅନ୍ୟ ମନସ୍କ ହେଲେ କୌଣସି କାର୍ଯ୍ୟ ସୁରୁଖୁରୁରେ ହୋଇପାରେ ନାହିଁ ରଙ୍କୋ, କାମ କରିବାକୁ କଣ ଇଚ୍ଛା ହେଉନାହିଁ ?

‘ପଡ଼ିଗଲା ମା ’ ରଙ୍କୋ ଟିକିଏ କାନ୍ଦ କାନ୍ଦ ହୋଇ କହିଲା ଓ ତଳେ ପଡ଼ିଯାଇଥିବା ପାମ୍ପଡ଼କୁ ଉଠାଇ ଡବାରେ ରଖିବାକୁ ଲାଗିଲା । “ସହିଇ ଦେଖ ହେଇ ଦେଖ୍, ତୋର ଟିକିଏ ହେଲେ ଅକଲ ନାହିଁ, ମାଟିରୁ ଉଠାଇ—”

“ଏଥିରେ କଣ ହୋଇଗଲା ମା ? ଏ ସ୍ଥାନ ତ ଧୋଆ ଯାଇଛି ।”

“ରଙ୍କୋ ଏଠୁ ଗଲୁ ତୋ କାମ ମୋତେ ଭଲ ଲାଗୁନାହିଁ ।

“କଲ୍ୟାଣୀର କଥା ପୂରା ହେବା ପୂର୍ବରୁ ରାଜଶ୍ରୀ ଥାଳୀକୁ ଜୋରରେ ମାଟି ଉପରେ କଚାଡ଼ି ଦେଇ କୋଠରୀରୁ ଏକାବେଳକେ ଅନ୍ତର୍ଦ୍ଧାନ ହୋଇଗଲା । ମହୀପାଳ ମା’ ଝିଅଙ୍କ ଯୁଦ୍ଧରେ କିଛି କହିଲା ନାହିଁ ।

ରଙ୍କୋ ଚାଲିଯିବା ପରେ ପତ୍ନୀକୁ କହିଲା—“କଲ୍ୟାଣୀ” ତୁମର ସମସ୍ତ ଧର୍ମ ସତ୍ୟ ଯୁଗୀୟ । ଏ ସମୟରେ ତାହା ଚାଲିବ ନାହିଁ ।”

“ଯାହାର ଦ୍ୱାରା ଚାଲୁ ନଚାଲୁ, ମୁଁ ମୋର ମର୍ଯ୍ୟାଦା ଛାଡ଼ିବ ନାହିଁ ।”

“ନ ଛାଡ଼, ନ ଛାଡ଼ ପ୍ରିୟେ : “ନିଜର ଗମ୍ଭୀର ଦୀର୍ଘ ନିଶ୍ୱାସକୁ ପରିହାସର ଜାମା ପିନ୍ଧାଇ ମହୀପାଳ କହିଲା—“ ହୁଏତ : କଣ କହିବ, ତୋର ଏହି ଧର୍ମ ମୋର ସମସ୍ତ ଧର୍ମକୁ ଜେଇଗଲା ।” କହୁ କହୁ ହଠାତ୍ ମହୀପାଳର ପରିହାସ, ଗମ୍ଭୀର ତାର ହିମାଳୟରେ ଦ୍ରବୀଭୂତ ହେଲା । କୌଣସି ଗଭୀର ବେଦନାର ମର୍ମନ୍ତୁଦ ଭାବନା ତାର ଚେହେରାର ଉପରେ ପ୍ରତିଫଳିତ ହେଲା । ତାର ଚକ୍ଷୁ ବନ୍ଦ

ହୋଇଗଲା । କ୍ଷଣକ ପାଇଁ ସେ ବାତାବରଣରୁ ବହିର୍ଭୂତ ହୋଇ ନିଜ ମଧ୍ୟରେ ତନ୍ମୟ ହୋଇଗଲା ।

"ଆହା—କାଣ ତୁମର ଧର୍ମ ? ତୁମର ଅଭ୍ୟାସ, ପୁଅ-ଝିଅଙ୍କ ମଧ୍ୟରେ ଆସିଛୁ । ମୁଁ କହୁଛୁ ଯେ ଶକୁନ୍ତଳା ଆମର ବଢ଼ ବୁଝିବା ଝିଅ । ଯେଭଳି ଆସୁର ବସୁର ଶିଖାଅ—"

ହଃ ହଃ ହଃ ତୁମ ଆଗରେ ଶକୁନ୍ତଳା ପକ୍କା ବ୍ରାହ୍ମଣୀ ହୋଇଯାଉ, ତାର ଶ୍ୱଶୁର ଘରେ ମଧ୍ୟ ଧର୍ମର ଶକ୍ତି ଅଧିକ । ବାଜପେଈ କାନ୍ଥ ବ୍ରାହ୍ମଣ ନୁହନ୍ତି । ହଃ ହଃ ହଃ ।

ନ ହେଲେ ନାହିଁ, ମୁଁ ବା କ'ଣ କରି ପାରିବି । ଶାସ୍ତ୍ରରେ ଲେଖା ଯାଇଛି କଳି ଯୁଗରେ ଏ ସବୁ ଭ୍ରଷ୍ଟାଚାର ଓ ମିଥ୍ୟା ବ୍ୟାପିଯାଏ । ତୁମ ଭଳି ଉମାଶଙ୍କରର ଖାଇବା ପିଇବାରେ କିଛି ବାଛ ବିଚାର ନାହିଁ ।

ମହୀପାଳ ଗମ୍ଭୀର ହୋଇଗଲା, କହିଲା—"ଉମାଶଙ୍କର ବଡ଼ ସଚ୍ଚରିତ୍ର ପିଲା । ମୁଁ ପ୍ରତ୍ୟେକଙ୍କଠାରୁ ତାର ପ୍ରଶଂସା ଶୁଣିଛି । ତା'ର କାଲର ମଧ୍ୟ ହୋଟେଲ ଦୋକାନ ଆଦି ଚାଲିଛି ।

"ଶିବ ଶଙ୍କରର ଘରଣୀ—"

"ହଁ, ତୁମଭଳି ତ ନୁହେଁ କାନ୍ଥ ବ୍ରାହ୍ମଣୀ । ହଃ ହଃ ସମ୍ବନ୍ଧ କରିବା ପୂର୍ବରୁ ସାଧାରଣ କନ୍ୟାବାଲା ସବୁ ବୁଝିବା ଭଳି ମୁ ଶିବଶଙ୍କରଙ୍କୁ ସବୁ ପଚାରିଛି । ମୁଁ ମୋର କୌଣସି ପିଲାର ସମ୍ବନ୍ଧ ଏଭଳି ପରିବାରରେ କେବେହେଲେ କରିବି ନାହିଁ, ଯେଉଁ-ଘରେ ତୁମ ଭଳି ପ୍ରାଚୀନ ପନ୍ଥୀର ରାଜତ୍ୱ ଚାଲିଛି ।"

"ନ କର, ବାସ, ଆମକୁ ଦୁଇଟି ଜିନିଷଦରକାର । ସମ୍ବନ୍ଧ ଖରାପ କୁଳରେ ନ ହେଉ ଏବଂ ଲୋକ ଭଲ ହୁଅନ୍ତୁ ମୁଁ ତ ତୁମକୁ କହୁଛି ବାସ ଆମର ଏତିକି ଦରକାର । ଆମର 'ବଡ଼ ର' ଓ ରକ୍ଷୋର ସମ୍ବନ୍ଧ କ'ଣ ଶୀଘ୍ର ହୋଇସିବ, ଆମେ ଦେଖାଇବାକୁ ଚାହୁଁ ଯେ କେବଳ ଗଣ୍ଟି ବଡ଼ ଲୋକ ନୁହେଁ । ତୁମକୁ ସତ କହିବି, ଆଜି ଏ ସମୟରେ କୋଡ଼ିଏ ହଜାର ଟଙ୍କା ପଠାଇ···ଭଗବାନ ଆମର ମାନ ରଖିଲେ କ'ଣ କହିବ ? ଦଶହଜାରର ଯୌତୁକ କିଛି ଶ୍ରେଷ୍ଠ କଥା ନୁହେଁ ।

ମହୀପାଳ ବଡ ରସମଗ୍ନ ହୋଇ ସ୍ତ୍ରୀର କଥା ଶୁଣୁଥିଲା । କଲ୍ୟାଣୀ କେତେ ଦର୍ପପୂର୍ଣ୍ଣ ସ୍ୱରରେ କହୁଅଛି । 'ମୁଲର ର ମା' ଥରେ ବଡିଆଣ କରି କହୁଥିଲା, ମହୀପାଳ କିଶୁସ୍ୱ ବଡ଼ଲୋକ କାନ୍ତୁ ପଇସାରେ ବଡନୁହେଁ ।" ତା ସହିତ କେଇ ଭଲ ଘରବାଲା ସମ୍ବନ୍ଧ ଯୋଡ଼ିବ । କଲ୍ୟାଣୀ ଠାରୁ ଏକଥା ଶୁଣି ମହୀପାଳ ମନରେ ତୀବ୍ର ବେଦନା ଯାଡ଼

ହୋଇଥିଲା । ସେହି 'ମୁଲୁର'ର ମା ଏବେ ପୁଣି ଚର୍ଚ୍ଚାକୁ ଆସିଲା । ମହିପାଳର ଉତ୍ସୁକତା ବହୁତ ବଢ଼ିଗଲା । କଲ୍ୟାଣୀକୁ କହିଲା "ମଲ୍ଲରର ମା କଣ କହୁଥିଲା ?"

"କ'ଣ ଅବା କୁହନ୍ତା, ତାକୁ ଦେଖିବା କ୍ଷଣି ମୁଁ ଯାହା ତାହା କିଛି କଥା ଆରମ୍ଭ କରିଦେଲି, ଆଉ— କହିଲି ଅନ୍ୟର ବଡ଼ ପଣିଆ, ବେଇମାନ ଠକେଇ, ଜାଲ ଜୁଆଚୋରିର ଉପରେ ପ୍ରତିଷ୍ଠିତ—ମୁଁ କହିଲି ଆଜି ଆମଘରେ ତାର ବଡ଼ ପଣିଆକୁ ଧର୍ମ ଓ ତପସ୍ୟା ଉପରେ ରଖି ପାରିଛୁ । ଆମର ବ୍ୟାଙ୍କରେ ଏହି ଲକ୍ଷେ ଦୁଇଲକ୍ଷ ଜମା ଅଛି କିନ୍ତୁ ଈଶ୍ୱରଙ୍କ ଦୟାରୁ ଆମେ ଯେତେବେଳେ ଯାହା ଚାହୁଁଛୁ ସେତେ ଆମ ଘରକୁ ଆସି ଯାଉଛି । ଦଶହଜାର ଶକୁନ୍ତଳାକୁ ଦେଇଛୁ –" କହୁ କହୁ କଲ୍ୟାଣୀ ଭାବ ପ୍ରବଣତାର ସହିତ ଆନନ୍ଦରେ ଫୁଲି ଉଠିଲା । ଟିକଏ ରହିଗଲା, ସବୁ ପାମ୍ପଡ଼ ଛଣା ସରିଥିଲା, ପାଖରେ ରଖା ଯାଇଥିବା ଗାମୁଛାରେ କରେଇ ଧରି ଉଠାଇ ରଖିଲା, ପିଢ଼ା ଉପରେ ଅଧ ମିନିଟ୍ ବସି ମୁହଁ ପୋଛି ଆସ୍ୱସ୍ତିରେ ନିଶ୍ୱାସ ମାରିଲା । ମହିପାଳର ଉତ୍ସୁକତା ବଢ଼ିଯାଇଥିଲା । ତାହାର ଚେହେରା ପ୍ରକାଶ ଓ ଗ୍ରୀବାର ଯୋର ଦୌଡ଼ରେ ଅଙ୍କ ଯାଇଥିବା ଭଳି ଦେଖା ଯାଉଥିଲା, ପ୍ରଶଂସା ସହିତ ସମ୍ବଳିତ ଉତ୍ସୁକତା ଦ୍ୱାରା ନିଜକୁ ଆନନ୍ଦ ଓ ଫୁର୍ତ୍ତିରେ ରଖି ପଚାରିଲା—'ଝୁଲୁର'ର 'ମା' ତା ପରେ ପୁଣି କହିଲା ? ଆଉ କେଉଁ କେଉଁମାନେ ଥିଲେ ।"

"ସମସ୍ତେ ଥିଲେ ।" ଛଣା ଯାଇଥିବା ଗଜାର ଥାଳିକୁ ନିଜ ଆଡ଼କୁ ଟାଣିଆଣି ସେବୁଡ଼ିକୁ ଚିନିର ସିରାରେ ପାଗ କରିବାର ପ୍ରକ୍ରିୟା କରି କଲ୍ୟାଣୀ କହିଲା, ଜୈବ ଯୋର ମା ଥିଲା, ତାର ଭାଉଜ, ତାର ଘରଣୀ ମୁଁ ବା ଉତ୍ତର କାହିଁକି । ମୁ ଆହୁରି କହିଲି, ଯେଉଁ ମର୍ଯ୍ୟାଦା ଆମକୁ ମିଳିଛି ଆଉ କାହା ଭାଗ୍ୟରେ ଜୁଟିବନି । ମୁଁ ତ ବହୁଦିନରୁ ତୁମମାନଙ୍କୁ ଜାଣିଛି । ଆଉରି ସୁବିଧାପାଇ ମୋ ମନରେ ଯାହାଥିଲା ସବୁ କହିଲି – ଅନ୍ୟର ଏକ ମହଲ ଦୁଇ ମହଲା, ବିଳାସ ବ୍ୟସନ ଆଜି କେବଳ କେତେ ବର୍ଷ ପାଇଁ କିନ୍ତୁ ଆମ ଘରର ମର୍ଯ୍ୟାଦା ଯେତେବେଳେ ସମସ୍ତ ବଢ଼ି ଚାଲିଛି ସେହି ପରିମାଣରେ ବଢ଼ିଚାଲିଛି । ମୁଁ କହିଲି ଏହି ସହରକୁ ବହୁତ ବଡ଼, ଜ୍ଞାତ ଧନୀ ଡାକ୍ତର ଓ ଓକିଲ ଆସିଛନ୍ତି କିନ୍ତୁ ଏମାନଙ୍କୁ ବାହାରେ କେହି ଚିହ୍ନନ୍ତି ? ମୁଁ କହିଲି, ଆମ ଘରର ଲୋକଙ୍କର ଦେଶ ବିଦେଶରେ ନାମ ଅଛି । ବଡ଼ବଡ଼ ଅଫିସର, ବଡ଼ଲୋକମାନେ ଆମ ଘରର ସମସ୍ତଙ୍କୁ ଜାଣନ୍ତି । ଆମ ଘରର ବହି ପଢ଼ନ୍ତି । ଆମ ଘରର ଲୋକଙ୍କ ସହିତ ଅନ୍ୟମାନେ କେଉଁ ଗୁଣରେ ସରି ହେବେ ? ଗଜାଗୁଡ଼ିକୁ ଚିନି ସିରାରେ ପକାଇଲା ।

ମହିପାଳ ଖୁବ୍ ଆନନ୍ଦିତ ହେଉଥିଲା, କହିବା ଉଚିତ ଯେ, କଲ୍ୟାଣୀର କଥାରେ ପ୍ରଶଂସାର ମଦିରା ପାନ କରୁଥିଲା । ସେ କହିଲା ତୁମକୁ ଏଭଳି କଥା ନିଜ, ନିଜର ମୁହଁରେ କହିବା ଉଚିତ ନୁହେଁ, ପାଗଳୀ ।

କାହିଁକି ବା ନ କହିବ ? କଲ୍ୟାଣୀ ଟିକିଏ ହଲିଯିବାରୁ ତାର ଗହଣା ଝଣ ଝଣ ବାଜି ଉଠିଲା ଈଶ୍ୱର ଯଦି ଆମ କଥା ଶୁଣନ୍ତି, ତୁମର ଏପରି ରୋଜଗାର ହେବ, ଝିଅର ବିବାହପାଇଁ ଯୌତୁକର ଚିନ୍ତା ରହିବ ନାହିଁ । ତା ପରେ ଆଉ ଦୁଇ ବର୍ଷର ମୋଟର ବଙ୍ଗଳା ସବୁ କିଛି ଆମେ ଦେଖାଇ ପାରିବୁ ।

ମହିପାଲ ପ୍ରେମ ରସରେ ରୋମାଞ୍ଚିତ ହେଲା । ତାକୁ ଛୁଇଁବାକୁ ବାରଣ କରିବାକୁ ଯାଇ ଧୀରେ ଧୀରେ ପ୍ରେମ ପୂର୍ଣ୍ଣ ବେପ୍ଥୁବ୍ଧର ସ୍ୱରରେ କଲ୍ୟାଣୀ କହିଲା ମୋତେ ଛୁଅଁ-ନାହିଁ—ଆରେ ଆରେ କେହି ଆସିଯିବେ ।

ସତକୁ ସତ ଶକୁନ୍ତଳା ଆସିଗଲା, ମହିପାଲ ଠିଆ ହୋଇ ସାରିଥିଲା, ଭଉଣୀକୁ ଦେଖି ଅଳସ ଛାଡ଼ିବାର ବାହାନା କରିବାକୁ ଲାଗିଲା ପୁଣି ଶକୁନ୍ତଳାର ମୁଣ୍ଡକୁ ଦୁଇ ହାତରେ ଚିପିଧରି ସ୍ନେହରେ କହିଲା—"ତୁ ତୋର ଶଶୁର ଘର ପାଇଁ ମିଠେଇ କାହିଁକି କରୁନାହୁଁ ? ଶକୁନ୍ତଳା ଲଜ୍ଜିତା ହେଲା, ମହିପାଲ ଦୁଆର ଆଡ଼କୁ ଯାଉଁ ଯାଉଁ ତାକୁ ପଚାରିଲା—'ସଜ୍ଜନର ବୁଢ଼ୀର ଗଲାଣି ?'

'ହଁ ଅନେକ ଆଗରୁ ଗଲାଣି ।'

ଦୁଆର ପାଖରେ ପହଞ୍ଚି ସେ ପୁଣି କଲ୍ୟାଣୀକୁ କହିଲା—'କାମ ଶୀଘ୍ର ସାରିଦେବ ବୁଝିଲ ।' ମହିପାଲ ଛାତ ଉପରକୁ ଆସିଗଲା । ଶିବାଳୟର ମଣ୍ଡପ ଉପରେ, ବୁଥର ଚଟାଣରେ ବିଭିନ୍ନ ପ୍ରକାର ରଙ୍ଗରେ ଜଡ଼ସଡ଼ ହୋଇଥିବା ପାଞ୍ଚ ସାତ ଜଣ ପିଲା ହସ ଖୁସିରେ ମଜା କରୁଥିଲେ । ଦୁଆର ଆଡ଼କୁ ବୁଲିଯାଇ ମହିପାଲ ରହିଗଲା । ଜଣେ ପିଲା ଜୋରରେ ହସି ହସି କହୁଥିଲା ଯେ ସେ କେମିତି ତା'ର ନଜର ଦୁଇ ଉନଜଣ ସାଥୀଙ୍କ ସହିତ ଗୋଟିଏ ମାଲୁଣୀକୁ ଘେରଉ କଲା । ସେ କପରି ଲଜ୍ଜିତ ହୋଇଥିଲା, କମିତି ମଜା ହେଲା । ପୁଣି କପରି ସେମାନେ ସେହି ମାଲୁଣୀକୁ ଖୁସି କରାଇଲେ ଆଦି କଥା ସେ ଓ ମଝରେ ମଝରେ ତାର ସାଥି ମଧ୍ୟ ସମସ୍ତଙ୍କୁ ଶୁଣାଉଥିଲେ ।

ସମସ୍ତଙ୍କୁ ମଜାଲାଗୁଥିଲା । ମହିପାଲକୁ ମଧ୍ୟ ମଜାଲାଗୁଥିଲା, କିନ୍ତୁ କଥା ଖରାପ ଲାଗୁଥିଲା । ପ୍ରକୃତରେ ହୋଲି ଗୋଟିଏ ମଦନ ପର୍ବ । ଫାଲଗୁନର ମାହାତ୍ମ୍ୟହିଁ କାମର ମାହାତ୍ମ୍ୟ । ନଜର ଉଆର ହେଉଥିବା ଉପର ଘରେ, ଯେଉଁଠି ଆଜିକାଲି ତାର ଅସ୍ଥାୟୀ ଲେଖାପଢ଼ା ଘର, ତକିଆ ଉପରେ ଶୋଇଥିବା ମହିପାଲ ବିଚ୍ଛିରମନାଥିଲା ।

ଶୀଳା ମନର ଝରକାରେ ଦେଖାଗଲା । ମହିପାଲକୁ ବୋଧହେଲା, ଯେପରି କେଉଁଠାରୁ ଅତରର ସୁଗନ୍ଧ ଆସି ତାର ବାତାବରଣରେ ଖେଳିଗଲା । ମହିପାଲର ଶାନ୍ତ,

ବ୍ୟବସ୍ଥିତ ମନରେ ହଠାତ୍ ଭୂକମ୍ପନ ସୃଷ୍ଟି ହେଲା । ହୋଟେଲର ଦିନ କିନ୍ତୁ ଶୀଳା ତା ପାଖରେ ନାହିଁ । ତାଠାରୁ ଶୀଳାକୁ ଛଡ଼ାଇ ନିଆଯାଇଛି । ମହିପାଳକୁ ଶୀଳାର ଜ୍ୟୋଢ ମନେ ପଡ଼ିଲା । ଲେକଭ୍ୟୁର ଓ ନୈନିତାଲର ଉଚ୍ଚ ଚୌହଦି ମଧ୍ୟରେ ଶୀଳା ଅବଶ ହୋଇ ପ୍ରବେଶ କରୁଥିଲା । ମନରେ ହଁ—ନାଁର ଦ୍ୱନ୍ଦ ଥିଲା । ନା—ନା କରି ଶୀଳା ମନ ହୃଦୟରେ ମିଶିଗଲା । ଶୀଳା କେତେ ଦୁଃଖିତା ହେଉଥିବା ଗତବର୍ଷ ଆଜିର ଏହି ହୋଟେଲ ଦିନରେ ଦୁହେଁ ଏକା ସାଙ୍ଗରେ ଥିଲେ । ଶୀଳା ସହିତ କଟିଥିବା ବର୍ଷ, ଦିନ, ଘଣ୍ଟା ହଠାତ୍ କ୍ଷଣକ ମଧ୍ୟରେ ବ୍ୟାପି ଯାଇ ତାକୁ ସେହି ଶାନ୍ତି ଦେବାକୁ ଲାଗିଲେ ଯାହା ଅସଂଖ୍ୟ ତାରକା ଖଚିତ ଆକାଶକୁ ଦେଖି ହେଉଥିଲା । ଶୀଳା ଡାକ୍ତର, ଶୀଳା ସିଙ୍ଗ—ସହରର ଏକ ପ୍ରଖ୍ୟାତ ପ୍ରତିଷ୍ଠିତା ମହିଳା । ଦେଶର ଜଣେ ପ୍ରଖ୍ୟାତ ପ୍ରତିଷ୍ଠିତ ସାହିତ୍ୟିକ ମହିପାଳ ଶୁକ୍ଳଙ୍କୁ ନିଜ ପ୍ରଦେଶର ସରକାରୀ ଉତ୍ସବକୁ ନିମନ୍ତ୍ରଣ ମିଳେନାହିଁ । କିନ୍ତୁ ଡା: ଶୀଳା ସିଙ୍ଗ ସହରର ବଡ଼ବଡ଼ ସମାଜରେ ଆଦର ପାଏ । ଶୀଳା ପାଖରେ ଲକ୍ଷେ ଦେଢ଼ଲକ୍ଷ ଟଙ୍କା ଅଛି । ଚମତ୍କାର ମୂର୍ତ୍ତି, ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ରହି ମଧ୍ୟ ଶୀଳା ତା ପ୍ରତି ହାଦକ ବନସ୍ତ ଶୀଳା । ଶୀଳା ତାର ଆଦର କରେ । ସାଇନ୍ସ ଲୋକ ବିଶେଷ କରି ସାହିତ୍ୟ ଓ କଳା ପ୍ରତି ରସହୀନ ହୁଅନ୍ତି କିନ୍ତୁ ଶୀଳା ରସବତୀ । ବିରୋଧରେ କ୍ଷଣ ମଧ୍ୟ ଆସିଛି । କିନ୍ତୁ ଶୀଳା କେବେହେଲେ ବିରୋଧକୁ ବଢ଼ିବାକୁ ଦେଇନାହିଁ । ସେହି ଶୀଳା ସହିତ ଆଜି ସେ ବିରୋଧ କରୁଅଛି ।

ମହିପାଳର ଭଲମନ୍ଦ ଘରବାଡ଼ି ସୁଖ ସମୃଦ୍ଧିରେ ଭରପୂର ମନ ଶୀଳାର ଧ୍ୟାନରେ ବିକଳ ହୋଇ ଉଠିଲା ।। ଅବେ ଶୀଳା ଘରକୁ ଯାଇ ହୋଟେଲକୁ ରଙ୍ଗମସ୍ତୀ କରିବା ପାଇଁ ତା'ର ମନ ଚଞ୍ଚଳ ହେବାକୁ ଲାଗିଲା । ସେ ଭିବ, ସମାଜର ଭୟ କେତେ କେଉଁ କେଉଁ କଥାରେ ମାନିବାକୁ ପଡ଼ିବ ? ସମାଜର ଦୃଷ୍ଟିକୁ ଉପେକ୍ଷା କରି ମଧ୍ୟ ଏ ସମ୍ପର୍କ ସ୍ଥାୟୀରୂପେ ରଖାଯାଇପାରେ । ଏ ପର୍ଯ୍ୟନ୍ତ ସେ ସତର୍କ ରହିନାହିଁ, ବାସ୍ତ ଏଥିପାଇଁ ଦୁନିଆଁରେ ତାର ବଦନାମୀ ବ୍ୟାପିଗଲା ନଚେତ୍ ଟୋକୀକୁ ତ ଇଚ୍ଛା ଅନୁସାରେ ଜୀବନ ତମାମ ଲୁଚାଇ ରଖାଯାଇପାରେ । ମହିପାଳ ଶୀଳା ସହିତ ମିଶିବାର ତୀବ୍ର ଅଭିଳାଷ ପାଇଁ ଉଚ-ନିଚ ସବୁ କୋଠରୀରୁ ବାହାରକୁ ବାହାରିଲା । ଗ୍ରୁତତଳେ ଦୋମହଲାରେ ପିଲାମାନେ ଖେଳୁଥିବାର ଦୃଷ୍ଟି ଗୋଚର ହେଉଥିଲା । କଲ୍ୟାଣୀ ମଧ୍ୟ ବେସିନରେ ହାତ ଧୋଇ ପୋଛୁ ହେଉହେଉ ସେପଟେ ଘରର ବାରଣ୍ଡାରୁ ବାହାର ନିଜ ଘରକୁ ଯାଉଥିବାର ଦୃଷ୍ଟି ଗୋଚର ହେଲା । ତାକୁ ଦେଖି ମହିପାଳର ସମସ୍ତ ସ୍କିମ୍ ଗୋଳମାଳ ହୋଇଗଲା । 'ନା' ବର୍ତ୍ତମାନ ଶକୁନ୍ତଳାର ବିବାହ କରିବାକୁ ହେବ । ବନ୍ଧୁମାନେ ଆସିବେ । ମୁଁ ବର୍ତ୍ତମାନ ଏକୁଟିଆ ନୁହେଁ ···ସ୍ୱାଧୀନ ନୁହେଁ । ମୋତେ ନିଜର ଇଚ୍ଛା ଓ ପ୍ରେରଣାକୁ ତ୍ୟାଗ କରିବାକୁ ହେବ ।

ସ୍ୱୟଂ ଆରୋପିତ ପ୍ରତିବନ୍ଧର ବିଶ୍ଳେଷରେ ତାର ମନ ଶୀଳା ପାଇଁ ଦୁଃଖରେ ଶୂନ୍ୟ ହେଉଥିଲା...ଓ ତାଙ୍କ (ଡୋଗ୍ରାର) ଏହା ମଧ୍ୟ ବୋଧ ହେଉଥିଲା ଯେ ତାହାର ଏହି ଶୂନ୍ୟତା କେବଳ ଶୂନ୍ୟ, ଏଥିରେ କୌଣସି ବେଦନାହିଁ...ନିଜର ନୁହେଁ...ଶୀଳାର ନୁହେଁ...କମଳା କଲ୍ୟାଣୀ ଓ ପିଲାମାନଙ୍କର ନୁହେଁ । ତାର ଅନୁଭୂତିର ସ୍ରୋତଉପରେ ଯେପରି ଏକ ବହୁତ ବଡ଼ ପଥର ଚାପା ପଡ଼ିଛି । ଏ ସମସ୍ତ ବିଷୟ କେବଳ କଳ୍ପନା ଦ୍ୱାରା ଅନୁଭବ କରାଯାଇଅଛି । ତାହା ଶୂନ୍ୟ, ତାହା ଶୂନ୍ୟ, ଶୂନ୍ୟ, ଶୂନ୍ୟ ।

# ଚାଳଣ

ଡାଃ ଶୀଲା ସଙ୍ଗ ବାଇଜଲ ଜୀବନୀ ପଢୁଥିଲା, ଚକ୍ଷୁ ଦେଇ ବହି ବନ୍ଦକଲା । ଅବଦୁଲ ପଲଙ୍କକୁ ଲଗାଇ 'ଚା' ଟେବୁଲ ଉପରେ ରଖିସାରି ଛିଡ଼ା ହୋଇଥିଲା । ଶୀଲାର ଚେହେରା ମଳିନ ଓ ଉଦାସ ଦେଖାଯାଉଥିଲା । ଉଠି 'ଚା' ପିଇବାକୁ ମଧ୍ୟ ତାକୁ କଷ୍ଟ ହେଉଥିଲା, ତଥାପି ସେ ଉଠିଲା, ବସିବସି ଧୀରେ ଧୀରେ ହାଇ ମାରିଲା ଓ ଅଳସ ଛାଡ଼ିଲା । ଏକାଜେଫ 'ଚା' କେଟଲିରୁ 'ଟି - କୋଜି' ବାହାର କରି ରଖିଦେଲା । କେଟ୍‌ଲିକୁ ଧରି 'ଚା' ତିଆରି କରିବାକୁ ଲାଗିଲା ।

"ଯାଅ ଏଠୁ, ମୁଁ ତିଆରି କରିନେବି ।" ଅବ୍ଦୁଲ ବି ହାତ କାଢ଼ିନେଇ ଛିଡ଼ା ହୋଇଗଲା..." ସନ୍ଧ୍ୟାରେ କଣ ଖାଇବା ତିଆରି ହେବ ମେମ୍ ସା'ବ୍ ? କେହି ଆସିବାର ଅଛନ୍ତି ?

'ନା'...ଶୀଲା । ଦ୍ୱିପ୍ରହରର ଅଳସ ଛାଡ଼ିଲା ଓ ଖୋଲା ମୁହଁରେ ହାତ ଲଗାଇ ଲଗାଇ କହିଲା... "ଯାହା ଇଚ୍ଛା ତାହା କର ।"

ଅବ୍ଦୁଲ ଚାଲିଗଲା । ଶୀଲାର ନିସ୍ତେଜ ହାତ ଯେନତେନ ପ୍ରକାରେ 'ଚା' ତିଆରି କରିବାକୁ ଲାଗିଲା । ହୋଲି ଦିନରେ ମଧ୍ୟ ମହିପାଲର କଥା ତାର ମନେପଡ଼ୁଥିଲା । ମହିପାଲର ବିଚ୍ଛେଦରେ ଷଡ଼ବିଂଶ ବର୍ଷୀୟା କନ୍ୟା ଶୀଲା ନିଜେ ନିଜକୁ ବୃଦ୍ଧା ପରି ଅନୁଭବ କରୁଥିଲା । ତା ଜୀବନର ସ୍ରୋତ ହଠାତ୍‌ ଯେପରି ଶୁଖିଯାଇଛି । ଏତେ ଧନ—ସମ୍ପତ୍ତିମାନ ସମ୍ମାନ ଅର୍ଜନ କରିବ ଜଣେ ସ୍ୱତନ୍ତ୍ର । ନାରୀ ନିଜକୁ ନିଃସହାୟା ମନେକରୁଛି । ଶୀଲା ଜୀବନତମାମ ନିଜର ଅଭାବ ଓ ଅସହାୟା ଅବସ୍ଥାରେ ସହିତ ଲଢ଼େଇକରି ବର୍ତ୍ତମାନ ଏହିଭଳି ଅବସ୍ଥାରେ ଆସି ପହଞ୍ଚିଛି । ସେହି ବର୍ତ୍ତମାନ ମହିପାଲର ବିଚ୍ଛେଦରେ ଭାଙ୍ଗି ପଡ଼ୁଛି । ଶୀଲା ସବୁ ଆନନ୍ଦ, ସବୁ ସୁଖ ମହିପାଲଠାରୁ ବିଚ୍ଛେଦ ସାଙ୍ଗେ ସାଙ୍ଗେ ଶେଷ ହୋଇଗଲା । ନିଜକୁ ଶୂନ୍ୟତାରୁ ମୁକ୍ତ କରିବାପାଇଁ, ଥରଟିଏ ପିକ୍‌ଚର ଦେଖିବାକୁ ଯାଇଥିଲା । କେବଳ ଅଭ୍ୟାସହୋଇଁ ରୋଗୀମାନଙ୍କୁ ଦେଖିବା ବ୍ୟତୀତ ସେ କେଉଁଠାକୁ ଯିବା ଆସିବା କରେ ନାହିଁ ବା କାହାରି ସହିତ ମିଶେ ନାହିଁ । ସଜ୍ଜନ, ବନକନ୍ୟା କେବେ କେବେ ବୁଲି ଆସନ୍ତି ନହେଲେ ଅଧିକାଂଶ ସମୟ ସେ ବହି, ରେଡ଼ିଓ ଆଉ ଶୂନ୍ୟତା ଭିତରେ ବୁଡ଼େଇ ରଖିଲା ।

ଶୀଲାର ବାଲ୍ୟାବସ୍ଥା ଅଭାବ ମଧ୍ୟରେ ବିତିଛି । ଉତ୍ତର ପ୍ରଦେଶର ଖ୍ରୀଷ୍ଟିୟାନ-ମାନଙ୍କ ଭିତରେ ପ୍ରାୟ ଶତକଡ଼ା ୯୯ ଜଣ ଗରିବ । ବାଲ୍ୟାବସ୍ଥାରେ ଖ୍ରୀଷ୍ଟିଆନମାନଙ୍କର ଶିକ୍ଷକଗଣୀମାନେ ପ୍ରାୟ ମିଶନାରୀମାନଙ୍କର ଅଧୀନ ଥିଲେ । ଶୀଲାର ବାପା ପଶ୍ଚିମ ୟୁ.ପି.ର ଗୋଟିଏ ଗ୍ରେଟିଆ ଅଞ୍ଚଳରେ ମିଶନ୍ ସ୍କୁଲରେ ହେଡ଼ମାଷ୍ଟର ଥିଲେ । ମା ମଧ୍ୟ ପଢ଼ାଉଥିଲେ । ବଡ଼ ଅଭାବରେ ସେମାନେ ଦିନ ବିତାଉଥିଲେ । ସେହିଦିନୁ ଶୀଲା ଦାରିଦ୍ର୍ୟ ସହିତ ବିଦ୍ରୋହ କରିଆସିଛି । ସେ ଜିଦ୍‌ଧରି ବାଜେ ଚର୍ଚ୍ଚା କରୁଥିଲା । ମୂଳରୁ ବିଦ୍ରୋହିଣୀ ଥିଲା । ପଢ଼ା ଓ ଡିବେଟ୍‌ରେ ଭଲଥିବା ଯୋଗୁଁ ପିଲାମାନଙ୍କ ମଧ୍ୟରେ ସେ ବେଶ୍ ବିଖ୍ୟାତ ଥିଲା । ଏଥିପାଇଁ ସେ ପ୍ରଥମରୁ ଅଭିମାନିନୀ ହୋଇଯାଇଥିଲା । ସ୍କୁଲରେ ପ୍ରାନ୍ତୀୟ ଡିବେଟ୍‌ରେ ସେ ଏଲାହାବାଦରୁ ଦୁଇଥର ପ୍ରଥମ ପୁରସ୍କାର ଲାଭ କରିଥିଲା । ଘରର ଅପମାନ ଆଉ ବାହାର ସମ୍ମାନ ତା ମନ ଭିତରେ ଦ୍ୱନ୍ଦ୍ୱ ସୃଷ୍ଟି କରିଥିଲା । ତାର ବାଲ୍ୟାବସ୍ଥାରେ ହୋଇଥିବା ରାଷ୍ଟ୍ରୀୟ ଆନ୍ଦୋଳନର ପ୍ରଭାବ ମଧ୍ୟ ତା ମନରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ଭାରତୀୟ ଖ୍ରୀଷ୍ଟିଆନ ସମାଜ…ସେହି ସମୟରେ ନିଜକୁ ଇଂରେଜ ଜାତିର ମାଉସୀପୁଅ ଭାଇ ବୋଲି ଭାବୁଥିଲା । ସେ ସମୟରେ କେବଳ ଇଂରେଜ କାହିଁକି, ମାମୁଲି ଲୋକେ ମଧ୍ୟ ଏମାନଙ୍କ ମୁହଁରେ କଥା କହୁନଥିଲେ । ରାଷ୍ଟ୍ରୀୟ ଆନ୍ଦୋଳନ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଭାରତର ଏହି ଖ୍ରୀଷ୍ଟିୟାନ ସମାଜ ଭିତରେ ଜାତୀୟତାର ସ୍ରୋତ ବୁହାଇ ଦେଇଥିଲେ ।

ପେଟ ପାଇଁ ବିଲାତି ସଂସ୍ଥାର ଅଧୀନ ଓ ନିଜ ଦେଶର ସମାଜଠାରୁ ସର୍ବଥା ବିଚ୍ୟୁତ ରହିବା ଯୋଗୁଁ ରାଷ୍ଟ୍ରୀୟ ଚେତନାର ଜଳବାୟୁରେ ଭାରତୀୟ ଖ୍ରୀଷ୍ଟିଆନମାନେ ଅତିଶୟ ଦୁଃଖରେ ଜୀବନ ବିତେଇବାକୁ ଲାଗିଲେ । ତାଙ୍କର ନିଜର ସାମାଜିକ ବିଶୃଙ୍ଖଳତା ମଧ୍ୟ ଅଧିକ ବଢ଼ିଯାଇଥିଲା । ହିନ୍ଦୁଧର୍ମର ନ୍ୟୂନରୁ ନ୍ୟୂନତମ ଜାତି ଓ ଉଚ୍ଚରୁ ଉଚ୍ଚତମ ଜାତିର ଲୋକମାନେ ନିଜର ଧର୍ମ ପରିବର୍ତ୍ତନ କରି ଖ୍ରୀଷ୍ଟିୟାନମାନଙ୍କ ସହିତ ମିଶିଥିଲେ । ମୁସଲମାନମାନଙ୍କ ମଧ୍ୟରେ ପ୍ରତ୍ୟେକ ବର୍ଗର ଲୋକ ମଧ୍ୟ ଖ୍ରୀଷ୍ଟିୟାନ ହୋଇଯାଇଥିଲେ । ଏମାନେ ସିନା ଧର୍ମ ବଦଳି ଦେଲେ କିନ୍ତୁ ପୂର୍ବଧର୍ମର ସଂସାର ସଂସ୍କାର ବଦଳିପାରିଲେ ନାହିଁ । ହିନ୍ଦୁ ଖ୍ରୀଷ୍ଟିୟାନମାନଙ୍କ ଭିତରେ ଅଧିକାଂଶ କେବଳ ସେହି ହିନ୍ଦୁ ଖ୍ରୀଷ୍ଟିୟାନ ଲୋକ ସହିତ ବିବାହ କରିବାକୁ ପସନ୍ଦ କରୁଥିଲେ । ଉଚ୍ଚ ନୀଚ ଭେଦଭାବ ମଧ୍ୟ କେତେକାଂଶରେ ରହିଥିଲା । ମୁସଲମାନ, ଖ୍ରୀଷ୍ଟିୟାନ ମଧ୍ୟ ଏହିଭଳି ପରିବର୍ତ୍ତନର ଅନ୍ତର୍ଭୁକ୍ତ ଥିଲେ । ଅନ୍ଧ ବିଶ୍ୱାସ ଓ ଆଦବକାଇଦାର କିନ୍ତୁ ସେମାନଙ୍କୁ ମଧ୍ୟ ଭାରତୀୟ ଥିଲେ । ଅମୁକଦିନ ଅମୁକ ଦିଗକୁ ଯାତ୍ରା କରିବା ଉଚିତ ନୁହେଁ…ଛିଅ ଘରୁ ପାଣି ପିଇବା ଉଚିତ ନୁହେଁ ଆଦି କଥା ଖ୍ରୀଷ୍ଟିୟାନ ସମାଜରେ ପ୍ରଚଳିତ ହେଲା । ରୋଷେଇ ଘରକୁ ବାହାର ଲୋକର ପ୍ରବେଶ ନିଷେଧ । ନୂଆ ଲୋକ ଆଗରେ ଭୋଜନ

ନକରିବା ଆଦି ଅତ୍ୟନ୍ତ କଠୋର ହିନ୍ଦୁ ନୀତି ତାଙ୍କ ସମାଜ ଅନ୍ତର୍ଭୁକ୍ତ ହୋଇଯାଇଥିଲା । ନାମରେ ମଧ୍ୟ ଭାରତୀୟ ଭାବନାଫୁଟି ଉଠୁଥିଲା ସିଂହ ମିଷ୍ଟର ସିଙ୍ଗ ହୋଇଗଲା । ରାମବଲ୍ଲୀ ମିଷ୍ଟର ରେମ୍ବୁଲସ ହୋଇଗଲେ, ଅନେକ ପରିବାରରେ ନାମକୁ ନେଇ ଗଣ୍ଡଗୋଳ ହେଲା । ଶୀଲା ଦୁଇ ଭାଇଙ୍କ ନାମ ଓ୍ୱେସେଣ୍ଡ ରମ ଓ ଓ୍ୱେସୈମୁଥଲ ରାମ, ପିତା ମସୀ ସ୍ୱିଙ୍ଗ ଓ ଅନ୍ୟ ଭାଇ ସମ୍ପୂର୍ଣ୍ଣ ବିଦେଶୀ ନାମ ଧାରଣ କରି ସ୍ମିଥ ବ୍ରାଇଟ ନାମରେ ପରିଚିତ ହେଉଥିଲେ ।

ଶୀଲା ସିଙ୍ଗର ବାଲ୍ୟାବସ୍ଥାରେ ରାଷ୍ଟ୍ରିୟ ଚେତନାର ସ୍ରୋତ ସାରା ଦେଶରେ ପ୍ରବାହିତ ହୋଇଥିଲା । ଏଠାକାର ଖ୍ରୀଷ୍ଟିୟାନ ସମାଜ ମଧ୍ୟ ନିଜର ଭାରତୀୟତା ପାଇଁ ପ୍ରଥମଥର ସଚେତନ ହୋଇଗଲେ । ଖ୍ରୀଷ୍ଟିୟାନ ଧର୍ମର ଭାରତୀୟ କରଣ ହେଲା । ପିଆନୋ ସ୍ଥାନରେ ତବଲା, ହାରମୋନିୟମ ଆସିଲା । ବିଲାତି ଭଜନ ସ୍ଥାନରେ ସାଦା ଶାସ୍ତ୍ରୀୟ ସଙ୍ଗର ଭଜନ ଓ ଧାର୍ମିକ ଗଜଲ ଗାଇ ହେବାକୁ ଲାଗିଲା । ସଲିଭ ସମ୍ମୁଖରେ ଭଜନ ସମୟରେ ଆରତି କରିବା, ଅମୀନ, ଅମୀନ ବଦ-ବାସ ସ୍ଥାନରେ ଶାନ୍ତି ଶାନ୍ତି କହିବାର ପ୍ରଥା ପ୍ରଚଳିତ ହେଲା । ଏହି ଭାରତୀୟ କରଣର ବିରୋଧ ମଧ୍ୟ ହେଲା । ଖ୍ରୀଷ୍ଟିୟାନ ବିଦ୍ୟାର୍ଥୀ ସଙ୍ଘର ଦୁଇଟି ପାର୍ଟି ହୋଇଗଲେ ।

ଶୀଲା ଏହିଭଳି ସାମାଜିକ ଆନ୍ଦୋଳନରେ ସର୍ବଦା ଭାଗନେଇ ଅଗ୍ରସର ହେଉଥିଲେ ସେ ଆରମ୍ଭରୁ ନିର୍ଭିକ ଓ ବିଦ୍ରୋହିଣୀ ଥିଲେ । ଏହି ବିଦ୍ରୋହି ପ୍ରକୃତି ଯୋଗୁଁ ପ୍ରଥମରୁ ସେ ବିଲାତି ମିଶନ ସ୍ୱୀକାର ନ କରିବାକୁ ମନସ୍ଥ କରିଥିଲେ । ବିଦ୍ରୋହୀ ପ୍ରକୃତି ଯୋଗୁଁ ବୃତ୍ତି ମଧ୍ୟ ବନ୍ଦ ହେଲା । ଯାହାଫଳରେ ବାତାବରଣ ତାଙ୍କପାଇଁ ଅତ୍ୟନ୍ତ ବିରକ୍ତିକର ହେଲା । ଏ ସମସ୍ତ ହୋଇ ମଧ୍ୟ ନିଜର ପ୍ରବଳ ଇଚ୍ଛା ଶକ୍ତି ଯୋଗୁଁ ସେ ପଢ଼ାଶୁଣା କରି ଡାକ୍ତର ହେଲେ । ଧୀର ଶୀଘ୍ର ସ୍ୱତନ୍ତ୍ର ହେବା ପାଇଁ ସେ ସରକାରୀ ମେଡ଼ିକାଲରେ ସର୍ବଶେଷରେ ଭର୍ତ୍ତୀ ହେଲେ । ବିଭିନ୍ନ ପ୍ରକାର ବାଧା ସତ୍ତ୍ୱେ ତାଙ୍କୁ ସ୍ୱୀକୃତି ମଧ୍ୟ ମିଳିଗଲା । ଭାଗ୍ୟ ତାଙ୍କୁ ସହାୟତା କରୁଥିଲା । ଶୀଲାଠାରେ ଶ୍ରମ ବୁଦ୍ଧି ମାତ୍ରାରେ ଥିଲା, ଫଳରେ କ୍ରମଶଃ ଉନ୍ନତି କରି ଚାଲିଲେ । ୧୯୩୭ରେ ତାଙ୍କୁ କିଙ୍ଗ୍ ଜର୍ଜ ହସପିଟାଲରେ ସ୍ଥାନ ମିଳିଲା । ଏଠାକୁ ଆସିଲାକ୍ଷଣି ବିଜୁଳି ଗତିରେ ତାଙ୍କର ଭାଗ୍ୟ ଚକ୍ର ଗଡ଼ି ଚାଲିଲା । ଏହି ୧୪।୧୫ ବର୍ଷ ମଧ୍ୟରେ ଶୀଲା ସିଙ୍ଗ ପୂର୍ଣ୍ଣତଃ ସ୍ୱତନ୍ତ୍ର ଓ ସମୃଦ୍ଧା ହୋଇ ନିଜର ପ୍ରାକ୍ଟିସ୍ ପାଇଁ ସମର୍ଥା ହେଲେ । ପୂର୍ଣ୍ଣ ଯୌବନାବସ୍ଥାରେ ନିଜ ସମାଜର ଜଣେ ଯୁବକ ସହିତ ତାଙ୍କର ପ୍ରେମ ହୋଇଥିଲା । ପାଲ ମଧ୍ୟ ଭାରତୀୟ ସଂସ୍କୃତିକୁ ଭଲ ପାଉଥିଲା । ପାଲ ଓ ଶୀଲା ଉଭୟେ ଏକା ସାଙ୍ଗରେ ଭାରତୀୟ ଦର୍ଶନ ସାହିତ୍ୟ ଓ ଇତିହାସ ଆଦି ପଢ଼ୁଥିଲେ । ଭାରତୀୟ ଚିନ୍ତାଧାରାରେ ପ୍ରଭାବିତ ହୋଇ ସେମାନେ ଦୁଇଜଣ ନିଜର ବୌଦ୍ଧିକ ବିଚାର ଓ ବିଶ୍ୱାସ ତୁଳନାରେ ଉଚ୍ଚ କୋଟିର ପୁସ୍ତକ ଏକାନ୍ତ

ଟିଭରେ ଅଧ୍ୟୟନ କରୁଥିଲେ ଓ ଏହା ଉପରେ ଯୁକ୍ତତର୍କ ଆଦି କରୁଥିଲେ । ସାଲ ହଇଜାରେ ପୀଡ଼ିତ ୪ ଦିନ ମଧ୍ୟରେ ମୃତ୍ୟୁ ବରଣ କଲ । ଶୀଳା ଜୀବନରେ ଚିରଦିନ ପାଇଁ ଏକ ଗଭୀର ଶୂନ୍ୟତା ରହିଗଲ । ଏହା ପରେ ମଧ୍ୟ ତାଙ୍କ ଜୀବନରେ ପୁଣି ଦୁଇଜଣ ଯୁବକ ଆସିଲେ କିନ୍ତୁ ଏମାନେ କେବଳ ବନ୍ଧୁ ଥିଲେ । ଶେଷରେ ମହିପାଳ ତାଙ୍କ ଶୂନ୍ୟ ଜୀବନର ସାଥି ହୋଇ ଆସିଥିଲ । ସୁନ୍ଦର ବଳିଷ୍ଠ ସହୃଦୟ କଳାକାର ବିଦ୍ୟା-ବିଶାରଦ, ସ୍ୱାଭିମାନୀ ଓ ବିଦ୍ରୋହୀ ବ୍ୟକ୍ତିତ୍ୱ ସମ୍ପନ୍ନ ମହିପାଳ, ଶୀଳାର ସୌଭାଗ୍ୟର ମୁକୁଟମଣି ହୋଇଗଲ । ବର୍ତ୍ତମାନ ଏହାକୁ କୌଣସି ପ୍ରକାରର ଅଭାବ କଷ୍ଟ ଦେଇ ନଥିଲ । ମହିପାଳ ପ୍ରତି ସେ ନିଜର ଦେହ ଓ ମନକୁ ବିଶୁଦ୍ଧ ଭାରତୀୟ ଭାବନାରେ ସମର୍ପଣ କରୁଥିଲ । ତାକୁ ସନ୍ତୁଷ୍ଟ କରିବାପାଇଁ ନିଜର ଧନ ମଧ୍ୟ ଖର୍ଚ୍ଚ କରିବାରେ ତାର ଆଗ୍ରହ ଥିଲ । କିନ୍ତୁ ତାଙ୍କର ଏହି ସୀମାହିଁ ମହିପାଳର ବ୍ୟକ୍ତିତ୍ୱର ବିଜୟ, ତାର ପୌରୁଷ ଯାହା ଆଗରେ ସେ ଅବନମିତା ଥିଲ ଏକୁଟିଆ ତାଙ୍କର ମନ ମହିପାଳର ଘର ଆଡ଼କୁ ଦୌଡ଼ୁଥିଲ । କଲ୍ୟାଣୀ ଓ ତାର ପିଲମାନେ ତା ଚିନ୍ତାରେ ଆସୁଥିଲେ । ମହିପାଳର ପିଲମାନଙ୍କ ପ୍ରତି ଶୀଳାର କୌଣସି ମାନସିକ ଆଗ୍ରହ ନ ଥିଲ ହଠାତ୍ କୌଣସି ପିଲଙ୍କୁ ଆଗରେ ଦେଖିଲେ ତାଙ୍କ ମନରେ ସେମାନଙ୍କ ପ୍ରତି ଯେଉଁ ଆଗ୍ରହ ଓ ଶୁଭ କାମନା କରୁଥିଲ ତାହା କେବଳ ସେମାନେ ମହିପାଳର ପିଲ ବୋଲି । କଲ୍ୟାଣୀ ପ୍ରତି ସେ ସର୍ବଦା ଉଦାସୀନା । କଲ୍ୟାଣୀ ଭଲ ନାରୀ, ସରଳା ମୂର୍ଖ ସ୍ତ୍ରୀ କେବେହେଲେ ମଧ୍ୟ ତାଙ୍କ ସମାନ ସ୍ଥିତ ହୋଇପାରିବ ନାହିଁ । ଏହା ତାଙ୍କର ବିଶ୍ୱାସ ଥିଲ । ମହିପାଳ ଅଧିକାଂଶ ସମୟ କଲ୍ୟାଣୀର ପ୍ରାଚୀନ ରକ୍ଷା ବାପି ଭାବନା ତଥା ଅନ୍ଧ ବିଶ୍ୱାସ ପ୍ରତି ବିରକ୍ତି ପ୍ରକାଶ କରୁଥିଲ । କିନ୍ତୁ ଆଧୁନିକ ଶୀଳା ସର୍ବଦା ତାକୁ ଆନନ୍ଦ ପ୍ରଦାନ କରୁଥିଲ । ତାଙ୍କ ମନକୁ କଲ୍ୟାଣୀଠାରୁ କେବେହେଲେ ଅଧିକାର ଛଡ଼େଇ ନେବାର ଭାବନା ଆସୁ ନ ଥିଲ କିନ୍ତୁ ଯେଉଁ ଦିନଠାରୁ କଲ୍ୟାଣୀର ଭାଇର ବିବାହର ଉତ୍ସବରେ ତାଙ୍କର ଓ ମହିପାଳ ସମ୍ବନ୍ଧକୁ ନେଇ ଗୋପନ ଚର୍ଚ୍ଚା ହେଲ ଓ କଲ୍ୟାଣୀ ମହିପାଳର ଜୀବନରେ ଶୀଳାର ଅସ୍ତିତ୍ୱକୁ ପ୍ରବଳ ବିରୋଧ କଲ, ସେଇ-ଦିନଠାରୁ ମହିପାଳ ତାଙ୍କଠାରୁ ଦୂରେଇ ଗଲ ଆଉ ସେହିଦିନଠାରୁ କଲ୍ୟାଣୀ ପ୍ରତି ତାର ପିଲମାନଙ୍କ ପ୍ରତି ଅଥବା ଏହା କୁହାଯାଇପାରେ ଯେ ତାର ପରିବାରର ଭାବନା ପ୍ରତି ବିରକ୍ତି ପ୍ରକାଶ କରିଛୁ । ଏହି ସମୟରେ ସୁପ୍ରସିଦ୍ଧ ଔପନ୍ୟାସିକ ବାଲ୍ଜାକଙ୍କ ଜୀବନୀ ପଢ଼ି ତାର ମହିପାଳ ପ୍ରତି ସମ୍ମାନକମି ଆସିଲ । ମେଡମେଡ଼ି ବର୍ଣ୍ଣି ଓ ବାଲଜକର ପ୍ରେମ ବର୍ଣ୍ଣନ କରିବାକୁ ସ୍ତ୍ରୀ-ଫାନ ଯ୍ୱୀଗ କେତେ ବ୍ୟଗ୍ରତାର ସହିତ ଲେଖିଛୁ ଯେ, ଆପତ୍ତି ଅଭିଯୋଗ, ଗୃହକଳହ, ଗାଁର ଚାଲୁଥିବା ଗୁପ୍ତ ଆଲୋଚନା ଓ ସଙ୍କେତ କେହି ହେଲେ ମଧ୍ୟ ନିଜର ପ୍ରିୟତମା ପ୍ରତି ତାର ସ୍ୱତନ୍ତ୍ର ଓ ତୀବ୍ର ସମର୍ପଣର ଭାବନାକୁ ସ୍ପର୍ଶ ପାରୁ-ନଥିଲେ । ଏହି ବାକ୍ୟ ଶୀଳା ମନରେ ରହି ରହି ଶୂନ୍ୟତାର ତୀକ୍ଷ୍ଣବାଣ ବିଦ୍ଧ

କରୁଥିଲା । ଆଜି ହୋଟେଲର ଦିନ ସେ ଭାବୁଥିଲା ଶୀଳା । ସ୍ତ୍ରୀ ନୁହେଁ ଡାକ୍ତର । ତାର ପ୍ରତିଷ୍ଠା ଅଛି, ତା ପାଖରେ ଅନେକ ବ୍ୟାଙ୍କ ଆକାଉଣ୍ଟ ଅଛି । ...କିନ୍ତୁ ଏହା କଣ ସବୁ କିଛି ? ନର-ନାରୀଙ୍କ ଜୀବନ କଣ ଏତିକରେ ସନ୍ତୁଷ୍ଟ ହୋଇଯାଏ ? ଶୀଳା ଭିତରେ ଭିତରେ ଜଳୁଥିଲା । ପୁରୁଣା ଜିଦ୍ ତାର ଚେଇଁ ଉଠିଲା । ସେହି ଜିଦ୍ ବର୍ଷ ବର୍ଷ ଧରି ସମୃଦ୍ଧିର ଶେଯ ଉପରେ ଶୋଇ ଶୋଇ ଜାଗିବା ଭୁଲି ଯାଇଥିଲା । ସେ ଜାଣିଥିଲେ ଯେ ସେ ଟିକିଏ ଦୃଢ ହେଲେ ମଧୁପାଳ ନିଜର ସମସ୍ତବନ୍ଧନ ଛିଣ୍ଡାଇ ତାଙ୍କର ହୋଇଯିବେ । ଶୀଳାର ମନ ବାରମ୍ବାର ଏହା କରିବାପାଇଁ ଜିଦ୍ ଧରୁଥିଲା । ପିଠି ପଛକୁ ଦୁଇ ହାତ ବାନ୍ଧି, ବିସ୍ତୃତ ବଳିଷ୍ଠ ଗ୍ରୀବା, ନିର୍ଭିକ ସରଳ ଓ ମଧୁପାଳର ପ୍ରଫୁଲ୍ଲିତ ଚେହେରା ସତେ ଅବା ଆଗରେ ଆସି ଛିଡା ହୋଇଥିଲା । ସ୍ମୃତି ନିଜର ସାରଶକ୍ତି ପ୍ରୟୋଗ କରି ମାଂସଳ ହୋଇ ଉଠିଥିଲା ।

'ଡଣ ମ' ଏକୁଟିଆ 'ବ୍ଲୁ' ପିଉଛନ୍ତି । ବନ କନ୍ୟାର କଣ ସ୍ୱରରେ ଶୀଳାର ମୌନତା ଭାଙ୍ଗିଗଲା । ବନ କନ୍ୟା ଓ ସଜ୍ଜନ ବର୍ମା ଦୁଆର ପାଖରେ ଛିଡା ହୋଇଥିଲେ । କବାଟର ପର୍ଦ୍ଦା ବର୍ତ୍ତମାନ ଦୃଢ଼ା ସଜ୍ଜନ ହାତରେ ଥିଲା । ବନ କନ୍ୟା ଆଜି ବହୁମୂଲ୍ୟ ଗହଣା ଓ ଶାଢ଼ୀ ପିନ୍ଧିଥିଲା । ଶୀଳାର ଧ୍ୟାନ ଏହି ପରିବର୍ତ୍ତନ ଠାରେ ରହିଗଲା । ଓଢ଼ଣୀ, ଗହଣା, ଆଉ ଶାଢ଼ୀ ବନ କନ୍ୟା ଠିକ୍ ବୋହୂ ଭଳି ଜଣା ଯାଉଥିଲା । ଜଣା ନାହିଁ କେଉଁ କାରଣରୁ ତା ଶୀଳା ସାଙ୍ଗକୁ ବନ କନ୍ୟା ଭାରତୀୟ ସୁହାଗିନୀର ମୂର୍ତ୍ତିମନ୍ତ କଳ୍ପନା ଭଳି ମନେ ହେଉଥିଲା । ମଧୁପାଳ ପୁରୁଷ ଧ୍ୟାନରେ ବନ୍ଧା ପଲକ ଉଠାଇ ଉଠାଇ ସୁହାଗିନୀର ସୌନ୍ଦର୍ଯ୍ୟରେ ବନ୍ଧ ହୋଇଗଲା । ଗୋଟିଏ କ୍ଷଣପାଇଁ ଶୀଳା ମନରେ ଆସିଲା ଯେ ସେ ମଧ୍ୟ କନ୍ୟା ଭଳି ସୁହାଗିନୀ ହୁଅନ୍ତି । ସେହି ସମୟରେ ସଜ୍ଜନ କନ୍ୟାର ସହିତ କଥା ମିଳାଇ କହିଲା "ଆପଣଙ୍କର କଣ ଆଜି କାଲି ଏକାନ୍ତତା ସହିତ ପ୍ରୀତି ଗଢ଼ି ଉଠୁଛି ଅଧିକାଂଶ ସମୟରେ ଯାହା ବଡ଼ଲୋକମାନଙ୍କର ହୋଇଯାଏ ।"

ସୋସିଏଲ ହେବା ପାଇଁ ଶୀଘ୍ର ଅଭିନୟ କରି ଡା: ଶୀଳା ସଜ୍ଜନ ଆଡ଼କୁ ନିବାରଣ ସୂଚକ ହାତ ଉଠାଇ କହିଲା—"ବର୍ଜନ ।। ହାଓ ।। ଏ ଟ୍ରୁ ନୁ, ଆର । କନ୍ୟା ତୁମେ ନିଜର ସ୍ୱାମୀର କଥାରେ ବିଶ୍ୱାସ କରନାହିଁ । ଆଜିକାଲି ଏତେ କେଶ୍ଜଣେ ଆସୁଛି ଯେ କେବେ କେବେ ତ—"

ଏହା କାହିଁକି କହୁନାହିଁ ଯେ, ଡାକ୍ତର ମଧ୍ୟ ପେସେଣ୍ଟ ହୋଇଛି । "ସଜ୍ଜନ ଶୀଳାର କଥା କାଟି କହିଲା । ଶୀଳା ନିରୁତ୍ତର ରହିଲା । ଠିକ୍ ଏଭଳି ବେଠିକ୍ ହୋଇ ବାହାରକୁ ଆସିଲା, ଯେ ଭଳି ଘରେ ନିଆଁ ଲାଗିଲା ପରେ କେହି ବାହାରକୁ ବାହାରି ଆସେ ।

ଘ୍' ଆସିଗଲା । କଥାବାର୍ତ୍ତା ଚାଲିଥିଲା । ଶୀଲା ବଡ଼ ବୋହୂର ହାଲଚାଲ ପଚାରିଲା । କନ୍ୟା କହିଲା ଆଜକାଲି ତାର କିଛି ଖବର ମିଳୁନାହିଁ ।

"ମୁଁ କିଛି ଦିନ ପୂର୍ବେ ହୋଟେଲ ଗଞ୍ଜରେ ବୋଉ ସହିତ ଦେଖିଥିଲି । କେହି ଆଉ ଜଣେ ମଧ୍ୟ ଲାଲଭଲ ଯୁବକ ତାଙ୍କ ସହିତ ଥିଲା, ନଜର ଓଭର ମେକପ୍‌ରେ ମଧ୍ୟ ସେହି ସ୍ତ୍ରୀ ବଡ଼ ଟ୍ରାଜିକ୍ ଜଣା ଯାଉଥିଲା ।" ସଜ୍ଜନ କହିଲା ।

ଏହାପରେ କିଛି ସମୟ ନୀରବତା ଘୋଟିରହିଲା ।

ଶୀଲା କହିଲା—"ଓଃ କେତେ ଭଲ ହୁଅନ୍ତା, ଯଦି ପୁରୁଷ ସମାଜ ଲୋକ ସମାଜ ନ ହୋଇ ଥାଆନ୍ତା । କେବେ କେବେ ଭାବୁଛି ପୁଣି ଏହି ସଭ୍ୟତା, ସଂସ୍କୃତି, ଏ ସବୁ ସାଇନସ୍ ଓ ଏଜୁକେଶନ୍ ଓ ବଡ଼ ବଡ଼ କଥା ଯାହାକୁ ମଣିଷ ଆଜି କରୁଅଛି । —ଏ ସମସ୍ତ ବୋଝ ଲଦିବା ପାଇଁ ମନୁଷ୍ୟକୁ କଣ ଦରକାର ? ଏହା ଅଭାବରେ ମଧ୍ୟ ଲୋକ ସୁଖୀ ହୋଇପାରନ୍ତି । ବିଶେଷ କରି ମୋ ମତରେ ଅଧିକ ସୁଖୀ ହୋଇପାରି ଥାଆନ୍ତି । ଗହଣାର ଲୋଭରେ ବୋଝ ଲଦି ମନୁଷ୍ୟର ପ୍ରାକୃତିକ ସୌନ୍ଦର୍ଯ୍ୟ ଲୁକ୍କାୟିତ ହୋଇ ଯାଉଛି ଓ ବୋଝ ଦ୍ୱାରା ସେ ଥକି ଯାଉଛି, ସେ ପୃଥକ୍ ହୋଇଯାଉଛି ।

ସଜ୍ଜନ ଚୁପ୍‌ଚାପ୍ ବସି ଶୀଲାକୁ ଦେଖୁଥିଲା । କନ୍ୟା ମଧ୍ୟ ଚୁପ୍‌ଚାପ୍ ବସିଥିଲା ଶୀଲାର ଅନ୍ତର୍ଦ୍ୱନ୍ଦରେ ସଜ୍ଜନର ପୂର୍ଣ୍ଣ ସହାନୁଭୂତି ନହିଁ । ସେ ଜାଣେ ଯେ ଶୀଲାର ଏହି ଉକ୍ତିଥିବା କଥାଗୁଡ଼ିକ ଗଭୀର ବେଦନାରେ ସିକ୍ତ । ପ୍ରକୃତରେ ତ୍ୟାଗବଡ଼ କଠିନ । ସଜ୍ଜନ ଚିନ୍ତା କରିବାକୁ ଲାଗିଲା । କଣ ସେ ବାବାଜୀ ଗ୍ରାମଜୀର ଇଚ୍ଛାନୁସାରେ ସମ୍ପତ୍ତି ତ୍ୟାଗ କରିପାରିବ ? ନା, ଏହା ଅସମ୍ଭବ, ସେ ନିଜ ଐଶ୍ୱର୍ଯ୍ୟର କେତେକାଂଶ ଅନ୍ୟକୁ ଦେଇପାରେ, ଏହା ସମ୍ଭବ କିନ୍ତୁ ପୂର୍ଣ୍ଣରୂପେ ନିଜେ ନିଜକୁ ଲୁଟାଇ ଦେବା—ଏହା ତାହା ଦ୍ୱାରା ହୋଇ ପାରିବ ନାହିଁ । ସଜ୍ଜନକୁ ବୋଧ ହେଲା ଯେ ତାକୁ ଶୀଲା ଓ ମହିପାଳର କଷ୍ଟ ଦୂର କରିବାକୁ ହିଁ ପଡ଼ିବ । ହଠାତ୍ ଉଠି ଉଠି ସେ କହିଲା—" ଡାକ୍ତର ଗୋଟିଏ କଥା ଟିକିଏ ଶୁଣ, କନ୍ୟା ମୁଁ ବର୍ତ୍ତମାନ ଆସୁଛି । ଏକାନ୍ତକୁ ନେଇ ସେ ଶୀଲାକୁ କହିଲା ଅଜି ସନ୍ଧ୍ୟାରେ ଏଠାରେ ମୋର ଗୋଟିଏ ଛୋଟିଆ ପାର୍ଟି ଅଛି, ତୁମକୁ ଆସିବା ପାଇଁ ନିଶ୍ଚୟ କହନ୍ତି କିନ୍ତୁ—କର୍ଣ୍ଣେଲ ଓ ମହିପାଳର ସ୍ତ୍ରୀ ମଧ୍ୟ ଆସୁଛନ୍ତି । …ତାଙ୍କୁ ଡାକିବାର ଥିଲା, କାହିଁକିନା କନ୍ୟାର ପ୍ରଥମ 'ହୋଲି' ଏହିଘରେ ପଡ଼ିଛି— ଶୁଣ ମହିପାଳ ସହିତ ଦେଖା କରିବାକୁ ଚାହୁଁଛ ?

ଶୀଲା ଚୁପ୍‌ଚାପ ଛିଡ଼ା ହୋଇ ରହିଲା, ସଜ୍ଜନ ପୁଣି ପଚାରିଲା—'କୁହ' "ସେ କଣ ଚାହାନ୍ତି ?" ପ୍ରଶ୍ନ ପଚାରୁଁ ପଚାରୁଁ ମଧ୍ୟ ଶୀଲାର ପଲକ ଦ୍ୱୟ ଶୁଣୁ ଥିଲା ।

ମୁଁ ତ ତାକୁ କିଛି ପଚାରି ନାହିଁ କିନ୍ତୁ ଏଥିରେ ପଚାରିବା ପାଇଁ କିଛି କଥା ନାହିଁ । ମଧୁପାଳ କଣ ତୁମ ସହିତ ଦେଖା କରିବାକୁ ଉତ୍ସୁକ ହେବ ନାହିଁ ତୁମେ କଣ ଏତିକି ବିଶ୍ୱାସ ମଧ୍ୟ କରିପାରୁଛ ଶୀଳା ?

ଶୀଳା କାନ୍ଧରେ ହାତ ରଖି ସନ୍ଧ୍ୟା କହିଲା—ତୁମେ ସାଢ଼େ ସାତଟାରେ ଆମ ଘରକୁ ଆସିବ ଶୀଳା । ତୁମର ଆସିବାର ଖବର କେହି ଜାଣି ପାରିବେ ନାହିଁ । ମଧୁପାଳକୁ ମୋ ତରଫରୁ ମୁଁ ତୁମକୁ ହୋଲିର ଉପହାର ଦେବି । ବାସ୍, ଏବେ ଖୁସି ହେଲ । ତୁମକୁ ଏପରି ଦେଖିବାକୁ ମୋତେ ଭଲ ଲାଗୁନାହିଁ ।

ଶୀଳା ଏକଥା ଶୁଣି ପିଲାଙ୍କ ଭଳି ଚୁପ୍ ହୋଇଗଲା ଠିକ୍ ଯେମିତି ଖୁବ୍ କାନ୍ଦିଲାପରେ ପିଲାମାନେ ମନମୁତାବକ ମିଠାଇ ପାଇଁ ଖୁସି ହୋଇଯାଆନ୍ତି । କେତେଦିନ ପରେ ସେ ଆଜି ତା ମଧୁପାଳକୁ ଦେଖିବ ।

# ଏକତ୍ରିଂଶ

କନ୍ୟା, କଲ୍ୟାଣୀ ଓ କର୍ଣ୍ଣେଲ୍ ଇସ୍ତ୍ରୀ ବସି କଥାବାର୍ତ୍ତା କରୁଥିଲେ । କଲ୍ୟାଣୀ ଏମାନଙ୍କ ସହିତ ଖାଇବାକୁ ଅନିଚ୍ଛା ପ୍ରକାଶ କଲା । ସେ କେବଳ ମିଠା ଖାଇପାରେ । କନ୍ୟା କହିଲା—"ଏତେ କୁଆଁ ଅକୁଆଁ ଭିତରେ ବର୍ତ୍ତମାନ କେମିତି ଚଳିବ ଜାଣି । ଆଜିକାଲି ଯୁଗର ତୁମର ଏ ଅନ୍ଧ ବିଶ୍ୱାସ ଛାଡ଼ି ଦେବା ଉଚିତ ।"

ଆରେ ! ଆଜିକାଲି ଯେତେ ପରିବର୍ତ୍ତନ ହେଲେ ବି ଧର୍ମ କର୍ମରେ କଣ କିଛି ଅଲଗା ହୋଇଛି ? କଲ୍ୟାଣୀ ବଡ଼ପଣିଆର ଭାବ ପ୍ରକାଶ କରି କହିଲା ।

କିନ୍ତୁ ବ୍ରାହ୍ମଣ ରୋଷେଇ କରିଛି । ମୁଁ ମଧ୍ୟ ନିଜେ କରି ଆଜି ରୋଷେଇ ଘରେ ପାଦ ପକାଇ ନାହିଁ । ଭାଉଜଙ୍କୁ ଦେଖୁ ନାହାନ୍ତି ଏ ବି ଖଣ୍ଡ ଧର୍ମ ବିଚାର କରନ୍ତି କିନ୍ତୁ ଆଜି...

ମୋର ଧର୍ମ କର୍ମ ତ ପିଲାମାନେ ସବୁ ସାରିଦେଲେଣି । ଆଗେ ମୁଁ ସୂର୍ଯ୍ୟାସ୍ତ ପୂର୍ବରୁ ଖାଉଥିଲି । ଆମର ଜୈନଧର୍ମ ପାଖରେ ଏହାହିଁ ଧର୍ମ । କିନ୍ତୁ କଣ କରିବି ସ୍ୱାମୀଙ୍କ ପାଇଁ, ଆଉ ପିଲାଙ୍କ ପାଇଁ କିଛି ଠିକ୍ ରହି ପାରୁନାହିଁ ଯେ ପର୍ଯ୍ୟନ୍ତ ଏମାନେ ନ ଖାଇଛନ୍ତି ମୁଁ କେମିତି ଅବା ଖାଇବି ? "କର୍ଣ୍ଣେଲର ସ୍ତ୍ରୀ କହିଲେ ।"

ସ୍ତ୍ରୀ ଯଦି ନିଜର ଧର୍ମ ଉପରେ ରହେ ତେବେ ପୁରୁଷଙ୍କୁ ମଧ୍ୟ ମାନିବାକୁ ପଡ଼େ, ଆମ ଘରେ କଣ କିଛି କମ୍ ? କିନ୍ତୁ ଆମ ଘରେ କେବେ ହେଲେ ମନଇଚ୍ଛା କାମ ହେବନି । ଆମେ ସବୁଠାରୁ ଉଚ୍ଚ ଜାତିର ବ୍ରାହ୍ମଣ । "କଲ୍ୟାଣୀର କଥା କର୍ଣ୍ଣେଲର ସ୍ତ୍ରୀକୁ ଉତ୍ତେଜିତ କରିଦେଲା । "ସେ କହିଲା—ସମସ୍ତେ ନିଜ ନିଜର ଜାତି ଗୋତ୍ର ଅନୁସାରେ ଉଚ୍ଚ, ଆମର ଜୈନ ଧର୍ମ ସବୁଠାରୁ ବଡ଼ ଉଚ୍ଚ । 'ଆମର ପ୍ରବାଦ ଅଛି ଯେ, କେତେ ବ୍ରାହ୍ମଣ', ପଣ୍ଡିତ ନିଜ ନିଜର ଧର୍ମ ଛାଡ଼ି ମହାବୀର ଭଗବାନଙ୍କର ଶରଣ ନେଇଛନ୍ତି କାରଣ ତାଙ୍କର ଧର୍ମ ବ୍ରାହ୍ମଣମାନଙ୍କ ଠାରୁ ବଡ଼ ବୋଲି ସିନା ।"

କନ୍ୟା ଦେଖିଲା ଯେ ଜୈନ ଓ ବ୍ରାହ୍ମଣ ଧର୍ମର ଉଚ୍ଚତା ଆଜିର ସୁଖଦ କନ୍ୟାକୁ ପୂରାପୂରି ପଂଗୁ କରିଦେବ । ସେ କହିଲା--ଓଃ ଭାଉଜ । କଣ ପାଇଁ ଏମିତି ଲାଗିଛ । ଏ ସବୁ ଜାତି ଗୋତ୍ର ଗୋଟିଏ ପ୍ରହସନ । କଣ ରାଜ୍ୟଶ୍ରୀ—ତୁମର ମତ କଣ—ଶକୁନ୍ତଳା ?

ଶକୁନ୍ତଳା ଓ ରାଜ୍ୟଶ୍ରୀ ଦୁହେଁ ଚୁପ୍‌ଚାପ ବସିଥିଲେ । ଶୁଣି ଶକୁନ୍ତଳା ଚୁପ୍ ରହିଲା କେବଳ ଟିକିଏ ମୁରୁକି ହସିଦେଲା । କିନ୍ତୁ ରାଜ୍ୟଶ୍ରୀ କହିଲା —ଆମର ବାପା ମାନନ୍ତି ନାହିଁ । ଆମେ ମଧ୍ୟ ମାନୁନାହିଁ ମାଉଁ । ଏସବୁ ପୁରୁଣା ଯୁଗର କଥା ।

କନ୍ୟା ଖୁବ୍ ଜୋରରେ ହସିଲା । କଲ୍ୟାଣୀ ଆଡ଼କୁ ଚାହିଁ କହିଲା— ଶୁଣୁଛ "ଝିଅକ" ।

କଲ୍ୟାଣୀ ନାସିକାକୁଞ୍ଚନ କରି କହିଲା । ଆରେ ଗୋଟେ, ଏମାନଙ୍କର କଥା ଶୁଣୁଛ ? ଏଥିରେ କଣ ଭଲ କିଛି ଦେଖୁଅଛ ? ଭଗବାନଙ୍କ ତିଆରି ଜାତି-ନୀତି, ଭଗବାନଙ୍କର ତିଆରି ଜାତି-ଧର୍ମ ଏମାନେ ଛାଡ଼ିଲେ ? ଆମେ ଚଳିବୁ କେମିତି ।

ରାଜ୍ୟଶ୍ରୀ ନିଜର ପ୍ରଗତିଶୀଳ ମାଉଁ ସମ୍ମୁଖରେ ନିଜର ମା'କୁ ପରାସ୍ତ କରି ଯଶ ଅର୍ଜନ କରିବାରେ ଅଭିଳାଷ ନେଇ ଆସିଥିଲା । ହସି ହସି କହିଲା ଭଗବାନ କଣ ଭାରତବର୍ଷହିଁ ତିଆରି କରିଛନ୍ତି ମା' । ଆଉ ଅନ୍ୟସବୁ ଦେଶ କେ ତିଆରି କରିଛି ।

ହେଉ ହେଉ ଏଥର ଚୁପରହ ରଙ୍ଗୋ ମୁଁଡ଼ାଏ ଏଆଡ଼ ସେଆଡ଼ ଭଡ଼ଭଡ଼ ହେବାଟା ଭଲକଥା ନାହିଁ । କଲ୍ୟାଣୀ ପୁଣି କର୍ନେଲର ସ୍ତ୍ରୀ ଆଡ଼କୁ ଦେଖି କହିଲା ··· କିଛି କହୁନାହିଁ କାହିଁକି ଭଉଣୀ, ନିଜର ଧର୍ମ କର୍ମ ଛାଡ଼ିବାଟା କଣ ଭଲ ?

ହଁ ଭଉଣୀ, ଭଲତ ନୁହେଁ କିନ୍ତୁ ମରଦଙ୍କର ଯାହା ଇଚ୍ଛା ସେହି ଅନୁସାରେ ଚଳିବାକୁ ସ୍ତ୍ରୀ ମାନଙ୍କର ସବୁଠାରୁ ବଡ଼ ଧର୍ମବୋଲି ମାନୁଛି । ଏବେ ଘରେ ଘରେ ନୂଆ ଯୁଗ ଆସିଯାଇଛି । କହିଲ ଭଲା କେହି ହେଲେ ଏସବୁ କଥାଠାରୁ କଣ ଅଲଗା ହୋଇ ରହିପାରିବ ? ଓ ନିଜ ଲୋକକୁ ଦୁଃଖ ଦେଇ ଧର୍ମ କରିବାକୁ ମୁଁ ଆଦୌ ଧର୍ମ ବୋଲି ମାନେ ନାହିଁ । ତମର ଏହାହିଁ ବିଶ୍ୱାସ ।

ଚାକର ଆସି କନ୍ୟା ହାତରେ ଖଣ୍ଡିଏ କାଗଜ ଦେଲା । ହିଂସାରେ ହଠାତ୍ ଉଠି ସେ କହିଲା······"ବର୍ତ୍ତମାନ ଆସିଲା" ?

ରଙ୍ଗୋ କହିଲା···ବୁଢ଼ୀଜୀ, ଆମର ଯେଉଁ ଜେମାଇ ଅଛନ୍ତି । ସେହି ତାଙ୍କୁ ଦେଖିଛତ······

ମୁଁ ଦେଖିଛି ଖୁବ୍ ଭଲ ଭାବରେ ଜାଣିଛିବି । ସେ ଏଭଳି କରନ୍ତି ନାହିଁ । ତାଙ୍କ ଘରେ ଏଭଳି କିଛି ପ୍ରଥା ନାହିଁ, ଯେଉଭଳି ଆମର ଏଠାରେ ହେଉଛି । ମୁଁ ମା'କୁ କହୁଛି, ବୁଢ଼ୀଜୀ ଯେତେବେଳେ ଆମେ ବୋଠଘର ନେବା ସେତେବେଳେ ମଧ୍ୟ କଣ ଏପରି ରହିବ ?

କର୍ଣ୍ଣେଲର ସ୍ତ୍ରୀ ଏହା ଶୁଣି ହସିହସି କଲ୍ୟାଣୀକୁ ପଚାରିବାକୁ ଲାଗିଲା···କୋଠୀ ନେଉଛ ଭଉଣୀ ?

କଲ୍ୟାଣୀ ଝିଅର କଥାରେ ମନେ ମନେ ଜଳୁଥିଲା ହଠାତ୍ କୋଠୀରେ ଚର୍ଚ୍ଚାରେ ସନ୍ତୁଷ୍ଟ ହୋଇ କହିଲା······"କେଉଁଠି ଭଉଣୀ, କୋଠୀ—ଫେଠି ଖଣ, ହଁ ଶକୁନ୍ତଳାର ବାହାଘର ପରେ ନିଶ୍ଚୟ ଚିନ୍ତା କରୁଛୁଁ ଯେ ଗୋଟିଏ ରହିବାଭଳି ଘ୍ରେଷ୍ଟିଆ ଘର କରିବୁଁ ।"

"ଶୁଣିଛୁ ଯେ ଶକୁନ୍ତଳାର ବିବାହ ଖୁବ୍ ଜାକଜମକରେ ହେଉଛି ?"

ଜାକ-ଜମକ କଣ ଭଉଣୀ, ହଁ ମର୍ଯ୍ୟାଦା ଅନୁସାରେ ତ କରିବାକୁ ପଡ଼ିବ । ଜାତି କୁଟୁମ୍ବ ଭିତରେ ବାହାରେ ଯେପରି ଆମର ଯେମିତି ନାଁ ଅଛି, ସେହି ଅନୁସାରେ ତ କରିବାକୁ ତ ଆଉ କଣ ପନ୍ଦର କୋଡ଼ିଏ ହଜାରତ ଲାଗିବ ନିଶ୍ଚୟ । ଆମର ଏଆଡ଼େ ଭଉଣୀ ଯୌତୁକ ବହୁତ ।

"କିନ୍ତୁ ଭଉଣୀ ଏତେ ଖର୍ଚ୍ଚ ପାଇଁ...ଟଙ୍କା କାହାଠାରୁ ଆଣିବ ? ଶକୁନ୍ତଳା ବାପା.......

କଲ୍ୟାଣୀକୁ ଖରାପ ଲାଗିଲା । ହାତରେ ମୋଟର ବାଲାକୁ ବୁଲାଇ କହିଲା ଭଗବାନ ସମସ୍ତଙ୍କୁ ଦିଅନ୍ତୁ, ଆମ ଘରେ ଟଙ୍କା ନାହିଁତ କଣ ହୋଇଗଲା । କଲମ ଯୋରରେ ଗୋଟିଏ ମୁହୂର୍ତ୍ତି ଗୋଟିଏ 'ଚେକ୍'ରେ ହଜାର ହଜାର ଟଙ୍କା ଆସିବ । "ଦୁଇ ଭଉଣୀଙ୍କ ମଧ୍ୟରେ ମର୍ଯ୍ୟାଦା ବିଷୟରେ ଖୁବ୍ ଉଚ୍ଚ ଧରଣର ଚର୍ଚ୍ଚା କରିବାକୁ ଲାଗିଲା । ରତ୍ନା ଏ ସମସ୍ତଙ୍କ କଥାରେ ବିରକ୍ତ ହୋଇଯାଇ ବସିଥିଲା । ଶକୁନ୍ତଳାକୁ ସଙ୍କୋଚରେ ତାଙ୍କ ବାହାରକୁ ଯିବାକୁ ଲାଗିଲା । କଲ୍ୟାଣୀ କହିଲା... "

କେଉଁଠିକି ଯାଉଛୁ ରତ୍ନା ?

"ଏଇଠି ମା । ଏହି ବାହାରକୁ ଯାଉଛୁ । ବଗିଚାକୁ ।"

"ବାହାରକୁ ଯାଉଛୁତ ନିଜ ବାପାଙ୍କୁ କହିଦେ ଶୀଘ୍ର ଚାଲନ୍ତୁ ନ ହେଲେ ଆମକୁ ଘରେ ପହଞ୍ଚାଇ ଦିଅନ୍ତୁ ।"

"ଆରେ ଏତେ ଶୀଘ୍ର କାହିଁକି ? ଆଜିତ 'ସିନେମା' ଯିବା"

ନା ସିନେମାତ ଆମେ ଯିବୁନାହିଁ । କାଲି ସକାଳୁ ସମୁଧି ଘରର ଉତ୍ସବ ପାଇଁ ଖବର ପଠାଇବାର ବ୍ୟବସ୍ଥା କରିବାକୁ ପଡ଼ିବ । ବର୍ତ୍ତମାନ କିଛି ସମୟପରେ ଆମେ ଯିବୁ ।

କଲ୍ୟାଣୀ ଓ କର୍ଣ୍ଣେଲଙ୍କ ସ୍ତ୍ରୀଙ୍କୁ କଥା କହିବାପାଇଁ ଛାଡ଼ି ରାଜଶ୍ରୀ ଓ ଶକୁନ୍ତଳା ସଜ୍ଜନଙ୍କ ମହଲ ବୁଲିବାପାଇଁ ବାହାରିଲେ । ରାଜଶ୍ରୀର ଦୃଷ୍ଟିରେ ସେଠାକାର ସମସ୍ତ ଜିନିଷ ସ୍ୱର୍ଗୀୟ ଥିଲା । ରାଜଶ୍ରୀ ବାପର ବଡ଼ ଦୁଃଖ ଥିଲା । ହଠାତ୍ ଘରକୁ ପଇସା ଆସି ଯିବାରୁ ବଡ଼ପଣିଆର ଯାହାକି ଧନ ରୂପକ ପବନ ବନା ମହଲ ଯାଇଥିଲା ବର୍ତ୍ତମାନ ଢଳି ଯାଇଥିଲା । ବୟସ ନୂଆ ସ୍ୱପ୍ନକୁ ଗୋଟାଇବା ଭଳି ଥିଲା । ଶକୁନ୍ତଳାର ବିବାହ ହଠାତ୍ ଗୋଟିଏ ଗମ୍ଭୀର ଅବସାଦ ଆଣିଲା । ତାର ମନରେ ଜାଗ୍ରତ ଜ୍ୟୋତି ଭଳି ହରେଇନ୍ ପାଇଁ ଗୋଟିଏ ହରେ ବୃହତ୍ ଥିଲା । କନ୍ୟା ରୁଚି ଓ ସଜ୍ଜନ ବ୍ୟୟର ଏହି ବୈଭବଶାଳୀ— ତା ପାଇଁ ଅପାର ବୈଭବଶାଳୀ ସାମ୍ରାଜ୍ୟରେ ବିଚରଣ କରୁକରୁ ସେ ନିଜେ ନିଜକୁ ସୁନେଲି ସ୍ୱପ୍ନରେ ଜଡ଼ିତ ହେଲଭଳି ଭାବୁଥିଲା । ସେ ଦୁଇଜଣଙ୍କର ବ୍ୟକ୍ତିତ୍ୱର ତାର ନିଜ କଳ୍ପନା ସୁନ୍ଦରକର ତୃପ୍ତି ସାଧିତ ହୋଇଥିଲା । ସେ ମୁଗ୍ଧଭାବରେ କହିଲା …"ବ୍ୟକ୍ତିଙ୍କର ଭାଗ୍ୟବନ୍ତ ଟାଣ । ଏ ଘର ସତେ ଅବା ରାଜାଙ୍କର ମହଲ ।"

"ତୁ ମଧ୍ୟ ଏହି ଭଳି ଗୋଟିଏ ଘର ମାଲିକ ଖୋଜି ନେ ନିଜପାଇଁ । ଶକୁନ୍ତଳା କହିଲା ।"

ଠିକ୍ ଅଛି, ବ୍ୟଲେ, ନିଶ୍ଚେ ଖୋଜିବି ନା । ତୁମେ ମୋତେ କଣ ଭାବୁଛକି ? ରାଜ୍ୟା ଭ୍ରୂକୁଟୀ କୁଞ୍ଚନ କରି ବିସ୍ଫୋରିତ ନେତ୍ରରେ କହିଲା "ମୁଁ ତମଭଳି ମା'କୁ ଖୁସି କରିବାପାଇଁ ଜାତୀ 'ମୁକ' ହୋଇ ନିଜ ଜୀବନକୁ ନଷ୍ଟ କରିବି ନାହିଁ ।" ରାଜ୍ୟଶ୍ରୀ, ସିଢ଼ି ପାଖରେ ଲଗାଯାଇଥିବା ବିରାଟ ମୋଟ ଆଇନାରେ ନିଜର ରୂପମାନଙ୍କୁ ବଡ଼ ଆଗ୍ରହର ସହିତ ଦେଖିଲା । ଆଇନାରେ ଶକୁନ୍ତଳା ସହିତ ଚାରିଆଖି ହେଲା ।

ଶକୁନ୍ତଳା ତା ଆଡ଼କୁ ଦେଖି ଏଭଳି ମୁରୁକି ହସିଲା ଠିକ୍ ଯେପରି ପିଲାଙ୍କ କଥାରେ ହସ ମାଡ଼େ । ରାଜ୍ୟଶ୍ରୀ, ଶକୁନ୍ତଳାର ଏ ଢଙ୍ଗରେ କ୍ରୋଧାନ୍ୱିତା ହେଲା । ଶକୁନ୍ତଳା ଯଦ୍ୟପି ତାଠାରୁ ତିନିବର୍ଷ ବଡ଼ ତଥାପି ବ୍ୟବହାରରେ ଉଭୟ ପ୍ରାୟ ଏକାଭଳି । ଗାଲିଚ୍ଛ ବିଛା ସିଢ଼ୀ ଉପରୁ ଓହ୍ଲାଉଥିବା ଶକୁନ୍ତଳାକୁ ସାମାନ୍ୟ ଧକ୍କା ଦେଇ ଆଖି ରଗଡ଼ି କହିଲା "ହସୁଚୁ କାହିଁକି ?"

ଶକୁନ୍ତଳା କହିଲା "ଖବର କାଗଜ ଗୁଡ଼ିକରେ ଓ୍ୱାଂଟେଡ୍ କଲମ ଛପାଇ ଦିଅ ଯେ ଗୋଟିଏ ଲକ୍ଷପତି 'ପତି' ଦରକାର ।"

"ମୁଁ ନପାଇଲେ ବି ମୋତେ ମିଳିବ । ତୁମକୁ ଯଦି ଗରଜ ପଡୁଛି ଛପାଇ ଦିଅ "

ମୋର ଲକ୍ଷପତିରୁ କଣ ମିଳିବ ନାହିଁ 'ଶକୁନ୍ତଳା କହିଲା ।"

ସିଢ଼ୀ ତଳ ବାଁ ପାଖକୁ ତିଆରି ହୋଇଥିବା ଗେଷ୍ଟ କୋଠରୀରୁ ବନକନ୍ୟା ବାହାରକୁ ଆସୁଥିଲା । ଏ ଦୁଇଜଣଙ୍କୁ ଚେୟରଙ୍କ ଭଳି ଜନକନ ହେଉଥିବା ଦେଖି କହିଲା । "କେଉଁଆଡେ ଯାଉଛ ?"

ନା, କିଛି ନୁହେଁ, ଏଣୁ ବଗିଚା ଆଡ଼େ "ରଜଂଶ୍ରୀ ବିନୀତ ସ୍ୱରରେ କହିଲା" ବନକନ୍ୟା ସଙ୍ଗେ ସଙ୍ଗେ ଚାଲିଗଲା ।

ତଳ ଡ୍ରଇଂ ରୁମ୍‌ରେ ସଜ୍ଜନ, କର୍ଣ୍ଣେଲ୍ ଓ ମହୀପାଳ ବସିଥିଲେ । ମହୀପାଳ ଆଜି ପୂର୍ଣ୍ଣ ଜମିଦାରୀ ଢଙ୍ଗରେ ଆସିଥିଲା ବଢ଼ିଆ ଚପ୍‌ପଲ, ଚଉଡ଼ା କୁଞ୍ଚିକମ୍‌କରା ହୋଇଥିବା ଧୋତି, ସିଲ୍‌କ ପଞ୍ଜାବୀ ଉପରେ ରେଶମୀ ଜବାହାର ଜାକେଟ୍, ଫେବର୍‌ଲୁବା ଘଡ଼ି, ସେଫରସର ସୁନେଲି କଲମ, ହାତରେ ପୋଖରାଜ ଜଡ଼ିତ ମୁଦି । ସେ କର୍ଣ୍ଣେଲ ଓ ସଜ୍ଜନଙ୍କୁ ବଡ଼ ଗର୍ବର ସହିତ ନିଜର ଆମଦାନୀ ବିଷୟରେ କହୁଥିଲା ।

କର୍ଣ୍ଣେଲ କହିଲା "ଏବେତ ତୁମର ଭାଗ୍ୟ ଉଦୟ ହୋଇଛି । କିନ୍ତୁ ଏବେ ହଠାତ୍ ଏତେ ରୟାଲଟି କିମିତି ଆସିଗଲା ? କେବେ କେବେ ବର୍ଷଯାକରେ ଶାଠେ ତିନହଜାର ମଧ୍ୟ ପୂରା ଆସେ ନାହିଁ ।"

ମୋର ଗୋଟିଏ ବନ୍ଧୁ ପଞ୍ଜାବ ୟୁନିଭରସିଟିର କୋର୍ସରେ ଆସିଯାଇଛି । ମହୀପାଳ ବଡ଼ପଣିଆ ଦେଖାଇ, ଆଖି ମିଟି ମିଟି କରି ସେ ବେପରୱା ହୋଇ ସିଗାରେଟ୍ ଖୁବ୍ ଜୋରରେ ଶୋଷି ନେଲା ।

ସଜ୍ଜନ କହିଲା " ତେବେ ଖୁସିପାଇଁ ଗୋଟିଏ ଭୋଜି ଡ୍ୟୁ ହୋଇଗଲା" ।

ଯେବେ କହିବ, ଆଚ୍ଛା କାଲି ସନ୍ଧ୍ୟାରେ କପୂରଠାରେ ।

ମହୀପାଳର କଥା କାଟି କର୍ଣ୍ଣେଲ କହିଲା "କପୂରରେ କାହିଁକି ? ଘରେ କାହିଁକି ନୁହେଁ ?"

"ଘରେ ପୁଣି ଶୀଳାକୁ ଡାକି ପାରିବ ନାହିଁ ।" ସଜ୍ଜନ କହିଲା ।

"ଶୀଳାକୁ ମୁଁ ଏମିତି ମଧ୍ୟ ଡାକୁ ନାହିଁ । ମୁଁ ତ ସେଠାକୁ ତୃପ୍ତି ପାଇଁ ଯାଉଛି ।" ମହୀପାଳ ଗୋଟିଏ କଥା ଅତ୍ୟନ୍ତ ଗମ୍ଭୀର ହୋଇ ଓ ଅନ୍ୟଟି ତ୍ରେସନ ଗମ୍ଭୀରତାକୁ ନିର୍ଭୟରେ ନଷ୍ଟ କରିବାର ଅଭିନୟ କରି କହିଲା ।"

ସଜ୍ଜନ ତାର ରୁକ୍ଷତାକୁ ଦେଖୁଥିଲା । ତାକୁ ବିଶ୍ୱାସ ହେଉଥିଲା ଯେ ଶୀଳାପ୍ରତି ମହିପାଳ ଏହି କଠୋରତା ଅତ୍ୟନ୍ତ ଅନ୍ୟାୟ ଓ ଭୁଲ ମଧ୍ୟ । ଆବଶ୍ୟକ ହେଲେ ଶୀଳାକୁ ତ୍ୟାଗ କରିବା ପାଇଁ ଚାହିଁଲେ କରିବ କିନ୍ତୁ ତା ପ୍ରତି ଏତେ କଠୋର କାହିଁକି ହେବ ? ଏଥିରୁ ସ୍ପଷ୍ଟ ହୁଏ ଯେ ଏହି କଠୋରତା ଶିଳାର ପ୍ରଭାବକୁ ନିଜ ମନରୁ ଦୂର କରି ପାରିବାର କାରଣ । ଏହି ନିଷ୍ଠୁରତା ନିହାତି ଖରାପ । ମନୁଷ୍ୟ ଏହି କାରଣରୁ ପରିସ୍ଥିତିରେ ପଡ଼ି ଅତ୍ୟନ୍ତ ନିର୍ଦ୍ଦୟ ହୋଇପାରେ । ସଜ୍ଜନ ନିଜ ଅନୁଭବରୁ ଜାଣେ । କିନ୍ତୁ ମହିପାଳ ଶୀଳା ପ୍ରତି ଏତେ କଠୋର ଓ ନିର୍ଦ୍ଦୟ କାହିଁକି ? ସେ ଜାଣେ ତାର ସମ୍ବନ୍ଧ ଅବୈଧ କିନ୍ତୁ ଶୀଳା ଖରାପ ନୁହେଁ, ଶୀଳା ଅତ୍ୟନ୍ତ ଭଲ ସ୍ତ୍ରୀ । ସେ ବିଚାରି କେତେ ଦୁଃଖିନୀ । ଶୀଳା ପାଇଁ ସଜ୍ଜନ ମନରେ ସହାନୁଭୂତି ଆସୁଥିଲା । ସେ କହିଲା "କାହିଁକି, ଶୀଳାକୁ କାହିଁକି ଡାକିବାକୁ ଚାହୁଁ ନାହିଁ ?"

ମହିପାଳ ଚୁପ୍ ରହିଲା ।

କର୍ଣ୍ଣେଲ୍ ଗମ୍ଭୀର ହୋଇ କହିଲା "ଦେଖ ସଜ୍ଜନ ଏଥିରେ କଥା ଅଛି । ତୁମେ ଜାଣ ନାହିଁ । ତୁମେ ସେତେବେଳେ ମଥୁରା ଯାଇଥିଲ ।"

"ମୁଁ ସବୁ ଜାଣିଛି" ସଜ୍ଜନ କହିଲା ।

କର୍ଣ୍ଣେଲ ଓ ମହିପାଳ ଦୁହେଁ ତା ଆଡ଼କୁ ଚମକି ଚାହିଁଲେ । ସେମାନେ ବୁଝିପାରିଲେ ଶୀଳାଂ ସହିତ ସଜ୍ଜନର ସାକ୍ଷାତ ହୋଇଛି ।

"ବର୍ତ୍ତମାନ ଜଣେ କାହାରିକୁ ମାନିବାକୁ ପଡ଼ିବ" କର୍ଣ୍ଣେଲ ନିଜ ଢଙ୍ଗରେ ସଙ୍କେଇଦେଲା ।

ସେ କଥା ଅଲଗା କିନ୍ତୁ ଶୀଳା ସହିତ ବନ୍ଧୁତା, ମାନବିକତା ସମ୍ବଳିତ, ତା ସହିତ ମହିପାଳ ସମ୍ପର୍କ ରଖିଲେ କ୍ଷତି କଣ ।

ମୁଁ ନିଜର ପତ୍ନୀକୁ କୌଣସି ପ୍ରକାରେ ଦୁଃଖ ଦେବାକୁ ଚାହିଁ ନାହିଁ । ସଜ୍ଜନକୁ ବହୁତ ଖରାପ ଲାଗିଲା 'ତୁମେ ଏହି ସତ୍ୟତାର ଆଳରେ ଶୀଳାକୁ ବେଇଜତି ।' କରିବା ପାଇଁ ଏ ଦୁର୍ବୁଦ୍ଧି କାହିଁକି ପ୍ରକାଶ କରୁଛ ।

କଥା ଶୁଣି ମହିପାଳର ଭ୍ରୂକୁଟି କୁଞ୍ଚିତ ହେଲା । ସଜ୍ଜନ ମଧ୍ୟ ତା ଦୃଷ୍ଟି ସହିତ ଦୃଷ୍ଟି ମିଳାଇ ସେହି ଭଙ୍ଗୀରେ କହିଲା "ମୁଁ ଏକ ପତ୍ନୀ ବ୍ରତର ଗର୍ବୀ । ମୁଁ ଭବିଷ୍ୟତ ଜୀବନକୁ ସୁଦୃଢ଼କରି ରଖିବି କିନ୍ତୁ ମୋର ଗତ ଜୀବନର ଅପରାଧ ସର୍ବଦା ରହିବହିଁ ରହିବ । ସେଥିରେ ମୁଁ କିପରି ରକ୍ଷା ପାଇବି ?"

ମହୀପାଳ କହିଲା "ତେବେ ତୁମେ ଦାୟିତ୍ୱ ନାମରେ ନିଜର ସମସ୍ତ ପ୍ରେମାସ୍ପଦମାନଙ୍କ ସହିତ ପ୍ରେମ କରିଚାଲିବ ଓ ଏକ ପତ୍ନୀବ୍ରତର ଝଣ୍ଡା ମଧ୍ୟ ଉଡ଼ାଇବ ? ହଁ, କୌଣସି ପ୍ରୋଫେସର ବୋଷ-ଘୋଷ-ବାନାର୍ଜି-ଚଟାର୍ଜି ତୁମ ଘରେ ଭୋଜି ଖାଇ ଗୋଟିଏ ଉଚ କୋଟିର ଲେଖା ମଧ୍ୟ ଲେଖିଦେବ ଯେ ତୁମେ ତୁମର ବିବାହ ପରେ କିପରି ଆଦର୍ଶ ସଦ୍ ଗୃହସ୍ଥ ହୋଇଯାଇଛ ଜଷ୍ଟ ଲାଇକ୍ ସୁ ।"

କନ୍ୟା କବାଟ ପାଖରେ ଛିଡ଼ା ହୋଇ ଏ ସମସ୍ତ ଶୁଣୁଥିଲା । ମୁଣ୍ଡରେ ଅସମ୍ଭବ ଯନ୍ତ୍ରଣା ଅନୁଭବ କରୁଥିଲା । ଶୀଲା ଓ ମହୀପାଳର ସମ୍ବନ୍ଧକୁ ସେ ମନେ ମନେ ପସନ୍ଦ କରୁନଥିଲା । ତା ଭିତରର ପତ୍ନୀତ୍ୱ ଏହି ସମ୍ବନ୍ଧକୁ ସହି ପାରୁନଥିଲା । ତତ୍ ସଙ୍ଗେ ସଙ୍ଗେ ଶୀଲାର ବ୍ୟକ୍ତିତ୍ୱରେ ପ୍ରଭାବିତ ହୋଇ କଲ୍ୟାଣୀ, ତା ସହିତ ସଜ୍ଜନ ଆଗ୍ରହକୁ ଦେଖି ସେ ଏହି ଅନୈତିକ ସମ୍ବନ୍ଧକୁ ମୌନ ଭାବରେ ସ୍ୱୀକାର କରୁଥିଲା । ସକାଳର ନିମନ୍ତ୍ରଣ ଅନୁସାରେ ଶୀଲା ଆସି ପହଞ୍ଚିଲା, ତାଙ୍କର ଚଟିପାଇ କନ୍ୟା ନାଷ୍ଟା ମହଲକୁ ଉଠୁଥିଲା, ଶୀଲାକୁ ବାବାଜୀଙ୍କ ପିଜେଟ ରୁମରେ ବସାଇ ସେ ସଜ୍ଜନଙ୍କୁ ସୂଚନା ଦେବା ପାଇଁ ଆସିଥିଲା ।

ରାଜ୍ୟଶ୍ରୀ ଓ ଶକୁନ୍ତଳା ବାହାରକୁ ଚାଲିଗଲେ, କନ୍ୟା ଦରଜା ପାଖରେ ରହି ଶୁଣୁଥିଲା ମହୀପାଳର କଥାର ପ୍ରଭାବ ତାର ନାରୀ ସୁଲଭ ମନରେ ଆଘାତ ଦେଉଥିଲା । ସଜ୍ଜନ ପାଖରେ ସେ ଆଉ କୌଣସି ସ୍ତ୍ରୀର ଉପସ୍ଥିତିକୁ ସହ୍ୟ କରି ପାରେ ନାହିଁ । ଏହି କଥାକୁ ନିଜ ଭିତରେ ଲୁଚାଇ ସେ ଚିନ୍ତା କରୁଥିଲେ । ଯେ ମହୀପାଳ ଶୀଘ୍ର ବିରୁଦ୍ଧରେ ଏତେ କଥା କହି, ପୁଣି କିଣ ତା ସହିତ ମିଶିବେ ? ଶୀଲା ତରଫରୁ ତା ହୃଦୟରେ କମ୍ପନ ସୃଷ୍ଟି ହେଲା । ସ୍ୱାମୀ ଦୟାଲ ନାମରେ ଜଣେ ଚାକର ବାହାର କବାଟ ଭିତରକୁ ଆସିଲା । କନ୍ୟା ତାକୁ ଦେଖି ଶୀଘ୍ର ଘର ଭିତରକୁ ପଶିଗଲା । କନ୍ୟାକୁ ଦେଖି ପୁରୁଷମାନଙ୍କର ବୈଠକ ବନ୍ଦ ହୋଇଗଲା । କର୍ଣ୍ଣେଲ କହିଲା······ ବନ୍ଦୋ ତୁମେ ଆସି ଭଲ କଲ ।"

"କାହିଁକି ଭାଇ ସାହେବ ?"

"ଆରେ କିଛି ମିଠାଇ ଫିଠେଇ ପଠାଅ "

କନ୍ୟା ଶୁକ୍ଳାଜୀ ମିଠେଇ ଖାଇବାକୁ ବ୍ୟସ୍ତ ହୋଇଗଲେଣି । ହସିଲା, ପୁଣି ତୀକ୍ଷ୍ଣ ଦୃଷ୍ଟିର ମହୀପାଳର ପକ୍ଷ ନେଲାଭଳି କହିଲା" ଆଜି ତ ଆପଣମାନେ ହୋଲି ପାଳନ କରୁଛନ୍ତି' ଏକୁଟିଆ ଶୁକ୍ଳାଜୀ ମହାଶୟଙ୍କୁ କାହିଁକି ବଦନାମ କରୁଛନ୍ତି ?"

ସଜ୍ଜନ ନିଜର ଗୋଲାପୀ ଆଖିରେ କନ୍ୟା ଆଡ଼କୁ ଚାହିଁ କହିଲା "ମୁଁ ତ ତୁମ ଡରରେ ପିଉନଥିଲି, ବାଧ୍ୟ କରି ମହିପାଲ ମୋତେ ପିଆଇଲେ ।"

ଆଚ୍ଛା ଶୁଣିଲି ବାହାରକୁ ଆସ ଟିକେ କାମ ଅଛି । ଶୀଳାର ଆଗମନରେ ସଜ୍ଜନ ଗମ୍ଭୀର ହୋଇଗଲା । କନ୍ୟା କହିଲା "ଆଜି ଦିନରେ ତୁମର ଡାକ୍ତରକୁ ନ ଡକିବାରଥିଲା । ସବୁ କଥା ଠିକ ନ ଭାବି ତୁମେ........"

ମୁଁ ମହିପାଲଙ୍କୁ ବର୍ତ୍ତମାନ ଆଣୁଛି । ତାକୁ ମୁଁ ଜାଣେ ସେ ଶୀଳା ଆଗରେ ସବୁ ବିରୋଧ ଭୁଲିଯିବ, କହି କହି—ସଜ୍ଜନ ପୁଣି କୋଠରି ଭିତରକୁ ଚାଲିଗଲା । କନ୍ୟା ଫେରିଗଲା, ମହିପାଲ ସମ୍ମୁଖରେ ସଜ୍ଜନ ସହିତ ଶୀଳାର ସହଚରୀ ହୋଇ ଚାଲିବାରେ ତାର ଇଚ୍ଛା ନ ଥିଲା ।

ସଜ୍ଜନ ମହିପାଲକୁ ନେଇ ସିଢ଼ିଘର ପାଖ କୋଠରିକୁ ଆସିଲା । କୋଠରି ଭିତରେ ଏକ ବଡ଼ ଆଲମାରି କଡ଼ ଦେଇ ଭିତର ଦରଜା ପାଖ ଦେଇ ବାବାଙ୍କଙ୍କ ପ୍ରିଭେଟ ରୁମକୁ ନେଇଗଲା । ଶୀଳା ଚୌକି ଉପରେ ନୀରବରେ ବସିଥିଲା । ମହିପାଲକୁ ଦରଜା ପାଖରେ ଛାଡ଼ି ସଜ୍ଜନ ବାହାରକୁ ଚାଲି ଆସିଲା ।

ମହିପାଲକୁ ସାମ୍ନାରେ ଦେଖି ଶୀଳା ନିଜ ଚେହେରାରେ ମଳୀନତା ଭରି ସ୍ମିତ ହାସ୍ୟ ଖେଳାଇ ଛିଡ଼ା ହେଲା । ମହିପାଲର ଚେହେରାରେ ସୁନ୍ଦରତା ଛାଇଗଲା ।

"ହୋଲି ମୁବାରକ୍" ଶୀଳା କହିଲା ।

ମହିପାଲର କଠୋରତା ପରାସ୍ତ ହେଉଥିଲା, କଥା କହିବା ପାଇଁ କଷ୍ଟ ହେଲେ କଥା ମୁହଁରୁ ବାହାରିଲା ନାହିଁ । ଉତ୍ସାହର ହସି ହସି କହିଲା" ଆଜି ଆଜି ଆମେ ଏଠାରେ ମିଶୁଚୁଁ ।"

ଶୀଳା ହସି ହସି ନିଜର ଦୃଷ୍ଟିକୁ ଅବନମିତ କଲା । ମହିପାଲ ହଠାତ୍ କହିଉଠିଲା" ଏହି ତଳଘର ତଳକୁ ଆଉ ଗୋଟିଏ ଚାଲ ଘର କଣ ହୋଇପାରିବ ନାହିଁ ?"

ଏକଥା ଶୀଳାର ବୋଧଗମ୍ୟ ହେଲା ନାହିଁ । ସେ ଅତି ବ୍ୟସ୍ତ ହୋଇପଡ଼ିଲା । ମହିପାଲ କହି ଚାଲିଲା......ପ୍ରେମ କରିବା ପାଇଁ ଆମକୁ ଆହୁରି ପାତାଳକୁ ଯିବା ଉଚିତ, ଏଠାରେ ମଧ୍ୟ କେହି ଦେଖିପାରେ ।

ଶୀଳା କହିଲା "ତୁମଠାରୁ ଏତେ ଦିନ ପର୍ଯ୍ୟନ୍ତ ବିଚ୍ଛେଦ ରହିବା" ।

ହଠାତ୍ ମଦ୍ଧୁପାଳର ସ୍ୱର କଠୋର ହୋଇଗଲା, କହିଲା "ମୁଁ ସ୍ୱେଚ୍ଛାକୁ ପସନ୍ଦ କରେନାହିଁ ଶୀଳା । ମିଶି ପାରିବ ଯଦି କେବେ ତୁମ ସହିତ ତୁମ ଘରେ ମିଶିବ, ଯେପରି ମିଶୁଥିଲି ।"

"ମୁଁ ତ କେବେ ମନା କରିନାହିଁ"

"ଠିକ୍, କିନ୍ତୁ ମୁଁ ବଦଳି ଯାଇଛୁ ଆଚ୍ଛା ମୁଁ ଯାଉଛି ।"

"ଶୁଣ, ତୁମେ ସମାଜ ଭୟରେ ମୋତେ ଛାଡ଼ୁଛ ଅଥବା ମନେ ଛାଡ଼ି ଦେଉଛ ?

ମଦ୍ଧୁପାଳ ଟିକେ ଅଟକିଗଲା, ତାର ମୁଣ୍ଡ ନଇଁ ଯାଇଥିଲା, ଗୋଟେ ସେକେଣ୍ଡ ରହି କଠୋର ସ୍ୱରରେ କହିଲା "ବର୍ତ୍ତମାନ ମୁ ଏ ସମସ୍ତ କଥା ଚିନ୍ତା କରୁନାହିଁ ।"

ସେହି ଉପାୟ ମୋତେ ମଧ୍ୟ କହିଦିଅ ଯାହାଦ୍ୱାରା ମୁଁ ମଧ୍ୟ ତୁମକୁ ଭୁଲି ଯାଇପାରିବି ।

ମଦ୍ଧୁପାଳ ଯିବାକୁ ଲାଗିଲା, ଶୀଳା ତାର କାନ୍ଧ ଉପରେ ହାତରଖି କହିଲା "ତୁମେ ଯେଉଁ ପାରିବାରିକ ଦାୟିତ୍ୱ ଯୋଗୁଁ ଏତେ ବଡ ତ୍ୟାଗ କରୁଛ, ମୁଁ ତାକୁ ସମ୍ମାନ ଦେଉଛି । ତୁମେ ଭଲ ଭାବରେ ଜାଣ ଯେ ମୁଁ କଲ୍ୟାଣୀକୁ ମଧ୍ୟ ସମ୍ମାନ ଦିଏ । ତୁମର ଗୃହ ସୁଖକୁ ନଷ୍ଟ କରିବା ଅଥବା ତୁମକୁ ବଦନାମ କରିବାରେ ମୋତେ ସୁଖ ମିଳିବ ନାହିଁ ।"

ମଦ୍ଧୁପାଳ ନମ୍ର ସ୍ୱରରେ କହିଲା, "ସବୁ କିଛି ବୁଝି ମଧ୍ୟ ଆଜି କାହିଁକି ଆସିଲ ?"

ତୁମକୁ ଥରଟିଏ ଦେଖିବାର ଲୋଭ । ଗୋଟିଏ ସେକେଣ୍ଡ ବାସ୍...ବାସ ।"

ମଦ୍ଧୁପାଳ ତାର ପାଖକୁ ଘୁଞ୍ଚି ଆସିଲା । ଦୁହେଁ ମୁହାଁ ମୁହିଁ ହୋଇ ଚୌକିରେ ବସିଥିଲେ । ଗୋଲ ଗୋଲ ମୋହର ଥାଇ ସୁନ୍ଦର ଖମ୍ବରେ ସୁସଜ୍ଜିତ ଘର କୋଣିଆ କୋଠରୀ ଅନ୍ଧାର ଓ ଏକାନ୍ତତାର ବାତାବରଣ ପ୍ରସ୍ତୁତ କରୁଥିଲା । କାନ୍ଥରେ ଦୁଇଟି କ୍ଷୁଦ୍ର କଣା ବାଟେ ଆଲୋକ ପ୍ରବେଶ କରୁଥିଲା ତା ବ୍ୟତୀତ ଏହି କୋଠରୀ ସମ୍ପୂର୍ଣ୍ଣତଃ ବାହାର ଦୁନିଆରୁ ବିଚ୍ଛିନ୍ନ ଥିଲା । ଏହି କୋଠରୀରେ କେତେକ ସୁନ୍ଦର ସମୁଦ୍ର ଶାମୁକା ମଧ୍ୟ ଅଛି । ଖମ୍ବ କାନ୍ଥରେ ଶାମୁକା ରଙ୍ଗ ଉପରେ ଦିଆଯାଇଥିବା ଚନ୍ଦନର ଚିହ୍ନ ପରିଲକ୍ଷିତ ହେଉଥିଲା । ଯେଉଁଠାରେ ସେ ଦୁହେଁ ବସିଥିଲେ ତାର ବାମ ପାଖକୁ ମୋଟା ଲୁହା ଛଡରେ ତିଆରି ଗୋଟିଏ ଯନ୍ତ୍ର ଥିଲା । ଯେଉଁଥିରେ କି ଲୁହାର ଦୁଇଟି ପୁରୁଣା ବଡ଼

ବଡ଼ ସିନ୍ଦୁକ ଓ ଦୁଇଟି ଗଡ଼୍‌ରେଜ୍‌ର ଆଲ୍‌ମାରୀ ରଖାଯାଇଥିଲା । ଯନ୍ତ୍ରାର କବାଟ ପୁରୁଣା ବନାତ ତାଲରେ ବନ୍ଦଥିଲା । ମହିପାଲ, ଶୀଳାର ଅଜାଣତରେ ଏଠି ସେଠି ଦେଖୁଥିଲେ । ଯେଉଁ ସୁଖ ଜମାତ ପରିସ୍ଥିତରେ ଭିନ୍ନ ସେ ବର୍ଷ ବର୍ଷ ବିତାଇଥିଲା, ସେହି ପରିସ୍ଥିତ ଏବେ ତା ମନରେ ଦ୍ୱନ୍ଦ୍ୱ ଓ କଷ୍ଟ ଜନ୍ମାଉଥିଲା ।

ଶୀଳା କହିଲା "ବର୍ତ୍ତମାନ ଆମେ ବାର୍ଦ୍ଧକ୍ୟ ଆଡ଼କୁ ଗତି କରୁଛେ । ମହିପାଲ, ମୋତେ ଅତୀତରହି ଧୂଳି ଏଇ ଜୀବନରେ ଅନ୍ୱେଷଣ କରିବ ।"

ମହିପାଲ ତା ଆଡ଼କୁ ଚାହିଁଲା ନାହିଁ ବା ତା କଥାରେ ଜବାବ ମଧ୍ୟ ଦେଲା ନାହିଁ । ଶୀଳା ପୁଣି କହିଲା "ଜୀବନ ବର୍ତ୍ତମାନ ପରିପୂର୍ଣ୍ଣର ଜୀବନ । ଜୀବନର ଅଟ୍ଟାଳିକା ଆବାଦ ହୋଇ ସାରିଛି । ବିଶ୍ୱାସ କର । ଇଟା ସହିତ ଇଟା, ପଥର ସହିତ ପଥର ଯୋଡ଼ା ସରିଛି । କେବଳ ପ୍ରଣୟର ଶୂନ୍ୟ ଜୀବନ ଯାହା ଗଢ଼ି ଉଠିଛି ତାକୁ ନିଜ ଖିଆଲରେ ନଷ୍ଟ କରିଦିଅନାହିଁ ।

ମହିପାଲର ମୁଣ୍ଡ ତଳକୁ ହୋଇଗଲା । ଶୀଳା ପୁଣି କହିଲା "ପାପ ତ ପାପ-ହୋଇ ରହିବ ଏତେ ବର୍ଷର ସଞ୍ଚିତ ଏ ପାପ ଆମ ଜୀବନରେ ପୁଣ୍ୟ ହୋଇ କେବେ ଠିଆ ହେବନାହିଁ । କୁହ, ତୁମେ ନିଜେ କୁହ ।"

ମହିପାଲ ଧାତୁଭିତ ମୂର୍ତ୍ତିଭଳି ବସି ରହିଲା । ତାର ଚେହେରାରେ କୌଣସି ଭାବନାର ଉଦ୍ରେକ ହେଉ ନ ଥିଲା । କେବଳ ଶୂନ୍ୟତା କିଛି କ୍ଷଣପରେ ଶୀଳା ତାକୁ ଦେଖିବାକୁ ଲାଗିଲା । ସେ ମହିପାଲ ସହିତ କଥାର ସ୍ଲୋଗାନରେ ରହିବାକୁ ଚାହୁଁଥିଲେ କିନ୍ତୁ ଏବେ ମାନସିକ ସ୍ଥିତିରେ ତାଙ୍କ ପାଖରେ କଥାର ମଧ୍ୟ ଅଭାବଥିଲା, ଭାବନା ମୂକ ହୋଇ ଯାଉଥିଲା । ତାଙ୍କର ମୂକ ଭାବ ନିଜ ପ୍ରିୟ ଚନ୍ଦ୍ରକର ବାକ୍ ଶକ୍ତି ଚାହୁଁ ଥିଲା ଯାହାକି ତାଙ୍କୁ ମିଳୁ ନଥିଲା । ଶୀଳାର ଆଖି କୁଟୀର ପ୍ରଦୀପ ଭଳି ମିଞ୍ଜି ମିଞ୍ଜି ହେଉଥିଲା । ମହିପାଲ ଯଥା ପୂର୍ବଂ ତଥା ପରଂ ହୋଇ ବସି ରହିଲା । ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ି ଶୀଳା ବିବଶତା ପୂର୍ଣ୍ଣ ସ୍ମିତ ହାସ୍ୟ ଖେଳାଇ କହିଲା ଏଇ ଧରଣର ଅନେକ ପ୍ରେମ ଦୁନିଆର ପ୍ରତ୍ୟେକ ବଡ଼ ଲେଖକ ସହ ଯୁକ୍ତା ହୋଇ ରହିଛି । କେବଳ ଏକୁଟିଆ ତୁମେ ନୁହଁ ଯାହାକୁ ଇତିହାସ ଦୋଷୀ ସାବ୍ୟସ୍ତ କରିବ ।

ମହିପାଲ ଉଠିଠିଆ ହେଲା, ଓ ନୀରବରେ ଚାଲିଗଲା ଶୀଳା ତାକୁ ପଛରୁ ଡ଼ାକି ପାରିଲା ନାହିଁ ।

ମହିପାଲ ଯେତେବେଳେ ବାହାରକୁ ଆସିଲା ସେ ଦେଖିଲା ଯେ କଲ୍ୟାଣୀ,

କନ୍ୟା ଓ କର୍ଣ୍ଣେଲର ସ୍ତ୍ରୀ କୋଠୀ ଭିତରେ ତିଆରି ହୋଇଥିବା ଠାକୁର ଘର ଆଡ଼କୁ ଯାଇଛନ୍ତି । ମହୀପାଳ ଶୀଳା ପାଖକୁ ଫେରି ଆସିଲା ଏବଂ କହିଲା ତୁମେ ଏବେ ବାହାରକୁ ବାହାରି ନାହିଁ ।''

ଶୀଳା କିଛି ହଜାଇ ଥିବା ଭଳି ବସିଥିଲା । ସେ ହଠାତ୍ ମହୀପାଳର କଥା ବୁଝିପାରିଲା ନାହିଁ । ମହୀପାଳ ଚୌକାଠ ଉପରେ ଛିଡ଼ା ହୋଇଥିଲା, ଗୋଟିଏ ପାଦ ବାହାରେ ଓ ଗୋଟିଏ ପାଦ ଭିତରେ ଥିଲା । ଶୀଳା ତାର ଶବ୍ଦ ଶୁଣିଲା କ୍ଷଣି ଉଠି ଛିଡ଼ା ହୋଇଥିଲା । ତାକୁ ଦେଖି ସେ ଆଗକୁ ଆସିଲା । ନିଜର ଚିତ୍ତ ଶଙ୍କା ଯୋଗୁଁ ସେ ଶୀଳାର ଆଖିରେ ଆଖି ମିଶାଇବା ପାଇଁ ବାଧ୍ୟ ଥିଲା । ଆଖିରେ ଆଖି ମିଶିଗଲା ଶୀଳାର ଆଖି ମହୀପାଳର ଦୃଷ୍ଟିକୁ ନିଜ ଭିତରେ ଆବଦ୍ଧ କରୁଥିଲା । ଶୀଳା ତା ପାଖକୁ ଆସିଲା । ଅଧ ମାଝାରେ ନିକଟେଇ ଗଲେ ସେ । ଶୀଳା ପଲକ ଶୂନ୍ୟ କରି ତାକୁ ଦେଖୁଥିଲା ମନେ ହେଉଥିଲା ଯେ ଆଖି ଏକ କୈନ୍ଦ୍ରିକ ଶକ୍ତି ଦ୍ୱାରା ପରିଚାଳିତ ହୋଇ ବାତାବରଣକୁ ଏକୀଭୂତ ପରିଚାଳନା କରୁଥିଲା । ଶୀଳାର ଆଖି ଭିତରେ ଚିରନ୍ତନ ସତ୍ୟ, ସମ୍ଭ୍ରାନ୍ତ ସତ୍ତ୍ୱାଧିକାରୀ, ଏକ ଛନ୍ଦବାଦର ନିଖୁଣ ଆଦେଶ ପରିସ୍ଫୁଟ ହେଉଥିଲା ଏବଂ ସେଠି ମହୀପାଳର ବ୍ୟକ୍ତିତ୍ୱ ହାର ମାନୁଥିଲା । ତୃଷ୍ଣାର୍ତ୍ତ ପ୍ରେମ ଦୃଷ୍ଟିରେ ଶୀଳା ବିଭୋର ହୋଇ ତାର ଦୃଷ୍ଟିରେ ନିଜକୁ ଦେଖୁଥିଲା । ସେହି ତୃଷା ଚିର ଅମର ଥିଲା, ସେହି ପ୍ରେମ ମହୀପାଳରୁ ଆତ୍ମବିଶ୍ୱାସ ଭଳି ପ୍ରେରଣା ଦେଉଥିଲା ଯାହାର ଦୂରତ୍ୱ ସେ ସବୁ ସମୟରେ ଗ୍ରହୁଁଥିଲା । ଶୀଳା ଖୁବ୍ ଟେଇ ଆସିଲା, ମହୀପାଳର ନିଷ୍ଠା ବିବଶତାର ଚରମ ବିନ୍ଦୁକ ଛୁଇଁଲା । ଶୀଳା ନିଜ ଆୟତ୍ତରେ ନଥିଲା, ମହୀପାଳ କିଂକର୍ତ୍ତବ୍ୟ ବିମୂଢ଼ ହୋଇଗଲା ।

ମହୀପାଳର ସୌନ୍ଦର୍ଯ୍ୟ-ପ୍ରିୟ ଲେଖକ ସତ୍ତ୍ୱକ ଏହି ଅପୂର୍ବ ସୌନ୍ଦର୍ଯ୍ୟକୁ କେବେ ଦେଖିପାରି ନ ଥିଲା । ଶୀଳାର ଆଖି ତାକୁ ପ୍ରେମ ମନ୍ତ୍ର ଉଚ୍ଚାରଣ ପାଇଁ ବାରମ୍ବାର ଆହ୍ୱାନ ଦେଉଥିଲା । ସେ କ'ଣ ଏହି ହୃଦୟର ମହାସମୁଦ୍ରକୁ ଲଙ୍ଘନ କରିପାରିବ ? ତୁମେ ପ୍ରେମର ଉତ୍ତାଳ ତରଙ୍ଗରେ ଝାସ ଦେବାକୁ ବାଧ୍ୟ, ମହୀପାଳ ।

ଶୀଳା, ମହୀପାଳ ସମ୍ମୁଖରେ ଟିକିଏ ଦୂରରେ ଛିଡା ହୋଇଥିଲା । ନୀରବ ନିଶ୍ୱାସ ପ୍ରଶ୍ୱାସର ଦୂରତ୍ୱ ଜଣେଇ ଦେଉଥିଲା । ଏହି ନିଶ୍ୱାସ ଉତ୍ତାପରେ ମହୀପାଳ ଅଧୀର ହୋଇ ଉଠୁଥିଲା । ଶୀଳାର ଦୁଇବାହୁ ବରମାଳ୍ୟ ପରି ମହୀପାଳର ଛନ୍ଦ ହୋଇଗଲା, ଧିରେ ଧିରେ ନିବିଡତାରୁ ନିବିଡ଼ତର ମଧ୍ୟ ତାର ବାହାରେ ରହି ଥିବା ପାଦ ଆପେ ଆପେ ଆସିଲା କବାଟ ସାମାନ୍ୟ ଶବ୍ଦ କରି ବନ୍ଦ ହୋଇଗଲା ।

ମହୀପାଳର ସ୍ୱପ୍ନ ଭାଙ୍ଗିଲା । ତାର ଚେତନା ଫେରିଲା, କବାଟ ଶବ୍ଦ ସହିତ କର୍ଣ୍ଣେଲର ସ୍ତ୍ରୀ ଓ କନ୍ୟା ସହିତ ଠାକୁର ଘର ଆଡ଼କୁ ଯାଉଥିବା କଲ୍ୟାଣୀ ତା ମନରେ

ଚେତନା ଆଙ୍କିଦେଲା । ସମାଜ—ଶକୁନ୍ତଳାର ବିବାହ, ସାଙ୍ଗ ସାଥୀ, ପଦମର୍ଯ୍ୟାଦା ଏପରି ନିଜ ସ୍ୱେଚ୍ଛା, ଏ ସ୍ୱେଚ୍ଛା ପ୍ରେମ ସବୁ କିଛି ତାର ସାମ୍ନାକୁ ଆସିଗଲା । ମହିପାଳଧିର ସଜ୍ଜିତ ହେଲା, ସ୍ଥିର ହେଲା । ମୁହଁ ଫେରାଇ ଶୀଲାର ବାହୁ ବନ୍ଧନରୁ ମୁକ୍ତ ହେଉ ହେଉ ଯା ଯାଇଛି ତାକୁ ଭୁଲିଯାଅ ଶୀଳା, ଖୁବ୍ ଭଲ ଭାବରେ ଭୁଲିଯାଅ । ଆମେ ଏତେ ନିକଟକୁ ଆସି ନ ଥିଲେ ବନ୍ଧୁ ହୋଇ ରହିପାରି ଥାଆନ୍ତେ, କିନ୍ତୁ ବର୍ତ୍ତମାନ ବନ୍ଧୁ ହୋଇ ମଧ୍ୟ ରହି ପାରିବ ନାହିଁ ।

ଶୀଳା ଅବଶ ହୋଇ ପଡ଼ିଥିଲା । ମହିପାଳର କଥାରେ କିଛି ପାର୍ଥକ୍ୟ ସେ ହୃଦୟଙ୍ଗମ କରିପାରିଲା । ମହିପାଳ ତାର ବନ୍ଧନ ଖୋଲିବାପରେ ମଧ୍ୟ ସେ ସୁଖ ସ୍ପର୍ଶ ଅନୁଭବ କରୁଥିଲା । ତାକୁ ଦେଖିବା ପାଇଁ ମହିପାଳ ବୁଲିଗଲା । ଶୀଳାର ତାର ଗ୍ରୀବାରେ ନିଜକୁ ଜଡ଼େଇଥିଲା, ସୀମାନ୍ତରେ ତାର ଦିନୋଟି ଧଳା ବାଳ ଚକ୍ ଚକ୍ କରୁଥିଲା । ତା ଉପରେ ରେଶମୀ ଜାକେଟ ତାର ଉପର ପକେଟରେ ସ୍ୱର୍ଣ୍ଣ କଲମର ସୁନେଲି ଖୋଲ ଚକ୍ ଚକ୍ କରୁଥିଲା । ଶୀଳାର ସୀମାନ୍ତ ଉପରେ ସେ ସ୍ୱର୍ଣ୍ଣର ରଙ୍ଗ ମହିପାଳକୁ ପ୍ରେମ ଉନ୍ମାଦନାରେ ପାଗଳ କରି ତୋଳୁଥିଲା । ଏ ଦୁଇ ଧରଣର ପାଗଳାମି ଅନ୍ତ୍ୟନ୍ତ ଆପଣାର । ଏହି ମୂହୂର୍ତ୍ତ ଇର୍ଷାପରାୟଣ ବ୍ୟକ୍ତିପାଇଁ ଇନ୍ଧନ ସଦୃଶଥିଲା । ଏପରି ଅନେକ ବ୍ୟକ୍ତି ଅଛନ୍ତି ଯେଉଁମାନେ କି ସ୍ତ୍ରୀର ପ୍ରେମପାଇଁ ସାରାଦିନ ଉଜାଗର ରହିଥାଆନ୍ତି । କିନ୍ତୁ ତା ପାଖରେ ଜଣେ ପ୍ରତିଷ୍ଠିତା ସମ୍ଭ୍ରାନ୍ତା ନାରୀ ଯେ ପ୍ରେମ ନିବେଦନ କରି ନିଜକୁ ସମର୍ପଣ କରୁଛି, ଏହା ଅତି ଗର୍ବର କଥା । ମହିପାଳ ସେହି ଗୌରବରେ ସେ ଗୌରବାନ୍ୱିତ । ତା ପାଖରେ ଆଜିକାଲି ବ୍ୟାଙ୍କ ଏକାଉଣ୍ଟ୍ ବହୁତ । ରେଶମୀ କୁର୍ତ୍ତା, ରେଶମୀ ଜାକେଟ୍ ଓ ସେପର୍ସ ଫାଉଣ୍ଟେନ୍ ପେନ୍ ମଧ୍ୟ ଅଛି । ଏ ସବୁ ସ୍ୱେଚ୍ଛାର ବିଭବ । ଯଦି ଏହି ସ୍ୱୈରବୃତ୍ତି ପ୍ରକାଶ ପାଇଯାଏ, ତେବେ ସୁପ୍ରତିଷ୍ଠିତ ସାହିତ୍ୟିକ ମହିପାଳ ସାରା ଦୁନିଆଁରେ ନିନ୍ଦିତ ହେବ । ଶୀଳା ସହିତ ତାର ଗୋପନୀୟ ପ୍ରେମ ପ୍ରକାଶ ପାଇସାରିଛି । ଶୀଳା ଧନୀ, ତାର ବିଭବକୁ କ'ଣ ଶୀଳାର ଦାନ ବୋଲି କୁହାଯାଇପାରେ ? କ'ଣ ତାର ବଦ୍‌ନାମ ହୋଇପାରେ ? ଏ ଚିନ୍ତା ହଠାତ୍ କରି ତା ହୃଦୟରେ ଜାତ ହେଲା । ସେ ନିଜ ସ୍ପନ୍ଦନକୁ ଧିରେ ଧିରେ ଅନୁଭବ କରୁଥିଲା । ମହିପାଳ ନିଷ୍ପୃହ, ସ୍ୱୌଣ ପରି ନିଜ କୋଠରୀରେ ପ୍ରବେଶ କରୁ କରୁ ଯନ୍ତ୍ରଣା ଅନୁଭବ କରୁଥିଲା । ଏହି ଯନ୍ତ୍ରଣାର ନିର୍ଭୀକ ସ୍ୱର ତାକୁ କଠୋର କରିଦେଲା । ସେ କହିଲା "ଆଉ ମୋ ସହିତ ମିଶିବାକୁ ଚେଷ୍ଟା କର ନାହିଁ ।" ମହିପାଳ ପଦ ଚାରଣା କରୁ କରୁ କହି ଚାଲିଥିଲା "ଶୀଘ୍ର ବାହାର...ବାହାର କଲ୍ୟାଣୀ ଆସିଛନ୍ତି, ତାଙ୍କୁ ସାକ୍ଷାତ କରି ଆସିବ ।" ମହିପାଳ ଆଦେଶ ଦେବା ସ୍ୱରରେ କହିଲା ।

ଫେରି ଆସିଲା କର୍ଣ୍ଣେଲ ଓ ସଜ୍ଜନ କୌଣସି କଥା ପ୍ରସଙ୍ଗରେ ହସୁଥିଲେ, ମହିପାଳ ଆସିବାରୁ ହଠାତ୍ ବନ୍ଦ ହୋଇଗଲେ ।

ଆସ୍ତା ଜାନକୀ, କନ୍ୟାକୁ, ଶୀଳା ଆସିଲେ ଖବର ଦେଲ । ଠାକୁର ଘର, ପୁରୁଣା ଅନ୍ତପୁର ଦେଖି ତାଳ କନ୍ଧିଙ୍କର ପତ୍ନୀ ସେ ସମୟରେ ଫେରୁଥିଲେ । କଲ୍ୟାଣୀ ସେ ସମୟରେ ଘରକୁ ଫେରିବାର ଥାଏ, କନ୍ୟାର କୋଳରେ କଲ୍ୟାଣୀର ଶ୍ରେଷ୍ଠ ଝିଅଟି ଶୋଇଥିଲା । ସେ ଜାନକୀଙ୍କୁ ଏକାନ୍ତ ସ୍ଥାନକୁ ନେଇ କହିଲ "ଆମେ ଯେତେବେଳେ ବାହାରକୁ ଚାଲିଗଲୁ, ସେତେବେଳେ ତୁ ଡାକ୍ତରଙ୍କୁ ଉପର କୋଠରୀରେ ବସାଇ ଥିବୁ । ମୁଁ ମିସେଜ୍ ଶୁକ୍ଳାଙ୍କୁ ଗାଡ଼ିରେ ବସାଇ ଆସୁଛି ।"

କଲ୍ୟାଣୀ, କର୍ଣ୍ଣେଲ ପତ୍ନୀ ସହିତ କନ୍ୟାର ପ୍ରସ୍ତାବ ଉପରେ କଥାବାର୍ତ୍ତା ହେଉଥିଲା । କନ୍ୟା ପ୍ରସ୍ତାବ କରିଥିଲା ଯେ ଶକୁନ୍ତଳାର ବିବାହ ଏହି ଘରେ ହେଉ । ଘରେ ସ୍ଥାନ ଥାଉଁ ଥାଉଁ ବାହାରେ କାହିଁକି ଖୋଜିବୁ ? କଲ୍ୟାଣୀଙ୍କୁ ଏହି ପ୍ରସ୍ତାବ ଭଲ ଲାଗିଥିଲା । ତାଙ୍କର ଘର ଶ୍ରେଷ୍ଠ ଥିଲା, କେଉଁଠି ବାହାରେ ଘର ନେଇ ବାହାଘର କରିବାର କଥାଥିଲା । ତାର ଓ ମହିପାଳର ପରାମର୍ଶ ଅନୁସାରେ କର୍ଣ୍ଣେଲ ଘରେ ବିବାହ କରିବାର ପ୍ରସ୍ତାବ ପୂରାପୂରି ଠିକ୍ ହୋଇ ସାରିଥିଲା କିନ୍ତୁ ବଙ୍ଗଳାରେ ବାହାଘର କରିବାର ପ୍ରସ୍ତାବକୁ କଲ୍ୟାଣୀ ଖୁବ୍ ପସନ୍ଦ କରୁଥିଲା । ବଙ୍ଗଳାରେ ରହୁଥିବା ଜାଗା ଉପରେ ତ ର ପୁରା ଅଧିକାର ରହିବ, ଜ୍ଞାତି, କୁଟୁମ୍ବ ସମସ୍ତେ ଏଠାକୁ ଆସିବେ । ଏ ସମସ୍ତ କଥା କଲ୍ୟାଣୀର ମନରେ ରେଖା କାଟୁଥିଲା । ସେ କର୍ଣ୍ଣେଲର ସ୍ତ୍ରୀକୁ କହୁଥିଲା "ଜଣେ ନା ଜଣେ ନିଶ୍ଚୟ ଘର ଜଗିବ, ଏଠି ବାହାଘର କଲେ ଟିକିଏ ଅସୁବିଧା ହେବ ଯେ ସେହି ଘର ସାଙ୍ଗରେ କୌଣସି ସମ୍ପର୍କ ରହିବ ନାହିଁ । ମୁଁ ତାଙ୍କ ସହିତ ପରାମର୍ଶ କଲାପରେ କହିବି ।"

କନ୍ୟା କହିଲା "ହଁ-ହଁ, କଥାବାର୍ତ୍ତା ହୁଅନ୍ତୁ, ଆଉ ମୁଁ ମଧ୍ୟ ତାଙ୍କୁ କହିବି । ଶକୁନ୍ତଳା ଉପରେ କେବଳ ଆପଣଙ୍କର ଅଧିକାର ନାହିଁ, ଆମେ ସମସ୍ତଙ୍କର ମଧ୍ୟ ଅଛୁ, ଭଉଣୀ ।"

କଲ୍ୟାଣୀ ବହୁତ ଖୁସି ହେଲା, ଗଦ୍ ଗଦ୍ କଣ୍ଠରେ କହିଲା" ହଁ-ହଁ ଭଉଣୀ, ଆଉ ଆପଣଙ୍କର ବାପରେ ମୋର ବନ୍ଧୁତାର କୌଣସି ଭେଦ ଥାଏ ? ଆମର ସେତ ସବୁବେଳେ କହନ୍ତି ଯେ ନିଜ ପେଟର ଭାଇ ମଧ୍ୟ ଏକ ନୁହନ୍ତି କିନ୍ତୁ କର୍ଣ୍ଣେଲ ଓ ସଜ୍ଜନ ନିଜ ପେଟର ଭାଇଠାରୁ ଅଧିକ ।

ସୁସଜ୍ଜିତ ପୋର୍ଟିକୋରେ ଶ୍ରୀମତୀ କଲ୍ୟାଣୀ ଓ ମହିପାଳ ଶୁକ୍ଳଙ୍କ ପାଇଁ ଗାଡ଼ି ଅପେକ୍ଷାରେ ଛିଡ଼ା ହୋଇଥିଲା ।

# ବସ୍ତ୍ରାଳଶ

ଡାକ୍ତର ଶୀଳା, ଉପରକୁ ଗଲେ ନାହିଁ । ସେ କଲ୍ୟାଣୀର ଫେରିବା ପ୍ରତୀକ୍ଷାରେ ଲବିରେହିଁ ବନ୍ଦ ହୋଇ ରହିଲେ । କର୍ଣ୍ଣେଲ ସ୍ତ୍ରୀ ସହ କନ୍ୟା ଭିତରକୁ ଫେରିଲ, ଆଗରେ ରଖା ଯାଇଥିବା ଗୋଟିଏ ମୂର୍ତ୍ତି ଆଡ଼କୁ ମୁହଁ କରି ଛିଡ଼ା ହୋଇଥିବା ଶୀଳାକୁ କନ୍ୟା ଦେଖିଲ । କଲ୍ୟାଣୀ ଓ ଶୀଳା ମଧ୍ୟରେ ମହିପାଳର ଉପସ୍ଥିତିକୁ ସେ ନିଜ ଚେତନା ଦ୍ୱାରା ଅନୁଭବ କରି ନିଜ ଭିତରେ ରୁଦ୍ଧ କୋଧକୁ ଚୁପି ରଖିଥିଲ । ସେ ମାନେ, ନିଜ ଭିତରେ ଗଭୀର ଅସତ୍ୟକୁ ବିଶ୍ୱାସର ଦେଖିଲ । କଲ୍ୟାଣୀ ସାମ୍ନାରେ ଶୀଳାକୁ ଗୋପନ କରି ରଖାଯାଇ ଥିବାରୁ ସେ ସର୍ବଦା କଷ୍ଟ ଅନୁଭବ କରୁଥିଲ । ଏ ସମସ୍ତ କାର୍ଯ୍ୟ ତାକୁ ଅନୀତି, ନୈତିକତା କାର୍ଯ୍ୟପରି ଜଣାପଡ଼ୁଥିଲ । ସେ ଶୀଳା ପ୍ରତି ନିଜର ସ୍ନେହ, ଶ୍ରଦ୍ଧା ଯୋଗୁଁ ଏ ଅନୀତି କରିବା ପାଇଁ ବାଧ୍ୟ ମଧ୍ୟ କରିଥିଲ । କନ୍ୟା ନିଜର ବାପ ଘରେ ଅନୈତିକ ସମ୍ବନ୍ଧ ଦେଖିଥିଲ । ତାଙ୍କର ହୀନ ମନ୍ୟତା ପାଇଁ ସେ ଘୃଣା ମଧ୍ୟ କରୁଥିଲ । କିନ୍ତୁ ଏଠାରେ ସେହି ଘୃଣା ତା ମନ ଜନ୍ମି ନ ଥିଲ । କାହିଁକି ? ଏହା ତା' ମନରେ ବର୍ତ୍ତମାନ ସ୍ପଷ୍ଟ ରୂପରେ ପ୍ରତିଭାତ ହେଉନଥିଲ ଯାହାକୁ ନେଇ ସେ ଗଭୀର ଯନ୍ତ୍ରଣାରେ କାତର ହୋଇ ଉଠୁଥିଲ ।

"ହାଲୋ, ଡ଼କ୍ଟର"

ଶୀଳା ମୁହଁ ବୁଲାଇ ଦେଖିଲ, କର୍ଣ୍ଣେଲର ସ୍ତ୍ରୀ ତାଙ୍କୁ ଦେଖିବାକ୍ଷଣି ଚମକି ପଡ଼ି କହିଲେ "ଆରେ, ଡାକ୍ତର ସାହେବ, ଆପଣ କେବେ ଆସିଲେ ?"

"ଏହି କିଛି କ୍ଷଣ ପୂର୍ବେ" ଶୀଳାର କ୍ଳାନ୍ତ, ଚିନ୍ତା ସାଗରରେ ନିମଜ୍ଜିତ ଚେହେରା ବାଧ୍ୟ ହସ ମୁହୂର୍ତ୍ତିକ ପାଇଁ ଖେଳିଗଲ ।

"ଆପଣଙ୍କୁ ଦେଖି ମୁଁ ସ୍ୱାସ୍ଥ୍ୟବତୀ ହୋଇଗଲିଣି । ପୁଣି କନ୍ୟା ଆଡ଼କୁ ଦେଖି କର୍ଣ୍ଣେଲର ସ୍ତ୍ରୀ କହିଲେ 'ଏଙ୍କର ଏଭଳି ସ୍ୱଭାବ, ମୁଁ ବହୁତ କମ ଲୋକଙ୍କଠାରେ ଦେଖିଛି ବିବିଜୀ । ଆପଣତ ବହୁତ ଦିନରୁ ଆମର ଏଠାକୁ ଆସି ନାହାନ୍ତି, ଡାକ୍ତର ସାହେବ ? ଡାକ୍ତର ସାହେବଙ୍କୁ ଆମର ଏଠାକାର ମୁଆ -ମାଣ୍ଡିଆ ଜାଉ ବହୁତ ଭଲ ଲାଗୁଛି ।

ଡାକ୍ତର ଶୀଳାର ଚେହେରାକୁ ଦେଖି କନ୍ୟା ବିଶ୍ୱାସ କରୁଥିଲା ଯେ କଥାଟା ଅନେକାଂଶରେ ଏପଟ ସେପଟ ହୋଇଯାଇଛି । କଥାର ସୂତ୍ରଟି ବୁଝିବା ପାଇଁ ସେ ନିଜ ଭାଉଜର ମିଥ୍ୟା ଅବତାରଣା ଦେଇ କହିଲା "ତାହା ହେଲେ ଦିନେ ନିମନ୍ତ୍ରଣ କରନ୍ତୁ ଭାଉଜ ଡାକ୍ତର ସାହେବଙ୍କ ନାଁରେ ମୁଁ ନିମନ୍ତ୍ରଣ ଖାଇ ନେବି ।"

କର୍ଣ୍ଣେଲର ସ୍ତ୍ରୀ ଆନନ୍ଦର ସହିତ ଆଖି ନଚାଇ କହିଲା" ଦେଖିଛନ୍ତି ଡାକ୍ତର ସାହେବ, ଏ ନଣନ୍ଦମାନେ ଏମିତି ହୋଇଛନ୍ତି ଯେ ସବୁ ଜିନିଷରେ ନିଜର ସ୍ୱାର୍ଥକୁ ଖୋଜିବେ ।

ଏହି କଥାକୁ ସ୍ୱୀକାର କରିବା ଭଙ୍ଗୀରେ ଡାକ୍ତର ଶୀଳା ଅନିଚ୍ଛା ସତ୍ତ୍ୱେ ହସି ହସିଲେ, ତାଙ୍କୁ ଏପରି ଅବସ୍ଥାରେ ଦେଖି କଲ୍ୟାଣୀ ପ୍ରହସନ ଶେଷ କରିବା ପାଇଁ ଚାହୁଁଥିଲେ । ସେ କର୍ଣ୍ଣେଲର ସ୍ତ୍ରୀକୁ କହିଲେ" ଆସନ୍ତୁ ଭାଉଜ ଉପରକୁ ଯିବା ।

କର୍ଣ୍ଣେଲର ସ୍ତ୍ରୀର ସ୍ଥିତି ଓ ସହଜ ବୁଦ୍ଧି ସଚେତ ହୋଇଗଲା । ସେ ଅର୍ଥ ପୂର୍ଣ୍ଣ ଦୃଷ୍ଟିରେ କିଛି ସମୟ ଶୀଳାକୁ ଚାହିଁ କହିଲେ "ଚଳ" ମୁଁ ସେପେଇ ଘରକୁ ଯାଉଛି । ଆଠଟା ପନ୍ଦର ହେଲାଣି କେତେବେଳେ ଖାଇବା ତିଆରି କରିବ ।

"ହଁ—ଭାଉଜ, ଠିକ୍ କଥା" କନ୍ୟା ନିଜ ମନର ଉପରେ ଆବରଣ ଏହି କଥାକୁ ସାଧାରଣଭାବରେ ଅନୁଭବ କଲା, ଭାଉଜର କର୍ତ୍ତବ୍ୟବୋଧ ପାଇଁ ଶ୍ରଦ୍ଧା ମଧ୍ୟ ଜନ୍ମିଲା । ସେ ଯିବାପରେ କନ୍ୟା ପଚାରିଲା "ତୁମେ କିମ୍ବା ତୁମକୁ ଯିବେ ଡକ୍ଟର ? କିଛି ଅସୁବିଧା ନାହିଁ ତ ?"

"ବର୍ତ୍ତମାନ ଯିବି"

ଶୁଣ, ମୁଁ ସଜ୍ଜନକୁ ଡାକି ଆଣୁଛି । ତୁମେ ଅଫିସ ଘରେ ବସିଥାଅ ।

ଶୀଳା ସହିତ ମିଶି ଫେରିବା ପରେ ମହିପାଳ ବ୍ୟସ୍ତ ହୋଇ ପଡ଼ିଥିଲା । ତା ସହଜ ହେବା ଗୁଣ ନଷ୍ଟ ହୋଇ ଯାଉଥିଲା । ଯେଉଁ ସମୟରେ ମହିପାଳ ଶୀଳା ସହିତ ମିଶିବାକୁ ଯାଇଥିଲା, ସେ ସମୟରେ କର୍ଣ୍ଣେଲ ଓ ସଜ୍ଜନଙ୍କ ମଧ୍ୟରେ ଏହି ଦୁଇ ଜଣଙ୍କ ସମ୍ପର୍କକୁ ନେଇ ସାମାନ୍ୟ ବାକ୍‌ବିତଣ୍ଡା ମଧ୍ୟ ହୋଇ ସାରିଥିଲା । ସଜ୍ଜନ ଅନୈତିକତାର ପ୍ରଶ୍ନ ଉଠିବାର ଦେଖି କହିଥିଲାଯେ ମହିପାଳ ଶୀଳାପ୍ରତି ଉଦାର ହେବା ଉଚିତ । କର୍ଣ୍ଣେଲ ବାକ୍‌ବିତଣ୍ଡାରେ ସଜ୍ଜନ ପାଖରେ ବିଶେଷ ଜିଦ୍ ଧରି ବସିନଥିଲା, ଏଥିପାଇଁ କଥାଟା ସେତେବେଳେ ବନ୍ଦ ଥିଲା । କିନ୍ତୁ ମହିପାଳର ଘରକୁ ଫେରି ଆସିବା ପରେ ସଜ୍ଜନ ଶୀଳା ସମ୍ପର୍କରେ ପ୍ରଶ୍ନ କରିଥିଲା ମହିପାଳ ଏ କଥାରେ ଘାଗିଉଠିଲା ମୁଁ । ଦୁଇ ନାଆରେ ପାଦ ରଖି ଚାଲିବା ଲୋକ ନୁହେଁ । ଅନେକ ଦିନ ଧରି ଅଜ୍ଞାତର ଦ୍ୱନ୍ଦର ସ୍ୱୀକାର ହୋଇଛି !

ମୁକ୍ତ ତର୍କ ଭିତରେ ମହିପାଲ ଶୀଳାପ୍ରତିପ୍ରେମକୁ ସ୍ୱୀକାର କରିପାରିଲା ନାହିଁ ଏବଂ ସେହି ପ୍ରେମକୁ ସେ ତ୍ୟାଗ କରିବାକୁ ଚେଷ୍ଟାକରୁଛି, ଏକ ବୃହତ ସିଦ୍ଧାନ୍ତ ପାଇଁ । ପାରିବାରିକ ଜୀବନରେ ବ୍ୟକ୍ତିଗତ ପ୍ରେମଠାରୁ ବଡ ବୈବାହିକ ଜୀବନ । ବଂଶ ପରମ୍ପରା ସମାଜର ସୁସମ୍ବନ୍ଧିତ ପାଇଁ ଗୋଟିଏ ଶକ୍ତିଶାଳୀ ପରମ୍ପରାର ବ୍ୟବସ୍ଥା । ବ୍ୟକ୍ତିଗତ ପ୍ରେମ ଦ୍ୱାରା ସମାଜର ବନ୍ଧନ କୋହଲ ହୋଇଯିବ । ପାରିବାରିକ ମାଧୁରୀ ନଷ୍ଟ ହୋଇଯିବ, ଏହା ମହିପାଳର ଯୁକ୍ତିଯୁକ୍ତ ପ୍ରଶ୍ନ ଥିଲା ଯାହା ବଳରେ ସେ ସଜ୍ଜନକୁ ନିରୁତ୍ତର କରି ଦେଇଥିଲା ।

ସଜ୍ଜନ, ମହିପାଳ ସହିତ ତର୍କ କରି ନ ପାରିବାକୁ ମୌନ ହୋଇଗଲା ପରନ୍ତୁ ମହିମାଳ ପ୍ରତି ତାର କ୍ରୋଧ ଓ ଅସନ୍ତୋଷ ବୃଦ୍ଧି ପାଇଥିଲା । ସେ ମନେ ମନେ ମହିପାଳର ବିରୋଧୀ କାରଣମାନ ସଂଗ୍ରହ କରୁଥିଲା ।

ମହିପାଳ ବହୁତ ଧନର ଅହଂକାରରେ ତାକୁ ପ୍ରତିଦ୍ୱନ୍ଦ୍ୱିତାର ଆହ୍ୱାନ ଦେଉଥିଲା । ନିଜରଜ୍ଞାନ ଓ ତର୍କ ଦ୍ୱାରା ସଜ୍ଜନକୁ ବାରମ୍ବାର ଶ୍ରେଷ୍ଠ କରିବା ପାଇଁ ତାର ଅପରିଣାମ ଚେଷ୍ଟାଟି ଥିଲା । ସଜ୍ଜନ ତା ଆଗରେ ନମ୍ର ହୋଇ ରହୁଥିଲେ ମଧ୍ୟ ଅନୁଭବ କରୁଥିଲା ମହିପାଳର ଏହି ବୃଥା ଅହଙ୍କାରକୁ ସମସ୍ତ ସମୟରେ ଭାଙ୍ଗି ଦେବା ପ୍ରୟୋଜନ ସେ ବୁଝୁଥିଲା । ମହିପାଳ ନିଜର ଦାରିଦ୍ର୍ୟକୁ ଏହି ମିଥ୍ୟା ଅହଙ୍କାର ମାଧ୍ୟମରେ ଘୋଡ଼ାଇବାକୁ ଚାହୁଁଥିଲା ।

ହଠାତ୍ ନୀରବତା ପରିବେଶକୁ ଭୀଷଣ ହୋଇ ଉଠିଲା । କର୍ଣ୍ଣେଲ କଥାକୁ ବଦଳାଇବା ପାଇଁ ଆଉ ଅନ୍ୟ କିଛି କଥା ଉଠାଇବା ପାଇଁ ଚିନ୍ତା କରୁଥିଲା ସମୟରେ କନ୍ୟା ଆସିଗଲା । କର୍ଣ୍ଣେଲ କହିଲା 'ଆରେ ବନ୍ଧୋ ଖାଇବାକୁ କେତେବେଳେ ଦେବ କହିଲ ?"

ସବୁ ରେଡି ହୋଇସାରିଛି ଖାଇ ଭୋଜନ ବୁଝାବୁଝି କରୁଛନ୍ତି । ପୁଣି ସେ ସଜ୍ଜନ ଆଡ଼କୁ ଚାହିଁ କହିଲା ""ଗୋଟିଏ ସେକେଣ୍ଡ ପାଇଁ ଆଡ଼କୁ ଆସିଲ" ।

ସଜ୍ଜନ ଓ କନ୍ୟା ଶୀଳାକୁ କାର୍ ପର୍ଯ୍ୟନ୍ତ ପହଞ୍ଚାଇବାପାଇଁ ବାହାରକୁ ଆସିଲେ । ସଜ୍ଜନ କହିଲା" ତୁମକୁ ଆଜି ଡାକି ମୁଁ ବଡ଼ ଭୁଲ କରିଛି, ମୁଁ ମହିପାଳଠାରୁ ଏପରି ଆଶା କରି ନ ଥିଲି ।"

ଶୀଳା ମୁହଁ ପାଲଟି ଯାଇଥିଲା । ତାର ନିର୍ବିକାର ଚେହେରା ପଥର ଭଳି ଲାଗୁଥିଲା । କନ୍ୟା ସଜ୍ଜନକୁ କହିଲା" ମୁଁ ପୁଲ୍ ମହିମ୍ପିକୁ ଡକାଇଛି, ସେ ଛାଡ଼ିଦେଇ ଆସିବ"

ମୁ ଯାଇପାରିବି, ମୋ ପାଇଁ ବ୍ୟସ୍ତ ହେବା ଦରକାର ନାହିଁ । ଶୀଳାର ଏହି କଥାରେ ସଜ୍ଜନ ଜୋର ଦେଇ କହିଲା "ନା, ଜନୀ ତୁମେ ବରଂ ଚାଲ୍ ମହାନ୍ତିଙ୍କୁ ଖବର ଦିଅ । ଡାକ୍ତରଙ୍କୁ ପଠାଇ ସେ ଘରକୁ ଚାଲିଯିବ ।"

ଜନୀ ବାରଣ୍ଡା ଆଡ଼କୁ ଗଲା, କାର୍ ପାଖରେ ସଜ୍ଜନ ଓ ଶୀଳା ଛିଡ଼ା ହୋଇଥିଲେ । ଜ୍ୟୋତ୍ସ୍ନାରେ ସଦ୍ୟସ୍ନାତା ପୂର୍ଣ୍ଣିମା ଉଦ୍ୟାନର ସବୁଜଶ୍ରୀର ଲନ୍, ବାଇଗଣୀ ରଙ୍ଗରେ ସଜ୍ଜିତ ହୋଇ ଯୌବନର ପ୍ରତୀକ ହୋଇ ଦୃଷ୍ଟି ଆକର୍ଷଣ କରୁଥିଲେ । ଉପରେ ଜ୍ୟୋତ୍ସ୍ନା ଧୂଆ ରାତି ସତେକି ଲଜ୍ୟାବଶତଃ ଯେପରି ଆଶ୍ରୟ ପାଇଁ ଏହି ଶ୍ୟାମଳିମା ମଧ୍ୟରେ ଆତ୍ମଗୋପନ କରିଥିଲା । ଚମେଲି ଭରା ଚାନ୍ଦନୀରେ ପ୍ରଶସ୍ତ ଉଜ୍ଜ୍ୱଳ ହୋଇ ଉଠୁଥିଲା । ସଜ୍ଜନର ଫାଙ୍କା ଦୃଷ୍ଟି, ଶୀଳାର ମୌନତ୍ୱରେ ବାସ୍ତବିକ ହୋଇ ଶୀଳାର ଯନ୍ତ୍ରଣା ଓ ନଷ୍ଟଚେତନାରେ ନଷ୍ଟ ହୋଇଥିବା ଚେହେରା ପାଖକୁ ଫେରିଆସି ଆଶ୍ରୟ ନେଲା । ତା ମନ ବି କାନ୍ଦି ଉଠିଲା । ଶୀଳାର ମଥାରେ ସସ୍ନେହରେ ହାତ ବୁଲାଇ ବୁଲାଇ ସେ କହିଲା...ବି ବ୍ରେଭ ଚାଇଲ୍ଡ "ହାତ ରହିଗଲା । ସଜ୍ଜନର ସ୍ୱର ଗମ୍ଭୀର ହୋଇଗଲା, ସେ କହିଲା" ସତ୍ୟ ବେଳେ ବେଳେ ବହୁତ ନିଷ୍ଠୁର ମହିପାଳ ଯଦିଓ ଆର୍ଟିଷ୍ଟ ତଥାପି ବେଦନାକୁ ଅନ୍ତର ଦେଇ ବୁଝିପାରେ ନାହିଁ, କେବଳ ନ୍ୟାୟର ଦୁହାଇ ଦେଉଛି । କଣ କହିବ, କିଛି ବୁଝି ପାରୁନାହିଁ ।

ପୁରୁଷ ନାରୀର ହୃଦୟକୁ ବହୁତ କଠିଣ ଭାବେ । ପୁଣି ସେଥିରେ ପ୍ରେମର ଅଜନ୍ତା, ଏଲୋରାର ସୌନ୍ଦର୍ଯ୍ୟ ଆଙ୍କି ତାକୁ ନିରୀକ୍ଷଣ କରେ । ଆଉ ପ୍ରୟୋଜନ ହେଲେ ତାକୁ ଜଙ୍ଗଲରେ ଛାଡ଼ି ଚାଲିଆସେ । ନାରୀ ପଥର ହୋଇପାରେ କିନ୍ତୁ ଏହି ପଥରରେ ଅଙ୍କିତ ନିଜର ସୌନ୍ଦର୍ଯ୍ୟକୁ ପୁରୁଷ କେମିତି ଭୁଲିଯାଏ ? ମୁଁ ବହୁତ ଚେଷ୍ଟା କରି ମଧ୍ୟ ବୁଝି ପାରେ ନାହିଁ, ଆଉ ବୁଝି ପାରିବି ନାହିଁ ମଧ୍ୟ ଶୀଳାର ଚେହେରା କରୁଣତାରେ ଭିଜା ଭିଜା ସୌମ୍ୟ ହୋଇଯାଇଥିଲା । ଅନ୍ଧାର ଭିତରେ ତାର ଲୁହ ଭିଜା ଆଖି ଦୁଇଟି ଦୀପ ଭଳି ଜଳୁଥିଲା ।

ଶୀଳାକୁ ବିଦାୟ ଦେଇ ସାରି ସଜ୍ଜନର ମନ ଉତ୍ତେଜିତ ହୋଇଗଲା । ଡାଃ ଶୀଳା ସିଂହ ସହିତ ତା'ର ଘନିଷ୍ଠତା ମହିପାଳ ଯୋଗୁଁ ବଢ଼ି ଯାଇଥିଲା । ଶୀଳାଠାରେ ପାଶ୍ଚାତ୍ୟ ଓ ଭାରତୀୟ ନାରୀର ଅପୂର୍ବ ସମନ୍ୱୟ ଥିଲା । ସେ ଝରଣା ଭଳି ମୁକ୍ତ । ନିଜ ବେଗରେ ସେ ନିଜେ ବହି ଚାଲିଛି । ତେଣୁ ଶୀଳାର ବ୍ୟକ୍ତିତ୍ୱ ମନରେ ପ୍ରାୟ ସମସ୍ତେ ମୋହିତ ଥିଲେ ।

କାର୍ ଦୂରକୁ ଚାଲିଯିବା ପରେ ସଜ୍ଜନ ଫେରିଲା । ଜନୀ ବି ତା ସଙ୍ଗେ ସଙ୍ଗେ ଆସିଲା । ପୋର୍ଟିକୋ ପାଖରେ ଆବେଗରେ ସେ ସଜ୍ଜନ ହାତକୁ ନିଜ ହାତ ଭିତରେ ନେଇ ଚାଲିଥିଲା ।

ଡ୍ରଇଂ ରୁମର ଦୁଆର ପର୍ଯ୍ୟନ୍ତ ଦୁହେଁ ହାତ ଧରାଧରି ସେମାନେ ଆସିଲେ । କନ୍ୟାର ହାତକୁ ନିଜ ଗୁଡ଼ ଉପରେ ରଖି ଅନ୍ୟ ହାତରେ ଅତି କୋମଳତାର ସହିତ ଚୁପି ଧରି ଅସ୍ପଷ୍ଟ ସ୍ୱରରେ ସଜ୍ଜନ କହିଲା "ଅନ୍ୟର ଚକ୍ରାନ୍ତରେ ଆମେ ନିଜର ସନ୍ଧ୍ୟାକୁ ଅଯଥା ନଷ୍ଟ କରିଦେଲୁ । କାହାକୁ ଡାକିଥିଲେ ନ ଭଲ ହୋଇଥାଆନ୍ତା ।

କନ୍ୟା ସଜ୍ଜନର ମମତାରେ ଆହୁରି ସୁନ୍ଦର ହୋଇ ଉଠିଲା । ସେ କିଛି କହି ପାରିଲା ନାହିଁ ।

ସେ ଅଲଗା ହେବାକୁ ଚାହୁଁ ନ ଥିଲା ।

'ଯାଉଛି' କନ୍ୟା ଚକ୍ଷୁ ଅବନମିତ କଲା ଓ ଚାଲିବାକୁ ଉଦ୍ୟମ କଲା । ତା ହାତକୁ ନିଜ ହାତ ପାପୁଲିରେ ଚୁପି ଧରି ସଜ୍ଜନ କହିଲା "ମୋ ପ୍ରତି ତମର କିଛି ସନ୍ଦେହ ନାହିଁ ତ ।

କନ୍ୟା ଏହି ପ୍ରଶ୍ନରେ ଶିହରି ଉଠିଲା, ଶୀଲା, କଲ୍ୟାଣୀ ଓ ମହିପାଳର ଚକ୍ରାନ୍ତ ଅନ୍ତରାଳରେ ନିଜର ଲୁକ୍କାୟିତ ଭାବ ଉପରେ ସେ ନିଜେ ଡରିଗଲା ।

ସଜ୍ଜନ ସେହିଭଳି ତାର ହାତକୁ ଚୁପିଧରି କହିଲା "ମୁଁ ଏତେ ଦାମ୍ଭିକ ସମ୍ପନ୍ନ ହୋଇ ମଧ୍ୟ ସହଜରେ ଶିଶୁଭଳି ହୋଇଯାଏ ବିପଥଗାମୀ । ମୋର ନିଜ ଉପରେ ବିଶ୍ୱାସ ନାହିଁ । ମୁଁ ତୁମର ଶକ୍ତି ଉପରେ ବିଶ୍ୱାସ କରିବାକୁ ଚାହୁଁଛି କନ୍ୟା । ମୋତେ ବିଶ୍ୱାସଦିଅ । ମୁଁ କେବେହେଲେ ସେମିତି ମହିପାଳ ନ ହୁଏ—କେବେହେଲେ ନ ହୁଏଁ । ସଜ୍ଜନର ସରଳତା କନ୍ୟାର ମନକୁ ସ୍ପର୍ଶ କଲା, ସେ ଖୁସି ମଧ୍ୟ ହେଲା । ମଧୁର ସ୍ୱରରେ ମୁରୁକି ମୁରୁକି ହସି କହିଲା "ତୁମର ବିପଥଗାମୀ ପିଲାଳିଆମି ଏଠି ଓ ଆଜି ଗୋବର୍ଦ୍ଧନରେ ଦେଖିସାରିଛି । ବ୍ୟସ୍ତ ହୁଅନାହିଁ । ତମକୁ ଆଉ ଛାଡ଼ିଦେବି ନାହିଁ ।

ଦୁଇ ଆଖିର ଦୃଷ୍ଟି ବିନିମୟ ହେଲା, କନ୍ୟା ହସୁଥିଲା । ସଜ୍ଜନର ସରଳତାରେ ଅପରୂପ ଦେଖା ହେଉଥିଲା । ସ୍ୱାମୀ ମନର ସନ୍ତୋଷକୁ ଲକ୍ଷ୍ୟକରି, କନ୍ୟା ମଧ୍ୟ ଖୁସି । ତାର ଆଖିରେ ଅଜସ୍ର ଫୁଲ ଫୁଟି ଉଠିଥିଲା । ସଜ୍ଜନର ମନ ପଡ଼ିଦାରେ ସ୍ୱଚ୍ଛ ହୋଇଗଲା, ସେ ନିଜେ ନିଜ ମଧ୍ୟରେ ନୂଆ ଆଶ୍ୱାସନା ପାଇଲା ।

ଯାଉଁ ଯାଉଁ କନ୍ୟା କହିଲା "ମୁଁ ବଢ଼ା ବଢ଼ୀ କରୁଛି, ତୁମ୍ଭେମାନେ ଉପରକୁ ଆସ ।"

# ତେଇଆଳିଶ

ରାତିରେ ବହୁତ ସମୟ ଯାଏ ଚେଇଁଥିବା ଯୋଗୁଁ ସଜ୍ଜନ ପ୍ରାତ ଭ୍ରମଣରେ ଯାଇ ପାରିଲା ନାହିଁ ଓ ସକାଳରେ 'ଚାହା' ପିଇବାରେ ମଧ୍ୟ ଘଣ୍ଟେ ଡେରିହୋଇଗଲା ହେଲା ଯୋଗୁଁ ସଜ୍ଜନର ବହୁତ ଆଡ଼କୁ ନିମନ୍ତ୍ରଣଥିଲା । ପ୍ରୋଗ୍ରାମ ଅନୁସାରେ ସେ ବାରଟା ମଧ୍ୟରେ 'ଶତଆ' ଫେରି ଆସିବାର କଥା ଥିଲା । ତାପରେ ପତି-ପତ୍ନୀ ମୁକ୍ତି ବାହୁଙ୍କ ପରି ଡ୍ରାଇଭ୍ କରି କାରପୁର ଯିବେ । ସେଇଠାରେ ଲଞ୍ଚ ।ଇବେ । ସଜ୍ଜନ ଶିଶୁ କାଠର ସୁନ୍ଦର ଡାଇନିଂ ଟେବୁଲ ଉପରେ ତବଲା ବଜାଇବା ଭଳି ବଜାଇ କନ୍ୟାର ଆସିବାକୁ ଅପେକ୍ଷା କରିଥିଲା । କନ୍ୟା ସେତେବେଳେ ଘରେ ଜଳଖିଆ ପାଇଁ ଖାଇବା ପ୍ରସ୍ତୁତ କରାଉଥିଲା । ଶୀଳା ଆଉ ମହିପାଳର ପ୍ରସଙ୍ଗକୁ ନେଇ ପତି-ପତ୍ନୀ କାଲି ରାତିରେ ମୁକ୍ତ ମନରେ ନିଜ ସମ୍ବନ୍ଧରେ ଅବିଚ୍ଛିନ୍ନତା ପାଇଁ ମନ ପ୍ରାଣରେ ଅନୁଭବ କରିଥିଲେ ।

ମିନିଟିଏ ଦୁଇ ମିନିଟ୍ ଏମିତି ଅପେକ୍ଷାରେ ବିତିଗଲା, ସଜ୍ଜନ ବାଧ୍ୟହୋଇ ତବଲା ବଜାଉଛି ଅନନ୍ୟୋପାୟ ହୋଇ ୨ୟ ଥର ଖବର କାଗଜ ଟାଣିଆଣି ଖବର ଗୁଡ଼ିକୁ ଓଲଟେଇବାକୁ ଲାଗିଲା । ସେତେବେଳେ ଚାକର ବାବାଜୀଙ୍କର ଆସିବା ସୂଚନା ଦେଲା । ସଜ୍ଜନର ରୋମାଣ୍ଟିକ ମୁଡ୍ ଏହି ସମୟରେ ବାବାଜୀଙ୍କର ହଠାତ୍ ଆଗମନରେ ବିରକ୍ତ ହୋଇଉଠିଲା । ସେ ତାଙ୍କୁ ଶୀଘ୍ର ଉପରକୁ ଆଣିବା ପାଇଁ କହିଲା । ବାବାଜୀଙ୍କର ଅଲୌକିକ ଶକ୍ତିରେ ସଜ୍ଜନ ଅତ୍ୟନ୍ତ ପ୍ରଭାବିତ ହୋଇଯାଇଥିଲା । ମନଦ୍ୱାରା ମନର କଥା ଜାଣିବା କିପରି ସମ୍ଭବ ହୋଇପାରେ, ସଜ୍ଜନ ଏହି ସମସ୍ୟା ଉପରେ ବାରମ୍ବାର ପରଜନ୍ମର ଭାବନା ତା ମନକୁ ଆସେ, ସେତିକି ପରିମାଣରେ ତାର ଶ୍ରଦ୍ଧା ମଧ୍ୟ ବଢ଼ିଯାଏ । କାଲି ଦ୍ୱିପ୍ରହରଠାରୁ ବାବାଜୀଙ୍କୁ ସଜ୍ଜନ ଓ କନ୍ୟାକୁ ନିଜର ସର୍ବସ୍ୱ ସମର୍ପଣ କରିଦେବା ପ୍ରତିଶ୍ରୁତି ପାଇଁ କହିଛନ୍ତି ସେତେବେଳଠାରୁ ସଜ୍ଜନ ମନରେ ଝଡ଼ ଉଠିଛି । ଲୋକହିତ ପାଇଁ ନିଜକୁ ସମର୍ପଣ କରି ଦେବାର ଚିନ୍ତା ଯଦିଓ ବହୁତ ଭଲ ଲାଗେ, କିନ୍ତୁ ଏତେ ବଡ଼ ତ୍ୟାଗ କରିବା ପାଇଁ ତାର ଏତେ ଢନଲ୍ଲ ଇଚ୍ଛା ବିଦ୍ରୋହ କରିଉଠିଲା । ବାବାଜୀଙ୍କର ଆସିବା ଶୁଣି ସଜ୍ଜନ ଏଥିପାଇଁ ବିଶେଷ ଉତ୍ସୁକ ନଥିଲା ।

ଉପରର ଅତିଥି କକ୍ଷରେ ବାବାଜୀଙ୍କୁ ବସାଇ ଦିଆଗଲା । ସଜ୍ଜନ ବିନମ୍ର ପୂର୍ବକ କଥା ଆରମ୍ଭ କଲା "ଆମ୍ଭେମାନେ 'ଚାହା' ପିଇବାକୁ ଯାଉଥିଲୁ, ଆପଣଙ୍କ ପାଇଁ ଦୁଧ ମଗାଯିବ ?"

ନାଁ, ସ୍ୱାମୀଜୀ, ଆପଣ 'ସ୍ପୃହା' ପିଅନ୍ତୁ, ଯଦି କହିବେତ ମୁଁ ମଧ୍ୟ ସେଠି ବସିବି । ସମସ୍ତ ଜାହିଁକି ନଷ୍ଟ କରିବ ?

'ଆସନ୍ତୁ, କିନ୍ତୁ ଏହା ଯେ...'

'କଣ, ସ୍ୱାମୀଜୀ ?'

ଆମ୍ଭେମାନେ ଅଣ୍ଡା ଆମ୍‌ଲେଟ୍... 'ଖାଆନ୍ତୁ' ଆପଣଙ୍କର ଅଣ୍ଡା ଆମଲେଟ୍‌ତ ଆମ ମୁହଁକୁ ସ୍ୱାଦ ଆସିବ ନାହିଁ ?''

କନ୍ୟା ଆସିବା ପରେ ବାବାଜୀ ନିଜ କଥା ଆରମ୍ଭ କଲେ । ସେ ସଜ୍ଜନଙ୍କୁ କହିଲେ 'ସ୍ୱାମୀଜୀ, ଗୋଟିଏ ସ୍ତ୍ରୀ ପ୍ରୀତି ନ୍ୟାସ୍ତ ଈଶ୍ୱର ପାଇଁ ତ ଆପଣମାନେ ବଡ଼ ଆନ୍ଦୋଳନ ଆରମ୍ଭ କରିଥିଲେ । ଉଡ଼ାଜାହାଜ ପର୍ଯ୍ୟନ୍ତ ଉଡ଼ାଇ ପାରିଥିଲେ, ଏବେ ସ୍ତ୍ରୀ ଉଦ୍ଧାର ପାଇଁ ଆପଣ କଣ ଆମକୁ ସହାୟତା କରିପାରିବେ କି ?''

କନ୍ୟା କହିଲା 'ଆଜ୍ଞା, କଣ କଥା ?'

କାଲି ଦ୍ୱିପ୍ରହର ବେଳେ ଆଶ୍ରମରେ ଏକ ବଚନ ପାଗଳ ଆସି ପହଞ୍ଚିଲା, ସ୍ୱାମୀଜୀ । ସେ ଲୋକଙ୍କ ଆଗରେ ବଡ଼ ଉଗ୍ରରୂପ ଦେଖାଇଲା କିନ୍ତୁ ଏକାନ୍ତରେ ମୁଁ ଯେତେବେଳେ ତା ସହିତ କଥା ହେଲି, ଜଣାଗଲା ସେ ପୂରା ପାଗଳୀ ନୁହେଁ ।

'ତା ପରେ ? ସଜ୍ଜନ ଓ କନ୍ୟା ଉଭୟଙ୍କର କୌତୂହଳ ବଢ଼ିଲା । 'ସ୍ୱାମୀଜୀ, ସେ ଅତ୍ୟାଚାରରେ ପୀଡ଼ିତା ଅନେକ ଅତ୍ୟାଚାର ସହ୍ୟ କରିବା ଯୋଗୁଁ ତାର ଚିତ୍ତ ବିକ୍ଷିପ୍ତ ତ କେତେକାଂଶରେ ମସ୍ତିଷ୍କ ବିକୃତ ହୋଇଯାଇଛି ; କିନ୍ତୁ ସେତେ ନୁହଁ ଯେତେ ଦେଖାଯାଉଛି, ମଣ୍ଡଳବାଲା ତାକୁ ମୋ ପାଖରେ ଛାଡ଼ିଦେଇଗଲେ । ସେମାନେ କଣ ଛାଡ଼ିଦେଇଗଲେ, ସେମାନଙ୍କର ପାପ ଛାଡ଼ିଗଲା, ଏମିତି କେତେ ସେଠାରେ ଅନେକ ସ୍ତ୍ରୀ ଅତ୍ୟାଚାର ସହୁଛନ୍ତି ।

କନ୍ୟାର ଗୋରା ମୁହଁ ଉତ୍ତେଜନାରେ ଲାଲ୍ ହୋଇଗଲା । ସଜ୍ଜନର ଚେହେରାରେ ଉତ୍ତେଜନା ଅପେକ୍ଷା ଅଧିକ ଉତ୍ସୁକତା ଥିଲା ।

ବାବାଜୀ ଧୀରେ ଧୀରେ ସମସ୍ତ କଥା ଶୁଣାଇଲେ । ସେହି ପାଗଳୀ ଜଣେ ବ୍ରାହ୍ମଣୀର ଝିଅ । ଜଣେ ଧନୀ ଲୋକ ଘରେ ସେ କାମ କରୁଥିଲା । ଝିଅ ମଧ୍ୟ ତା ମା ସହିତ ଯାଉଥିଲା । ଆଉ ଝିଅଟି ପଢ଼ା ଶୁଣାରେ ଅତ୍ୟନ୍ତ ଭଲ ଥିଲା । ଏଥିପାଇଁ ସେହି ଧନୀ ମହାନୁଭବ ଦୟା ପରବେଶ ହୋଇ ତାକୁ ସହାୟତା କଲେ । ଏଣେ ତାଙ୍କର ପୁଅ ସହିତ ଏହି ଝିଅର ପ୍ରେମ ହୋଇଗଲା । ଏହାର ମଧ୍ୟରେ

ଗୃହିଣୀର ଦେହାନ୍ତ ହୋଇଗଲା । ଧନୀ ବ୍ୟକ୍ତିର କୂଳ ଦୀପ ନଜର ମାତୃହୀନ ନିର୍ଦ୍ଧନ କନ୍ୟାକୁ ଅନ୍ଧକାରମୟ ଭବିଷ୍ୟତରୁ ଉଦ୍ଧାର କରିବାକୁ ଚାହିଁଥିଲା, କିନ୍ତୁ ତା ପ୍ରତି ତାର ପୁଅର ମାଗା-ପିତା ବାଧ୍ୟ କରି ଏ ସମ୍ବନ୍ଧରୁ ପୂର୍ଣ୍ଣଚ୍ଛେଦ ପକାଇଦେଲେ । ଆଜି ଝିଅର ପାଳନ ପୋଷଣ ବ୍ୟବସ୍ଥା ମହିଳା ସେବା ମଣ୍ଡଳରେ କରିଦେଲେ । ଉକ୍ତ ସେବା ମଣ୍ଡଳ ପ୍ରେମଚନ୍ଦ୍ର ତଥା ଭାରତୀୟ ଅନ୍ୟାନ୍ୟ ଭାଷାରେ ମହାନ୍ ସାହିତ୍ୟକାରଙ୍କ ଦ୍ୱାରା ବହୁଥର ବର୍ଣ୍ଣନା କରାଯାଇଥିବା ମହିଳାଶ୍ରମ ଭଳି ବ୍ୟଭିଚାର ଓ ଅତ୍ୟାଚାର ଆଡ଼୍ଡାସ୍ଥଳୀ ଥିଲା । ଜଣେ ମହାଶୟ ପ୍ରାୟ ୨୦।୨୨ ବର୍ଷରୁ ତାର ଅବୈତନିକ ସମ୍ପାଦକ ଓ ସର୍ବେସର୍ବା ହୋଇ କାମ କରୁଛନ୍ତି । କାର୍ଯ୍ୟକାରଣୀ ସମିତିରେ ନଗରର କେତେକ ଧନୀ ପ୍ରଭାବଶାଳୀ ବ୍ୟକ୍ତିଙ୍କ ଯୋଗୁଁ ସରକାରଙ୍କ ମଧ୍ୟ ଏଥିରେ ମହାମାନ୍ୟ ? ପ୍ରତି ବର୍ଷ ମହିଳା ସେବା ମଣ୍ଡଳର ରିପୋର୍ଟରେ ହୁଏ, ଅନ୍ୟାନ୍ୟ ୮।୧୦ ବିଧବା ଅଥବା ପରିତ୍ୟକ୍ତା ଦୁଃଖିନୀ ସ୍ତ୍ରୀମାନଙ୍କର ପୁନଃ ବିବାହର ଉଲ୍ଲେଖ କରା-ହୋଇଥାଏ । ପତ୍ନୀ ଭିଳାଷୀ ପୁରୁଷ ମଣ୍ଡଳରେ ସହାୟତା ପାଇଁ ୫।୭ ଶହ ଟଙ୍କା ଦିଅନ୍ତି । ଏଥିପାଇଁ ତାଙ୍କୁ ରସିଦ ମଧ୍ୟ ଦିଆଯାଏ । ବିବାହ ଇଚ୍ଛୁକ ସ୍ତ୍ରୀ-ପୁରୁଷ ମାଜିଷ୍ଟ୍ରେଟଙ୍କ ସମ୍ମୁଖରେ ବିବାହ ଫର୍ମ ଉପରେ ଦସ୍ତଖତ କରନ୍ତି । ଏତେ ପ୍ରକାରର ବ୍ୟବସ୍ଥା କାର୍ଯ୍ୟକାରୀ ହେବା ପରେ କେହି ଆଉ ମହିଳା ସେବା ମଣ୍ଡଳ ଉପରେ କୌଣସି ପ୍ରକାରର ସନ୍ଦେହ କରନ୍ତି ନାହିଁ । ମହିଳା ସେବା ମଣ୍ଡଳର ଭବନ ଭିତରେ ସମ୍ପାଦକ ସହୃଦୟ, ତାଙ୍କର ମିତ୍ର ଓ ପୋଲିସ ବାଲାଙ୍କ ମନୋରଞ୍ଜନ ପାଇଁ ବ୍ୟଭିଚାରର ଆଡ଼୍ଡା ଥିଲେ । ମଣ୍ଡଳର ଏଜେଣ୍ଟମାନେ ରେଲ୍‌ଓ୍ୱେ ଷ୍ଟେସନ୍‌ରୁ, ମେଳାରୁ ପଥ ଭ୍ରଷ୍ଟା ମହିଳା-ମାନଙ୍କୁ ଫୁସୁଲା-ଫୁସୁଲ କରି ମଣ୍ଡଳକୁ ନେଇ ଆସନ୍ତି । ସାମ୍ପ୍ରଦାୟିକ ଗଣ୍ଡଗୋଳ ସମୟରେ ମୁସଲମାନ ସ୍ତ୍ରୀ ଲୋକମାନଙ୍କୁ ଡ଼ାକିଆଣି ତାଙ୍କୁ ଆଶ୍ରୟ ଦେଇ ବହୁ ପବିତ୍ର କାର୍ଯ୍ୟ ମଧ୍ୟ ଏଠାରେ ଖୁବ୍ ହେଉଥିଲା । ମଣ୍ଡଳକୁ ପ୍ରଥମେ ଅଧିକାଂଶ ଗ୍ରାମରେ ଅଥବା ନୀଚ ଜାତିର ମହିଳାମାନେ ଆସୁଥିଲେ । କିନ୍ତୁ ଦେଶ ବିଭାଜନ ପରେ ଯେଉଁ ଦିନଠାରୁ ଅପହୃତା ମହିଳାମାନଙ୍କର ମଧ୍ୟ ଆଶ୍ରୟ ସ୍ଥଳୀ ହୋଇଗଲା । ସେହି ଦିନଠାରୁ ମଧ୍ୟମ ବର୍ଗର ଦୁଃଖିନୀ ବିଧବାମାନଙ୍କୁ ଖୋଜି ଭର୍ତ୍ତି କରାଯାଇଛି । ମଣ୍ଡଳ ତରଫରୁ ଅନ୍ୟ ଏକ ଭବନରେ ସିଲେଇ, ଲୁଗା ବୁଣା, କୋଟିକାମ ଆଦି କାମ ଶିଖେଇବା ପାଇଁ ଶ୍ରେଣୀ ମଧ୍ୟ ଖୋଲା ହୋଇଛି । ଯଦ୍ୱାରା ବାହାରର ସ୍ତ୍ରୀ ମାନଙ୍କର ଯିବା ଆସିବା ପାଇଁ ସୁଗମ ହୋଇ ପାରିବ । ତାଙ୍କୁ ମଜୁରୀ ମଧ୍ୟ ଦିଆ ଯାଏ । ଶିକ୍ଷାଳୟକୁ ମୂଳ କରି ସେଠାରେ ଦିନରେ ମଧ୍ୟ ସର୍ବଜନକ ପାପାଚାର ଚାଲେ ।

ଏ ଝିଅଟି ବିଭିନ୍ନ ମହଲର ତଥା ମଣ୍ଡଳର କେତେକ ସ୍ତ୍ରୀ ମାନଙ୍କର ପ୍ରଲୋଭନ ପୂର୍ଣ୍ଣ କଥା ଦ୍ୱାରା ମଣ୍ଡଳର ସମ୍ପାଦକ ମହୋଦୟଙ୍କର ମଧୁର ବ୍ୟବହାରର ଭୁଲିବାକୁ

ସେଠାରେ ଆଗ୍ରହ ନେଲା କିନ୍ତୁ କିଛି ଦିନପରେ ସେ ଭିତରର ରହସ୍ୟ ସବୁ ବୁଝିପାରିଲା । ପ୍ରାୟ ଦୁଇ ବର୍ଷର କଠୋର ସଂଘର୍ଷ ପରେ ନିଜକୁ ପୂର୍ଣ୍ଣ ପାଗଳ ସିଦ୍ଧ କରି ସେହି ସ୍ଥିତିରୁ ବାହାରକୁ ବାହାରି ଆସିଛି । ସେ ପୁରୁଷ ଦେଖିଲେ ଛୁଇଁନଥା, ପୁରୁଷ ପାଖକୁ ଘୃଣା କରେ । ସେ ବିଗତ ଦୁଇ ବର୍ଷ ମଧ୍ୟରେ ପୁରୁଷଙ୍କ ଦ୍ୱାରା ଯେତେ ମାନସିକ ଆଘାତ ପାଇଛି ଓ ସହିଛି ସେ ସମସ୍ତଙ୍କୁ ଘୃଣା କରିବାକୁ ବାଧ୍ୟ ହୋଇଛି । ତାର ପବିତ୍ର ନିଷ୍କପଟ, ହୃଦୟ ପୁରୁଷର କପଟ ଜାଲରେ ଛନ୍ଦିହୋଇ ବିଭିନ୍ନ ପ୍ରକାରର ଅପମାନ ଓ ବଳତ୍କାର ସହ୍ୟ କରି ଅପ୍ରକୃସ୍ଥ ହୋଇଯାଇଛି ।

ସମସ୍ତ କଥା ଶୁଣି କନ୍ୟା ଅତ୍ୟଧିକ ଉତ୍ତେଜିତ ହୋଇଗଲା । ସଜ୍ଜନ ଉପରେ ମଧ୍ୟ ଏହାର ଗଭୀର ପ୍ରଭାବ ପଡ଼ିଲା ।

କନ୍ୟା କ୍ରୋଧରେ କହିଲା "ଏହି ଦୁରାଚାରୀମାନଙ୍କୁ ମୂଳରୁ ଶେଷ କରିବାକୁ ହେବ । ଏତିକିବେଳେ ପୋଲିସକୁ ରିପୋର୍ଟ କରି ଏହି ଆଡ୍ଡାକୁ ଧରାଇ ଦେବା ଉଚିତ ।" ସେ ସଜ୍ଜନଙ୍କୁ କହିଲା "ତୁମେ ଏବେ ଯାଅ, କିଛି କରି ହେଲେ, ଏହି ପାପର ଶେଷ କର ।"

ବାବାଜୀ କହିଲେ "ପ୍ରଥମେ ଏଥିପାଇଁ ପ୍ରମାଣ ସଂଗ୍ରହ କରିବା ଆବଶ୍ୟକ । ସେହି ସ୍ଥିତି ଏବେ ସଂପୂର୍ଣ୍ଣ ରୂପେ ସ୍ପଷ୍ଟ ନୁହେଁ । ଏଥିରେ ବହୁତ କିଛି ଅସତ୍ୟ ମଧ୍ୟ ଥାଇପାରେ ।"

ସଜ୍ଜନ କହିଲା "ସହରରେ ଆହୁରି ଏମିତି ଏପରି କେତେକ ଆଡ୍ଡା ଚାଲୁଛି, ଏ ସମ୍ବନ୍ଧରେ ମୁଁ ବହୁତ ମଧ୍ୟ ଶୁଣି ସାରିଛି ।"

'ଚାଲୁଛି' ସ୍ୱାମୀଜୀ ପରନ୍ତୁ ସତ୍ୟକୁ ଅଲୌକିକ ରୂପେ ପ୍ରକଟ କରିବା ପାଇଁ ପ୍ରମାଣ ମଧ୍ୟ ଦରକାର ଓ ସେହି ସ୍ଥିତି ନିଜର ମସ୍ତିଷ୍କ ବିକୃତ ଯୋଗୁଁ ସତ୍ୟର ଉଦ୍‌ଘାଟନ କରିବା ପାଇଁ ପ୍ରମାଣ ହୋଇ ନ ପାରେ ।

ହଠାତ୍ ସଜ୍ଜନ ପଚାରିଲା "ଆପଣତ ଏତେ ଶକ୍ତିଶାଳୀ ଯେ ଅନ୍ୟର ମନକଥା ଜାଣି ପାରନ୍ତି, ଆପଣଙ୍କର ଧାରଣା କଣ ?"

'ସ୍ୱାମୀଜୀ' ଆପଣ ଆମ ଧାରଣା ସହିତ ନିଜର ଧାରଣା ତୁଳନା କରନ୍ତୁ ନାହିଁ । ତୁମେ ନିଜେ ସତ୍ୟକୁ ଜାଣ, ଅନୁଭବ କର ।"

କିନ୍ତୁ, ଏ ଅବସ୍ଥାରେ ଯଥାର୍ଥକୁ ଚିହ୍ନିବାର ଆମ ପାଖରେ ବା ଉପାୟ କଣ ଅଛି ? ଏ କେଶ୍‌ରେ ଯଥାର୍ଥର ଅନୁଭବ କିପରି କରାଯାଇ ପାରିବ ?

"ଉଦ୍ୟମ ଦ୍ୱାରା, ବିଶ୍ୱର ଦ୍ୱାରା ।"

ଏପରି ବହୁତ ଆଡ୍ଡା ବିଷୟରେ ଅଛି, ମୁଁ ବହୁତ ଶୁଣିଛି, ପଢ଼ିଛି ମଧ୍ୟ । ମୁଁ ପୋଲିସର ବଡ଼ ଅଫିସରଙ୍କ ସହିତ ମିଶି ଏହାର ଇନ୍କ୍ୱାଏରି କରାଇବି । ମୁଁ ବର୍ତ୍ତମାନ କଣ୍ଟ୍ରୋଲକୁ ଫୋନ୍ କରୁଛି ।

କନ୍ୟା କହିଲା "ମୁଁ ଭାଇ ସାହେବଙ୍କୁ ଫୋନ୍ କରି ଡକାଉଛି, ସେ ଉଠି ଚାଲିଗଲା । ବାବାଜୀ କହିଲେ" ରହ ଝିଅ, ପ୍ରଥମେ ଶୁଣିନିଅ । ସ୍ୱାମୀଜୀ ବର୍ତ୍ତମାନ ଗୋଟିଏ କଥା ଉଠାଇଲେ ଯେ ପୋଲିସ ବିଭାଗର ବଡ ଅଫିସରଙ୍କ ଦ୍ୱାରା ଇନ୍କ୍ୱାଏରି କରାଇବେ । ଉଚିତ ମଧ୍ୟ, କିନ୍ତୁ ଶ୍ରେଷ୍ଠ ଅଫିସର ଯେଉଁମାନେ ଏମାନଙ୍କଠାରୁ ପଇସା ଖାଉଛନ୍ତି, ସେଠାକୁ ନିଜେ ବିଳାସ କରିବାକୁ ଯାଆନ୍ତି । ଯଦି ବଡ଼ ଅଫିସରଙ୍କ ପହଞ୍ଚିବା ପୂର୍ବରୁ ସେଠାରୁ ଏ ପାପକୁ ଅନ୍ତର୍ଦ୍ଧାନ କରିଦେବେ, ତେବେ ଆମେ ତୁମେ କଣ କିଛି କରି ପାରିବା 'ସ୍ୱାମୀଜୀ' ?

ସଜ୍ଜନ ସ୍ତବ୍ଧ ହୋଇଗଲା, ବନକନ୍ୟା । ପିଞ୍ଜରାରେ ବନ୍ଦ ପକ୍ଷୀପରି ଅସ୍ଥିର ହୋଇ ଉଠିଲା । କହିଲା "ସ୍ତ୍ରୀମାନଙ୍କ ଉପରେ ଏ ଅତ୍ୟାଚାର ହେଉଛି, ସ୍ତ୍ରୀମାନଙ୍କୁ ଏଥିପାଇଁ ବାଧ୍ୟ କରାଯାଉଛି, ସମସ୍ତେ ଏକଥା ଜାଣନ୍ତି । ଯାହା ହେଉନା କାହିଁକି, ମୁଁ ଏଥିପାଇଁ ନିଶ୍ଚୟ ପ୍ରମାଣ ସଂଗ୍ରହ କରିବି । ମୁଁ ଯେମିତି ହେଲେ ଏହି ଅନ୍ୟାୟର ପ୍ରତିକାର କରିବି ।"

ବାବାଜୀ ହସିଲେ, କହିଲେ "କିମିତି କରିବ ଝିଅ ? ଏହାହିଁ ତ ପ୍ରଶ୍ନ ?" ମୁଁ ସେଠାକୁ ଯିବି, ସେଠାକାର ସ୍ତ୍ରୀ ଲୋକଙ୍କ ସହିତ କଥା ହେବି ।

"ମଣ୍ଡଳର ବ୍ୟବସ୍ଥାପକ ତୁମକୁ କଥାବାର୍ତ୍ତା କରିବାକୁ ଯଦି ସୁବିଧା ନ ଦିଅନ୍ତି" ?

"ସାର୍ବଜନିକ ସଂସ୍ଥା, ବାବାଜୀ, ମୁଁ ଯାଇପାରେଁ, ଦେଖିପାରେ"

ବାବାଜୀ ପୁଣି ହସିଲେ, କହିଲେ "ସ୍ୱୈର ଆଲୁଅରେ ସ୍ୱୈରୀ କରାପାରେ ନାହିଁ ଝିଅ, ତାର ଭେଦ କିପରି ଜାଣିବ ?"

କନ୍ୟା ଟିକିଏ ଅପ୍ରତିଭ ହୋଇଗଲା, ଶୀଘ୍ର ସ୍ଥିର ହୋଇ କହିଲା "ଆଚ୍ଛା ଧରିନିଅନ୍ତୁ ମୁଁ ସାମାଜିକ କର୍ମକର୍ତ୍ତା ଭାବରେ ସେଠାକୁ ଯିବି । କିଛିଦିନ ପର୍ଯ୍ୟନ୍ତ ସେଠାକାର ନିୟମ କାନୁନ, ବାତାବରଣ ସହିତ ମିଳି ମିଶି ରହିବି ଓ ତାପରେ ସେହି ସ୍ତ୍ରୀମାନଙ୍କଠାରୁ ମୋତେ ସବୁ ଖବର ମିଳିଯିବ ।

ବାବାଜୀ କହିଲେ "ଉପାୟଟି ଠିକ୍ ଅଛି କିନ୍ତୁ ଆଉ ଗୋଟିଏ କଥା ମଧ୍ୟ ବିଚାର କରିବା ଦରକାର ମା । ଅବେ ଉଡ଼ାଜାହାଜରେ ସ୍ତ୍ରୀ ଆନ୍ଦୋଳନ ଛଡ଼ାଇ ତୁମେ ଏହି ନଗରରେ ଅପରିଚିତା ନୁହେଁ । ମଣ୍ଡଳର ଝଟ୍ଟଲକ ଧରିନିଅ ଯେ ତୁମକୁ ମିଳା ମିଶା କରିବା ପାଇଁ ସୁବିଧା ଦେଲେ ଓ ତତ୍ ସହିତ ନିଜର ସ୍ତ୍ରୀମାନଙ୍କୁ ମଧ୍ୟ ସତର୍କ କରିଦେଲେ ଏଭଳି ଅବସ୍ଥାରେ ମାସ ମାସ ସେଠାରେ ରହି ମଧ୍ୟ ତୁମେ କିଛି କଣ ଜାଣି ପାରିବ ?

ସବ୍ଜନ କହିଲା "ଆଉ ଗୋଟିଏ କଥା ସତ୍ୟକୁ ଜାଣିବାପାଇଁ ମିଥ୍ୟାର ପ୍ରହସନ କରିବା କଣ ଉଚିତ ହେବ ?"

"ଅନୁଚିତ କାହିଁକି ହେବ, ମାମ୍ନି ?"

ଅନୁଚିତ ତ ହେବନି, ଅସତ୍ୟ ମାର୍ଗରେ ଚାଲି ଆମକୁ ସତ୍ୟ କିପରି ମିଳି ପାରିବ ?

ବାବାଜୀ କହିଲେ "ଠିକ୍ଅଛି, କିନ୍ତୁ ଏହା ମଧ୍ୟ ବିଚାର କର ଯେ ଏ ମିଥ୍ୟା କେତେ ଅଂଶରେ ମିଥ୍ୟା" ? ତୁମେ ଗୋଟିଏ କଥାର ଭେଦ ଉଦ୍‌ଘାଟନ ପାଇଁ କେଉଁଠିକି ଗଲ, ସେହି ସତ୍ୟ ଉଦ୍‌ଘାଟନରେ ବହୁତ ଲୋକର ମଙ୍ଗଳ ହେବ । ନିଜ ଭେଦର କଥା ତୁମେ କିଛି ଦିନ ପର୍ଯ୍ୟନ୍ତ ଛପାଇ ରଖିଛ । ତେବେ ଏଥିରେ ମିଥ୍ୟା କ'ଣ ଅଛି ?"

"ମିଥ୍ୟା ତ ହେଲା ବାବାଜୀ"

ଅଚ୍ଛା, ଆମର ଗୋଟିଏ ଶଙ୍କା ସମାଧାନକର ମାମନି । ଧରିନିଅ ଜଣେ ଚୋର ଚୋରି କରି ପଳାଇଯାଉଛି, ତମେ ତାକୁ ଦେଖିଲ, ପଛରେ ପୋଲିସ ବାଲାକୁ ଆସୁଥିବାର ଦେଖିଲ । ପୋଲିସ ପଚାରିଲା ଯେ "ତୁମେ ଚୋର ଦେଖିଛ ? ତେବେ ତୁମେ କଣ କହିବ ?"

"ମୁଁ କହିବ, ହଁ ଦେଖିଛି ।"

ଠିକ୍ ଅଛି ଏବେ ମାନିନିଅ ଯେ ସେହି ଚୋର ଘରେ ପିଲା ଅସୁସ୍ଥ, ଚିକିତ୍ସା ପାଇଁ ତାକୁ ପଇସା ମିଳୁନାହିଁ, ପିଲାକୁ ବଞ୍ଚାଇବା ପାଇଁ ତା ମନରେ ପ୍ରବଳ ମୋହ ଅଛି, ତୁମେ ସେହି ଚୋରର ଏହି ଅବସ୍ଥା କଥା ଜାଣିଛ, ତୁମେ ତାକୁ ଚୋରି ଧନ ସହିତ ନିଜ ଘରେ ପଶିବାର ଦେଖିଛ ଓ ପୁଣି ପୋଲିସ ବାଲା ତୁମକୁ ପଚାରିଲା ଯେ ଚୋର ଦେଖିଛ ? ତେବେ ତୁମେ କଣ ଉତ୍ତର ଦେବ ମାମନି ?"

ସଜ୍ଜନ କିଛି କ୍ଷଣ ନୀରବ ରହିଲା, ପୁଣି ବିଚାର କରୁଁ କରୁଁ କହିଲା "ସ୍ୱୈର ତ ମୁଁ ଦେଖିଛି, ତେବେ କିପରି ମନା କରିବ ? କିନ୍ତୁ ସେ ବ୍ୟକ୍ତିର ସ୍ଥିତି ବିଚାର ଯୋଗ୍ୟ । ମୁଁ ଏହା କରିପାରେ ଯେ ସ୍ୱୈରକୁ ଦଣ୍ଡ ଦିଆଇବି ଓ ପିଲାଙ୍କୁ ବଞ୍ଚାଇବା ପାଇଁ ଆର୍ଥିକ ସହାୟତା ଦେବି ।

ଆତୁର ମାନି ନିଅ ଯେ ତୁମ ପାଖରେ ସହାୟତା କରିବା ପାଇଁ କିଛି ସାଧନ ନାହିଁ । ତୁମେ ନିଜେ ବଡ଼ ଗରିବ, କାହାରି ଦ୍ୱାରା ସହାୟତା କରାଇ ଦେବାପାଇଁ ତୁମର ମଧ୍ୟ କ୍ଷମତା ନାହିଁ । ତେବେ ?

"ମୁଁ ମିଛ କହିବି, ଏପରି ସ୍ୱୈରକୁ ପୋଲିସଠାରୁ ରକ୍ଷା କରିବା ମୋର ପୁଣ୍ୟ ପାପ ନୁହେଁ "

"ମୁଁ—ମୁଁ ଏହି ବିରୋଧୀ କଥାକୁ ଏତେ ସହଜରେ ମିଶାଇ ପାରିବି ନାହିଁ । ସ୍ୱୈଶ୍ୱ ଖରାପ ଏହା ସତ୍ୟ ନିଜ ପରିବାରରେ ଅଥବା କାହାରି ଜୀବନ ରକ୍ଷା ପାଇଁ ଉପାୟ କରିବା ମଧ୍ୟ ଠିକ୍ ସତ୍ୟ । ଏ ଦୁଇଟି ସତ୍ୟ ପରସ୍ପର ମଧ୍ୟରେ ଏତେ ବିରୋଧୀ ଯେ ··· ···"

ସଜ୍ଜନ ଗମ୍ଭୀର ଚିନ୍ତାରେ ନିମଗ୍ନ ହେଉଥିଲା, ସେ କିଛି ଠିକ୍ କରିପାରୁନଥିଲା । କନ୍ୟା ଟିକିଏ ଉତ୍ତେଜିତ ସ୍ୱରରେ କହିଲା "ତୁମେ ଖାଲି ବେକାର ଯୁକ୍ତି ତର୍କ କରୁଛ ବର୍ତ୍ତମାନ ଯେଉଁ କାମ କରିବା ପ୍ରୟୋଜନ ତା କର ··· ··· ··· ?

"ମୁଁ ମିଛରେ ଯୁକ୍ତି କରୁନାହିଁ କନ୍ୟା, ବାବାଜୀ ସାକ୍ଷାତ ଦେଇ ପାରିବେ" ସଜ୍ଜନ ସଂଯତ ସ୍ୱରରେ ଉତ୍ତର ଦେଲା ।

ବାବାଜୀ କହିଲେ "ତୁମ ବିଚାର ପଛରେ ପ୍ରକୃତତଃ...? ଗୀମଜୀ—ଏକଥା ସ୍ପଷ୍ଟ କିନ୍ତୁ ଆଉ ଗୋଟିଏ କଥା ମଧ୍ୟ ଗମ୍ଭୀର ଭାବରେ ନିଜ ମନର ମଧ୍ୟରେ ଦେଖିନିଅ, କେଉଁ ପରିସ୍ଥିତି ପାଇଁ ତୁମ ମନରେ ଏ ସତ୍ୟର ସୂତ୍ରପାତ ଆରମ୍ଭ ହେଲା ?"

"ମୁଁ ବୁଝି ପାରିଲି ନାହିଁ"

ତୁମର ପତ୍ନୀଙ୍କର ଯଦି ଏଭଳି ପାପାଳୟରେ ପ୍ରବେଶକୁ କଣ ତୁମେ ଭଲ ଦୃଷ୍ଟିରେ ଦେଖି ପାରିବ, ମୋ କଥାକୁ ବିରୋଧ କରୁଛ ନା, ସମର୍ଥନ କରୁଛ କୁହ ।

ମହାଶୟ, ଆପଣଙ୍କ କଥା ଠିକ୍ ।

ଧରନଅ, ତୁମର ସ୍ତ୍ରୀ ନୁହେଁ, ଅନ୍ୟ କେହି ସ୍ତ୍ରୀ ଯଦି ଏହିଭଳି ସାହସିକତା ଦେଖାଏ ତେବେ ତାର ତୁମେ ପ୍ରଶଂସା କରିବ—ଅବା କରିବ ନାହିଁ ?

"ପ୍ରଶଂସା ମୁଁ କରିବ କିନ୍ତୁ ଭୟ ଲାଗୁଛି ଯେ ଗୁଣ୍ଡାଙ୍କ ମାନେ"

ଆଉ ଏତେ ସ୍ତ୍ରୀ ଯେଉଁମାନେ ଗୁଣ୍ଡାଙ୍କ ମଧ୍ୟରେ ଘେରିଯାଇ ଦୁଃଖ କଷ୍ଟରେ ନିର୍ଯ୍ୟାତିତା, ସେମାନେ ? ସେମାନଙ୍କ ମଧ୍ୟରେ କଣ ମୋଭଳି ଜୀବନ ନାହିଁ ? ମୁଁ ଅବଶ୍ୟ ଏହାର ଅନୁସନ୍ଧାନ କରିବି । ମୁଁ ନିଜ ଘରେ ଯେଉଁ ଅତ୍ୟାଚାର ଦେଖୁଛି, ସେହି ଅନୁଭବ, ତାର ଯନ୍ତ୍ରଣା ମୋତେ ଏହି ଅନ୍ୟାୟର ଶେଷ କରିବା ପାଇଁ ଆହ୍ୱାନ ଦେଉଛି । ଏହି ସମୟରେ ତୁମର ସହାୟତାର ବିଶେଷ ପ୍ରୟୋଜନ ସଜ୍ଜନ । ତୁମର ସେହି ଆଗରେ ସ୍ପିରିଟ୍ କେଉଁ ଆଡ଼େ ଗଲା ? ବାହାଘର ପୂର୍ବରୁ ଯାହା ଥିଲା ଏବେ କୁଆଡ଼େ ସେସବୁ ଗଲା ।

କନ୍ୟା ଉତ୍ତେଜିତ ହୋଇଉଠିଲା, କଳଶିଆ, ବୃଦ୍ଧା ଆଡ଼ୁ ସମସ୍ତଙ୍କର ଧ୍ୟାନ ବିକ୍ଷିପ୍ତ ହୋଇଯାଇଥିଲା । ବାବାଜୀ ଶାନ୍ତ ସ୍ୱରରେ କହିଲେ "ଅଯଥା ଉତ୍ତେଜିତ ହେବା ନିରର୍ଥକ ଝିଅ । କାମ ସମୟରେ ମଧ୍ୟ ବିଚାର କରି ଦେଖିବା ଉଚିତ ବିଶ୍ରାମ ରହିବା ଦରକାର । ଏହା ବିନା କାର୍ଯ୍ୟ ଠିକ୍ ହୋଇପାରେ ନାହିଁ । ତୁମର ପତିଙ୍କର ଆଶଙ୍କା ମଧ୍ୟ ଠିକ୍, ମୁଁ ତାଙ୍କୁ ପରିସ୍ଥିତି ପ୍ରତି କେବଳ ସତର୍କ କରାଇଦେଲି ।

ହଁ, ସ୍ୱାମୀଜୀ—ବର୍ତ୍ତମାନ ମୁଁ ତୁମ କଥାର ଉତ୍ତର ଦେବି 'ମିଥ୍ୟା' ବର୍ତ୍ତମାନ ଲକ୍ଷ୍ୟ ନୁହେଁ, ନୀତି ନୀତି ହୋଇ ରହୁ । ତାଙ୍କ ସଂମ୍ବନ୍ଧ ଏକ ବ୍ୟାପକ ସତ୍ୟ ଦ୍ୱାରା ହେବ, ସେତେବେଳେ ତାଙ୍କୁ ଗ୍ରହଣ କରିବୁଁ । ଯେଉଁଠାରେ ଟିକିଏ ମିଛ କହି ପରୋପକାର ସାଧନ ହୋଇ ପାରିବ ସେଠାରେ ସେହି ସତ୍ୟ ସ୍ୱାଗତ ଯୋଗ୍ୟ । ବ୍ୟାସ ମହାରାଜାଙ୍କର ଏହା ଉପଦେଶ ଯେ ପରୋପକାର, ପୁଣ୍ୟ, ଏ ପର ପୀଡ଼ନ ପାପ ଅଟେ ।

"ତେବେ ତ ହିଂସା ମଧ୍ୟ ପରମ ପୁଣ୍ୟ" ସଜ୍ଜନ କହିଲା ।

ଗୀତାର ଏହି ଆଦେଶକୁ ମଧ୍ୟ ମୁଁ ଉଚିତ ମାନୁଛି । ଉଦ୍ଦେଶ୍ୟ ମହାନ୍ ହେଲେ ତ୍ୟାଗର କସୋଟିରେ କେତେକାଂଶରେ ହିଂସା ମଧ୍ୟ ପୁଣ୍ୟ ହୋଇପାରେ ।

"ଗାନ୍ଧିଜୀ ଏହାର ବିରୋଧ କରୁଥିଲେ"

"ନା, ଅହିଂସା ଅପେକ୍ଷା ସେ ହିଂସାକୁ ଶ୍ରେଷ୍ଠ ମାନୁଥିଲେ । ଜୀବକୁ ରକ୍ଷା କରିବା ମହାନ ଉଦ୍ଦେଶ୍ୟ, ଯେତେବେଳେ ତୁମକୁ ମାରିବା ପାଇଁ ଷଡ଼ଯନ୍ତ୍ର କରେ ସେତେବେଳେ ତୁମେ ବିରୋଧ କରିବା ତୁମର ଧର୍ମ । ଏହି ସ୍ତ୍ରୀ ବେପାରୀମାନଙ୍କ ସହିତ ଲଢ଼ିବା ପାଇଁ ଦୃଢ଼ ପଣକର ଝିଅ, ସ୍ୱାମୀଜୀ" ।

"ଏ ସେବା ମଣ୍ଡଳ କେଉଁଠି ? ମୁଁ ଆଜି ଯିବି"

…ହଁ, ଆଜି ତୁମେ ଦୁହେଁ ଯାଅ । ଆମର ପରିଚୟ ଦେଇଦେବ । ତୁମ ଦୁଇ ଜଣଙ୍କର ସେଠାକୁ ଯିବାର କାରଣ ସ୍ପଷ୍ଟ ହୋଇଯିବ । ଶହେ, ଦୁଇଶହ ସହାୟତା ପାଇଁ ଫିଙ୍ଗି ଦିଅ । ପୁଣି ଆଗକୁ ଯେଉଁପରି ପରିସ୍ଥିତି ଉପୁଜିବ ସେଥିପାଇଁ ବ୍ୟବସ୍ଥା କରାଯିବ ।

କନ୍ୟା ଆଗରେ ନିଜର ସ୍ୱଜନର ଚିତ୍ର ଥିଲା ନିଆଁରେ ଜଳିଥିବା ସଙ୍କୁଳ ହୋଇଥିବା ଚର୍ମ ବିଗଳିତ ଶରୀର ନିଆଁରେ ଜଳିଥିବା ବିକୃତ ଓଠ, ନାକ, ଆଖିର କୋଟର, ମୁଣ୍ଡର କେଶ ତା ଆଖିରେ ବିଭତ୍ସ ସ୍ଥିତିକୁ ରକ୍ତାକ୍ତ କରୁଥିଲା ।

କନ୍ୟା ସେହି ସ୍ମୃତିରେ ଜଡ ପାଲଟି ଯାଇଥିଲା । ତା ଆଗରେ ସ୍ୱୀର ଦୁନିଆ ଜାଳି ପୋଡ଼ି ପାଉଁଶ ହୋଇ ପଡ଼ିଥିଲା । ଆଖିରେ ଅଜସ୍ର ଲୁହର ଢେଉ କନ୍ୟା ଦେହରେ ରୋମାଞ୍ଚ ଜାତ ହେଲା ପୁଣି ନିଜକୁ ସ୍ଥିର ଦୃଢ଼ କରିନେଲା ।

ଆଜି ନୂଆ ଭାବନାରେ ସେ ନିଜର ଉଦ୍ଦେଶ୍ୟ ନେଇ ପ୍ରତିଜ୍ଞାବଦ୍ଧ ।

# ଚଉରାଳିଶି

ପ୍ରିୟ ମହୋଦୟ,

ଶ୍ରୀମାନ ବାବା ରାମଙ୍କଙ୍କ ଆଶ୍ରମରେ ପାଗଳମାନଙ୍କର ନିରୀକ୍ଷଣ ଓ ସେବା ସହାୟତାର୍ଥେ ମୁଁ ଓ ମୋର ପତି ଅଧିକାଂଶ ସମୟ ଯାଉଛୁଁ । ଆପଣଙ୍କର ମହିଳା ସେବା ମଣ୍ଡଳ ସମ୍ବନ୍ଧରେ ସେଠାରୁ ଆମେ କିଛି ସମ୍ବାଦ ପାଇଲୁ । ମୁଁ ଏହା ଜାଣି ପ୍ରସନ୍ନ ହେଲି ଯେ ଆପଣ ନାରୀ ଜାତିର ସେବା କରୁଛନ୍ତି । ଏପରି କାର୍ଯ୍ୟରେ ମୁଁ ଅତ୍ୟନ୍ତ ଆନନ୍ଦିତା ମଣ୍ଡଳର ସାହାଯ୍ୟାର୍ଥେ ପତ୍ର-ପୁଷ୍ପ ରୂପେ ଏହି ଶହେ ଟଙ୍କାର ଚେକ୍ ପଠାଇଛି । ଯଦି ଆପଣ ଏହାକୁ ସ୍ୱୀକାର କରିବେ ତେବେ ମୁଁ ଓ ମୋର ପତି । ନିଜକୁ କୃତାର୍ଥ ମନେ କରିବୁ ।

ଭବଦୀୟ

ବନ କନ୍ୟା ବର୍ମା ।

ପତ୍ର ଓ ଚେକ୍ ପାଇ ମହିଳା ସେବା ମଣ୍ଡଳର ଅବୈତନିକ ସମ୍ପାଦିକା ମହୋଦୟା ବଡ଼ ଆନନ୍ଦିତ ହେଲେ । ଧନ୍ୟବାଦ ଦେବା ପାଇଁ ସେ ନିଜେ ଆସିଲେ । ଶ୍ରୀମତୀ ଓ ଶ୍ରୀମାନ ସଜ୍ଜନ ନାରୀ ଜାତିର ଯେଉଁ ଅପୂର୍ବ ସେବା କରିଛନ୍ତି ତାହାକୁ ସେ ଅସଂଖ୍ୟ ମଣ୍ଡିତ ଶବ୍ଦରେ ବ୍ୟାଖ୍ୟାନକଲେ । ବନକନ୍ୟା ଆଶ୍ରମ ଦେଖିବାର ଇଚ୍ଛା ପ୍ରକଟ କଲି ଯାହାକୁ କି ସଂଚାଳନ ଶ୍ରଦ୍ଧା ସହିତ ମଣ୍ଡଳର ପରମ ସୌଭାଗ୍ୟ ବୋଲି ଭାବିଲେ । ପରଦିନ ଦୁଇଟାରେ ସଂଚାଳକ ମହୋଦୟା ନିଜେ ଯାଇ ଉଭୟଙ୍କୁ ନେଇ ଯିବାର ନିଶ୍ଚିତ ହେଲା ।

ଜନରବରେ ପ୍ରକମ୍ପିତ ମାଲ୍ ଗୋଦାମ, ସଂକଡ଼ା ବଜାର, ପିଠି ଉପରେ ଓଜନଦାର୍ ବସ୍ତା ଲଦି ଶଢ଼କର ଉଭୟ ପାର୍ଶ୍ୱରୁ ଯିବା ଆସିବା କରୁଥିବା ଶ୍ରମିକ ମହଣ ମହଣ ବୋଝ ଲଦା ଠେଲାଗାଡ଼ିରେ ଯୋଖା ଯାଇଥିବା କଳା ମଇଁଷି ବସ୍ତା ଲଦା ଯାଇଥିବା ଓଟ, ଭିଡ଼ ମଧ୍ୟରେ ନିଜର ସ୍ୱତନ୍ତ୍ର ଅସ୍ତିତ୍ୱ ରଖୁଥିଲେ । କୁର୍ତ୍ତା, ଜାକେଟ, ଦୋପଟା ଅଥବା ଗାନ୍ଧୀ ଟୋପି ପିନ୍ଧି କାନ୍ଧ ଉପରେ ଗାମୁଛା ପକାଇ ଜଙ୍ଘିଆ, ପାଇଜାମା ଓ ଆଣ୍ଠୁ ପର୍ଯ୍ୟନ୍ତ ଧୋତି, ମାଲ କଚ୍ଛା ମାରିଥିବା ଲୋକ ଏହି ବଜାରରେ ଅଧିକ ଦେଖା ଯାଉଥିଲେ ଇଂରେଜଙ୍କ ବହୁ ପୂର୍ବରେ ବଜାର ମହକ ଉଠୁଥିଲା । ଠେଲା ଗାଡ଼ି, ଟ୍ରକ, ସାଇକେଲ୍, ଘୋଡ଼ାଗାଡ଼ି, ରିକ୍ସା, ଗାଈ, ଷଣ୍ଢ ଓ ବ୍ୟବସାୟୀମାନଙ୍କ ଚଳପ୍ରଚଳ

ମଧ୍ୟରେ ସଡ଼କର ଉଚ୍ଚା-ନୀଚ୍ଚ ରାସ୍ତା ମଧ୍ୟରେ ସଜ୍ଜନର କାର୍ ଆଗକୁ ମାଡ଼ି ଚାଲିଥିଲା । ସଞ୍ଚାଳକ ମହୋଦୟ ଆଙ୍ଗୁଠି ଉଠାଇ ବାମ ପାଖରେ ବହୁ ଦୂରରେ ଥିବା ଛାତ ଆଡ଼କୁ ନିର୍ଦ୍ଦେଶ କଲେ ଯେଉଁଠାରେ ମଣ୍ଡଳର ବଡ଼ ସାଇନ୍‌ବୋର୍ଡ ମରାଯାଇଥିଲା । ସଞ୍ଚାଳକ ମହାଶୟ କହିଲେ "ମୁଁ ଉକ୍ତ ପାର୍କର ଶୀର୍ଷ ସ୍ଥାନରେ ଏତେ ବଡ଼ ବଡ଼ ସାଇନ୍‌ବୋର୍ଡ଼ ଏଥିପାଇଁ ଲଗାଇଛି ଯେ ପ୍ରଥମତଃ ଜନତାର ଧ୍ୟାନ ଆକର୍ଷିତ ହେବ । ଦ୍ୱିତୀୟତଃ ଛାତର ସବୁ ପାଖରେ ପର୍ଦ୍ଦା ହୋଇଯିବ । ମୁଁ ପର୍ଦ୍ଦା ଆଦର ବଡ଼ ଧ୍ୟାନ ରଖେଁ ଦେବଜୀ । ଆମ ମଣ୍ଡଳରେ ସ୍ତ୍ରୀଜାତିକ ଉନ୍ନତି ପ୍ରତି ବିଶେଷ ଧ୍ୟାନ ଦିଆଯାଏ । ଏହି ସେବାକାର୍ଯ୍ୟ ୨୨ ବର୍ଷ ହେଲା ମୁଁ କରୁଛି ଏବଂ ଏକଥା ମୁଁ ଆପଣଙ୍କୁ କହୁଛି, ଚନ୍ଦ୍ରମାରେ କଳଙ୍କ ଅଛି କିନ୍ତୁ ଆମର ଚନ୍ଦ୍ରମା କଳଙ୍କଶୂନ୍ୟ ।

ମାଲଗୋଦାମ ଅତିକ୍ରମ କରି କାର୍ ବାମ ପାଖ ସଡ଼କକୁ ଆସିଲା । ଆଗରେ ସେକେଣ୍ଡ୍‌ରନ୍ ସିନେମା ହଲ । ମନୋହରୀ ଦୋକାନର ଛୋଟ ବଜାର ଅତିକ୍ରମ କରି, କାର୍ ବାମ ଗଲି ମୋଡ଼ରେ ବୁଲିଲା, ଗୋଟିଏ ଘର ଉପରେ 'ଶ୍ରୀମତୀ ସୁନ୍ଦର ବିବି ଦାତବ୍ୟ ଔଷଧାଳୟର ସାଇନ୍‌ବୋର୍ଡ଼' । ତାକୁ ଲାଗିଥିବା ଘର ଉପରେ "ଫ୍ରେଣ୍ଡସ୍ ଟ୍ରେଡ଼ିଂ କର୍ପୋରେସନ୍‌ର ସାଇନ୍‌ବୋର୍ଡ଼', ପୁଣି ଗୋଟିଏ ଦର୍ଜିର ଦୋକାନ ଉପରେ ମହିଳା ସେବା ମଣ୍ଡଳର ହଳଦିଆ ରଙ୍ଗର କୋଠା । କୋଠାରେ ସାଇନ୍‌ବୋର୍ଡ ମରା ହୋଇଥିଲା । ଫାଟକ ଉପରେ ମଣ୍ଡଳର ନାମ ଡାହାଣ ପାଖ ଲମ୍ବା ସାଇନ୍‌ବୋର୍ଡ଼ ଉପରେ ସଂଚାଳକ ମହୋଦୟ ଓ ସଂରକ୍ଷକମାନଙ୍କର ନାମାବଳୀ, ବାମ ପାଖ ସାଇନ୍‌ବୋର୍ଡ ଉପରେ ମଣ୍ଡଳର ମହତ ଉଦ୍ଦେଶ୍ୟାବଳୀ ଟଙ୍ଗା ହୋଇଥିଲା । ଖାଲି ଥିବା କାନ୍ଥ ଉପରେ ବଡ଼ ବଡ଼ ଅକ୍ଷରରେ "ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ, ରମନ୍ତେ ତତ୍ର ଦେବତାଃ" ଲେଖାଥିଲା ।

ଭିତରେ ଅଫିସ ଥିଲା । ଜଣେ ମହିଳା ସେଠାରେ ବୁଢ଼ା ଅଫିସ କିରାଣୀ ପାଖରେ ବସିଥିଲା । ଗୋରା ଦେହ, ଧୂସର ରଙ୍ଗର ଢଲ ଚଦ୍ଦରରେ ହାତ ଓ ଶରୀର ନେଳିଆ ରଙ୍ଗ ଛୋଟ ଛୋଟ ଆଖିରେ ସୁନେଲି ରଙ୍ଗର ଚଷମା, ବିସ୍ଫାରିତ ନୟନ ଯାହାର ପଲକର ତଳ ଚମଡ଼ା ଓ କୋଣ ଗାଢ଼ ଶ୍ୟାମଳ ବର୍ଣ୍ଣଥିଲା, ଧୂସର କେଶରାଶି, ଖଇର ରଙ୍ଗ ରଞ୍ଜିତ ଛୋଟ ଛୋଟ ଦାନ୍ତଥିବା ଏହି ଶ୍ୱେତ ବର୍ଣ୍ଣର ଖଦଡ଼ ବସ୍ତ୍ର ଧାରିଣୀ ମହିଳା ଉଠି ଛିଡ଼ା ହେଲେ । ହସି ହସି ହାତ ଯୋଡ଼ିଲେ । ସଜ୍ଜନଙ୍କୁ ତାଙ୍କର ଦୃଷ୍ଟି ଓ ହସ ବଡ଼ ସୁସଜ୍ଜିତ ମନେହେଲା । କପାଳରେ ସିନ୍ଦୂର ବିନ୍ଦୁ ଓ ସୀମନ୍ତରେ ସିନ୍ଦୂର ଗାର ଦେବୀଜୀଙ୍କ ସୁହାଗର ପରିଚୟ ଦେଉଥିଲା । ଅନ୍ୟାନ୍ୟ ପରିଚୟ ଦେଇ ସଂଚାଳକ ମହାଶୟ କହିଲେ "ଏ ଶ୍ରୀମତୀ ଧନବତୀ ଦେବୀ ଶାସ୍ତ୍ରିଣୀ, ପ୍ରଭାକର, ରାଜବୈଦ୍ୟା, ଆମର ପାଖରେ ସୁନ୍ଦର ବୀବୀ ଦାତବ୍ୟ ଔଷଧାଳୟ ଅଛି । ଏ ହେଉଛନ୍ତି ତାର ମାଲିକ । ଆମ ମଣ୍ଡଳର

ଧରି ରଖନ୍ତୁ ଏ ପ୍ରାଣ । ଏହାଙ୍କ ପରାମର୍ଶ ଓ ସହଯୋଗ ଦ୍ୱାରା ଆମେ ସ୍ତ୍ରୀମାନଙ୍କୁ ଆୟୁର୍ବେଦ ପଢ଼ାଇବା ପାଇଁ ବ୍ୟବସ୍ଥା କରିଛୁଁ ।

ମଣ୍ଡଳରେ ସ୍ଥାୟୀ ରୂପେ ରହୁଥିବା ସ୍ୱଚ୍ଛ, ଶ୍ୱେତ ବର୍ଣ୍ଣର ଉଜ୍ଜ୍ୱଳ ପୋଷାକ ପରିହିତା ଆଠଜଣ ସ୍ତ୍ରୀଙ୍କୁ ମହାମାନ୍ୟ ଅତିଥିଙ୍କ ଆଗକୁ ଅଣାଗଲା । ସେମାନଙ୍କର ବୟସ ୧୮ ବର୍ଷରୁ ୩୫ ବର୍ଷ ମଧ୍ୟରେ ଥିଲା । ରଙ୍ଗ ମୋଟାମୋଟି ଶ୍ୟାମଳ, କାହାର ଗାଢ଼, କାହାର ଅବା ଫିକା । ନାକ ମୁହଁ ଛଳଭଳ ଲକ୍ଷଣ ସମସ୍ତଙ୍କର । ସେମାନଙ୍କର ମଧ୍ୟରେ ଜଣେ ହେଲେ ଏପରି ନଥିଲା ଯାହାକୁ କି ପ୍ରକୃତରେ ସୁନ୍ଦରୀ କୁହାଯାଇପାରିବ । ମହିଳାମାନେ ସଞ୍ଚାଳକ ମହାଶୟଙ୍କ ଆଜ୍ଞାରେ କିଛି ଶ୍ଳୋକ ଓ ଭଜନ ଶୁଣାଇଲେ । ଏହା ପରେ ତାଙ୍କୁ ସିଲେଇ ଶ୍ରେଣୀ, କୁଟିକମ ଓ ଲୁଗା ବୁଣା ଶ୍ରେଣୀ, ଗୀତ ଶ୍ରେଣୀ, ନୃତ୍ୟ ଶ୍ରେଣୀ, ଆୟୁର୍ବେଦ ଶ୍ରେଣୀ ଓ ଧର୍ମ ଶିକ୍ଷା ଶ୍ରେଣୀ ଦେଖାଇ ଦିଆଗଲା । ଏଥିରେ ପ୍ରାୟ ୫୦/୫୫ ଜଣ ନବ ଯୁବତୀ, ଯୁବତୀ ଓ କିଛି ପ୍ରୌଢ଼ା ମଧ୍ୟ ଥିଲେ । ଏମାନେ ସମସ୍ତେ ଗୃହ ଗୃହସ୍ଥୀର ମହିଳାଥିଲେ ଯେଉଁମାନେ କି ଦିନରେ ୪ଟାକୁ କାମ ଶିଖିବାକୁ ଆସନ୍ତି ତାଙ୍କ କାମର ମଜୁରି ମଧ୍ୟ ଦିଆଯାଉଥିଲା କେବଳ ସଙ୍ଗୀତ ଓ ନୃତ୍ୟ ଶିକ୍ଷା କରୁଥିବା ମହିଳାମାନଙ୍କୁ ମଜୁରି ମିଳୁ ନଥିଲା । ଏହି ନିୟମ ଧର୍ମ ଶିକ୍ଷା ଶ୍ରେଣୀରେ ମଧ୍ୟ ଥିଲା । ଆୟୁର୍ବେଦ ଓ ଧର୍ମ ଶିକ୍ଷାର ଶ୍ରେଣୀ ମଣ୍ଡଳରେ ସ୍ଥାନାଭାବଯୋଗୁଁ ସୁନ୍ଦର ବାବାଙ୍କର ଔଷଧାଳୟରେ ଥିବା ଭବନରେ ଚାଲୁଥିଲା । ଯେଉଁଥିପାଇଁ ଶ୍ରୀମତୀ ଧନବତୀ ଦେବୀ ଶାସ୍ତ୍ରୀଣୀ, ପ୍ରଭାକର ରାଜବୈଦ୍ୟାଙ୍କ ଉଦାରତା—ରାମାୟଣ ସଞ୍ଚାଳକ ମହୋଦୟଙ୍କ ଦ୍ୱାରା ପୁନଃ ପାଠ ହେଲା ।

ମଣ୍ଡଳର କାର୍ଯ୍ୟ ସଞ୍ଚାଳନ ଦେଖି ସଜ୍ଜନ ଓ କନ୍ୟା ଦୁହିଁଙ୍କ ଉପରେ ଖୁବ୍ ପ୍ରଭାବ ପଡ଼ିଲା । ଏହି ସୁବ୍ୟବସ୍ଥିତ ସଫା-ସୁତୁରା ବାତାବରଣ ମଧ୍ୟରେ କୌଣସିଠାରେ ହେଲେ ସେପରି କିଛି ଖରାପ କାର୍ଯ୍ୟର ସୂଚନା ମିଳୁ ନଥିଲା । ଯାହାକୁ କି ଖୋଜିବା ପାଇଁ ସେ ଆସିଥିଲେ । କନ୍ୟା ଅନେକ ପ୍ରକାରରେ ମଣ୍ଡଳ ସହାୟତା ପାଇଁ କଥା ଦେଇଆସିଲା । ଫେରିବା ସମୟରେ ସେ ମନେ ମନେ କହୁଥିଲା । "ହୋଇପାରେ ସେ ପାଗଳୀ ମିଛ କହୁଥିବ ବା ଏହା ଏପରି ସଙ୍ଗଠନ, ଯାହାର ପ୍ରକୃତ ତଥ୍ୟ ସହଜରେ ମିଳିପାରିବ ନାହିଁ । କେତେ କଠିନ ଏ ଦୁନିଆଁ ? ଏଥିପାଇଁ ଭରିମତ ସଂଗ୍ରାମୀ ଲୋଡ଼ା ।

ଏହାପରେ ସେ ସଜ୍ଜନ ସହିତ ମଣ୍ଡଳ ସମ୍ବନ୍ଧରେ କେବେହେଲେ ଗମ୍ଭୀର ଚର୍ଚ୍ଚା କରିନାହିଁ । ସଞ୍ଚାଳକ ମହୋଦୟ, ବନକନ୍ୟା ପାଖକୁ ମହିରେ ମଝିରେ ଆସୁଥିଲେ ପୁଣି ସଜ୍ଜନ ପାଖକୁ ଆସିବାକୁ ଲାଗିଲେ । ଧନବତୀ ଦେବୀ ଶାସ୍ତ୍ରିଣୀ, ପ୍ରଭାକର ବୈଦ୍ୟ ସହିତ ମଧ୍ୟ ସେ ସଜ୍ଜନ ପାଖକୁ ଆସିଗଲେ ।

ସଜ୍ଜନ ବାବାଜୀଙ୍କୁ ମଣ୍ଡଳ ସମ୍ବନ୍ଧରେ ସବୁ କିଛି ଶୁଣାଇଲା ପରେ କହିଲା "ଆପଣଙ୍କର ପାଗଳୀ ଯେଉଁ ଯେଉଁ କଥା ସଙ୍କେତ କଲା, ସେ ସମସ୍ତର ସେଠାରେ ଚିହ୍ନ ମିଳୁନାହିଁ ।"

ବାବାଜୀ କହିଲେ 'ସମଜ୍ଜା, ଆମର ମନ କହୁଛି ଯେ ସେଠାରେ ନିଶ୍ଚିତରୂପେ ବଡ଼ଧରଣର ଅତ୍ୟାଚାର ହୋଇଛି, ସେହି ପାଗଳୀର ଅନେକ କଥା ଏପରି ଅଛି ଯେଉଁଥିରେ ମିଥ୍ୟା କଳ୍ପନାର ଟିକିଏ ସ୍ଥାନ ନାହିଁ ।

ବାବାଜୀ ଜଣେ ବଡ଼ ଶସ୍ୟ ବେପାରୀର ବଜାରରେ ଯିଏ କି ନିଜ ଝିଅମାନଙ୍କୁ ଜୋର ଜବରଦସ୍ତି ନିଜର ବଶବର୍ତ୍ତୀ କରିଛି ତା ନାମ କହିଲେ ମଣ୍ଡଳକୁ ସିଲେଇ କାମ ଶିଖିବା ପାଇଁ ତାକୁ ଆସିବାପାଇଁ ପଡ଼େ ଓ ଅନିଚ୍ଛା ପୂର୍ବକ ସମସ୍ତ ମାନସିକ ଯନ୍ତ୍ରଣା ସହ୍ୟ କରିବାକୁ ପଡ଼େ । ସେହି ତଥାକଥିତ ପାଗଳୀ ସମ୍ବନ୍ଧରେ ମଧ୍ୟ ସଜ୍ଜନ ଆଉକିଛି ଜାଣିଥାଇ ପାରେ । ପାଗଳୀ କହିଥିଲା ଯେ ପ୍ରଥମେ ତାକୁ ମଣ୍ଡଳର ଧାର୍ମିକ ବାତାବରଣ ଦ୍ୱାରା ପୂର୍ଣ୍ଣରୂପେ ପ୍ରଭାବିତ କରି କ୍ରମଶଃ ଏହା ବୁଝାଇ ଦିଆଯାଇଥିଲା ଯେ ଗୃହିଣୀ ହେବା ସ୍ତ୍ରୀର ସବୁଠାରୁ ବଡ଼ ଧର୍ମ । ଆହୁରି ମଧ୍ୟ ସ୍ତ୍ରୀକୁ ପୁରୁଷ ଭଳି ବାରମ୍ବାର ବିବାହ ଓ ତ୍ୟାଗର ଅଧିକାର ମଧ୍ୟ ଅଛି । ଏହା ମଧ୍ୟ ବୁଝାଯାଇ ପାରେ ଯେ, ମଣ୍ଡଳ ବିଶୁଦ୍ଧ ଆର୍ଯ୍ୟ ପରମ୍ପରା ଅନୁସାରେ ସ୍ତ୍ରୀ-ପୁରୁଷ ମଧ୍ୟରେ ପ୍ରେମ ସମ୍ବନ୍ଧ ସ୍ଥାପିତ କରି ସ୍ୱୟମ୍ବର ରଚନାର ପୂର୍ଣ୍ଣ ଅବସର ଦିଏ । ଏ କଥା ଧୀରେ ଧୀରେ ତା ମନରେ ବସାଇ ଦିଆଯାଇଥିଲା । ପାଗଳୀ ସବୁ ପ୍ରକାରରେ ଅରକ୍ଷିତା ଯୋଗୁଁ ମଣ୍ଡଳର ପ୍ରଭାବରେ ଆସିଗଲା । ଦିନେ ତାକୁ ମଣ୍ଡଳର ଗୋଟିଏ ପାଖ କୋଠରୀକୁ ନିଆଗଲା । ଯେଉଁଠାରେ ଜଣେ ଯୁବକ ସହିତ ତାର ପରିଚୟ କରାଗଲା । ସେହି କୋଠରୀରେ ସାଧାରଣ ସୁରୁଚି ପୂର୍ଣ୍ଣ ସାଜସଜ୍ଜା ବ୍ୟତୀତ ଗୋଟିଏ ରାଧାକୃଷ୍ଣଙ୍କର ଚିତ୍ର ମଧ୍ୟ ଟଙ୍ଗା ଯାଇଥିଲା । ସେହି ଚିତ୍ର ଆଗରେ ପାଗଳୀ ଓ ସେହି ବ୍ୟକ୍ତିଠାରୁ ପ୍ରତିଜ୍ଞା କରେଇ ନିଆଗଲା ଯେ ଦୁହିଁଙ୍କର ସମ୍ପର୍କ କୌଣସି ତୃତୀୟ ଲୋକ କହିବେ ନାହିଁ । ପାଗଳୀ ସ୍ୱାସ୍ଥ୍ୟ ସ୍ୱେଚ୍ଛା ପୂର୍ବକ ନିଜକୁ ସେହି ବ୍ୟକ୍ତି ପାଖରେ ସମର୍ପଣ କଲା । ପୂର୍ବ ଜୀବନର କଷ୍ଟ ଅନୁଭବ କଥା ମଧ୍ୟ ନୂଆ ପ୍ରେମିକାକୁ କହିଲା । ପାଗଳୀର ନୂଆ ପ୍ରେମିକ କ୍ରମାଗତ ୧° ଦିନ ପର୍ଯ୍ୟନ୍ତ ଆସିଲା । ପୁଣି ହଠାତ୍ ତାର ଆସିବା ବନ୍ଦ ହୋଇଗଲା ଯଦି ଦିନେ ଯେତେବେଳେ ସେ ସେହି କୋଠରୀକୁ ଡକାଗଲା, ସେ ସେଠାରେ ଯାଇ ଦେଖିଲା ଯେ ଆଉ ଜଣେ ନୂଆ ବ୍ୟକ୍ତି ସେଠାରେ ଉପସ୍ଥିତ ଥିଲା । ସେହି ବ୍ୟକ୍ତି ସମ୍ମୁଖରେ ପୁନଶ୍ଚ ସେହି ପୁରୁଣା ନାଟକର ପୁନଃ ଅଭିନୟ ହେଲା । ରାଧା କୃଷ୍ଣଙ୍କ ଚିତ୍ର ସମ୍ମୁଖରେ ପୁରୁଣା ସ୍ତ୍ରୀଙ୍କୁ ନୂଆ କରି ବୁଝେଇବାର ତମାଶା ଆରମ୍ଭ ହେଲା, ପାଗଳୀ ତାର ବିରୋଧ

କଲା । ସେ ନିଜେ ନିଜକୁ ବେଶ୍ୟା କରିନେବାକୁ ମନା କଲା, ଯାହାର ଆଉ ଏହା ହେଲା ଯେ ବାଧ୍ୟ କରାଯିବାର ସେ ଚିତ୍କାର କଲା । ମହିଳା ସେବା ମଣ୍ଡଳର ଏହି ଚିତ୍କାର ବାହାରକୁ ଶୁଣା ଯାଉଥିଲା ଓ କିଛି ଦିନ ବ୍ୟର୍ଥ ଚିତ୍କାର ବିଷୟ ମଧ୍ୟ ଥିଲା । ପାଗଳୀ ସେହି ଦିନଠାରୁ ମଣ୍ଡଳର ତଳ କୋଠରୀରେ ବନ୍ଦିନୀ ହେଲା, ଯେଉଁଠାରେ ତାକୁ ଅନେକ ବଳାତ୍କାର ସହ୍ୟ କରିବାକୁ ପଡ଼ିଲା । ବଳାତ୍କାର କରିବା ଲୋକଙ୍କ ମଧ୍ୟରେ ପାଗଳୀର କଥା ଅନୁସାରେ କେବେ କେବେ ପୋଲିସ ଲୋକମାନେ ମଧ୍ୟ ଆସୁଥିଲେ । ତାକୁ ସେଠାରେ ଯୌନ ବ୍ୟାଧି ମଧ୍ୟ ହେଲା । ପାଗଳୀ ଏହା ମଧ୍ୟ ପ୍ରକାଶ କରିଛି ଯେ ମଣ୍ଡଳର ନିମ୍ନ ଭାଗରେ ଏପରି ଦୁଇଟି ବଡ ବଡ କୋଠରୀ ମଧ୍ୟ ଅଛି ଯେଉଁଠାରେ ଅବାଧ୍ୟ ସ୍ତ୍ରୀ ମାନଙ୍କୁ ବନ୍ଦୀ କରାଯାଏ । ବାରମ୍ବାର ମାର୍ ପିଟ୍ ଓ ବଳାତ୍କାର ସହ୍ୟ କରିବାକୁ ବାଧ୍ୟ କରି ତାଙ୍କର ଆତ୍ମାକୁ ନଷ୍ଟ କରାଯାଏ । ଯେଉଁମାନେ ମଣ୍ଡଳର କର୍ତ୍ତ୍ରୀ ହୋଇ ଯାଆନ୍ତି ସେମାନେ ଅବାଧ୍ୟ ହେବା ସ୍ତ୍ରୀଙ୍କ ଉପରେ ଶାସନ କରନ୍ତି । ସ୍ତ୍ରୀ ମାନଙ୍କର ପରସ୍ପର ପ୍ରତି ଈର୍ଷା, ଲୋଭ ଓ ଅତ୍ୟାଚାର ଦ୍ୱାରା ବିବଶ ହୋଇ ଏମାନେ ମଣ୍ଡଳ ଲୋକଙ୍କ ଇଚ୍ଛାନୁସାରେ କାର୍ଯ୍ୟ କରନ୍ତି । ଏଭଳି ସ୍ତ୍ରୀ ଲୋକମାନେ ମାଜିଷ୍ଟ୍ରେଟ୍ ଆଗରେ ବିବାହର ପ୍ରହସନ କରି ଆଇନ୍ ଦୃଷ୍ଟି ରେ ଧୂଳି ପକାଇ ରକ୍ଷା ପାଆନ୍ତି । ଧନବତୀ ଦେବୀ ବୈଦ୍ୟ ଓ ଅନ୍ୟ ଜଣେ ସ୍ତ୍ରୀ ଯାହାର ନାମ ପାଗଳୀ କଶ୍ରେରପିସି ପଚେଇଛି । ମଣ୍ଡଳର ସ୍ତ୍ରୀ ଲୋକମାନଙ୍କର ଦଣ୍ଡ, ପୁରସ୍କାର ଆଦିର ବିଧାନ ରଚନା କରନ୍ତି । ଧନବତୀ ବୈଦ୍ୟା ସମ୍ବନ୍ଧରେ ସଜ୍ଜନ ଶୁଣିଛି ଯେ ସଂଚାଳକ ମହୋଦୟଙ୍କ ଅପେକ୍ଷା ଅଧିକ ଅତ୍ୟାଚାରିଣୀ । ସଂଚାଳକ ଓ ବୈଦ୍ୟା ଏହି ଶୈତାନ୍ ସାମ୍ରାଜ୍ୟର ରାଜା ଓ ରାଣୀ । ବୈଦ୍ୟାର ବୁଢା ସ୍ୱାମୀ, ରୁଟି ଖଣ୍ଡିଏ ଖଣ୍ଡିଏ ଖାଇ ଚାକର ଭଳି ପଡ଼ିରହେ ।

ସଜ୍ଜନ ଏ ସମସ୍ତ ଶୁଣି ବଡ଼ ବିଚଳିତ ହେଲା । ଯେ କୌଣସି ପ୍ରକାରରେ ଏହାର ରହସ୍ୟ ଉଦ୍‌ଘାଟନ କରିବା ପାଇଁ ତାର ତୀବ୍ର ଇଚ୍ଛା ହେଲା । କର୍ଣ୍ଣେଲ ସହିତ ମଧ୍ୟ ସେ ଏ ସମ୍ବନ୍ଧରେ ଚର୍ଚ୍ଚା କଲା । ସେ ମଣ୍ଡଳ ସମ୍ବନ୍ଧରେ କେବେ କେବେ ଏ ଲୋକଙ୍କଠାରୁ କିଛି ଶୁଣି ଥିଲା । ସଂଚାଳକ ମହୋଦୟଙ୍କୁ ତ କର୍ଣ୍ଣେଲ ପୂର୍ବ ଚରିତ୍ର–ବିଶ୍ ବତାଇଲା କିନ୍ତୁ ଏଥି ସହିତ ସଜ୍ଜନଙ୍କୁ ଏ କଥାରେ କଡ଼ା ଆଦେଶ ଦେଇଥିଲେ ଯେ ସେ ଭବିଷ୍ୟତରେ କେବେହେଲେ ଏହି ମଇଳା ମଧ୍ୟରେ ହାତ ଭରିବାକୁ ଚେଷ୍ଟା ନ କରେ ।

କିନ୍ତୁ ସଜ୍ଜନ ମନରେ ନିଆଁ ଜଳିଥିଲା । ସେ ଏହି ରହସ୍ୟର ଉଦ୍‌ଘାଟନ କରିବା ପାଇଁ ପ୍ରୟାସୀ ଥିଲା । ସେ ନିଜର ଇଚ୍ଛା ଅନ୍ୟଠାରେ ଗୁପ୍ତ ରଖିଥିଲା । ସଜ୍ଜନ ବନକନ୍ୟାଙ୍କ ନାମରେ ଦୁଇଥର ଆହୁରି ମଧ୍ୟ ୨୫/୫୦ ଟଙ୍କା ପଠାଇଲା । ସଂଚାଳକ ମହୋଦୟଙ୍କୁ ଏହି ନୂଆ ଦାନ, ପରିବାର ପ୍ରତି ସହଜରେ ଆକର୍ଷଣ ହୋଇଯାଇଥିଲା । ସେ ଅଧିକାଂଶ ସମୟ ଆସିବାକୁ ଲାଗିଲେ । ଥରେ କନ୍ୟାକୁ ମଧ୍ୟ ନିଜ ମଣ୍ଡଳରେ ବକ୍ତୃତା

କରିବା ପାଇଁ ନେଇ ଗଲେ । ଦିନେ ପୂର୍ବରୁ ସମସ୍ତ ନିଶ୍ଚିତ କରି, କନ୍ୟା ଯେତେବେଳେ ନିଜ ସ୍କୁଲକୁ ଫେରିଯିବା ପରି ଥିଲା, ସଜ୍ଜନ ସଞ୍ଚାଳକଙ୍କ ଘରକୁ ଡ଼କାଇଲା । ସେ ଆସିଲେ, ସଜ୍ଜନ ସେହି ସମୟରେ ମଦର ସମସ୍ତ ଆୟୋଜନ ସଜାଇ ବସିଥିଲା । ସେ ସଞ୍ଚାଳକଙ୍କୁ ସେଠାକୁ ଡ଼କାଇଲା, ପଚାରିଲା "କିପରି କିପରି ଚାଲି ଆସିଲେ ?"

ସଞ୍ଚାଳକ କହିଲେ "କାଲି ଦ୍ୱିପହର ସମୟରେ ମୋତେ ଦେବୀଜୀଙ୍କ ସନ୍ଦେଶ ମିଳିଥିଲା । ସେ ମୋତେ ଆଜି ଏହି ସମୟରେ ଏଠାକୁ ଆସିବାକୁ ଖବର ପଠାଇଥିଲେ ।"

ସେ ତ ନାହାନ୍ତି, ବୋଧହୁଏ କିଛି ଜରୁରୀ କାର୍ଯ୍ୟରେ ଯାଇଛନ୍ତି । ବସନ୍ତୁ ଆସୁଥିବେ, ନିଅନ୍ତୁ, ଆରାମ କରନ୍ତୁ ।

'ହେଁ-ହେଁ-ହେଁ, ପାନ, ତମାଖୁ (ଗୁଡ଼ାଖୁ) ବ୍ୟତିତ ମୁଁ ଅନ୍ୟ କିଛି ନିଶା ଦ୍ରବ୍ୟ ପାନ କରେ ନାହିଁ ।'

ଓଃ, ଗୁରୁଜୀ—ସ୍ୱର୍ଗରେ ରହି ସ୍ୱର୍ଗୀୟ ସଙ୍ଗୀତଠାରୁ ଦୂରେଇ ଯାଉଛନ୍ତି ଯେ ? କିଛି ସମୟ ମଧ୍ୟରେ ସଜ୍ଜନ ସଞ୍ଚାଳକଙ୍କୁ ନିଜ କଥାରେ ମୋହିତ କରିଦେଲା । ଏଥିରେ ତାର ବାକ୍ ଚାତୁରୀ ଅପେକ୍ଷା ବୈଭବ ଐଶ୍ୱର୍ଯ୍ୟ ବେଶୀ ଥିଲା । ତାଙ୍କ ମନରେ ସେ ବିଶ୍ୱାସ ଜନ୍ମାଇ ଦେଲା ଯେ ବନକନ୍ୟା ଓ ସଜ୍ଜନର ପଥ ଏକା ନୁହେଁ । ଏହି ସମସ୍ତ ସାମାଜିକ କାର୍ଯ୍ୟର ନାଟକ ସେ ବନକନ୍ୟା ଯୋଗୁଁ ହିଁ କରୁଛି । ସଜ୍ଜନ ନିଜ ସମ୍ବନ୍ଧରେ ଅନେକ ହିତ –ମିଛର ରୋମାଣ୍ଟିକ୍ କାହାଣୀ ମନରୁ ଗଢ଼ି ଶୁଣାଇଲା । ଏହା ମଧ୍ୟ କହିଲା ଯେ ମହିଳାରେ ଷ୍ଟୁଡ଼ିଓ ଖୋଲିବା ପଛରେ ତାର ଇଚ୍ଛା ଥିଲା ଓ ସେ ସେଠାରୁ ବହୁତ ଉତ୍ସାହ ମଧ୍ୟ ପାଇଛି । ସଜ୍ଜନ ଏହା ମଧ୍ୟ ସଙ୍କେତ କଲା ଯେ, ସେ ଗୁପ୍ତ ଆନନ୍ଦ ଲାଭ କରିବାପାଇଁ ଶହ ଶହ ଟଙ୍କା ଖର୍ଚ୍ଚ କରିଦିଏ ।

ସଞ୍ଚାଳକ ଖସିଗଲେ ପଡ଼ିଲେ, ଧନବନ୍ତୀଜୀ ମଧ୍ୟ ତାର ଘର ଦେଖି ଯାଇଥିଲେ । ସେ ନିଜ ସମ୍ବନ୍ଧକୁ ବନକନ୍ୟା ଅପେକ୍ଷା ସଜ୍ଜନ ସହିତ ଅଧିକ ଭାବରେ ସ୍ଥାପନ କରିବାକୁ ଲାଗିଲେ ।

ଦିନେ ଧନବନ୍ତୀ ସଜ୍ଜନକୁ ତାର ନିଜ ଘରକୁ ରାତ୍ରିକାଳୀନ ଭୋଜନରେ ଆପ୍ୟାୟିତ କରିବାପାଇଁ ଡକାଇଲେ । ସଜ୍ଜନ ଟିକିଏ ଥରି ଉଠିଲା, ସେ ଚଲାକଲା, ପୁଣି ଚାଲିଗଲା । ସେଦିନ ସମସ୍ତ ତଥ୍ୟ ଜୁଟି ପଡ଼ିଲା । ଶ୍ରୀମତୀ ସୁନ୍ଦର ବାବା ଦାତବ୍ୟ ଔଷଧାଳୟ ଓ ମହିଳା ସେବା ମଣ୍ଡଳ ମହିରେ ଫ୍ରେଣ୍ଡସ୍ ଟ୍ରେଡିଂ କର୍ପୋରେସନ୍‌ର କୋଠା ପ୍ରକୃତରେ ପୁରୁଷ ମାନଙ୍କର ଯାତାୟତ ପାଇଁ ସୁବିଧା ଜନକ ମାର୍ଟ । ଫ୍ରେଣ୍ଡସ୍ ଟ୍ରେଡ଼ିଂ କର୍ପୋରେସନ୍ ଶେୟାର ମାର୍କେଟ ସହିତ ସମ୍ପର୍କ ରଖିବା ସଂସ୍ଥା । ମଣ୍ଡଳର ଜଣେ ଧନୀ

ସରକାରଙ୍କର କେତେକ କର୍ମଚାରୀ ସେଠାରେ କାମ କରନ୍ତି । ଶେୟାରର ଧନ୍ଦା କେବଳ ନାମକୁମାତ୍ର ସେଠାରେ ହୁଏ, ସେହି ବାହାନାରେ ଦିନ ତମାମ ଲୋକମାନଙ୍କର ଗମନା ଗମନ ପାଇଁ ସେହି ଅଫିସ ସୁଗମ ମାର୍ଗ କରିଦିଏ । ସଜ୍ଜନ ଏହି ବାଟ ଦେଇ ଭିତରକୁ ଗଲା । ତଳ ଅଗଣା ପ୍ରାୟ ଖାଲିଥିଲା, ଉପର କୋଠୀ ଆଗରେ ପୋର୍ଟିକୋ । ଆଗରେ ତିନୋଟି ଦରଜା ବିଶିଷ୍ଟ ଗୋଟିଏ କୋଠରି ଯାହା କି ଭିତରୁ ତିନୋଟି ଛୋଟ ଛୋଟ କୋଠରି ଭାବରେ ଗୋଟିକିଆ ଇଟା କାନ୍ଥ ସାହାଯ୍ୟରେ ଅଲଗ ଅଲଗ ହୋଇଥିଲା । ସୁନ୍ଦର ବାବା ଦାତବ୍ୟ ଔଷଧାଳୟ, ଫ୍ରେଣ୍ଡସ୍ ଟ୍ରେଡ଼ିଂ କର୍ପୋରେସନ୍ ଓ ମହିଳା ସେବା ମଣ୍ଡଳ ଉପରୁ ଦୁଇ ଆଡ଼କୁ ଦରଜା ଖୋଲି ଗୋଟିଏ ଭବନ ରୂପେ ବାନ୍ଧି ଦିଆ ଯାଇଥିଲା । ଶ୍ରୀମତୀ ଧନବନ୍ତୀ ଦେବୀ ବୈଦ୍ୟା, ଶାସ୍ତ୍ରୀଣୀ, ସଜ୍ଜନକୁ ମଣ୍ଡଳର ଭବନରେ ଗୋଟିଏ ଏପରି କୋଠରିକୁ ନେଇଗଲେ, ଯେଉଁଠାରୁ ସେ ଭଲ ଭାବରେ ସିଲେଇ, ଲୁଗାବୁଣା ଆଦି ଶ୍ରେଣୀରେ କାମ କରୁଥିବା ସ୍ତ୍ରୀମାନଙ୍କୁ ଦେଖି ପାରୁଥିଲା । କିଛିକ୍ଷଣ ପରେ ଧନବନ୍ତୀ ଦେବୀ ଶାସ୍ତ୍ରୀଣୀ ପୁଣି ଆସିଲେ । ତାକୁ ଗୋଟିଏ ଝରକା ଠାରୁ ଦୂରକରି ଅନ୍ୟ କାନ୍ଥରେ ତିଆରି ହୋଇଥିବା ଝରକା ପାଖକୁ ନେଇଗଲେ । ଅନ୍ୟପାଖ ଘରେ ୮।୧୦ ଜଣ ସ୍ତ୍ରୀ ଜମା ହୋଇ ଯାଇଥିଲେ । ଏହି ସମସ୍ତ, କୁଟିଳା ପ୍ରକୃତିର ସ୍ତ୍ରୀମାନଙ୍କ ପାଇଁ 'ସ୍କ' ପାନର ସମୟ ଥିଲା । ଗ୍ରାହକମାନଙ୍କୁ ଝରକା ଦ୍ୱାରା ଚୁପ୍ ଚୁପ୍ 'ମାଲ୍' ଦେଖାଇ ଦିଆ ଯାଉଥିଲା । ଗ୍ରାହକ ଯାହାକୁ ପସନ୍ଦ କରୁଥିଲା ତାକୁ ତାର ଇଚ୍ଛା ମୁତାବକ ପହଞ୍ଚାଇ ଦିଆ ଯାଉଥିଲା । ସଜ୍ଜନ ସେମାନଙ୍କର କଥାବାର୍ତ୍ତା ଛିଡ଼ା ହୋଇ ଶୁଣୁଥିଲା । କଥାବାର୍ତ୍ତା ଘର – ଗୃହସ୍ଥି, ସ୍ୱାମୀ, ସମ୍ପର୍କୀୟଙ୍କ ସମ୍ବନ୍ଧରେ ଥିଲା । ପରୋକ୍ଷରେ ଅଟ୍ଟା ଚାଲିଥିଲା । ଧନବନ୍ତୀ ଦେବୀ ସଜ୍ଜନ ସହିତ ଅଧିକରୁ ଅଧିକ ଘଞ୍ଚି ହୋଇ ଛିଡ଼ା ହେବାକୁ ପ୍ରଯତ୍ନ କରି ବହୁତ ରସଯୁକ୍ତ ଭାବରେ ସେହି ସ୍ତ୍ରୀମାନଙ୍କ ସମ୍ବନ୍ଧରେ ବତାଉଥିଲେ । ଦୁଇ-ତିନି ଜଣଙ୍କ ସମ୍ବନ୍ଧରେ ସେ ବତାଇଲେ ଯେ ତାଙ୍କର ପ୍ରଭୁ ବୁଢ଼ା, ଜଣଙ୍କର ବୈଦ୍ୟ ଚରଣ କରି କହିବାକୁ ଲାଗିଲେ "କେତେ ଜଣ ବିଧବାଙ୍କର ଖାଦ୍ୟ ଏଠାରୁ ଚଳେ । ଆମ୍ଭେମାନେ ମର୍ଯ୍ୟାଦା ରକ୍ଷା କରିବା ସଙ୍ଗେ ସଙ୍ଗେ ତନ-ମନ-ଧନର ଶୋକ ଦୂରକରୁ । ମୁଁ କହୁଛି ଏହା ବଡ଼ ପୁଣ୍ୟ କାମ ।"

ଧନବନ୍ତୀ ଦେବୀଙ୍କ କଥାରେ ସଜ୍ଜନର ମୁଣ୍ଡ ଘୂରୁଥିବା ପରି ବୋଧ ହେଉଥିଲା । ସେ, ସେଦିନ କୌଣସି ଅପ୍ସରାକୁ ନିଜର ସେବା କରିବା ପାଇଁ ସଜ ନ ଥିଲା ।

ସଜ୍ଜନ କ୍ରମାଗତ ୩/୪ ଦିନ ସେଠାକୁ ଯିବାକୁ ଲାଗିଲା । ସେ ଧନବନ୍ତୀ ଦେବୀର ନିଜ ଆଡ଼କୁ ବଢ଼ୁଥିବା ଆକର୍ଷଣ କଷ୍ଟକୁ ମଧ୍ୟ ସହ୍ୟକଲା । ତାଙ୍କୁ ଆନନ୍ଦିତ କରିବା ପାଇଁ ତାଙ୍କର ବରାଦ ଅନୁସାରେ ଅଢ଼େଇ ଶହ ଟଙ୍କାର ଗୋଟିଏ ଘଡ଼ି ମଧ୍ୟ ପ୍ରେଜେଣ୍ଟ କଲା ।

ସଜ୍ଜନ ଏହି ଗାଁର ଧନରେ ଅଦ୍‌ଭୁତ ରୂପେ ସମ୍ମୋହିତ ହୋଇଥିଲା । ନିଜ ବିଷୟରେ ଯେଉଁ ନୂଆ ନୂଆ ଅନୁଭବ ହେଲା ତଦ୍ୱାରା ସେ ସ୍ୱୟଂ ଆଶ୍ଚର୍ଯ୍ୟ ହେଉଥିଲା । କେତେ ମାସ ପର୍ଯ୍ୟନ୍ତ ଏହି ସଜ୍ଜନ ଉପର ବୁଦ୍ଧିରେ ଏପରି ଜଘନ୍ୟ କାର୍ଯ୍ୟର ନିନ୍ଦା କରି ମଧ୍ୟ ମନେ ମନେ ତାଙ୍କର ଆକର୍ଷଣରେ ବାନ୍ଧି ହୋଇ ଯାଉଥିଲା । କେତେ ମାସ ପୂର୍ବେ ସଜ୍ଜନ ଏହି ଆଡ୍‌ଡାକୁ ଆସି ନିଜକୁ ଦୂରେଇ ଦେଇ ପାରିଥିଲା କିନ୍ତୁ ଆଜି ତାକୁ ଏହି ଘୃଣା ବ୍ୟସ୍ତ କରୁଥିଲେ ।

କନ୍ୟା ସହିତ ବିବାହ ପୂର୍ବରୁ ଯେଉଁ ମନ-ମନ୍ଥନ ଓ ଏବେ ବିବାହ ପରେ ଯେଉଁ ଆତ୍ମ ବିଶ୍ୱାସ ଗଢ଼ି ଉଠିଲା, ଯେଉଁ ବିଚାର ପରିପକ୍ୱ ହେଲା ସେସବୁଡ଼ିକ ତାର ମନକୁ ନୂଆ ଭାବନାରେ ପୁଷ୍ଟିକରି ଦେଇଥିଲା । ଏହା ସେ ମଣ୍ଡଳକୁ ତାର ଆସିବା ପରେ ଅନୁଭବ କଲା । ସ୍ତ୍ରୀର ସ୍ୱାଭିମାନ, ସଚ୍ଚରିତ୍ରତା ଓ ସମର୍ପଣର ଯେଉଁ ନୂଆ ମାନଦଣ୍ଡ ବନକନ୍ୟାରୂପେ ତା ଜୀବନରେ ସ୍ଥାପିତ ହୋଇଛି ସେ ତାକୁ ଉପରକୁ ଉଠାଇ ନେଇଗଲା । ନିଜ ମା'କୁ ଛାଡ଼ି ସଜ୍ଜନ ଅନ୍ୟ କୌଣସି ନାରୀକୁ ଯେଉଁ ଆଦର ଦେଇପାରି ନଥିଲା ତାହା ତାର ପତ୍ନୀ ନିଜର ଆଚରଣ ଦ୍ୱାରା ତା ଠାରୁ ସହଜରେ ନେଇ ସାରିଛି ଓ ବନକନ୍ୟା ପ୍ରତି ସ୍ନେହ, ପ୍ରେମ ତା ଜୀବନର ଏକ ବଡ଼ କ୍ରାନ୍ତି । ସୁନ୍ଦରୀ ଯୁବତୀ ସ୍ତ୍ରୀ ମାନଙ୍କୁ ଦେଖି ତାର ଦୃଷ୍ଟି ବଦଳିଯାଇଥିଲା । ମଣ୍ଡଳକୁ ଏହି ଥର ଧନ ପାଇଁ ଆସି ସଜ୍ଜନ ନିଜ ସମ୍ବନ୍ଧରେ ସବୁଠାରୁ ବଡ଼ ଜ୍ଞାନ ଏହାହିଁ ପାଇଥିଲା । ନିଜର ପୂର୍ବ ଅନୁଭବ ସହିତ ମଣ୍ଡଳର ଏ ଦୃଶ୍ୟ ଯୋଡ଼ି ସେ ସେହି କାରଣଗୁଡ଼ିକୁ ମଧ୍ୟ ଅନୁଭବ କଲା କାହିଁକି ସ୍ତ୍ରୀମାନେ ଏହି ରାସ୍ତାକୁ ଆସନ୍ତି । ସୌକିନ ପଇସା ଅବା ସ୍ତ୍ରୀମାନେ ସୌକରେ ଆସନ୍ତି । ତାଙ୍କର ସ୍ୱାମୀ ତାଙ୍କୁ ପ୍ରବଞ୍ଚନା କରନ୍ତି ଓ ନିଜ ନିଜ ସ୍ୱାମୀଙ୍କ ମୃତ୍ୟୁପରେ ବିଧବାମାନେ କ୍ରମଶଃ ପ୍ରଲୋଭନରେ ପଡ଼ି ଏଠାକୁ ଆସନ୍ତି । ଆମର ସାମାଜିକ ସଙ୍ଗଠନରେ ବିଧବାର ସ୍ଥିତି ପ୍ରାୟ ଏପରି ହୁଏ ଯେ ତାକୁ ଧନ ଓ ଜନ ଉଭୟରୁ ବଂଚିତ କରାଯାଏ । ବିଧବାମାନେ ସିଲେଇ ଶିଖିବା ବାହାନାରେ ଧର୍ମ ଚର୍ଚ୍ଚା କରିବା ବାହାନାରେ ତଥା ମଜୁରୀ ଲାଗିବା ବାହାନାରେ ଏଠାକୁ ଆସନ୍ତି । ଆତ୍ମଦାନ କରୁଥିବା ମଧ୍ୟ ବର୍ଗୀୟା ଯୁବତୀମାନେ ବହୁତ କମ୍ ସଂଖ୍ୟାରେ ଆସନ୍ତି । ଯେଉଁମାନଙ୍କର ଇଚ୍ଛାର ସ୍ୱପ୍ନ ସମସ୍ତର ପ୍ରଭାବରେ ସମ୍ଭ୍ରାନ୍ତ ପୂର୍ତ୍ତି ହୁଏ, ବାପଘରେ ଥାଇ ଭାବନ୍ତି ଯେ ସ୍ୱାମୀର ପଇସାରେ ମଜା କରିବେ କିନ୍ତୁ ମୋଟା ମୋଟି ଏ ଭାଗ୍ୟ ସମସ୍ତଙ୍କୁ ମିଳେ ନାହିଁ । ଅଧିକତର ଯୁବତୀମାନେ ନିଜ ନିଜର ସ୍ୱାମୀଙ୍କର ଆର୍ଥିକ ସୀମା ମଧ୍ୟରେ ବାନ୍ଧି ହୋଇ ସନ୍ତୁଷ୍ଟ ହୁଅନ୍ତି । ଧନ ବିତ ଘରେ କଳହ କରି ଅତପ୍ତିରେ ଥାଆନ୍ତି । ସିନେମାରେ ଆଧୁନିକ ରୂପରେଖା ଦ୍ୱାରା ପ୍ରଭାବିତ । ଆଜିର ଦୁର୍ବଳ ମସ୍ତିଷ୍କ ବ୍ୟକ୍ତି ଭଳି ତାଙ୍କ ମନରେ ନୂଆ ସ୍ୱାଦର ଅନ୍ୱେଷଣ ଇଚ୍ଛା ଭରି ରହେ । ଏପରି ସ୍ୱାଦର ଯାହାକି ତାଙ୍କର ପତିମାନଙ୍କର ବିପରୀତ କେବଳ ତାଙ୍କର ସୌନ୍ଦର୍ଯ୍ୟ ଓ ଗୁଣ ଉପରେ ସନ୍ତୁଷ୍ଟ ହୋଇ ତାଙ୍କୁ ସୁଖ ସୁବିଧାର

ଝୁଲଣାରେ ଝୁଲାଇବେ । ସଜ୍ଜନ ଦେଖିଲି ଯେ ସଙ୍ଗୀତ ନୃତ୍ୟ ଶିଖିବା ଆଳରେ ଏହି ମଣ୍ଡଳର ଏଭଳି କମ୍ ବୟସ୍କା ବାଳିକାଙ୍କୁ ମଧ୍ୟ ଆକର୍ଷଣ କରି ନେଇ ଯାଆନ୍ତି । ଯେଉଁ ମାନଙ୍କ ମନରେ ଅନୁଭବ ହୋଇନଥିବା ସେକ୍ସର ପ୍ରଚଣ୍ଡ କୌତୂହଳ ଥାଏ । କେତେକ ଅଧିକ ବୟସ୍କା ଯୁବତୀମାନେ ମଧ୍ୟ ଆସନ୍ତି ଯେଉଁମାନଙ୍କ ପାଖରେ ପଇସା କମ୍ ଥିବା ଯୋଗୁଁ ସେମାନଙ୍କର ବିବାହ ହୋଇ ପାରେ ନାହିଁ । ଥରେ ଖରାପ ଜୀବନରେ ପଶି ଯିବା ପରେ ନାରୀର ଚରିତ୍ର ଜାନ୍ତ୍ରକାରୀ ରୂପେ ବଦଳିଯାଏ । ଷଡ଼ଯନ୍ତ୍ର ଓ ଭେଦର ବାତାବରଣ ହେବା ଯୋଗୁଁ ବହୁତ ସ୍ତ୍ରୀଙ୍କ ମଧ୍ୟରେ ସମ୍ବନ୍ଧତା ପୂର୍ଣ୍ଣ ଡିସିପ୍ଲିନ୍ ନିଜେ ନିଜେ ଫାଟିଯାଏ । ନିଜ ସଂଘରେ ଅଧିକରୁ ଅଧିକ ସ୍ତ୍ରୀ ଲୋକମାନେ ସମ୍ମିଳିତା ହୁଅନ୍ତି, ଏଥିପାଇଁ ସେମାନେ ମଧ୍ୟ ନିଜେ ନିଜେ ପ୍ରଯତ୍ନ ଶୀଳ ହୁଅନ୍ତି । ଅନେକ ଏପରି ମଧ୍ୟ ଅଛନ୍ତି ଯେଉଁମାନେ ସ୍ୱଭାବରେ ସରଳା କିନ୍ତୁ ମାନସିକ ଦୁର୍ବଳତା ପାଇଁ ଥରେ ଆକର୍ଷିତା ହୋଇ ପୁଣି ଜୀବନ ତମାମ ଏହି ନରକରୁ ଉଦ୍ଧାର ପାଇବା ପାଇଁ ରାସ୍ତା ପାଆନ୍ତି ନାହିଁ । ଦିନ ରାତି ଗୁପ୍ତ ମାନସିକ ଜ୍ୱାଳାରେ ଦଗ୍ଧ ହୁଅନ୍ତି ।

ଏହି ଚାରି ଦିନରେ ସଜ୍ଜନ ନିଜକୁ ବିଶ୍ଳେଷଣ କରିଦେଖିଛି । ସାମାଜିକ ଇଜ୍ଜତ (ସମ୍ମାନ), ସଚ୍ଚରିତ୍ର କୁଳୀନତା ଏ ସମସ୍ତ ସୁନାଭଳି ଝଟକୁଥିବା ପ୍ରତିଷ୍ଠା ପ୍ରତି ତା ମନ ଘୃଣାରେ ପୂରିଗଲା । ଏହି ପ୍ରତିଷ୍ଠାର ମୂଲ୍ୟ ମହିଳା ସେବା ମଣ୍ଡଳର ଗ୍ରୀଲ୍ ଓ ଫାଟକ ଉପରେ ଥିବା ସାଇନ୍ ବୋର୍ଡ଼ ସହିତ ସମାନ ଥିଲା । ଚମ୍ପା ରାଜ ଦାନଠାରୁ ଆରମ୍ଭ କରି ଧନବତୀ ଦେବୀ ବୈଦ୍ୟ ଶାସ୍ତ୍ରୀଣୀ ପର୍ଯ୍ୟନ୍ତ ମଣ୍ଡଳକୁ ଆସୁଥିବା ଅନେକ ପ୍ରତିଷ୍ଠିତ ଘରର ସ୍ତ୍ରୀ ମାନେ ମଧ୍ୟ ସର୍ବଦା ନାରୀମାନେ ତାକୁ ବଜାରର ବେଶ୍ୟା ପରି ମନେ ହେଲେ । ବଜାରର ସୁସଜ୍ଜିତା ବେଶ୍ୟା, ଯେଉଁମାନଙ୍କୁ ଯୁଗ ଯୁଗ ଧରି କୁରୁ ସଭାରେ ଦ୍ରୌପଦୀ କରି ରଖାଯାଇଛି । ସେ ବିଚରା ଏପରି କଣ ଅପରାଧ କଲା ଯେ ତାକୁ ଅସ୍ପୃଶ୍ୟ ବୋଲି ଧରାହେବ ? ଉପରେ ଧର୍ମ, ପବିତ୍ରତା, ସଦାଚାରର ବଡ଼ ଆଡ଼ମ୍ବର ସଜାଇ ଛପି ଛପି ବୁଲୁଥିବା ଏହି ପ୍ରତିଷ୍ଠିତା ବେଶ୍ୟାକୁ କାହିଁକି ସମାଜରେ ପତିତା କରା ନ ଯିବ ? ପ୍ରତିଷ୍ଠିତ ସମାଜ ନିଜେ ମଧ୍ୟ ନିଜର ପ୍ରତିଷ୍ଠାର ଅପହରଣ ପାଇଁ ଏଭଳିଆ ଆଡ଼ା ବନାଏ । ଏଭଳି ମିଥ୍ୟା ପ୍ରତିଷ୍ଠାର ପ୍ରକାଶନ କାହିଁକି କରା ନ ଯିବ ? ତା ମନରେ ସର୍ବଦା ଏକଥା ଘାଣ୍ଟି ଚକଟି ହେଲା । ସମାଜର ଆବର୍ଜନା ସମ୍ମୁଖକୁ ଆଣିବା କଣ ସମାଜ ପାଇଁ କଲ୍ୟାଣକାରୀ ହେବ ? ଏପରି କଲେ ଲଜ୍ୟା ହୀନତା ପ୍ରସାରିତ ହେବ କି ? ସମ୍ମାନ ଭୟରେ ଯେଉଁ ଦୁନିଆ ଆଜି ପର୍ଯ୍ୟନ୍ତ ଲୁଚି ଛପି ଏହି କାର୍ଯ୍ୟ କରୁଅଛି ସେ ଯଦି ଅଲଜ୍ଜୁକ ହୋଇ ମୁକ୍ତ ଭାବରେ ସେ କାମ କରନ୍ତା ତେବେ ଏ ପୃଥିବୀ ଏକ ନରକରେ ପରିଣତ ହୋଇ ଥାଆନ୍ତା !

କର୍ଣ୍ଣେଲ ସଜ୍ଜନଙ୍କୁ ଏଥିରେ ମୁଣ୍ଡ ନ ଖେଳେଇବାକୁ ଆଦେଶ ଦେଇଥିଲେ । କିନ୍ତୁ ଯେତେବେଳେ ସଜ୍ଜନ ମଣ୍ଡଳର ଅନୁଭବ ନେଇ ବାବାଜୀଙ୍କ ପ୍ରେରଣା ଓ ପୋଲିସର

ସହାୟତାରେ ଏହି ବ୍ୟଭିଚାର ଓ ପାଷାଣ୍ଡତାର ଆଡ଼୍‌ଡ଼ାକୁ ଦୂର କରିବାର ନିଷ୍ପତ୍ତି ନେଲା ସେତେବେଳେ ସେ ତାକୁ ସମସ୍ତ କଥା ଶୁଣେଇଲା । ପରର ଦୁଃଖ ଶୁଣି କର୍ଣ୍ଣେଲ ଅଲେକ ଦ୍ରବିଭୂତ ହୋଇଯିବା ପ୍ରାଣୀ ଶୀଘ୍ର ଦୌଡ଼ା ଦୌଡ଼ି ପାଇଁ ପ୍ରସ୍ତୁତ ହୋଇଗଲା । ସଜ୍ଜନ ଅଧିକାଂଶ ବର୍ଗଙ୍କ ମଧ୍ୟରୁ ଅନେକ ଲୋକଙ୍କୁ ଜାଣେ କିନ୍ତୁ ତା'ର ପରିଚୟ ଏ କର୍ଣ୍ଣେଲ ଭଳି ଘନିଷ୍ଠ ନୁହେଁ । କର୍ଣ୍ଣେଲ ସମସ୍ତଙ୍କୁ ସହାୟତା କରେ, ମିଳାମିଶି କରି ରହେ । ସଜ୍ଜନ କର୍ଣ୍ଣେଲଙ୍କୁ କହିଲା" ସୁପରିଣ୍ଟେଣ୍ଡେଣ୍ଟ ଅଫ ପୋଲିସ ସହିତ ଏ ସମ୍ବନ୍ଧରେ କଥାବାର୍ତ୍ତା କର । ମୁଁ ମଧ୍ୟ ତୁମ ସହିତ ଯିବି" ।

କର୍ଣ୍ଣେଲ କହିଲା" ମୁଁ ଭାବୁଛି ତତେ ଡାଇରେକ୍ଟର ମିନିଷ୍ଟରଙ୍କୁ କହିବାକୁ ହେବ । ତୁମକୁ ଜଣା ନାହିଁ, ଖୁବ୍ ଅଳ ପାହ୍ୟାରୁ ଆରମ୍ଭକରି ସୁପରିଣ୍ଟେଣ୍ଡେଣ୍ଟ ପୋଲିସ ପର୍ଯ୍ୟନ୍ତ ଏହିଭଳି କାନ୍‌ସପିରେସୀରେ ଜଡ଼ିତ "ଆଲିଗଡ଼ରେ ଏହିଭଳି ସ୍ତ୍ରୀ ମାନଙ୍କୁ ବନ୍ଦୀ କରିବାର ଗୋଟିଏ ସେଣ୍ଟର ଥିଲା । ସେହି ଆଡ଼୍‌ଡା ସହିତ ପାଞ୍ଚଜଣ ଡେ଼ପୁଟି ସୁପରିଣ୍ଟେଣ୍ଡେଣ୍ଟ ପୁଲିସ ଓ ଜଣେ ଏସ୍. ପି. ସାମିଲ ଥିଲେ । ୟୁ. ପି.ର ସି. ଆଇ ଡ଼ି. ଏହି କେଶ୍ ଧରିଥିଲା" ।

ସଜ୍ଜନ ଶୁଣି ସ୍ତମ୍ଭିତ ହୋଇଗଲା, କହିଲା" ସରକାର ତା ପରେ କଣ କଲେ ?"

ସମସ୍ତେ ମୁକଦ୍ଦମାରୁ ବରଖାସ୍ତ ହେଲେ, ଆଉ କଣ ? ଖାଲି ସୁପରିଣ୍ଟେଣ୍ଡେଣ୍ଟଙ୍କୁ ବରଖାସ୍ତ (ବାହାର) କଲେ ନାହିଁ, ତାର ଇସ୍ତଫା ନେଇନେଲେ, ଏଥିପାଇଁ କହୁଛି ଯେ ।"

ସଜ୍ଜନ କଥା ଏଡ଼ାଇ କହିଲା" ଦେଖ ବନ୍ଧୁ ମୋର ମତରେ ଯଦି ଆମେ ମିନିଷ୍ଟର ବ୍ୟତୀତ ଏ ଲୋକମାନଙ୍କ ଦ୍ୱାରା କାମ ହାସଲ କରିପାରୁ ତେବେ ବହୁତ ଭଲ ହେବ । ଏଥିରେ ସେହି ଭଳି ଯେ ସମସ୍ତେ ଜଡ଼ିତ ଥିବେ, ଏହା ମାନିବାକୁ ମୁଁ ଆଦୌ ପ୍ରସ୍ତୁତ ନୁହେଁ । ଏହା ସତ୍ୟ ଯେ ପୋଲିସର ଦାୟିତ୍ୱହୀନତା ବହୁତ ଅଛି କିନ୍ତୁ ସମସ୍ତେ ଏପରି ହୋଇ ନ ପାରନ୍ତି । ତାଙ୍କର ତ ପୁଣି ନିଜ ପ୍ରେଷ୍ଟିଜ୍ ଅଛି ।

ହଁ, ଏହା ଠିକ୍, ଭଲ ଲୋକ ମଧ୍ୟ ଅଛନ୍ତି କିନ୍ତୁ ସେମାନଙ୍କ ସଂଖ୍ୟା ବହୁତ କମ୍ । ପୋଲିସର କାର୍ଯ୍ୟାନୁଷ୍ଠାନ ଏପରି ଯାହା ମୂଳ ଉଦ୍ଦେଶ୍ୟକୁ ଠିକ୍ ବିପରୀତ ଦିଗରେ ପରିଚାଳିତ ହୋଇ ମଣିଷକୁ ବିପଦର ସମ୍ମୁଖୀନ କରାଏ ।

ତଥାପି ମୁଁ କହୁଛି, ସିଧା ଏସ୍. ପି. ପାଖକୁ ଚାଲ ।

ସବୁ କାମରେ ଉପରୁ ସାହାଯ୍ୟ ନେଇ ଚାଲିବା ନିହାତି ଭୁଲ୍.....ବିଶେଷ କରି ଏପରି କାମରେ ।। ଆମକୁ ବ୍ୟକ୍ତିର ସଦ୍‌ଭାବନାର ସାହାଯ୍ୟ ନେବାକୁ ପଡ଼ିବ ।।"

କନ୍ୟା ଏ ପ୍ରସଙ୍ଗ ସମ୍ପର୍କରେ କିଛୁ ଜାଣି ନଥିଲା । ଆଜି ଧନବତୀ ଦେବୀ ବୈଦ୍ୟା ଶାସ୍ତ୍ରୀଣୀ ପ୍ରସ୍ତରର ମହାନ କଳାକାର ପାଇଁ ଗୋଟିଏ ଏପରି...ପ୍ରେରଣା ସାମଗ୍ରୀ "ପ୍ରସ୍ତୁତ କରିବାର କଥା ଦେଇଥିଲେ ଯାହାକି ସାଧାରଣରେ ସମସ୍ତଙ୍କ ସୁଲଭ ହୁଏ ନାହିଁ । ତାଙ୍କ ସଙ୍ଗେ ଧନବତୀ କଥା ଦେଇଥିଲେ ଯେ ତାକୁ ମଣ୍ଡଳର ଅନ୍ୟ ସ୍ତ୍ରୀ ପୁରୁଷଙ୍କ ଯୋଡ଼ ମଧ୍ୟ ଦେଖାଇବ । ଧନବତୀ ଦେବୀ ବୈଦ୍ୟା ସଜ୍ଜନ ସହିତ ଅତି ଘନିଷ୍ଠ ଥିଲେ । ଏ ସଂସ୍ଥାକୁ ଅନେକ ଲୋକ ଆସନ୍ତି ଲେଖାପଢ଼ା ଜାଣିଥିବା ଓଜ୍ଜ୍ୱଳ ବିଜିନେସ ମ୍ୟାନ ମଧ୍ୟ କିନ୍ତୁ ସଜ୍ଜନ ପରି ପ୍ରସିଦ୍ଧ ସଂଭ୍ରାନ୍ତ, ଶିକ୍ଷିତ, ସୌମ୍ୟ ଶିଳ୍ପୀ ଏହି ମଣ୍ଡଳକୁ କେବେ କେହି ଆସି ନଥିଲେ । କଥାରେ ପାରଦର୍ଶୀ । ସ୍ତ୍ରୀମାନଙ୍କୁ ନିଜପାଖରୁ ଦେଢ଼ ହାତ ଦୂରରେ ରଖି ମଧ୍ୟ ସେମାନଙ୍କୁ ଆନନ୍ଦିତ ଓ ସନ୍ତୁଷ୍ଟ କରିବାର ଅଭ୍ୟାସରେ ଅଭ୍ୟସ୍ତ ସଜ୍ଜନ ଧନବତୀର ମନକୁ ପ୍ରଲୋଭିତ କରୁଥିଲା । ଧନବତୀ ଦେବୀ ବୈଦ୍ୟା ଦିନେ ସଞ୍ଚାଳକ ମହୋଦୟଙ୍କ ସହିତ ସଜ୍ଜନର ମହଲର କୋଠୀ ମଧ୍ୟ ଦେଖିବାକୁ ଯାଇଥିଲେ । ସମ୍ଭ୍ରାନ୍ତ ଢଙ୍ଗର ଜମିଦାରମାନଙ୍କର ଚାକଚକ୍ୟ ଓ ଧନବତୀ ଅନେକ ଥର ଦେଖିଥିଲେ କିନ୍ତୁ ଏଭଳି ଠାଟ୍ ସୁନ୍ଦର ମୂର୍ତ୍ତି, ମୂଲ୍ୟବାନ ଗଢ଼ କୋଠିକାର ଘର । ଜିନିଷପତ୍ର ବୈଚିତ୍ର, ଦେଶ ବିଦେଶର ପୁରୁଣା ମୂଲ୍ୟବାନ କ୍ୟୁରିଓ ଜିନିଷ ତାକୁ କୌଣସି ଅନ୍ୟ ଧନୀ ସମ୍ଭ୍ରାନ୍ତ ବ୍ୟକ୍ତି ଘରେ ଦେଖିବାକୁ ମିଳିନଥିଲା । ଧନବତୀ ଏ ସମସ୍ତରେ ପ୍ରଭାବିତ ହୋଇ ଅଜାଣତରେ ସଜ୍ଜନର ଷଡ଼ଯନ୍ତ୍ରର ସବୁଠାରୁ ବଡ଼ ସାହାଯ୍ୟକାଙ୍କ୍ଷୀ ହୋଇ ଯାଉଥିଲା ।

ସଜ୍ଜନ ପ୍ରତିଦିନ ଅପେକ୍ଷା କିଛି ସମୟ ଆଗରୁ ପହଞ୍ଚି ଯାଇଥିଲା । ଧନବତୀ ତାର ବସିବାର ବ୍ୟବସ୍ଥା ଆଜି ତାର ନିଜ କୋଠରୀରେ କରିଥିଲା । ତାକୁ ବସାଇ ସେ ଭିତରକୁ ଚାଲିଗଲେ ।

ସଜ୍ଜନ ଏକୁଟିଆ ଘରେ ବସି ଗୁଞ୍ଜିଏ ଭଲମନ୍ଦ ଚିନ୍ତାରେ ବୁଡ଼ିରହିଥିଲା । ଆଜିର ପରିସ୍ଥିତି କେତେକାଂଶରେ ଅନ୍ୟ ପ୍ରକାରର ଥିଲା । ପ୍ରତ୍ୟେକ ଇଞ୍ଚ ଇଞ୍ଚ ବ୍ୟବଧାନ ମଧ୍ୟରେ ଗୁପ୍ତ ପୋଲିସର ଜାଲ ବିଛାଯାଇଥିଲା । ନିର୍ଦ୍ଦିଷ୍ଟ ସମୟରେ ସଜ୍ଜନର ସଙ୍କେତ ପାଇ ପୋଲିସ ଆଜି ଏହି ନରକର ରହସ୍ୟ ଉଦ୍‌ଘାଟନ କରିବ । ସଞ୍ଚାଳକ ଓ ଧନବତୀ ବୈଦ୍ୟା, ଯେଉଁମାନେ ସଜ୍ଜନକୁ ନିଜର ମିତ୍ରଭାବି ତା ଆଗରେ ନିଜର ପ୍ରକୃତ ରୂପ ପ୍ରକଟ କରିପାରି ନଥିଲା ଆଜି ସେମାନେ ସଜ୍ଜନର ପ୍ରକୃତ ରୂପ ଦେଖିବେ । ସେ ସିଧା ସଳଖ ଭାବରେ ଆଜି ପର୍ଯ୍ୟନ୍ତ ଧନବତୀ ସହିତ ନିଜର ଦୃଷ୍ଟି ମଧ୍ୟ ମିଶାଇ ପାରି ନଥିଲା । ତା ଭିତରେ ଏକ ପ୍ରକାର ସଙ୍କୋଚ ଥିଲା ।

ସାମ୍ନା ଘରେ ଚାଲିଥିବା ଧର୍ମ ଶିକ୍ଷାର ପ୍ରବଚନ ସଜ୍ଜନ କାନରେ ପଡ଼ୁଥିଲା । ମନ୍ତ୍ରୀ ମହୋଦୟ ସ୍ୱୟଂ ଭାଗବତ ପଢି ଶୁଣାଇ କହୁଥିଲେ । ··· ଭାଗବତରେ ଶ୍ରୀକୃଷ୍ଣ ଭଗବାନଙ୍କ ବସ୍ତ୍ରହରଣ ଲୀଳାର ବଡ଼ ସୁନ୍ଦର ଦୃଷ୍ଟାନ୍ତ ହୋଇଛି । ଭଗବାନ ମୁରଲୀ ବଜାଇ ବଜାଇ ସବୁ ଗୋପୀଙ୍କର ଲୁଗା ଉଠାଇ କଦମ୍ବ ବୃକ୍ଷ ଉପରକୁ ଚଢ଼ିଗଲେ । ଗୋପୀମାନେ ଜଳରେ ଉଲଗ୍ନ ହୋଇ ଗାଧୋଇ ଥିଲେ ।......"

ଧନବନ୍ତୀ ବୈଦ୍ୟା ସଜ୍ଜନର ମନ ବଦଳାଇବା ପାଇଁ ୧୩ ଖଣ୍ଡ ଶ୍ରେଷ୍ଠ ଶ୍ରେଷ୍ଠ ବହି ଦେଇଗଲେ, ଏବଂ କହିଗଲେ ଯେ କିଛି ସମୟପରେ ସଜ୍ଜନକୁ "ସ୍ୱର୍ଗୀୟ ଦୃଶ୍ୟ" ଦେଖାଇବେ । ବହି ବମ୍ ଭଳି ବିସ୍ ଫୋଟକା ଥିଲା । କାମ କ୍ରୀଡ଼ାରେ ଏପରି ଖୋଲା ଦର୍ଶନ ହୋଇଥିବା ବହି ସଜ୍ଜନ ପ୍ରଥମେ ଦେଖିଥିଲା । ଆଗେ ଯେତେବେଳେ ବାହାରକୁ ଯାଉଥିଲା କେତେକ ହୋଟେଲରେ ତାକୁ ଏଭଳି ପୁସ୍ତକ ପଢ଼ିବାକୁ ମିଳିଥିଲା । କିନ୍ତୁ ସେ ଆଜି ପର୍ଯ୍ୟନ୍ତ କେବଳ ଇଂରାଜୀରେ ହିଁ ଏପରି ବହି ଦେଖିଥିଲା । ଆଜି ହିନ୍ଦିରେ ଏପରି ବହି ଦେଖି ତାକୁ ହଠାତ୍ ପ୍ରବଳ ଧକ୍କା ଭଳି ଲାଗିଲା । ହିନ୍ଦିରେ ଏଭଳି ବହି ଦେଖିବାକୁ ଆଘାତ କାହିଁକି ଲାଗିଲା, ଏକଥା ଠିକ୍ ବୁଝିପାରିଲା ନାହିଁ । ତଥାପି ତାକୁ ଟିକ୍ ଖରାପ ଲାଗିଲା । ଗୋଟିଏ ବହିର ଦୁଇପୃଷ୍ଠା ପଢ଼ିଲା ମାତ୍ରେ ତା ରକ୍ତରେ ନିଆଁ ଲାଗିଗଲା । ସେ ବହି ବନ୍ଦ କରିଦେଲା । ଧର୍ମଶିକ୍ଷା ଶ୍ରେଣୀରୁ ସଞ୍ଚାଳକ ମହୋଦୟଙ୍କ ସ୍ୱର ଶୁଣାଯାଉଥିଲା । ସେ ବଡ଼ ଭାବାବେଗ ସହିତ ଭଗବାନ ଶ୍ରୀକୃଷ୍ଣ ଚନ୍ଦ୍ରଙ୍କର 'ବସ୍ତ୍ରହରଣ' ଅଂଶକୁ ଶୁଣାଉଥିଲେ । ସଜ୍ଜନର କ୍ରୋଧ ଆହୁରି ବଢ଼ିଗଲା । ଭାଗବତରେ କଣ ବ୍ୟାସଦେବ ଏହି ବସ୍ତ୍ରହରଣ ଲୀଳା ଉଦ୍ଦେଶ୍ୟରେ ଲେଖିଥିଲେ । କୃଷ୍ଣଙ୍କୁ ଯେଭଳି ବିଳାସୀ ସଟଂଫ ଚିତ୍ରିତ କରାଯାଉଛି, ଯଦି ସେ ସେପରି ହୋଇ ଥାଆନ୍ତେ ଶହ ଶହ ବର୍ଷ ପରେ କଣ ଆଜି ତାଙ୍କୁ ପୂଜା କରାଯାଆନ୍ତା ? କୃଷ୍ଣ, ରାଧା, ଗୋପୀ ଓ ସମସ୍ତ ବ୍ରଜବାସୀଙ୍କ ପ୍ରତି ସଜ୍ଜନର ଏକ ସ୍ୱତନ୍ତ୍ର ପ୍ରେମଭକ୍ତି ରହିଛି । ଯେଉଁଦିନଠାରୁ ସେ ମଥୁରା, ବୃନ୍ଦାବନ, ଗୋବର୍ଦ୍ଧନ ଆଦି ବୁଲି ଆସିଛି ସେହିଦିନଠାରୁ ସେ ଏହି ପୌରାଣିକ ପାତ୍ରଙ୍କଠାରେ ନିଜତ୍ୱ ଥିବା ଭଳି ଅନୁଭବ କରିବାକୁ ଲାଗିଛି । କୃଷ୍ଣ ଯେ ଏସବୁର ବହୁତ ଉପରେ ଏହା ତା ଦୃଷ୍ଟିରେ ସେ ଅନୁଭବ କରିଛି । ସେ ଭାବିବାକୁ ଲାଗିଲା ଯେ ବ୍ୟାସ, ଜୟଦେବ ଓ ଅନ୍ୟାନ୍ୟ କବିମାନେ ଶେଷରେ କେଉଁ କାରଣରୁ ଆତ୍ମା ଓ ପରମାତ୍ମାର ଏହି ଭଳି ଗୋପନୀୟ କାମ ସମ୍ବନ୍ଧ ଚର୍ଚ୍ଚିତ କରିଛନ୍ତି ? ଜଗନ୍ନାଥ ପୁରୀ ଓ ଖଜୁରାହ କଣ୍ଡରିଆ ମହାଦେବଙ୍କ ମନ୍ଦିରରେ ସର୍ବଜନକ ପୂଜ୍ୟ ସ୍ଥାନମାନଙ୍କରେ କାମ ଶାସ୍ତ୍ର ଆସନରେ ଆଧାର ଉପରେ ନିର୍ମିତ ନର ନାରୀଙ୍କ ମୂର୍ତ୍ତିଗୁଡ଼ିକ ଶେଷରେ କାହିଁକି ସ୍ଥାପିତ କରାଗଲା ? ଏ ଗୋପନୀୟ ଅଶ୍ଳୀଳ ବହିଗୁଡ଼ିକୁ କାହିଁକି ନିୟମ ବିରୁଦ୍ଧ ବୋଲି ଧରାଯାଇଛି ? ସେହି କାରଣରୁ ପୁରୀ, ଖଜୁରାହୋ ଆଦିର ମୂର୍ତ୍ତି ଗୁଡ଼ିକୁ ନିୟମ ବିରୁଦ୍ଧ ମାନି କାହିଁକି ନଷ୍ଟ କରା ନ ଯାଉଛି ?

୧୦୦୦/୧୨୦୦ ବର୍ଷ ମଧ୍ୟରେ କାହାରିକୁ ମଧ୍ୟ ଏ ଦୃଶ୍ୟ ଏତେ ଖରାପ କାହିଁକି ଜଣା ନ ଗଲା, ଯେ ଏହି ମନ୍ଦିରଗୁଡ଼ିକୁ ଭାଙ୍ଗି ଦେଇଥାନ୍ତେ, ମୂର୍ତ୍ତିଗୁଡ଼ିକୁ ନଷ୍ଟ ଭ୍ରଷ୍ଟ କରି ଦିଆଯାଇ ଥାଆନ୍ତା ? ସଜ୍ଜନ ଯେତେବେଳେ ପୁରୀ ଓ ଅଥବା ଖଜୁରାହୋର ଏ ମୂର୍ତ୍ତି-ଗୁଡ଼ିକୁ ଦେଖିଥିଲା ସେତେବେଳେ ତନ୍ମଧ୍ୟରୁ ଅଙ୍କିତ ଲମ୍ପଟପ୍ରବୃତ୍ତି ଗୋଟିଏ ଝଲକ ମାତ୍ର ଅନୁଭବ କରିମଧ୍ୟ ସେଗୁଡ଼ିକର କଳା ନିପୁଣତା ଦ୍ୱାରା ଅଧିକ ପ୍ରଭାବିତ ହୋଇଥିଲା । ମୂର୍ତ୍ତିଗୁଡ଼ିକ ଏତେ ସୁନ୍ଦର ଓ ସଜୀବ ରୂପେ ତିଆରି ହୋଇଛିଯେ ସେଗୁଡ଼ିକୁ ଦେଖିଲେ କ୍ଷଣି ମନରେ ପରିବର୍ତ୍ତନ ଆସେ । ସଜ୍ଜନ ଭାବିଲା, ମୋର ତ ଇଣ୍ଟରେଷ୍ଟ ଅନ୍ୟ ପ୍ରକାର ଥିଲା କିନ୍ତୁ ନିଜସ୍ୱ ଦୃଷ୍ଟି ସଂପନ୍ନ କଳା ପ୍ରେମୀଙ୍କ ପ୍ରତି ଏ ସଜୀବତା କିପରି ପ୍ରଭାବ ପକାଉଥିଲା, ନଥିବ ? ମା, ବାପ, ଭାଇ ଭଉଣୀ, ପିଲାମାନଙ୍କ ସାମ୍ନାରେ ଏହାର ସୁନ୍ଦର ବ୍ୟାଖ୍ୟା ହୁଏ । ତେବେ ଏହାର କାରଣ କଣ ? ମହିପାଲ ତାକୁ ଏ ବିଷୟରେ କେତେ ଥର କହିଛି ଓ ସେ ମଧ୍ୟ କେଉଁଠି ପଢ଼ିଛି ଯେ ପ୍ରାଚୀନ ସଂସ୍କୃତ ସାହିତ୍ୟରେ ବାଲ୍ମୀକିଙ୍କ ରାମାୟଣ ଆଦିରେ ମଧ୍ୟ କାମ ସମ୍ବନ୍ଧୀ ବର୍ଣ୍ଣନା ଅତ୍ୟନ୍ତ ଖୋଲା ଶବ୍ଦରେ ହୋଇଛି । ଏହାର ପ୍ରକୃତ କାରଣ କଣ ? ଏକ ପାଖରେ ଆମର ନୈତିକ ବୃଦ୍ଧି କାମ ସମ୍ବନ୍ଧୀ ଚର୍ଚ୍ଚାକୁ ଦୃଢ଼ କଣ୍ଠରେ ବର୍ଜନ କରେ ଓ ଅନ୍ୟ ପାଖରେ ଏତେ ଅଧିକ ଜନତା ମଧ୍ୟ ରହିଛି । ପ୍ରକୃତ କଥା କଣ ? ସ୍ତ୍ରୀ ପୁରୁଷର ଶାରୀରିକ ସମ୍ବନ୍ଧ ସତ କିନ୍ତୁ ସମାଜର ଏହି ଅତ୍ୟନ୍ତ ଶ୍ରେଷ୍ଠ ସମ୍ବନ୍ଧକୁ ନେଇ ପ୍ରତ୍ୟେକ ବ୍ୟକ୍ତିର ବୁଦ୍ଧିରେ ଏକ ପ୍ରକାର ଜବରଦସ୍ତ ଆବରଣ କାହିଁକି ପଡ଼ିଛି ? ଗୋଟିଏ ଜୀବନରେ ଆମେ ଏହାକୁ ଭୁଲ ଓ ସଙ୍ଗେ ସଙ୍ଗେ ଖରାପ କହୁଛୁ । କେବଳ ଭାରତରେ ନୁହେଁ ସମସ୍ତ ଦୁନିଆରେ ଏହି ଦୈନନ୍ଦିନ ଭାବନା ପ୍ରତ୍ୟେକ ବ୍ୟକ୍ତିର ପରମ୍ପରା ସହିତ ଯୁଗ ଯୁଗ ଧରି ଆଜି ପର୍ଯ୍ୟନ୍ତ ଚାଲି ଆସୁଛି ... ... ତେବେ ଏହାର ଅର୍ଥ କଣ ? ଏହି ସମସ୍ୟା ଆର୍ଥିକ, ରାଜନୈତିକ ସମସ୍ୟାମାନଙ୍କ ଅପେକ୍ଷା କମ୍ ମହତ୍ତ୍ୱପୂର୍ଣ୍ଣ ? ସ୍ତ୍ରୀ ପୁରୁଷର କାମ ସମ୍ବନ୍ଧୀ ସମସ୍ୟା କଣ ଅନେକ ରାଜ-ନୈତିକ, ଆର୍ଥିକ ସମସ୍ୟାର ପୃଷ୍ଠ ଭୂମି ହୋଇ ସାମ୍ନାକୁ ଆସେ ନାହିଁ ।

ବଙ୍ଗଳାର ଦୁର୍ଭିକ୍ଷ ସମୟରେ ସଜ୍ଜନ କଲିକତା ଯାଇଥିଲା । ସେଠାରେ ନିଜର ସହିତ ପାଇଁ ଆଡ଼ା ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରୁକରୁ ତାକୁ ଏହା ମଧ୍ୟ ଜଣାପଡ଼ିଲା ଯେ ଦୁର୍ଭିକ୍ଷ କ୍ଷେତ୍ରରେ ଅନେକ ସ୍ତ୍ରୀମାନଙ୍କୁ ନିୟମିତ ବାବୁମାନଙ୍କର ମନୋରଞ୍ଜନ ପାଇଁ କଲିକତାକୁ ଅଣାଯାଉଛି । ଅନେକ ରିକ୍ସାବାଲାହେଣ୍ଡଲରେ ଲଗାଯାଇଥିବା ନିଜର ଘଣ୍ଟି ବଜାଇ ଠନଠନ ବାବୁ ଠନଠନ ବାବୁ କହି ଗୁହାରି କରୁଥିଲେ । ଜଗତ ଚକ୍ଷୁରେ ପରିଗଣିତା ବେଶ୍ୟାମାନଙ୍କୁ ଛାଡ଼ି ଏ ସମ୍ଭ୍ରାନ୍ତ ବଂଶୀୟା ବେଶ୍ୟାମାନଙ୍କର ଆଡ଼ା କଣ ଦୁନିଆଁରେ କମ୍ ଅଛି ? ଆଉ କଣ, ଏମାନଙ୍କ ପଛରେ ଆର୍ଥିକ ସମସ୍ୟା ନାହିଁ ? ଇତିହାସରେ ଗୋଟିଏ ନୁହେଁ ଅନେକ ଘଟଣା ଏପରି ଅଛି ଯେଉଁଠାରେ ସ୍ତ୍ରୀ ପୁରୁଷର କାମ ସମ୍ବନ୍ଧ ରାଷ୍ଟ୍ରୀୟ ପରିବର୍ତ୍ତନ କରିବାପାଇଁ ପ୍ରଚେଷ୍ଟା କରାଯାଇଛି ।

ଭାରତର ରାଜନୈତିକ ପ୍ରସିଦ୍ଧି ମଧ୍ୟରେ ପ୍ରବେଶ କରିବାପାଇଁ ସୁନ୍ଦରୀ ଝିଅମାନଙ୍କୁ ତାଙ୍କର ଅତ୍ୟନ୍ତ ବାଲ୍ୟାବସ୍ଥାରୁ କ୍ରମଶଃ ବିଷ ଚଟାଇ ଚଟାଇ ବିଷକନ୍ୟା କରାଯାଉଥିଲା । ଏହି ବିଷକନ୍ୟାମାନଙ୍କ ନାଚଣା ଗାଉଣା ବଳରେ ପୁରୁଷଙ୍କୁ କଳାତ୍ମକ ଭାବରେ ଆକୃଷ୍ଟ କରିବାପାଇଁ କଳାନିପୁଣ କରି ଶିକ୍ଷା ଦିଆଯାଉଥିଲା । ଏହି ବିଷକନ୍ୟାମାନଙ୍କର ମୁଖ ଚୁମ୍ବନ କରିବା ବ୍ୟକ୍ତି ସମ୍ଭୋଗ କରିବା ବ୍ୟକ୍ତିମାନେ ଏମାନଙ୍କର ଦେହର ସ୍ପର୍ଶ ପାଇବା ମାତ୍ରେ ମରି ଯାଉଥିଲେ । ଚାଣକ୍ୟ ନିଜ ଅର୍ଥ ଶାସ୍ତ୍ରରେ ବିଷକନ୍ୟାମାନଙ୍କ ପ୍ରସ୍ତୁତ କରିବା ପାଇଁ ପରାମର୍ଶ ଦେଇଛନ୍ତି । ସ୍ତ୍ରୀ ପୁରୁଷର କାମ ସମ୍ବନ୍ଧ କଣ ରାଜନୀତିରେ ଏକ୍ସପ୍ଲଏଟ୍ କରାଯାଇନାହିଁ ? ସମସ୍ତ ରାଜନୀତି ସମସ୍ତ ଅର୍ଥନୀତି କଣ କ୍ଷୁଧା ଓ କାମ ସମ୍ବନ୍ଧ ଦ୍ୱାରା ବାଧ୍ୟ ହୋଇନାହିଁ ? ତେବେ ଏହି ସମସ୍ୟା ସମ୍ବନ୍ଧରେ ବଡ଼ ଧରଣର ଆନ୍ଦୋଳନ କାହିଁକି ଉଠାନଯାଉଛି ? ଯେ ଭଳି ସନ୍ ତେୟାଳିଶରେ ଖାଦ୍ୟାଭାବ ବ୍ୟାପିବା ଯୋଗୁଁ ବଙ୍ଗାଳୀମାନେ ମୁକ୍ତ କଣ୍ଠରେ ଖୋଲା ମଇଦାନରେ ପର୍ଦ୍ଦାର ଅନ୍ତରାଳରେ ଭୋକ ଉପାସରେ ମରୁଥିବା କୋଟି କୋଟି ଲୋକଙ୍କର ପ୍ରତୀକ ରୂପେ ଜଗତରେ ଜାହିର ହୋଇ ଯାଇଥିଲେ ଭୋକରେ ଶୁଖି ଶୁଖି ଛଟପଟ ହୋଇ ପାଦରେ ଦଳି ହୋଇ ମରିବା ଲୋକ ସେହି ସହିଦମାନେ ସେହି ସମସ୍ତ ରାଜନୈତିକ ଓ ଅର୍ଥନୀତିରେ ଗୁପ୍ତ ରହସ୍ୟ ଉଦ୍‌ଘାଟନ କରୁଥିଲେ ଓ ଯେଉଁମାନେ ଉଚ୍ଚ ଉଚ୍ଚ ଆଦର୍ଶର ଡିଣ୍ଡିମ ବଜାଇ ପାଶ୍ଚାତ୍ୟ ଭୂମିରେ ବମ୍ ଓ ଟ୍ୟାଙ୍କଦ୍ୱାରା ମାନବ ସମାଜକୁ ଧ୍ୱଂସ କରୁଥିଲେ ।

ସେହିଭଳି କଣ ବିଶ୍ୱର ଆଧୁନିକା ଅର୍ଥନୀତି ସ୍ତ୍ରୀମାନଙ୍କୁ ନଗ୍ନରୂପରେ ଠିଆକରି ଖୋଲା ତାମାସା ଦେଖାଇବା ପାଇଁ ସଭ୍ୟତା ଓ ସଂସ୍କୃତିର ପ୍ରଳୟଙ୍କାରୀ ଦୁର୍ଭିକ୍ଷ ପ୍ରସ୍ତୁତ କରିବ ? ଦୁନିଆଁରେ ଯେଉଁଦିନ ଏଭଳି ଦୃଶ୍ୟ ପୁଣି ପ୍ରସ୍ତୁତ କରାହେବ ତେବେ ସେହିଦିନ ସମଗ୍ର ଦୁନିଆ ସମୂଳେ ଧ୍ୱଂସ ପାଇଯିବ ।

ଚିନ୍ତାଶୀଳ କେନ୍ଦ୍ରୀଭୂତ ସଜ୍ଜନର ମନ ପରିତେ କ୍ଷତ ଭଳି ଦାରୁଣ ପୀଡ଼ାରେ ପୀଡ଼ିତ ହେଉଥିଲା । ଧନବତୀ ବୈଦ୍ୟାର ହସରେ ସେ ସଜାଗ ହେଲା । ନିଜର ଓଷ୍ଠ ଓଷ୍ଠ ପଦ୍ମ ନୟନରେ ଗଭୀର କାମୁକତା ଭରି କହିଲା—"ତାହାଧନରେ ନିମଜ୍ଜିତ ଥିଲେ ବିଶ୍ୱାମିତ୍ର ମହାଶୟ ? ଆପଣଙ୍କର ମେନକା ଆସିଗଲା ।"

ସଜ୍ଜନ ଉଦ୍ଭ୍ରାନ୍ତ ପ୍ରେମିକର ଅଭିନୟ କଲା, କିନ୍ତୁ ଏତେ ଶୀଘ୍ର ନିଜର ଭିତର ଗମ୍ଭୀରତାର ସ୍ୱଭାବରୁ ମୁକ୍ତ ହୋଇ ପାରିଲା ନାହିଁ ।

ସମ୍ମୁଖରେ ସଞ୍ଚାଳକ ମହୋଦୟଙ୍କର ଗୋପୀ କୃଷ୍ଣ ସମ୍ବନ୍ଧୀ ପ୍ରବଚନ ଚାଲୁଥିଲା । ଧନବତୀ କୋଠରୀର ବାହାରପାଖ ଦରଜା ବନ୍ଦ କଲା ଓ ଆଗରୁ ଗୋଟିଏ ଦରଜା ପାଖରେ ଧୀରେ ଧୀରେ ଶବ୍ଦ କଲା । ସଜ୍ଜନକୁ ହଠାତ୍ ଚନ୍ଦ୍ରକାନ୍ତ ପଣ୍ଡିତଙ୍କର କଥା ମନେ ପଡ଼ିଲା । ତାକୁ ଲାଗିଲା କିନ୍ତୁ ସଙ୍ଗେ ସଙ୍ଗେ ଭବନକୁ ଦେଖି ଛିଡ଼ା ହୋଇ ଥିବା

ପୋଲଣର କଥା ମଧ୍ୟ ତାର ମନକୁ ଆସିଲା । ଧନବନ୍ତୀର ଉପସ୍ଥିତରେ ଓ ପୋଲଣର ଉପସ୍ଥିତି ତା ମନକୁ ସଙ୍କୋଚରେ ଭରିଦେଲା । ସେ ନିଜକୁ ଅପରାଧୀ ବୋଲି ଅନୁଭବ କରିବାକୁ ଲାଗିଲା ।

କବାଟ ଭିତରୁ ଖୋଲି ଯାଇଥିଲା । ଧନବନ୍ତୀ ପୁଣି ତାକୁ ସେହିଭଳି ଗଭୀର କାମୁକ ଦୃଷ୍ଟି ଓ ସ୍ମିତହାସ୍ୟ ସହିତ ଆମନ୍ତ୍ରଣ କଲା । ସଜ୍ଜନ ନିଜ ଉଦ୍ଦେଶ୍ୟର ଋଣିକତାକୁ ନିଜ ମଧ୍ୟରେ ଅନୁଭବ କରି ଓ ଅପରାଧୀ ଭାବନାରେ ସଙ୍କୁଚିତ ହୋଇ ଯିବାପାଇଁ କୁଣ୍ଠିତ ହେଉଥିଲା । ଏହି ମନୋଭାବକୁ ସେ ଯୋରକରି ଚାପି ରଖିଥିଲା । ଧନବନ୍ତୀର କାମପୂର୍ଣ୍ଣ ଦୃଷ୍ଟି ଓ ହସ ସହିତ ପରଦେଶୀ ମଦର ଗନ୍ଧ ଆସୁଥିଲା ।

ଭିତରର ସଙ୍କୀର୍ଣ୍ଣ କୋଠରୀ ଅନ୍ଧାର ଥିଲା । ଯେଉଁ କବାଟ ବାଟେ ସଜ୍ଜନ ଭିତରକୁ ପ୍ରବେଶ କରିଥିଲା ତାର ଠିକ୍ ଆଗକୁ ଅନ୍ୟ ଏକ କବାଟ ବନ୍ଦ ଥିଲା । ସତକ କଡ କାନ୍ଥ ଉପରେ ଢଆର ହୋଇଥିବା ଆଲୋକ ପଥ ଦ୍ୱାରା କୋଠରୀଟି ସାମାନ୍ୟ ଆଲୋକିତ ହେଉଥିଲା । ବାକ୍ସ, ଟିଣ ଓ ମାଟି ଘର ଆଦିରେ ଲଦା ଯାଇଥିବା ପଛର ପୃଷ୍ଠ ଭୂମି ଉପରେ ଗୋଟିଏ ସଲେଜ୍ ବିଛଣାରେ ସଜା ଯାଇଥିବା ଖଟ ପଡ଼ିଥିଲା ଓ ଖଟ ପାଖରେ ଜଣେ ପାନପତ୍ର ମୁହଁ ସୁନ୍ଦରୀ ଛିଡ଼ା ହୋଇଥିଲା । ସଜ୍ଜନର ସଙ୍କୁଚିତ ଓ ଉନ୍ମାଦ ଦୃଷ୍ଟି ଏକ ସେକେଣ୍ଡ ପରେ ତା ଉପରେ ପଡ଼ିଲା ।

ଧନବନ୍ତୀ ଇଲେକ୍ଟ୍ରିକର ସ୍ୱିଚ ଟିପିଲା । ସଜ୍ଜନର ବ୍ୟତିବ୍ୟସ୍ତ ମନରେ କାମ ସୌନ୍ଦର୍ଯ୍ୟର ଉଜ୍ଜ୍ୱଳତା ଖେଳିଗଲା । ଦୁଇଜଣ ଅପରିଚିତା ମଧ୍ୟ ପରିବେଷ୍ଟନକାରିଣୀ କୃଷାଙ୍ଗିନୀ, ଲଜ୍ଜିତ ଚକ୍ଷୁରେ ଅଧା ପଲକ ଉଠାଇ ତାକୁ ଅପେକ୍ଷା କରିଥିଲେ । ସିଲ୍କ ଶାଢ଼ି ଓ ବ୍ଲାଉଜ ପିନ୍ଧି ସରୁ ସୁଗଠିତ ମୁଖ, ଲମ୍ବା ପତଳା ନାକ, ଖଇର ରଞ୍ଜିତ ପତଳା ଅଧର, ସରୁ ଗୋଲିଆ ଚିବୁକ, ମଧ୍ୟମ ଉଚ୍ଚତା ବିଶିଷ୍ଟ ଗୋରାବର୍ଣ୍ଣ ବୟସ ପ୍ରାୟ ୩୦/୩୨ ହେବ । ତାର ନାକରେ, ବାମ ପାଖ ପଣତ ଅନ୍ତରାଳରୁ ଦେଖାଯାଉଥିବା କାନରେ ଫୁଲ ଓ ଅଳ୍ପ ଖୋଲା ବେକରେ ମୋତି ଝୁଲୁଥିଲା । ଦୁଇ ହାତ ପଣତ ମଧ୍ୟରେ ରଖି ନିଜେ ନିଜକୁ କୌଣସି ପ୍ରକାରେ ସଜ୍ଜିତ କରି ବାମପାଦର ବୁଢ଼ା ଅଙ୍ଗୁଳି ଦବାଇ ସେ ଏପରି ଢଙ୍ଗରେ ଛିଡ଼ା ହୋଇଥିଲା ଯେ ସଜ୍ଜନର କଳାକାର ମନ ମୁଗ୍ଧ ହୋଇଗଲା । 'କ କମନୀୟତା' କ ସୁକୁମାରି । ଯୁବତୀ ପ୍ରକୃତରେ ସୁନ୍ଦରୀ ଥିଲା । ତାର ଅପଲକ ଦୃଷ୍ଟିରେ ମଧ୍ୟ ଏପରି ସ୍ପଷ୍ଟତ ଝଲସି ଉଠୁଥିଲା ଯେପରି ସେ କୌଣସି ଉଚ୍ଚ ପରିବାର ଥିଲା ଓ ତାର ପାଳନ ପୋଷଣ ଅଧିକାଂଶ ସମ୍ଭ୍ରାନ୍ତ ପର୍ଦ୍ଦା ମଧ୍ୟରେ ହୋଇଥିଲା । ତାର ଚେହେରା ପର ଫଟୋଜେନିକ୍ ଢଙ୍ଗର ଥିଲା । ସେ ମହିଳା ରୂପରେ ପରିଗଣିତା ଥିଲା । ଯୁବତୀର ଚେହେରା ଉପରେ ଦୃଷ୍ଟି ନିକ୍ଷେପ କରନ୍ତେ ସଜ୍ଜନର ଦୁଇହାତ ଆପେ ଆପେ ନମସ୍କାର ପାଇଁ ଯୋଡ଼ି ହୋଇଗଲା । ସେ ତଳକୁ ମଧ୍ୟ ସୁନ୍ଦର, ପତଳା, ଲମ୍ବା, ଲାଲ ନଖ

ବିଶିଷ୍ଟ ଅଙ୍ଗୁଳି ପଣତର ବାହାରକୁ ବାହାରି ଆସି ଯୋଡ଼ି ହୋଇଗଲା ଏବଂ ଅଧରରେ ସ୍ମିତ ହାସ୍ୟର ରେଖା ଟାଣି ହୋଇଗଲା, ଏହି ସ୍ମିତ ହାସ୍ୟ ବଡ଼ ଆକର୍ଷଣୀୟ ଓ ସଜୀବ ଥିଲା ।

ଧନବନ୍ତୀ (ସଜ୍ଜନଙ୍କ ମୁହଁରୁ ଡାକ୍ତର ଗନ୍ଧ ପାଉଥାଏ) ଉଭୟଙ୍କ ଉପରେ ମାତାଲ ଦୃଷ୍ଟି ନିକ୍ଷେପକରି ସ୍ମିତ ହାସ୍ୟର ସହିତ 'ଶର'ର ଗୋଟିଏ ଚରଣ କହିଲା — "ଭଲ୍ ବୃନ୍ତ୍ ଜା ଜଦ୍ ହେ କି ଦୋ ନୈନୋ ହେଁ। ବେକରାର ।" (ପ୍ରେମରସର ଆସ୍ୱାଦନ ସମୟରେ ପ୍ରେମିକ ଓ ପ୍ରେମିକା ଅଧୀର ହୋଇ ପଡ଼ିଛନ୍ତି) ହିଃ ହିଃ, "ଆସନ୍ତୁ, ଆସନ୍ତୁ କଳାକାର ମହାଶୟ, ଟିକିଏ ହାଙ୍କର କଳା ପରିପାଟି ଦେଖିନିଅନ୍ତୁ ।

ଧନବନ୍ତୀ ସଜ୍ଜନର ହାତଧରି ତାକୁ ଖଟ ପାଖକୁ ଆଗେଇନେଲା । ମଦର ଗନ୍ଧ ସହିତ ଆବେଗପୂର୍ଣ୍ଣ ଉଷ୍ମ ସ୍ପର୍ଶ ଏବଂ ସଜ୍ଜନକୁ ଭୀଷଣ ଲାଗୁଥିଲା । ସେ ସଜାଗ ହୋଇଗଲା । ବାହାରେ ପୋଲିସ ଦଳ ତାର ଇସାରକୁ ଅପେକ୍ଷାକରି ଛିଡ଼ା ହୋଇଥିଲେ ।

ସମସ୍ତର ଗତି ସେହି ସମୟରେ ସଜ୍ଜନକୁ ଉତ୍ତେଜିତ କରୁଥିଲା ଗୋଟିଏ ଘୃଣିତ ଷଡ଼ଯନ୍ତ୍ରକୁ ରହସ୍ୟ ପ୍ରକଟିତ କରିବା ପାଇଁ ସ୍ୱୟଂ ଷଡ଼ଯନ୍ତ୍ରକାରୀ ରୂପେ ନିଜକୁ ପ୍ରେମିକ ଆସନରେ ରଖି, ଜଣେ କୁଳନାସ୍ତ୍ର ବ୍ୟଭିଚାରିଣୀ ସହିତ ଧନବନ୍ତୀ ଯିବାପରେ ଏକାନ୍ତରେ ବସିଥିବା ସଜ୍ଜନ ନିଜର ଅନ୍ତର୍ଦ୍ୱନ୍ଦ୍ୱ ଦ୍ୱାରା ଅତ୍ୟଧିକ ପୀଡ଼ିତ ହେଉଥିଲା । ଓଃ ମୁଁ କି ଧରଣର ପାପକୁ ଗ୍ରହଣ କଲି ? ନିମିଷକ ମଧ୍ୟରେ କେତେ ଭଦ୍ରମହିଳାମାନଙ୍କର ମାନ ମର୍ଯ୍ୟାଦା ଧୂଳିରେ ଲୋଟିଯିବ । ନିଜର ସ୍ୱାମୀଙ୍କ ସାମ୍ନାରେ ଏ ମହିଳାମାନଙ୍କର କି ଦଶାହେବ ? ଏମାନଙ୍କର ସାରା ଜୀବନ ନଷ୍ଟ ହୋଇଯିବ । ମୁଁ ଏ କଣ କଲି ? ଭାରି ଖରାପ କଥା ହେଲା । ନିଜକୁ ବାରମ୍ବାର ଧିକ୍‌କାରୁକରି ଗଭୀର ମାନସିକ ଯନ୍ତ୍ରଣା ମଧ୍ୟରେ ସେ ନିଜର ପୂର୍ବ ଚେତନା ଦ୍ୱାରା ମଧ୍ୟ ପରିଚାଳିତ ହେଉଥିଲା । ସେ ଗୋଟିଏ ସାମାଜିକ ଅନାଚାରର ଉଦ୍‌ଘାଟନ କରୁଅଛି । ଏହା କିଛି ଖରାପ କାମ ନୁହେଁ । ଯଦି ଏପରି ନ ହେବ ତ ସମାଜ ଚାଲିବ କିପରି ? ସିଦ୍ଧାନ୍ତ ପାଇ ନିର୍ଦ୍ଦୟ ମଧ୍ୟ ହେବାକୁ ପଡ଼େ ।

ସମ୍ମୁଖରେ ବସିଥିବା ଯୁବତୀ ନିଜ କଥାଦ୍ୱାରା ତାକୁ ଅନ୍ୟ ଦିଗକୁ ଟାଣିନେଇ ଯାଇଥିଲା । ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ ମଧ୍ୟ ତା ସହିତ ପ୍ରଣୟୀର କଥା କହିବାକୁ ମଧ୍ୟ ବାଧ୍ୟ ହେଉଥିଲା । ଯେଉଁଥି ପାଇଁ ସେ ମଝିରେ ମଝିରେ ବିଚଳିତ ମଧ୍ୟ ହୋଇଯାଉଥିଲା । ମଝିରେ ଥରେ ଧନବନ୍ତୀ ମିଠାଇ ଓ ଚା ରଖିବାକୁ ଆସିଥିଲେ । ସେ ମହିଳାଟି ଜଣେ ବଡ଼ କଣ୍ଟ୍ରାକ୍ଟର ଓ ଲୁହା ଫାର୍ମ ମାଲିକର ପତ୍ନୀ ଥିଲା । ସେ ନିଜ ସ୍ୱାମୀର ନାମ, ନିଜ ଘର ଠିକଣା ଆଦି କିଛି କହିଲା ନାହିଁ । ସଜ୍ଜନ ପଚାରିବାରୁ ସେ ଅତ୍ୟନ୍ତ ଚତୁରତାର ସହିତ ଏ ପ୍ରଶ୍ନକୁ ଏଡ଼ାଇଦେଲା । ହସି ହସି କହିଲା···" ତୋତା ମୈନାଙ୍କର ମିଳନ କଥା ଆପଣ

ଶୁଣିଛନ୍ତି ତ ? ଗୋଟିଏ କେଉଁଠି, ଅନ୍ୟଟି ଆଉ କେଉଁଠି, ଦୁହେଁ ଗୋଟିଏ କାଳରେ ବସିଥିଲେ ଓ ଦୁହିଁଙ୍କ ମଧ୍ୟରେ ବନ୍ଧୁତା ହୋଇଗଲା । ଏତିକି ହିଁ ଯଥେଷ୍ଟ ।"

କଥା ପ୍ରସଙ୍ଗରେ ପଚରା ଯିବା ପରେ ସେହି ମହିଳା କହିଲା ଯେ ଗୋଟିଏ ସ୍ଥାନରେ ତାର ଓ ତା ସ୍ୱାମୀର ମନ ମିଶେନାହିଁ । ପତ୍ନୀ ଟିକେ ଶୃଙ୍ଗାର ପ୍ରିୟ, ମୋରନ୍‌ଟିକ୍ ଓ କବିତା ସହିଁ ଶାସ୍ତ୍ରୀୟ ଆଦରେ ଶ୍ରଦ୍ଧା ରଖିଥାଏ । ଯଦ୍ୟପି ଉଚ୍ଚ କୋଟିର ସାହିତ୍ୟଠାରେ ତାର ବିଶେଷ ତଲ୍ଲୀନତା ନାହିଁ ତଥାପି ସେ ରସିକା ଓ ତାର ସ୍ୱାମୀ ପୁରା ବ୍ୟବସାୟୀ, ଯେଉଁଥିପାଇଁ ସ୍ତ୍ରୀ-ପୁରୁଷର ସମ୍ପର୍କ କେବଳ ଦୈହିକ କାମନାରେ ସୀମାବଦ୍ଧ ସେ ଯୁବତୀ କାମ ପୀଡ଼ାରେ ଅଧିର ନଥିଲା । ସେ ଜଣେ ସୁ-ପୁରୁଷ, ସୁ-ରସିକ ଏବଂ ବାକ୍‌ପ୍ରେମୀର ସାନ୍ନିଧ୍ୟ ଲୋଡୁଥିଲା ।

ସଜ୍ଜନ ତା କଥାରୁ ଏହା ଅନୁମାନ କଲା ଯେ ନିଜ ସ୍ୱାମୀ ପ୍ରତି ତାର ତୀବ୍ର ଘୃଣା ଜାତ ହେବା ଯୋଗୁଁ ସେ ଅନ୍ୟ ପୁରୁଷଙ୍କୁ ନିଜର ଦେହ ସମର୍ପଣ କରି, ସତେ ଯେପରି ସ୍ୱାମୀଙ୍କଉପରେ ପ୍ରତିଶୋଧ ନେଉଛି । ସଜ୍ଜନ ହଠାତ୍ ଗୋଟିଏ ବଡ ଅପ୍ରାସଙ୍ଗିକ ପ୍ରଶ୍ନ ତାକୁ ପଚାରିଲା, ସେ କଣ ବିବାହ ପୂର୍ବରୁ ଏହିପରି କୌଣସି ଅନ୍ୟ ପୁରୁଷ ଆଗରେ ହୃଦୟ ସମର୍ପଣ କରିଛି ? ଉତ୍ତର ସମ୍ମତି ସୂଚକ ଥିଲା ଧନବତୀଙ୍କୁ ଥରେ ତାର ଚକିତ୍ସାପାଇଁ ଡକାଯାଇଥିଲା । ସେହି ଦିନଠାରୁ ଉଭୟଙ୍କର ପରିଚୟ ହୋଇଛି । ଧନବତୀ କିଛିଦିନ ମଧ୍ୟରେ ତାର ପରମାବାନ୍ଧବୀ ହୋଇଗଲା । ତାର ଏକାକୀପଣ ଅଧିକାଂଶ ଦୂର ହୋଇଗଲା । ସଜ୍ଜନ ତାକୁ ପଚାରିବା ପରେ ଏହା ମଧ୍ୟ କହିଲା ଯେ ଅନ୍ୟ ପୁରୁଷଙ୍କ ସହିତ ଏଭଳି ମିଶିପାରେ ତାକୁ କୌଣସି ସଂକୋଚ ଲାଗେ ନାହିଁ । ଯଦି ପୁରୁଷ ଏପରି ମିଶିପାରୁଛନ୍ତି ତେବେ ସ୍ତ୍ରୀ ମାନେ ଅବା ନ ମିଶିବେ କାହିଁକି ? ନିଜର ଏହି ଅବୈଧ ସମ୍ବନ୍ଧକୁ ସମାଜରେ ସ୍ତ୍ରୀ ମାନଙ୍କର ସ୍ଥାନ ଅରକ୍ଷିତ ହୋଇଥିବା ଯୋଗୁଁ ହିଁ ସେ ଗୁପ୍ତ ସଂପର୍କ ରଖିବାକୁ ଚାହୁଁଛି । ବାସ୍ ଆଉ କିଛି କଥା ନାହିଁ ।

ସ୍ତ୍ରୀ ଆକର୍ଷଣୀୟ ହୋଇଥିଲେ ମଧ୍ୟ ଦୁଷ୍ଚରିତ୍ରଣୀ ନିଜ ବାକ୍ୟ ପଟୁତାରେ ମନ ଭୁଲାଇଲେ ମଧ୍ୟ ସେ କୁଟିଳ କିନ୍ତୁ ବେଳେବେଳେ ତାର ସରଳତା ମଧ୍ୟ ପରିସ୍ଫୁଟିତ । ତାପରେ ସଜ୍ଜନ ଉଦ୍ଦେଶ୍ୟ ଯୁବତୀ ନିକଟରେ ପ୍ରକାଶ କରିଦେଲା । ଯୁବତୀଟି କେଜାଣି ଆତଙ୍କରେ ଚମକି ଉଠିଲା କିନ୍ତୁ ସଜ୍ଜନ ତାକୁ ଆଶ୍ୱାସନା ଦେଲା ଯେ ସେ କୌଣସି ପ୍ରକାରରେ ତାର ଅପକାର କରିବନାହିଁ, ଯଦି ସେ ତାର ପରାମର୍ଶ ଅନୁସାରେ କାମ କରିବ । ସଜ୍ଜନ ଯୁବତୀକୁ ଅସ୍ପଷ୍ଟ ରୂପେ ତାଗିଦ କରିଦେଲା ଯେ ସେ ଧନବତୀକୁ ଏ ରହସ୍ୟ ନ ବତାଇ ଚୁପ୍‌ଚାପ୍ ଚାଲିଯାଉ ।

ଯୁବତୀ ଯିବାର ୧୫ ମିନିଟ୍ ପରେ ଆଖପାଖ ବଜାର ଘର ଓ ରାସ୍ତାଘାଟରେ ଚାଲିଥିବା ଲୋକମାନଙ୍କ ପାଇଁ ଗୋଟିଏ କୋଳାହଳ ପୂର୍ଣ୍ଣ ବାତାବରଣ ସୃଷ୍ଟି ହେଲା ।

୨ୟ ଦିନ ଖବର କାଗଜମାନଙ୍କରେ ମହିଳା ସେବା ମଣ୍ଡଳର ଗୁପ୍ତ ରହସ୍ୟ ଉଦ୍‌ଘାଟନ" ପ୍ରଥମ ପୃଷ୍ଠା ଖବର ହୋଇ ସହରର ପ୍ରତ୍ୟେକ ଲୋକଙ୍କ ମୁହଁରେ ଏକ ଚର୍ଚ୍ଚାର ବିଷୟ ହୋଇଗଲା । ସଜ୍ଜନ ବର୍ମାର ନାମ କଳା କ୍ଷେତ୍ରରେ ଏତେ ଚମତ୍କାରିତା ରୂପେ କେବେହେଲେ ପ୍ରସିଦ୍ଧ ହୋଇ ନ ଥିଲା । ତାହା ଏହି ଦିନ ଏହି ଘଟଣାଟି ଯୋଗୁଁ ସହରରେ ପ୍ରସିଦ୍ଧି ଲାଭ କଲା ।

ସଜ୍ଜନର ଉଦାହରଣ ନେଇ କିଛିଦିନ ପର୍ଯ୍ୟନ୍ତ ସହରଟିର ନାନା ପ୍ରକାର ସାମାଜିକ ରହସ୍ୟ ଉଦ୍‌ଘାଟନ ଧାରା ପ୍ରବାହିତ ହେଲା । ଅନେକ ଯୁବକ ଏହି ସୂତ୍ରେ ହୋଇ ଯଶ ଅର୍ଜନ ପାଇଁ କାମ କରିବାକୁ ଲାଗି ପଡ଼ିଲେ । କେତେ ପ୍ରକାରରେ ସମାଜକୁ ଠକୁଥିବା ସଂସ୍ଥାଗୁଡ଼ିକ ପ୍ରତି ଲୋକମାନଙ୍କର ଧ୍ୟାନ ନୂଆ ନୂଆ ରୂପନେଇ ଜାଗି ଉଠିଲା । ଗୋରୁଙ୍କ ନାମରେ ଗ୍ରାମଲୀଳା, କ୍ଲବ ମଣ୍ଡଳ ନାମରେ ଅନେକ ସାମାଜିକ ଟ୍ରଷ୍ଟ ଗଢ଼ି ଲୋକମାନେ କି ପ୍ରକାରର ଧନ୍ଦା କରୁଛନ୍ତି । ସମାଜରେ ପ୍ରାୟ ସମସ୍ତଙ୍କ ଦ୍ୱାରା ଜଣାଶୁଣା ଏହି କଥା ସାମୂହିକ ରୂପେ ଗୋଟିଏ ନୂଆ ଚିନ୍ତାର ପ୍ରଶ୍ନ ହୋଇ ଚିନ୍ତାଶୀଳ ଲୋକଙ୍କ ସାମ୍ନାକୁ ଆସିଲା । ମସ୍‌ଜିଦ୍, ଶିବାଳୟ, ଗୀର୍ଜା, କ୍ଲବ୍‌ନ, ସତ୍ୟନାରାୟଣ କଥା, କବାଲି ଭଜନ ଆଦିରେ ମୁଖରିତ. ହେଉଥିବା ସଭ୍ୟ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ପ୍ରତିଷ୍ଠିତ । ଭିତର ପ୍ରକୃତରେ କେତେ କଦର୍ଯ୍ୟ ଓ କୁତ୍ସିତ ଦୋଷଯୁକ୍ତ । ଏହି ଭାବନା କେତେକଙ୍କ ମନରେ ଏକ ବିଚିତ୍ର ପ୍ରକାରର ଅନାସ୍ଥା ଓ ହତାଶା ଉତ୍ପନ୍ନ କରିବାକୁ ଲାଗିଲା । ଯେଉଁ ଆସ୍ଥାକୁ ନେଇ ଆମେ ବଞ୍ଚିବା ମରିବାର ପ୍ରହସନ କରୁଁ ସେ ସଂସ୍ଥା ଗୁଡ଼ିକ କେତେ କୁତ୍ସିତ, ଏହି କଥା ଅନେକ ବିଚାରଶୀଳ ବ୍ୟକ୍ତିଙ୍କ ମନରେ ଆଘାତ ଦେଇଥିଲା ।

## ପଇଁ ଗ୍ଲାଣି

ହନୁମାନଜୀଙ୍କର ମନ୍ଦିରରୁ ଅଲଗା ହୋଇ ଲାଲାମୁକୁନ୍ଦ ମଲ୍ଲ ମଣ୍ଡପ ଉପରେ ବସି ହୁକ୍କା ଗୁଡ଼ୁଗୁଡ଼୍ କରୁ କରୁ ପଣବାବାଲା ସହିତ ଝଗଡ଼ା କରୁଥିଲେ । ମନ୍ଦିର ପଛରେ ବଡ଼ ବଡ଼ ଜଣ ରଖିଥିବା ହୃଷ୍ଟପୁଷ୍ଟ ଶରୀରଧାରୀ ଜଣେ ବ୍ରାହ୍ମଣ ଚକାପକାଇ ରାମଚରିତମାନସ ପାଠ କରୁଥିଲେ ।

ନାସ୍ତି ଚରନ ସିରୁ କହ୍ନ କୋସ୍ରୀ ।
ନାଥ ମୋହି କରୁ ନାହିଁ ନ ଖୋରୀ ।
ଅତି ସୟ ପ୍ରବଲ ଦେବ ବଡ଼ ମାୟା ।
ଛୁଟଇ ରାମ କରହୁ ଜୋ ଦାୟା ।

ଆବେ ଏ ମନ୍ଦିରରେ ପଶିବା ତୋର ବନ୍ଦ କରିଦେବି । ଶଳା, ମୋ ସହିତ ଝିକ୍ ଝିକ୍ କରୁଛୁ । ଲାଲା ମୁକୁନ୍ଦୀ ମଲ ପଣବା ବାଲା ଉପରେ ଜୋରରେ ରାଗି ଉଠିଲେ ।

"ମୋର କଣା ମୂଲ୍ୟ ଉଠିବନି ବାବୁ, ମୁଁ କେମିତି ଏତେ କମ୍ ଦାମ୍‌ରେ ଦେବି ? ଆପଣ ଏତେବଡ଼ ବୁଦ୍ଧିଲୋକ ହୋଇ ମଧ୍ୟ ଟିକିଏ ଟିକିଏ କଥାରେ ରାଗି ଯାଉଛନ୍ତି ।"

ଦେଖ ଶଳା ଆମ ସହିତ ଯୁକ୍ତି କରୁଛୁ । ଶଳା ଛୋଟଲୋକ । ମୁକୁରୁ, ଆରେ ହରିଆ । ଉଠାଅ ଏହାର ବୋଝ । ନଲାରେ ଫୋପାଡ଼ ।

ବିଷୟ ବସ୍ୟ ସୁନ ନ ଭୁନନ ସ୍ୱାମୀ ।
ମେ ପାମର ପସୁ କପି ଅତି କାମ ।
ନାରି-ନୟନ-ପର ଜାହି ନ ଲଗା ।
ଘୋର- କ୍ରୋଧ-ତମ ନିସି ଯୋ ଯାଗା ।
ଲୋଭ ପାପ କେହି ଗରନ ବନ୍ଧାୟା ।
ସୋ ନର ତୁମ ସମାନ ରଘୁରାୟା ।

ରାମାୟଣ ପାରାୟଣ କରୁଥିବା ପଣ୍ଡିତ, ଲାଲା ମୁକୁନ୍ଦମଲ ଓ ପଣବା ବାଲା ମଧ୍ୟରେ ହୋଇଥିବା ଲଙ୍କା କାଣ୍ଡରେ ଛଳେମାନ ପ୍ରଭାବିତ ନ ହୋଇ ତନ୍ମୟ ସ୍ୱରରେ

ବୁଲି ବୁଲି ରାମାୟଣ ପାଠ କରୁଥିଲେ । ଦୁଇଜଣ ସ୍ତ୍ରୀ ଲୋକ ଆସିଲେ, ହନୁମାନଙ୍କ ଉପରେ ଫୁଲ ଓ ଶିବଙ୍କ ଉପରେ ପାଣି ଓ ଫୁଲ ଚଢାଇ ସ୍ତୁତି ଓ ଶ୍ଳୋକ ସ୍ଥାନରେ ପରସ୍ପର କାହାର ମା ଓ ପୁଅ ଉପରେ କାହାଦ୍ୱାରା ହୋଇଥିବା ଅତ୍ୟାଚାରର ଚର୍ଚ୍ଚା କରି ଚାଲିଗଲେ । ବାବୁ ରାଧାଶ୍ୟାମ ଡ୍ରଥସ୍ତ ଅଙ୍ଗୁଳିରେ ସିଗାରେଟ ଧରି ଚୂଟକସାର କାନ୍ଧ ସଜାଡ଼ି ଖବର କାଗଜ ସହିତ ପହଞ୍ଚି ଗଲେ । ଲାଲା ଜାନକୀ ଶରଣର ନାଏବ କୁଞ୍ଜୀଲାଲ କାଖରେ ଖାତା ଜାକି କେଉଁଆଡ଼କୁ ଯାଉଥିଲେ, ଯେ ଲାଲା ମୁକୁନ୍ଦୀ ମଲଙ୍କ ଚଲମି ଉଠାଇ ଦୁଇଫୁଙ୍କ ମାରିବା ଲୋଭରେ ଛିଡ଼ା ହୋଇଗଲା । ଜୋରଜୋରରେ ଦୁକା ମାରି ଲାଲାଙ୍କର କାଶ ଉଠିଲା । ସେ କାଶି କାଶି କୁଞ୍ଜୀଲାଲ ପାଖରେ ଅଭିଯୋଗ କରୁଥିଲେ ..." ସେ ଟଙ୍କାଏ କହି ବଜାରରେ ବେକାର ବୁଲୁଥିବ ଆମେ ଅଣାଏ କହିଲୁ କଣ ଖରାପ ହେଲା ? ମହଲାରେ ବର୍ତ୍ତମାନ ଏକା ନାହିଁ, କୁଞ୍ଜୀ ଲାଲା, ନଚେତ୍ ଶଳାକୁ କେବେହେଲେ ଏଠେଇ ପୂରେଇ ଦାଅନ୍ତ ନାହିଁ ।

ସଜ୍ଜନ ଗଳିରେ ପ୍ରବେଶ କଲା । ବାବୁ ରାଧେଶ୍ୟାମ ତାଙ୍କୁ ଦେଖିବାକ୍ଷଣି ଉତ୍ସାହ ପୂର୍ଣ୍ଣ ସ୍ୱରରେ କହିଲେ..." ଆସନ୍ତୁ, ଆସନ୍ତୁ ଆଜି କାଲିତ ଆପଣ ଖୁବ୍ ନାମ ଅର୍ଜନ କଲେଣି ବାବୁ ସାହେବ । ହଃ ହଃ ହଃ, ଏପାଣ ଭଲ; ଖାସା କାମ କଲେ ଯେଉଁ ରହସ୍ୟ ଉଦ୍‌ଘାଟନ କଲେ ମହଲା ମଣ୍ଡଳରେ ଯେ, ମନଖୁସୀ ହୋଇଗଲା, ବସନ୍ତୁ । ବସନ୍ତୁ ।

"ଆରେ, ଭାଇ, କନୋମଲର ନାତି ଆସିଛନ୍ତି ?"

"ହଁ, ଲାଲାଜୀ ପ୍ରଣାମ କରୁଛୁ ।" ସଜ୍ଜନ ମଣ୍ଡପ ଉପରେ ବସିବା ପୂର୍ବରୁ ଲାଲା ମକୁନ୍ଦୀ ମଲଙ୍କୁ ହାତ ଯୋଡ଼ିଲେ ।

'ଆନନ୍ଦରେ ରୁହ, ପୁଅ, ତୁମେତ ଖୁବ୍ ଭଲ ନା କମାଇଲ ।

ସଜ୍ଜନ ନିଜ ପ୍ରଶଂସାରେ ସଙ୍କୁଚିତ ହେଲା ।

କୁଞ୍ଜୀଲାଲା ନାଏବ ବର୍ଚ୍ଛାଭଳି ତୀକ୍ଷ୍ଣ ଦୃଷ୍ଟିରେ ଥରେ ସଜ୍ଜନକୁ ଦେଖିଲା । ପୁଣି ଲାଲାଜୀଙ୍କୁ କହିଲେ " ସେଥିରେ ଆମର ଜଣେ ଜଣାଶୁଣା ପିଲା ମଧ୍ୟ ଅଛି । ପ୍ରତିଷ୍ଠିତ ଲୋକ, ବିଚରା ହଜାର ହଜାର ଟଙ୍କା ପୋଲିଶକୁ ଦେଲାଣି କିନ୍ତୁ...

"କିଏ, କିଏ ? କାହା ପୁଅ ପଶିଛି ?"

ଆରେ ମୁଁ ଗରୁ ଅଡ଼ତିଆର । ଯେଉଁ ସମୟରେ ପୋଲିଶ ଆସୁଥିଲା, ସେ ସମୟରେ ତାଙ୍କର ପୁଅ ମଧ୍ୟ ସେଠାରେ ଥିଲା ।"

"ଭଲ ହୋଇଛି । ଯିଏ ଯେମିତି କରିବ ସେମିତି ପାଇବ" କହି, ବାବୁ ରାଧେଶ୍ୟାମ ଡ୍ରଥସ୍ତ ଅଙ୍ଗୁଳିରେ ଧରିଥିବା ସିଗାରେଟ୍ ଶୋଷିଲେ ।

"କହିବା ସହଜ ବାବୁ, ଯାହାର ଇଜ୍ଜତ ଯାଇଥିବ ତାର ହୃଦୟକୁ ପଚାରନ୍ତୁ । କଣ ଲାଲା, ମିଛ କହିଲି ? କୁଞ୍ଜୀଲାଲା ନାଏକ, ନିଜ କଥାର ସମର୍ଥନ ପାଇଁ ଲାଲା ମକୁନ୍ଦୀ ମଲକୁ ଚାହିଁଲେ ।

"ହଁ, ବାବୁ ନିଜର ଇଜ୍ଜତ ରକ୍ଷା କରିବା ପାଇଁ ମଣିଷ ସବୁକିଛୁ କରେ । ଇଜ୍ଜତ ଗଲାତ, ଘରର ଲକ୍ଷ ଲକ୍ଷ ଟଙ୍କାର ପାଉଁସ ସହିତ ସମାନ । ଆରେ : ଦେ ଦେ, ସୁକୁରୁଆ, ଚାରଟା ପାନ ନେଇଯାଅ ।"

ମଣ୍ଡପ ଆଗରେ ଡାହାଣ ପାଖରେ ନିଜ ଘର ଆଡ଼କୁ ଲକ୍ଷ୍ୟ କରି ଲାଲା ମୁକୁନ୍ଦୀ ମଲ ପାଟିକରି ଉଠିଲେ ଓ ପୁଣି ଟାଣିବାରେ ଲାଗିଲେ ।

ସଜ୍ଜନ କହିଲ—"ଇଜ୍ଜତର ତ କଥା ଥିଲ ଲାଲଜୀ, ସେଠାରେ କେଣକର ନୁହେଁ ପୁରା ସମାଜର ଇଜ୍ଜତ୍ ଯାଉଥିଲ ।"

"ଆପଣ ସତ କହୁଛନ୍ତି ବାବୁ ସାହେବ ।" ବାବୁ ରାଧେଶ୍ୟାମ କହିଲ "ଯେଉଁ ମାନେ ସମାଜର ଇଜ୍ଜତ ସହିତ ଏପରି ଖେଳନ୍ତି…"

"ଆରେ ସବୁ ସମାଜର ଇଜ୍ଜତ ଅଛି । ତୁମେ କାଲିକା ପିଲା ରାଧେଶ୍ୟାମ ଆମର ତ ଏପରି ଦେଖି ଦେଖି ଯୁଗ ବିତି ଗଲାଣି ।" କୁଞ୍ଜୀ ଲାଲନାଏକ କହିଲେ ... "କହିବ ଯଦି ତୁମ ମହଲର ଭଲଭଲ ଘରର ଇଜ୍ଜତ ରହସ୍ୟ ପଦାରେ ପକାଇଦେବି । କିଛି ବାକି ନାହିଁ, ଅମେ ତ ଏହା ଜାଣିଛୁ ଯେ ଯେଉଁଭଳି ନିଜ ଇଜ୍ଜତ ସେହିଭଳି ସମସ୍ତଙ୍କର ନିଜ ଲୁଗା ତଳେ ସମସ୍ତେ ଲଙ୍ଗଳା । କାହାକଥା କହିବାକୁ ଯିବ ?

"ଇଜ୍ଜତ ବର୍ତ୍ତମାନ କେଉଁଠି ଅଛି କଓ କୁଞ୍ଜୀ ଲାଲ, ବର୍ତ୍ତମାନ ସମସ୍ତ ଅଲଜକ ହୋଇଗଲଣି । ଏହି ୧୫/୨୦ ବର୍ଷ ପୂର୍ବର କଥା ଚନ୍ଦ୍ରାକର, ଯେ ନିତାନ୍ତ ଗରିବ ଥିଲ ସେ ଦୁଏତ ଘରେ ଭୋକରେ ଶୋଇ ରହୁଥଲେ । କିନ୍ତୁ ନିଜର ଅଭ ଆପଣା ଲୋକ ଆଗରେ ଦୁଃଖ କରି କାନ୍ଦୁଥିଲ । କୁହ, ସେ ଠିକ୍ କି ନୁହଁ ?

"ସତକଥା ଲାଲ ।"

"ଆଉ ବର୍ତ୍ତମାନ ଦେଖ । ସେ ଲକ୍ଷପତି ହେଉ ଅଥବା ଗରିବ ହେଉ ସମସ୍ତେ ସମସ୍ତଙ୍କ ଆଗରେ ଏହି କାନ୍ଦଣା କାନ୍ଦୁଛନ୍ତି ଯେ, ଆମଦାନୀ ନାହିଁ, ଖର୍ଚ୍ଚ ଚଳୁନାହିଁ । ଏଥିରୁ ବୁଝି ହୁଏ ଯେ ଏ ଯୁଗରେ ଆଉ ଇଜ୍ଜତ୍ ପ୍ରତିଷ୍ଠା ନାହିଁ କହିଲେ ଚଳେ ।

ନିଜ ଇଜ୍ଜତ୍‌କୁ ନିଜ ହାତରେ ନଷ୍ଟ କରିବା ଏ ଯୁଗର ଲକ୍ଷଣ, ଏଥିରେ ବନ୍ଧୁ କିଏ ବା କଣ କରିବ ? "ଏତିକି ମୁକୁନ୍ଦୀମଲ କହି ହୁକ୍କା ଟାଣିବାକୁ ଲଗିଲେ ।

କୁଞ୍ଜୀଲାଲ ନାଏବ କେଉଁଠାକୁ ଯିବାର କଥା । ସେ ଯିବାକୁ ସ୍ଥଗିତ ରଖି ମଣ୍ଡପ ଉପରେ ବସିଗଲେ । କହିଲେ ·· "ପ୍ରଥମରୁ ବଡ଼ ସସ୍ତା ଥିଲା କାଳ । ସେତେବେଳେ ଲୋକ କୌଣସି ପ୍ରକାରେ ଦାରିଦ୍ର୍ୟକୁ ବରଦାସ୍ତ କରି ନେଉଥିଲେ । ଇଜ୍ଜତର ଡର ରହୁଥିଲା । ଆରେ ଆମର ପିଲା ସମୟରେ, ଟଙ୍କାରେ ୧୫ ସେର ଗହମ ୧୮/୨୦/୨୫ ସେର ପର୍ଯ୍ୟନ୍ତ ଡାଲି, ଦେଢ଼ସେର ଘିଅ, ଷୋହଳ ସେର ଦୁଧ, ଆଜ୍ଞା କୁହ ସେତେବେଳେ ସ୍ୱର୍ଗ ଥିଲା ନା ? ଆଉ ଏବେତ ଖବର କାଗଜରେ ଛପା ଯାଉଛି ଯେ ସ୍ତ୍ରୀମାନେ ସେଠାରେ ଧରାଗଲେ ସେମାନେ ଦାରିଦ୍ର୍ୟ ବଶତଃ ଖରାପ କାମ କରୁଥିଲେ । ଆଜ୍ଞା କୁହ ଦାରିଦ୍ର୍ୟ ବଡ ନା ଇଜ୍ଜତ୍ ବଡ଼ ?"

ନାଏବ କୁଞ୍ଜୀଲାଲର କଥା ଉପରେ କଥା ଚଢ଼ାଇ ବାବୁ ରାଧେଶ୍ୟାମ କହିଲେ "ଆପଣ କଣ କହିବାକୁ ଚାହୁଁଛନ୍ତି ?" କେତେବେଳେ ଇଜ୍ଜତକୁ ବଖାଣୁଛନ୍ତି ତ କେତେବେଳେ ଦାରିଦ୍ର୍ୟକୁ ?

ମୁଁ ତ ଏ ସମସ୍ତ କହୁନାହିଁ । ଇଜ୍ଜତର କଥା ଚାଲିବାରୁ ମୁଁ କହିଲି । ଯେଉଁ ଦାରିଦ୍ର୍ୟ ବଶତଃ ବିଚରା କୌଣସି ପ୍ରକାରେ ଲୁଚି ଛପି ଦୁଇ ପଇସା ଅର୍ଜନ କରୁଥିଲା ସେ ସମସ୍ତଙ୍କୁ ଜଗତ ଚକ୍ଷୁରେ ଜାହିର କରିଦେବା କଣ ଇଜ୍ଜତର କାମ ?" କୁଞ୍ଜୀଲାଲର ଗଢ଼ିଥିବା କଥାର ଚଟାଣ ଏଥର ଅନାୟାସରେ ସଜ୍ଜନ ଉପରକୁ ଗଡ଼ି ଆସିଲା । ସଜ୍ଜନ ଦୃଷ୍ଟି ଉଠାଇ ନାଏବଙ୍କ ଆଡ଼କୁ ଚାହିଁଲା ।

ବାବୁ ରାଧେଶ୍ୟାମ ମଧ୍ୟ ସେହି ଭାବ ନେଇ କହିଲେ ··· "ସମାଜରେ ଏଭଳି ପାପ ଗୁଡ଼ିକର ନିଶ୍ଚୟ ରହସ୍ୟ ଉଦ୍‌ଘାଟନ ହେବା ଉଚିତ୍ । ଏ ସମସ୍ତ ପଇସାବାଲା ଲୋକଙ୍କର କଳା ବଜାରି । ମହାଶୟ, ଆପଣଙ୍କୁ ଖରାପ ଏଥିପାଇଁ ବୋଧ ହେଲା ଯେ ଆପଣଙ୍କର କୌଣସି ଲକ୍ଷପତି ଦଲାଲର ପୁଅ ଧରାଯାଇଛି ଓ ତାଙ୍କର ଇଜ୍ଜତ ନଷ୍ଟ ହୋଇଗଲା । ମହାଶୟ, ମୁଁ କହୁଛି ଏ ପୁଞ୍ଜିପତି ଲୋକ ନିଜର ସୁଖ ସ୍ୱାର୍ଥପାଇଁ ପ୍ରତ୍ୟେକ ପ୍ରକାରର ଖରାପ କାର୍ଯ୍ୟ କରନ୍ତି । ନାରୀ ଜାତିକୁ ନଛାଡ଼ି, ଗୋହତ୍ୟା ନାମରେ ଗୋହତ୍ୟାର ବିରୋଧ ନ କରି ରାମଲୀଳାକୁ ନ ଛାଡ଼ି ଶଳେ ମୁର୍ଦ୍ଦାର ଢାଙ୍କିବା ଲୁଗା (ମୁର୍ଦ୍ଦାରକୁ ଯେଉଁ ଲୁଗାରେ ଢଙ୍କାଯାଏ) ଏ ପର୍ଯ୍ୟନ୍ତ ଧନ ଅର୍ଜନ କରି ଚାଲିଛନ୍ତି ।

ଏହି ସମାଜର ଇଜ୍‌ଜତ ନଷ୍ଟ କରିବା ରାକ୍ଷସ କେବଳ ପୁଞ୍ଜିପତି, ଯାହା ଅଧୀନରେ ଚାକିରି କରି କୁଞ୍ଜିଲାଲ ନାଏବ ଏଭଳି ଲୋକ...ଗଧ, ଶଳା । ବଢ଼ି ବଢ଼ି କଥା କହୁଛନ୍ତି ।" ବାବୁ ରାଧେଶ୍ୟାମଙ୍କର ପାରା ପୁଞ୍ଜିପତି ଆଲୋଚନାର ଡୋରିକୁ ଆଶ୍ରୟ କରି ଏଭଳି କଟୁ ବ୍ୟାଖ୍ୟାନ ଦ୍ୱାରା ଉପରକୁ ଚଢ଼ିଗଲା । ଏତେ ସମୟ ମଧ୍ୟରେ ତାଙ୍କ ସିଗାରେଟରେ ଲମ୍ବା ପାଉଁଶ ଶେଷାଂଶ ରହିଥିଲା । ବାବୁ ରାଧେଶ୍ୟାମ ହାତ

ଚୁଙ୍ଗାଡ଼ି ପାଉଁସ ଝାଡ଼ିଲେ ଓ ଅଙ୍ଗୁଳି ସନ୍ଧିରେ ସିଗାରେଟ ଧରି ଆଉ ଦୁଇଥର ଟାଣି ଫୋପାଡ଼ିଦେଲେ ।

ସଜ୍ଜନ ଗଳିର ମୁଣ୍ଡରେ ମଧୁପାଳକୁ ଆସୁଥିବାର ଦେଖିଲା ॥ କୁଞ୍ଜୀଲାଲ ନାଏବ ବାବୁ ରାଧେଶ୍ୟାମ ଭଥାରେ ଠୋକର ଖାଇ କାଖରେ ନିଜ ଖାତା ଜାକି ଉଚ୍ଛୁଡ଼ା ହେଲେ ଓ କିଛି କହିବାକୁ ଯାଉଥିବା ସମୟରେ ମୁକୁନ୍ଦୀ ମଲ ତାଙ୍କର ବାହୁ ଧରି ତାଙ୍କୁ ନିଜ ଆଡ଼କୁ ନୁଆଁଇ ଆଣି ଧୀରେ ଧୀରେ କହିଲେ ..''କାହା ମୁହଁରେ କଣ ଠିକ୍ ଠିକଣା ଅଛି କୁଞ୍ଜୀଲାଲ, ଆଜିକାଲି କମ୍ୟୁନିଷ୍ଟ ସମୟ, ବୁଦ୍ଧୁ ପାନ ଖାଅ । ଆବେ ସୁକୁରିଆ ଆଲେ ପାନ ଆଣିଲୁ ନାହିଁ ବୋକା, ଚନାମ ମଧ୍ୟ ଘେନିଆ ।''

କଥା ଉପରେ କଥା ॥ ପୁରୁଣା ସ୍ମୃତି ଉପରେ ଅଟ୍ଟହାସ୍ୟ, ଅମୁକର ପୁଅ ଓ ଅମୁକର ଝିଅ ଦଶ ପଚିଶ ଚାଲିଗଲେଣି, ଆଜିକାଲି ବୁଢ଼ାଙ୍କର ଯୌବନ ଓ ବାଲ୍ୟା-ବସ୍ଥାର ଅଦଳ ବଦଳ ବାହାନା, ପୂର୍ବର ୮୦।୮୦ ବର୍ଷର ସାମାଜିକ ବିକାଶର ଚିତ୍ର ବନା କ୍ରମରେ କୁହାଯାଇ ମଧ୍ୟ କ୍ରମଶଃ ସଜ୍ଜନ ଓ ମଧୁପାଳର କଳ୍ପନାରେ ସାକାର ହେଉଥିଲା ॥ ପୁରୁଣା କଥାକୁ କହିବାର ଓ ଶୁଣିବାର ଏକ ଆଶ୍ଚର୍ଯ୍ୟ ଆକର୍ଷଣ ଥାଏ । ଜଣାନାହିଁ, ରାମାୟଣ ଭକ୍ତ କେବେଠୁ ଚାଲିଗଲେଣି, କେତେକ ଭକ୍ତ ଆସିଲେଣି ॥ କେତେକଙ୍କ ସହିତ ଜୈରାମ, ଜୈହିନ୍ଦ୍ ଭଲଅଛ ? ''ହଁ ସବୁ ଭଗବାନଙ୍କ ବୈଠକରେ ମିଶିଗଲେ, ନିମ ଦାନ୍ତକାଠି ଦ୍ୱାରା, ବ୍ରଶ୍, ଟୁଥ ପାଉଡ଼ର ଓ ପେଷ୍ଟ ପର୍ଯ୍ୟନ୍ତ, ସକାଳର ଜଳଖିଆରେ ଜିଲପି, କଚୁଡ଼ିଠାରୁ ମଖନଟୋଷ୍ଟ ପର୍ଯ୍ୟନ୍ତ, ପରିଧାନରେ ପଗଡ଼ି, ଅଚକନଲ ଦୁପଟ୍ଟା, ଦୁପଲ୍ଲୀ, ଚୌଗୋଷିଆଠାରୁ ଅପଟୁଡେଟ୍ ଇଂରାଜୀ ଫେସନ ପର୍ଯ୍ୟନ୍ତ ଅନେକ ଆଉ ଅନେକ କଥା ହେଲା ॥ ମଧୁପାଳ ମଣ୍ଡପ ଉପରୁ ଉଠି ବଜରଙ୍ଗ ବାଲୀଙ୍କ ସମ୍ମୁଖରେ ହାତ ଯୋଡ଼ି 'ଶ୍ରୀ ଗୁରୁଚରଣ ସରୋଜ ରଜ' ଆଦି ପାଠ କରି ଶେଲେ ମୃତ୍ୟୁଞ୍ଜୟ ହରହର' ଉଚ୍ଚାରଣ କରି ସଜ୍ଜନ ପାଖକୁ ଗଲା ॥ ସଜ୍ଜନ ଚିନ୍ତାଶୀଳ ଥିଲା ॥ ସେ ମଧୁପାଳକୁ ହଜା ଆଖିରେ ଚାହିଁଲା ॥ ମଧୁପାଳ ସେହି ଦୃଷ୍ଟିକୁ ଉତ୍ତର ନଦେଇ ଫିକେ ହସି ଦେଲା ॥

ସଜ୍ଜନ ହଠାତ୍ ଘଣ୍ଟା ଆଡ଼କୁ ଦେଖି କହିଲା...''ବାରଟା ବାଜି ଚାଳିଶ ମିନିଟ ହେଲାଣି, ମୁଁ ଏଠାକୁ ଜେଠେଇଙ୍କ ସହିତ ସାକ୍ଷାତ କରିବାକୁ ଆସିଥିଲି କିନ୍ତୁ କଥାର ସୁଅରେ କିଛି ମନେ ପଡ଼ିଲା ନାହିଁ, ଯାହା ହେଉ ଖୁବ୍ ଭଲରେ ସମୟ ବିତିଲା ॥'

''ହଁ, ବହୁତ ଭଲରେ କଟିଲା।ବହୁତ ଦିନ ପରେ ଏପରି ଆନନ୍ଦ ॥

ପୁଣି କ୍ଷଣକେ ପାଇଁ ମୌନତା ଛାଇଗଲା ॥ ଗୋଟିଏ ଗାଈ ଚାଲିଯାଉଥିଲା ତା ଦେହରେ ହୋଲିର ରଙ୍ଗୀନ ନିଶାଣ ଝଲସୁଥିଲା ॥ ଉଭୟଙ୍କର ଦୃଷ୍ଟି ସେ ଆଡ଼କୁ ଗଲା ॥ ପୁଣି ସଜ୍ଜନ ପଚାରିଲା···''ଏଠାକୁ କେମିତି ଆସିଲେ ?'

ଏମିତି ॥ ତୁମ ସହିତ ସାକ୍ଷାତ କରିବାର ଇଚ୍ଛା ହେଲା ॥ "ମୁଁ ଜେଠେଇଙ୍କ ଘରକୁ ଯାଉଛି । ଯଦି କିଛି ଜରୁରୀ କାମ ନାହିଁ ତେବେ ସାଙ୍ଗରେ ଚାଲ ॥"

ମହୀପାଲ କେତେକାଂଶରେ ବିରକ୍ତ ହୋଇ କହିଲା..."ଏବେ ତୁମେ ଯାଅ ॥ ଆଚ୍ଛା ମୁଁ ତେବେ ଯାଉଛି ॥"

ସଜ୍ଜନ ତାକୁ ଅତ୍ୟନ୍ତ ଯତ୍ନର ସହିତ ଦେଖିଲା ॥ ପୁଣି ଜୋର ଦେଇ କହିଲା...

"ଯଦି କିଛି କାମ ନାହିଁ ତ ଆସ ॥ ଜେଠେଇ ଡକାଇଛି, ପରେ ସାଙ୍ଗ ହୋଇ ତୁମେ ଯେଉଁଠାକୁ କହିବ ଯିବା ॥"

ମହୀପାଲ ରାଜି ହୋଇଗଲା ॥ ଦୁହେଁ 'ଗୋଶାଳାର' ସନ୍ତ ସନ୍ତିଆ ଜମି ଆଡ଼କୁ ଚାଲିଲେ ॥ ସଜ୍ଜନକୁ କୋଠୀର ଏହି ଭାଗରେ ବିତାଇଥିବା ଦିନ ମନେ ପଡ଼ିଲା ॥ ଶରଣାର୍ଥୀଙ୍କ ଷଡ଼ଯନ୍ତ୍ର ॥ ଜେଠେଇର ଯାଦୁ ଫିଟିଲା 'ଚୋରମାନଙ୍କ ଦ୍ୱାରା କରାଯାଇଥିବା ଜେଠେଇ ଦୁର୍ଗନ୍ଧ କନ୍ୟାର ଯିବା ଆସିବା, ଅତ୍ୟନ୍ତ ବୋର ରୋମାନ୍ସ...ହଠାତ୍ ସଜ୍ଜନ ପଚାରିଲା..."ଜଣେ ମହାଶୟ, ମହାକବି, ବୋଇ କେଉଁଠି ? ବହୁତ ଦିନରୁ ଦେଖା ଯାଉନାହିଁ ॥

ମହୀପାଲ କହିଲା—ମୁଁ ମଧ୍ୟ ଏଠାରେ ତାକୁ ଦେଖି ନାହିଁ । 'ବଡ଼ ଘୃଣିତ ବ୍ୟକ୍ତି ।'

ଆମକୁ ଜଣାନାହିଁ, କିନ୍ତୁ ଏମିତି ଅନେକ ଲୋକ ଅଛନ୍ତି । ଏମାନଙ୍କ ପରି ଦୁର୍ବଳ ଚରିତ୍ରର ବ୍ୟକ୍ତିଙ୍କୁ ଘୃଣା ଆସୁଛି । ଦୁର୍ବଳତା ଚାରିଆଡ଼େ ବ୍ୟାପି ଯାଉଛି ।

ସଜ୍ଜନ ଜେଠେଇ ଘରର ଟିଣ୍ଡିର ଖଟ୍‌ଖଟ୍ କଲା । ମହୀପାଲ କଥା ଅଧାରେ ରହିଗଲା । ଭିତରୁ ଜେଠେଇର ଶବ୍ଦ ଆସିଲା —'ଆରେ କିଏ ଅଲପେଇଶା ।

'ସେ ଗାଳି ବିନା କାହାରି ସହିତ କଥା କହେନାହିଁ ।' ହସିହସି ମହୀପାଲକୁ କହିଲା ସଜ୍ଜନ ଦୁଆର ଆଡ଼କୁ ମୁହଁ କରି ଜୋରରେ ଉତ୍ତର ଦେଲା—'ମୁଁ ଜେଠେଇ, ସଜ୍ଜନ ।'

'ଦୁର୍ଜନ କାହିଁକି କହୁନାହିଁ ବେ ।'

'ସେ କେବଳ ଶୀଳା କହେ ।'

ମହୀପାଲ ଶୀଳାର ନାମ ଶୁଣି ଗମ୍ଭୀର ହୋଇଗଲା । ସେହି ସମୟରେ ଭିତରୁ ଟିଣ୍ଡିର ବାହାର କରିବାର ଶବ୍ଦ ହେଲା । ଦରଜା ଖୋଲିଲା କନ୍ୟା ଛିଡ଼ା ହୋଇଥିଲା । ସେ ତୃଷିତ ଦୃଷ୍ଟିରେ ନିଜର ସ୍ୱାମୀଙ୍କୁ ଦେଖିଲା । ମହୀପାଳକୁ ହାତ ଯୋଡ଼ିଲା ।

‘କେଉଁଠି ରହି ଯାଇଥିଲ ଏ ପର୍ଯ୍ୟନ୍ତ ?’ କନ୍ୟା ସ୍ୱାମୀଙ୍କୁ ପଚାରିଲା ।

ଏହି ମଣ୍ଡପ ଉପରେ ଥିଲି ।

‘କନ୍ୟା ଏ ଜୁଆ ଖେଳୁଥିଲା, ଧରିକରି ଆଣିଲି’ ମହିପାଳ କହିଲା ।

କନ୍ୟା ହସିଲା, କହିଲା—‘ତେବେ ଆପଣ ମଧ୍ୟ ସେଠାରେ ବାଜି ଲଗାଇବା-ପାଇଁ ପହଞ୍ଚି ଥିବେ ।’

ସେ, ଖାଲି ଯାଇଥିଲି । ସେଥିପାଇଁ ତ ଅଭିଯୋଗ କରୁଛ ।

ସଜ୍ଜନ ତ୍ରଇଁ ରୁମ ଅତିକ୍ରମ କରୁ କରୁ କହିଲା । ‘ବାବାଜୀ ଆସିଛନ୍ତି ।’ କନ୍ୟା କହିଲା କେଉଁଠିକି ?

‘ଉପରେ’ କନ୍ୟା ଉପର ସିଢ଼ି ଆଡ଼କୁ ଯାଉଁ ଯାଉଁ କହିଲା ।

ଉପରେ ଚୈତ୍ର ମାସର ଖରା । ଜେଠେଇ ସୂର୍ଯ୍ୟଙ୍କ ଆଡ଼କୁ ପିଠି କରି ବସିଥିଲେ ଓ କୃଷ୍ଣବର୍ଣ୍ଣ ହୃଷ୍ଟଦେହ ଓ ଲେଙ୍ଗୁଟି ଧାରୀ ବାବା ରାମଜୀ ସିଂହାସନରେ ତାଙ୍କ ସମ୍ମୁଖରେ ବିରାଜମାନ ଥିଲେ । ଉଭୟଙ୍କୁ ଦେଖି ବାବାଜୀ ଅତି ଉତ୍ସାହର ସହିତ ସ୍ୱାଗତ କଲେ । ସଜ୍ଜନ ପାଦସ୍ପର୍ଶ କରୁଥିବା ସମୟରେ ଜେଠେଇ କହିଲେ ‘କଣରେ, ଏତେଦିନ କେଉଁଠାରେ ରହିଲୁ ?’.

‘ଜେଠେଇ—କାମ କରୁଥିଲି ।’

‘ଆରେ, ଏଭଳି କାମ ଥିଲାରେ ଅଲପେଇଣା, ଏଘରକୁ ଆସିବାକୁ ମଧ୍ୟ ସମୟ ମିଳିଲା ନାହିଁ । ବୋହୂଠାରୁ ହାଲଚାଲ ମିଳିଯାଇ ଥିଲା, ବାବାଜୀ, ତେଣୁ ମନରେ ସନ୍ତୋଷ ଥିଲା । ନ ହେଲେ—’

ବାବାଜୀ କହିଲେ—‘ନା, ରାମଭକ୍ତା, ଏହାପାଇଁ ଆମେ ମଧ୍ୟ ସାକ୍ଷୀ ଦେଉ, ଯଦି ତୁମର ବୋହୂ ଏଠାରେ କାମ କରୁଥିଲା ତ ତୁମର ପୁଅ ମଧ୍ୟ ବହୁତ ବଡ଼ କାମ କରୁଥିଲା ।

‘ମୋର କଣ ବୋହୂ ।’

ଅରେ ପୁଅ ଯେତେବେଳେ ତୁମର, ତେବେ ବୋହୂ ତୁମର ହେଲା କି ନାହିଁ ।

‘ମୁଁ ତ ଏହି କଲ୍ୟାଣମଲର ନାତିକୁ ଶହେ ତୋଳା ଗହଣା ଦେବାପାଇଁ କହିଥିଲି, ନିଜ ଜାତି ମଧ୍ୟରେ ଭଲ ଭଲ ଝିଅମାନଙ୍କ କଥା କହିଲି—’

କିନ୍ତୁ, ରାମଭକ୍ତା, ଯାହା କିଛି କୁହନା କାହିଁକି, ଯଦିଏ ପୁଅ ତୁମର ତେବେ ବୋହୂ ମଧ୍ୟ ତୁମର ଓ କେଡ଼େ ସୁନ୍ଦରୀ ଓ ଆଉ ଦେଖ କେତେ ଭଲ ସ୍ୱଭାବର ଝିଅଟିଏ । —ଘରେ ସ୍ୱାମୀ ସେବା କରେ । ଏଠାକୁ ତୁମର ସେବା ପାଇଁ ଆସେ—ଇସ୍କୁଲ ଚଳାଏ, ଖରାପ କଣ ରାମ ଭକ୍ତା ?

ତୁମେ ତା ପ୍ରତି କାହିଁକି ଅପ୍ରସନ୍ନ ଅଛ ?

'ଜେଠେଇ ଥରେ ବନକନ୍ୟା ଆଡ଼କୁ ଦୃଷ୍ଟି ଉଠାଇ ଦେଖିଲେ କହିଲେ—' ହଁ, ଭଲତ ନିଶ୍ଚୟ । କିନ୍ତୁ ଆରମ୍ଭରୁ ମିଛ କାହିଁକି କହିଲା ମୋତେ (ସଜ୍ଜନ) ଏ ଆମ ଜାତର—

ସଜ୍ଜନ ହସି ହସି କହିଲା ଜେଠେଇ, ଯଶୋଦାଙ୍କ ଡରରେ ତୁମର କୃଷ୍ଣ ମଧ୍ୟ ମିଛ କହୁଥିଲେ ।

ବନକନ୍ୟା ଓ ବାବାଜୀ ଖିଲିଖିଲି ହୋଇ ହସିଲେ । ମହିପାଳ ମଧ୍ୟ ହସିଲା ଓ ଜେଠେଇଙ୍କର କଳା କଳା ବଡ ଦାନ୍ତ ମଧ୍ୟ ଚମକି ଉଠିଲା । ବାବାଜୀ କହିଲେ— ରାମଭକ୍ତୁଣୀ, ତୁମେ ବର୍ତ୍ତମାନ ତାକୁ କିଛି କହି ପାରିବ ନାହିଁ । ତୁମେ ଯଶୋଦା ମାତା ଓ ସେ ତୁମର କୃଷ୍ଣ କହ୍ନେୟା । ଆହୁରି ମଧ୍ୟ ତୁମେ ବୋହୂକୁ କ୍ଷମା ଦେବାକୁ ପଡ଼ିବ ।

ଆରେ କ୍ଷମା ତ କରିଛି । ମୁଁ ତ ଏହି କଳା ମୁହଁକୁ ହଜାର ବାର ନିଜ ମନରୁ ତଡ଼ିବାପାଇଁ ଚେଷ୍ଟା କରିଛି କିନ୍ତୁ ଏ ଏପରି ସେବା କରେ ଯେ କଣ କହିବି ?

'ତେବେ ରାମଭକ୍ତୁଣୀ ତୁମେ ନିଜର ଶହେତୋଳା ସୁନା ଏହାକୁ ଦେଇଦିଅ ।'

ଜେଠେଇ ଏହାର କିଛି ଉତ୍ତର ଦେଲେନାହିଁ । ମହିପାଳ ଆଡ଼କୁ ମୁହଁ ବୁଲାଇ ଦେଖିଲେ, ସଜ୍ଜନକୁ ପଚାରିଲେ—'ଏ କିଏ ?'

ଏ ଜଣେ ବଡ଼ ପଣ୍ଡିତ ଜେଠେଇ । ସଜ୍ଜନ ଶୀଘ୍ର ଉତ୍ତର ଦେଲା । ବାବାଜୀ ମଧ୍ୟ କହିଲେ—ବଡ଼ ଖ୍ୟାତନାମା ବିଦ୍ୱାନ, ରାମଭକ୍ତୁଣୀ ? ଜେଠେଇ ଶୀଘ୍ର ମହିପାଳ ଆଗରେ ମୁଣ୍ଡ ନୁଆଁଇ ନମସ୍କାର କଲା ପୁଣି କହିଲା ଧନ୍ୟ ଆମର ଭାଗ୍ୟ, ଯାହା ହେଉ ଆମ ଘରକୁ ଆସିଛନ୍ତି । ତେବେକଣ ଏ ଏଠାରେ ରହନ୍ତି ନା ବାହାରୁ ଆସିଛନ୍ତି ?

'ଏହିଠାରେ ଜେଠେଇ । ଏ ବଡ଼ ବହି ଲେଖିଛନ୍ତି ।' କନ୍ୟା ଉତ୍ସାହଭରା ସ୍ୱରରେ ମହିପାଳର ବିଶେଷ ପରିଚୟ ଦେଲା ।'

'ତେବେ ଏ ପାଣ୍ଡିତ୍ୟ ମଧ୍ୟ କରୁଥିବେ ?'

'ହଁ ଜେଠେଇ, ଘରେ ପୂଜାପାଠ ବି କରନ୍ତି । ସଜ୍ଜନ କହିଲା, କିନ୍ତୁ ବିବାହ କର୍ମକାଣ୍ଡ କରି ପାରନ୍ତି ନାହିଁ ।

'ମୁଁ ତ ଏଭଳି ପଣ୍ଡିତ ଜଣଙ୍କୁ ଖୋଜୁଥିଲି ଯିଏକ ଖୁବ୍‌ଭଲ ଭାବରେ ବିବାହ ମନ୍ତ୍ର ଜାଣିଥିବେ, କଣ ବାବାଜୀ, ନ ହେଲେ ବନାରସରୁ କାହାରିକୁ ଡକାଇ ବ୍ୟବସ୍ଥା କରିବେ । ଯାହା ଖର୍ଚ୍ଚ ଲାଗିବ ଦେବି ।'

ଭଲ କଥା ଏହାର ବ୍ୟବସ୍ଥା ହୋଇଯିବ ରାମଭକ୍ତୁଣୀ ।

'ହଁ ବିବାହ ଖୁବ୍‌ଭଲ ଭାବରେ ହେବା ଦରକାର, ବାବାଜୀ । ଯେତେବେଳେ ମୋର ସହରୁଣୀର ନାତି ଅଲପେଇଣା ବିବାହରେ ଧୂମଧାମ ହୋଇଚ, ତେବେ ଭଗବାନଙ୍କର ବିବାହରେ ଆହୁରି ଧୂମଧାମ ହେବା ଉଚିତ୍ । ଆଜି ଏ ମୁଁ କଲୋନୀର ନାତି କାନରେ ତେଲ ପକାଇ ବସିଚୁ । ଆଉ କେତେଦିନ ରହିଲା । କାଲିଠାରୁ ତ ବୈଶାଖ ଆରମ୍ଭ ହେଲା, ପୂର୍ଣ୍ଣିମୀକୁ ତ ବିବାହ ହେବ । ଆଉ ଗୋଟିଏ ମାସ ରହିଲା । କୌଣସି ଜିନିଷ ନାହିଁ ବା ପ୍ରସ୍ତୁତ ମଧ୍ୟ ନାହିଁ ।'

ଆରେ ରାମ ଭକ୍ତୁଣୀ, ଜିନିଷ ଆଦିର ଚିନ୍ତା କରନାହିଁ । ଆମେ ଗୋଟିଏ ଆଶ୍ରମ ଗାଁରେ ତିଆରି କରିଦେବୁ । ବାବାଜୀ କହିଲେ ।

'ଆଉ ଯୌତୁକ କଣ ଦେବ କେତେଇ ? କନ୍ୟା ପଚାରିଲା, ମହିପାଲ କହିଲା— ଆଜିକାଲିତ୍ ବଡ଼ ବଡ଼ ଜିନିଷ ଦିଆଯାଉଚି, ରେଡ଼ିଓ, ସୋଫାସେଟ ଘଡ଼ି—'

'ରାମଭକ୍ତୁଣୀ, ଏ ସମସ୍ତ ତୁମେ ଆମକୁ ଦେବ ? ତେବେ କଣ କୃଷ୍ଣ ପରମାତ୍ମାଙ୍କ ବିବାହକରି ତୁମେ ଆମକୁ କୋଟ ଚ଼ୁଲେ ନ ପିନ୍ଧାଇବ ? ବାବାଜୀଙ୍କ କଥା ଶୁଣି ସମସ୍ତେ ହସିଲେ ।

'କେତେଇ କହିଲେ --'ଏଥିପାଇଁ ତ ଆଜି ଡାକଚୁ । ଯୌତୁକରେ ବାବା ମେଓ୍ୱା ମିଠେଇ ଖଜାତ ଆସିବ । ପଚ୍ଛଣ ଥାଳୀ ମୁଁ ଠିକ୍ କରି ସାରଚୁ ।'

ଆଚ୍ଛା, ଏ ସବୁ ତ ଆମେ ଘାଟ ପାଖରେ ବାଣ୍ଟିଦେବୁଁ । ବାକିଟଙ୍କା ତୁମେ ନଗଦ ଦେଇଦିଅ । ସେଥିରେ ଆମେ ଆଶ୍ରମ ପାଇଁ ଜମି କିଣିବୁଁ । ତାଳକରେ ଜମି ଓ ବିବାହରେ ଆଶ୍ରମ ଗଢ଼ିବା ଖରଚ ।

ବିବାହର ସମସ୍ତ ପ୍ରବନ୍ଧ ନିଶ୍ଚିତ କରାଗଲା ॥ ମହିପାଳର ବ୍ୟସ୍ତତାପାଇଁ ସଜ୍ଜନ ମଧ୍ୟ ଉଠିଲା ॥ କନ୍ୟା କୋଠୀ ଆଡ଼କୁ ଚାଲିଗଲା ॥ ତାର ପାଠଶାଳା ବର୍ତ୍ତମାନ ଚାଲୁଥିଲା ॥ ବର୍ତ୍ତମାନ କନ୍ୟାର ସହାୟତା ପାଇଁ ଆଉ ଦୁଇଜଣ ସ୍ତ୍ରୀ ଲୋକ ଆସି ଯାଇଥିଲେ ॥ କନ୍ୟାର ପାଠଶାଳାକୁ ଏବେ ଅଧିକ ସ୍ତ୍ରୀ ଲୋକ ଆସିଥିଲେ ॥ କେତେଇର କୋଠୀ ସଜ୍ଜନ ସ୍ତ୍ରୀ ଛୁଓ ବାଲି ଘର ଏବେ ଏକ ପ୍ରକାର ଅବନମିତ ସୌକର ପଇଚାଯ୍ୱକ

ହୋଇ ରହିଯାଇଥିଲା ॥ ଏଠାରେ କେତେଦିନ ହେଲା ସଜ୍ଜନର କୌଣସି ନିର୍ଦ୍ଦିଷ୍ଟ ଚାକ ସେ ନାହିଁ ଓ ଯାହା କିଛି କାମ କରୁଛି ତାହା ନିଜ କୋଠାରେ କରୁଛି ॥ ଆଜି ସଜ୍ଜନର କେତେକାଂଶରେ ଇଚ୍ଛା ହେଲା କିନ୍ତୁ ମହିପାଳ କହିଲା···"ଏଠାରେ ସ୍ତ୍ରୀ ମାନଙ୍କର ଗୋଳମାଳ ହେବ ॥"

ଆସ ସମଜୀ, ଆମ ସାଙ୍ଗରେ ଚାଲ ॥" ବାବାଜୀ କନ୍ୟାର ପାଠଶାଳା ଭୁଲିବାର ସେହି ସମୟରେ ସେଠାରେ ପହଞ୍ଚିଥିଲେ ଓ ତାଙ୍କର କଥା ସଜ୍ଜନ ମହିପାଳର···କଥାର ଶମରେ ଗୋଟିଏ ନିର୍ଦ୍ଦେଶାତ୍ମକ ପ୍ରସ୍ତାବ ଭଳି ଖାପିଗଲା, ଯଦିଓ ମହିପାଳର ଇଚ୍ଛା ସହିତ ଏହା ଖାପ ଖାଉ ନଥିଲା। ବାବାଜୀ କହିଲେ··"ଚାଲ ସମଜୀ, ବଢ଼ିଆ ଲଙ୍କୀ ପ୍ରସ୍ତୁତ କରିବା ॥"

ସଜ୍ଜନ ହସି ହସି କହିଲା...କିନ୍ତୁ, ବର୍ତ୍ତମାନ ତ ମୋର ଭୋଜନ ମଧ୍ୟ ହୋଇ-ନାହିଁ ବାବାଜୀ ଓ ମୁଁ ଭାବୁଛି ଯେ ମହିପାଳ ମଧ୍ୟ···"

ହୁଁ, ମୁଁ ମଧ୍ୟ ଘରୁ ଜଳଖିଆ ଖାଇ ବାହାରି ଥିଲି · "ତେବେ ଆଜି କେବଳ ଜଳାହାର କର ॥ ରାସ୍ତାରେ ସବୁ ଜିନିଷ କିଣିବା ଓ ଭଲମଧ୍ୟ, ଅଢ଼େଇଟା ବା ତିନିଟା ବେଳେ ଆମର ଘାଟ ପାଖରେ ପଣ୍ଡୁଆଣି ଦୁଧ ଦୁହେଁ ॥ ସେଠାରୁ ଆଜିପାଇଁ ସମସ୍ତ ଦୁଧ ତା ଠାରୁ ନେବୁ ॥ କଣ ସମଜୀ, କଣ ଭାବୁଛ ?" ବାବାଜୀ ମହିପାଳର ପିଠି ଉପରେ ହାତରଖି ପଚାରିଲେ ଓ କହିଲେ···" ମତଲବ ଏହା ଯେ, ଆମର ବିଚାର ଥିଲା, ଆପଣ ଦୁଇଜଣ ମହାନୁଭବ ଯେତେବେଳେ ଚାଲିଯାଇଛନ୍ତି କିଛି ଉଚିତ ପରାମର୍ଶ ହୋଇଯାଉ ॥ ଏତେ ଟଙ୍କା ମିଳିବ ତ ଏହାର ଉପଯୋଗ କିପରି ହେବ ? ଏଠାରେ ସବୁ ବିଚାର କରିନେବା ॥" ମହିପାଳ ପୁଣି ନିରୁତ୍ତର ହୋଇଗଲା ॥

# ଛତ୍ରଭଙ୍ଗୀ

ବାବାଜୀଙ୍କ ଆଶ୍ରମରୁ ଏମାନେ ଶୀଘ୍ର ଫେରି ଆସିଲେ, ଏହା ମହୀପାଳର ଇଚ୍ଛାଥିଲା ।। ମହୀପାଳ ଆଗ୍ରହ କଲା ଯେ, କୁପର ହୋଟେଲକୁ ଯାଇ ଟିକିଏ ଡ୍ରିଂକ୍ କରାଯାଉ, ସଜ୍ଜନ ମଦ୍ୟପରୁ ନିଜ ମନ ଘୁଞ୍ଚାଇ ସାରିଥିଲା ।। ତଥାପି ସେ ମଧ୍ୟ ମହୀପାଳ ସହିତ ଯିବାକୁ ରାଜି ହୋଇଗଲା ।।

ମହୀପାଳ କହିଲା···"ମୁଁ ବୁଝିପାରୁ ନାହିଁ ଯେ, ଲୋକ ହଠାତ୍ କିପରି କୌଣସି ଜିନିଷକୁ ଛାଡ଼ିପାରେ ?

କାହିଁକି ? ତୁମେ ତ ଆଦର୍ଶବାଦୀ ଲେଖକ ହିସାବରେ ଅନେକ ଥର ଜିନିଷକୁ ଛାଡ଼ିବା ଓ ଗ୍ରହଣ କରିବା ପାଇଁ ଉପଦେଶ ନିଜ ସାହିତ୍ୟରେ ଦେଇ ସାରିଛ ।।"

ମହୀପାଳକୁ ସଜ୍ଜନର ଏ ବ୍ୟାଖ୍ୟା ଆଘାତ ଦେଲା କିନ୍ତୁ ସେ କିଛି ସମୟ ପର୍ଯ୍ୟନ୍ତ ମୌନ ରହିଲା ପୁଣି କହିଲା···ଚିନ୍ତା କରିବା ସହଜ, କରିବା ବହୁତ କଠିନ ।। କଣ ତୁମେ ନିଜପାଇଁ ସ୍ୱୟଂ ଏହା କରିପାରିବ ନାହିଁ ?"

ସଜ୍ଜନ ଗମ୍ଭୀର ହୋଇଗଲା, କହିଲା "ହଁ ଓ ନା ମଧ୍ୟ ।।"

"କିପରି ?"

"ମୋର ମତ, ମୋର ନିଷ୍ପତ୍ତ୍ୟାତ୍ମକ ବୁଦ୍ଧି ତୁମଠାରୁ ଅଧିକ ।। ମୋଟା ମୋଟି ସ୍ତରରେ ଗୋଟିଏ ନିଷ୍ପତ୍ତି ଉପରେ ପହଞ୍ଚି ଯିବା ପରେ ବୁଦ୍ଧି ତାକୁ ନିଜ ଜୀବନରେ ଗ୍ରହଣ କରିନିଏ ।।"

"ଏ କଥା ଭୁଲ, ତୁମେ ଯେଉଁ କଷ୍ଟ ଓ ଯେଉଁ ଉଦ୍ଦେଶ୍ୟରେ ଏହି ନିଜ ଫର୍ମୁଲା ପ୍ରୟୋଗ ଆରମ୍ଭ କରିଥିଲ ତାକୁ ତୁମର ନିଷ୍ପତ୍ତ୍ୟାତ୍ମକ ବୁଦ୍ଧି କେଉଁ ପର୍ଯ୍ୟନ୍ତ ବଜାଇ ପାରିଲା ?"

ସଜ୍ଜନ ଚୁପ ରହିଲା, ଚିନ୍ତା କରିବାକୁ ଲାଗିଲା ।। ଗାଡ଼ି ଆଗକୁ ଚାଲିଥାଏ ମହୀପାଳ ପୁଣି ତାକୁ ଉସକେଇଲା ।।

ସଜ୍ଜନ କହିଲା···"ରୋମାନ୍ସରେ ନିଷ୍ଠା ହୋଇଗଲା ବନ୍ଧୁ, ନଚେତ୍ ମୁଁ ଏ ପର୍ଯ୍ୟନ୍ତ ବହୁତ କିଛି କରି ପାରିଥାନ୍ତି ।"

"ରୋମାନ୍ସରେ କାହିଁକି ନଷ୍ଟ ହେଲା ?"

"ମୋ ଜୀବନରେ ଅଭାବ ଥିଲା ।"

"ମୋ ଜୀବନରେ ମଧ୍ୟ ବହୁତ ଅଭାବ ଅଛି । ସେଥିପାଇଁ ମୁଁ ମଧ୍ୟ ହାରି ହାରି ଯାଉଛି ।" ମହୀପାଳ ଗମ୍ଭୀର ନିଶ୍ୱାସ ନେଇ କହିଲା ।

ପୁଣି ବହୁତ ସମୟ ପର୍ଯ୍ୟନ୍ତ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଲା ନାହିଁ । ଦୁହେଁ ନିଜ ନିଜର ବିଚାରକୁ ନେଇ ମୌନ ରହିଲେ । କୂପର ହୋଟେଲର ମେନେଜରଙ୍କୁ କହି ସେମାନେ ଉପରେ ଗୋଟିଏ ଖାଲି ଘରେ ବସିବା ପାଇଁ ବ୍ୟବସ୍ଥା କଲେ । ମହୀପାଳ କହିଲା···ଆଜି ସକାଳଠାରୁ ମୋର ମନ ଅତ୍ୟନ୍ତ ଉଦ୍‌ବିଗ୍ନ ।"

"କାହିଁକି ?"

"ଜଣା ଯାଉଛି, ମୋର ଶେଷ ସମୟ ନିକଟେଇ ଆସିଗଲାଣି ।" ପାଗଳ ହୋଇଛ । କିଛି ସ୍ୱପ୍ନ ଦେଖି ଥିଲନା କଣ ?"

"ହଁ"

"ସେଇଥିପାଇଁ ବିକଳ ?"

"ହଁ"

"ସ୍ୱପ୍ନ କେବଳ ମସ୍ତିଷ୍କରୁ ଗଢ଼ି ଉଠିଥାଏ ।"

"ପ୍ରତ୍ୟେକ ଥର ଏପରି ହୁଏନାହିଁ ଓ ସ୍ୱପ୍ନ ଗୋଟିଏ ସଂକେତ ମାତ୍ର ମୋତେ ବୋଧ ହେଉଛି, ମୋର ଅଭାବ ମୋତେ ନେଇ ବୁଡ଼ିଯିବ । ବର୍ତ୍ତମାନ ସେଗୁଡ଼ିକ ସହିତ ଲଢ଼ିପାରୁନାହିଁ ।"

"କଣ ସ୍ୱପ୍ନ ଦେଖିଥିଲ ?"

"ସ୍ୱପ୍ନ······ଏହା ଦେଖିଛି ଯେ ମୁଁ ଗୋଟିଏ ଘୃଣାପୂର୍ଣ୍ଣ । ଚରଭଣ୍ଡ, ଚର ରୁଗ୍‌ଣ ଭଗ୍ନଆଶା, ମୁଁ ଘୃଣାର ଚର ନର୍କ, ଏବଂ ସଂକୀର୍ଣ୍ଣ ପରିବେଶର ମଣିଷ ।"

"ଆଉ କେହି ଦେଖା ପଡ଼ିଲେ ?"

"କେହିନାହିଁ । ମୁଁ ଏକୁଟିଆ ।"

"ପୁଣି ?"

"ଘୁଲୁ ଘୁଲୁ ଅନ୍ଧକାର । ଇଚ୍ଛାହେଉଛି, ଏଠାରୁ ବାହାରି ଯିବି କିନ୍ତୁ ବାହାରି ପାରିଲି ନାହିଁ । ସ୍ୱପ୍ନରେ ମୋର ଯେଉଁଭଳି ପୀଡ଼ା ଜନ୍ମିଲା ତାର ବର୍ଣ୍ଣନା ମୁଁ ତୁମ ପାଖରେ କରିବି ସକ୍ଷମ ? ତାହା ଏକ ଅନୁଭବ ।"

'ପୁଣି ?'

"ପୁଣି ମୁଁ ଗୋଟିଏ ନଦୀକୂଳରେ ପହଞ୍ଚିଗଲି । ଗୋଟିଏ ନାଆ ଯାଉଥିଲା । ଲୋକଭରି ହୋଇଥିଲେ । ସେମାନେ ସମସ୍ତେ ମୋତେ ଡ଼ାକିବାକୁ ଲଗିଲେ । ନାଆ କୂଳକୁ ଆଣିଲେ, ମୁଁ ତା ଉପରେ ବସିଗଲି । ବହୁତ ପରିଚିତ ମଧ୍ୟ ଥିଲେ । '

" କିଏ କିଏ ?"

"ଶୀଲା, କଲ୍ୟାଣୀ, କର୍ଣ୍ଣେଲ, ମୋର ଗୋଟିଏ ମାମୁଁ ପୁଅ ଭାଇ ଆହୁରି କେତେ ।"

"ପୁଣି ?"

"ପୁଣି ମଝି ନଈରେ ନାଆଟି ଓଲଟି ଗଲା । ସମସ୍ତେ ପହଁରିବାକୁ ଲଗିଲେ ସବୁଜ ବର୍ଣ୍ଣର ପାଣିର ଧାରରେ ବହୁତ ଉଚ୍ଚମହଲ, ମୀନାର ଓ ଭଗ୍ନାବଶେଷ ଝଲସୁଥିଲେ । ସେହି ଭଗ୍ନାବଶେଷ ମୋତେ ଆକର୍ଷିତ କରୁଥିଲେ ।"

"ପୁଣି ?"

ମୁଁ ମୋ ସହିତ ଅନେକଙ୍କୁ ଟାଣି ନେଇଗଲି, କିନ୍ତୁ କିଛି ସମୟପରେ ଅନ୍ୟମାନେ ମୋ ଦୃଷ୍ଟିରେ ଲୁଚିଗଲେ । ମୁଁ ନିଜକୁ ନଦୀତଳେ ଭଗ୍ନାବଶେଷ ମଧ୍ୟରେ ଗୋଟିଏ ଜଙ୍ଗଲରେ ବନ୍ଦୀ ହୋଇଥିବାର ଅନୁଭବ କଲି । ବହୁତ ଘୁଞ୍ଚିପିଞ୍ଚି ହେଲି । ବହୁତ ଛଟପଟ ହେଲି । କିନ୍ତୁ ମୁକ୍ତ ହୋଇପାରିଲି ନାହିଁ ।

ତୁମର କୌଣସି ପ୍ରକାରର ଫ୍ରଷ୍ଟ୍ରେସନ ଅଛି କି ମହିପାଲ ? ଏ ନଇଲା ଓ ଭଗ୍ନାବଶେଷ ସବୁକୁ ଷ୍ଟ୍ରେସନ୍‌ର ପ୍ରତୀକ । ଏଗୁଡ଼ିକ ଏନାଲାଇଜ କରିନିଅ ।

ମୁଖ୍ୟର ପ୍ରଶ୍ନ ଉଠୁଛି କେଉଁଠି ?

ମହିପାଲ ଚୁପ ରହିଲା । ସଜ୍ଜନ ନିଜର କଫି ଶେଷ କରି ସିଗାରେଟ ଜଳାଇଲା ଓ ମହିପାଲ ଆଗରେ ସିଗାରେଟ୍ କେଶ୍ ରଖିଦେଲା । ନିଶାର ପ୍ରକୋପରେ କିଛି ସମୟ ପର୍ଯ୍ୟନ୍ତ ସ୍ଥିର ଦୃଷ୍ଟିରେ ଚାହିଁ ରହିବାପରେ ମହିପାଲ କହିଲା ·· ··"ତୁମଠାରେ ଜୀବନର ଗୋଟିଏ କଥା କହିଦିଏ, ବିଶ୍ୱାସ ହୋଇସିବ ।·····ମୁଁ ତୁମକୁ ଇର୍ଷାକରେ ।"

ସଜ୍ଜନ ଶୁଣି ହସିଲା, ଚୁପ ରହିଲା ।

"ଆଉ ଗୋଟିଏ କଥା କହିବି ? ମୁଁ ତୁମକୁ ଭଲପାଏ ମଧ୍ୟ ।"

"ଆଉ କର୍ଣ୍ଣେଲକୁ ?"

'କର୍ଣ୍ଣେଲ ଦେବତା, ଆମେ ଦୁହେଁ ତାର ମୁକାବିଲା କରି ପାରିବା ନାହିଁ । ତାର ଚେତନା! ହୁଏତ ବିକଶିତ ହୋଇନାହିଁ କିନ୍ତୁ ସେ ଅନ୍ୟ ପାଇଁ ଜୀବନ ଦେବା

ଜାଣିଛୁ । ଆଉ ଗୋଟିଏ କଥା କହିଦେବି ସଜ୍ଜନ ? ଜୀବନରେ କେବେ ହାରିଯିବି ନାହିଁ ।"

"ହାର ଜିତ୍ ନିଜ ବଶରେ କଣ ଥାଏ, ମହିପାଲ ? ପରିସ୍ଥିତି ବଶତଃ ହୁଏ ।

"ସେ ଯାହା ହେଉ । ଥକି ବସି ଯିବାହିଁ ପ୍ରକୃତ ହାରିବା । ମୁଁ ସେହି କଥା କହୁଛି । ତୁମେ ଯେଉଁ ମିଶନକୁ ନେଇ ଚାଲିଛ ତାକୁ ନେଇ ପୂରା କରିବ ।"

ମହିପାଲର ଏହି ମୈତ୍ରୀ ପୂର୍ଣ୍ଣ ଆଦେଶ ସଜ୍ଜନକୁ ସ୍ପର୍ଶ କଲା । ସେ ଭାବୁକ ହୋଇ କହିଲା······" ତୁମେ ଯଦି ସଙ୍ଗରେ ରହିବ ଆମେ ପ୍ରତ୍ୟେକ ସ୍ତରକୁ ସମୀକ୍ଷା କରି ନିର୍ଣ୍ଣୟ କରିବା ।

ମୁଁ ବର୍ତ୍ତମାନ ନିଜଠାରୁ ବାହାରକୁ ବାହାରି ପାରିବି ନାହିଁ ଓ ନିଜେ ନିଜକୁ ବୁଝି ମଧ୍ୟ ପାରିବି ନାହିଁ । ଥକି ଯାଇଛି । ଆଜିଠାରୁ ୧୦ । ୧୫ ବର୍ଷ ପୂର୍ବେ ଭାବୁଥିଲି । ମୁଁ ବହୁତ କିଛି କରିପାରିବି । ମୁଁ ଦୁନିଆକୁ ପରିବର୍ତ୍ତନ କରିଦେବି । ଈଶ୍ୱର ମୋ ସମ୍ମୁଖରେ ପରୀକ୍ଷା ଆଣି ଛିଡ଼ା କରିଦେଲେ । ମୁଁ ନିଜକୁ ବଦଳାଇ ପାରିଲିନାହିଁ, ଦୁନିଆକୁ କିପରି ବଦଳାଇ ପାରିବି ?

'ଏ ସମସ୍ତ ଭାବନାକୁ ଦୂରେଇଦିଅ ।' ସଜ୍ଜନ ଟିକିଏ ଚଞ୍ଚଳ ଉଠି କହିଲା । ······ଆଜି ସକାଳୁ ତୁମେ କାହିଁକି ଆସିଥିଲ ?

"ଏମିତି କହୁଛିପରା, ମୁଁ ଏକା ଏକା ଅନୁଭବ କରୁଥିଲି ସଙ୍ଗ ଆବଶ୍ୟକ ଥିଲା । ଭାବିଲି କର୍ଣ୍ଣେଲ ପାଖକୁ ଯିବି । କିନ୍ତୁ ସେ ଏ ସମସ୍ତ କଥାକୁ ବୁଝନ୍ତି ନାହିଁ । ପୁଣି ଭାବିଲି······" ମହିପାଲ କହୁଁ କହୁଁ ଚୁପ ହୋଇଗଲା ଓ ଗୋଟିଏ ଲମ୍ବା ନିଶ୍ୱାସ ଛାଡ଼ିଲା ।

ସଜ୍ଜନ ତାକୁ ଦେଖିଲା, କହିଲା ··· "ତୁମେ ନିଜକୁ ଓ ଶୀଲାକୁ ଅତ୍ୟାଚରିତ କରୁଛ, ମହିପାଲ ତୁମର ଏହି ସମସ୍ତ ଫ୍ରଷ୍ଟ୍ରେସନକୁ ସେହି ଦିନରୁ ଆରମ୍ଭ ହୋଇଛି ଯେଉଁଦିନରୁ ତୁମେ ଶୀଲା ସହିତ ନିଜର ସଂପର୍କ ଭାଙ୍ଗିବାପାଇଁ ଜିଦ୍ କରିଛ ।"

"ସେକଥା ଛାଡ଼ ସଜ୍ଜନ ।······ଆଚ୍ଛା ଛାଡ଼ ଏ ସମସ୍ତ କଥାକୁ ।" ମହିପାଲ ନୀରବ ହୋଇ ବସିରହିଲା । ଗ୍ଲାସ ହାତରେ ଧରି ସ୍କାଚର ସୁନେଲୀ ରଙ୍ଗକୁ ଆଗ୍ରହର ସହ ଦେଖିବାକୁ ଲାଗିଲା ।

ସଜ୍ଜନ ପଚାରିଲା······"ତୁମର ଭଉଣୀଙ୍କର ବିବାହ କେବେ ?"

"ଆଷାଢ଼ରେ, ଅମାବାସ୍ୟା ପରେ ନବମୀକୁ ।"

"କନ୍ୟା ଓ ଗୁରୁଜଙ୍କ ମଧ୍ୟରେ ଗୋଟିଏ କଥା ଠିକ୍ ହୋଇଛି । ବିବାହ ମୋ ଘରେ ହେବ ।"

"ହୁଁ"

ଏ ନିର୍ଣ୍ଣୟ ଉପରେ ମୁଁ ଅତ୍ୟନ୍ତ ଖୁସୀ । କାଲି ରାତିରେ ଆମ୍ଭେମାନେ କଥାବାର୍ତ୍ତା ହେଉଥିଲୁ । ମହିଳାମାନଙ୍କର ରହିବାପାଇଁ ରାଜା ସାହେବଙ୍କ ଶ୍ରେଷ୍ଠ କୋଠରୀ ଖାଲି କରେଇ ନେବ । ମୁଁ ଶୁଣିଲି ତୁମର ସେଠାକାର ପକ୍ଷବାଲା ଅତ୍ୟନ୍ତ ବ୍ୟତିକ୍ରମର ଢଙ୍ଗ ଦେଖାଉଛନ୍ତି ।

"ଦେଖାଇବାକୁ ଦିଅ ଶଳାଙ୍କୁ । ମଦ୍ରପାଳ ଏକାଥରକେ ଦୁଇ ଢୋକ ପିଇଲା ।"

"ମହାଶୟ ମୁଁ ଦେଖେଇବାକୁ ଦେବି ନାହିଁ । ତୁମର ସମ୍ବନ୍ଧୀମାନଙ୍କୁ ଖାଇବାଦାର ପ୍ଲେଟ କରଦେବ କିନ୍ତୁ ମୁଁ ଶୁଣୁଛି ପିଲା ବଡ଼ ଏଡ୍‌ଭାନ୍‌ସଡ଼ ।

"ହୁଁ ।"

"ତଥାପି ଏ ସମସ୍ତ ଚାଲିବ ?"

"କହି ପାରିବି ନାହିଁ ।"

ଆଚ୍ଛା ମଦ୍ରପାଳ, ଗୋଟିଏ ମଜାକଥା ଦେଖ, ଆଜି ସକାଳେ ଆମ୍ଭେମାନେ କେତେକଥା ଶୁଣିଲୁ । ଏକଥା କିଏ ନିର୍ଣ୍ଣୟ କରୁଛି । ସୁଧାକର ସମାଜ ଆଗକୁ ଚାଲିଲା ଏ ଇଏକ୍‌ସନସମାନେ ପଛକୁ ଛୁଟିଗଲେ । କିନ୍ତୁ ଏସବୁ ହୋଇମଧ୍ୟ ଏ ଇଏକ୍‌ସନସ-ମାନଙ୍କର ପ୍ରତିଷ୍ଠା ସମାଜରେ ରହିଛି । ଏ କିଣ କଥା ?"

ମଦ୍ରପାଳ କିଛି ସମୟ ମୌନ ରହିଲା । ସଜ୍ଜନ ଉତ୍ତର ପ୍ରତିକ୍ଷାରେ ତାଆଡ଼କୁ ଏକ ଦୃଷ୍ଟିରେ ଦେଖିବାକୁ ଲାଗିଲା । ପୁଣି ଆଶା କରିଥିବା ନିରାଶ୍ରୟ ଭିକାରୀ ଭଳି ସେ ଜୋରକରି ଦୃଷ୍ଟିଫେରାଇ ଆଣିଲା ଓ ଝରକାଦେଇ ବାହାରକୁ ଦେଖିବାକୁ ଲାଗିଲା । ମଦ୍ରପାଳ ସିଗାରେଟର ପାଉଁସ ଏସ୍‌ଟ୍ରେରେ ଝାଡ଼ିଲା ଓ କହିଲା......"ତୁମ କଥାର ଉତ୍ତର ମୋ ପାଖରେ ଅଛି ସଜ୍ଜନ କିନ୍ତୁ ପ୍ରକୃତ କଥା ଏହାଯେ ମୁଁ ନିଜେ ନିଜକୁ କହିବାର ଅଧିକାରୀ ବୋଲି ଭାବୁନାହିଁ ।"

"କାହିଁକି ?"

ଏଥିପାଇଁ ଯେ ମୁଁ ତା ଉପରେ ବିଶେଷ ଚିନ୍ତା କରିନାହିଁ ।

"ତେବେ ପୁଣି ତୁମେ ଚିନ୍ତା କରୁଛ କିଣ ?"

"କହିବା ବେକାର । ଜୀବନର ଶେଷ ଦିନରେ ବର୍ତ୍ତମାନ ଆଉ ମିଛ କହିବି ନାହିଁ । ଯେତେ ମିଥ୍ୟା ମୋର ଚେତନାରେ ଅଛି, ଯେଉଁ ପର୍ଯ୍ୟନ୍ତ ଏହାକୁ ପ୍ରକଟ କରିଦେବାପାଇଁ ଶକ୍ତି ନିଜେ ନିଜ ମଧ୍ୟରେ ନ ପାଇବି ସେତେଦିନ ପର୍ଯ୍ୟନ୍ତ ସତ୍ୟର ବର୍ଦ୍ଧନ କରିବା ମୋ ପକ୍ଷରେ ଅସଙ୍ଗତ ।"

ସଜ୍ଜନ ବିଚଳିତ ହୋଇ ଉଠିଲା, କହିଲା—"ମହିପାଳ, ତୁମର ଏହି ପାଗଳାମୀ ବର୍ତ୍ତମାନ ନିଃସାଲିତା ସୃଷ୍ଟି କରୁଛି । ଗୋଟିଏ ସ୍ୱପ୍ନ ତୁମର ମସ୍ତିଷ୍କକୁ ଖରାପ କରିଦେବ, ଏହାଠାରୁ ବଳି ଲଜ୍ୟାର କଥା କୌଣସି ବିଦ୍ୱାନ ବ୍ୟକ୍ତି ପାଇଁ ଠିକ୍ ହୋଇ ନପାରେ ଧରିନିଅ ତୁମେ ଗୋଟିଏ ସତ୍ୟକୁ ପାଳନ କରିପାରିଲ ନାହିଁ କିନ୍ତୁ ତାକୁ ପ୍ରକଟ କରି ତୁମେ ଅନ୍ୟକୁ ଶକ୍ତି ତ ଦେଇପାରିବ ।"

"ମୋ ପାଖରେ ଶକ୍ତି ତ ନାହିଁ । ଦେବି କେଉଁଠୁ ? ତୁମେ, ମହମ୍ମଦ ଓ ପିଲଙ୍କର ଗୁଡ଼ ଖାଇବା ଗପ ଶୁଣିଛତ ? ଯେତେ ପର୍ଯ୍ୟନ୍ତ ମହମ୍ମଦ ଗୁଡ଼ ଖାଏ ସେତେ ପର୍ଯ୍ୟନ୍ତ ଏଠାରେ ପରିସ୍ଥିତି ଅନ୍ୟ ପ୍ରକାର, ତୁମେ ପ୍ରଥମରୁ ଗୁଡ଼ନଖାଇବା ଲୋକମାନଙ୍କ ମଧ୍ୟରେ ରହିଛ ।"

"ରହସ୍ୟବାଦୀ ହୁଅ ନାହିଁ ମହିପାଳ ।"

"ରହସ୍ୟର ପ୍ରଶ୍ନ ନାହିଁ । କଥା ଅତ୍ୟନ୍ତ ସରଳ କିନ୍ତୁ କେତେ ହଜାର ବର୍ଷ ଧରି ହୋଇଥିବା ଅଧିକ ପରିଶ୍ରମ ପରେ ମଧ୍ୟ ଭାରତବର୍ଷର ଏହି ମନ୍ଦର ମୂଲୋତ୍ପାଟନ ହୋଇ ପାରିନାହିଁ । ବର୍ତ୍ତମାନ ବିଦ୍ୟୁତ ଏପରି ଶ୍ରେଷ୍ଠ ଶ୍ରେଷ୍ଠ ପ୍ରୟୋଗ ହେଉଅଛି କିନ୍ତୁ ସାମାଜିକ କ୍ଷେତ୍ରରେ ଏହାର ପ୍ରଭାବ କେଉଁଠାରେ ହେଲେ ହୋଇ ପାରିନାହିଁ । ତୁମେ ନିଜେ ମଧ୍ୟ ସଂସାର କରିଛ କିନ୍ତୁ କେବଳ ତୁମେ କରିଛ ।"

ସଜ୍ଜନ ଏକ ପ୍ରକାର ହତାଶ ହୋଇଗଲା । ମହିପାଳ ନିଶାରେ ଅଛି, ଅବସାଦରେ ବୁଡ଼ି ରହିଛି । ସେ ନିଜ ଗତିରେ ପ୍ରବାହିତ ହେବ । ଏହା ଭାବି ଭାବି ସେ ଉଦାସୀନ ହୋଇଗଲା । ଯେତେବେଳେ ମହିପାଳ ନିଜ କଥାର ମର୍ମ ପ୍ରକାଶ କଲା—"ମୋର ମତଲବ ଜାତିଭେଦରେ ଯେତେଦିନ ପର୍ଯ୍ୟନ୍ତ ଭାରତବର୍ଷରେ ଏହି ଜଟିଳ ଜାତିଭେଦ ରହିବ ଆମେ ଲକ୍ଷେ ସୁଧାରିଲେ ମଧ୍ୟ ସମାଜକୁ "ମାନବସମାଜ ରୂପେ ପ୍ରତିଷ୍ଠିତ କରିବାପାଇଁ ଅସମର୍ଥ ହେବୁଁ ।"

"କିନ୍ତୁ ବର୍ତ୍ତମାନ ତ ଜାତିଭେଦ ବହୁତ ଦବି ଯାଇଛି ।"

"ସିଭିଲ ଲାଇନ୍‌ରେ ସଜ୍ଜନ ଗଲୀ ମହଲରେ ନୁହେଁ । ଶହେରେ ୨/୪ଟି ଏପରି ହୋଇଗଲେ ସାମାଜିକ ପରିବର୍ତ୍ତନ ହୁଏନାହିଁ ।"

“କିନ୍ତୁ ପୂର୍ବର ତୀକ୍ଷ୍ଣ ବିରୋଧ ଏବେ ତ ନାହିଁ ।” ସଜ୍ଜନ କହିଲା···ଅର୍ଥାତ୍ ଏହା ଠିକ୍ ଯେ, ମୁଁ ଜେଠେଇଙ୍କଠାରେ ବର୍ମା ଓ ତାଙ୍କର ସ୍ତ୍ରୀ ପାଇଁ ସଦୟ ବ୍ୟବହାର ପାଇଲି । କନ୍ୟା ପାଇଁ ମଧ୍ୟ ତାଙ୍କ ମନରେ ବିରୋଧ ରହିଛି । ସେ ତାଙ୍କୁ ତାଙ୍କ ପାଣି କଳସୀ ଛୁଇଁବାକୁ ଦିଏ ନାହିଁ ।

“ବର୍ମା ଅଥବା ତୁମ ପତ୍ନୀପାଇଁ ଜେଠେଇର ବିରୋଧ ଓ ଜାତି ରକ୍ଷାପାଇଁ ତାଙ୍କ ଦ୍ୱାରା ନିଜର ଖାଦ୍ୟପେୟ ଅଲଗା ରଖିବାରେ ସମାଜର ରହସ୍ୟ ଖୋଲିଯାଏ । କଳ୍ପନା କର ଯେ ଜେଠେଇ ତୁମେ ବର୍ମା ଓ ତୁମର ସ୍ତ୍ରୀ ଆଜିଠାରୁ ପଚିଶ ବର୍ଷ ପୂର୍ବେ ଜନ୍ମ ହୋଇ ଥାଆନ୍ତ ତେବେ ତୁମ୍ଭମାନେ ମଣିଗଲେ ମଧ୍ୟ ଜେଠେଇ ତୁମପ୍ରତି ସଦୟ ହୁଅନ୍ତା ନାହିଁ । ସେହି ସମୟରେ ଜାତି ବାହାରୁ ବିବାହ କରିବା ଏକ ଅକଳ୍ପନୀୟ କଥା ଥିଲା ଓ ଏଥିପାଇଁ ସାମାଜିକ ବ୍ୟବସ୍ଥା ମଧ୍ୟ ତା ପାଇଁ କଠୋର ଥିଲା । ଆରେ ପ୍ରଥମେ ଜେଠେଇ ତୁମମାନଙ୍କ ପାଇଁ ଜାଦୁର ପିତୁଳା ଗଢ଼ିଥିଲା । ଏହା ସେହି ପ୍ରାଚୀନ ସାମାଜିକ କଠୋରତାର ପରିଣାମ । ଆଜି ଧୀରେ ଧୀରେ ବଢ଼ି ସୁଧାର ଆନ୍ଦୋଳନ ବୁଢ଼ା ବାବାଜୀଙ୍କର ଜଳାକୁ ଅଧିକ ମାତ୍ରାରେ ପୋତି ଦେଉଛି । ଏଥିପାଇଁ ଯୁଗ ମୌନତା ସହିତ ତୁମକୁ ସ୍ୱୀକାର କରିନିଏ କିନ୍ତୁ ତୁମର ସିଦ୍ଧାନ୍ତକୁ ଆଜି ପର୍ଯ୍ୟନ୍ତ ସ୍ୱୀକାର କରୁନାହିଁ ।”

ଏହାହିଁ ତ ପ୍ରଶ୍ନ ଉଠେଯେ ନୂଆ ଯୁଗ ନୂଆ ସିଦ୍ଧାନ୍ତକୁ ସାର୍ବଜନୀନ ରୂପେ କିପରି ଗ୍ରହଣ କରିବ ।

“କୌଣସି ପ୍ରବଳ ଶକ୍ତିଶାଳୀ ଆନ୍ଦୋଳନ ଦ୍ୱାରା ଏଭଳି ଆନ୍ଦୋଳନ ଯାହାକି ବ୍ୟାପକ ରୂପେ ଜାତିର ବେଡ଼ିକୁ ଭାଙ୍ଗି ପାରିବ । ମହିପାଲ ଗୋଟିଏ ଗୋଟିଏ ଶବ୍ଦ ଖାଲି ଭାବି କହୁଥିଲା । ··· ··· “ଆଉ ଏହା ମଧ୍ୟ ଧ୍ୟାନରେ ରଖ ଯେ ଆନ୍ଦୋଳନ କାରୀମାନଙ୍କୁ ଭାରତ ବର୍ଷରେ କେତେଥର ହୋଇଥିବା ଜାତି ବିରୋଧରେ ଦୃଷ୍ଟି ନିଜ ମନରେ ରଖିବାକୁ ପଡ଼ିବ । ଏହି ଜାତିପାଇଁ କୌଣସି ସମୟରେ ଭାରତର ଶତ୍ରୁ ଆମର ନିରନ୍ତର ପତନର କାରଣ ହୋଇଛି । ମୋଟା ମୋଟି ତୁମେ ତାଠାରୁ ତାର ହିନ୍ଦୁ ଧର୍ମ ଛଡ଼େଇ ଆଣୁଛ ।”

“କଥା ଶେଷ ହୋଇଗଲା । ସଜ୍ଜନ ଗମ୍ଭୀର ହୋଇ ଭାବିବାକୁ ଲାଗିଲା । ମହିପାଲ ମଧ୍ୟ ନିଜ ଗିଲାସର ପେୟ ପ୍ଲେଟରେ ରଖି ଶେଷ କରିବାର ଚିନ୍ତାରେ ମୌନ ରହିଲା । କିଛି ସମୟପରେ ଉଭୟଙ୍କ ତରଫରୁ ହଠାତ୍ କିଛି କହିବାର ଇଚ୍ଛା ଜାଗ୍ରତ ହେଲା । ମହିପାଲ ନିଜ କଥା କହୁ କହୁ ଅଟକି ଗଲା, ସଜ୍ଜନକୁ କହିଲା ··· ···” କୁହ କୁହ ।

“ମୁଁ ନିଜ ଜୀବନକୁ ଏହି ସମାଜକୁ ବଦଳିବା ପାଇଁ ନିୟୋଗ କରିଛି । ମୁଁ ଏହାକୁ ନିଶ୍ଚୟ ବଦଳାଇବି । ସଜ୍ଜନର ଚେହେରାରେ ଦୃଢ଼ତା ଥିଲା ମହିପାଲ ତାଙ୍କୁ

ଦେଖୁଥିଲା, ହଠାତ୍ ସଜ୍ଜନର ମନେହେଲା ଯେ ମହିପାଳ ମଧ୍ଯ କିଛି କହିବାକୁ ଚାହୁଁଛି । ସେ ମହିପାଳଙ୍କୁ କହିଲା ... ...ହଁ କିଛି କହୁଥିଲ ମହିପାଳ ?"

ଏଁ ? ଓଃ "ମହିପାଳ ହସିଲା ।" ମୁଁ କହୁଥିଲି ଯେ ରୂପ ରତନ ମୋତେ କାର୍ ଦେବାପାଇଁ ପ୍ରତିଶ୍ରୁତି ଦେଇଛି । ଭାବୁଛି ଶକୁନ୍ତଳାର ବିବାହପରେ ନେବି, ନଚେତ୍ ପୁଅଘର ବାଲା ଏ ହୁଏତ ମୋଟର ଦେଖି ଏହାକୁ ଯୌତୁକ ରୂପେ ମାଗିବ ।"

କିଛି ସମୟପରେ ମହିପାଳ ଓ ସଜ୍ଜନ ନିଜ ନିଜର ରାସ୍ତାରେ ଚାଲିଗଲେ । ସଜ୍ଜନ ବହୁତ ଇଚ୍ଛା କରିଥିଲା ଯେ ସେ ମହିପାଳଙ୍କୁ ତାଘରେ ଅଥବା ଯେଉଁଠାରେ ସେ ଚାହିଁବ ପହଞ୍ଚାଇ ଦେବ କିନ୍ତୁ ମହିପାଳ ନିଜେ ଏକୁଟିଆ ଯିବାର ନିଶ୍ଚିତ ମୁଡ଼ରେ ପରିଷ୍କାର ରୂପେ ମନା କରିଦେଲା । ହୋଟେଲ ବାରଣ୍ଡା ତଳ ସଡ଼କ ଉପରେ ସଜ୍ଜନର ଗ୍ରେଟିଆ ଫୋର୍ଡ଼କାର ଛିଡ଼ା ହୋଇଥିଲା । ଯେତେବେଳେ ସଜ୍ଜନ ସହଜ ଭାବରେ ତାକୁ ନିଜ କାର୍‌ରେ ଛାଡ଼ି ଆସିବାକୁ କହିଲା ସେତେବେଳେ ମହିପାଳ ନିଜ ପିଛାକୁରେ ଛିଡ଼ାହେଲା । ତାକୁ ରୂପ ରତନର ଗ୍ରେଟ ଫିଏଟକାର କଳ୍ପନା ନେଶରେ ତାର ନିଜର ଭଳି ପ୍ରତୀତ ହେଲା । ରୂପ ରତନ ତାକୁ କହିଥିଲା ... ... "ଗୁରୁ, ତୁମେ ମହାନ ଲେଖକ, ଏଥିପାଇଁ ତୁମ ପାଖରେ ଗାଡ଼ି ରହିବା ଉଚିତ୍ ।" ମହିପାଳ ଏହି କଥାରକୁ ପସନ୍ଦ କଲା କିନ୍ତୁ ଆଠ ଦଶ ହଜାରର ଗାଡ଼ି ଖରିଦ୍ କରିବା ତା ପକ୍ଷରେ ସମ୍ଭବ ନ ଥିଲା । ବିନା ଆଳରେ ଦାନ ନେଇ ରୂପ ରତନ ପ୍ରତି କୃତଜ୍ଞ ରହିବା ମଧ୍ୟ ତାର ଚରିତ୍ରାର ବହିର୍ଭୂତ ଥିଲା । ରୂପରତନ ଅଢ଼େଇ ତିନି ହଜାରରେ ନିଜର ଗ୍ରେଟ ଗାଡ଼ି ବିକ୍ରି କରିବାର ପ୍ରସ୍ତାବ କଲା । ମହିପାଳର ମନ ରହିଗଲା । ଘରକୁ ଆସି ସେ କଲ୍ୟାଣୀ ସହିତ ଏ ଚର୍ଚ୍ଚା କରିଥିଲା । କାର୍‌ର ନାମ ଶୁଣିଲା କ୍ଷଣି ସବୁ ପିଲାଏ ଓ ତାଙ୍କର ମା ଆଦି ସମସ୍ତଙ୍କର ଖୁବ୍ ଇଚ୍ଛା ହେଲା । ମହିପାଳ ମିଛରେ କହିଲା ଯେ ରୂପ ରତନ ତାକୁ ପ୍ରକାଶୋନ୍ମୁଖୀ ବହିର ଏଡ଼ଭାନ୍‌ସ ରୂପେ କାର ଦେଉଛି । ଏହାପରେ କାର ଯଥା ଶୀଘ୍ର ଘରକୁ ଆସିବ । ଏ କଥା ଘର ବାଲାମାନଙ୍କୁ ପରମାବଶ୍ୟକ ମାଲୁମହେଲା । ବଡ଼ପୁଅ ଡ୍ରାଇଭିଂ ଶିଖିବାର ଯୋଜନା କରିବାକୁ ଲାଗିଲା । କଲ୍ୟାଣୀ କାର୍‌ର ମାସିକ ଖର୍ଚ୍ଚର ହିସାବ କରିବାକୁ ଲାଗିଲା । ମହିପାଳ କହିଲା ଯେ ସେ ରୂପ ରତନର ପ୍ରକାଶନ ବିଭାଗର କାମ ପ୍ରତିଦିନ ଘଣ୍ଟେ ଦୁଇଘଣ୍ଟା ଦେଖି ସେ ଗାଡ଼ିର ମୂଲ୍ୟ ପରିଶୋଧ କରିବ । ଏହାପରେ କିଛି ଭାବିବାର ଆବଶ୍ୟକତା ନଥିଲା । ପିଲାମାନେ ଆନନ୍ଦିତ ହେବାକୁ ଲାଗିଲେ, କିନ୍ତୁ କଲ୍ୟାଣୀର ଶକୁନ୍ତଳା ବିବାହ ପୂର୍ବରୁ ଗାଡ଼ି ଘରକୁ ଆଣିବାର ବ୍ୟବହାରିକ ଆପତ୍ତି କଲା । ତାକୁ ଭୟ ଥିଲା ଯେ କାର୍‌ର ବୈଭବ ଦେଖି ପୁଅବାଲା କୌଣସି ଆଳ କରି ହୁଏତ ଅନ୍ୟ କିଛି ଯୌତୁକ ମାଗି ପାରନ୍ତି । ମହିପାଳ ମଧ୍ୟ ଏହି କଥାରେ ଚୁପ ରହିଥିଲା । ଏହି ସମୟରେ ସଜ୍ଜନର ନିଜତ୍ୱ ଉପରେ ମହିପାଳର ନିଜତ୍ୱ ସବାର ହେଲା । ତାର ବାରମ୍ବାର ଅସମ୍ମତିରେ ମଧ୍ୟ ମହିପାଳ ଏକୁଟିଆ ରିକ୍‌ସାରେ ଯିବାକୁ ନିଶ୍ଚିତ କଲା । ନିଶା ଭିତରେ ତାକୁ ସନ୍ଧ୍ୟାର ଚାଲିବାର ହଜରତ ଗଞ୍ଜର

ବୈଭବ ନଜର ଭଲ ପ୍ରତୀତ ହେଲା । ପୁଜା ସିନେମା ଓ ତାର ଲମ୍ବା ଗ୍ରୁପର ସେ ପାଖରୁ ଦେଖା ଯାଉଥିବା ପ୍ରିନସ ସିନେମା ପର୍ଯ୍ୟନ୍ତ ନରନାରୀଙ୍କର ଚଳ ପ୍ରଚଳ ସୁସଜ୍ଜିତ ଦୋକାନର ବାରଣ୍ଡାରେ ଚଳ ପ୍ରଚଳ ଗ୍ରାମୀ ସୁସଜ୍ଜିତ ଭିଡ । ବସ, କାର, ସାଇକେଲର ରିକ୍ସାର ଯିବା ଆସିବାରେ ଚ୍ଛରଆଡ଼େ ଖେଳ ଯାଉଥିବା ଝଲକ ମହୁପାଳର ନିଶାର ଲିପି ଲାଲମାକୁ ଦ୍ୱିଗୁଣିତ କରୁଥିଲା । ସେ ଜଣେ ପାନ ଦୋକାନୀ ପାଖରେ ପୁରୁଣା ବଙ୍ଗଳା ପାନାମା ସିଗାରେଟ ପେକେଟ୍ ଓ ଡ଼ିଆସିଲ କିଣି ପକେଟ୍‌ରେ ରଖିଲ, ଦୋକାନର ଦର୍ପଣରେ ନିଜର ବିଳାସି ନିଶାଯୁକ୍ତ ଶୋଭାକୁ ଦେଖିଲ ଓ ମହାତ୍ମାଗାନ୍ଧୀଙ୍କ ମନ୍ଦିର ସମ୍ମୁଖସ୍ଥ ସଡ଼କ ଉପରେ ଯାଉଁ ଯାଉଁ ଗୋଟିଏ ଖାଲି ରିକ୍ସାକୁ ଡାକିଲା । ରିକ୍ସାବାଲା ମହୁପାଳ ଆଡ଼କୁ ଥରେ ଦେଖି ଆଗକୁ ଚ୍ଛଲିଲା । ମହୁପାଳର ଚେହେରାରେ ଉଦ୍‌ବିଗ୍ନ ହୋଇ ଉଠିଲ । ତାର ଇଚ୍ଛା ହେଲା ଯେ ରିକ୍ସାବାଲାକୁ ଧରି ହଣ୍ଟରରେ ଖୁବ୍ ପିଟନ୍ତା । ନିଶା ବାଉରେ ପାଦରେ ଚ୍ଛଲି ଚ୍ଛଲି ଯିବାକୁ ସେ ପସନ୍ଦ କରୁନଥିଲ । କାର୍‌ର ମୁଡ଼୍ ଓ ଗୋଟିଏ ଛୋଟିଆ ରିକ୍ସାବାଲା ଏଭଳି ଆଦେଶ ଲଙ୍ଘନ କରି ଚ୍ଛଲିଯିବା ତାର ଉଦ୍‌ବେଗକୁ ଉତ୍ତେଜନାର ଶିଖର ଉପରେ ପହଞ୍ଚେଇ ଦେଲା । ଇଚ୍ଛାହେଲା, ଏହିକ୍ଷଣି ଯାଇ ସେ ରୂପ ରତନ ସହିତ କାର୍ କିଣିବାର ବ୍ୟବସ୍ଥା କରିନେବ । ଫଳବାଲାଙ୍କ ଦୋକାନ ନିକଟରେ ପହଞ୍ଚୁ ପହଞ୍ଚୁ ତାକୁ ଆଉ ଗୋଟିଏ ଖାଲି ରିକ୍ସା ଦେଖାଗଲା ...... " ଖାଲିଅଛ ? ...... ନା, ବାବୁ, ...... ମହୁପାଳର ନିଜ ଗାଡ଼ି ପାଇଁ ଜିଦ୍ ଆହୁରି ତୀବ୍ର ହୋଇଉଠିଲା । ରିକ୍ସାବାଲାକୁ ଚ୍ଛପଡ଼ ମାରିବା ଓ ଗାଳି ଦେବାର ଇଚ୍ଛା ମଧ୍ୟ ତୀବ୍ର ହେଲା କିନ୍ତୁ ହୋଶ ତାର ଥିଲା ଯେ, ସେ ଏପରି କିଛି ନ କରୁ । ସଡ଼କ ପାରିହୋଇ ନରହରି ରାସ୍ତା ପାଖରେ ପହଞ୍ଚି ମଧ୍ୟ ରିକ୍ସା ବାଲାକୁ ଡାକିବା ଅପେକ୍ଷା ପ୍ରତିଶୋଧ ନେବାର ଭାବନାରେ ଥିଲା ଓ ଗୋଟିଏ ଘୋଡ଼ା ଗାଡ଼ିରେ ଚଢ଼ିଲା । ବର୍ତ୍ତମାନ ଏଠି ସେଠି ବୁଲିବାର ଇଚ୍ଛା ତା'ର ନଥିଲା । ତା ସାମ୍ନାରେ ଏକ ନିଶ୍ଚିତ ଉଦ୍ଦେଶ୍ୟ ଥିଲା ଯେ ତାକୁ ରୂପରତନ ପାଖରୁ ତାକୁ କାର୍ ନେବାକୁ ହେବ ।

ଘୋଡ଼ାଗାଡ଼ି ଉପରେ ଆରାମରେ ଅଧାଶୋଇ ଥିବା ମହୁପାଳ ନିଜର ଆଖି ପାଖରେ ଯାଇଥିବା କାର୍‌ଗୁଡ଼ିକ ଦେଖି ଏହି ସମୟରେ କ୍ଷୁବ୍ଧ ହେଉନଥିଲା । ଏହି ସଡ଼କ ଉପରେ ଦିନେ ମହୁପାଳର ଗାଡ଼ି ମଧ୍ୟ ଆଗକୁ ପଛକୁ ଚ୍ଛଲୁଥିବାର ଦେଖାଯିବ । ...ଏହି ଆଗରେ ଆସୁଥିବା ଗ୍ରେଟ ଗାଡ଼ିରେ ଯେଉଁଭଳି ଆଗ ସିଟ୍ ଉପରେ ସ୍ତ୍ରୀ ପୁରୁଷ ବସିଛନ୍ତି, ଯେଉଁମାନେ ସମ୍ଭବତଃ ପତି ପତ୍ନୀ ହେବେ...କୌଣସି ଦିନ ମୁଁ ମଧ୍ୟ କଲ୍ୟାଣୀ ସହିତ ଏଭଳି ଏ ଚଳନ୍ତା ଆସନ୍ତେ ମହୁପାଳକୁ ଏହା ମଧ୍ୟ ଲାଗିଲା ଯେ, କଲ୍ୟାଣୀ ସହିତ ଯାହାରେ ତାକୁ ପ୍ରକୃତରେ କିଛି ମଜା ମିଳି ପାରିବ ନାହିଁ । କଲ୍ୟାଣୀ ପୁରୁଣା କାଳିଆ ସ୍ତ୍ରୀ ଲୋକ । ଅନେକ ଥର ସେ ଶୀଳା କାର୍‌ରେ ବସି ଯାଇଛନ୍ତି । ମହୁପାଳକୁ ଶୀଳାର ସ୍ମୃତି ମନେ ପଡ଼ିଲା । ଶିଳା ତାର କିଛି ଅପରାଧ କରିନାହିଁ । ସେଦିନ ସଙ୍ଗୀତର କୋଠରୀରେ ଶୀଳା ତାର କେତେ ପ୍ରଶଂସା କରିଥିଲା । ତାକୁ ଏହା ମଧ୍ୟ ବୋଧ ହେଲା

ଯେ ଶୀଳା ସହିତ ସମ୍ବନ୍ଧ ବିଚ୍ଛେଦ କରି ସେ ବଡ଼ ଗୁରୁତର ଅନ୍ୟାୟ କରୁଛି ଓ ଏହି ଚିନ୍ତା ସହିତ ତାର ଏହା ମଧ୍ୟ ଶଙ୍କା ହେଲା ଯେ ଶୀଳା ସହିତ ସମ୍ବନ୍ଧ ସ୍ଥାପିତ ହେଲେ ସମାଜ ପତିମାନେ ଏହା ଭାବିବେ ଯେ ଏ ସମସ୍ତ ବୈଭବ ଶୀଳାର । ମହୀପାଳ କେବଳ ଏଥିପାଇଁ ବିଚଳିତ ହୋଇ ଉଠିଥିଲା । ରୂପରତନ ସହିତ ରହି ପଇସା ଅର୍ଜନ କରୁ କରୁ ଯଦି କେହି ତାକୁ ବାଧା ଦିଏ ତେବେ ଏତେ କିଛି କ୍ଷତି ନୁହେଁ । ଅନେକ ଲେଖକ ଅନ୍ୟ ସହିତ ଏହିଭଳି ଆର୍ଥିକ ବ୍ୟବହାରିକ ବନ୍ଧୁତା କରନ୍ତି କିନ୍ତୁ କୌଣସି ନାରୀ ସହିତ ରହି ତାହାଦ୍ୱାରା ଧନ ଅର୍ଜନ କରିବାର କଳଙ୍କ ମହୀପାଳକୁ କେବେହେଲେ ଭଲ ଲାଗି ନ ପାରେ । ସେ ଶୀଳା ସହିତ ଏଥିପାଇଁ ୨ୟ ଥର ସମ୍ବନ୍ଧ ସ୍ଥାପିତ କରିବାକୁ ଚାହେଁ ନାହିଁ । ଘୋଡ଼ାଗାଡ଼ି ନଗରୋଳା ରାସ୍ତାରେ ଦୌଡ଼ୁଥିଲା । ମହୀପାଳର ମନ ଶୀଳାର ପ୍ରସଙ୍ଗକୁ ନେଇ ବିଚଳିତ ହେଉଥିଲା ଯେ ତାକୁ ଲାଗୁଥିଲା ଯେ ମନୁଷ୍ୟର ପ୍ରେମଠାରୁ ବଳି ସେ ଏଭଳି ଯେଉଁ ଲୌକିକ ବୈଭବକୁ ମାନୁଛି ତାହା ଅନ୍ୟାୟ । କାର୍, ବଙ୍ଗଳା ଚାକର-ଚାକରାଣୀ ଓ ନାନା ପ୍ରକାରର ଆର୍ଥିକ ବୈଭବର ସୁଖ ଓ ଆରାମ ହୁଏତ ଆଇପାରେ କିନ୍ତୁ ମହତ ଭାବନା ଓ ବିଚାର ଆଗରେ ସେଗୁଡ଼ିକର କୌଣସି ମୂଲ୍ୟ ନାହିଁ । ନିଜର ନୂତନ ଯୌବନାବସ୍ଥାରେ ମହୀପାଳ, ଜଣା ନାହିଁ କେତେଥର ଯେ ସିଦ୍ଧାନ୍ତ ପାଇଁ ଆର୍ଥିକ ବୈଭବକୁ ପଦ ଦଳିତ କରିଛି ତାର କଳନା ନାହିଁ । ସେ କେବଳ ସିଦ୍ଧାନ୍ତ ପାଇଁ ନିଜ ମାମୁଁ ଘରର ବୈଭବ ଛାଡ଼ିଥିଲା । ରୂପରତନ ସହିତ ମଧ୍ୟ ସମ୍ପର୍କ ତ୍ୟାଗ କଲା, ଭାଇ ବିବାହରେ ଯୌତୁକ ନେଲାନାହିଁ ଭାଇର ଉନ୍ନତି ପାଇଁ ନିଜ ପତ୍ନୀର ଗଞ୍ଜଣା ପର୍ଯ୍ୟନ୍ତ ବର୍ଜି କରିବାରେ ତାର ଦ୍ୱିଧା ନଥିଲା । ସେହି ମହୀପାଳ ଆଜି ଆର୍ଥିକ ବୈଭବ ପାଇଁ କେତେବଡ଼ ମହାନ ସିଦ୍ଧାନ୍ତ ତ୍ୟାଗ କରି ପାରିଲା ? ସେ କେତେ ପତିତ ହୋଇ ଗଲା । ମାସ ମାସ ବିତିଗଲା ସେ ଗୋଟିଏ ହେଲେ ଅକ୍ଷର ଲେଖିପାରିନାହିଁ, କେବଳ ନିଜ ଘରେ, ନିଜର ଗୃହପାଟରେ ପ୍ରତ୍ୟେକ ଅଙ୍ଗେ ଲକ୍ଷ୍ମୀଙ୍କର ଆଡମ୍ବର ସଜାଇବାରେ ତାର ଦିନ ଅଧିକତର ଚାଲିଯାଏ । ତାର ଉପନ୍ୟାସ ଯାହାକୁ ଆରମ୍ଭ କରି ସେ ଭାବିଥିଲା ଯେ ଏହା ତାର ଅନୁପମ ରଚନା ହେବ, ଆଜି ପର୍ଯ୍ୟନ୍ତ ଅପୂର୍ଣ୍ଣ ହୋଇ ପଡ଼ି ରହିଲା । କେତେଥର ତାର ଇଚ୍ଛା ମଧ୍ୟ ହୋଇଛି ଯେ ସେ ତାକୁ ଲେଖି ବସିବ । କିନ୍ତୁ ଏବେ ତାର କଳ୍ପନା ଶକ୍ତି ସତେ ଯେପରି ବିକ୍ଷିପ୍ତ ହୋଇ ଯାଇଛି ଓ ସଜ୍ଜନ କ୍ରମଶଃ ପ୍ରସିଦ୍ଧି କ୍ଷେତ୍ରରେ ଆଗକୁ ବଢ଼ୁଛି । ସଜ୍ଜନ ଏବେ ଏତେ ଶୀଘ୍ର ଖ୍ୟାତି ଅର୍ଜନ କରିଛି ଯେ ମହୀପାଳ ତାର ସମକକ୍ଷ ହୋଇ ପାରୁନାହିଁ । ମହୀପାଳକୁ ଏଥିପାଇଁ ଈର୍ଷା ହେଉଛି କିନ୍ତୁ ଏ ଈର୍ଷା ଅକର୍ମଣ୍ୟ । ବଢ଼ୁଥିବା ସମାଜ ଲୋକଙ୍କର ଈର୍ଷା ଜନିତ ବିରୋଧକୁ କେବେହେଲେ ବିଶେଷ ମହତ୍ତ୍ୱ ଦିଏ ନାହିଁ । କାଲି ଯେଉଁ ଲେଖା ସଜ୍ଜନର ସାମାଜିକ ଆନ୍ଦୋଳନକୁ ବିରୋଧ କରି ଲେଖାଯାଇଥିଲା ତାହା ଅଧିକ ଯୁକ୍ତି ପୂର୍ଣ୍ଣ ହେଲେ ମଧ୍ୟ ଏହା ସମ୍ପୂର୍ଣ୍ଣ ଅସଙ୍ଗତ । ମହୀପାଳ ଲେଖିଥିଲା ଯେ ଏହି ପ୍ରକାରର ସାମାଜିକ କଳୁଷତାର

ଉଦ୍‌ଘାଟନ ହେଉଥିଲେ ସମାଜରେ କେବଳ କଳୁଷ ହିଁ କଳୁଷ ବାହାର ଆସିବ । ଏ କଥା ତାଙ୍କୁ ଏ ସମୟରେ ମଧ୍ୟ ପୂର୍ଣ୍ଣତଃ ଠିକ୍ ମନେ ହେଉଛି କିନ୍ତୁ ଏଥି ସହିତ ମହିପାଳ ଏହା ମଧ୍ୟ ଜାଣେ ଯେ ସଜ୍ଜନ କେବଳ କଳୁଷତାର ଉଦ୍‌ଘାଟନ କରିବା ଦୃଷ୍ଟିରେ କାମ କରୁନାହିଁ । ସେ ଏହି ସମୟରେ ବାବା ରାମଜୀଙ୍କର ରଚନାତ୍ମକ ବୃତ୍ତିରୁ ପ୍ରେରଣା ପାଉଛି । କନ୍ୟାର ସହଯୋଗ ମଧ୍ୟ ତା ପାଇଁ ବିନାଶକ ନୁହେଁ ବରଂ ରଚନାତ୍ମକ ଓ ଆଜିର ଉଥାରେ ସଜ୍ଜନର କଳ୍ପିତ ନିଷ୍ଠୁର ତାର ନିଷ୍କପଟ ସିଦ୍ଧାନ୍ତ ବାଦିତାର ପରିଚୟ ତାଙ୍କୁ ସ୍ପଷ୍ଟ ରୂପେ ମିଳିଛି । ଯେଉଁ ଠାରେ ସିଦ୍ଧାନ୍ତକୁ ନିଷ୍କପଟ ରୂପେ ଆବରଣ ଭିତରକୁ ଅଣାଯାଏ ସେଠାରେ ବିନାଶାତ୍ମକ ବୃତ୍ତି କାର୍ଯ୍ୟ କରେନାହିଁ । ମହିପାଳ ନିଜ ମନରେ ଏହି ସମୟରେ ଯେତେ ସ୍ପଷ୍ଟ ହୋଇଉଠିଲା ସେତେ ତାର ଆତ୍ମଗ୍ଲାନି ମଧ୍ୟ ବୃଦ୍ଧିପାଉଥିଲା । ସେ କେଉଁଠାକୁ ଯାଉଛି ? କେଉଁ ଦିଗ ଆଡ଼କୁ ଗଡ଼ିକଲା ? ଏ ସବୁ କଣ ହେଉଛି ? ହେ ଭଗବାନ । ବଦଳୁଥିବା ଦେଶ କାଳ ଓ ସମାଜରେ ଏହି ସମୟରେ ମୋଟରବାଲା ମହିପାଳର ଆବଶ୍ୟକତା ଅଛି ନା କଲମ ଧାରୀ ଲେଖକର ? ଗୋସ୍ୱାମୀ ତୁଳସୀ ଦାସ ଯଦି ଆର୍ଥିକ ବିଭବର ମାୟାରେ ପଡ଼ି ରହିଯାଇ ଥାଆନ୍ତେ ତେବେ ତାଙ୍କୁ ଆଜି କିଏ ମନେ ପକାନ୍ତା ? ଆକବରଙ୍କର ସମ୍ଭୋଗ ପାଇଁ ତୁଳସୀ କେବେହେଲେ "ତିନ୍ ଗାଠ କୌପିନ ମେଁ ଦିନ୍‌ଭାଜୀ ବିନ୍ ଲୌନ" କହି ପାରି ନ ଥାନ୍ତା । କିଣା ନାହିଁ ମହିପାଳ କେତେ ଦୁଃଖର ବିଷମ କ୍ଷଣରେ ଏହି ଦୋହା ଦ୍ୱାରା ସନ୍ତୋଷ ବଳ—ଆତ୍ମବଳ ପାଇଛି—

ତୀନ ଗାଁଠ କୌପିନ ମେଁ ଦିନ୍‌ଭାଜୀ ବିନ୍ ଲୌନ୍ ।
ତୁଳସୀ ମନ ସନ୍ତୋଷ ଜୋ ଇନ୍ଦ୍ର ବାପୁରୌ କୌନ ।

ଦୀର୍ଘ ନିଶ୍ୱାସ ଛାଡ଼ି ସଜ୍ଜନ ସ୍ପଷ୍ଟ ସ୍ୱରରେ ଗୁଣୁଗୁଣୁ ହେଲା । ଏହି ସମୟ ତୁଳସୀଙ୍କର ଏହି ଦୋହା ଗୋଟିଏ ବିଗତ ଇଚ୍ଛାହୀର ଶୋକ ପ୍ରସ୍ତାବ ମାତ୍ର ଭଳି ଉଚ୍ଚାରିତ ହେଲା । ମହିପାଳ ନିଜ ମନେମନେ କ୍ଲାନ୍ତ ହୋଇ ଥିବାର ଅନୁଭବ କରୁଥିଲା । ଏହି କ୍ଳାନ୍ତ ମଧ୍ୟରେ ନିଜ ବ୍ୟାଙ୍କ ଜମା ଅଢ଼େଇଲକ୍ଷ ହଜାର ଟଙ୍କା କଥା ତାର ମନେ ପଡ଼ିଲା । ସେ ରୂପ ରତନର ଘରକୁ ଗାଡ଼ି ମୂଲାଇବାପାଇଁ ଯାଉଅଛି । ଜେମ୍ ସମାଜ, ଜେମ୍ ସିଦ୍ଧାନ୍ତ । ଋଣ ନେଇ ଘିଅ ସିଦ୍ଧାନ୍ତରେ ଚାର୍ବାକଙ୍କର ଏହି ସିଦ୍ଧାନ୍ତ ସର୍ବ ଶ୍ରେଷ୍ଠ ।"

ସେ ନିଜର କ୍ଲାନ୍ତ ମନକୁ କର୍ମକ୍ଷମ କରିବା ପାଇଁ ଇଚ୍ଛା କଲା କିନ୍ତୁ ସେ ବୁଝିପାରିଲା ନାହିଁ । ସେ ବୁଝିପାରିବ ନାହିଁ, ସେଥିପାଇଁ ତାଙ୍କୁ ଗୋଟିଏ କାର ଦରକାର । ଗ୍ରେଟ ବଙ୍ଗଳାଟିଏ ଦରକାର । ତାଙ୍କୁ ବୈଭବପୂର୍ଣ୍ଣ ଆଦାନ ପ୍ରଦାନ ବାଲା ଗୃହସ୍ଥ ଦରକାର । ତାଙ୍କୁ ତିନ ଗାଣ୍ଠି କୌପିନବାଲା ଦର..କା···ର ନାହିଁ । ସିଦ୍ଧାନ୍ତବାଦୀ ଲେଖକ ମହିପାଳ ଶୁକ୍ଲ ତାର ଚେତନାରେ ଏହି ସମସ୍ୟାକୁ ସ୍ପଷ୍ଟରୂପେ ମୁକ୍ତ ଦୃଷ୍ଟିରେ ଦେଖିଥିଲା । ମହିପାଳ ମରିଗଲା, ଏହା ଭାବି ତାର ମନ କ୍ରନ୍ଦନ କରିଉଠିଲା । ଗଡ଼ାଣୀରେ ତାହାର ଆଡ଼କୁ ବୁଲି ଘୋଡ଼ାଗାଡ଼ିଟି ରୂପ ରତନର ପ୍ରାସାଦ ସାମ୍ନାରେ ଅଟକି ରହିଲା ।

# ସତ୍ୟାନାଶ

ଜେଠେଇ ଘରେ ଭଗବତୀ ରାଧାଙ୍କର ବିବାହ ପ୍ରସ୍ତୁତି ବଡ଼ ଧୂମ-ଧାମରେ ହେଉଅଛି, ବାବା ରାମଜୀଙ୍କର ଭଗବାନ କୃଷ୍ଣ ବିବାହ ହେବାକୁ ଆସିବେ । ଦୂର ଦୂର ପର୍ଯ୍ୟନ୍ତ ଗଳି ମହଲ୍ଲା ଆଡ଼ରେ ରାଧାକୃଷ୍ଣଙ୍କର ବିବାହ ଚର୍ଚ୍ଚାରେ ଦୈନିକ ଜୀବନରେ ମନୋରଞ୍ଜନ ଓ ନୂଆ ସ୍ଫୂର୍ତ୍ତି ଆସିଯାଇଛି । ହସି ହସି ବଡ଼ ଉତ୍ସାହର ସହିତ ଲୋକମାନେ ଜେଠେଇର ଏହି ଉତ୍ସବ ଆୟୋଜନର ଚର୍ଚ୍ଚା କରୁଛନ୍ତି । ଏପରିକି ଖବର ପ୍ରଚାର ହୋଇଛି ଯେ ଏହି ବିବାହରେ ଜେଠେଇର ପଚାଶ ହଜାର ଟଙ୍କା ଖର୍ଚ୍ଚ ହେବ । ମଇଳା ଚିରିଚାଡ଼ିଆ ଲୁଗା ପିନ୍ଧି, ସର୍ବଦା ରାକ୍ଷସୀ ଭଳି ଦେଖାଯାଉଥିବା ଜେଠେଇ ଯାହାଙ୍କର ଚତୁଃପାର୍ଶ୍ୱରେ ଗାଳି, ଅଭିଶାପ ଓ ଘୃଣା ରାଜୁଡ଼ି ମାୟାଜାଲ ଘେରି ରହିଛି, ଯାହାଙ୍କୁ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଚିଡ଼ାଇ ଆବାଳ ବୃଦ୍ଧ ବନିତା ସମସ୍ତେ ସୁଖ ପାଆନ୍ତି, ସେହି ଜେଠେଇ ପଚାଶ ହଜାରର ସମ୍ପତ୍ତି ଖର୍ଚ୍ଚ କରି ଉତ୍ସବ ପାଳନ କରୁଛି, ଏ ସମାଚାର ସମସ୍ତଙ୍କୁ ପ୍ରଲୋଭିତ ମଧ୍ୟ କରୁଥିଲା । କିଭଳି କି ବ୍ୟବସ୍ଥାର ଆଳରେ ପଚାଶ ଶହେ ଟଙ୍କା ହାତକୁ ଆସିଯିବ ଏହାର ସ୍କିମ ମଧ୍ୟ ତିଆରି ହେବାକୁ ଲାଗିଲା କିନ୍ତୁ ସେଠାରେ କାହାର କାରୁ ଖଟି ନଥିଲା । ଟଙ୍କା ପଇସାର ସମସ୍ତ ପ୍ରବନ୍ଧ ସଜ୍ଜନ ହାତରେ ଥିଲା । ଭିତର, କାମ-ଦାମ ଜେଠେଇ ବୟସର ୨।୩ ଜଣ ବୁଢ଼ୀ ସମ୍ଭାଳୁଛନ୍ତି, କନ୍ୟା, ଭାଇ ଓ ଜ୍ୟେଷ୍ଠ ବୋହୂଙ୍କୁ ରୋଷେଇ ଅଥବା ଭଣ୍ଡାର ଘରର କିଛି କାମ ମିଳିଲା ନାହିଁ, କାରଣ ତାଙ୍କର ଧର୍ମ ଭ୍ରଷ୍ଟ ହୋଇଛି । ତଥାପି ଜେଠେଇ କନ୍ୟାକୁ ହିସାବ କିତାବ, ଜିନିଷପତ୍ରର ରକ୍ଷଣାବେକ୍ଷଣର ପୂରା କାମ ସମର୍ପଣ କରିଥିଲେ ।

ପୂରା ମହଲ୍ଲା ବିବାହର କାମଧନ୍ଦାରେ ସରଗରମ । ଚୁଲିରେ ବୁଢ଼ୀମାନେ ମହଣ ମହଣ ମିଠେଇ ତିଆରି କରୁଛନ୍ତି । ବରଯାତ୍ରୀମାନଙ୍କୁ ଖଣ୍ଡିଏ ଖଣ୍ଡିଏ ଧୋତି ବିଦାୟ ସ୍ୱରୂପ ମିଳିବ । ଗଣ୍ଡି ଗଣ୍ଡି ଧୋତି ଆସୁଛି । ସେଗୁଡ଼ିକୁ ଭଣ୍ଡାର ଘରେ ରଖାଇ ସେଠାକାର ଚାବିକାଠି ଜେଠେଇକୁ ଦେବାର କାମ ବନକନ୍ୟାକୁ ମିଳିଛି । ଜେଠେଇ ସମସ୍ତ ଜ୍ଞାତି କୁଟୁମ୍ବ ସମ୍ବନ୍ଧୀଙ୍କୁ ନିମନ୍ତ୍ରଣ କରିଛନ୍ତି । ନଗର ସୌରୁଣୀ ଘରକୁ ମଧ୍ୟ ସେ ତ କାର୍ଡ଼ ପଠାଇଛନ୍ତି । ରାଜା ସାହେବଙ୍କୁ ମଧ୍ୟ ନିଜେ ସଜ୍ଜନ ମାର୍ଫତରେ କନ୍ୟା ଦାନ କରିବାରେ ପ୍ରସ୍ତାବ ଜେଠେଇ ପଠାଇଥିଲେ କିନ୍ତୁ ରାଜା ସାହେବ ଏହା କହି ଅସ୍ୱୀକାର କରିଦେଲେ ଯେ ବର୍ତ୍ତମାନ ସେ ମାୟାମୋହ ତ୍ୟାଗ କରି ସାରିଛନ୍ତି ।

ସେ କୌଣସି ଲୌକିକ କାମ ଧନ୍ଦାରେ ମିଶି ପାରିବେ ନାହିଁ । ଜେଠେଇ ସୁଧାଙ୍କୁ କନ୍ୟାଦାନ ଦେବାକୁ ଗୁହୁଁ ଛନ୍ତି । ଏହା ତାଙ୍କର ବଡ଼ ଅଭିଳାଷ । ଯଦି ତାଙ୍କର ଝିଅ ବଞ୍ଚିଥାନ୍ତା, ରାଜା ସାହେବଙ୍କ ସହିତ ସେ କନ୍ୟା ଦାନ କରିଥାନ୍ତା । କିନ୍ତୁ ଝିଅ ନାହିଁ । ସୁଧାଙ୍କ ମଧ୍ୟ ଝିଅଭଳି । ଭୁବନମୋହିନୀ ମହାମାୟାଙ୍କର କନ୍ୟାଦାନ କରିବାଠାରୁ ବଡ଼ ପୁଣ୍ୟ ଆଉ କଣ ଥାଇପାରେ ? କିନ୍ତୁ ରାଜା ସାହେବ ଜେଠେଇର ପ୍ରସ୍ତାବକୁ ଅସ୍ୱୀକାର କଲେ । ପତିଙ୍କ ବିନା ପତ୍ନୀ କନ୍ୟାଦାନ କିପରି ଦାନ କରିବେ, ଏହି ବିବଶତା ଜେଠେଇକୁ ବ୍ୟଥିତ କରିବାକୁ ଲାଗିଲା···" ନ ଆସନ୍ତୁ ଅଲଗେଇଣା ମୋର କୌଣସି କାମକାର୍ଯ୍ୟରେ କଣ ଆସିବ ? ମୋର ଭାଗ୍ୟର ଏପରି କଷ୍ଟ ଅଛି । ମୋଭଳି ସଂସାର ଅଭିଶାପ···" ଜେଠେଇ କୌଣସି ଭସ୍ମଙ୍କର ଶାପ ଦେଉଁ ଦେଉଁ, ଜଣାନାହିଁ ମନର କେଉଁ କୋଣରେ ବାଧା ପାଇଁ ବନ୍ଦ ହୋଇଗଲା । ତାଙ୍କର ଆଖିରେ କ୍ରୋଧର ଜ୍ୱାଳା ପରିବର୍ତ୍ତେ କରୁଣାର ଉଦ୍ରେକ, ଜେଠେଇ ଆଖି ପୋଛି ପୋଛି ଆଉ ଅନ୍ୟାନ୍ୟ କାମରେ ଲାଗିଗଲେ ।

ରାଜା ସାହେବ ଏବେ ନିଜର ଗୋଟିଏ ଶଙ୍ଖମଲମଲ ପଥରରେ ମୂର୍ତ୍ତି ବନାଉଛନ୍ତି । ଶଙ୍ଖ ମଲମଲ ପଥର କିଣି ରଖିଛନ୍ତି । ବଗିଚ୍ଛର ଠିକ୍ ମଝିରେ ତିଆରି ହୋଇଥିବା ବେଦୀ ଭଳି ଉଚ୍ଚ ଓ ବହୁତ ବଡ଼ ଚବୁତର ବନାଉଛନ୍ତି, ଯାହାର ଚାରି କୋଣରେ ଶଙ୍ଖ ମଲମଲର ସନ୍ତ୍ରୋଷୀ ମୂର୍ତ୍ତି ବନା ହେବ । ରାଜା ସାହେବଙ୍କର ଇଚ୍ଛା ଯେ ଏହି ଚବୁତ୍ରା ଉପରେ ତାଙ୍କର ଅନ୍ତ୍ୟେଷ୍ଟି ସଂସ୍କାର ହେବ । ଏହା ବ୍ୟତୀତ ସେହି ସ୍ଥାନରେ ଶଙ୍ଖ ମଲମଲରେ ଗୋଟିଏ ବଡ଼ ମଣ୍ଡପ ତିଆରି ହେବ ଯେଉଁଥିରେ ରାଜା ସାହେବଙ୍କର ମୂର୍ତ୍ତି ପ୍ରତିଷ୍ଠିତ ହେବ । ମଣ୍ଡପର ନକ୍‌ସା ତିଆରି ସରିଛି, ରାଜା ସାହେବଙ୍କ ଇଚ୍ଛାପତ୍ର(ଓ୍ୱାଲ)ରେ ତାର ଖର୍ଚ୍ଚ ମଧ୍ୟ ମିଶାଯାଇଛି । ମରିବା ପରେ ମଧ୍ୟ ରାଜା ସାହେବଙ୍କ ମହିମା ବିସ୍ତୃତ ରହୁ ଏହା ତାଙ୍କର ହାର୍ଦ୍ଦିକ ଇଚ୍ଛା । ମରିବା ପରେ ମଧ୍ୟ ତାଙ୍କର ଦେହ ସର୍ବସାଧାରଣଙ୍କ ଶବ ଦାହ ହେଉଥିବା ସ୍ଥାନରେ ନ ହୋଇ ତାଙ୍କର ଅନ୍ତ୍ୟେଷ୍ଟି ସଂସ୍କାର ପାଇଁ ନିଜର ବଗିଚ୍ଛକୁ ବାଛିଛନ୍ତି ଓ ମାୟା ମୋହରୁ ରହିତ ହୋଇ ସେ ନିଜର ମରଣୋତ୍ତର ବୈଭବର ପ୍ରସ୍ତୁତି ପାଇଁ ଲାଗିଛନ୍ତି ।

'ତିଲକ ଗ୍ରହଣ ପ୍ରଥା' ଦିନରେ ବଡ଼ ଭିଡ଼ ହେଲା ।। ଲାଲ ମୁକୁନ୍ଦୀ ମଲର ଘର ପାଖ ଉଁଚା ପଡ଼ିଆରେ ସବୁର ଆୟୋଜନ ହେଲା ।। ଜେଠେଇର ଇଚ୍ଛାଥିଲା ଯେ, ଯେଭଳି ତାର ସହଚାରୀର ପୁଅର 'ଟିକା' ଉତ୍ସବରେ ଅତ୍ୟନ୍ତ ସୁସଜ୍ଜିତ ଢଙ୍ଗରେ ସବୁ ହୋଇଥିଲା ସେହିଭଳି, କିମ୍ବା ତା ଠାରୁ ବଳି ଆକର୍ଷଣୀୟ ସବୁ ତାଙ୍କର ସେଠାରେ ହେଉ ।। ସହରର ନିଷ୍ଣାତଙ୍କରେ ବହୁତ ସୁନ୍ଦର ମଣ୍ଡପ ସଜା ଯାଇଥିଲା ।। ଉଚ୍ଚ ପଡ଼ିଆର ଚାରିପାଖରେ ତାଲ ପତ୍ରର ଚାମ୍ପଡ଼ାରେ ବୃହଦାକାର ଓ ଦକ୍ଷିଣୀ ମନ୍ଦିରର ଗୋପୁରମ୍

ଡିଜାଇନ୍‌ରେ ତିନୋଟି ଫାଟକ ତିଆରି କରାଗଲା । ଭିତରେ ଭଗବାନଙ୍କ ମଣ୍ଡପ କିଣ ହୋଇଥିଲା ? ଏଭଳି ଲାଗୁଥିଲା ସତେ ଯେପରି ସମ୍ପୂର୍ଣ୍ଣ ବ୍ରଜ ମଣ୍ଡଳ ଉଠାଇ ଏଠାକୁ ଅଣାଯାଇଛି । ଗୋଟିଏ ପାଖରେ ବୃନ୍ଦାବନର ଘାଟ ଓ ମନ୍ଦିରଗୁଡ଼ିକର ଏଡ଼େଇ, ତା ପାଖରେ ପ୍ରାଚୀନ ମଥୁରାର ମଡ଼େଲ ଥିଲା । ଅନ୍ୟ ପାଖରେ ଗୋକୁଳ ନନ୍ଦଗାଁ, ବରଷାନା ବନାଇସ ଯାଇଥିଲା । ଏ ସମସ୍ତ ପଛରେ ଗୋବର୍ଦ୍ଧନ ପର୍ବତ, ଯାହା ଉପରେ କେଉଁଠି ମାନସୀ ଗଙ୍ଗା କେଉଁଠି ରାଧାକୁଣ୍ଡ, କୃଷ୍ଣକୁଣ୍ଡ, କୁସୁମ ସରୋବର ଆଦି ତିଆରି ହୋଇଥିଲା । ମଝିରେ ଗୋବର୍ଦ୍ଧନ । ବହୁତ ସୁନ୍ଦର ମଣ୍ଡପ ବନାଇ ସେଥିରେ ଶ୍ରୀକୃଷ୍ଣ ଭଗବାନଙ୍କୁ ପ୍ରତିଷ୍ଠିତ କରାଯାଇଥିଲା । ସଜ୍ଜନ ଦ୍ୱାରା ଏହି ବିବାହ ପାଇଁ ଆର୍ଟିଷ୍ଟ ଶ୍ରୀଧର ମହାପାତ୍ର, ରାଧା ଓ କୃଷ୍ଣଙ୍କର ସ୍ୱର୍ଣ୍ଣ ପ୍ରତିମା ପ୍ରସ୍ତୁତ କରିଥିଲେ । କୃଷ୍ଣଜୀ ଏଠାରେ ବିରାଜମାନ ଥିଲେ । ରାଧା ଜେଠେଇ ଘରେ ଥିଲେ । ଇଲେକ୍ଟ୍ରିକ୍ ଦ୍ୱାରା ନାଚୁଥିବା ମୟୂର, ହରିଣ, ମାଙ୍କଡ଼, ପଡ଼ିଆରେ ଚରୁଥିବା ଗାଈପଲ ମଥୁରା ବୃନ୍ଦାବନ ଆଦି ପାଖରେ ବହୁଥିବା ଯମୁନା, ପାହାଡ଼ରୁ ଝରୁଥିବା ଝରଣାର ଦୃଶ୍ୟ ବହୁତ ସୁନ୍ଦର ଦେଖାଯାଉଥିଲା ।

ଏହି ଶୋଭା ଦେଖିବା ପାଇଁ ହଜାର ହଜାର ଲୋକ ରୁଣ୍ଡ ହୋଇ ଭିଡ଼କଲେ । ତିଲକ ସମାରୋହ ପରେ ଏହି ମଣ୍ଡପରେ ଅଖଣ୍ଡ ନାମ କୀର୍ତ୍ତନ ଆରମ୍ଭ ହେଲା । ନଗରର ସମସ୍ତ କୀର୍ତ୍ତନ ମଣ୍ଡଳୀ ଯୋଗ ଦେଇଥିଲେ । ଭିଡ଼ ଏତେ ବଢ଼ିଲା ଯେ ମଣ୍ଡପ ଓ ବ୍ରଜ କାନ୍ଥକୁ ରକ୍ଷା କରିବା ପାଇଁ ପୋଲିସକୁ ଡାକିବା ପାଇଁ ପଡ଼ିଲା ।

ବାବାଜୀ ସମ୍ବନ୍ଧୀ ହୋଇ ବସିଥିଲେ । ତାଙ୍କ ସହିତ ଘାଟ ପାଖରେ ରହୁଥିବା ପଣ୍ଡାମାନେ, ଗୋମତୀ କୂଳରେ ବସବାସ କରୁଥିବା ଅନେକ ଅନ୍ଧ, ପଂଗୁ ଫକୀର, ବୈରାଗୀ, ସନ୍ୟାସୀ ଆଦି ଭକ୍ତ ମନରେ ବସି ପାନ ଚୋବାଇ ଚୋବାଇ ନିଜେ ନିଜକୁ ଗୋଟିଏ ଦିନର ରାଜା ଭଳି ଅନୁଭବ କରୁଥିଲେ । ସମସ୍ତଙ୍କ ମୁଣ୍ଡରେ କେଶର ଯୁକ୍ତ ଚନ୍ଦନ ଲଗାଯାଇଥିଲା । ଗଳାରେ ଫୁଲମାଳ ପଡ଼ିଥିଲା । ଜେଠେଇର ଘରୁ 'ଟିକା'ର ଜିନିଷ ଆସିଲା । ତିରିଶ ଥାଳି ମିଠେଇ, ଦଶଥାଳି ମେୱା, ଦଶଥାଳି ଫଳମୂଳ, ବରପାଇଁ ହୀରା ଜଡ଼ିତ ହାର, ମୁଦି, ଲୁଗା ତଥା ଏକ ହଜାର ଏଗାର ଟଙ୍କା ନଗଦ, ଭଗବାନଙ୍କୁ ଟିକା ଦିଆଗଲା ।

ପୁଣି ବିବାହର ଖୁବ୍ ଧୂମଧାମ ଖୁବ୍ ଯୋର ସୋର୍‌ରେ ଆରମ୍ଭ ହେଲା । କଲ୍ୟାଣୀ ତରଫରୁ ମସ୍ତକରେ ବନ୍ଧା 'ଇଗଲ' ଆସିଲା । ପାନ ମିଠେଇ, ଫଳ ନଗଦ ଟଙ୍କା ଆସିଲା । ପୁଣି ବରକନ୍ୟାଙ୍କର ହଳଦୀ ତେଲ ହେଲା । ବରଯାତ୍ରୀ ଦିନ ଏତେ ଭିଡ଼ ହେଲା ଯେ, ଦୂର ଦୂରାନ୍ତରୁ ଗଲି ଗୁଡ଼ିକ ମଧ୍ୟ ଦର୍ଶକଙ୍କ ଭିତରେ ମୁଖରିତ ହେଲା । ଜେଠେଇର ମହଲରେ ପ୍ରବେଶ କରିବା ପାଇଁ ମଧ୍ୟ ସ୍ଥାନ ମିଳୁ ନଥିଲା । ମହୁରୀ, ପୋଲିସ ବେଣ୍ଡ, ମେଲଟାରୀ ବେଣ୍ଡ, ହାହାକାର ବେଣ୍ଡ, ବିଭିନ୍ନ ଦୃଶ୍ୟରେ ସୁସଜ୍ଜିତ

ସିଂହାସନ, ତାହାର ଉପରେ ଗଙ୍ଗା ମହାମାର୍ଯ୍ୟୀ ଯଶୋଦାଙ୍କ ଦୁଆର ପାଖରେ କୃଷ୍ଣ ଭଗବାନଙ୍କର ଦର୍ଶନ ଲାଳସାରେ ଛିଡ଼ା ହୋଇଥିବା ଶିବ, ତାହାର ଉପରେ ଲବଣୀ ଚୋର ଲୀଳା । ଝରକା ଗୁଡ଼ିକ ସୁନ୍ଦର ସଜା ଯାଇଥିଲା । ଏ ଗୁଡ଼ିକୁ ସଜାଇବାପାଇଁ ମଥୁରାରୁ ଜଣେ କାରିଗର ଆସିଥିଲା । ହଂସ ବିମାନ ରୂପେ ସଜାଯାଇଥିବା, ଇଲେକ୍ଟ୍ରୀ ଦ୍ଵାରା ପରିଚାଳିତ ଝକ୍ ଝକ୍ କରୁଥିବା ମୋଟର ଉପରେ ବର ଶ୍ରୀକୃଷ୍ଣଙ୍କର ସବାରୀ ବାହାରିଲା । ଲୋକମାନେ ସ୍ଥାନେ ସ୍ଥାନେ ଆରତୀ କଲେ ଓ ଜେଠେଇର ଯଶ ବଖାଣିଲେ । ବରଯାତ୍ରୀ ଗଣ ମାନଙ୍କରେ ଆସୁଥିବା ସମସ୍ତରେ ଭଗବାନ ମୋଟରରୁ ଓହ୍ଲାଇ ଗଙ୍ଗା ଯମୁନା ଡାମ-ଜାନ ଉପରେ ବିରାଜମାନ କଲେ । ଅନେକ ଘରୁ ଭଗବାନଙ୍କ ଉପରେ ପୁଷ୍ପ ବର୍ଷା କରାଗଲା । ବହୁ ବର୍ଷରୁ ଏପରି ବରଯାତ୍ରା ଦେଖାଯାଇ ନଥିଲା । ଜେଠେଇଙ୍କ ଘରେ ଏତେ କୋଳାହଳ ଯେ କାହାରିକୁ କାହାରି କଥା ଶୁଣା ଯାଉନାହିଁ । ସ୍ତ୍ରୀ ଲୋକମାନେ ଏଠାରୁ ଜିନିଷ ନେଇ ଦୌଡ଼ୁଛନ୍ତି । ସ୍ତ୍ରୀ ମାନଙ୍କ ମଧ୍ୟରେ ଗୋକୁଳ ଦ୍ଵାରର ଦାଢ଼ୀବାଲା ଭିକାରସ୍ୱାମୀ ମଧ୍ୟ ବୁଲୁଥିବାର ବାରମ୍ବାର ଦେଖା ଯାଉଥିଲେ । କନ୍ୟା ତାରା ଓ ସାନ ବୋହୂ ବ୍ୟସ୍ତ ଦେଖା ଯାଉଛନ୍ତି । ଜେଠେଇ ସତେ ଯେପରି ବାଜୁଲି ହୋଇ ଯାଇଛନ୍ତି । ତାଙ୍କର ଶୁଖିଲା ଦେହରେ କିଏ ଜାଣେ ଏତେ ବଳ କେଉଁଠୁ ଆସିଲା ଯେ ବଡ ବଡ଼ପରତ ଉଠାଇ ଦୌଡ଼ୁଛନ୍ତି । ଜେଠେଇ ପୂଜାଘରେ ଥାକ ଉପରେ ରଖା ଯାଇଥିବା ବରଣ ଡାଲା ଦୁଇଟିକୁ ବାହାର କରିବାକୁ ଯାଇଥିଲେ । ଦ୍ଵିତୀୟ ଥାକରୁ ବିରାଡ଼ି ଡେଇଁଲା, ଜେଠେଇ ଆଶ୍ଚର୍ଯ୍ୟ ହେଲେ 'ମରୁ ନାହୁଁ' ରୁ ଏଠାରେ କେତେବେଳୁ ଥିଲୁ ?"

ଜେଠେଇଙ୍କର କୁଷୁନ ଚନ୍ଦର ଜଣାନାହିଁ, କେତେବେଳୁ ପୂଜା ଘରର କୋଠରୀରେ ବନ୍ଦ ହୋଇଥିଲେ । ଜେଠେଇଙ୍କ ଗୋଡ଼ତଳେ ଆପଣା ମୁଣ୍ଡ ଘଷି ଖୋସାମତି କଲାପରି ମ୍ୟାଉଁ ମ୍ୟାଉଁ କରୁଥିବା ଜେଠେଇର ପୋଷ୍ୟପୁତ୍ର କୁସୁନ ତାଙ୍କର ସମସ୍ତ ବ୍ୟସ୍ତତା ଓ ବ୍ୟଗ୍ରତାକୁ ବନ୍ଦ କରିଦେଲା । ତାଙ୍କର ଗୋଟିଏ ପାଦ ଆଗେଇବା ବନ୍ଦ ହୋଇଗଲା । ଯେଉଁ ଆଡ଼କୁ ଯାଏ ସେହି ଆଡ଼େ ଜେଠେଇର ଗୋଡ଼କୁ ଅଟକାଏ । ଡାଲା ବାହାର କରି ଜେଠେଇ ବାହାରକୁ ଆସିଲେ । କସୁନ୍ ତାଙ୍କ ସଙ୍ଗେ ସଙ୍ଗେ ମ୍ୟାଉଁ ମ୍ୟାଉଁ କରି ଆସିଲା । ସାମ୍ନାରେ ଭିକାରସ୍ୱାମୀ ଦେଖାଗଲେ ଜେଠେଇ ତାକୁ କହିଲେ" ଏ ଭିକାରସ୍ୱାମୀ, କାହାକଠାରୁ ଟିକିଏ ଦୁଧ ମାଗି ଆଣ । ଏ ଷଣ୍ଡ ପୁଅ କସୁନ ମୋର ପିଛା ଛାଡ଼ୁ ନାହିଁ । କାମ ଧନ୍ଦା କରିବାର ସମୟ, ସର୍ବନାଶୀ କେଉଁଠିକାର । ଆରେ, ଏଲା ଇଣା ଏ ପର୍ଯ୍ୟନ୍ତ ଆଣିଲୁ ନାହିଁ ?

ସେତେବେଳେ ଭିକାରିସ୍ୱାମୀ, ଜେଠେଇ ଦେଇଥିବା ସଫା ଧୋତି ଓ ଗେଞ୍ଜି ପିନ୍ଧି ସ୍ୱାଗେ ଆସିଲା । ନିଜର ବଡ଼ ବଡ଼ ଆଖିରେ ଜେଠେଇ ଓ ବିରାଡ଼ି ଛୁଆକୁ ଦେଖି

କହିଲେ "କେଦେଇ ତୋର ସ୍ୱପ୍ନ ଠିକ୍ କହିଥାଇ, ବଡ଼ ଭାଗ୍ୟ ମୋର ଆଜ ଯଶୋଦା ଓ ଭଗବାନଙ୍କ ଦର୍ଶନ ଏକା ସଙ୍ଗରେ ମିଳିଲା"। ଭକ୍ତର ଆବେଗରେ କାନ୍ତିଶ୍ରୀଜୀ କେଦେଇର ପାଦ ତଳେ ଲୋଟିଗଲେ। କେଦେଇ ନିଜର ଆବେଗରେ ଥିଲେ, ହଠାତ୍ କାନ୍ତିଶ୍ରୀଜୀଙ୍କର ଏଭଳି ନତ ଜାନୁ ହୋଇ ପ୍ରଣାମରେ ଟିକିଏ ଚମକି ଉଠିଲେ, ଆଃ, ମର ଅଲେଇସା କିଏ ? କାନ୍ତିଶ୍ରୀଜୀ ତୁମକୁ ମଧ୍ୟ ଏହି ସମୟରେ ଭକ୍ତ ଭାବ ଦେଖାଗଲା ? ଝିଅର ବାହାଘର, ହଜାର ହଜାର ଦାୟିତ୍ୱ, ଯାଅ ଏଠାରୁ, ନିଅ ଏହାଙ୍କୁ ନେଇ ବସିରହ। ଭିତରଆ ଦୁଧନେଇ ଆସିଲଣି, ପିଆଇ ଦିଅ।

ବିବାହ ମଣ୍ଡପରେ ମହଲର ଅନ୍ୟାନ୍ୟ ପ୍ରତିଷ୍ଠିତ ଭଦ୍ର ବ୍ୟକ୍ତିଗଣ ବସିଥିଲେ। ପଣ୍ଡିତ ଶିବନାଥ ଶାସ୍ତ୍ରୀ, ଲାଲା ମୁକୁନ୍ଦୀଲାଲ, ବାବୁ ଗୁଲାବ ଚାନ୍ଦ୍, ଲାଲା ଦଲାଇ, ଭଗୁଡ଼ ସୁନ୍ଦର, ବର୍ମା, ରାଧେଶ୍ୟାମ, ଲାଲା ଜାନକୀ ଶରଣ, ମହୀପାଳ, କର୍ଣ୍ଣେଲ, ସେଠ ରୂପ ରତନ, କେଦେଇର ସୌତୁଣୀଙ୍କ ବଡ଼ ପୁଅ ଗିରିଧାରୀ ଦାସ ଆଦି ବସିଥିଲେ। ଗିରଧାରୀ ଦାସ ବାରମ୍ବାର ବାବା ରାମଜୀଙ୍କୁ ଦେଖୁଥିଲେ। ସେ ଶୁଣିଥିଲେ ଯେ ସାଧୁ ଯୌତୁକରେ କେଦେଇଠାରୁ କୋଡ଼ିଏ ହଜାର ଟଙ୍କା ପାଇଛନ୍ତି। ଏଥିପାଇଁ ତାଙ୍କର ସାଧୁଙ୍କ ପ୍ରତି ଘୃଣା ହେଉଥିଲା। ପାଖରେ ବସିଥିବା ଜାନକୀ ଶରଣଙ୍କୁ ପଚାରିଲା "ଏ ବାବା କିଏ ?"

"ପାଗଳ ଫାଗଲଙ୍କୁ ଚିକିତ୍ସା କରନ୍ତି" ସେ କୋଡ଼ିଏ ହଜାର ଟଙ୍କା ନେଇ କଣ କରିବ ?

ଲାଲା ଜାନକୀ ଶରଣ ହସିଲେ, କହିଲେ "ବୃଦ୍ଧାବସ୍ଥାରେ ଭାଗ୍ୟ ଖୋଲିଚି। ବର୍ତ୍ତମାନ ଲେଙ୍ଗୁଟି ଛାଡ଼ି ରେଶମୀ ଗେରୁଆ ପିନ୍ଧିବେ। ମଠ ବନାଇବେ, ମଜାରେ ମାଲପୁଆ, ପୁରି ଖାଇବେ, କାହିଁ ? ତୁମକୁ ଖରାପ ଲାଗୁଛି ନା କ'ଣ ?

ଲାଲା ଗିରଧାରୀ ଦାସ ଚଗିଡ଼ି ଗଲେ. କିଛି କ୍ଷଣ ରହି କହିଲେ "କେତେ ଥର ବାବୁଙ୍କୁ କହିଛି ଯେ ବଡ଼ ମା'ର ଝିଅ କମ୍ କରି ଦିଅନ୍ତୁ, ଛଅଶ ଟଙ୍କାରୁ ଅଧିକ ତାଙ୍କର ଦରକାର ନାହିଁ"।

"ଆରେ, ସେତକ ତ ତାଙ୍କର ଭଣ୍ଡାରୁ ଆସି ଯାଉଛି" ଲାଲା ଜାନକୀ ଶରଣ କହିଲେ।

ବାବୁଜୀତ ଶୁଣୁ ନାହାନ୍ତି, ମୁଁ କ'ଣ କରିବ ? ଏବେ ଦେଖନ୍ତୁ ପାଣି ଭଳି ପଇସା ବୋହି ଯାଉଛି। ଏଆଡ଼େ ବାଲି ଜଣାକୁ ବନ୍ଧ କରିଲା ବେଳକୁ ସେଆଡ଼େ ସୁଅ ମୁହଁରେ ବୋହି ଯାଉଛି। ଏହା ସଜ୍ଜନର କାରସାଦୀ ଜଣାନାହିଁ, କିପରି ଏ ବଡ଼ ମା'କୁ ନିଜର ଆୟତ୍ତ କରିନେଲା। ଲାଲା ଗିରଧାରୀ ଦାସ ଦୀର୍ଘ ନିଶ୍ୱାସ ଛାଡ଼ିସାରି ଚହଲ-ଚହଲ ପୂର୍ଣ୍ଣ ବାତାବରଣ ମଧ୍ୟରେ ଗୋଟିଏ ଶୂନ୍ୟ ନିଶ୍ୱାସ ଛାଡ଼ିଲେ।

ଜାନକୀ ଶରଣ କହିଲେ "ସେତେବେଳେ ମହୁଲା ବାଲା ମାନେ ଏହି କୋଠରୀରେ ମହଲା କରୁଥିଲେ ସେତେବେଳେ ଦେଖିଥାଆନ୍ତ, ଜେଠେଇର ରୂପ । ଜୁଆଁ ଖୁଣ୍ଟା ନେଇ ସମସ୍ତଙ୍କୁ ଗୋଡ଼ାଇଲା, ସମସ୍ତଙ୍କ ଉପରେ ଯାଦୁ ମନ୍ତ୍ର ନିକ୍ଷେପ କରୁଥିଲା । ଏ ସଜ୍ଜନ, ତୁମର କୋଠୀ ଜେଠେଇଠାରୁ ହାତେଇ ନେବ" ।

ହୁଁ, ତାର କଣ ଅଧିକାର ଅଛି ? ଆଉ ଏବେ ତ'ପାଖରେ କେତେ ଅଛି ? ଖୁବ୍ ବେଶୀ ହେଲେ ୬।୭ ଲକ୍ଷର ସମ୍ପତ୍ତି ହେବ । ଜମିଦାରୀ ଚାଲିଯାଇଛି, ଏତ ଇଜନେଶ୍ କରି ପାରିବ ନାହିଁ, ଆଟେଷ୍ଟ ଲୋକ ଛଅ, ସାଢ଼େ ଛଅ ଲକ୍ଷର ସମ୍ପତ୍ତି । ତାହାର ଭଡ଼ା ଖାଆନ୍ତି । ଏହା ବ୍ୟତୀତ କିଛି ନଗଦ ଗହଣା, କିଛି କ୍ୟୁରିଓ ଜିନିଷ । ମହଲ ଉପରେ ଦୃଷ୍ଟି ପକେଇବତ, ପଚାଶଟା ମକଦ୍ଦମାରେ ଫଶେଇ ଦେବି । ଦଶ ବର୍ଷରେ ପୁଅ ବଜାରର ଫୁଟ୍‌ପାଥ୍ ଉପରେ ନିଜର କ୍ୟୁରିଓର ଜିନିଷ ବିକ୍ରି କରିବାର ଦେଖାଯିବ । ଗିରିଧାରୀ ଦାସଙ୍କ ଚକ୍ଷୁରେ କ୍ରୋଧ ।

ଜାନକୀ ଶରଣ କହିଲେ ' ଏଭଳି ଦୁର୍ଦ୍ଦିନ ଆସିବ ନାହିଁ, ପୁଅ ବଡ଼ ଚାଲାକ ଅଛି । ଆଜିକାଲି ନେତା ହୋଇଛି, ଚାରି ଦିନରେ ପାୱାର ଫୁଲ୍ ହୋଇଯିବ । ତୁମର ମହଲ ଉପରେ ତାର କେବେହେଲେ ଦୃଷ୍ଟି ପଡ଼ିବ ନାହିଁ ।

'ମହାଶୟ, ଆଉ କଣ ପଡ଼ିବ ? ତାର ସ୍ତ୍ରୀ ଏଠାରେ ସ୍କୁଲ ଖୋଲିଛି । ଆପଣମାନଙ୍କର ଅମର୍ଯ୍ୟାଦା କରି ସେ ଏଠାରେ ପ୍ରଦର୍ଶନୀ ମଧ୍ୟ କରିଛି । ଏବେ ଏ ବାବାଙ୍କର ଜାଲବଛୁ ଯାଇଛି । ଦେଖିବେ ଏ ମିଠା ମିଠା କଥାକହି ଏଠାରେ ବସି ବସି ଯାହାକୁ ଚାହିଁବେ ତାର ମର୍ଯ୍ୟାଦା ଧୂଳିରେ ମିଶାଇ ଦେବେ ।

ମହିପାଲ ଓ କର୍ଣ୍ଣେଲ ଦୂରରେ ବସି କଥାବାର୍ତ୍ତାରେ ନିମଜ୍ଜିତ ଥିଲେ । ମହିପାଲ ରୂପରଞ୍ଜନଠାରୁ ଶ୍ରେଷ୍ଠ ମୋଟର କିଣି ପାରିଥିଲା । ଆଜି ପ୍ରଥମ ଥର ଏ ନିଜ ଗାଡ଼ିରେ ଏଠାକୁ ଆସିଛି । ମହିପାଲ ଓ କର୍ଣ୍ଣେଲ ସେହି ବିଷୟରେ ଚର୍ଚ୍ଚା କରୁଛନ୍ତି । ସଜ୍ଜନ କାର୍ଯ୍ୟର ଦାୟିତ୍ୱ ବହନ କରି ଚାରି ଆଡ଼କୁ ଦୌଡ଼ୁଛି ।

ଝିଅର ବିଦାୟ ସମୟ ଆସିଲା, ଧୂମ୍, ଧାମ୍ ମଧ୍ୟରେ ବରକନ୍ୟାଙ୍କୁ ବିଦାୟ ଦିଆଯିବ । ସ୍ତ୍ରୀ ଲୋକମାନେ ଗୀତ ଗାଇବାକୁ ଲାଗିଲେ । ଅତ୍ୟନ୍ତ ଧୂମ୍, ଧାମ୍‌ରେ ଚାଲିଥିବା ବିବାହର ଅତ୍ୟନ୍ତ ବ୍ୟସ୍ତକ୍ଷଣ ଜେଠେଇଙ୍କୁ ଅଧିକ ଦୁଃଖଦାୟକ ମନେ ହେଲା । ରାଧାଜୀଙ୍କ ମୂର୍ତ୍ତିକୁ ଉଠାଇ ସେ ନିଜ ହାତରେ ନେଲେ । ଝିଅ, ଯିଏ ବିଦା ହେଉଛି, କୋମଳ ଶିଶୁ, ଜେଠେଇ ଝିଅ ରାଧାରାଣୀ ଝିଅ, ଝିଅ ବିଦା ହେଉଛି—ଜେଠେଇ, ଝିଅକୁ ଛାତିରେ ଲଗାଇ ମୂର୍ଚ୍ଛା ହୋଇଗଲେ । କୋଳାହଳ ବ୍ୟାପିଗଲା, ପାଣି—ପଙ୍ଖାର ଉପକ୍ରମ ହେଲା । ବାବାଜୀ, ସଜ୍ଜନ କନ୍ୟା, ଜେଠେଇର ସେବା କରିବାକୁ ଲାଗିଲେ ।

କେଠେଇଙ୍କର ଚେତା ଫେରିଲା । ଗୁରୁଆଡ଼କୁ ଦେଖି, ଶୁଖିଲା ହାଡର ବଳରେ ପୁଣି ଥରେ ସତେଜ ହୋଇ ଉଠିଲେ । ପୁଣି ବିଦାୟର ଗହଳ—ଚହଳ ଆରମ୍ଭ ହେଲା । ବାହାରେ ବିଶେଷ କରି ଏହି ଅବସର ପାଇଁ ତିଆରି ହୋଇଥିବା ରଥ ଉପରେ ବର—ବଧୂଙ୍କର ସିଂହାସନ ରଖାଗଲା । ଶଙ୍ଖ, ଘଣ୍ଟା ଘଣ୍ଟି ବାଜିଲା । ରାଧାକୃଷ୍ଣଙ୍କର ଜୟ ନାଦରେ ଗଳିଗୁଡ଼ିକ ପ୍ରକମ୍ପିତ ହେଲା । ବିଦା ହେଉଥିବା ଭଉଣୀ ଦ୍ୱାରା କେଠେଇ ଭାଇମାନଙ୍କୁ, ଟୀକା ଲଗାଇଲେ । ସର୍ବ ପ୍ରଥମ, କେଠେଇ ପଣ୍ଡିତଙ୍କ ଦ୍ୱାରା ସଜ୍ଜନଙ୍କୁ ଟୀକା ଲଗାଇଲେ । ପୁଣି ନିଜର ଅନ୍ୟାନ୍ୟ ସମ୍ବନ୍ଧୀୟମାନଙ୍କ ରଥ ଚାଲିଲା । ସ୍ତ୍ରୀ ମାନଙ୍କର ଗୀତ ଚାଲୁଥିଲା । କେଠେଇ ବିଦାୟୀ ରଥକୁ ଗୋଟିଏ କ୍ଷଣ ଦେଖିଲା, ଆଖିରେ ଲୋତକ ଭରି ଗଲା । ପୁଣି ଧକେଇ ଧକେଇ କାନ୍ଦିଲେ । ତାଙ୍କୁ ପୁଣି ଦ୍ୱିତୀୟ ଥର ମୂର୍ଚ୍ଛା ହୋଇଗଲେ ।

ଗଳି ମାନଙ୍କରେ ଧଳା ଘୋଡ଼ା ହୋଇଥିବା ସୁନ୍ଦର, ସୁସଜ୍ଜିତ ରଥରେ ବର ବଧୂଙ୍କର ଯାତ୍ରା ଜନତାଙ୍କ ମଧ୍ୟରେ ଅପାର ଉତ୍ସାହ କୌତୁହଳ ଓ ଶ୍ରଦ୍ଧାର ଲହରୀ ଉଠାଉଥିଲା ।

× × ×

କେଠେଇ ଘରର ବିବାହର, ଚହଳ—ପହଳ, ବିତି ଯାଇଥିବା କାହାଣୀ ହୋଇଗଲା । ବାବାଜୀଙ୍କୁ କେଠେଇଠାରୁ ୨୦।୨୫ ହଜାର ଟଙ୍କାର ଜିନିଷ ମିଳିଥିଲା, ଯାହାକୁ କର୍ଣ୍ଣେଲ ପାଖରେ ଜମା କରି ଯାଇଥିଲା । ଏବେ କେଠେଇର ମହଲରେ ବସି ବାବାରାମଜୀ, ସଜ୍ଜନ, କର୍ଣ୍ଣେଲ କନ୍ୟା ଏହି ଟଙ୍କାର ଉପଯୋଗ କରିବା ପାଇଁ ବିଚାର-ବିମର୍ଶ କରୁଥିଲେ । ବିବାହ ପୂର୍ବରୁ ଏହା ଠିକ୍ ହୋଇଥିଲା ଯେ କେଠେଇଠାରୁ ଯେଉଁ ଧନ ମିଳିବ ସେଥିରେ ବାବାଜୀଙ୍କ ପାଗଳ ଖାନାକୁ ପକ୍କା କରିଦିଆଯିବ ଓ ଯେଉଁ ସ୍ତ୍ରୀମାନଙ୍କ ପାପାଚାରରୁ ରକ୍ଷା କରାଯାଇଛି ତାଙ୍କୁ ସୁଚାରୁ ରୂପେ ରକ୍ଷାର ପ୍ରବନ୍ଧ କରାଯିବ । କିନ୍ତୁ ଏବେ ବାବାଜୀଙ୍କର ବିଚାର ବଦଳି ଯାଇଥିଲା । ସେ କହିଲେ "ଏବେ ଆଉ ଆମେ ନଗରରେ ରହିବାକୁ ଚାହୁଁ ନାହୁଁ, ରାମଜୀ । ଆମର ବିଚାର, ଗାଁକୁ ଯାଇ ଦୀନ ଦୁଃଖିଙ୍କର ସେବା କରିବୁଁ । ଆମକୁ କୌଣସି ଏଭଳି ଗାଁରେ ଆସ୍ଥାନ ଦରକାର ଯେଉଁଠାରେ ଯାନବାହାନ ଆଦିର ସମୁଚିତ ପ୍ରବନ୍ଧ ହୋଇ ନ ପାରିଥିବା ଯୋଗୁଁ କୌଣସି ପ୍ରକାରର ସହାୟତା ପହଞ୍ଚି ପାରୁନାହିଁ । ଆମେ ସେଠାରେ ରୋଗୀ ପାଗଳଙ୍କ ସେବା କରିବା ଓ ଗୋଟିଏ ଏପରି ସ୍କୁଲ୍ ମଧ୍ୟ ଖୋଲିବୁଁ ଯେଉଁଥିରେ ଗାଁର କନ୍ୟାମାନଙ୍କୁ ସମୁଚିତ ଶିକ୍ଷା ମିଳି ପାରିବ ।"

ସଜ୍ଜନ କହିଲା "ତେବେ କଣ ଏଠାକାର ସମସ୍ତ ସ୍କୀମ୍ ଫେଲ୍ କରୁଛନ୍ତି ଆପଣ ?"

"ଆମେ ତାଙ୍କୁ ଫେଲ୍ ଅଥବା ପାଶ୍ କରିବା ସ୍ୱାମୀଜୀ, ଏଠାରେ ଧନର ଅଭାବ ନାହିଁ । ସ୍ୱୟଂ ଆପଣ କାହାରିକୁ ନ ମାଗି ଏଠାକାର କାରବାର ଚଳାଇ ପାରିବେ ।"

ସଜ୍ଜନ କ୍ଷଣେକ ପାଇଁ ଗମ୍ଭୀର ହେଲ, ପୁଣି କହିଲ 'ପଇସାର ମୋହରୁ ବର୍ତ୍ତମାନ ମୁଁ ନିସନ୍ଦେହ ଉଦ୍ଧାର ପାଇ ସାରିଛି ବାବାଜୀ, ତେବେ ମୁଁ ସମସ୍ତ ସମ୍ପତ୍ତି ଦାନ କରିବାର ବଳ ଏବେ ପାଇ ପାରିନାହିଁ ।

"ଆପଣ କେତେ ଟଙ୍କା ପ୍ରସନ୍ନତା ପୂର୍ବକ ଦାନ କରି ପାରିବେ ?"

"ତିନ ଲକ୍ଷ" କର୍ଣ୍ଣେଲ ଓ କନ୍ୟା ସଜ୍ଜନର ମୁହଁ ଆଡ଼କୁ ଦେଖିବାକୁ ଲାଗିଲେ ।

ବାବାଜୀ କହିଲେ, "ବହୁତ ଏତେ ଧନରେ ଯଦି ଆପଣମାନେ ଉଚିତ୍ ପ୍ରବନ୍ଧ କରିବେ ତ ବହୁତ ବଡ଼ ଆୟୋଜନ କରି ପାରିବେ ।"

କିନ୍ତୁ କଣ କରିବା ?" ଦୀନ-ଦୁଃଖୀମାନଙ୍କୁ ବସାଇ ଖୁଆଇବା ପାଇଁ ତିନି ଲକ୍ଷ ଟଙ୍କା ।

ବସେଇ ଖୁଆଇବା ଆମ ସିଦ୍ଧାନ୍ତର ବିରୋଧୀ, ସ୍ୱାମୀଜୀ ।

"ବ୍ୟୁଟି କରନ୍ତୁ ଓ ପେଟପୁରି ଭୋଜନ ଖାଆନ୍ତୁ, ଏଥିପାଇଁ ଉଦ୍‌ଯୋଗ କରନ୍ତୁ ।"

"ଏପରି ଉଦ୍‌ଯୋଗ ବଡ଼ କଠିନ, ବାବାଜୀ, କ୍ଷମା କରିବେ" କର୍ଣ୍ଣେଲ ପ୍ରଥମରୁ ବାଧା ଦେଲ ।

ବେଟା ଆରମ୍ଭରେ କୌଣସି କାର୍ଯ୍ୟ ସରଳ ହୁଏ ନାହିଁ । ଅଭ୍ୟାସ କରୁ କରୁ ପ୍ରତ୍ୟେକ କାର୍ଯ୍ୟ ସରଳ ହୋଇଯାଏ ।

"ତାହା ଠିକ୍ ବାବାଜୀ କିନ୍ତୁ ବର୍ତ୍ତମାନ ହୁନଆକୃତ ଦେଖନ୍ତୁ ଆଶ୍ରମ ଫାଶ୍ରମରେ ଏବେ କାହାର ବିଶ୍ୱାସ ନାହିଁ । ଲୋକ ଚାହାନ୍ତି ସେମାନେ ଅଧିକରୁ ଅଧିକ ପଇସା ଓ ସୁଖ କୌଣସି ପ୍ରକାରରେ ପାଇ ଯାଆନ୍ତୁ "କର୍ଣ୍ଣେଲ ଉତ୍ତର ଦେଲ ।

"ତେବେ ଅଳସୁଆକୁ ତ ପଇସା ମିଳି ପାରିବ ନାହିଁ, ସ୍ୱାମୀଜୀ । ଯିଏ କାମ କରିବ ସେ ପଇସା ମଧ୍ୟ ପାଇବ । ଆପଣ ମଧ୍ୟ ଏହି ଭଳି ଆଶ୍ରମ ଖୋଲନ୍ତୁ । ଏହି ଶବ୍ଦରେ ଲୋକ ଯଦି ଚିଡ଼ି ଯାଉଛନ୍ତି ତେବେ କୋଅପେରେଟିଭ, ସହକାରୀ ସଂଘ,

କମ୍ପାନୀ ଯାହା ଚାହୁଁଛନ୍ତି ସେହି ନାମ ଦିଅନ୍ତୁ । ଆମକୁ ନାମରେ ନୁହେଁ, କାମରେ ଦରକାର । ଦେଖନ୍ତୁ ଏ ଝିଅଟି ଧୀରେ ଧୀରେ ମହଲାର ଏହି ପାଠଶାଳା ଛିଡ଼ା କରି ପାରିଛି । ଆପଣ ଅଧିକରୁ ଅଧିକ ଏଭଳି ପାଠଶାଳା ଖୋଲି ଦିଅନ୍ତୁ । ଝିଅ ଓ ସ୍ତ୍ରୀ ମାନଙ୍କୁ ଦଶ ପ୍ରକାରର କାମ ଶିଖାନ୍ତୁ ଓ ତାଙ୍କର କାମକୁ ବଜାରରେ ବିକ୍ରୀ କରନ୍ତୁ । ଆମେ ତ ଗାଁରେ ମଧ୍ୟ ଏହାହିଁ କରିବୁ, ସ୍ୱାମୀଜୀ । ନିର୍ଦ୍ଧନ ପରିବାରଙ୍କୁ ଧନ ମିଳିବା ଉଚିତ । ସହର ଓ ଗାଁ ଉଭୟ ଏହି ଦୃଷ୍ଟିରେ କ୍ଷୁଧାର୍ତ୍ତ ଅଛନ୍ତି । ଏ ଦୁହିଁଙ୍କୁ ଏକ ଆର୍ଥିକ ସ୍ତରକୁ କ୍ରମଶଃ ନେଇ ଆସନ୍ତୁ ।

“କିନ୍ତୁ ବର୍ତ୍ତମାନ ତ ଏହା ଅସମ୍ଭବ ବୋଧ ହେଉଛି” କନ୍ୟା କହିଲା “ସହରର ଆକର୍ଷଣ ଅଧିକ, ଆବଶ୍ୟକତା ଅଧିକ, ଏଠାରେ ପଇସା ମଧ୍ୟ ଅଧିକ ଦରକାର ।”

“ଝିଅ’ ଆବଶ୍ୟକତା ତ ଏତେ ଅଧିକ ନୁହେଁ ଆକର୍ଷଣ ଯେତେ ଅଧିକ । ତଥାପି ଆମେ ଏହା ଉପରେ ବିବାଦ କରୁନାହୁଁ । ଆମ ଗାଁ ପାଇଁ କୋଡ଼ିଏ ପଚିଶ ହଜାର ଟଙ୍କା ଓ ସହର ପାଇଁ ତିନି ଲକ୍ଷ ଟଙ୍କା ଦିଆଯାଇଛି । ଏହି ତିନି ଲକ୍ଷ ଆପଣ ଯଦି କୁଟୀର ଶିଳ୍ପ ବଢ଼ାଇ ନଗରର ପୁରୁଷଙ୍କୁ ମହାଜନମାନଙ୍କର ଋଣ ଓ ବେଇ-ମାନୀରୁ ବଞ୍ଚେଇ ପାରିବେ ଓ ସ୍ତ୍ରୀମାନଙ୍କୁ ନିଜର ଆର୍ଥିକ ଆବଶ୍ୟକତାର ପୂର୍ତ୍ତି ପାଇଁ ମହିଳାଶ୍ରମ ଇତ୍ୟାଦି ହସ୍ତ’ରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ତାଙ୍କର ନୈତିକ ସ୍ତର ଉଚା କରି ପାରିବେ ତେବେ ବହୁତ ବଡ଼ କାମ ହୋଇଯିବ । ସ୍ୱାମୀଜୀ, ଆଉ ଗୋଟିଏ ଶେଷ କଥା ନିବେଦନ କରୁଛି । ଏହା କେବେ ଭୁଲି ଯିବେ ନାହିଁ ଯେ “ ଖରବୁଜେକୋ ଦେଖ୍‌କର୍‌ ଖରବୁଜା ରଂଗ୍‌ ବଦଲ୍‌ ଦେତାହୈ” ଥରେ ସଂଗଠିତ ହୋଇ ଆପଣ ଯେପରି ହାଓ୍ୱା ସୃଷ୍ଟି କରିବେ ଠିକ୍ ସେହିପରି ସମାଜ ଉପରେ ତାର ପ୍ରଭାବ ପଡ଼ିବ ।

ଏକାନ୍ତରେ ବାବା ସ୍ୱାମୀଜୀ ସଜ୍ଜନଙ୍କୁ କହିଲେ “ଆପଣଙ୍କୁ

ଗୋଟିଏ ପ୍ରାର୍ଥନା, ସ୍ୱାମୀଜୀ”

“ଆଜ୍ଞା ବାବାଜୀ, ଆପଣ ମୋର ଗୁରୁ”

“ତେବେ ଦକ୍ଷିଣା ମାଗିବି ?”

ସଜ୍ଜନ ଦବିଗଲେ, ବାବାଜୀ ସ୍ନେହରେ ତାର ମୁଣ୍ଡରେ ହାତ ବୁଲାଇ ହସିଲେ । କହିଲେ “ଏଥିପାଇଁ ପ୍ରାର୍ଥନା କରୁଛି, ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ଯଦି ପାଳନ କରିନପାରନ୍ତି ତେବେ

ମଧ୍ୟ ବହୁତ ଅଧିକ ସଂଯମର ସହିତ କାର୍ଯ୍ୟ ଚଳାଇବେ । ମନୁଷ୍ୟର ବୀର୍ଯ୍ୟ, ମସ୍ତିଷ୍କ ରୂପ ଅଗ୍ନିର ଇନ୍ଧନ ସ୍ୱରୂପ । ଏହା ଭୁଲିବେ ନାହିଁ, ଯଦି କୌଣସି କାର୍ଯ୍ୟରେ ଧ୍ୟାନ ଲଗାଇଛନ୍ତି ତାକୁ ପୂର୍ଣ୍ଣ କରିବା ପାଇଁ ନିଜର ଶକ୍ତିକୁ ମଧ୍ୟ ସଞ୍ଚିତ କରନ୍ତୁ ।"

ସଜ୍ଜନ ମୁଣ୍ଡ ନୁଆଁଇ କହିଲ "ପ୍ରଯତ୍ନ କରିବି" ।

"ସ୍ୱାମୀଜୀ, ପ୍ରକୃତ ସମାଜବାଦୀ ସେହି ଯେ ଅନ୍ୟ ପାଇଁ ବଂଚି ରହେ ଓ ଅନ୍ୟକୁ ବଞ୍ଚିବାକୁ ଦିଏ"

"ନିଶ୍ଚୟ, ମୁଁ ସମସ୍ତ ସହିତ ଚାଲିବି, ଆପଣ ମୋତେ ସୁପଥ ଶାନ୍ତି ଓ ଗଭୀର ଆସ୍ଥା ଦେଉଛନ୍ତି, କହି ସଜ୍ଜନ ବାବାଜୀଙ୍କ ଚରଣରେ ଶ୍ରଦ୍ଧା ପୂର୍ବକ ପ୍ରଣାମ କଲ ।

# ଅଡ଼ଗ୍ରୁଲଶ

ସଜ୍ଜନ କ୍ରମଶଃ ବ୍ୟସ୍ତ ହୋଇଯାଉଥିଲା । ସେ ତାର ତିନି ଲକ୍ଷ ଟଙ୍କାର ଟ୍ରଷ୍ଟ କାୟମ କରିଦେଲା । ଟ୍ରଷ୍ଟ ରେଜେଷ୍ଟ୍ରୀ ମଧ୍ୟ ହୋଇଗଲା । କର୍ଣ୍ଣେଲ୍, ବନକନ୍ୟା, ଚୀଫ୍ କୋର୍ଟର ଜଣେ ରିଟାୟାର୍ଡ଼ ଜଜ୍, ଜଣେ ପ୍ରମୁଖ ସରକାରୀ ଅଫିସର ଓ ସେ ନିଜେ ଟ୍ରଷ୍ଟର ମେମ୍ବର ହେଲେ । ନିଜ ଯୋଜନାର ସର୍ବ ପ୍ରଥମ 'ସଜ୍ଜନ' ଗୋଟିଏ ସହକାରୀ ବ୍ୟାଙ୍କ ସ୍ଥାପନ କଲା । ତାର ଏହା ନିଶ୍ଚିନ୍ତ ଧାରଣା ଥିଲା ଯେ ନଗରର ପ୍ରତ୍ୟେକ ଓ୍ୱାର୍ଡ଼ରେ ନିଜର ଗୋଟିଏ ଗୋଟିଏ ବ୍ୟାଙ୍କ ହେବା ଦରକାର ଯେଉଁଥିରେ କି ସେଠାକାର ମୂଳଧନ ଲଗୁ ହୋଇପାରିବ ଓ ଏହାଦ୍ୱାରା ସେହି କ୍ଷେତ୍ରର ସାର୍ବଜନୀନ ହିତ କରାଯାଇ ପାରିବ । ସଜ୍ଜନର ନାଏବଜୀ ଓ ଜଣେ ରିଟାୟାର୍ଡ଼ ବ୍ୟାଙ୍କ୍ ମ୍ୟାନେଜରଙ୍କୁ ଏହି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ନିଯୁକ୍ତ କରାଗଲା ।

ଯେଉଁଦିନ ଏହି ବ୍ୟାଙ୍କର ସ୍ଥାପନା କରାଗଲା ସେହିଦିନ ସଜ୍ଜନ ଓ୍ୱାର୍ଡ଼ର ଧନୀ ପୁରୁଷ ପ୍ରମୁଖ ଡାକ୍ତର, ଓକିଲ, ଅଧ୍ୟାପକ ଓ ସାମାଜିକ କାର୍ଯ୍ୟ କର୍ତ୍ତାମାନଙ୍କୁ ସଭାକୁ ଡାକିଥିଲା । ସେହିଦିନଠାରୁ ଲାଲା ଜାନକୀ ଶରଣ ସଜ୍ଜନଙ୍କୁ ଖୋଲା ଖୋଲି ଭାବରେ ବିରୋଧ କଲେ । ଅନ୍ୟ କେତେକ ମହାଜନ ମଧ୍ୟ ଏହାର ବିରୋଧ କରୁଥିଲେ । ଏହି ସହକାରୀ ବ୍ୟାଙ୍କ ସମାଜର ମଧ୍ୟମ ଶ୍ରେଣୀକୁ ଋଣମୁକ୍ତ କରିବାର ଧ୍ୱନି ଦେଇ ଆଗେଇବାକୁ ଚାହୁଁଥିଲା । ଆଜିକାଲି ସହରରେ ରହୁଥିବା ମଧ୍ୟବିତ୍ତ ଶ୍ରେଣୀ ପ୍ରାୟ ୮୫% ମହାଜନ-ମାନଙ୍କର ଅଧୀନ । ବିବାହ, ବ୍ରତ, ରୋଗ ସମସ୍ତେ ଏ ସାମାଜିକ ଜୀବନକୁ ଘେରି ରହିଛନ୍ତି । ସମସ୍ତଙ୍କ ପାଇଁ ଅର୍ଥର ଆବଶ୍ୟକତା ରହିଛି । କମ୍ ଉତ୍ପାଦନକାରୀ ମଧ୍ୟବିତ୍ତ ଶ୍ରେଣୀ ଅର୍ଥ ପାଇଁ ମହାଜନର ଦ୍ୱାରସ୍ଥ ହୁଏ ଓ ମହାଜନର ଜମାନତ୍ ପାଇଁ ସୁଧ ଦରକାର ହୁଏ । ମଧ୍ୟବିତ୍ତ ଶ୍ରେଣୀର ଅଧିକାଂଶ ଲୋକଙ୍କ ସୁନା ଆସି ମହାଜନଙ୍କର ଟ୍ରେଜେରୀରେ ବନ୍ଦହୋଇ ରହିପାରିଛି ଏବଂ ଏହି ସୁନା କେବେ ମଧ୍ୟବିତ୍ତ ଶ୍ରେଣୀ ହାତକୁ ଆଉ ଫେରିବ ନାହିଁ । ଋଣ ଗ୍ରସ୍ତ ମଧ୍ୟବିତ୍ତ ଶ୍ରେଣୀ ଅଣନିଶ୍ୱାସୀ ହୋଇ ନିଜ ମହାଜନର ଚକ୍ରବୃଦ୍ଧି ସୁଧର ଋଣକୁ କେବେ ପରିଶୋଧ କରିପାରେ ନାହିଁ ଏବଂ ସେ ଜୀବନର ବ୍ୟାପାରରେ ଭୁଡ଼ିରହି, ବିରକ୍ତ, ଅଭିଯୋଗୀ ଓ ଅଳସୁଆ ହୋଇଯାଏ । ସଜ୍ଜନ ସେମାନଙ୍କୁ ମୁକ୍ତି ଦେବାକୁ ଚାହେଁ । ମହାଜନମାନଙ୍କୁ କୌଣସି ପ୍ରକାରେ ଏକଥା ସୁହାଉ ନଥିଲା । ବନକନ୍ୟା ସଭାରେ ତାଙ୍କ ବିରୁଦ୍ଧରେ ଉତ୍ତେଜନାମୂଳକ ଭାଷଣ ଦେଇସାରିଛି ।

ଲାଲ ଜାନକୀ ଶରଣ ଓ ତାଙ୍କ ସହିତ କେତେକ ଗଣ୍ୟମାନ୍ୟ ଅଧ୍ୟକ୍ଷମାନେ ସଭାରୁ ଉଠି ଚାଲିଗଲେ ।

ଏହି ସଭା ସଜ୍ଜନର ଯୋଜନା ଉପରେ ନିଶ୍ଚିତ ପ୍ରଭାବ ପକାଇଛି । ସଜ୍ଜନ ସ୍ୱୟଂ ଜଣେ ଧନାଢ୍ୟ କୁଳର ବଂଶଧର ତଥା ତିନି ଲକ୍ଷ ଟଙ୍କା ଦାନ କରିଥିବାରୁ ଯୋଗୁଁ ସଙ୍ଗେ ଓ୍ୱାର୍ଡର ମହାଜନମାନଙ୍କର ତୀବ୍ର ବିରୋଧିତା ସତ୍ତ୍ୱେ ସାଧାରଣ ଜନସମାଜରେ ଅଧିକ ପ୍ରଭାବଶାଳୀ ହୋଇଉଠିଲା । ଶିକ୍ଷିତ ମଧ୍ୟ କମ୍ ମୂଳଧନର କ୍ଷେତ୍ରୀୟ ସହକାରୀ ବ୍ୟାଙ୍କର ବିଷୟ ବହୁତ ପ୍ରଶଂସନୀୟ ହେଲେ । ସଜ୍ଜନର ଉଦ୍ଦେଶ୍ୟ ଥିଲା ଏହି କ୍ଷେତ୍ରୀୟ ସହକାରୀ ବ୍ୟାଙ୍କର ସେଠାକାର ମୂଳଧନରେ ସେଠାକାର ଲୋକଙ୍କ ପାଇଁ ବିଭିନ୍ନ ପ୍ରକାରର ଉଦ୍‌ଯୋଗ ଧନ୍ଦା ବିସ୍ତାରିତ କରି ସବୁ କ୍ଷେତ୍ରରେ ଉନ୍ନତି କରିପାରିବ । ଏହି ଛୋଟ ଛୋଟ ବ୍ୟାଙ୍କଗୁଡିକ ପରସ୍ପର ମଧ୍ୟରେ ସହଯୋଗ ମଧ୍ୟ ରଖିପାରିବେ । ଯେଉଁ ପ୍ରକାରର ପ୍ରୟୋଗ ପାଇଁ ଏଠାରେ ସଜ୍ଜନର ମୂଳଧନ ଲାଗୁଅଛି, ଏହିଭଳି ଯଦି ସରକାର ଲଗାଇବେ, ପ୍ରାଇଭେଟ୍ ମହାଜନଙ୍କୁ ନିୟମ ଦ୍ୱାରା ବନ୍ଦ କରି କୁଟୀର ଉଦ୍‌ଯୋଗ ଧନ୍ଦାର ସ୍କିମ୍ ପ୍ରସାରିତ କରାଯିବ, ତେବେ ଦୁଃଖ ଓ ଅପମାନରେ ଜୀବନ ବିତାଉଥିବା ମଧ୍ୟବିତ୍ତ ଶ୍ରେଣୀ ନିଜର କଷ୍ଟକର ଅବସ୍ଥାକୁ ନଷ୍ଟକରି ନୂତନ ରୂପରେଖରେ ନିଜର ଜୀବନ ଅତିବାହିତ କରିପାରିବେ ।

"ଚୌକ ଓ୍ୱାର୍ଡ଼ ସହକାରୀ ବ୍ୟାଙ୍କ' ଗୋଟିଏ ଆନ୍ଦୋଳନ ରୂପେ ଉଠିଲା । ପ୍ରତ୍ୟେକ ଆଗ୍ରହୀ ବ୍ୟକ୍ତିକୁ ଉଧାର ଦେଉଥିଲା । ତାହାର ପ୍ରତିରୂପ କାମ ମଧ୍ୟ ନେଉଥିଲା ଓ ଏହିଭଳି ସେ ପ୍ରତ୍ୟେକ ବ୍ୟକ୍ତିକୁ ସହୋଟତାର ସହିତ ଋଣ ମୁକ୍ତ ହେବାର ଅବସର ଦେଉଥିଲା । ଏହି ସିଦ୍ଧାନ୍ତ ଅନେକଙ୍କୁ ପସନ୍ଦ ଆସିଲା । ଏହି ବ୍ୟାଙ୍କ ଅନ୍ତର୍ଗତ 'ସଜ୍ଜନ' ହ୍ୟାଣ୍ଡଲୁମ୍‌ର କାରଖାନା, ରବର ଖେଳନା ଓ ବେଲୁନ ବନାଇବା, ନୂଆ ଡିଜାଇନ୍‌ର ଛପେଇବା, ଚକ୍‌କଣ କାମ ଆଦି ଧନ୍ଦା ମଧ୍ୟ ଆରମ୍ଭ କଲା, ଯେଉଁଥିରେ ଏହି କ୍ଷେତ୍ରରେ ଲୋକମାନେ କାମରେ ନିଯୁକ୍ତି ପାଇଲେ । ସ୍ତ୍ରୀମାନଙ୍କୁ ମଧ୍ୟ ଘରେ ବସି ଅଥବା ଦେଠେଙ୍କ କୋଠୀକୁ ଆସି ବିଭିନ୍ନ ଯୋଜନା ମୂଳକ କାର୍ଯ୍ୟରେ ଯୋଗ ଦେଲେ ।

ପ୍ରତ୍ୟେକ ଗୁରୁବାରକୁ ବଜାର ଛୁଟି ଦିନରେ ଭାରତର ଇତିହାସ ଓ ସଂସ୍କୃତି ଉପରେ ବ୍ୟାଖ୍ୟାନର ଆୟୋଜନ କରାଗଲା । ନାଟକ ଦ୍ୱାରା ସାମାଜିକ ମନୋରଞ୍ଜନ ଓ ଶିକ୍ଷାପାଇଁ ଆୟୋଜନ କରାଗଲା । ଦୁଇ ମାସରେ ସଜ୍ଜନ ଓ ବନକନ୍ୟା ନିଶ୍ୱାସ ମାରିବା ପାଇଁ ଟିକେ ସମୟ ପାଇଲେ ନାହିଁ । ସେ ଦୁହେଁ ସାର୍ବଜନୀନ ବିଚାର ସମ୍ମୁଖରେ ବାନ୍ଧି ହୋଇଗଲେ । ତାଙ୍କର କାର୍ଯ୍ୟାବଳୀ ଉପରେ ଅନେକ ଆଲୋଚନା, ସମାଲୋଚନା ଚାଲିଥିଲା । ତେଣୁ ସାମାଜିକ ଜୀବନର ସରସତା ସେ ଦୁହେଁ ଅନୁଭବ କରିବାକୁ ଚାହୁଁ ନଥିଲେ । ରାସ୍ତାରେ ଯିବା ସମୟରେ ତାଙ୍କ ଉପରେ ଗାଳି ଓ ଇର୍ଷାର ବର୍ଷା,

ଓ ଲୋକଙ୍କ ଆଖିରେ ତାର ପ୍ରତି ଆଦର ଓ ପ୍ରେମ ମଧ୍ୟ ଥିଲା । ମନର ଭାବ ମିଶିବା ହେତୁ ସଜ୍ଜନ ମନରେ ଏବେ ସମସ୍ତଙ୍କ ନିଜ ପ୍ରତି ମମତ୍ୱ ରଖି ଦେଖିବାର ଇଚ୍ଛା ପରିସ୍ଫୁଟ ହୋଇଥିଲା । ପ୍ରଥମେ ସେ ଅନେକ ଲୋକଙ୍କ ଅସୁବିଧା ଦୂର କରିବାରେ ଏକ ପ୍ରକାରର ଆନନ୍ଦ ଆସ୍ୱାଦ ପାଉଥିଲା । ତାକୁ ଲାଗୁଥିଲା ଯେପରି ସେହି ଲୋକ ତା ପ୍ରତି କୃତଜ୍ଞତା ଏବଂ ଶ୍ରଦ୍ଧା ଦେଖାଉଛନ୍ତି । ଶ୍ରଦ୍ଧା ଭାଜନ ହେବା ପାଇଁ ସେ ଅଧିକରୁ ଅଧିକ ନିଜେ ନିଜକୁ ପରୋପକାରୀ ଭାବରେ ପ୍ରତିଷ୍ଠା କରିବାର ଚେଷ୍ଟା କଲା । ଏକଥା ନୁହେଁ ଯେ ଲୋକଙ୍କ ଅସୁବିଧାରେ ତା ମନରେ କରୁଣା ଜାତ ହେଉ ନଥିଲା । କିନ୍ତୁ କାମକର ପ୍ରତିଦାନ ଚାହୁଁ ଥିଲା । କାର୍ଯ୍ୟଭାର ବଢ଼ିବା ସଙ୍ଗେ ସଙ୍ଗେ ସଜ୍ଜନର ସେହି ଆକର୍ଷଣୀୟ ଇଚ୍ଛା ସମାପ୍ତ ହେବାକୁ ଲାଗିଲା । ଏଥିପାଇଁ ତା ମନକୁ କେତେକାଂଶରେ ଅବକାଶ ମିଳିଲା । ତାର ଅଧିକରୁ ଅଧିକ ସମସ୍ତ ଚିନ୍ତା ଓ କାର୍ଯ୍ୟରେ ବିନିଯୋଗ ହେଲା ।

ଏଆଡ଼େ କେଠେଇର ମାନ୍ଦା ପଣିଆ ବଢ଼ି ଯାଇଥିଲା । ମହୀପାଳର ଘରେ ଭାଣିଜୀର ବିବାହ ଆଉ ଖୁବ୍ କମ୍ ଦିନ ଥିଲା । ସଜ୍ଜନ ଓ କନ୍ୟା ମଧ୍ୟରୁ ଜଣେ କେହି କେଠେଇ ପାଖରେ ବସି ରହିବା ନିଶ୍ଚିତ ହୋଇ ଯାଇଥିଲା । ମହୀପାଳ, ସଜ୍ଜନକୁ କାର୍ଯ୍ୟ ବ୍ୟସ୍ତ ଦେଖି ତାଠାରୁ ଗୁଡ଼୍ ଗୁଡ଼୍ ହୋଇ ରହୁଥିଲା । ଏବେ ଆଳକର ଆହୁରି ଅଧିକ ଦୂରେଇ ଗଲା । ତାର ଏହା ଅଭିଯୋଗ ଥିଲା ଯେ ସଜ୍ଜନ କଣ୍ଟ୍ରୋଲ୍ ପରି ତା କାମରେ ସହାୟକ ହୋଇ ମିତ୍ର ଧର୍ମର ନ କରିପାରିଲା ତେବେ ସମାଜ କଲ୍ୟାଣର ଧର୍ମକୁ କିପରି ସମାଧାନ କରିପାରିବ ? କଲ୍ୟାଣୀ ଓ କନ୍ୟାଙ୍କ ମଧ୍ୟରେ ହୋଇଥିବା ନିଷ୍ପତ୍ତିକୁ ଅମାନ୍ୟ କରି ଶକୁନ୍ତଳାର ବିବାହ ସଜ୍ଜନର 'ଶାହନଜଙ୍ଗ' କୋଠରୀରେ ନ କରି ରୂପରଞ୍ଜନର କୋଠରୀରେ କରିବାର ବ୍ୟବସ୍ଥା କଲା । ସେଠ ରୂପରଞ୍ଜନ ଓ ଲାଲା ଜାନକୀ ଶରଣଙ୍କ ଇଶାରାରେ ସେ ସଜ୍ଜନର ନୂଆ ଯୋଜନାଗୁଡ଼ିକ ବିରୁଦ୍ଧରେ ଗୋଟିଏ ଛୋଟିଆ ପୁସ୍ତକ ଲେଖି ଅତ୍ୟନ୍ତ ତୀବ୍ର ସମାଲୋଚନା କଲା । ସେ ଲେଖିଥିଲା ଯେ, ସଜ୍ଜନ ବର୍ମା ମୋର ଅନ୍ତରଙ୍ଗ ମିତ୍ର ପରନ୍ତୁ ଯେଉଁଠାରେ ମୈତ୍ରୀ ଓ ସାର୍ବଜନୀନ ହିତରେ ଟକ୍କର ଲାଗେ ସେଠାରେ ମୈତ୍ରୀ ପକ୍ଷପାତ ନକରି ଜନତାକୁ ସଚେତ କରିବା ମୋର ପରମ କର୍ତ୍ତବ୍ୟ । ଏହା ମାନବତାର ଆହ୍ୱାନ । ଏହି ଜଗତ୍ ସହିତ ମହୀପାଳ, ସଜ୍ଜନର ସମସ୍ତ ଯୋଜନାକୁ 'ନୂଆ ମହାଜନୀ' ସ୍କିମ୍ ନାମରେ ଏହା ସିଦ୍ଧ କରିଛି ଯେ ସଜ୍ଜନର ଏହି ସହକାରୀ ବ୍ୟାଙ୍କ ଯୋଜନା ଜନହିତ ନାମରେ ଜନତାକୁ ସବୁ ଦିନ ପାଇଁ ନିଜର କିଙ୍କର କରିବାରେ ଏହା ଏକ ଗଭୀର କୌଶଳ । ପୁରୁଣା ପରମ୍ପରାର ସୁଧ ଖୋରମାନେ ଯେଉଁଠି ସମାଜର କେବଳ କେତେକ ବ୍ୟକ୍ତିର କ୍ଷତି କରୁ ଥିଲା, ସେଠାରେ ଏ ସମସ୍ତ ସମାଜକୁ ଠକେଇବା ପାଇଁ ଏହା ଏକ ସ୍କୀମ୍ । ଭାରତୀୟ ସଂସ୍କୃତି ବିଷୟରେ ସଜ୍ଜନ ଜାଣେ କଣ ? ସେ ଯାହା କିଛି ଶିଖିଛି ତାହା କେବଳ

ମହୀପାଲ ପାଖରୁ ଶିଖିଛୁ । ଏପରି ଅପରିପକ୍ୱ ଜ୍ଞାନବାନ ମନୁଷ୍ୟ ସଂସ୍ଥାଗଠନରେ ଆମ୍ଭ ଶିକ୍ଷା ସୁଧାର ନାମରେ ସ୍ପଷ୍ଟ ଭାରତୀୟ ପରମ୍ପରାର ଗଳାକାଟି ଦେଉଛୁ । ସାଂସ୍କୃତିକ ଆୟୋଜନ କରିବା ଆଳରେ ଜନତାଙ୍କୁ ଯଦି ପଥଭ୍ରଷ୍ଟ କରୁଥିବା ବ୍ୟକ୍ତିଙ୍କର ଉଦ୍ୟମକୁ ଯଦି ପ୍ରଥମ ଅବସ୍ଥାରୁ ପଣ୍ଡ କରାନଯିବ ତେବେ ଭବିଷ୍ୟତରେ ଏହା ଜନତା ପାଇଁ ଅଭିସଂପାତ ହୋଇଉଠିଆ ହେବ । ସଜ୍ଜନର ଏହି ଯୋଜନା ପୂତନା ଭଳି ସ୍ତନରେ ବିଷ ଲଗାଇ ବାତ୍ସଲ୍ୟର ଆଳ ଦେଖାଇ ଶ୍ରୀକୃଷ୍ଣଙ୍କୁ ଦୁଧ ପିଆଇବା ପାଇଁ ଆସିଅଛି ।

ଏହି ପାମ୍ଫଲେଟ୍‌କୁ ଖୁବ୍ ଉତ୍ସାହର ସହ ବଣ୍ଟାଗଲା । ଲାଲା ଜାନକୀ ଶରଣ ନିଜ ଘର ପାଖ ଛୋଟ ପଡ଼ିଆ ଉପରେ, ଯେଉଁଠି କିଛି ମାସ ପୂର୍ବେ କେତେଥର କୃଷ୍ଣ ଭଗବାନଙ୍କର ଦୃଶ୍ୟ ସଜା ଯାଇଥିଲା ଗୋଟିଏ ସାର୍ବଜନିକ ସଭାର ଆୟୋଜନ କଲେ । ସେଥିରେ ଅନ୍ୟାନ୍ୟ ବକ୍ତାମାନଙ୍କ ସହିତ ମହୀପାଲର ଭାଷଣ ମଧ୍ୟ ଥିଲା ।

ସଜ୍ଜନ ମହୀପାଲର ଏତାଦୃଶ ବ୍ୟବହାର ପାଇଁ ଆଶ୍ଚର୍ଯ୍ୟ ହେଲା ନାହିଁ କିନ୍ତୁ ଦୁଃଖିତ ହେଲା । ନିଜ ହୃଦୟ ମଧ୍ୟରେ ଆତ୍ମ ପରୀକ୍ଷା କରି ନିଜ ଭିତରକୁ ଦେଖିବାକୁ ଚେଷ୍ଟା କଲା । ହୋଇପାରେ ମହୀପାଲ ତର୍କଗୁଡ଼ିକୁ ସମ୍ପୂର୍ଣ୍ଣ ମିଥ୍ୟା ତଥାପି ଏହି ଯୋଜନାରେ ବ୍ୟକ୍ତିଗତ ମହତ୍ତ୍ୱାକାଙ୍କ୍ଷା କ'ଣ ଲୁଚି ରହିଛି ? ଯଦି ଏପରି ହୁଏ ତେବେ କାର୍ଯ୍ୟ ତ୍ରୁଟିମୁକ୍ତ ହୋଇ ପାରିବ ନାହିଁ । କୌଣସି ସାର୍ବଜନୀନ କାର୍ଯ୍ୟରେ ସାର୍ବଜନୀନ ଆକାଂକ୍ଷାହିଁ ଶକ୍ତି । ଭାଷଣ କାର୍ଯ୍ୟବ୍ୟସ୍ତ ରହି ମଧ୍ୟ ସେ ଆତ୍ମନିରୀକ୍ଷା କରି ଚାଲିଥିଲା । ସେ ଯେ ଅହଙ୍କାରୀ ଏକଥା ନିହାତି ସତ । ନିଜେ ଆରମ୍ଭ କରିଥିବା କାର୍ଯ୍ୟରେ ବାଧା ଦେବାକୁ ପସନ୍ଦ କରିବନାହିଁ । ଅନ୍ୟମାନଙ୍କ ସହିତ ମହୀପାଳର ଆଲୋଚନା ଶୁଣି ଅତ୍ୟନ୍ତ ବିଚଳିତ ହୋଇ ପଡ଼ୁଥିଲା । ମହୀପାଳର କଥାକୁ ନିରର୍ଥକ ସାବ୍ୟସ୍ତ କରିବା ପାଇଁ ବ୍ୟକ୍ତିଗତ ଇଚ୍ଛାଠାରୁ ଅନେକ ଊର୍ଦ୍ଧ୍ୱକୁ ଯିବାକୁ ହେବ ।

ଶଙ୍କରଲାଲ, ବର୍ମା ଆଜି କେତେକ ଯୁବକ ସଜ୍ଜନ ସହିତ ଥିଲେ । ଏହି କାର୍ଯ୍ୟ ପାଇଁ ଅନେକ ବ୍ୟକ୍ତି ତା ପାଖକୁ ଯିବାଆସିବା କରୁଥିଲେ । ତାର କାର୍ଯ୍ୟ ଜନତାଙ୍କ ସମ୍ମୁଖରେ ସ୍ପଷ୍ଟ ରୂପେ ଆତ୍ମପ୍ରକାଶ କରିବା ଯୋଗୁଁ ଲୋକଙ୍କ ସହାନୁଭୂତି ମଧ୍ୟ କ୍ରମଶଃ ବଢ଼ିବାରେ ଲାଗିଲା । ଲାଲା ଜାନକୀ ଶରଣ, ମହିପାଲ ଶୁକ୍ଳ ଆଦିଙ୍କ ଦ୍ୱାରା ସଜ୍ଜନର ନିନ୍ଦା କରାଯିବାରୁ ସଜ୍ଜନର ଅନେକ ପ୍ରଶଂସକମାନଙ୍କ ମଧ୍ୟରେ କ୍ଷୋଭ ପ୍ରକାଶ ପାଉଥିଲା । ସ୍ଥାନେ ସ୍ଥାନେ ଏହାକୁ ନେଇ ଚର୍ଚ୍ଚା ହେଉଥିଲା ମଧ୍ୟ ନିଜ ନିଜର ବୋଧଶକ୍ତି ଅନୁସାରେ ଲୋକେ ସଜ୍ଜନ ଅଥବା ମହିପାଲ, ଜାନକୀ ଶରଣ ଆଦିଙ୍କ ପକ୍ଷରେ ଥିଲେ । ସଜ୍ଜନର ପ୍ରଶଂସକ, ସଜ୍ଜନକୁ ଶୀଘ୍ର ଗୋଟିଏ ମିଟିଂ କରି ବିରୋଧୀ ପାର୍ଟିକୁ ଉପଯୁକ୍ତ ଜବାବ ଦେଇ ସେମାନଙ୍କର ଅଭିମାନ ମେଣ୍ଟାଇବା ପାଇଁ ବାତାବରଣକୁ ଉତ୍ତ୍ୟକ୍ତ କରି ଗଢ଼ୁଥିଲେ ।

ସଜ୍ଜନ ଏହି ବିଷୟ ଉପରେ ଚିନ୍ତା କରୁଥିଲା । ସେଦିନ ସେ ଗୋଟିଏ ଘର ଦେଖିଯିବାର ଥିଲା । ସାଇଟରେ ସେ ଗୋଟିଏ ହସ୍‌ପିଟାଲ ସ୍ଥାପନ କରିବାର ଆୟୋଜନ କରୁଥିଲା । ଜଣେ ତାକୁ ବନାରସର ଏଭଳି ଏକ ଧର୍ମାର୍ଥ ହସ୍‌ପିଟାଲର କଥା ଶୁଣେଇ-ଥିଲା । ସେଠାରେ ହୋମିଓପ୍ୟାଥିକ, ଆୟୁର୍ବେଦିକ ତଥା ଏଲୋପ୍ୟାଥିକ୍ ବିଭାଗ ଅଛି । ଅପେରେସନ୍ ଥିଏଟର ଅଛି । ଆଖପାଖ ଜନତାକୁ ସେହି ହସ୍‌ପିଟାଲରୁ ଅତ୍ୟନ୍ତ ସୁବିଧା ମିଳୁଥିଲା । ସଜ୍ଜନ ମନରେ ଏହି ବିଚାର କାମ କରୁଥିଲା । କିନ୍ତୁ ସ୍ଥାନର ଅଭାବ ପାଇଁ ସେ ତାକୁ କାର୍ଯ୍ୟକାରୀ କରି ପାରୁନଥିଲା । ଗୋଟିଏ ବଡ଼ ଘର ବିକ୍ରୀର ଖବର ଶୁଣି ସେ ତାକୁ ମୂଲାଇବା ପାଇଁ ଲାଳାୟିତ ହୋଇ ପଡ଼ିଥିଲା ।

ପକ୍‌କା ନୂଆ ଘର ଥିଲା, ଘର ମାଲିକ ଦ୍ୱିତୀୟ ବିଶ୍ୱଯୁଦ୍ଧ ଅବସରରେ ଲକ୍ଷପତି ହୋଇଥିଲେ । ସେ ନିଜର ବଡ଼ ପଣିଆ ଦେଖାଇ ନିଜର ସମସ୍ତ ଅର୍ଜନ ଶେଷକରି ଦେଲେ । ଓ୍ୱାର୍ଡ଼ର ବଡ଼ ବଡ଼ ପ୍ରତିଷ୍ଠିତ ବ୍ୟକ୍ତିଙ୍କର ପ୍ରଚଳିତ ଢଙ୍ଗ ସହିତ ତାଳଦେଇ ନିଜକୁ ଚଳାଇଲେ । ବଡ଼ ବଡ଼ଙ୍କ ମଧ୍ୟରେ ନିଜ ସ୍ଥାନ ବାଛିଲେ । ପ୍ରଭାବ ଜମାଇଲେ । ପରେ ଜୀବନର ଗତି ବଦଳି ଯିବାପରେ ପୁଣି ରହିବାର ଷ୍ଟାଣ୍ଡାର୍ଡ଼ କମ୍ କରି ପାରିଲେ ନାହିଁ । କରଜ କରିବା ଆରମ୍ଭ ହେଲା ଓ ଏହାର ବୋଝ ଅଧିକ ହୋଇ ଯିବାରୁ ଦିନେ ମର୍ଯ୍ୟାଦା ପଦାରେ ପଡ଼ିଲା । କରଜ ନ ଦେଇ ପାରିବାରୁ ଜେଲ, ମୋକଦ୍ଦମା ଅଥବା ନିୟମ ଅନୁସାରେ ଦିବାଳିଆ କରେଇ ଦିଆଯିବାରୁ ନିଜକୁ ରକ୍ଷା କରିବା ପାଇଁ ସେ ନିଜର ସମସ୍ତ ସଂପତ୍ତି ହରାଇଲେ । ଗହଣା ସୁନା, ରୂପାର ପାତ୍ର, ମୋଟର, ବଗି ସବୁ ଗୋଟିଏ ପରେ ଗୋଟିଏ ତାଙ୍କଠାରୁ ଅନ୍ତର୍ହିତ ହେଲେ ।

ସଜ୍ଜନର ଅନୁଭବୀ ଓ ପୁରୁଣା ଦିବାନ୍‌ଜୀ ଘର ଦେଖି ଆସିଥିଲେ । ତାର ମୂଲ୍ୟ ମଧ୍ୟ ଅନୁମାନ କରି ଆସିଥିଲେ, ବିଳମ୍ବ କଲେ ଭଲ ସଂପତ୍ତି ହାତରୁ ଖସି ଯିବାର ଭୟ ମଧ୍ୟଥିଲା । ସେ ମହିପାଳର ଆକ୍ଷେପର ଜବାବ ଦେବା ପାଇଁ ମିଟିଙ୍ଗ କରିବା ବଦଳରେ ହସପିଟାଲ ପାଇଁ ଘର କିଣିବାର ଚିନ୍ତାରେ ଥିଲା । ମହିପାଳର ବିଷର ଜବାବ ପାଇଁ ଏହା ଅମୃତ ହେବ, ବସ୍ତୁତଃ ଚୁପ୍ ଚୁପ୍ ।

ଜବାବୀ ମିଟିଙ୍ଗ ପାଇଁ ଆଗ୍ରହୀ ବ୍ୟକ୍ତିଙ୍କୁ ଏହି ଉତ୍ତର ଦେଇ ସଜ୍ଜନକୁ ହଠାତ୍ ଏହା ଜଣାଗଲା ଯେ ପ୍ରକୃତରେ କଣ ଏହି ଶବ୍ଦ ପ୍ରତି ତାର ନିଜର ଆସ୍ଥା ଅଛି ? କେବେକେବେ ଏହା ମଧ୍ୟ ହୁଏ ଯେ ଆମେ ନିଜକୁ ରକ୍ଷା କରିବା ପାଇଁ ଗୋଟିଏ ସୁନ୍ଦର କଥା ଭାବିନେଉଁ । ପୁଣି ଲୁଚିବା ପାଇଁ ଆମର ଏଭଳି ଅଭ୍ୟାସ ହୋଇଯାଏ । ଆମର ସ୍ୱଭାବ କଣ ଏହାକୁ ଅମେ ଚିହ୍ନି ପାରୁନା ଓ ଏହି ଚିହ୍ନିବାର ଅଭାବ କେତେକ ସମୟରେ ଭୟଙ୍କର ଅସୁବିଧାରେ ପକାଇ ଦିଏ । ସଜ୍ଜନ କଣ ପ୍ରକୃତରେ ଶୁଦ୍ଧ ଜନକଲ୍ୟାଣର ଭାବନାରେ କରୁଛି ? ସେ ପ୍ରତି ବଦଳରେ କ'ଣ ଯଶ ଚାହେଁ ନାହିଁ ?

ସାମାଜିକ କାର୍ଯ୍ୟରେ ଚିତ୍ର କଳାର ସାଧନା କରେ ଅଧିକ ଚମତ୍କାରୀ ଯଶ ମିଳିବ । ତା ଭିତରେ ଏ ଭାବନା କାହିଁକି କାର୍ଯ୍ୟ କରୁନାହିଁ ।

ଅସୁମାରି ପ୍ରଶ୍ନ ତାକୁ ଅଣନିଶ୍ୱାସୀ କରୁଥିଲେ । ମନରେ ଦ୍ୱନ୍ଦ୍ୱଗଡ଼ି ଉଠୁଥିଲା । ଯୁକ୍ତି ଜନକଲ୍ୟାଣର ଭାବନା' ନା' । ସେ ଯଶ ଚାହେଁ କିନ୍ତୁ ଏହା ସତ ନୁହେଁ ଯେ ସେ ଚିତ୍ର କଳାକୁ ଯଶର ପ୍ରଲୋଭନରେ ଛାଡ଼ି ନିଜର ପରୀକ୍ଷା କାମିନୀ ଲକ୍ଷ୍ମୀଙ୍କ ବଳରେ ନେତା ହୋଇଛି । ଏ ସବୁ କିଛି ତା ଜୀବନରେ ଅନାୟାସରେ ଆସିଗଲା । ଯେଉଁ ପ୍ରଶ୍ନକୁ ନେଇ ନିଜର ଭାରତୀୟ ସମାଜର ଅଗ୍ରଗତିକୁ ଦେଖିବା ପାଇଁ ସେ ଏହି ସାଇକୁ ଆସିଥିଲା, ଅସାଧାରଣ ସମାଜରେ ରହି ଯେଉଁ ପ୍ରଶ୍ନର ଉତ୍ତର ତାକୁ ମିଳିପାରୁ ନଥିଲା ତାକୁ ନେବା ପାଇଁ ସେ ଜନସାଧାରଣଙ୍କ ଭିତରକୁ ଆସିଥିଲା । ତାର ଆବେଗ ତାର ବୁଝିବା ପ୍ରବୃତ୍ତି ତାକୁ ଏଠାକୁ ଟାଣି ଆଣିଥିଲା । ଯଦ୍ୟପି ବର୍ତ୍ତମାନ ସୁଦ୍ଧା ଜନସାଧାରଣଙ୍କର ନିକଟତମ ସଂସ୍ପର୍ଶକୁ ସେ ଆସିପାରି ନାହିଁ, ତଥାପି ତାଙ୍କ ପାଇଁ ଦିନ ...ପ୍ରତିଦିନ କରୁଣାର ଜୁଆର ଉଠି ଆସୁଛି । ଏଥିପାଇଁ ତାର ସାମାଜିକ କାର୍ଯ୍ୟ କେତେକ ଜନକଲ୍ୟାଣର ଭାବନାରେ ଶତ ପ୍ରତିଶତ ପ୍ରେରିତ ନ ହୋଇ ମଧ୍ୟ କିଛିକି ଯଶ ଲିପ୍ସାଠାରୁ ଢେର ଅଧିକ ହୋଇ ରହିଛି । କିନ୍ତୁ କାର୍ଯ୍ୟ ବ୍ୟସ୍ତ ମଧ୍ୟରେ ବୁଡ଼ିରହି କେବେ କେବେ ଯଶର ଭାବନା ତା ମନରୁ ଯଦି ପୂର୍ଣ୍ଣମାତ୍ରାରେ ଉଭେଇଯାଏ, କେବେ ପୁଣି ମନ୍ତ୍ରୀପଦ ପାଇଁ ତା ମନରେ କଷ୍ଟ କାହିଁକି ? କଣ ଏହା ମଧ୍ୟ ସତ୍ୟ ନୁହେଁ ଯେ ଯବାଣୀ ମିଟିଙ୍ଗ କରିବାର କଥା ତାକୁ ବର୍ତ୍ତମାନ ଭଲ ଲାଗୁଛି । ଯଦି ତାକୁ ଘର ଦେଖିବା ପାଇଁ ଯିବାକୁ ପଡ଼ିନଥାନ୍ତା, ତା ମନକୁ ଟିକିଏ ଯଦି ସମସ୍ତ ମିଳିଥାଆନ୍ତା ବୋଧହୁଏ ତା ଉପରେ ଆତୁର ଅଧିକ ଲାଭଥାଆନ୍ତା ?

ସଜ୍ଜନ ଏହି ସତ୍ୟକୁ ମାନି ନେଉଥିଲା ।

# ଅଣଗୃଶ

ଘର ଭୋଡ଼ାଏ ହଜାରରେ ଖରିଦ କରାଗଲା, ଯେଉଁ ପର୍ଯ୍ୟନ୍ତ ଏହି ଗ୍ଲେଟିଆ ହସ୍‌ପିଟାଲ୍ ପାଇଁ ଆବଶ୍ୟକ ଜିନିଷ ନ ଆସିଛି ସେ ପର୍ଯ୍ୟନ୍ତ ପ୍ରତୀକ୍ଷା କରି ବସି ରହିବା ସଜ୍ଜନ ଉଚିତ ଭାବିଲା ନାହିଁ । ଜଣେ ଡାକ୍ତର, ଲେଡ଼ି ଡାକ୍ତର, ବୈଦ୍ୟ, ହାକିମ ଓ ହୋମିଓପ୍ୟାଥିକଙ୍କୁ ନିଯୁକ୍ତ କରିବା ବ୍ୟତୀତ ସେ ସହରର ଜଣେ ପ୍ରସିଦ୍ଧ ଡାକ୍ତର ତଥା ଡା : ଶୀଲା ମିଶ୍ରଙ୍କ ସହିତ ମଧ୍ୟ ସପ୍ତାହରେ ଦୁଇ ଦିନ ପରାମର୍ଶଦାତା ଡାକ୍ତର ରୂପେ ଆସିବାକୁ ପ୍ରାର୍ଥନା କଲା । ଶୀଲା ଏହି ପ୍ରାର୍ଥନାର ଉତ୍ତରରେ ନିଜର ଅଧା ପ୍ରାଇଭେଟ୍ ପ୍ରାକ୍‌ଟିସ୍ ତ୍ୟାଗକରି ପ୍ରତିଦିନ ସନ୍ଧ୍ୟାରେ ସେଠାକୁ ଆସିବାର ଜବାବ ଦେଲା । ସଜ୍ଜନ ଓ କନ୍ୟା ଅତ୍ୟନ୍ତ ଖୁସି ହେଲେ । ଅପରେସନ୍ ଥିଏଟର ଓ ଔଷଧ ଗୃହର ସମସ୍ତ ଜିନିଷ ଖରିଦ କରିବାର ଦାୟିତ୍ୱ କର୍ଣ୍ଣେଲଙ୍କୁ ଦିଆଗଲା ।

ଡା : ଶୀଲାର ତ୍ୟାଗ ଓ ପ୍ରଶଂସାକୁ ପ୍ରଚାର କରିବାରେ ସଜ୍ଜନ ବଡ଼ ଉତ୍ସାହର ସହିତ ଲାଗି ପଡ଼ିଲା । ସହରର ଖବର କାଗଜମାନଙ୍କରେ ଏ ଖବର ଛପା ଗଲା । ଦୁନିଆଁ ଏହା ବୁଝିପାରୁ ଯେ ଶୀଲାର ଏହି ବାର୍ତ୍ତା ପ୍ରଚାରରେ ସଜ୍ଜନର ନିଜ ସ୍ୱାର୍ଥ ନ ଥିଲା କିନ୍ତୁ ଏହାଦ୍ୱାରା ମଧ୍ୟ ସଜ୍ଜନ ମନରେ ମହିପାଲ ପ୍ରତି ପ୍ରତିହିଂସାର ନିଆଁ ଜଳିଥିଲା । ସେ ତାକୁ ଆଘାତ ଦେବାକୁ ଚାହୁଁଥିଲା ।

ମହିପାଲ ପ୍ରକୃତରେ ରକ୍ତାକ୍ତ ହେଲା । ତାକୁ ମନେହେଲା ଯେପରି ସଜ୍ଜନ ଶୀଲାକୁ ତାର ବିରୋଧୀ କ୍ୟାମ୍ପ୍‌କୁ ଆଣି, ମହିପାଳର ବଦନାମୀ ଘଟଣାବଳୀ ଲୋକଙ୍କ ଆଗରେ ପ୍ରଚାର କରୁଛି । ସଜ୍ଜନ ପ୍ରତି ତାର ଉତ୍କଟ ଘୃଣା ଜାତ ହେଲା । ବୃଶ୍ଚିକ ଭଳି ବାରମ୍ବାର ତାର ସନ୍ଦେଶମାନ ତାକୁ କ୍ଷତ ବିକ୍ଷତ କଲେ । ମାମୁଁ ଘରର ସାମନ୍ତ ସଂସ୍କାର ମହିପାଳର ଚେହେରାରେ ପ୍ରଳୟର ଲହରି ଭଳି ତରଙ୍ଗାୟିତ ହେଲା । ସେ ସଜ୍ଜନକୁ ହତ୍ୟା କରିବ, ତା ଉପରକୁ କୁକୁର ଫିଙ୍ଗିବ । ମାଟିରେ ଗଡ଼ାଇ ଠୋକର ମାରିବ । ଟଙ୍କାର ବୈଭବରେ ନିଆଁ ଲଗାଇ ଦେବ, ଘୃଣା ରହି ରହି ଆବେଗରେ ତାକୁ ବ୍ୟତିବ୍ୟସ୍ତ କରୁଥିଲା । ସେ ସଜ୍ଜନର ସର୍ବନାଶ କରିବାକୁ ଚାହୁଁଥିଲା । ଶୀଲା ପ୍ରତି ମଧ୍ୟ ତାର ତୀବ୍ର କ୍ରୋଧ ଥିଲା । ସେ କାହିଁକି ସଜ୍ଜନ ସହିତ ଗଲା ? କଣ ଏହାର ନାମ ପ୍ରେମ ?

ଘରେ ବିବାହର ଗହଳ ଚହଳ ଆରମ୍ଭ ହୋଇ ସାରିଥିଲା । ଶକୁନ୍ତଳାର ବାପ ତରଫ ଲୋକମାନେ ମହିପାଳର ବୃଦ୍ଧ ଗିରିଆ ଭଉଣୀ ଓ ତାର ପିଲାମାନେ ମଧ୍ୟ ବିବାହରେ ମିଳନ ପାଇଁ ଆସିଯାଇଥିଲେ । ସେଠ ରୂପରତନ ତାକୁ ନିଜ କୋଠୀର ଗୋଟିଏ ଅଂଶ ବିବାହ ପାଇଁ ଦେଇ ଦେଇଥାନ୍ତି । ବିବାହର ସମସ୍ତ ଜିନିଷ ସେଠାକୁ ବୋହି ବୋହି ନିଆ ଯାଉଥିଲା । ଘରେ ଗୃହଆଡ଼େ ବିବାହ ପାଇଁ ବ୍ୟସ୍ତତା ଥିଲା । କେବଳ ମହିପାଳର ମନ ପ୍ରବଳ ଈର୍ଷା ଯୋଗୁଁ ଅସ୍ତବ୍ୟସ୍ତ ହେଉଥିଲା । କୌଣସି ଉପାୟ ଦେଖାଯାଉ ନଥିଲା, ସେ ପ୍ରାୟ ଅଧିକାଂଶ ସମୟ ବ୍ୟସ୍ତ ବିରକ୍ତ ହୋଇ ରହୁଥିଲା । ସକାଳୁ ମୋଟର ନେଇ ବାହାରିବା, କେବେ ରାଜା ସାହେବ ପାଖକୁ, କେବେ ରୂପରତନ ଘରକୁ, କେବେ, କୌଣସି ମନ୍ତ୍ରୀ, ଉପମନ୍ତ୍ରୀଙ୍କ ପାଖକୁ, ହାକିମ, ଅମଲାଙ୍କ ପାଖକୁ ଯାଇ ଅଲଗ ଚଳୁତେ ସେ ସଜ୍ଜନର ନିନ୍ଦା ଗାନ କରୁଥିଲା । କେଉଁଠାରେ କହେ ଯେ କମ୍ୟୁନିଷ୍ଟ ପତ୍ନୀର କଥାରେ ପଡ଼ି ସେ ଏହି ସମସ୍ତ ଖୋଲରେ ସେ ଜନତାକୁ କମ୍ୟୁନିଷ୍ଟ ବନାଇ ଦେଉଛି । ରାତିରେ ପୁଣି ତା ଘରେ କମ୍ୟୁନିଷ୍ଟ ନେତା ମାନଙ୍କର ବୈଠକ ବସେ । କେଉଁଠାରେ ଏ ଅପବାଦ ପ୍ରଚାର କରେ ଯେ, ପତି ପତ୍ନୀ ଦୁହେଁ ଚରିତ୍ର ଭ୍ରଷ୍ଟ । ନିଜ ପତିର ମନୋରଞ୍ଜନ ପାଇଁ ସୁନ୍ଦରୀ ସ୍ତ୍ରୀମାନଙ୍କୁ ପ୍ରଦାନ କରିବା କନ୍ୟା—ସ୍କୁଲର ପ୍ରଧାନ ଉଦ୍ଦେଶ୍ୟ । ପ୍ରମାଣ ପାଇଁ ବାରମ୍ବାର ଏହା ମଧ୍ୟ ଯୋଡ଼ି ଦିଏ ଯେ, ମୁଁ ଏହା ସ୍ୱୟଂ ଦେଖିଛି 'ଅଥବା' ଏ କଥା ନିଜେ ସଜ୍ଜନ ମୋତେ କହିଛି । କେଉଁଠାରେ ସେ ସଜ୍ଜନର ଯୋଜନା ମଧ୍ୟରେ ବାବା ରାମଙ୍କୁ ଫସିଷ୍ଟ କରି ଗୋଟିଏ ବିଶାଳ ଷଡ଼ଯନ୍ତ୍ର ପ୍ରତି ସଚେତ ରହିବା ପାଇଁ ଚେତାବନୀ ଦିଏ । କ୍ଷୁଧା-ତୃଷ୍ଣା ଭୁଲି, ଘରେଇ ଦାୟିତ୍ୱକୁ ଜନକଲ୍ୟାଣ ନାମରେ ବିସ୍ତାର କରି ସେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କେବଳ ସଜ୍ଜନର ବିରୁଦ୍ଧରେ ପ୍ରଚାର କରିବାପାଇଁ ଲାଗିଥାଏ । ସେ ରାଜା ସାହେବଙ୍କ ଜୀବନୀ ଚରିତ ଲେଖି ତାଙ୍କୁ ଅମର କରିବାର ପ୍ରଲୋଚନ ମଧ୍ୟ ଦେଇ ସାରିଛି । ଦର୍ଶନଜ୍ଞାନକୁ ବାଦ୍ ଦେଇ ନିଜ ପାଣ୍ଡିତ୍ୟର ନ୍ୟୂନତା ଜମା କରି ମଧ୍ୟ ପୂରା ପ୍ରଯତ୍ନ କଲା । ନିଜ କୋଠୀରୁ କନ୍ୟାର ପାଠଶାଳା ହଟାଇ ସେଠାରେ ବେଦ, ପୁରାଣ, ଗୀତା, ଭାଗବତ ଆଦିର ଅଖଣ୍ଡ ପାଠ କରେଇବା ପାଇଁ ପରାମର୍ଶ ମଧ୍ୟ ଦେଲା । ଯେଉଁଥିରେ ଭାରତୀୟମାନଙ୍କର ଧାର୍ମିକ ନିଷ୍ଠା ଜାଗ୍ରତ ହେବ ଓ ସେଗୁଡ଼ିକ ଉପରେ ଏଭଳି ବିଶ୍ୱାସଘାତ କମ୍ୟୁନିଷ୍ଟର ପ୍ରଭାବ ନ ପଡ଼େ, ସେ ଲାଲା ଜାନକୀ ଶରଣଙ୍କୁ ଯାଇ ବୁଝାଏ ଯେ, ସେ ରାଜା ସାହେବ ତଥା ଅନ୍ୟ ବଡ଼ ବଡ଼ ଲୋକଙ୍କ ସହଯୋଗରେ ଗୋଟିଏ ଏଭଳି ସଂସ୍ଥା ଖୋଲିବାର ଆୟୋଜନ କରନ୍ତୁ ଯେଉଁଥିରେ ସଜ୍ଜନର ସମସ୍ତ ଷଡ଼ଯନ୍ତ୍ର ପଣ୍ଡ ହୋଇଯିବ । ସେ ସେମାନଙ୍କୁ ଏପରି ଆତଙ୍କିତ କରିବାର ଚେଷ୍ଟା କରିଛି ଯେ ଓ୍ୱାର୍ଡ଼ର ସମସ୍ତ ମୁଖପାତ୍ରମାନେ, ବିଶେଷ ରୂପେ ଲାଲା ଜାନକୀ ଶରଣର

ଆଖପାଖ ଘରେ ସୁଇନ୍ଦା ଗ୍ରହ୍ମ ଦଆ ଯାଇଛୁ । ସେ ଏ ସ୍ଥାନରେ ଥିବା ପର୍ଯ୍ୟନ୍ତ କୌଣସି ମହତ ଲୋକର ମର୍ଯ୍ୟାଦା ରକ୍ଷା ହୋଇ ପାରିବ ନାହିଁ ।

ସପ୍ତାହେ ବ୍ୟାପି କଠିନ ଦୌଡ଼ା-ଦୌଡ଼ିର ଯଥେଷ୍ଟ ପ୍ରଭାବ ପଡ଼ିଲା । ସେ ଏହି ସମୟରେ ରୂପରତନର ଘରେ ରହୁଥିଲା । ଏଥିପାଇଁ ତାକୁ ଯେତେବେଳେ ନା ସେତେବେଳେ ହରେକଜିନ୍ ଜିଣିବା ପାଇଁ ସୁବିଧା ମଧ୍ୟ ମିଳୁଥିଲା । ସେ ସେଠ ରୂପ ରତନର ଏକ ସୁପ୍ତ ମହତ୍ତ୍ୱାକାଂକ୍ଷାକୁ ଜାଗ୍ରତ କରିବାରେ ସଫଳ ହୋଇଗଲା । ଗୋଟିଏ ମହାନ ଆନ୍ଦୋଳନକୁ ଚଳାଇ, ସେଠ ରୂପରତନ ବହୁତ ଶୀଘ୍ର ସରକାରୀ ମନ୍ତ୍ରୀ ମଣ୍ଡଳକୁ ଆସିବା ପାଇଁ ନିଜ ରାସ୍ତା ଖୋଲି ଦେଇ ପାରିବ । ଏହି ମହାମନ୍ତ୍ର ନିଜ କାମ କରିଗଲା । ରୂପରତନ ତାକୁ ଗୋଟିଏ ଯୋଜନା ପ୍ରସ୍ତୁତ କରିବାର ପରାମର୍ଶ ଦେଲେ । ଦଶଜଣ ବଡ଼ ବଡ଼ ମହାଜନ ମିଶି ଏଭଳି ସହଯୋଗୀ ଯୋଜନାକୁ ଚଳାଇବେ । ତାଙ୍କର ସହକାରୀ ବ୍ୟାଙ୍କ ଦ୍ୱାରା କୁଟୀର ଶିଳ୍ପଉଦ୍ୟୋଗର କାର୍ଯ୍ୟକ୍ରମ ମାନ ଚାଲିବ । ବାତାବରଣରେ ଚତୁଃପାର୍ଶ୍ୱରେ ଧାର୍ମିକ, ବାତାବରଣ ସୃଷ୍ଟି କରାଯିବ । କେଉଁଠି କୀର୍ତ୍ତନ, କେଉଁଠି ମହାତ୍ମା ମାନଙ୍କର ପ୍ରବଚନ, କେଉଁଠି ଇତିହାସ ପୁରାଣ, ଏହିଭଳି ଧର୍ମଆଡ଼େ ଝାରତୀୟତାର ପ୍ରସାର କରିଦିଆଯିବ । ଏହି ଯୋଜନାର ଆରମ୍ଭରେ ଗୋଟିଏ ବଡ଼ ବିଷ୍ଣୁଶାନ୍ତି ଯଜ୍ଞ ମଧ୍ୟ କରାଯିବ, ଯଦ୍ୱାରା ଜନତା ମନରେ ଧର୍ମ ନିଷ୍ଠା ଜାଗ୍ରତ ହେବ । ରାତିକ ମଧ୍ୟରେ ମହୀପାଲ ଗୋଟିଏ ଲିଖିତ ଯୋଜନା ପ୍ରସ୍ତୁତ କଲା ଯେଉଁଥିରେ ଏ ସମସ୍ତ ଆଦର୍ଶ ପ୍ରସ୍ତୁତ କରାଯାଇଥିଲା ଯାହାକ ରାଜା ସାହେବ ଓ ରୂପ ରତନର ଶ୍ରୀମୁଖରୁ ନିସୃତ ହୋଇଥିଲା ।

ଦୁଇଦିନ ପରେ ଭିକ୍ଟୋରିଆ ପାର୍କ ଚୌକରେ ଏକ ବହୁତ ବଡ଼ ସାର୍ବଜନିକ ସଭାର ଆୟୋଜନ କରାଗଲା । ସ୍ୱୟଂ ରାଜା ସାହେବ ତାର ସଭାପତି ହେବେ ଓ ଜନ କଲ୍ୟାଣ ପାଇଁ ନଗରର ପ୍ରତିଷ୍ଠିତ ସଜ୍ଜନ ମିଶିକରି ଯେଉଁ ମହାନ୍ ଯୋଜନା ପ୍ରସ୍ତୁତ କରାଯାଇଛି ତାହା ଉପରେ ମତାମତ ପ୍ରକାଶ କରିବେ ।

ଜେଠେଇ ଅତ୍ୟନ୍ତ ରୋଗାକ୍ରାନ୍ତ ଥିଲେ । ତାଙ୍କୁ ଏବେ ବଞ୍ଚିବାର ଆଶା ନଥିଲା । ତାଙ୍କ ମରିବା ପରେ, ପତି ଓ ସୌଭୁଣୀ ପୁଅ ତାଙ୍କ ସମୁଚିତ କ୍ରିୟା କର୍ମ କରାଇବେ ନାହିଁ । ସେ ଭୟରେ, ସେ ନିଜେ ବଞ୍ଚିଥିବା ଅବସ୍ଥାରେ ନିଜର କ୍ରିୟାକର୍ମ କରାଉଥିଲେ । ସଜ୍ଜନ ଓ କନ୍ୟା ଉପରେ ତାଙ୍କର ସମସ୍ତ ଦାୟିତ୍ୱ ନ୍ୟସ୍ତଥିଲା । କନ୍ୟା ଓ ସଜ୍ଜନ ତାଙ୍କର ପୁ-ବୋହୂ ଭଳି ହୋଇ ସାରିଥିଲେ ।

ଏହିପରି ଦିନେ ଜେଠେଇ କଲ୍ୟୋମଲ ନାତିର ବୋହୂକୁ ଗହଣ ତୋଳା ସୁନା ଗହଣା ମଧ୍ୟ ପିନ୍ଧାଇ ସାରିଛନ୍ତି, କହିଲେ" ସତ୍ୟାନାଶୀ, ତୁ ବିଧର୍ମୀ ହୋଇ ପାରୁ

କିନ୍ତୁ ଯେତେବେଳେ ବୋଝ ହୋଇ ଗଲିଣି ତେବେ 'ନେ' ମୋର ସେବା ତ ଭୁ କରୁଛୁ, ମୋ କାମକୁ ଭୁଲ ଆସିଲୁ" । ଏତେ ସବୁ ହେବା ପରେ ମଧ୍ୟ ଜେଠେଇ କନ୍ୟା ହାତ ଛୁଆଁ ପାଣି ପିଇବାକୁ ଏବେ ମଧ୍ୟ ଆପତ୍ତି କରୁଛନ୍ତି । ଇଂରାଜୀ ଔଷଧ ଖାଇବା ପାଇଁ ମନା କରିଦେଲେ । ସଜ୍ଜନର ଦୁଇଟି ଚାକର ୨୪ ଘଣ୍ଟା ଜେଠେଇର ସେବା ପାଇଁ ରହନ୍ତି । ରାତିରେ ସଜ୍ଜନ, କନ୍ୟା ମଧ୍ୟରୁ କେହି ଜଣେ ଜେଠେଇ ପାଖରେ ରହନ୍ତି । ଜେଠେଇ ଯେଉଁ ଦାନ- ପୁଣ୍ୟ କରିବାର ଇଚ୍ଛା କରନ୍ତି, ସେ ସମସ୍ତର ଆୟୋଜନ ହୁଏ ।

ଯେଉଁଦିନ ସନ୍ଧ୍ୟାକୁ ଚୌକରେ ରାଜା ସାହେବଙ୍କର ମିଟିଂ ଥିଲା, ସେହିଦିନ ଜେଠେଇ ଘରେ ବ୍ରାହ୍ମଣ ଭୋଜନର ବ୍ୟବସ୍ଥା ଥିଲା । ସଜ୍ଜନ ଓ ବନକନ୍ୟାକୁ ନିଜର ପୂର୍ବ ବ୍ୟବସ୍ଥା ସହିତ ଏ ବ୍ୟବସ୍ଥାରୁ ମିଶି ଯିବାକୁ କ୍ଷଣକ ପାଇଁ ସମସ୍ତ ମିଳିଲା ନାହିଁ । କର୍ଣ୍ଣେଲ ମଧ୍ୟ ଏହାଙ୍କ ସହିତ ସବୁବେଳେ ସାହାଯ୍ୟ ପାଇଁ ଠିଆ ହୋଇଗଲା । ସଜ୍ଜନ ଓ ମହିପାଳ ମଧ୍ୟରେ ବିରୋଧ ହେବାରୁ କର୍ଣ୍ଣେଲ ଯଦ୍ୟପି ଅତ୍ୟନ୍ତ କ୍ଷୁବ୍ଧ ଥିଲା, ତଥାପି ଏହି ବିଷୟକୁ ନେଇ ସେ ଅତ୍ୟନ୍ତ ଜବରଦସ୍ତ ସଂଯମତାର ସହିତ ମୌନ ହୋଇ ଉଭୟ ପାର୍ଶ୍ୱର କାମରେ ସଂଶ୍ଳିଷ୍ଟ ଥିଲା । କଲ୍ୟାଣୀ ଘରକୁ ସବୁବେଳେ ଯିବା ଆସିବା କରି ଆବଶ୍ୟକ ବସ୍ତୁଗୁଡ଼ିକ ବିଷୟରେ ପଚରା ପଚରି କରିବା, ଯେଉଁ ରାସ୍ତାରେ ଗଲେ ଉଭୟ ପାଖ ରକ୍ଷା ହୋଇ ପାରିବ, ସେହି ରାସ୍ତାକୁ କର୍ଣ୍ଣେଲ ଗ୍ରହଣ କରିଥିଲା । ମହିପାଳ ସହିତ ତାର ସାକ୍ଷାତ ହୁଏ, ସବୁ କଥାବାର୍ତ୍ତା ହୁଏ କିନ୍ତୁ ସଜ୍ଜନ ସମ୍ବନ୍ଧରେ ଗୋଟିଏ ହେଲେ ଅକ୍ଷର ସେ ମୁହଁରୁ ବାହାର କରୁ ନ ଥିଲା । ସମ୍ମୁଖରେ ପଡ଼ିଲେ ମହିପାଳ ଅନ୍ୟ କଥା ବାଦ୍ ଦେଇ ସଜ୍ଜନ କଥା ଚଳାଏ । ଥରେ କର୍ଣ୍ଣେଲ କହିଦେଲା" ଦେଖ ଭାଇ, ଏ ତୁମ ଉଭୟଙ୍କର ପରସ୍ପରର କଥା, ଦୁଇ ବିଦ୍ୱାନଙ୍କ ମଧ୍ୟରେ ଏକଥା ହେବ । ଆମକୁ ଏଥିରେ କିଛି ଆବଶ୍ୟକତା ନାହିଁ । ଭବିଷ୍ୟତରେ ଆମ ମଧ୍ୟରେ ଯେପରି ଏହାର ଚର୍ଚ୍ଚା ନ ହୁଏ । ସଜ୍ଜନ ସ୍ୱୟଂ ମଧ୍ୟ ଏ ସମ୍ବନ୍ଧରେ କେବେ ତା ସହିତ ଚର୍ଚ୍ଚା କରି ନଥିଲା । ମହିପାଳ କର୍ଣ୍ଣେଲର ବହୁତ ପୁରୁଣା ମିତ୍ରଥିଲା । ସଜ୍ଜନ ଓ କର୍ଣ୍ଣେଲର ବନ୍ଧୁତା ମହିପାଳ ଯୋଗୁଁ ହୋଇଛି ।

ସେଦିନ ସନ୍ଧ୍ୟାରେ ଭିକ୍ଟୋରିଆ ପାର୍କର ମିଟିଂରେ ମହିପାଳ ନିଜ ସୀମାର ବାହାରକୁ ଚାଲିଗଲା । ସଜ୍ଜନକୁ ସେ ନିଜର ବହୁତ ପୁରୁଣା ମିତ୍ର କହି ଏହା ସିଦ୍ଧ କରିବାକୁ ଆରମ୍ଭ କଲା ଯେ" ସେ ସର୍ବଦା ଅତ୍ୟନ୍ତ ସ୍ୱାର୍ଥ ଓ ମହତ୍ତ୍ୱାକାଂକ୍ଷୀ ହୋଇଛି ।" ସେ ନିଜର ପଇସାର ବଳରେ ପ୍ରତିଷ୍ଠିତ ଆଲୋଚକଙ୍କୁ ନିମନ୍ତ୍ରଣ ଖୁଆଇ ଖୁଆଇ ତାଙ୍କର ଖୋସାମତ କରି ପ୍ରସିଦ୍ଧ ହୋଇଛି । ସେ କଳାକାରଠାରୁ ଅଧିକ କଳାକାର, ତାର ସୁନାମ ଅର୍ଜନ କରିବାର ଇଚ୍ଛା ପ୍ରବଳ । ଏହି ପ୍ରକାର ଅନେକ କଥା ଅନେକ ଆବେଗରେ

ସେ କହିଗଲା । ନିଜ ସ୍ପୀଚ୍‌ରେ ମହେଞ୍ଜୋଦାରୋ ଶିବ ଓ ବେଦ, ସାରା ଇତିହାସ, ସମାଜ ଶାସ୍ତ୍ର ଆଦି କେବଳ ସଜ୍ଜନର ନିନ୍ଦା କରିବା ପାଇଁ ଏକ ଘଣ୍ଟା ପର୍ଯ୍ୟନ୍ତ ପ୍ରୟୋଗ କଲା । ସେ ଜନତାକୁ ମନ-ମୁଗ୍‌ଧ କଲା ଓ ମଝି ମଝିରେ ସଜ୍ଜନ ପ୍ରତି ବିଶୋଦ୍‌ଗାର କଲା । ଆଜିର ସନ୍ଧ୍ୟା, ସଭାର ସେହି ରଙ୍ଗମଞ୍ଚ ତାର ଜୀବନରେ ଶ୍ରେଷ୍ଠତମ ବିଷୟ ପାଳନ କରୁଥିଲା । ସେ ସଜ୍ଜନକୁ ଅପର୍ଯ୍ୟାପ୍ତ ନିନ୍ଦା କଲା । ଯଦି ସଜ୍ଜନ ଲକ୍ଷ୍ମୀଙ୍କ ବଳରେ ନିଜକୁ ମହାପୁରୁଷ କରିପାରେ ତେବେ ମହିପାଲ ମଧ୍ୟ ଅପର ଲକ୍ଷ୍ମୀଙ୍କ ସାଧ ବୁଝାଇ ମହାପୁରୁଷ ହୋଇ ପାରେ, ତାହି ମହିପାଲର ମହାପୁରୁଷତ୍ୱର ଲକ୍ଷଣ ଥିଲା ଯାହାର ନିଶାରେ ଝାସି ଝାସି ସେ ସଜ୍ଜନର ବିରୁଦ୍ଧରେ ବେନିୟମ କଥା କହିଯାଉଥିଲା ।

ସଜ୍ଜନର ସମର୍ଥକଙ୍କ ମନରେ ଭୟ ଓ ଉତ୍ତେଜନା ଖେଳିଗଲା । ଗୋଟିଏ ବଡ଼ ପୁଞ୍ଜୀ (ମୂଳଧନ) ଓ ସଙ୍ଗଠିତ ଶକ୍ତି ସେହି ଗ୍ରେଟିଆ କୋମଳ ବୃକ୍ଷ ଗଛକୁ ନଷ୍ଟ କରିବା ପାଇଁ ଚାଲି ଆସୁଥିଲା ଯେ କି ବର୍ତ୍ତମାନ ପର୍ଯ୍ୟନ୍ତ ଠିକ୍ ରୂପେ ପଲ୍ଲବିତ ହୋଇ ପାରିନାହିଁ । ସଜ୍ଜନ ଓ କନ୍ୟା ଦୁହେଁ ମହିପାଲର ଏ ବ୍ୟବହାରରେ ଅତ୍ୟନ୍ତ କ୍ଷୁବ୍‌ଧ ହେଲେ । ଡାକ୍ତର ସିଂହଙ୍କ କାନ୍ଧ ପକାଇଦେଲ । ସଜ୍ଜନ ମାମଲାକୁ ଓକିଲ ହାତରେ ସମର୍ପଣ କରିବାକୁ ନିଷ୍ପତ୍ତି କରିନେଲା । ତୃତୀୟ ଦିନ ସଜ୍ଜନର ଓକିଲ ନୋଟିସ, ମହିପାଲକୁ ମିଳିଗଲା । କର୍ଣ୍ଣେଲ ସେହି ସମୟ ମହିପାଲ ଘରେ ଅର୍ଥାତ୍ ସେଠ୍ ରୂପବଲ୍ଲଭର କୋଠୀରେ ଥିଲେ । ମହିପାଲ ବହୁତ ରାଗିଗଲା । ଦେଖିନେବ, ଆଉ ବୁଝି ନେବ ? କହି କହି ସେ ହାତଗୋଡ଼ କଚାଡ଼ିଲା ।

କର୍ଣ୍ଣେଲ କହିଲେ "ଦେଖ ମହିପାଲ ମୁଁ ପବ୍ଲିକ୍ ନୁହେଁ ଯାହାକୁ ଲେକ୍‌ଚର ଦେଇ ଭ୍ରମ ଉତ୍ପନ୍ନ କରି ଆକର୍ଷିତ କରିନେବ । ଏତ ଥିଏଟର ବାହାଘର, ମୁଁ ଏହା ମଧ୍ୟରେ ନିଜ କଲିଜାରେ ତାଲା ଲଗାଇ ଚୁପ୍ ରହିଛି । କିନ୍ତୁ ମୋତେ ପୁଣି କହିବାକୁ ପଡ଼ୁଛି ଯେ ତାର ମୋକଦ୍ଦମା ଚଲାଇବା ଏକ ଦମ୍ ଠିକ୍ ଓ ତୁମେ ମୋକଦ୍ଦମାରେ ହାରିବ ଓ ତୁମକୁ ଜେଲ ଯିବାକୁ ପଡ଼ିବ । ତୁମର ଏହି ବଡ଼ ବଡ଼ ଲୋକଙ୍କ ମଧ୍ୟରୁ ଯଦି ଜଣେ କେହି ତୁମର ସହାୟତା କରିବାକୁ ଆସେ ମହିପାଲ, ତେବେ ତୁମେ ମୋତେ କହିବ ମୁଁ ଯାହା କହୁଛି ସବୁ ଭୁଲ ।" କର୍ଣ୍ଣେଲ ମଧ୍ୟ କଲ୍ୟାଣୀକୁ ସମସ୍ତ ପରିସ୍ଥିତି ବିଷୟରେ ପରିଷ୍କାର ଭାବରେ ବୁଝାଇଦେଲେ । ମହିପାଲ ନିଜର ପତ୍ନୀ ଓ କର୍ଣ୍ଣେଲ ଆଗରେ ନ୍ୟାୟ-ସତ୍ୟର ବଡ଼ ବଡ଼ ଧ୍ୱଜା ଦେଲା । ସଜ୍ଜନକୁ ଦୁଃଶ୍ଚରିତ୍ର ରୂପେ ବଖାଣିଲା, କର୍ଣ୍ଣେଲଙ୍କୁ ମଧ୍ୟ ଅତ୍ୟନ୍ତ ରାଗ ଆସିଲା । ସେ କହିଲେ "ଦେଖ ମହିପାଲ, ତୁମେ ଦୁଧରେ ଧୋଇ ହୁଅ ନାହିଁ । ଅନ୍ୟର ମୁହଁକୁ କାଦୁଅ ପକାଇଛ ନିଜର କାଦୁଅରେ ଚକଟି ହେବ । ମୁଁ ଆଉ ଗୋଟିଏ କଥା ତୁମକୁ ସଫା କହିଦେଉଛି ଯେ ସଜ୍ଜନ ଯଦି ନିଜ ତରଫରୁ ସାକ୍ଷୀ-ମାନଙ୍କ ମଧ୍ୟରେ ମୋତେ ଡାକିବ ତେବେ ଅବଶ୍ୟ ମୁଁ ଯିବି । ଯାହା ଯାହା ମୁଁ ଜାଣିଛି,

ଡାକ୍ତର ସାହେବ ମଧ୍ୟ ଏହି ଅବସ୍ଥାରେ ତୁମ ବିରୁଦ୍ଧରେ ସାକ୍ଷୀ ଦେବାକୁ ଯିବେ। ତାଙ୍କର ଯିବା ଦରକାର।"

ଯାଅ, ସମସ୍ତେ ଯାଅ, ମହିପାଳ ଗରଜି ଉଠିଲେ। ସେ ଆବେଗରେ ଚୌକି ଉଠାଇ ଜୋରରେ କଚାଡ଼ି ଦେଲେ। ଚୌକିର ଗୋଟିଏ ହାତ ପୂରା ଭାଙ୍ଗିଗଲା। ଏହି ଚୌକି ଭିକ୍ଟୋରିଆ ସମୟର କାରିକୁରିଯୁକ୍ତ ଗଢ଼ଣର ଥିଲା। ମହିପାଳଙ୍କୁ ଶୀଘ୍ର ଧ୍ୟାନ ତ ଆସିଲା ଯେ ସେ, ସେଠ୍ ରୂପରତନର କ୍ଷତି କଲେ। ମହିପାଳର କ୍ରୋଧ ତାପରେ ପୁଣି ଅସୀମ ହୋଇ ରହି ପାରିଲା ନାହିଁ। ସୀମାକୁ ଆସୁ ଆସୁ ବଡ଼ ବଡ଼ ହେବାର ଶବ୍ଦ ଶୁଣାଗଲା।

କର୍ଣ୍ଣେଲ୍ ଆଗରେ କଲ୍ୟାଣୀ, ବହୁତ ଅନୁନୟ କରିବାକୁ ଲାଗିଲା 'ସ୍ୱାମୀଙ୍କର ତ ମୁଣ୍ଡ ଖରାପ ହୋଇଯାଇଛି' ଆପଣ ସଜ୍ଜନ ଭାଇ ସାହେବଙ୍କୁ ବୁଝାଇବେ। ଏ ପିଲାମାନଙ୍କର ମୁହଁକୁ ଦେଖନ୍ତୁ।"

କର୍ଣ୍ଣେଲ୍, କନ୍ୟା ଓ ସଜ୍ଜନ ମଧ୍ୟରେ କଥା ହେଲା, ସଜ୍ଜନ ନିଜର କଥାଟି ଉପରେ ଅଟଳ ରହିଲା। ସେ କହିଲା "ଦେଖ କର୍ଣ୍ଣେଲ୍ ଏହା ମୋର ମାମଲା ନୁହେଁ। ସମସ୍ତ କଥା ମୋର ଟ୍ରଷ୍ଟର ଆଳରେ ଆରମ୍ଭ ହୋଇଛି। ଯଦି ଏକଥା ଉପରେ କିଛି ନ କହିବି ତେବେ ମୋର ଟ୍ରଷ୍ଟର କ୍ଷତି ହେଉଛି। ନିଜ ସଙ୍ଗଠନର ରକ୍ଷା ପାଇଁ ମହିପାଳକୁ ଦଣ୍ଡ ଦିଆଇ ରହିବି। ତୁମକୁ ମଧ୍ୟ ମୋ ତରଫରୁ ସାକ୍ଷୀ ଦେବାକୁ ହେବ। ଆମ ଦୁହିଁଙ୍କ ମଧ୍ୟରେ ଯାହା କିଛି ଦୁର୍ବଳତା ତୁମେ ଦେଖିଛ ସେଗୁଡ଼ିକୁ ଠିକ୍ ସେହିପରି ପ୍ରକାଶ କରିବ। ମୁଁ ତୁମଠାରୁ ପ୍ରେମ ଚାହୁଁ ନାହିଁ, ଈଶ୍ୱର ଚାହୁଁଛି 'ସଜ୍ଜନ କହିଲା ଓ ଉଠି ଚାଲିଗଲା'।

ସଜ୍ଜନ ରିପୋର୍ଟ ଜେଠେଇର ରୋଗଶଯ୍ୟା ପର୍ଯ୍ୟନ୍ତ ପହଞ୍ଚିଗଲା। ଶ୍ରୀ ରାଧାଶ୍ୟାମଙ୍କ କୃପାରୁ ଓ ନିଜର କ୍ରିୟା ଆଳରେ ଏତେ ଦାନ ପୁଣ୍ୟ କରିଥିବା ଜେଠେଇର ରୋଗଶଯ୍ୟା ପାଖରେ ପୂରା ଦରବାର ବସିଥିଲା। ଗୋକୁଳ ଦ୍ୱାରର ପୂଜାରୀ, ଭଣ୍ଡାରୀ, ଜଳଧଡ଼ି, କାର୍ତ୍ତିକୀ, ସରସ୍ୱତୀ, ଘୀ ଘୀ, ଚମ୍ପା ବହୁରାଣୀ, ନନ୍ଦୋ, ନନ୍ଦୋର ମା ତାରା, ସାନ ବୋହୂ, ସାଇର ଆଉ କେତେକ ବୁଢ଼ୀ ଜେଠେଇ ପାଖକୁ ଦିନ ତମାମ ଯିବା ଆସିବା କରନ୍ତି। ଜେଠେଇର ଜ୍ୱର ଅଧିକ ଥିଲା। ମଝିରେ ମଝିରେ ବାଉଳି-ଚାଉଳି ହୋଇ କିଛି କହୁଥିଲେ। ଚେତା ଆସିଲେ ପ୍ରତ୍ୟେକ ଆଡ଼କୁ ଦୃଷ୍ଟି ପକାଇ ଲୋକଙ୍କୁ ଦେଖି ନେଉଥିଲେ। କେବେ କେବେ ସେମାନଙ୍କର କଥାର ଉତ୍ତର ହଁ—ନାଁରେ ଦେଉଥିଲେ। ଜେଠେଇଙ୍କ କାନରେ ଖବର ପଡ଼ିଛି ଯେ ରାଜା ସାହେବ, କମ୍ପାନୀ ବାଗ୍‌ରେ ମିଟିଙ୍ଗ୍ କରି ତାଙ୍କର ସଜ୍ଜନଙ୍କୁ ଖବ ଗାଳି ଶୁଣାଇଛନ୍ତି ତଥା ସେ ଓ ଜାନକୀ ଶରଣ ମିଶି ମହାନୀ ମହଲକୁ

ସନ୍ତାନଙ୍କୁ ବାହାର କରି ନିଜର ପାଠଶାଳା ଚଳାଇବେ । ଜୋର ଜ୍ୱର ଓ ଦୁର୍ବଳତାରେ ମଧ୍ୟ ଜେଠେଇ ଏହା ଶୁଣି ରାଗି ଉଠିଲେ । ତାଙ୍କର ଜୀବନ ଯାକର ଅବଦମିତ କ୍ଷୋଭ ଜିହ୍ୱାରୁ ବିସ୍ଫୋରଣ ହେଲା । ଦୁଇ ହାତର ମୁଠା ଟାଣ ହୋଇଗଲା । ଗଳାର ନାଡ଼ୀ ପ୍ରସାରିତ ହେଲା, ଚେହେରା କ୍ରୋଧରେ ବିକୃତ ହୋଇ ଉଠିଲା । ଜେଠେଇ ଅନ୍ତ କରଣରେ ନିଜର ସ୍ୱାମୀଙ୍କୁ ଗାଳି ଦେଲେ । ଉତ୍ତେଜନା ତାଙ୍କ ସ୍ୱାସ୍ଥ୍ୟ ଉପରେ ଘାତକ ପ୍ରଭାବ ପକାଇଲା ଓ ସେ ଚେତା ଶୂନ୍ୟ ହେଲେ ।

ସେଦିନ ସନ୍ଧ୍ୟାରେ ଜେଠେଇ ନନ୍ଦୋକୁ ନିଜ ପାଖରେ ଅଟକାଇ ରଖିଲେ । ଜନୀ ଘଣ୍ଟାଘଣ୍ଟା ପାଇଁ ଜେଠେଇଙ୍କ ପାଖରେ ତାରାକୁ ଡ୍ୟୁଟିରେ ଲଗାଇ ଡାକ୍ତର ଶୀଳା ସ୍ୱିଙ୍ଗ ସହିତ ଗଳି କନ୍ଦିର ଘରେ ଘରେ ସ୍ତ୍ରୀ, ପିଲା ଆଦିଙ୍କର ସ୍ୱାସ୍ଥ୍ୟ ନିରୀକ୍ଷଣ କରିବାକୁ ଯାଇଥିଲେ । ଜେଠେଇ ତାରାକୁ ଦୂରରେ ବସିବାକୁ ଆଦେଶ ଦେଇ ନନ୍ଦୋ ସାଙ୍ଗରେ ଧୀରେ ଧୀରେ କିଛି କଥା କହିଲେ । ନନ୍ଦୋର ଚେହେରା ଉପରେ ଗମ୍ଭୀର ଦାୟିତ୍ୱ ଓ ରହସ୍ୟମୟତା ବିକଶିତ ହୋଇ ଉଠିଲା । ଦୀପ ଲଗିବା କ୍ଷଣି ଜେଠେଇ ତାରାକୁ ନିଜ ପିଲା ସହିତ ଘରକୁ ଚାଲିଯିବା ପାଇଁ କହିଲେ, ତାରା ଜେଠେଇର ସେବା ଦୃଷ୍ଟିରୁ ସେଠାରୁ ଯିବାକୁ ପ୍ରସ୍ତୁତ ନଥିଲା । ଜେଠେଇର ଚେହେରାରେ କ୍ରୋଧର ରୌଦ୍ର ମୂର୍ତ୍ତୀ ଦେଖା ଦେଲା, ଅଧିକ ବକାବକି କରିବାକୁ ଶକ୍ତି ତାଙ୍କର ନଥିଲା, ନନ୍ଦୋ ତାରାକୁ ବୁଝାଇ କହିଲା "ଦେଖ, ଯାହା କହୁଛନ୍ତି ତା ମାନିନିଅ । ମୁଁ ତ ତାଙ୍କ ପାଖରେ ଅଛି ।" ତାରା ବୁଝିଗଲା ଓ କିଛି ନକହି ପିଲାକୁ କୋଳରେ ଉଠାଇ ଚାଲିବାକୁ ଲାଗିଲା । ପିଲାକୁ ଯିବାର ଦେଖି ଜେଠେଇ ନିଜର ଲୋଳିତ ହାତ ଉଠାଇ ତାକୁ ପାଖକୁ ଡାକିଲେ, ଜେଠେଇର ଚେହେରାରେ ବାତ୍ସଲ୍ୟର ଶାନ୍ତି ଛାଇଗଲା । ତାରା ତାକୁ ନେଇ ଜେଠେଇଙ୍କ ପାଖରେ ନଇଁ ପଡ଼ିଲା । ପିଲାଟି ନିଜର ଖେଳୁଥିବା ହାତ ବଢ଼ାଇ ଜେଠେଇଙ୍କ ଗରମ ପାପୁଲିରେ ରଖି ଦେଲା । ଜେଠେଇ ଧୀରେ ପିଲାର ଲାଲ୍ ଲାଲ୍ ନରମ ହାତ, ଗାଲ ଓ ମୁଣ୍ଡ ଉପରେ ଆସ୍ତେ କରି ହାତକୁ ବୁଲାଇଲେ । ତାଙ୍କର ମଳୀନ ରୁଗ୍ଣ ଚେହେରାରେ ହସ ଖେଳିଗଲା । ପୁଣି ସେ ସଙ୍କେତରେ ତାରାକୁ ଚାଲିଯିବା ପାଇଁ କହିଲେ । ତାରା ଚାଲିଯିବା ପରେ ନନ୍ଦୋ ତାରା ଘର ପଟର କବାଟର ଝିଞ୍ଜିରି ଦେଇଦେଲା । ଜେଠେଇ ମୁଣ୍ଡତଳ ତକିଆ ତଳେ ରଖିଥିବା ଗୋଟିଏ ଛୋଟିଆ ପୁଟୁଳି ବାହାର କରିବାକୁ ଆଦେଶ ଦେଲେ । ନନ୍ଦୋ ପୁଟୁଳି ଖୋଲି ଦଶ-ଦଶ ଟଙ୍କିଆ ଦୁଇଟି ନୋଟ୍ ବାହାର କଲା । ଜେଠେଇକୁ ଦେଖାଇଲା ଓ ନିଜଲୁଗା କାନିରେ ବାନ୍ଧିଦେଲା । ନନ୍ଦୋ ଉପର ସିଢ଼ି ଚଢ଼ୁ ଚଢ଼ୁ କହିଲା "ମୁଁ ଘୋଡ଼ର ଘୋଡ଼ା ହୋଇ ଏବେ ଆସୁଛି, ଜେଠେଇ । ସାନ ବୋହୂ ଏଠାରେ ବସିଥାଉ, ତୁମର ବଡ଼ବୋହୂରାଣୀ ଆସିଲେ ତାକୁ ପଠାଇ ଦେବ । ସାନ ବୋହୂ, ମୁଁ ଏବେ ଆସୁଛି ।"

କନ୍ୟା ପ୍ରାୟ ଆଠଟାରେ ଜେଠେଇ ଘରେ ପହଞ୍ଚିଲା । ସାନ ବୋହୂ ସେଠାରେ ବସିଥିଲା । ଜେଠେଇଙ୍କୁ ସେ ସମୟରେ ନିଦ ଆସିଯାଇଥିଲା । ଉପନ୍ୟାସ ପଢ଼ା ଛାଡ଼ି ସାନ ବୋହୂ କନ୍ୟାକୁ ଜେଠେଇର ଖବର ଦେଲା ଏବଂ ନନ୍ଦୋ କହି-ଯାଇଥିବା ବିଷୟ କନ୍ୟାକୁ ଜଣାଇଲା ।

କନ୍ୟା ପଚାରିଲା "କଣ, କଥା କଣ ?"

ସାନ ବୋହୂ ମୁହଁ ବିକୃତ କରି କହିଲା "ନନ୍ଦୋ ଦାଦାଜୀ ଓ ଜେଠେଇ କୌଣସି ଯାଦୁ କରୁଛନ୍ତି କାହାର ଉପରେ, ଏଥିପାଇଁ ସେ ଏକାନ୍ତରେ ରହୁଁଛନ୍ତି ।"

ଏସବୁ କଣ କଥା ? ମୁଁ ଜେଠେଇଙ୍କୁ ଏ ସମୟରେ କୌଣସି ଅବସ୍ଥାରେ ଓ କୌଣସି ଆକାରେ ଏଭଳି କଷ୍ଟ ପାଇବାକୁ ଦେବି ନାହିଁ, ମୁଁ ଯିବି ନାହିଁ ।

କିଛି ସମୟ ଉଭୟଙ୍କ ମଧ୍ୟରେ ହ୍ୟାଡ଼ୁ, ସିଆଡ଼ୁ କିଛି କଥାବାର୍ତ୍ତା ହେଲା । ଜେଠେଇ ଉଠିଲେ, କନ୍ୟା ଶୀଘ୍ର ଉଠି ଜେଠେଇର ମୁଣ୍ଡ ଉପରେ ହାତ ରଖିଲା, ସ୍ୱାସ୍ଥ୍ୟର ଖବର ପଚାରିଲା । ଜେଠେଇ ତାର ବାହୁରେ ସ୍ନେହର ସହିତ ହାତ ଅପଡ଼ି କହିଲେ "ଭଲ ଅଛି, ତୁମେ ଯାଅ ବୋହୂ ।"

ଜେଠେଇ, ମୁଁ ତୁମକୁ ଛାଡ଼ି ଯିବି ନାହିଁ, ସେ ମୋ ଉପରେ ଖୁବ୍ ରାଗିଯିବେ ।

'ତୁମକୁ ମୋର ରାଣ ଅଛି' ନିଜର ଚାକରଙ୍କୁ ମଧ୍ୟ ସାଙ୍ଗରେ ନେଇ ଯିବା ପାଇଁ ଆଦେଶ ଦେଲେ ।

କନ୍ୟା ନିଜର ଆଗ୍ରହକୁ ଜେଠେଇ ଦ୍ୱିତୀୟଥର ଦୃଢ଼ତାର ସହିତ ଅସ୍ୱୀକାର କଲେ । ଏପରି ଅବସ୍ଥାରେ ତା ପାଇଁ ଜେଠେଇ ପାଖରୁ ଚାଲି ଯିବା ବ୍ୟତୀତ ଅନ୍ୟ କିଛି ଉପାୟ ନଥିଲା । ଜେଠେଇ ସହିତ ମୁକ୍ତ କରିବା ଅସମ୍ଭବ ଥିଲା, ଏପରି ଅବସ୍ଥାରେ ତ ଆହୁରି ଅଧିକ । କନ୍ୟା ସାନ ବୋହୂକୁ ଆବଶ୍ୟକ ଆଦେଶ ଦେଇ ନିଜ ଚାକରମାନଙ୍କ ସହିତ ଅନିଚ୍ଛା ପୂର୍ବକ ଚାଲିଗଲା ।

ରାତି ପ୍ରାୟ ସାଢ଼େ ଏଗାରଟା ବା ଏଗାରଟା ବାଜିବାକୁ ଚାଲିଛି । ନନ୍ଦୋ ଅଗଣାରେ ସମସ୍ତ ଜିନିଷ ପତ୍ର ସଜାଡ଼ିଲା । ଏକ ବୋତଲ ମଦ, ଚାରିଟି ଘୁଷୁରି ଛୁଆ, ମାଟି ହାଣ୍ଡି, ଅଠର ମୂର୍ତ୍ତି, ଅଠର ଚୌଖା ଦୀପ, ଦୋକ୍ତା, ଗଞ୍ଜା ଆଦି । ଜେଠେଇ ଆଜି ନିଜ ପତି ଉପରେ ଗୁଣି କରିବାର ଆୟୋଜନ କରୁଥିଲେ । ପ୍ରାରମ୍ଭିକ ବିଧି ହୋଇଯିବା ପରେ ହାଣ୍ଡି ଗୁଡ଼ିକୁ ମନ୍ତ୍ରରେ ବାନ୍ଧିବା ପାଇଁ ନନ୍ଦୋ ଜେଠେଇଙ୍କୁ କହିଲା ।

ଜେଠେଇ ପୁଣି ଜ୍ୱରର ବିଚଳିତା ମଧ୍ୟରେ ପଡ଼ି ଯାଇଥିଲେ । ନନ୍ଦୋ କଥାର ଉତ୍ତର ପାଇ ନ ପାରି ପାଖକୁ ଆସିଲା । ଲଣ୍ଠନ ଉଠାଇ ଜେଠେଇଙ୍କୁ ଦେଖିଲା ଓ ପୁଣି କାନ ପାଖକୁ ମୁହଁ ନେଇ ଡାକିଲା ।

"ଜେଠେଇ : ଏ ଜେଠେଇ"

ଜେଠେଇ ଆଖି ଖୋଲିଲେ, ଶିଥିଳ ନୟନରେ ନନ୍ଦୋକୁ ଦେଖିଲେ । ବିଚଳିତ ସ୍ୱରରେ ପଚାରିଲେ " କଣ ?"

ସବୁ ସଜାଇ ଦେଇ ଦେଇଛି, ଜେଠେଇ ?"

'ସଜାଇ ଦେଇଛୁ ?' ଜେଠେଇର ଚେତନା ଫେରି ଆସିଲା, କଥା ତାର ଜର୍ଜରିତ ଶରୀରରେ ଶକ୍ତିର ସଞ୍ଚାର କଲା । ଉଠିବାର ଚେଷ୍ଟା କରି କହିଲେ, ମୋତେ ସେଠାକୁ ନେଇଚାଲ"

"ଆରେ, ତୁମେ କେମିତି ଯିବ, ଜେଠେଇ ?" ମୋତେ ଏ ଗୁଣି-ମନ୍ତ୍ରର ଦେଇଦିଅ, ନନ୍ଦୋ ଆଗ୍ରହ କଲା ।"

ଜେଠେଇଙ୍କର ଜ୍ୱରରେ ଶୁଖିଥିବା ଶିଥିଳ ରୁକ୍ଷ ଚେହେରା ଉପରେ ହସର ଢେଉ ଖେଳି ଗଲା । କଳା କଳା ବଡ଼ ବଡ଼ ଦାନ୍ତ ଚମକି ଉଠିଲା, କହିଲେ "ଏଭଳି ମନ୍ତ୍ର ଦିଆଯାଏ ? ଜେଠେଇ ଦୁର୍ବଳ ସ୍ୱର, ନିଶ୍ୱାସ ନେବ ପାଇଁ ରହିଗଲା, ପୁଣି କହିଲେ "ମଶାଣିରେ ଦିଆଯିବ-ମନ୍ତ୍ରର ତେଜର, କିନ୍ତୁ ତୁ, ତୁ ମୋତେ ନେଇଚାଲ "ଜେଠେଇ ଶରୀରରେ ଶକ୍ତି ଉଚ୍ଛୁଳିବାକୁ ଲାଗିଲା ।

ନନ୍ଦୋ ତାଙ୍କୁ ଅଗଣାକୁ ନେଇ ଆସିଲା । ଜେଠେଇର ହାତ, ଗୋଡ଼ ଧୋଇଲେ । ହାଣ୍ଡିରେ ଜନନ୍ଦ ରଖି ମନ୍ତ୍ର ପଢ଼ିବା ଆରମ୍ଭ କଲେ, ଜଜ ପଢ଼କୁ ମାରିବା ପାଇଁ ମନ୍ତ୍ରରେ ତାଙ୍କର ନାମ ଉଚ୍ଚାରଣ କରିବା ଆବଶ୍ୟକ ଥିଲା । ଜେଠେଇ କିଛି ସମୟ ସଂସ୍କାର ବଶତଃ ପଛେଇଲେ ଓ ପୁଣି ଜୋରରେ ରାଜା ସାହେବଙ୍କ ନାମ ନେଇ ପିତୁଳା ଉପରେ ଚୌମୁଖା ଅଃ ଦୀପ ରଖି ସମସ୍ତ ଶକ୍ତି ସହିତ ତାଙ୍କୁ ମାରିବାର ଆଦେଶ ଦେଲେ । କ୍ଷଣକ ପାଇଁ ଜୀବନ ଜେଠେଇର ଶିଥିଳ ଆଖିରେ ଚୌମୁଖା ଦୀପ ଭଳି ଜକ୍ ଜକ୍ ହୋଇ ଉଠିଲା । ନନ୍ଦୋ ଭୟବଶତଃ ଉଠି ଛିଡ଼ା ହେଲା । ଘୁଷୁରି ପିଲା ଏକା ସହିତ ଅଗଣାରେ ବନ୍ଧା ହୋଇଥିବା ସମୟରେ ଚିତ୍କାର ଗ୍ରୁଣ୍ଡୁଥିଲେ । ଏମାନେ ମଧ୍ୟ ଗୁଣର ବିଧାନ ଅନୁସାରେ ବନ୍ଧା ହୋଇ ଆସନ୍ତି । ଏଥିପାଇଁ ଯେ ଯଦି ଅନ୍ୟ ପକ୍ଷରେ ମଧ୍ୟ କୌଣସି ଓଝା ଚତୁର ହୋଇ ଥିବ ଓ ଭଲ ପ୍ରତିକାର କରି ଗୁଣିକୁ ଫେରାଇ ଦେବ ତେବେ ଫେରିଥିବା ଗୁଣିଗୁଣା କରିଥିବା ବ୍ୟକ୍ତି ରକ୍ତ ନ ନେଇ ଘୁଷୁରି ପିଲାଙ୍କର ବଳିରେ ସନ୍ତୁଷ୍ଟ ହୋଇଯିବ ।

ନନ୍ଦୋ ଆଖିରେ ବାତାବରଣରେ ଚମତ୍କାର ଭରିଗଲା । ହଠାତ୍ ଜେଠେଇ ଜୋରରେ ଚିତ୍କାର କଲେ, ନା-ଆଁ, ନା-ଆଁ, ନା-ଆଁ ।

କଣ ଜେଠେଇ ? କହି କହି ପାଖକୁ ଆସି ଜେଠେଇଙ୍କୁ ସମ୍ଭାଳିବାକୁ ଲାଗିଲା ।

'ପଢ଼େଇ ଯା' ତାକୁ (ତୁଳସୀ) ଆଣ କହି ଯାଇ ତାକୁ ପେଲି ଦେଲେ ଓ ଶୀଘ୍ର ଶୀଘ୍ର ମନ୍ତ୍ର ବଡ଼ ବଡ଼ କରି ଉଚ୍ଚାରଣ କଲେ । ମାସ ହେଲା ଜ୍ୱର ଜର୍ଜର ଜେଠେଇର ଇଚ୍ଛା ଶକ୍ତି ସେହି କ୍ଷଣରେ ନିଜ ରୋଗ ଉପରେ ବିଜୟ ପାଇଗଲା । ଖୁବ୍ ଜୋର ଓ ବ୍ୟଗ୍ରଭାବରେ ମନ୍ତ୍ର ପଢ଼ି ପଢ଼ି ସେ ଚିତ୍କାର କରିବା ଆରମ୍ଭ କଲେ "ଫେରିଆ, ଫେରିଆ ମୋ ଉପରକୁ ଫେରିଆ" । ନନ୍ଦୋ ତୁଳସୀ ଆଣି ସାରିଥିଲା । ଜେଠେଇ ଆବେଗରେ ଖୁବ୍ ଜୋରରେ ତାକୁ ନିଜ ବାମ ପାପୁଲିରେ ବିଦ୍ଧ କଲେ । ହାଣ୍ଡି ଉପରେ ଜେଠେଇ ହାତରୁ ରକ୍ତ ଟପ୍ ଟପ୍ ହୋଇ ବୋହିଲା ।

ଜେଠେଇ ବାୟୁ ପ୍ରକୋପରେ ବଡ଼୍ ବଡ଼୍ ହୋଇ ବୁଲିଗଲେ । ସ୍ୱରର ରୁକ୍ଷତା ବନ୍ଦ ହୋଇଗଲା । ବିଡ଼୍ ବିଡ଼୍ କରୁ କରୁ ପୁଣି ବିଚଳିତ ହୋଇ ଢଳି ପଡ଼ିଲେ । ସେ ପଡ଼ିଯିବାରୁ ହାଣ୍ଡି ଓଲଟିଗଲା ତାର ସମସ୍ତ ଜିନିଷ ବିକ୍ଷିପ୍ତ ହୋଇଗଲା । ନନ୍ଦୋ ଡରିକରି ଜେଠେଇଙ୍କୁ ସେହି ଭଳି ଅବସ୍ଥାରେ ଛାଡ଼ି ପଳେଇଲା ।

ଦ୍ୱିତୀୟ ଦିନଠାରୁ ଜେଠେଇଙ୍କୁ ସନ୍ନିପାତ ହୋଇଗଲା । ବଡ଼ ବଡ଼ ଶବ୍ଦ ମଧ୍ୟରେ ଦଶଟି ଅନର୍ଗଳ କୁହା ଯାଉଥିବା କଥା ମଧ୍ୟରେ ଏହା ଗୋଟିଏ କଥା ଯାହାକୁ ଅସ୍ପଷ୍ଟ ଶବ୍ଦରେ କେତେ ଥର ବାହାରିଛି ଯେ' ମରିବା ଅବସ୍ଥାରେ କାହାରି ଖରାପ ଚିନ୍ତା କରିବି ନାହିଁ । ସେଦିନ ଜେଠେଇର ଅବସ୍ଥା ଖରାପ ହୋଇଗଲା । ସେହି ଦିନ ସକାଳେ ସନ୍ତନ ବାବାଙ୍କ ସହ ସାକ୍ଷାତ କରିବା ପାଇଁ ତାଙ୍କ ଗାଁକୁ ଯାଇଥିଲା । ଜେଠେଇ ଗଡ଼ ଗଡ଼ ହେଉଥିବା ବେଳେ ତାର ନାମ ମଧ୍ୟ ନେଉଥିଲେ ।

# ପଚ୍ଛଣ

ସଜ୍ଜନ ବାବାଙ୍କ ସହିତ ସାକ୍ଷାତ କରିବା ପାଇଁ ଗାଁକୁ ଯାଇଥିଲା । ତାର ମନ ପରସ୍ପର ବିରୋଧୀ ବିଚାରରେ ଘୂରି ବୁଲୁଥିଲା । କର୍ଣ୍ଣେଲ ତାହାକୁ ମହିପାଲ ଉପରେ ମୋକଦ୍ଦମା ଚଳାଇବା ପାଇଁ ବାଧ୍ୟ କରୁଛନ୍ତି ଓ କର୍ଣ୍ଣେଲ୍ ଆଶାର ପ୍ରତିକୂଳ ସଜ୍ଜନ ତାଙ୍କ ଆଗ୍ରହକୁ ଅସ୍ୱୀକାର କରିଦେଇଛି । ସଜ୍ଜନର କହିବାରଥିଲା ଯେ ଏହା ନୀତିଗତ ପ୍ରଶ୍ନ କେବଳ ଜଣେ ବ୍ୟକ୍ତିଙ୍କର ଆର୍ଥିକ ଓ ନୈତିକ ହାନି ପାଇଁ ନୁହେଁ । ସଜ୍ଜନ ଏ ସମସ୍ୟରେ ଜଣେ ବ୍ୟକ୍ତି ନୁହେଁ, ସଂସ୍ଥା । ତାର ନିରର୍ଥକ ଅପମାନରେ ସେ ଟିଏ ଏପରି ସଂସ୍ଥାର ନଷ୍ଟ ହୋଇପାରେ ଯାହାକୁ 'ବହୁଜନ ହିତାୟ' ସ୍ଥାପିତ କରାଯାଇଛି । କର୍ଣ୍ଣେଲ୍ କନ୍ୟାକୁ ମଧ୍ୟ ରାଜି କରାଇନେଇଛନ୍ତି । ପରନ୍ତୁ ସଜ୍ଜନ ତାର କଥା ମଧ୍ୟ ଅସ୍ୱୀକାର କରିଦେଇଛି । କହିଲା "ଏ ମୋର ନିଜସ୍ୱ ପ୍ରଶ୍ନ ନୁହେଁ, ମୁଁ ନୀତି ପାଇଁ ଲଢ଼ୁଛି" । ମୁଁ ଯେଉଁ ପରିସ୍ଥିତିରେ ପଦକ୍ଷେପ ନେଉଛି, ମୁଁ ତାକୁହିଁ ମହତ୍ୱ ଦେଉଛି, ନିଜକୁ ନୁହେଁ । କନ୍ୟା କହିଲା "ଆଜି କଣ ଏହା ସମ୍ଭବ ନୁହେଁ ଯେ ପରିସ୍ଥିତି ବ୍ୟତୀତ ତୁମ ମନରେ ମହିପାଲ ପ୍ରତି ବ୍ୟକ୍ତିଗତ କ୍ରୋଧ ଅଛି । ସ୍ୱାମାଜିକ ରୂପେ ନିଜ ବ୍ୟକ୍ତିତ୍ୱକୁ ଦେଖି କଣ ଏହା ସମ୍ଭବ ନୁହେଁ ଯେ ତୁମର ଅତ୍ୟନ୍ତ ଆପଣାର, ନିଜ ମିତ୍ର ମହିପାଲ ପ୍ରତି କୌଣସି ପ୍ରତିଶୋଧ ଇର୍ଷା ଭାବ ନାହିଁ" ।

ସେକଥା ତୁମେ ମୋତେ ପଚ୍ଛର । ଏ ମାମଲା ଆଟିଷ୍ଟ ଜ୍ୱାଲଟିର ହେବ । ଦୁହିଁଙ୍କ ମଧ୍ୟରେ ଯେଉଁ ଦିନୁ ବନ୍ଧୁତା ହୋଇଛି, ସେହି ଦିନଠାରୁ ଆନ୍ତରିକତା ମଧ୍ୟ ଯାଇଛି, ଦ୍ୱେଷ ବଢ଼ିଛି, ମୁଁ ଜାଣେ" । ହାତ ଉଠାଇ ପବନର ଦାଉରୁ ଆଖିକୁ ରକ୍ଷା କରିବାକୁ ଯାଇ ଆଙ୍ଗୁଳିରେ ଆଖି ମଳି ମଳି ଓ ଚେହେରା ଉପରେ କ୍ରୋଧର ପ୍ରଦର୍ଶନ ଦେଇ କର୍ଣ୍ଣେଲ୍ ଅସଂଗତ କଥା କହିଲା । ପୁଣି ପରକ୍ଷଣରେ ଏହି ସମ୍ବନ୍ଧରେ ସେ କହିଲା ଯେ, ସଜ୍ଜନ ଜୀବନରେ ଦୁଃଖ ପାଇନାହିଁ । ଶୀଘ୍ର ହସି ତା ଆଡ଼କୁ ଦେଖି କହିଲା "ଦେଖ ଖରାପ ଭାବିବ ନାହିଁ" ଯଦି ଖରାପ ଭାବିବ ତ ଗୋଟିଏ ରୁଟି ଅଧିକ ଖାଇବ । ଠିକ୍ ନ୍ୟାୟର କଥା ଇଏ ହେବ । କିନ୍ତୁ ବାଃ, ବନ୍ଧୋ, ତୁମର ତ ବାରିଷ୍ଟର ହେବା ଉଚିତ ଥିଲା, ବାରିଷ୍ଟର । ତୁମେ ବି କଣ ପଏଣ୍ଟ ଧରିଛ, ବାସ୍ । ଜଲ୍‌ଦିରେ ଚୁପ୍, ନ୍ୟାୟ ଏହାକୁ କହନ୍ତି" ।

ସଜ୍ଜନ ମୁଣ୍ଡ ନୁଆଁଇ ଚୁପ୍‌ଚାପ୍ ଶୁଣୁଥିଲା, ତା ଚେହେରା ଭାବ ଲେଶହୀନ ଥିଲା କେବଳ ମୁଦ୍ରା ଗମ୍ଭୀର ଥିଲା । କର୍ଣ୍ଣେଲ କଥା ପୂରା ହୋଇଯିବା ପରେ ସେ ମୁଣ୍ଡ ଉଠାଇଲା ଓ କନ୍ୟା ଉପରେ ଚଳନଶୀଳ କିନ୍ତୁ ଆତ୍ମୀୟତାପୂର୍ଣ୍ଣ ଦୃଷ୍ଟି ନିକ୍ଷେପ କରୁ

କିନ୍ତୁ କର୍ଣ୍ଣେଲଙ୍କୁ ଦେଖି କହିଲି 'ମୁଁ ତୁମ କଥାର ସାଇକୋଲୋଜିଆଲ୍ ପ୍ରଭାବଠାରୁ ଦୂରେଇ କର୍ଣ୍ଣେଲ, ମୋ ଉପରେ କୌଣସି ପ୍ରଭାବ ପଡ଼ିନାହିଁ ଓ କନ୍ୟାର କଥାର ଜବାବରେ ମୋର ଏତିକି କହିବା କଥା ଯେ ମହିପାଳ ପ୍ରତି ମୋର ମନ କଣ୍ଟକ ରୂପେ ବିଦ୍ଧ କଣ୍ଟକିତ ହେଉଅଛି । ମୁଁ କର୍ଣ୍ଣେଲ ସହିତ ଯେତେ ସହଜ, ସରଳ ଓ ସ୍ୱଚ୍ଛ ମନରେ ମିଶେ ମହିପାଳ ସହିତ ସେପରି ବ୍ୟବହାର ମୋର ହୋଇପାରେ ନାହିଁ । ମୁଁ ତାଙ୍କୁ ବହୁତ ଆଦରକରେ । କନ୍ୟା, ତୁମକୁ ଓ କର୍ଣ୍ଣେଲଙ୍କୁ ଛୁଇଁ ମୁଁ ଏକଥା କହିପାରେ । ସେ ଇଂଟେଲେକ୍‌ଚୁଆଲ ତ ନୁହେଁ କିନ୍ତୁ ବଡ ଭାବ ପ୍ରବଣ । ଖୁବ୍ ପଢ଼ିଛି ମଧ୍ୟ, ଖୁବ୍ ଚିନ୍ତାକରେ । ମଧ୍ୟ ମହିପାଳ, କିନ୍ତୁ ଏ ସମସ୍ତ ହୋଇ ମଧ୍ୟ ଅନୁଭବ: ମୁଁ ଏହା କହୁଛି ଯେ ସେଥିରେ ଖୁବ୍ ମିଥ୍ୟା, ଅଭିମାନ ମଧ୍ୟ ଆବଶ୍ୟକତାଠାରୁ ଅଧିକ ଅଛି ।

କର୍ଣ୍ଣେଲ କହିଲେ" ଏକଥା ତୁମର ବିଲ୍‌କୁଲ ଠିକ୍ । ମୁଁ ଏହା ମାନୁଛି ଯେଉଁ ପର୍ଯ୍ୟନ୍ତ ମନୁଷ୍ୟତାର ପ୍ରଶ୍ନ ଅଛି, ଭଲ ପଣିଆର କଥା ଅଛି ସେଠାରେ ତୁମର କମ୍ପାରିଜନ୍ ହେବ ନାହିଁ । ମହିପାଳର ଜୀବନ ବହୁତ ଲଜ୍ଜିତ ଓ କ୍ଷୁଦ୍ର ହେବ । କିନ୍ତୁ ଭାଇ ସଜ୍ଜନ ଦେଖ, ମୋର ଏ ସିଦ୍ଧାନ୍ତ ରହିଥିବ ଯେ ଅସୁବିଧାରେ ପଡ଼ିଥିବା ଶତ୍ରୁ ପାଇଁ ମଧ୍ୟ ଜୀବନକୁ ଉତ୍ସର୍ଗ କରିବା ଉଚିତ, ମହିପାଳ ତ ନିଜର ବନ୍ଧୁ, ଏତେ ପୁରୁଣା । ଶଳା ବ୍ରାହ୍ମଣ ମଧ୍ୟ । ବର୍ତ୍ତମାନ ତାର କଣ କରିବା ? ମୁଁ ତୁମକୁ ମିଛ କହୁନାହିଁ କନେ୍ୟା, ମହିପାଳ ଏବେ ଖୁବ୍ ଗ୍ରେଟ୍ ବ୍ୟକ୍ତି ହୋଇ ଥାଆନ୍ତା, କିନ୍ତୁ ନୀଚ ସ୍ୱଭାବ ପାଇଁ ତାର ଫ୍ୟୁଚର ସବୁଦିନ ପାଇଁ ନଷ୍ଟ ହୋଇଗଲା ।

ହଁ, ଏ ସମୟରେ ତ ମହିପାଳ ଆର୍ଥିକ ଦୃଷ୍ଟିରୁ ସୁଖୀ ଦେଖା ଯାଉଛନ୍ତି । ଚାଳିଶ ପଚିଶ ହଜାର ରୟାଲିଟି ମିଳି ଯାଇଛି । ଏତ ବହୁତ ଭଲ ହେଲା କିନ୍ତୁ ଏତେ ବଡ ଲେଖକ ହୋଇ ଏଭଳି ଘୃଣିତ କାର୍ଯ୍ୟ କରୁଛନ୍ତି ।' କନ୍ୟା କହିଲା ।

ଅନୁଚିତ, ମହାଶୟ, ମୁଁ କହୁଛି' ମହା ଅନୁଚିତ' । ତେବେ ତୁମକୁ କିଏ କହିଲା ଯେ ଚାଳିଶ ପଚିଶ ହଜାର ରୟାଲିଟି ମିଳିଛି ? କୋଡ଼ିଏ ହଜାର ମିଳିଥିବ । ଯେଉଁଥିରୁ ଦଶ ହଜାର ଯୌତୁକ ଦିଆ ସରିଛି । ଲୋକାଲ୍ ବରଯାତ୍ରୀ ପୁଣି ଦୁଇ ଦିନ ପାଇଁ ଲୋକମାନଙ୍କୁ ସ୍ୱାଗତ କରିବ । ସବୁ ମିଶାଇ ବିବାହରେ ଆଉ ୩୪ ହଜାର ଟଙ୍କା ଖର୍ଚ୍ଚ ହେବ । ତେବେ ୧୪ ହଜାର ଏପଟ ଗଲା । ବାକି ଏ ଯେଉଁ ଘର ଯାକର ଗହଣା, ଲୁଗା, ଯୋତା, ମୋଜା, ଫର୍ଣ୍ଣିଚର୍ ଆଦି ଏଥିରେ ମଧ୍ୟ ଅଢ଼େଇ ବା ତିନି ହଜାର ବୋଲି ଭାବନ୍ତୁ । କଲ୍ୟାଣୀଜୀ ଯେଉଁ ଦୁଇ ଚାରିଟା ନୂଆ ଗହଣା ପିନ୍ଧିଛି, ଏ ମଧ୍ୟ ଦାମିକା ମନେ ହେଉଛି । ଆଉ ଏ ଯେଉଁ କାର୍ ଆଣିଛି ତାହା ମୋ ଜାଣିବାରେ

ତାର ରୂପ ରତନଠାରେ କିଛି ପଇସା ଥିଲା । ଏହିଭଳି ଯେଉଁ ଟଙ୍କା ଆସିଥିଲା ତାହା ଚାଲିଗଲା । ଶୀଘ୍ର ତାକୁ ମୋଟର ବିକ୍ରୀ କରିବା ପାଇଁ ପଡ଼ିବ, ସେଥିପାଇଁ କହୁଛି ଖୁବ୍ କ୍ଷୁଦ୍ର ପରିସର ।

ସଜ୍ଜନ ଗମ୍ଭୀର ସ୍ୱରରେ କହିଲା" ଏହିଠାରେ ମୋର ତୁମ ସହିତ ମତଭେଦ ରହିଛି କର୍ଣ୍ଣେଲ । ଏହି କାମ ମହିପାଲର କ୍ଷୁଦ୍ର ବୁଦ୍ଧି କରୁନାହିଁ । ଏ କାମ ତାର ଖୁବ୍ ଅର୍ଥପୂର୍ଣ୍ଣ, ଗଭୀର, ବିସ୍ତୃତ ସପିଉଣ୍ଟେଡ୍ ମୁଡ଼୍‌ରେ ହୋଇଛି । ସେ ନିଜ ପଇସାର ଅଭାବ ପାଇଁ ମୋତେ ଅତ୍ୟନ୍ତ ପୀଡ଼ିତ କରୁଅଛି । ଏଥର ମହାଜନଙ୍କ ପାଖରେ ମୋର କାମର ବିରୋଧ ହେବାରୁ ତାକୁ ଗୋଟିଏ ସୁବର୍ଣ୍ଣ ସୁଯୋଗ ମିଳିଲା । ସେ ତାର ଲାଭ ଉଠାଉଛି । ମୁଁ ତୁମକୁ ସତ କହୁଛି କର୍ଣ୍ଣେଲ, ମହିପାଲର ଚରିତ୍ର ବର୍ତ୍ତମାନ ଆଗ ଅପେକ୍ଷା ବହୁତ ତଳକୁ ଖସି ଆସିଛି । ଶୀଲା ସହିତ ସମ୍ବନ୍ଧ ଛିନ୍ନ କରି ନିଜ ପତ୍ନୀ ପାଇଁ ଏ ଯେଉଁଭଳି ସନ୍ତସ୍ୱାମୀ ପାଲଟିଛି ଏଥିରେ ତାର କିଛି ଗୁଢ଼ ରହସ୍ୟ ରହିଛି ।"

କର୍ଣ୍ଣେଲ ଶୀଘ୍ର କହିଲା 'ନା" ତାହା ତ ମୋର ଆଖିକୁ ଦେଖା ଯାଇଥାନ୍ତା । ତା ଶଳାର ବିବାହରେ ଯେତେବେଳେ ଏହାର ଓ ଶୀଲାର ବଦ୍‌ନାମୀ କଥା ଉଠିଲା ଯେ ସେ ଶୀଲାର ପଇସା ଖାଉଛି ସେତେବେଳେ ଘରେ ଲଢ଼େଇ ଆରମ୍ଭ । ଘରଗୁଡ଼ିକ ଶୀଲା ପାଖରେ ରହିବା ପାଇଁ ଚାଲିଗଲେ । ପୁଣି ଶେଷରେ କଲ୍ୟାଣୀଜୀ ଆସିଲେ । ମୁଁ ସ୍ୱାକୁ ଶୀଲା ଘରୁ ମୋଟରରେ ଆଣିଲି । ମୋ ଦୃଷ୍ଟିରେ କିଛି ଅଛପା ନାହିଁ ଭାଇ । ପୁଣି-ପୁଣି ତାପରେ ଭାଗ୍ୟ ଉଦୟ ହେଲା । ତା ପାଖକୁ ୧୦ ହଜାର ଟଙ୍କାର ଚେକ୍ ଆସିଗଲା । ସେଠ୍ ରୂପରତନର ପ୍ରକାଶନ ଅଫିସରେ ସାହିତ୍ୟର ଏଡ୍‌ଭାଇଜର ମଧ୍ୟ ହୋଇଗଲେ, ଏ ବର୍ତ୍ତମାନ ଜାତିନର ନେତା ହୋଇଗଲେ । ଏବେ ନେତା ମଧ୍ୟ ହୋଇସିବେ ।

"ଏଥିପାଇଁ ତ କହୁଛି ଯେ"

ମହିପାଳର ମୋଟର ଏବେ ବିକ୍ରୀ ହେବ ନାହିଁ । ଉଳେ ନା ଉଳେ ସେ ଏହାଠାରୁ ବଡ଼ ମୋଟର ଅଥବା, ବୋଧହୁଏ ନୂଆ ମୋଟର ମଧ୍ୟ ଖରିଦ୍ କରିପାରିବ । ନୈନିତାଲ୍‌ରେ କୋଠୀ ମଧ୍ୟ ତିଆରି କରି ପାରିବ ।

"ତୁମେ ଅଦ୍ୱିତୀୟ ହେବାକୁ ଚାହୁଁଛ ରାମଜୀ, ଏହା ଏପରି ଠିକ୍ ହେବନାହିଁ" ନିଜ କଥା କହୁ କହୁ ହଠାତ୍ ସଜ୍ଜନକୁ ବାବା ରାମଜୀଙ୍କର ଏହି କଥା ଶୁଣାଗଲା । ସଜ୍ଜନ ପାଇଁ ଏ ପରିସ୍ଥିତି ବିଚିତ୍ର ହୋଇ ଉଠିଥିଲା । ବାବାଜୀ ସେ ଘରେ ନଥିଲେ ଓ ଯେଉଁ ଶବ୍ଦ ଆସିଲା ତାହା ମଧ୍ୟ ଦୂରରେ ନଥିଲା । ସଜ୍ଜନ ମନ କେତେକାଂଶରେ ଉଦ୍ବେଳିତ

ହୋଇଉଠିଲ । କର୍ଣ୍ଣେଲଙ୍କୁ କନ୍ୟା ସହିତ କଥା କହିବାର ବାଧା ଦେଇ ହଠାତ୍ ତାର ଭିତରୁ ବାହାରି ପଡ଼ିଲା "ତୁମେମାନେ କେହି କିଛି ଶବ୍ଦ ଶୁଣିଲ ?"

"କିପରି ଶବ୍ଦ ? " କନ୍ୟା ପଚାରିଲା ।

'ମୋର ଭ୍ରମ ହୋଇଗଲା' ସଜ୍ଜନ କଥାଟାକୁ ଗାଳିଦେଲା ।

ସେଦିନ ସଜ୍ଜନ ଗାଁକୁ ଯାଇ ବାବାଜୀଙ୍କ ସହିତ ସାକ୍ଷାତ କରିବାର ନିଷ୍ପତ୍ତି ନେଲା । ମହିପାଳ ଉପରେ ମାନ ହାନିର ମୋକଦ୍ଦମା ଚଳାଇବା ଅଥବା ନ ଚଳାଇବାର ଅନ୍ତିମ ନିର୍ଣ୍ଣୟ ସେ ସେଠାରୁ ଫେରିବା ପରେ ହିଁ କରିବ ।

ପରଦିନ ସକାଳ ଶୀଘ୍ର ସଜ୍ଜନ ବାବାଜୀଙ୍କ ସାକ୍ଷାତ ପାଇଁ ନିଜର ଜଣେ ବନ୍ଧୁର ଜିପ୍ ନେଇ ଚାଲିଗଲା । ତା ଯିବାର କିଛି ସମୟ ପରେ ବର୍ମାର ଫୋନ୍ ଆସିଲା ଯେ ଜେଠେଇର ଅବସ୍ଥା ଅତ୍ୟନ୍ତ ଖରାପ । କନ୍ୟା ଶୀଘ୍ର ନିଜର ଡ୍ରାଇଭରକୁ ପଛରେ ଆସିବା ପାଇଁ କହି ବୈଦ୍ୟଜୀଙ୍କୁ ନେଇ ଜେଠେଇ ଘରେ ପହଞ୍ଚି ଘର ଭିତରକୁ ପ୍ରବେଶ କରୁକରୁ ଘୁଷୁରି ପିଲକୁ ଦେଖି ଅସ୍ତବ୍ୟସ୍ତ ହୋଇ ଉଠିଲ । ଜେଠେଇ ବିଛଣା ଉପରେ ବେହୋସ ହୋଇ ପଡ଼ିଥିଲେ । ବିଛଣା ଉପରେ ସନ୍ନିପାତରେ ଶିଥିଳ ହୋଇ ପଡ଼ିଥିଲେ ସେ । ତାରା, ବର୍ମା ଓ ନନ୍ଦୋର 'ମା' ଜେଠେଇର ଦେଖାଶୁଣା କରୁଥିଲେ । ଜେଠେଇ ମଝିରେ ମଝିରେ ଉଠି ପକାଇ ଯାଉଥିଲେ, ଉତ୍ତେଜିତ ହୋଇ ଉଠୁଥିଲେ, ପାଖରେ ଥିବା ଲୋକଙ୍କୁ ମାରିବାକୁ ଉଠୁଥିଲେ । ଏ ତିନିଜଣ ତାଙ୍କୁ ସମ୍ଭାଳି ପାରୁନଥିଲେ । ବୈଦ୍ୟଜୀ ନାଡ଼ି ଦେଖି ଜେଠେଇଙ୍କୁ କେବଳ ୨।୩ ଘଣ୍ଟାର ଅତିଥିବୋଲି ପ୍ରକାଶ କଲେ । ସେ ମକର ଧ୍ୱଜର ମାତ୍ରା ଦେଲେ ଓ ହାତ ଗୋଡ଼ରେ ଘିଇ ଘୋରି ମାଲିସ କରିବାକୁ କହିଲେ । କନ୍ୟାର ମସ୍ତିଷ୍କ ଘୂରିଆଡ଼େ ବୁଲୁଥିଲ । ଆଜି ମହିପାଳ ଘରକୁ ଶକୁନ୍ତଳାର ବର ଯିବାର ଥିଲ । କର୍ଣ୍ଣେଲ ସେଠାରେ ବ୍ୟସ୍ତଥିଲ । ବନକନ୍ୟା ବିଚାର କରି କର୍ଣ୍ଣେଲଙ୍କୁ ଏ ସମୟରେ ଏଠାକୁ ଡ଼କାଇବା ଉଚିତ ମନେକଲ ନାହିଁ । ସେ ବର୍ମାକୁ ଉଠାଇ ନିଜ କୋଠିରେ ଟେଲିଫୋନ କରି ଦୀବାନଜୀଙ୍କୁ ଡ଼କାଇଲ । ଏହା ମଧ୍ୟରେ ଶଙ୍କର ଓ ସାନବୋହୂ ମଧ୍ୟ ଆସି ପହଞ୍ଚିଲେ । ନନ୍ଦୋ ନିଜର କୌଣସି ସ୍ୱାର୍ଥ ପାଇଁ ଗୁଣୀ-ଗାରୁଡ଼ି କରାଇଲ ଓ ଜେଠେଇଙ୍କୁ କଷ୍ଟ ଦେଲ । ଏହି କଥାର ଅଭିଯୋଗ ନିଜେ ନନ୍ଦୋର ମା ବନକନ୍ୟା ଆଗରେ କରିଛି ଓ ଶଙ୍କର ଲାଲ ମଧ୍ୟ ନିଜ ଭଉଣୀର କୃତୀ ଉପରେ ଲଜ୍ୟା ଓ ଦୁଃଖ ପ୍ରକଟ କଲ । କନ୍ୟା ରାଜା ସାହେବଙ୍କୁ ମଧ୍ୟ ସୂଚୀତ କରାଇ ଦେବାକୁ ଅତ୍ୟନ୍ତ ଆବଶ୍ୟକ ମନେକଲ ।

ଦୂର ଦୂରାନ୍ତର ଗାଁ ଗଣ୍ଡାରେ ଜେଠେଇର ସ୍ୱର୍ଗ ବାସ ଚର୍ଚ୍ଚା ବିଜୁଳି ଭଳି ବ୍ୟାପିଗଲା । ମହଲା ବାଲା ମୃତ୍ୟୁର ସମାଚାର ଶୁଣିବା କ୍ଷଣି ଜେଠେଇର ଦୁଆର ପାଖରେ ଜମା ହେବାକୁ ଲାଗିଲେ । ଘର ଭିତରେ ସ୍ତ୍ରୀମାନଙ୍କର ଭିଡ଼ କ୍ରମଶଃ ବଢ଼ିବାକୁ ଲାଗିଲା ପ୍ରଥମେ କନ୍ୟା, ଘୁଣି-ଗାରୁଡ଼ୀର ଜନପଦକୁ ଉଠାଇ ସଫା କରାଇଦେଲା । ସେ ମଧ୍ୟ ବୁଝୁଁ ନ ଥିଲା ଯେ ଜେଠେଇର ମୃତ୍ୟୁ ସହିତ ଏଭଳି କିଛି ପ୍ରସଙ୍ଗ ଯୋଡ଼ା ଯାଉ । କନ୍ୟା ସଜ୍ଜନ ବିନା ବ୍ୟସ୍ତବ୍ୟସ୍ତ ହେଉଥିଲା । ଲୋକମାନେ କହିଲେ ଯେ, ବିମାନ ବନାଯିବ, ଜେଠେଇ ଗାଆଣ ବଜାଣ ମଧ୍ୟରେ ପଇସା ଫିଙ୍ଗି ଫିଙ୍ଗି ଗାଁକୁ ଯିବ । କନ୍ୟା ଧାବାନନ୍ଦଙ୍କୁ ଆବଶ୍ୟକ ଖର୍ଚ୍ଚ ପାଇଁ କହି ଦେଇଥିଲା । ଲାଲ ଜାନକୀ ସରନ ଥରେ ଦରଜା ପାଖକୁ ଆସିଲେ । ସଜ୍ଜନ ବିଷୟରେ ପଚାରିଲେ । କଣ୍ଟ୍ରୋଲ ସମ୍ବନ୍ଧରେ ମଧ୍ୟ ପଚାରିଲେ ଓ ବୁଦ୍ଧିଙ୍କୁ ଉପସ୍ଥିତ ନ ପାଇ ଫେରିଗଲେ ।

ଜନତାର ମୁହଁରେ ଜେଠେଇ ଧନ୍ୟ ଧନ୍ୟ ବିବେଚିତା ହେଉଥିଲେ । ତାଙ୍କର ଏଠାକାର କାର୍ଯ୍ୟ ସମାଜରେ ଅତ୍ୟନ୍ତ ଆଦୃତ ହୋଇଥିଲା । ଗଙ୍ଗା ଦଶହରା ଦିନରେ ଜେଠେଇର ଦେହାନ୍ତ ହେଲା, ଏ କଥା ତାଙ୍କର ସିଧା ସଳଖ ସ୍ୱର୍ଗ ଯିବା ପ୍ରମାଣ ସ୍ୱରୂପ ବୁଝାଯାଉଥିଲା । ସଜ୍ଜନ ଫେରି ଆସିଲା । ଜେଠେଇର ମୃତ୍ୟୁର ଖବର ତାକୁ ଅତ୍ୟନ୍ତ ଦୁଃଖ ଦାୟୀ ହେଲା । ଜେଠେଇ ତା ଜୀବନରେ ଅତ୍ୟନ୍ତ ନିକଟକୁ ଆସିଯାଇ ଥିଲା । ଅଗଣାରେ ଗାଧୋଇ ପାଧୋଇ ଜେଠେଇର ମୂଢାର ପର୍ଦ୍ଦା ଘୋଡ଼ାଇ ରଖା ଯାଇଥିଲା । ସଜ୍ଜନ ପାଇଁ ଜେଠେଇର ଚେହେରା ଖୋଲି ଦେଖାଇ ଦିଆଗଲା । ଜେଠେଇ ସୁହାଗ ନେଇ ମରିଛନ୍ତି । ଏଥିପାଇଁ ତାଙ୍କର ମୁଣ୍ଡ କୁଣ୍ଡାଇ ଦିଆଯାଇଥିଲା । ଲଲାଟରେ ସିନ୍ଦୂର ପୂର୍ଣ୍ଣ ଥିଲା, ମୁଣ୍ଡରେ ଟିକଲି, ନାକରେ ନୋଥ, କାନରେ କାନଫୁଲ ····ସଜ୍ଜନ ଜେଠେଇକୁ କେବେ ଏହି ରୂପରେ ଦେଖି ନଥିଲା । ତାଙ୍କର ଚେହେରାରେ ଶାନ୍ତି ବିରାଜୁଥିଲା । ତାଙ୍କର ଜୀବନଯାକର ସଂଘର୍ଷ ମୃତ୍ୟୁର ଛାୟାରେ ଶାନ୍ତ ହୋଇଯାଉଥିଲା । ମୁଣ୍ଡରେ ହାତ ରଖି ସଜ୍ଜନ କଇଁ କଇଁ ହୋଇ କାନ୍ଦି ଉଠିଲା । କନ୍ୟା, ତାରା ଓ ବର୍ମୀର ଚକ୍ଷୁରୁ ସର୍ବଦା ଲୋତକ ଝରୁଥିଲା ।

ଦ୍ୱିପ୍ରହର ବିତିଗଲା । ସେତେବେଳେ ବୋର ଉପରେ କୋନ ଡ଼ାକରା ଉପରେ ଡାକରା ଦେଲାପରେ ରାଜା ସାହେବଙ୍କ ବଡ ପୁଅ ଆସିଲେ । ସେ ପର୍ଯ୍ୟନ୍ତ ଜେଠେଇଙ୍କର ପୋର୍ଟିକୋରେ ଓ ବାହାରର ଗାଡ଼ି ପର୍ଯ୍ୟନ୍ତ ଲୋକଙ୍କ ଭିଡ଼ ଥିଲା । ଘଣ୍ଟା, ଶଙ୍ଖ, ଘଣ୍ଟି ସହିତ ଜେଠେଇଙ୍କର ବିମାନ ଉଠିଲା । ବେଣ୍ଡ ବାଜା ବଜାଇବାକୁ ଲାଗିଲା । ସାଇର ଦୁଇଜଣ ନବଯୁବକ ବିମାନ ଉପରେ ମୟୂର ପଙ୍ଖାର ବିଞ୍ଚଣାରେ ବିଞ୍ଚିବାକୁ ଲାଗିଲେ । ସଜ୍ଜନର ଧାବାନନ୍ଦ ହାତ ଉପରକୁ ଉଠାଇ ପଇସା ବୁଣିଲେ । ଖୋଲି ମେଲାଇ ଭିକାରୀ ମାନେ ଖୋଲି ଓ ରାସ୍ତାରେ ପଡ଼ିବା ପଇସାକୁ ଗୋଟେଇବାକୁ ଲାଗିଲେ ଓ ଛଡ଼ା ଛଡ଼

କରି ନିଜ ନିଜର ଫୁର୍ତ୍ତି ଦେଖାଇଲେ । ଲୋକଙ୍କ ମୁଣ୍ଡରେ ଅଭ୍ରର ବୋଲା ଯାଉଥିଲା । ଜେଠେଇ ବିମାନକୁ କୁଇଭଲ ଲୋକ ଉଠାଇନେଇ ଯାଉଥିଲେ । ଜୀବନ ତମାମ ଜେଠେଇଙ୍କୁ ଚିଡ଼ାଇ ତାଙ୍କ ଚାଳିରେ ମନୋରଞ୍ଜନ କରିବା ବାଲ୍ୟ ଆବାଳ ବୃଦ୍ଧ ବଣିତା ଅନ୍ତିମ ଥର ପାଇଁ ଜେଠେଇ ସହିତ ଚାଲିଯାଉଥିଲେ । ଆଜି ଜେଠେଇର ଲାଜ ଭୟ ନଥିଲା । ଜେଠେଇ ତାଙ୍କର କାନ୍ଧ ଉପରେ ଥିଲେ । ହୃଦୟ ଉପରେ ଥିଲେ, ମୁଖରେ ଥିଲେ । ଗାଡ଼ି ଗୁଡ଼ିକ ପାର କରି ଚୌଡ଼ା ସଡ଼କ ଉପରକୁ ଆସନ୍ତେ ସଜ୍ଜନର ଦୀବାନ୍‌ଜୀ ସୁନା ରୁପାର ଫୁଲ ଫିଙ୍ଗାଇଲେ । ରାଜା ସାହେବଙ୍କ ବଡ଼ପୁଅ ମନୁଆ ମଧ୍ୟ ଲୋକଲକ୍ଷ୍ୟାରେ ପଞ୍ଚ ବାଜି ଦଶ ଟଙ୍କାର ପଇସା ମଗାଇ ବୁଣିଦେଲେ ।

ସନ୍ଧ୍ୟାକୁ କର୍ଣ୍ଣେଲ ଜେଠେଇର ସ୍ୱର୍ଗବାସ କଥା ଶୁଣିଲା । ସେ ଏ ମଧ୍ୟ ଶୁଣିଲେ ଯେ ମୂର୍ଦ୍ଧାର କାନପୁର···ଗଂଗାଜୀଙ୍କ ପାଖକୁ ଯାଉଛି । କର୍ଣ୍ଣେଲକୁ ଅତ୍ୟନ୍ତ ଦୁଃଖ ହେଲା । କିନ୍ତୁ ସେ ମହୀପାଳକୁ କହିଲା ନାହିଁ । ସନ୍ଧ୍ୟାକୁ ଦ୍ୱାର ପୂଜାପାଇଁ ମହୀପାଳ ବହୁତ ବଡ଼ ଆୟୋଜନ କରିଥିଲା । ବଡ଼େ (ବଡ଼ପୁଅ) ନିମନ୍ତ୍ରଣ ପତ୍ର ବାଣ୍ଟି ଥିଲେ କିନ୍ତୁ ସଜ୍ଜନ ଓ ବନକନ୍ୟାକୁ ଡାକି ନଥିଲେ । କର୍ଣ୍ଣେଲର ଉପରେ ନିଜର ଅଧିକାର ଜାରି କରିବା ପାଇଁ ମହୀପାଳ ତାକୁ ସକାଳୁ ଡକାଇଥିଲା । କର୍ଣ୍ଣେଲ ସେଠାରେ ତ କିଛି କାମ ନଥିଲା । ଖାଲି ବସି ବସି ସେ ବିବାହ ଘରର ଚହଲ ପହଲ ଝାଡ଼-ଝଡ଼ ଦେଖୁଥିଲା । ବରଯାତ୍ରୀ-ମାନଙ୍କର ବସିବା ସ୍ଥାନ କାର୍ଲଟନ ହୋଟେଲର ପାଞ୍ଚଟି ଘର ଉଦ୍ଦିଷ୍ଟ ହୋଇ ଥିଲା । ବରଯାତ୍ରୀ ଆସିବାକ୍ଷଣି ସରବତ ବରଯାତ୍ରୀଙ୍କ ପାଖକୁ ପଠାଗଲା । ପୁଣି ଦିନ ତମାମ ଜଳଖିଆ-ଫଳ-ମିଠାଇ ଖାଦ୍ୟ-ପେୟର ଜିନିଷ ଆଦି ଯାଉଥିଲା । ସନ୍ଧ୍ୟା ୭ଟାରେ ନିମନ୍ତ୍ରଣ ପ୍ରଥାର ଉପଚାର କରାଗଲା । ବାରିକ ବରଯାତ୍ରୀମାନଙ୍କୁ ନିମନ୍ତ୍ରଣ କରିବାକୁ ଗଲା । ମହୀପାଳ ଘରେ ଆମନ୍ତ୍ରିତ ଲୋକଙ୍କ ଭିଡ଼ ଜମିଲା । ସେଠ୍ ରୂପରତନର ବିଶାଳ-ଲନ୍‌ରେ ପ୍ରୀତି ଭୋଜନର ଆୟୋଜନ କରାଯାଇଥିଲା । ପ୍ରତିଷ୍ଠିତ ନାଗରିକମାନଙ୍କ ସହିତ ଦୁଇଜଣ ମନ୍ତ୍ରୀମଧ୍ୟ ଉପସ୍ଥିତ ଥିଲେ । ମହୀପାଳ ଏଥିପାଇଁ ଅତ୍ୟନ୍ତ ଆନନ୍ଦିତ ଥିଲା । ଲୋକଙ୍କୁ ବୁଲି ବୁଲି କହୁଥିଲା ଯେ ଯଦି ଏହା ନୈନିତାଲ ସଜ୍ଜନ ହୋଇ ନଥାନ୍ତା ତେବେ ସ୍ୱୟଂ ପନ୍ନା ମହାରାଜ ଓ ଗଭର୍ଣ୍ଣର ମୋଦୀ ମଧ୍ୟ ତା ଘରକୁ ନିଶ୍ଚୟ ଆସି ଥାଆନ୍ତେ ।

ବରଯାତ୍ରୀର ଘର ନିକଟରେ ପହଞ୍ଚିବାର ସମାଚାର ମିଳିଲା । ଲୋକମାନେ ସ୍ୱାଗତ କରିବା ପାଇଁ ସଡ଼କ ଉପରେ ଛିଡ଼ା ହୋଇଗଲେ । ପୁଣି ଲକ୍ଷ୍ନୌର ବାଜପେଇ ଓ ବାଲ୍ମଂ କେଂ ଶୁକ୍ଳ ନିଜ ନିଜର ବଡ଼ ପଣିଆ ନେଇ ପ୍ରଥା ଅନୁଯାୟୀ ସଡ଼କ ଉପରେ ଛିଡ଼ା ହୋଇ ରହିଲେ । ବରଯାତ୍ରୀମାନଙ୍କ ମଧ୍ୟରେ ପ୍ରତିଷ୍ଠିତ ଲୋକ ମଧ୍ୟ ଥିଲେ କିନ୍ତୁ ଝିଅ ତରଫରୁ ବଡ଼ବଡ଼ ଧନୀ-ମାନୀ, ଅଫିସର, ଡାକ୍ତର, ସାମ୍ବାଦିକ, ପତ୍ରକାର ଓ

ମିନିଷ୍ଟର ପର୍ଯ୍ୟନ୍ତ ଉପସ୍ଥିତ ଥିଲେ । ପୁଅ ତରଫବାଲା ମଧ୍ୟ ନିଜର ବଡ଼ ପଣିଆ ଓ ମର୍ଯ୍ୟାଦା ଦେଖାଇ ଆଗକୁ ବଢ଼ିଲେ ନାହିଁ । ଏହିଭଳି ପାଦେ ପାଦେ ଆଗପଛ ହେବାର କିଛି କ୍ଷଣପରେ ମହିପାଲ ଓ ଡାକ୍ତର ଯଦୁପାଲ ଆଗକୁ ଯାଇ ସମୁଧୀଙ୍କ ଆଗରେ ନଇଁଗଲେ । ପୁଣି ମିଶିଲେ । ପାର୍ଟି ସମୟରେ କର୍ଣ୍ଣେଲ ନିଜର ପ୍ରବନ୍ଧ କୌଶଳର ଆଡ଼ମ୍ବର ସୃଷ୍ଟି ପରିଚୟ ଦେଲା । ଅତିଥିମାନଙ୍କର ବିଦାୟ ପରେ କର୍ଣ୍ଣେଲ ମହିପାଲକୁ ବିଦାୟ ମାଗିଲା । ମହିପାଲ ବହୁତ ଆଗ୍ରହ କରିବା ପରେ ସାମାନ୍ୟ କିଛି ଆହାର ତୁଣ୍ଡରେ ଦେଲା । ମହିପାଲ ଓ ସଜ୍ଜନର ମନାନ୍ତର ପାଇଁ କର୍ଣ୍ଣେଲର ମନ ଅତ୍ୟନ୍ତ ଖିନ୍ନଥିଲା । ମହିପାଲର ବ୍ୟବହାର ବିଶେଷ କରି ତାକୁ ଅଧିକ ଦୁଃଖିତ କରିଥିଲା । ଫେରିବା ସମୟରେ କର୍ଣ୍ଣେଲ ସଜ୍ଜନର କୋଠରୀକୁ ଯାଇ ଖବର ବୁଝିଲା । କନ୍ୟା ସହିତ ଭେଟ ହେଲା । କର୍ଣ୍ଣେଲ ନିଜର ଅବଶତା ପାଇଁ ଦିନରେ ଆସି ପାରିଲା ନାହିଁ ବୋଲି ଦୁଃଖ ପ୍ରକାଶ କଲା । କନ୍ୟାଠାରୁ ଜଣାଗଲା ଯେ ରାଜାସାହେବଙ୍କ ସୁପୁତ୍ର ମୁଖାଗ୍ନି ଦେବାପାଇଁ ସଜ୍ଜନକୁ ଆଦେଶ ଦେଇ ଶବକୁ ଉଠାଇ ନେଇଥିଲା । ସଜ୍ଜନକୁ ଏଥିପାଇଁ ବଡ ଆଘାତ ଲାଗିଲା । ଏହା ପରେ ସେ ମୂର୍ଚ୍ଛାର ସହିତ କାନପୁର ମଧ୍ୟ ଯିବାକୁ ଚାହୁଁ ନଥିଲା । ପରେ କନ୍ୟାର ଆଗ୍ରହରେ ଗଲା ।

ଶୁଣି କର୍ଣ୍ଣେଲ ହସିଲା । କହିଲା -" ଏ ମୁଖାଗ୍ନି ଦେବା କଥା ରାଜ ସାହେବଙ୍କର ନିୟମର ତ୍ରୁଟିକା । ମୁଖାଗ୍ନି ଦେଲେ ହୁଏତ ସଜ୍ଜନ କେଠେଇର ଉଦ୍‌ଭ୍ରାନ୍ତ ସମ୍ପତ୍ତିର ହକଦାର ହୋଇଯିବ, ଏଥିପାଇଁ ଏ ବାଟ ପ୍ରଥମରୁ ସେ ବନ୍ଦ କରିଦେଲା ।

'କେତେ ନୀଚ ହୋଇ ପାରନ୍ତି ଏ ଲୋକମାନେ । ପ୍ରତ୍ୟେକ କ୍ଷେତ୍ରରେ କେବଳ ପଇସାକୁ ଦେଖନ୍ତି ।" କନ୍ୟା କହିସାରି ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ିଲା ।

# ଏକାବନ

ସେଠେଇ ମରିବାର ୨ୟ ଦିନ ସଜ୍ଜନଙ୍କୁ ରାଜାସାହେବଙ୍କ ଓକିଲ ନୋଟିସ ମିଳିଲା । ନୋଟିସରେ ତୁରନ୍ତ କୋଠୀ ଖାଲି କରିବା ପାଇଁ ଆଦେଶ ଦିଆଯାଇଥିଲା । ସଜ୍ଜନ ଏପରି ଆଶା ମଧ୍ୟ କରୁଥିଲା, କିନ୍ତୁ କନ୍ୟାର ପାଠଶାଳାକୁ ଉଠାଇ ସେ କେଉଁଠିକି ନେବ ? ଏପରି ମଧ୍ୟ ହସପିଟାଲ ପାଇଁ ଖରିଦ କରାଯାଇଥିବା ଘରକୁ ମଧ୍ୟ ସେ ନେଇ ଯାଇ ପାରିବ । ସେଠାରେ ପ୍ରସୂତି-ଗୃହ ପାଇଁ ସ୍ଥାନ କମ୍ ହେବାର ସମ୍ଭାବନା ଥିଲା, ତତ୍ର ସଙ୍ଗେ ସଙ୍ଗେ ପାଠଶାଳାର ବାତାବରଣ ପ୍ରସୂତି-ଗୃହ ପାଇଁ ଉଚିତ ନୁହେଁ । ସଜ୍ଜନ ଓ କନ୍ୟା ଦୁହେଁ ଏହି ବିଷୟରେ ବହୁତ ଚିନ୍ତା କରୁଥିଲେ । ସଜ୍ଜନ ପ୍ରସ୍ତାବ କଲା ଯେ ଥରେ ସେ ନିଜେ ରାଜା ସାହେବଙ୍କ ପାଖକୁ ଯାଇ କୋଠୀକୁ ଭଡ଼ାରେ ନେବାର ପ୍ରସ୍ତାବ ଦେବ । କନ୍ୟା କହିଲା ଯେ ରାଜାସାହେବ ଏହା ଗ୍ରହଣ କରିବେ ନାହିଁ । ସେହା ମଧ୍ୟ ହେଲା । ରାଜା ସାହେବ ଅତ୍ୟନ୍ତ ଆତ୍ମୀୟତା ପ୍ରକଟ କରି, କୁଶଳ ପ୍ରଶ୍ନ ପଚାରିଲେ । କହିଲେ..."ଏବେ ମୁଁ ସମସ୍ତ ମାୟା-ମୋହରୁ ଦୂରରେ । ଶେଷ ଜୀବନରେ କେବଳ ହରିନାମ ମୋର ମୂଳଧନ । ତୁମେ ନିଜା ଭେୟା, ସହିତ କଥା ହୁଅ । ସେ ସବୁ ସମ୍ଭାଳୁଛୁ । ଦେଖୁଛୁ ।"

"ଭେୟା ସାହେବ' ସହିତ କଥ ବାର୍ତ୍ତା ହେବାପରେ ତାଙ୍କୁ ଦୁଇଟି କଡ଼ା କଥା ଶୁଣିବାକୁ ପଡ଼ିଲା । ସେ କହିଲା..."ଆମର ପିତୃ ପିତାମହଙ୍କ ମହଲ ହିନ୍ଦୁ ଧର୍ମର କବର ହେବ ନାହିଁ, ଲାଲା ସଜ୍ଜନ ମଲଜୀ, ବଡ଼ 'ମା' ଥିବା ସମୟରେ ତାଙ୍କର ଅଧିକାର ଥିଲା । ବାକି, ଏବେତ ବାବୁଜୀ, ସେଥିରୁ ଆମର ଦାବୀ'ର ନାଁରେ ବୈଦିକ ପାଠଶାଳ ଖୋଲିବାର କଥା ଠିକ୍ କରିସାରିଛୁ ।"

ସଜ୍ଜନ ଚୁପ ହୋଇଗଲା । ସେ ପୁଣି ୨ୟ କଥା ଉଠାଇଲା ଅନ୍ତତଃ ପକ୍ଷେ ଏକମାସ ସମୟ ମାଗିଲା । 'ଭାଇ ସାହେବ' ମିଠା ସ୍ୱରରେ କହିଲେ..."ଆମ କଥାକୁ ଭୁଲ ଭାବ ନାହିଁ ସଜ୍ଜନ ମଲ । ଆମ ତରଫରୁ ମାସେ କଣ ଦୁଇମାସ ନିଅ । ଆମର ତୁମର କଣ ଧନକଥା ବ୍ୟବହାର । କିନ୍ତୁ କଥାଟା ଏହା ଯେ ପବ୍ଲିକ ସେଠାରେ ତୁମ ଉପରେ ଓ ବିଶେଷ କରି ତୁମର କରିଣ ସ୍ତ୍ରୀ ଉପରେ ବହୁତ ଚିଡ଼ି ଯାଇଛନ୍ତି । ଆମେ ତ ମହଲରୁ ୨ୟ ଭଡ଼ାଦାରଙ୍କୁ ମଧ୍ୟ ବାହାର କରି ଦେବାକୁ ଚାହୁଁଛୁ । ତାର ସ୍ତ୍ରୀ ମଧ୍ୟ କରିଣ ଘରର ?

ସଜ୍ଜନଙ୍କୁ ବହୁତ ଖରାପ ଲାଗିଲା, ତଥାପି ବଡ଼ ସଂଯମତାର ସହିତ ସେ କହିଲା…" ପବ୍ଲିକ ଆମ ଉପରେ କେତେ ଭରସା, ଏ ଚର୍ଚ୍ଚ। ଆପଣ ରଖନ୍ତୁ ଓ ଏ ଆନ୍ତର୍ଜାତୀୟ ପ୍ରବାହକୁ ମଧ୍ୟ ଖରାପ ଭାବନ୍ତୁ ନାହିଁ, ଏବେ ତ ଆହୁରି ହେବ। ଅଧିକରୁ ଅଧିକ ହେବ। ଆପଣଙ୍କର ଗୋଟିଏ କ'ଣ, ଦଶକୋଟି ବୈଦିକ ପାଠଶାଳା ମଧ୍ୟ ସମାଜକୁ ବଦଳେଇବାରେ ଚେଷ୍ଟାକରିବେ। କେହି ବନ୍ଦ କରିପାରିବେ ନାହିଁ ଦେଖିନେବେ।"

ଭାଇ ସାହେବ ଧର୍ମର ଆବେଗରେ ଆସିଗଲେ, ଚକ୍ଷୁ ବିସ୍ଫୋରିତ କରି କହିଲେ…"ବଡ଼ ବଡ଼ ସିକନ୍ଦର, ବାବର ଓ ଇଂରେଜମାନେ ତ ଆମର ଲକ୍ଷ ଲକ୍ଷ କୋଟି କୋଟି ବର୍ଷର ପ୍ରାଚୀନ ପବିତ୍ର ହିନ୍ଦୁ ଧର୍ମକୁ ବଦଳାଇ ପାରିଲେ ନାହିଁ, ତୁମେ…"

"ଆମେ ନୁହେଁ, ସମସ୍ତ ଏହାର ସମାଧାନ କରିବ। ଆମେ ହିନ୍ଦୁସ୍ଥାନର ଧର୍ମକୁ ଟିକିଏ ହେଲେ ଅପମାନ କରୁନାହିଁ ବାଧା ମଧ୍ୟ ଦେଉନାହିଁ। ହଁ ତାର ପ୍ରହସନକୁ ଅନ୍ଧ ବିଶ୍ୱାସକୁ ଧକ୍କା କ'ଣ ଏକଦମ୍ ମୂଳପୋଛ କରିଦେବୁ। ଦେଖିନେବେ।"

"ତୁମେ ଆମ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଚାହୁଁଛ ସଜ୍ଜନ, ତେବେ ଆମେ ତୁମର ପ୍ରତିଦ୍ୱନ୍ଦ୍ୱିତାକୁ ମଞ୍ଜୁର କରୁଛୁ। ଭୋକରେ ମରୁଥିବା (କାଙ୍ଗାଳ) ମୁଖରେ କେତେ ଅଁଠା ଯୋଗାଇବ ? ଏମିତି ଭୋକରେ ମରୁଥିବା ଲୋକ ଲକ୍ଷ ଲକ୍ଷ ଅଛନ୍ତି।"

"ଏହି ବାସ୍ତବତା ତୁମକୁ ଶିଖାଇଦେବ।"

ଭାଇ ସାହେବ ଖୁବ୍ ଜୋର୍‌ରେ ହସି ଉଠି, କହିଲେ…ସଜ୍ଜନ ଧାଡ଼ି ଆଗରେ ନାହିଁ ଲୁଚେଇବା ଚେଷ୍ଟା ବୃଥା। କାଙ୍ଗାଳ ମାନଙ୍କର ଆଳ ନେଇ ତୁମର ଏହି ବିଜିନେସ୍‌କୁ ଆମେ ଖୁବ୍ ବୁଝୁଛୁ କିନ୍ତୁ ଗୋଟିଏ ମିତ୍ରତା ପୂର୍ଣ୍ଣ ପରାମର୍ଶ ଆମଠୁ ନିଅ। ତୁମର ଏହି ଉପାସ୍ୟ ଜମିଦାରୀ ଉପାସ୍ୟ, ବ୍ୟବସାୟୀ ନୁହେଁ। ତୁମେ ଯେଉଁ ପଲିଟିକ୍‌ସ ଖେଳୁଛ ତାକୁ ଆମେ ଗୁରୁଜଣ ମିଶି ଗୋଟିଏ ବର୍ଷ ମଧ୍ୟରେ ନରକ ଦ୍ୱାରର ରସିଦ କାଟିଦେବୁ। (ହସି) ତୁମର ବେଶୀ ହେଲେ ୭/୮ ଲକ୍ଷ କି ଦଶ ଲକ୍ଷ ଆମର ଉପାସ୍ୟ ଆଗରେ ଗୋଟିଏ ମିନିଟ୍‌ରେ ବାରୁଦ ଗଦାଭଳି ଉଡ଼ିଯିବ। ଆମର କିଛି ନଷ୍ଟ ହେବ ନାହିଁ। ଆମେ ବିଶ୍ୱାସରେ ଟଙ୍କା ବଢ଼ାଇଦେବୁ—ଇନ୍‌କମ୍ ଟ୍ୟାକ୍‌ସ, ସୁପର ଟେକ୍‌ସରୁ ଅଳ୍ପ ବହୁତେ ମୁକ୍ତି ମଧ୍ୟ ପାଇଯିବୁ।"

ସଜ୍ଜନ୍ ମଧ୍ୟ ସେହି ଭଳି ଶାନ୍ତ ସ୍ୱରରେ ହସି ହସି କହିଲା… "ଠିକ୍ ଅଛି ଏହି ଆଳରେ ତୁମ୍ଭେମାନେ ପବ୍ଲିକ୍‌ର ପାଇଁ କିଛି ଟଙ୍କା ଖର୍ଚ୍ଚ କରିବ। କିନ୍ତୁ ତୁମ୍ଭେମାନେ କୋଟି କୋଟି ଟଙ୍କାକୁ ସଙ୍ଗେ ସଙ୍ଗେ ଉଡ଼ାଇ ଦେବ। ଏଥିରେ ଯୁକ୍ତି କରିବାର ଆବଶ୍ୟକତା ନାହିଁ, ପ୍ରଥମେ ନିଜ ଆଖିରେ ଦେଖିବ।" କହି ସଜ୍ଜନ ଉଠି ଛିଡ଼ା ହେଲା। ଚାଲୁ ଚାଲୁ ସେ ବୁଲିପଡ଼ି କହିଲା…" ତୁମ ନୋଟିସ୍‌ର ଉଚିତ୍ ଜବାବ ପହଞ୍ଚିଯିବ କିନ୍ତୁ ମୁଁ କହିଯାଉଛି, ଯେତେ ଦିନ ପର୍ଯ୍ୟନ୍ତ ମୋତେ ।ସ୍ୟ ସ୍ଥାନ ନ ମିଳିଛି, ମହଲ ଛାଡ଼ିବି ନାହିଁ। ହଁ, ଯେତେଶୀଘ୍ର ସମ୍ଭବ ମୁଁ ଅନ୍ୟ ସ୍ଥାନ ଦେଖିବି।"

ଗ୍ରାଇ ସାହେବ ଗରଜି ଉଠିଲେ, କହିଲେ···"ମହଲ ୧୫ ଦିନ ମଧ୍ୟରେ ଖାଲି ହୋଇଯିବା ଦରକାର ସଜ୍ଜନ ମଲ ।"

"ମୁଁ ଚେଷ୍ଟା କରିବ ।" ସଜ୍ଜନ ଶାନ୍ତ ସ୍ୱରରେ କହିଲା । ଗ୍ରାଇ ସାହେବ, ଚୌକିରୁ ଉଠି ଛିଡ଼ା ହେଲେ···କହିଲେ "ଚେଷ୍ଟା କରିବ ? ତେବେ ୩ ଦିନରେ ଖାଲି କରିବା ଦରକାର ।"

"ମୁ ଚେଷ୍ଟା କରିବ ।" ସଜ୍ଜନ ପୁଣି ସେହିଭଳି କହିଲା ।

ଭୈସ୍ୱା ସାହେବ ଆବେଗରେ ଦୁଇପାଦ ଆଗକୁ ଯାଇ କହିଲେ···ପୁରୁଷାନୁକ୍ରମେ ସମ୍ବନ୍ଧକୁ ନାହିଁକି ନଷ୍ଟ କରୁଛ ସଜ୍ଜନ ? ମନେରଖ ପଛକୁ କହିବନାହିଁ ଯେ ଆପଣାର ହୋଇ ମଧ୍ୟ ସର୍ବନାଶ କରିଦେଲ ।"

ସଜ୍ଜନ ଫେରି ଆସିଲା, ପାଖକୁ ଆସି, କହିଲା ··"ମୁଁ ତୁମକୁ ବିଶ୍ୱାସ ଦେଉଛି । ମୋର କୌଣସି ପଲିଟିକାଲ୍ ଉଦ୍ଦେଶ୍ୟ ନାହିଁ । ମୁଁ ଗୋଟିଏ ସାମାଜିକ ପ୍ରୟୋଗ କରୁଛି ।"

"ଏହା ତ ତୁମର ସବୁଠାରୁ ବଡ଼ ପଲିଟିକ୍ସ । ଅଚ୍ଛା, ଆମେ ତୁମକୁ କହୁଛୁଁ । ତୁମେ ନିଜ ବ୍ୟାଙ୍କର ଆଇଡ଼ିଆ ଡ୍ରପ କରିଦିଅ ଓ ପୁଣି ସାମାଜିକ ପ୍ରୟୋଗ କର । ଅଳ୍ପ ବହୁତେ ନୂଆ ଯୁଗ ଆଣିବାକୁ ଚାହୁଁଛ ତ...ନେଇ ଆସ । ବାସ୍ କେବଳ ବର୍ତ୍ତମାନ ସାଇ ମୁସଲମାନ, ଖ୍ରୀଷ୍ଟିଆନ ସହିତ ବିବାହ ବନ୍ଧାପନାର ପ୍ରଥା ଖୋଲିବ ନାହିଁ ।

ବାକି, ଜାତି—ଅଜାତି ଗ୍ରୁଡ଼ି ମ୍ୟାରେଜ ମଧ୍ୟ ହେବାକୁ ଦିଅ, ବାବୁଜୀ ସ୍ୱବା ପର୍ଯ୍ୟନ୍ତ ମୁଁ ଏ କାମ ପାଇଁ ପ୍ରକାଶ୍ୟରେ ତ ନୁହେଁ କିନ୍ତୁ ଚୁପ୍‌ଚାପ ତୁମର ସାହାଯ୍ୟ କରିବି । ଦଶ ଜଣ ଆଉ ବଡ଼ ଲୋକଙ୍କ ଦ୍ୱାରା ସାହାଯ୍ୟ ବ୍ୟବସ୍ଥା କରିଦେବି ।"

ଗ୍ରାଇ ସାହେବ ବହୁତ ସମୟ ପର୍ଯ୍ୟନ୍ତ ଅଣ୍ଡା ମିଠା ଲେକ୍‌ଚର ପିଆଇଲେ...... ଏହା କରାଇଦେବି, ତାହା କରାଇ ଦେବି ।" ସଜ୍ଜନ ମଧ୍ୟ ଶାନ୍ତ ହୋଇ ଶୁଣିଲା, ପୁଣି କହିଲା······ବ୍ୟାଙ୍କ ବନ୍ଦ କରିଦେଲେ ମୋର ସାମାଜିକ ପ୍ରୟୋଗ ପୂରା ହେବ କିପରି ?"

ଗ୍ରାଇ, ଗ୍ରେଟ ସ୍କେଲରେ ଆଗ କିଛି ଆରମ୍ଭ କର ତୁମକୁ ଚାନ୍ଦା କରି କିଛି ଦେବାର ବ୍ୟବସ୍ଥା କରିବା ।"

ଚାନ୍ଦା ଟଙ୍କା ଉପରେ ଜନତାର ଆଶକ୍ତି ଆସିବ କିପରି । ଆଚ୍ଛା ଗୋଟିଏ କାମ କରନ୍ତୁ ଆପଣ, "ସଜ୍ଜନ ଗୋଟିଏ ପ୍ରସ୍ତାବ ପକାଇଲା । "ଆପଣ ଡ଼ାଇରେକ୍‌ଟରୀ ଲାଲାଜୀନଙ୍କ ସରନ ଓ ସିଏ ସେଠାକାର ୨ୟ ମହାଜନ, ଯାହାଙ୍କୁ ସାଇ ଅଥବା ଓ୍ୟାଡ଼ର ସହକାରୀ ମୂଳଧନ ବାଲି ବ୍ୟାଙ୍କ ଖୋଲିବା ଦ୍ୱାରା ନିଜ ପାଇଁ ବିପଦ ବୋଲି ମନେ କରୁଛନ୍ତି ତାହା ଏକ ପ୍ରକାର ଦମ ମଧ୍ୟ ହୋଇ ପାରିବ । ଆପଣ ମଧ୍ୟ ଆମର ସହକାରୀ ଗୁଷ୍ଠୀକୁ ଆସନ୍ତୁ ଓ ତାହାକୁ ମଧ୍ୟ ନିଜର ଗୋଟିଏ ଧନ୍ଦା ଭାବି ଉଚିତ୍ ଲାଭ ଉଠାନ୍ତୁ ।"

ଗ୍ରଇ ସାହେବ କହିଲେ......... "ଆପଣଙ୍କ ବ୍ୟାଙ୍କରେ ମିଶିବା ପାଇଁ ପ୍ରସ୍ତୁତ ଅଛୁଁ କିନ୍ତୁ ଗୋଟିଏ ସର୍ତ୍ତ ଉପରେ ଏଭଳି ଶେୟାର ହୁଏତ ଗୋଟିଏ ଗୋଟିଏ ଟଙ୍କାରେ ରହୁ କିନ୍ତୁ ବୋର୍ଡ଼ ଅଫ ଡ଼ାଇରେକ୍ଟରସରେ ତାହାକୁ ହିଁ ବସ୍ତିଯାଇ ପାରିବ ଯାହା ପାଖରେ ଅନ୍ୟୂନ ପାଞ୍ଚଶହ ଶେୟାର ଥିବ ।"

ସଜ୍ଜନ କହିଲା......"ଆପଣ ପବ୍ଲିକ ସହକାରିତା ନାମରେ ପ୍ରାଇଭେଟ ଧନ୍ଦା ପ୍ରସାରିତ କରିବାକୁ ଚାହାନ୍ତି ? ଧନ୍ଦା ନିଶ୍ଚିତ ରୂପେ ପ୍ରସାରିତ କରନ୍ତୁ କିନ୍ତୁ ସାର୍ବଜନିକ ସ୍ତରରେ ଡ଼ାଇରେକଟରର ବୋର୍ଡରେ ଆସିବା ପାଇଁ ଏକ ଟଙ୍କା ବାଲା ମଧ୍ୟ ସେତିକି ଅଧିକାରୀ । ଆମକୁ ଡାଇରେକ୍ଟରମାନଙ୍କ ମଧ୍ୟରୁ କେବଳ ଧନ୍ଦା ଚଳାଇବା ପାଇଁ ନୁହେଁ ସାର୍ବଜନିକ ଲାଭ ପାଇଁ ଧନ୍ଦା ଚଳାଇବା ପାଇଁ ଯୋଗ୍ୟ ଲୋକ ଦରକାର ।

ଭୈସ୍ୱା ସାହେବ ଗମ୍ଭୀରତା ପୂର୍ବକ ମୁଣ୍ଡ ହଲାଇଲେ ପୁଣି ହସି ହସି କହିଲେ ..... ବିନାଶ କାଳେ ବିପରୀତ ବୁଦ୍ଧି, ହେଉ, ମହଲ ୩ ଦିନ ମଧ୍ୟରେ ଖାଲି କରିଦିଅନ୍ତୁ ଲାଲ ସଜ୍ଜନ ମଲଜୀ ।"

"ଏହା କହି ଭୈସ୍ୱା ସାହେବ ଯିବା ପାଇଁ ଗୋଡ଼ ମୋଡ଼ିଲେ । ସଜ୍ଜନକୁ ତାଙ୍କର ଏହି ଲାଟ ସାହେବୀ ହୁକୁମ ଓ ତାଙ୍କର ଦରବାର 'ଲାଲ' 'ଓ' 'ମଲ' ଯୋଡ଼ି ନାମ ନେବା ଅତ୍ୟନ୍ତ ଖରାପ ଲାଗିଲା, ଯଦ୍ୟପି ଏହାହିଁ ତାର ପୂର୍ବ ନାମ ଥିଲା । ସ୍ୱରରେ ଜୋର ଦେଇ ସେ କହିଲା ଆପଣଙ୍କୁ କହି ସାରିଛି ଯେ, ଚେଷ୍ଟା କରିବି, ନିର୍ଦ୍ଦିଷ୍ଟ ସମୟ ଦେଇ ପାରିବି ନାହିଁ ଓ ଯେତେଦିନ ପର୍ଯ୍ୟନ୍ତ ମୋତେ 'ସ୍ୱ ସ୍ଥାନ ନ ମିଳିଛି ସେତେଦିନ ପର୍ଯ୍ୟନ୍ତ କୌଣସି ଶକ୍ତି ମୋତେ ଜେଠେଇର କୋଠିରୁ ବାହାର କରି ପାରିବ ନାହିଁ ।"

ରାଜା ସାହେବଙ୍କ ଘରୁ ଫେରି ସଜ୍ଜନ ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଥିଲା । କୋଠିରୁ କନ୍ୟାର ସ୍କୁଲକୁ ସ୍ଥାନାନ୍ତରିତ କରିବା ଏତେ ବଡ଼ ସମସ୍ୟା ହୋଇ-ପଡ଼ିଥିଲା ଯେ ନିଜର ବିରୋଧି ପକ୍ଷଦ୍ୱାରା ନିଜର ସୃଜନାତ୍ମକ ସ୍ୱପ୍ନକୁ ନଷ୍ଟ ଭ୍ରଷ୍ଟ କରିବାର ଭୟ ରହିଛି । ସେ ଭବିଷ୍ୟତ ପରିସ୍ଥିତିକୁ ଦେଖିଥିଲା । ତାଠାରୁ ଅଧିକ ବଡ଼ ଓ ସଂଗଠିତ ପୁଞ୍ଜି ତା ବିରୁଦ୍ଧରେ ଛିଡ଼ା ହୋଇଥିଲା । ସେହି ପୁଞ୍ଜି ଦଳଗତ ସ୍ୱାର୍ଥ ସମାଜର ବାସ୍ତବିକ ଉନ୍ନତି କରିବାକୁ ଦେଉ ନଥିଲା ଓ ଜନତା ଯଦ୍ୟପି ଖୁବ୍ ଯୋରରେ ତା ଆଡ଼କୁ ଟାଣି ହୋଇଥିଲା କିନ୍ତୁ ସଜ୍ଜନ ଏ ପର୍ଯ୍ୟନ୍ତ ଜନ ଶକ୍ତି ଉପରେ ହାର୍ଦ୍ଦିକ ବିଶ୍ୱାସ କରିପାରି ନ ଥିଲା । ସେ ଭାବୁଥିଲା ଯେ ସେହି ଲୋକମାନେ, ଯେଉଁମାନେ ସେହି ସମୟରେ ତା ଠାରୁ ସହାନୁଭୂତି ପାଉଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଯଦି ବିପକ୍ଷରୁ ଉତ୍କୋଚ ନେଇ ସଜ୍ଜନକୁ ଠକିବେ, ସେ କଣ କରି ପାରିବ ? ସଜ୍ଜନର ଯୋଜନା ଆରମ୍ଭ ହେଉଁ ହେଉଁ ଏବେ ଯଦି ଏହା ପୁରୁଣା ହୋଇ ଯାଇଥାଆନ୍ତା ତେବେ ଲୋକଙ୍କ ସହିତ ତାର ଘନିଷ୍ଠ ସମ୍ପର୍କ ହୋଇ ସାରି ଥାଆନ୍ତା । ତେବେ ଅଧିକ ଚିନ୍ତାର କଥା କିଛି ନଥିଲା । ବିପକ୍ଷଙ୍କ

ଦ୍ୱାରା ଯେତେ କୌଶଳ ପ୍ରୟୋଗ କରାଯିବ ସେ ସମସ୍ତ ଅଧିକାଂଶଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବ । ଏହା ବ୍ୟତୀତ ଏ ମହାଜନ ଲୋକ ରାଜ ନୈତିକ ପାର୍ଟିଗୁଡ଼ିକ ମଧ୍ୟ ନିଜ ସଂଗଠନରେ ସାମିଲ୍ କରିବେ । ସଜ୍ଜନ ସେହି ପରିସ୍ଥିତିରୁ ନିଜ ଯୋଜନା ଗୁଡ଼ିକୁ ବଞ୍ଚେଇ ବାକୁ ଚାହୁଁଥିଲା । ଜନତା ଜାଗି ଉଠୁ, ଜନତା ନିଜ ହିତ ଓ ଅଧିକାରକୁ ଠିକ୍ ରୂପେ ଚହ୍ନୁ. ଏହା ସଜ୍ଜନର ହାର୍ଦ୍ଦିକ ଇଚ୍ଛା । କିନ୍ତୁ ସେ କଣ ଏପରି କାମ କରିବ ଯଦ୍ୱାରା ଲୋକେ ତାକୁ ବିଶ୍ୱାସ କରି ପାରିବେ । ଜନତାର ବିଶ୍ୱାସ ଦୃଢ଼ କରିବା ପାଇଁ ସେ କି ପ୍ରକାର ଆତ୍ମୋତ୍ସର୍ଗ କରିପାରିବ ? ଏହି ଚିନ୍ତା ସେ କରୁଥିଲା ।

ସାଧନ ପାଇଁ ସହଜ ଉପାୟ ଅଛି ରାମଜୀ, ଆମେ ଗୋମତୀ ତଟକୁ ଆସିଲୁ ।। ସାକ୍ଷାତ କର ।।

...ନିଜ କୋଠୀର କୋଠରୀରେ ଏକୁଟିଆ ବସି ବିଚାର ମଗ୍ନ ସଜ୍ଜନକୁ ବାବାଜୀଙ୍କର ସ୍ୱର ପୁଣି ସେହିଭଳି ଶୁଣାଗଲା ଯେଭଳି ଦୁଇ ଦିନ ପୂର୍ବରୁ ଶୁଣା ଯାଉଥିଲା । ସଜ୍ଜନ ସ୍ତବ୍ଧ ହୋଇଗଲା । ତା ମନରେ ଦ୍ୱନ୍ଦ୍ୱ ଖେଳିଗଲା, ଏହା ଭ୍ରମ ନୁହେଁ ତ । ଏପରି ନୁହେଁ ତ, ମୋର ମନ ମୋତେ ଧୈର୍ଯ୍ୟ ଦେବା ପାଇଁ ଏହି ପ୍ରକାର ରୂପ ଧରି ମୋତେ ସନ୍ତୋଷ ଦେଉଛି । ଗୋମତୀ ତଟରେ ସାକ୍ଷାତର କଥା ଅବଶ୍ୟ କଷ୍ଟି ପଥର ହୋଇପାରେ । ସଜ୍ଜନ ଡ୍ରାଇଭରକୁ ଶୀଘ୍ର ଗାଡ଼ି ବାହାର କରିବା ପାଇଁ ଆଦେଶ ଦେଲା ।

ସତ-ସତ, ଶିବାଳୟର ବାରଣ୍ଡାରେ ବାବାଜୀ ଶୋଇଥିଲେ, ଦେଖିବାକ୍ଷଣି ଉଠି ବସିଲେ ଓ ସବୁ ଦିନ ଭଳି ହସି ହସି କହିଲେ "ଆସ ରାମଜୀ, ଖୁବ୍ ବାଟ ଦେଖାଇଲ ।"

ସଜ୍ଜନ କହିଲା......"ମୁଁ ପରିଅ ଦିନ ଆପଣଙ୍କ ପାଖକୁ ଆସୁଥିଲି..."

ହଁ : ରାମ ଭକ୍ତ ଣୀ ମରିଗଲା ବିଚାରୀ । ଆମର ବଡ଼ ଉପକାର କରିଯାଇଛି, ରାମଜୀ । ଗାଁରେ ଏପରି ବଢ଼ିଆ ଆଶ୍ରମ ହୋଇଛି ଯେ ତଦ୍ୱାରା ବଡ ଲୋକୋପକାର ହୋଇପାରିବ । ପାଠଶାଳା ବ୍ୟାୟାମ ଶାଳା ସବୁ କିଛି ସୁଚାରୁ ରୂପେ ଚାଲୁଛି, ରାମଜୀ । ଆମେ ଆଜି ଏଥିପାଇଁ ଆସିଲୁ ଯେ, ଆପଣ ଆମକୁ ଗୋଟିଏ ଟ୍ରାକ୍ଟର କିଣାଇ ଦିଅନ୍ତୁ ।

ସଜ୍ଜନ କହିଲା..."ଆପଣ ଯାହା ଚାହିଁବେ ହୋଇଯିବ କିନ୍ତୁ ମୋର ଗୋଟିଏ ଶଙ୍କାର ସମାଧାନ କରନ୍ତୁ ।"

ବାବାଜୀ ହସିଲେ..."ସେଥିରେ, କେଉଁଥିପାଇଁ ଶଙ୍କା ରାମଜୀ, ତୁମ ପାଖରେ ଗୋଟିଏ ଟେଲିଫୋନ ଅଛି ଓ ଆମ ପାଖରେ ଆଉ ଗୋଟିଏ ଅଛି ।" କହି ବାବାଜୀ ପୁଣି ହସିଲେ ।

"କିନ୍ତୁ ଏହା କିପରି ସମ୍ଭବ ?"

"ସାଧନା ଦ୍ୱାରା ।"

"କି ପ୍ରକାର ସାଧନା ?"

"ଆତ୍ମ ସଂଯମ ଓ ଧ୍ୟାନ ।"

"ମନ କିପରି ଏକାଗ୍ର ହୁଏ ?"

"ସତତ ଚିନ୍ତନ ଦ୍ୱାରା ।"

ଜୀବନର ବହୁଳତା ମଧ୍ୟରେ ସତତ ଚିନ୍ତନ ସମ୍ଭବ ନୁହେଁ । ଅନେକତ୍ୱ ମଧ୍ୟରେ ଏକୀଭୂତ ହେବା ସମ୍ଭବ ନୁହେଁ ।

"ତେବେ ସେହି ବହୁଳତାର ବିଚାର କର । ନିଜ ଇଚ୍ଛାକୁ ଅନେକ ମଧ୍ୟରେ ପ୍ରବେଶ କରି ବିସ୍ତାରିତ କରି ଦେଖ । କେଉଁଠି ତାର ବାସ୍ତବିକ୍ ଉତ୍ସ ରହିଛି । ତୁମେ ସାମାଜିକ କାର୍ଯ୍ୟପାଇଁ ପ୍ରଥମେ ନିଜର ସଂପତ୍ତି ଦାନ କରିବାକୁ ପଶ୍ଚାତ୍ ପଦ ହେଉଥିଲ । ପୁଣି ଜଣା ପଡ଼ିଲା ଯେ ଲୋକମାନଙ୍କ ପାଇଁ ବ୍ୟୟ କରିବା ପାଇଁ ତୁମର ଇଚ୍ଛା ପ୍ରବଳ । ଏବେ ତୁମ ମଧ୍ୟରେ ଓ ଜନମାନଙ୍କ ମଧ୍ୟରେ ଭେଦ ରହିଛି । ଯାହାକୁ ତୁମେ ଅଧିକ ବୁଝିବ, ସେଥିରେ ତୁମର ଧ୍ୟାନ ଅଧିକ ଲାଗିବ । ଚିତ୍ତ ମଧ୍ୟ ଏକାଗ୍ର ହେବ ।"

"ମୁଁ ଜୀବନ ମଧ୍ୟରେ ଏକ ହୋଇ ଯିବାକୁ ଚାହୁଁଛି ।"

"ତେବେ ନିଷ୍ଠାସ୍ଥ ହୋଇଯିବ ।"

ଆପଣଙ୍କର ଆଶୀର୍ବାଦ ଚାହୁଁଛି, କିନ୍ତୁ ମୋର ଜିଜ୍ଞାସା ବର୍ତ୍ତମାନ ମଧ୍ୟ ପୂର୍ବଭଳି ରହିଛି, ଆପଣଙ୍କ ରହସ୍ୟମୟତା ସମ୍ବନ୍ଧରେ ।"

ପ୍ରଶ୍ନର ଉତ୍ତର ଏପର୍ଯ୍ୟନ୍ତ ପାଇ ପାରିଲିନି, ଆପଣଙ୍କ ରହସ୍ୟମୟତା ବିଷୟରେ କିନ୍ତୁ ମୋର ଜିଜ୍ଞାସା ଆପଣଙ୍କ ରହସ୍ୟମୟତା ସଂପର୍କରେ ପୂର୍ବବତ୍ ରହିଛି ।"

ବାବାଜୀ ଟିକା ମାଡ଼ି ସିଧା ହୋଇ ବସି କହିଲେ "ସ୍ୱାମୀଜୀ ବିଶ୍ୱାସ କର । ମୁଁ କିଛି କରୁ ନାହିଁ, ମୁଁ ନିଜକୁ ସେହି ବିରାଟର ଗୋଟିଏ ସୂକ୍ଷ୍ମ ଅଣୁ ମନେ କରେ, ସେଥିପାଇଁ ମୁଁ ଖୁବ ସହଜ ତୁମ ମନରେ ଅଦ୍ୱିତୀୟ ହେବାର ବାସନା ରହିଛି, ଅଲଗା ରହି ବିରାଟତ୍ୱକୁ କିପରି ଚିହ୍ନିବ ସ୍ୱାମୀଜୀ ?"

ସଜ୍ଜନ ମୁଣ୍ଡ ନୁଆଁଇ ଚୁପ୍ ହୋଇଗଲା, ବାବାଜୀ କହିଲେ "ମୋ ଗୁରୁ ମତେ କେବଳ ସେବା କରିବାର ମନ୍ତ୍ର ଦେଇଥିଲେ" କହିଲେ ସମସ୍ତଙ୍କ ଭିତରେ ମୋ ରୂପ ଦେଖି ସେବା କରିବ, ଶିକ୍ଷା ଦୀକ୍ଷାତ ମୋର ନାହିଁ ସ୍ୱାମୀଜୀ, କିନ୍ତୁ ନିଷ୍ଠା ସହିତ, ପରମ ନିଷ୍ଠାରେ ଏହି ଗୋଟିଏ କଥା ନେଇ ଆଗେଇ ଚାଲିଛି, ଏହି ସେବା କରିବାର ଏକାନ୍ତ ଇଚ୍ଛା ହିଁ ମୋ ମନକୁ ଏକାଗ୍ର କରି ନିଜର ସୂକ୍ଷ୍ମ ଓ ସେହି ବିରାଟ ଶକ୍ତିର ଦର୍ଶନ କରାଇ ଦେଲା, କହନ୍ତି ଯେ ଇଚ୍ଛା ମାତ୍ରେ ବାୟୁର ରୂପେ ସ୍ୱଦେହରେ ମନଇଚ୍ଛା ଯାଇ ପାରିବ । କିନ୍ତୁ ଏପର୍ଯ୍ୟନ୍ତ ସେ ଶକ୍ତିର ଯୋଗ୍ୟ ମୁଁ ହୋଇପାରି ପ୍ରଭୁଙ୍କ ଇଚ୍ଛା ଥିଲେ ହେବ ନ ହେଲେ ବି ଚିନ୍ତା କଣ ? ମୁଁ କେବଳ ନିଷ୍କାମ ସେବା ବ୍ରତ ନେଇ ପରମ ତତ୍ତ୍ୱର ସନ୍ଧାନରେ ବାହାରି ପଡ଼ିଛି, ରାସ୍ତାରେ ଯାହା କିଛି ଅନୁଭୂତ ହେବ ସେଥିରୁ ଜ୍ଞାନ ଆହରଣ କରି ଚାଲିଯିବ । ମୋର ଆଉ କିଛି କାମନା ନାହିଁ ।"

ପୁଣି ସଜ୍ଜନ ଦୀର୍ଘ ନିଶ୍ୱାସ ଛାଡ଼ି କହିଲା "ଆପଣଙ୍କ କଥାରେ ସହଜରେ ରହସ୍ୟକୁ ବୁଝି ହେବ କିନ୍ତୁ ରହସ୍ୟ ଚିରଦିନ ରହସ୍ୟ ଅଟେ ।"

ଅଭ୍ୟାସ ହୋଇଗଲେ ବାମଜୀ, ରହସ୍ୟ ଭଳି ଆଉ ଲାଗିବ ନାହିଁ । ଦୈନିକ ଜୀବନର ସେ ଗୋଟିଏ ଧାରା ହୋଇଯିବ, ନୂଆ ରାସ୍ତାରେ ଚାଲିବାକୁ ଆରମ୍ଭ କଲେ ସଂକୋଚ ଓ ଅଡୁଆ ଲାଗି ଏ ବାସ୍, କଥା ଏତିକି । ନିଜେ ନିଜକୁ ପଚାର ତୁମର ଇଚ୍ଛା କଣ ? ନିଜ ଉତ୍ତର ନିଜ ଭିତରେ ଶୁଣ, ଦେଖି ସେହି ଇଚ୍ଛା ମଧ୍ୟରୁ କେଉଁ କଥା ତୁମକୁ ବିଶେଷ ଭାବରେ ପ୍ରଭାବିତ କରୁଛି ଏବଂ କଣ ତୁମକୁ ଖରାପ ଲାଗୁଛି ପୁଣି ତାକୁ ବିଶ୍ଳେଷଣ କରି ଦେଖ ଯେ ତୁମର ଚିନ୍ତା ପଛରେ କେଉଁ, ସାମାଜିକ, ଭୌତିକ, ଆଧ୍ୟାତ୍ମିକ ତତ୍ତ୍ୱ ରହିଛି, ମୂଳ ତତ୍ତ୍ୱ କଣ, ପୁଣି ତାକୁ ବ୍ୟାଖ୍ୟା କର ଅର୍ଥାତ୍ ନିଜ ଇଚ୍ଛାର ମୂଳ ତତ୍ତ୍ୱକୁ ଚିହ୍ନି ତାକୁ ବିକଶିତ କରିବା ପରେ ଦେଖିବ ଇଚ୍ଛା ତମର ଦାମ୍ ହୋଇପାରିଛି ତୁମେ ମଧ୍ୟ ଇଚ୍ଛାକୁ ଯାଣିଛ ଅର୍ଥାତ୍ ଏହାପରେ ଆଉ ଇଚ୍ଛାକୁ ନେଇ ତୁମ ଦୃଷ୍ଟି ଅଡୁଆରେ ପଡ଼ିବ ନାହିଁ । ତୁମେ ଯାହା ଇଚ୍ଛା କରିବ ତାକୁ ସମ୍ଭବ କରିପାରିବ ଆଜି ତମକୁ ଯାହା ଆଶ୍ଚର୍ଯ୍ୟ ଲାଗୁଛି–ଦେଖିବଦିନେ ତୁମେ ଅନାୟସରେ ତାହା କରିପାରିବ । ସେଥିରେ ତୁମର ରୁଚିର ପରିଚୟ ମିଳିବ ଏବଂ ଶକ୍ତିକୁ ଚିହ୍ନିବା ପ୍ରୟାସରେ ଏଭଳି ଅନେକ ବିଲକ୍ଷଣତା ନିଜେ ନିଜେ ଅନୁଭବ କରିପାରିବ ଯାହାକି ଅନୁଭବର ମାର୍ଗ ସର୍ବଦା ସରଳ ବାମଜୀ, ନିଜେ ଅଭ୍ୟାସହିଁ ଆବଶ୍ୟକ ।"

ସଜ୍ଜନ, ବାବାଜୀ କଥାରେ, ପ୍ରଭାବିତ ହୋଇ ଚୁପ ହୋଇଗଲା । ସେ ଭାବୁଥିଲା —ଖୁବ୍ ଗଭୀର ଭାବରେ ଭାବୁଥିଲା ମଣିଷ ଯେମିତି ନିଦରେ ସ୍ୱପ୍ନ ଦେଖେ, ଚେତନା ଆଉ ଅଚେତନର, ଦୁଇଟି ମିଶ୍ର ସ୍ଥିତିରେ ମୁକ୍ତ ହୋଇଯାଏ ।

ମହିପାଲ ଉପରେ ମକଦ୍ଦମା ଚଲାଇବାର ମାନସିକ ଜିଦ୍ ତଥା ଭୈରୋ ସାହେବ, ଲାଲ ଜାନକୀ ଶରଣ, ରୂପରତନ ଆଦିଙ୍କର ସଂଗଠିତ ବିରୋଧତାର କଷଟି ପଥର ଉପରେ କଷି ହେଉଥିଲେ । ଦୁଇଦିନ ପୂର୍ବରୁ କନ୍ୟା କହିଥିଲା କଥା ମଧ୍ୟ ଏହି ସମୟରେ ମନେ ପଡ଼ୁଥିଲା ଏବଂ ଏ ସମୟରେ ତାର ଜିଦ୍‌ରହିତ ମନ ଠିକ ଭାବରେ ବୁଝିପାରିଲା ଯେ, ତା' ଭିତରେ ରହିଛି, ମୂଳରୁ ସେ ଅଦ୍ୱିତୀୟ ହେବାକୁ ଚାହୁଁଛି – କିନ୍ତୁ ଏପରି ଚାହିଁ ବାଟ କ'ଣ ଠିକ୍ ? ଏପରି ଚାହିଁ ବାଟ ।କେବଳ ବ୍ୟକ୍ତିଗତ ଆଉ ମୂର୍ଖତା ମଧ୍ୟ । ଆଜିର ସମାଜ ସହିତ ଏତେ ବିକ୍ଷିପ୍ତ, ବ୍ୟାପକ, ବିଶାଳ ଜୀବନ ସହିତ କିଏ ଅଦ୍ୱୀତୀୟ ହୋଇରହିପାରିବ ? ଅବଶ୍ୟ ଗୋଟିଏ ଦୃଷ୍ଟିରୁ ସେ ନିଶ୍ଚୟ ଅଦ୍ୱିତୀୟ କାରଣ ଜୀବ ସବୁରି ମଧ୍ୟରେ ରହିଛି ଏବଂ ଜୀବ ଅଦ୍ୱିତୀୟ ଅଟେ । ସଜ୍ଜନ ଯଦି ଏଇ ଅଦ୍ୱିତୀୟତାକୁ ଚିହ୍ନି ନେବ ତେବେ କାହା ପ୍ରତି ଈର୍ଷା, ଦ୍ୱେଷ ରହିବ ନାହିଁ । ଭୟ ଏଇଥିପାଇଁ ଯେ, ଯଦି ଅନ୍ୟ ମାନଙ୍କ ଈର୍ଷା, ଦ୍ୱେଷର ବିରୋଧିତାର ଶିକାର ହେବ, ଅନ୍ୟମାନଙ୍କ ମିଥ୍ୟାର ଫାଶୀ ତା' ଗଲାରେ ପିନ୍ଧା ହେବ । ସେତେବେଳେ କ'ଣ ଈର୍ଷା—ଦ୍ୱେଷ ବିନା

ସେ ଉଦୟପାରିବ ? ମଣିଷର ଯାହା ସାଧାରଣ ପ୍ରକୃତି ସେଥିରୁ ସେ, କଣ ନିଜକୁ ରକ୍ଷା କରିପାରିବ ? ସଜ୍ଜନ, ବାବାଜୀଙ୍କ ପାଖରୁ ଫେରିବା ସମୟରେ ନାନା ପ୍ରକାର ମାନସିକ ଦ୍ୱନ୍ଦ୍ୱ ଭିତରଦେଇ ଆସୁଥିଲା । ସେଠ୍ ରୂପରଞ୍ଜନଙ୍କ ଘର, ରାସ୍ତାରେ ପଡ଼ିଲା । ବହୁ ଲୋକ ଚଳାଚଳ ଓ ସଜ୍ଜିତ ଫାଟକ ଯୋଗୁଁ ସହଜରେ ଦୃଷ୍ଟି ଆକର୍ଷଣ କରୁଥିଲା । ମହୀପାଳ କଥା ମନରେ ଆସିଲା, ସଜ୍ଜନର ଚିନ୍ତା ଭିନ୍ନ ପଥରେ ଗଲା, ମନରେ ଆସିଲା ଯେ, ଗଣେଶଙ୍କ ବିବାହରେ ସେ ନିଜେ ଯାଇ ମହୀପାଳକୁ ଅଭିନନ୍ଦନ ଜଣାଇ ଆସିବ । ନିମନ୍ତ୍ରଣ ? ନିମନ୍ତ୍ରଣ ନ ହେଲେ ନାହିଁ, ସେ ନିଜକୁ କାହିଁକି ଏତେ ଶ୍ରେଷ୍ଠ ଭାବିବ, ମହୀପାଳ ସହିତ ଏତେ ଦିନର ଗଭୀର ବନ୍ଧୁତା – ଏହି କଥାକୁ ସେ କାହିଁକି ମନରେ ନ ନେବ ? ସେ ଡ୍ରାଇଭରକୁ ଗାଡ଼ି ଅଟକେଇବାକୁ କହିଲା । ଗାଡ଼ି ଅଟକିବା ଆଗରୁ ମନରେ ହେଲା କିଛି ଉପହାର, ନେବା ଉଚିତ । ଡ୍ରାଇଭରକୁ ହନ୍ ରତ୍ନଙ୍କ ଯିବା ପାଇଁ ଆଦେଶ ଦେଲା । ଯାଉ ଯାଉ ଭାବିଲା, ଉପହାର ନେଲେ ହୁଏତ ମହୀପାଳ ଭାବିବ ତାକୁ ପଇସା ଦେଖେଇହେବା ପାଇଁ ସେ ଆସିଛି । ଡ୍ରାଇଭରକୁ ଗାଡ଼ି ଫେରାଇବା ପାଇଁ ପୁଣି କହିଲା । ଗାଡ଼ି ଫେରିଲା ମାତ୍ର ଡ୍ରାଇଭର ଜାଣିବାକୁ ଚାହୁଁଥିଲା ଯେ ଗାଡ଼ି ଫେରାଇଯିବ କୁଆଡ଼େ ? ସଜ୍ଜନର କୋଠି ନା ସେଠ୍ ରୂପରଞ୍ଜନର ଘର ? ସେ ପ୍ରଶ୍ନର ମଧ୍ୟ ସଜ୍ଜନଠାରୁ କିଛି ଉତ୍ତର ପାଇଲା ନାହିଁ । ସଜ୍ଜନ ଭାବିବାରୁ ନ ଥିଲା । ଏପରି ଅବସ୍ଥାରେ ସେ ମହୀପାଳ ନିକଟକୁ ଯିବ କି ନାହିଁ । ଯଦି ସେ ନ ଯାଏ ତେବେ ତା' ମନରେ ଈର୍ଷା ଥିବାର ପ୍ରମାଣ ଆଉ ଯଦି ଯାଏ, ମନରେ ସଂକୋଚ ସହିତ, ଅପମାନିତ ହେବାର ଭୟ ମଧ୍ୟ ଥିଲା ।

ଗାଡ଼ି ତା' ଘର ଫାଟକ ପାଖକୁ ଚାଲି ଆସିଥିଲା, ଡ୍ରାଇଭର ପଚାରନ୍ତେ ତୁରନ୍ତ ଆଦେଶ ଦେଲା "ରୂପରଞ୍ଜନର କୋଠିକୁ ଚାଲ" ।

ସେ ସମୟରେ ମହୀପାଳ ଘରେ ବିବାହ କାର୍ଯ୍ୟକ୍ରମ ଚାଲିଥିଲା । ମହୀପାଳ ଓ ଜୟପାଳ ବର ପକ୍ଷର ମାମୁଁ ଘର ସହିତ ଦହି ଓ ମଧୁମୁକ୍ତ ପାନ ଜଣେ ଅନ୍ୟ ଜଣଙ୍କ ଗାଲରେ ଲଗାଇ ପରସ୍ପର ସହିତ ମିଶୁଥିଲେ । ଏହି ମିଳନ ସମୟରେ ମଧ୍ୟ ମହୀପାଳର ମନ ଭିତର ଜଳୁଥିଲା । ବରର ମାମୁଁ ମାନଙ୍କ ପାଇଁ ଏ ବିବାହରେ ବହୁତ ଗଣ୍ଡଗୋଳ ଉପୁଜିଥିଲା । ବରଯାତ୍ରୀ ଦଳ କନ୍ୟା ଘରେ ପହଞ୍ଚିବା ପରେ ଏହି ମାମୁଁ ମାନେ କନ୍ୟା ପକ୍ଷର ସମସ୍ତଙ୍କୁ, ଉତ୍ତରେଇ ଦେଇ ଦେଲେ । ଗତକାଲିଠାରୁ ପ୍ରତିମୁହୂର୍ତ୍ତରେ ମହୀପାଳଙ୍କୁ ଅପମାନ କରା ହେଉଥିଲା । ବିଭିନ୍ନ ଅସମ୍ଭବ କଥା ଫରମାସ୍ କରି ବରର ବଡ଼, ଶ୍ରେଷ୍ଠ ଓ ମଝିଆ ମାମୁଁ, କନ୍ୟା ପକ୍ଷର ଲୋକଙ୍କୁ ହଇରାଣ କରିଥିଲେ । ବରର ବଡ଼ ମାମୁଁ, ମହୀପାଳର ମାମୁଁ ଘର ସମ୍ପର୍କରେ ମଧ୍ୟ ଦୂର ସମ୍ପର୍କୀୟ ଥିଲେ । ଏଇଥିପାଇଁ ସେ ତାକୁ ବାରମ୍ବାର ତାର ଅଜା ଓ ମାମୁଁ ଘରର ଖୋଣ୍ଟା ଦେଉଥିଲେ । କହୁଥିଲେ ତୁମ ମା' ତୁମ ମାମୁଁ ଘରୁ ଯେଉଁ ସବୁ ଜିନିଷ ମାଗି ଆଣିଛନ୍ତି ତାକୁ ବାହାରକର । ବଡ଼ ବଡ଼

ଲୋକ ଓ ମିନିଷ୍ଟରଙ୍କ ସହିତ ବନ୍ଧୁତା କରିଛି ତ ଆଉ, ଆମର ଏ ଫର୍ମାଣି କ'ଣ ପୁରଣ କରି ପାରୁନ ଇତ୍ୟାଦି । କାଲିଠାରୁ ଆଜି ପର୍ଯ୍ୟନ୍ତ ସେ ଚୁପ୍‌ଚାପ ଯେତେ ଅପମାନ ସହିଥିଲା ସେଭଳି ଅପମାନିତ ସେ ଜୀବନରେ କେବେ ହୋଇ ନଥିଲା । ଡାଃ ଜୟପାଳ ତ ସାମ୍ନାକୁ ଆସୁନଥିଲେ ଆଉ ଯଦିବା ଆସୁଥିଲେ ତେବେ ତା ବିପକ୍ଷରେ କଲି କରୁଥିଲେ । କିନ୍ତୁ ମହିପାଳ ତା' ସାନ ଭାଇକୁ ବାରମ୍ବାର ଶାନ୍ତ କରିବାକୁ ଚେଷ୍ଟା କରୁଥିଲା ଆହୁରି ବଢ଼ି ବଢ଼ି ଚାଲିଲା ଗୋଳମାଳ । ମହିପାଳ ଓ ଜୟପାଳଙ୍କ ସ୍ୱର୍ଗୀୟା ମା'ଙ୍କ ନାମରେ ବଦ୍‌ନାମ କରିବାକୁ ମଧ୍ୟ କୁଣ୍ଠା ବୋଧ କଲେ ନାହିଁ ।

ଏହି ସମୟରେ ମହିପାଳ ସଜ୍ଜନ ଆସିବାର ଖବର ପାଇଲା । ସେ ଆଶ୍ଚର୍ଯ୍ୟ ହେଲା, ସଙ୍ଗେ ସଙ୍ଗେ ମନ ତିକ୍ତତାରେ ଭରିଗଲା । ସେ ସଜ୍ଜନ କନ୍ୟାକୁ ଜାଣିଶୁଣି ନିମନ୍ତ୍ରଣ କରି ନ ଥିଲା । ତାକୁ କୁହାଗଲା ଯେ ସଜ୍ଜନ ଓ କଣ୍ଟ୍ରୋଲ ସେଠ ରୂପରତନର ଘରେ ବସିଛନ୍ତି ।

ରୂପରତନ—ସଜ୍ଜନର ବହୁତ ଖାତିର କଲା, ପୁଣି ଅଟ୍ଟହାସିଆ ସ୍ୱରରେ ତାର ଚେଷ୍ଟା ଓ ଆନ୍ଦୋଳନ ଆଦିକୁ ଆକ୍ଷେପ କରୁଥିଲା । କଥା କଥାରେ ରୂପରତନ କହିଲା "ଯେ ପର୍ଯ୍ୟନ୍ତ ଭାରତବର୍ଷରେ ଅଗଣିତ ଉଚ୍ଚନୀଚ ଜାତି ଭେଦ ରହିଛି ସେ ପର୍ଯ୍ୟନ୍ତ ଏ ଦେଶରେ କୌଣସି କିଛି କାମ ହୋଇ ପାରିବ ନାହିଁ ଏବଂ ଏହି ଜାତି ପ୍ରଥାକୁ ଭାଙ୍ଗିବା କାହାରି ଦ୍ୱାରା ସମ୍ଭବ ପର ନୁହେଁ । କେତେ ଝଡ଼ ଆସିଲାଣି, ଗଲାଣି ମାତ୍ର ଏ ଅସଂଖ୍ୟ ଜାତି ଭାରତବର୍ଷର ଅଛନ୍ତି । ତେବେ ଭାଇ ମୁଁ ତ ସିରିଅସ୍‌ଲି ଭାବୁଛି ଯେ ଆମେ ଫେଶନ୍ ଢଙ୍ଗରେ ଯେତେ ସମାଜକୁ ସୁଧାରୁ କିମ୍ବା ସୋସାଲିଷ୍ଟର ଚର୍ଚ୍ଚା କରୁଁ ପଛକେ, ଗରିବ ଜନସାଧାରଣଙ୍କୁ ପ୍ରବୋଧ ଦେବା ନିମନ୍ତେ ଏ ପ୍ରକାର ଚର୍ଚ୍ଚାର ଆବଶ୍ୟକ ମଧ୍ୟ ରହିଛି । ତେବେ ସତ କହିବାକୁ ଗଲେ କୌଣସି ବୁଝିବା ଶୁଣିବା ଭାରତୀୟଙ୍କୁ ଏ ବିଦେଶୀ ନୀତି ଉପରେ ବିଶ୍ୱାସ ରଖିବା ଉଚିତ ନୁହେଁ । ବୟସ ବେଳେ ମୁଁ ମଧ୍ୟ ଦୃଢ଼ ସୋଶ୍ୟାଲିଷ୍ଟ୍ ଥିଲି । ଏବେ ମଧ୍ୟ ମୋର ଭିୟୁଜ୍ (ଦୃଷ୍ଟିକୋଣ) ସେଇଭଳି ରହିଛି । କିନ୍ତୁ ଏବେ ମୁଁ ବୁଝି ସାରିଛି ଯେ ଭାରତବର୍ଷର ଜନସାଧାରଣଙ୍କ ପାଇଁ ଏ ସବୁ ଉପଯୋଗୀ ନୁହେଁ । କହିବାକୁ ହେଲେ ପଚିଶ ବର୍ଷ ମଧ୍ୟରେ ଏଠାରେ କିଛି ବଦଳିବ ନାହିଁ, ଭବିଷ୍ୟତ କଥା ଭବିଷ୍ୟତ ହିଁ ଜାଣେ ।"

ସଜ୍ଜନକୁ ଖରାପ ଲାଗିଲା, ସଙ୍ଗେ ସଙ୍ଗେ ଭାବିଲା ଏଥିରେ ଖରାପ— କାହିଁକି ବା ଲାଗିବ ? ରୂପରତନକୁ ଏଭଳି ସମାଜରେ ରହିବାର ବାସନା ଅଛି ଯଦିଓ ତା ନିଜର ଇଚ୍ଛା, ଏଭଳି ସମାଜରେ ରହିବ ଯେଉଁଠି ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଅନୁଚିତ ଅସମତା ନଥିବ । ଯଦି ତାର ଏ ଇଚ୍ଛାରେ ସତ୍ୟ ନିହିତଥିବ, ତେବେ ତାହା ନିଶ୍ଚୟ ପୂରଣହେବ । ତାର ସ୍ପଷ୍ଟ ମନେହେଲା ଭୈୟା ସାହେବ, ରୂପରତନ, ମହିପାଳ ଆଦି

ଲୋକଙ୍କ କଥା ତା ନିଜ ଦୃଷ୍ଟି କୋଣରୁ ଠିକ୍ ନହେଲେ ମଧ୍ୟ । ଏହିସବୁ କଥାରୁ ବରଂ ତାର ଇଚ୍ଛା ଶକ୍ତି ହେବା ଉଚିତ । ଏ ପ୍ରକାର ବିରୋଧ ତାର ଇଚ୍ଛା ଶକ୍ତି ପ୍ରବଳତାର ଏକ ପରୀକ୍ଷା ସଦୃଶ ଆସିଥାଏ । ସେ ରୂପରତନକୁ କହିଲା "ଆପଣମାନଙ୍କ କଥାକୁ ମୁଁ ଖଣ୍ଡନ କରୁନାହିଁ କିମ୍ବା ଆପଣଙ୍କ କଥା ସତ୍ୟକୁ ମଧ୍ୟ ମୁଁ ଜମା ମାନିନେଇ ପାରୁନି । ମୁଁ ଆପଣମାନଙ୍କ ବିରୋଧକୁ ବିନମ୍ରତା ପୂର୍ବକ ମୁକାବିଲା କରିବାପାଇଁ ପ୍ରସ୍ତୁତ ଅଛି ।"

'କିଣ ଗାନ୍ଧିଜୀ ହୋଇଗଲ କି'?? ରୂପରତନ ହସି ଉଠି ବ୍ୟଙ୍ଗକଲା । ସଜ୍ଜନ ମୁରୁକି ହସି କହିଲା "ଗାନ୍ଧିଜୀ ଭାରତୀୟ ଥିଲେ, ମୁଁ ମଧ୍ୟ ଏବେ ଭାରତୀୟ ହେବାକୁ ଚେଷ୍ଟା କରୁଛି ।"

ତେବେ ଏ ପର୍ଯ୍ୟନ୍ତ କିଣ ବିଳାତି ଥିଲ ?

"ହଁ ବିଳାତି ଥିଲି ଏବଂ ନିଜର ନ ଥିଲି କି ପରର ମଧ୍ୟ ନ ଥିଲି, ଏବେ ଆପଣାର ହୋଇଗଲି ।"

ମହିପାଲ ଆସି ଏ ସମୟରେ ପହଞ୍ଚିଲା, ଅତ୍ୟନ୍ତ କ୍ଷୁବ୍ଧ ଥିଲା ସେ । ଘର ଭିତରକୁ ଆସି ସଜ୍ଜନ ଦୃଷ୍ଟିକି ନ ମିଳାଇ ସୋଫା ଉପରେ କ୍ଳାନ୍ତ ହୋଇ ବସି ପଡ଼ିଲା । ସଜ୍ଜନ କହିଲା "ମୁଁ ତତେ ଅଭିନନ୍ଦନ ଜଣାଇବା ପାଇଁ ଆସିଛି ।"

"ଥ୍ୟାଙ୍କସ୍" ମୁଁ ତ ତୁମ ସ୍ଥାନରେ ତୁମ ଓକିଲ ନୋଟିସର ଅପେକ୍ଷାରେ ରହିଥିଲି । ଶୁଣୁଛି ତୁମେ ମୋ ବିରୁଦ୍ଧରେ ମାନହାନି ମୋକଦ୍ଦମା କରିବାକୁ ଯାଉଛ ।"

ସଜ୍ଜନ ଶାନ୍ତ ଭାବରେ କହିଲା "ଇଚ୍ଛା ତ ଥିଲା କିନ୍ତୁ ଦେଖିଲି ଯେ ଏବେ ମଧ୍ୟ ମୋ ଭିତରେ ଈର୍ଷା ପ୍ରବଳ ଭାବରେ ରହିଛି । ଏହି କାରଣ ଯୋଗୁଁ ମୁଁ ନିଜେ ନିଜର ସମ୍ମାନ ନଷ୍ଟ କରୁଛି । ମନର ଅଦାଲତରେ ଯଦି ନିଜର ମୋକଦ୍ଦମାରେ ଜିତି ଯିବ ତେବେ ସିନା ବାହାଦୁରୀ ।"

କର୍ଣ୍ଣେଲ ଚେହେରାରେ ପିଲାଙ୍କ ଭଳି ପ୍ରସନ୍ନତା ଭରିଗଲା, କହିଲା "ସଜ୍ଜନ ତୁମେ ପ୍ରକୃତରେ ମହାନ ଅଛ । ମୁଁ ମହିପାଲ ମୁହଁ ଉପରେ କହୁଛି ଯେ ତା ଭିତରେ ତୁମଭଳି ଏତେ ଶ୍ରେଷ୍ଠତ୍ୱ ବା ଉଦାରତା ଜମା ନାହିଁ ।"

ମହିପାଲକୁ ନିଜ ଭିତରେ ବହୁତ ଶ୍ରେଷ୍ଠ ମନେ ହେଉଥିଲା । ଏଇ ନ୍ୟୁନଭାବ ତାକୁ ଆହୁରି ବିରକ୍ତ କରୁଥିଲା । ଯେଉଁ ତେଜ ନିଜ ସମ୍ମୁଖମାନଙ୍କ ନିକଟରେ ଦେଖାଇ ପାରୁ ନଥିଲା ସେଇ ତେଜ ତୀକ୍ଷ୍ଣ ବ୍ୟଙ୍ଗ ରୂପରେ ସଜ୍ଜନକୁ ଆଗରେ ପାଇ ପ୍ରକାଶ ହୋଇଗଲା । କର୍ଣ୍ଣେଲ କଥାର ଉତ୍ତରରେ ସେ କହିଲା "ଆରେ ଯାଅ, ବହୁତ ଲୋକଙ୍କ ବଡ଼ ମଣିଷ ପଣିଆ ଦେଖି ସାରିଛି । ସେମାନଙ୍କ ତୁଳନାରେ ସ୍ୱେ କି ଲୋକ । ବଡ଼ ବଡ଼ କୋଟିପତିଙ୍କୁ ମଧ୍ୟ ଦେଖି ସାରିଛି । ମୋ ସାମ୍ନାରେ କେହି ମୁହଁ ଖୋଲି ପାରିବେ ନାହିଁ । ଆଦର୍ଶ କଥାରେ ସମସ୍ତଙ୍କୁ ଅଲଗରେ ଘାଏଲ୍ କରି ରଖିଦିଏ । ମୁଁ କାହାର ପଇସାକୁ

ମଧ୍ୟ ଡରେ ନାହିଁ ଜମ୍ନା ପଇସାକୁ ପରବାଏ ମଧ୍ୟ କରେନ । କାଲିଠାରୁ ଆଜିଯାଏ ପାଣି ପରି ପଇସା ଖର୍ଚ୍ଚ କରୁଛ ।

'ହଁ ଭାଇ, ଯିଏ ମାଗଣା ଧନ ପାଇଯିବ ସେ ପାଣିପରି ଖର୍ଚ୍ଚ ନକରିବ ବା କାହିଁକି ?' ସେଠ୍ ରୂପରତନ ଚଢ଼ି ଉଠି କହିଲା ।

ମହିପାଳ ସମୁଧିକର୍ତ୍ତୀଙ୍କ ଅପମାନିତ ହୋଇ ଏଯାଏଁ ଯେଉଁ କଷ୍ଟ ପାଉଥିଲା ତାହା ସଜ୍ଜନ ବାହାନାରେ ନିଜ ପ୍ରତିକାର ନେଇ ଆବଶ୍ୟକତାର ଅଧିକ ତା ମନରୁ ଉତୁରି ଆସିଲା । ସେଠ୍ ରୂପରତନଙ୍କୁ ଏହା ଅସହ୍ୟ ହେଲା । ମହିପାଳ ବହୁତ ଧନୀ-ମାନୀ ବ୍ୟକ୍ତି ସହିତ ପ୍ରତିଦ୍ୱନ୍ଦ୍ୱିତା କରୁଥିଲା । ସେ ମହିପାଳର ମିଜାଜକୁ ଠିକ୍ ଯାଗାରେ ରଖିବା ଉଦ୍ଦେଶ୍ୟରେ ନିଜ କଥା ଆହୁରି ବଢ଼ାଇଲେ । ସେଠ୍ ରୂପରତନ ତାକୁ ବହୁତ ସାହାଯ୍ୟ କରିଥିଲେ । ଗହଣା ବନ୍ଧକ ନାଁରେ ସେ କଣିନେଇ ମହିପାଳକୁ ତ୍ରିଶ ହଜାର ଟଙ୍କା ଦେଇଥିଲେ । ବିବାହ ପାଇଁ ତାଙ୍କ ବଙ୍ଗଳା ମଧ୍ୟ ଛାଡ଼ିଦେଇଥିଲେ । ତା ସତ୍ତ୍ୱେ, ଏ ବ୍ୟକ୍ତି ଏଭଳି ନିମକ୍ହାରାମ୍ ଅକୃତଜ୍ଞ ହେଲା ଯେ ନିଜେ ତାଙ୍କ ସାମ୍ନାରେ ନିଜର ବଡ଼ିମା ଗାଉଛି । ସେଠ୍ ରୂପରତନ ପୁଣି ଥରେ ଚମକିଲା ପରି କହିଲେ "ମାମୁଁ ଘରେ ଡକାୟତି ହେଲା, ମହିପାଳ ସୁକୁଲଙ୍କ ଭାଗ୍ୟ ତେଜିଲା । ଶୁଭ ଚିନ୍ତକ ହୋଇ ତାଙ୍କୁ ଜୀବନ ନେଲେ ଏବଂ ତାଙ୍କ ମୁଣ୍ଡରେ ଦୋଷ ବୋଲି ଡକାୟତି ମାଲ ବେଚିଇ ନିଜେ ଖାନ୍ଦାନୀ ସେଠ୍ ହୋଇଗଲା ।"

କର୍ଣ୍ଣେଲ ଓ ସଜ୍ଜନ ଉଭୟେ ଉଭୟଙ୍କୁ ଦେଖୁଥିଲେ । ମହିପାଳ ଉନ୍ମାଦ ହୋଇଗଲା, ଗର୍ଜି ଉଠି କହିଲା "ମୋର ଅପମାନ କରନାହିଁ, ମୁଁ ରକ୍ତ ପିଇ ଯିବି ।"

ରୂପରତନ ହସି ଉଠି କହିଲେ "ହଁ ଭାଇ, ଖାନ୍ଦାନୀ ଧନୀ ନବାବ ଯେତେବେଳେ, ମୋ ରକ୍ତ ନ ପିଇବେ କାହିଁକି ? କିନ୍ତୁ ଟିକେ ରୁହ, ବର୍ତ୍ତମାନ ତୁମ ମାମୁଁ ପୁଅ ଭାଇକୁ ଏଠାକୁ ଡାକି ଆଣୁଛି । ମୁଁ ତାଙ୍କୁ ସେଇ ହାର (ଯାହାକୁ ତୁମେ ତୁମ-ମାଙ୍କର ବୋଲି କହିଥିଲ) ଦେଖାଇ ତୁମ ବନ୍ଧୁମାନଙ୍କ ସାମ୍ନାରେ ଦ୍ୱିତୀୟଥର ପାଇଁ ପଚାରିବି । ହାର କାହାର ?" ସେଠ୍ ରୂପରତନ ଟିପୟ୍ ଉପରେ ଥିବା ବିଜୁଳି ଘଣ୍ଟିର ବୋତାମ୍ ଟିପିଲା । ସଜ୍ଜନ ସାମ୍ନାକୁ ଆସି ରୂପରତନଙ୍କୁ ହାତଯୋଡ଼ି କହିଲା "ଏଭଳି ଅସମ୍ମାନ କରନ୍ତୁ ନି ମହିପାଳ, ଆମ ସମସ୍ତେ ସଭିଙ୍କର ପୁରୁଣା ବନ୍ଧୁ ।" କର୍ଣ୍ଣେଲ ମଧ୍ୟ ଅନୁରୂପମୁଦ୍ରାରେ ରୂପରତନଙ୍କୁ ଦେଖୁଥିଲା । ମହିପାଳ ପଥର ପରି ମୁଣ୍ଡ ତଳକୁ ପୋତି ବସି ପଡ଼ିଲା । ରୂପରତନ ଥରେ ମହିପାଳକୁ ଚାହିଁ କହିଲା "ଏବେ କୁଆଡ଼େ ରହିଲା ତୁମରବଡ଼ ପଣିଆ ? ସାରା ଦୁନିଆଁକୁ ଆଦର୍ଶର ଦ୍ୱାହି ଦେଉଛ ଅଥଚ ନିଜେ ଏଭଳି ଦୁର୍ନୀତି କରୁଛ ?"

ସଜ୍ଜନ କହିଲା "ହୋଇପାରେ, ତେବେ ଛାଡ଼ ସେ କଥାକୁ ରୂପରତନ ।"

"ଆରେ ଛାଡ଼ି ତ ଦେଇଛି, ଯାଙ୍କ ବଡ଼େଇ ଦେଖି ମୁଁ ହମ୍ବାଲ ହୋଇ ରହି ପାରୁନି ।

ସ୍ୱାଙ୍କ ମାମୁଁ ପୁଅ ଭାଇ ମୋର ପିଲା ଦିନର ସହପାଠୀ, ତାଙ୍କ ଜରିଆରେ ସ୍ୱାଙ୍କ ସହିତ ମୋର ପରିଚିତ ହୋଇଥିଲି । ଚୋରି କଥା ମଧ୍ୟ ଅଦ୍ଭୁତ ଭାବରେ ଜାଣିଲି । ବିଭାଘରକୁ ଆସିଛନ୍ତି, ଗଲା ପଅରଦିନ କଥା ହେଉ ହେଉଁ ତାଙ୍କ ଖାନ୍ଦାନୀ ଜ୍ୱେଲେରି ଓ ଡକାୟତି ହାରି ଯିବା କଥା କହିଲେ । ମୁଁ ଭାବିଲି ମହିପାଳର ମଦରଙ୍କ ହାର ତ ପ୍ରକୃତରେ ସ୍ୱାଙ୍କର । ଏଇ ଆଳରେ ମୁଁ ତାଙ୍କୁ ସେଇ ହାର ଦେଖାଇ ଦେଲି । ଦେଖୁଁ ଦେଖୁଁ ବିଚରା ତଟସ୍ଥ ହୋଇଗଲେ, କହିଲେ "ଏ ଅଳଙ୍କାର ତୁମକୁ ମିଳିଲା କେଉଁଠୁ ? ଏଇ ଗହଣା ତ ଆମର ଡକାୟତି ହୋଇଥିଲା ।" ମୁଁ ସଙ୍ଗେ ସଙ୍ଗେ ବିଶ୍ୱାସ କଲି ଯେ ଡକାୟତି ହେବା ସମୟରେ ଗୋଳମାଳରେ ମହିପାଳ ଏ ହାର ହାତେଇ ନେଇଛି । ତାଙ୍କୁ ତ ଅନ୍ୟ କଥା କହି ବାଟେଇଁଇ ଦେଲି କିନ୍ତୁ ଆଜି ସ୍ୱାଙ୍କ ଆଦର୍ଶର ମିଛ ବଢେଇ ଦେଖି ଆଉ ସମ୍ଭାଳି ପାରିଲି ନାହିଁ । ଚୋର, କୃତଘ୍ନ କାହାଁକା । ତୋ ମିଥ୍ୟା ଅହଂକାରକୁ ମୁଁ ଛେପ ପକାଉଛି । ମନେ ମନେ ବ୍ରାହ୍ମଣ ଆଦର୍ଶବାଦୀ ଆଉ ଲୋକଟାଏ । ସଜ୍ଜନ ଯେତେ ଖରାପ ହେଲେ ସିନା ହକ୍ ନିଜର ଲକ୍ଷ ଲକ୍ଷ ଟଙ୍କା ପର ପାଇଁ ପାଣି ପରି ଖର୍ଚ୍ଚ କରୁଛି । ଆଉ ସେ ଆମର ଚୋରି ମାଲରେ ଧନୀ ହୋଇ ପାଣି ପରି ଟଙ୍କା ଖର୍ଚ୍ଚ କରିବାର ମିଥ୍ୟା ବାହାଦୁରି କରୁଛି । ପୁଣି କୁହା ହେଉଛି ଯେ ଖାନ୍ଦାନୀ ଧନୀଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରୁଛି । ଭାରି ବଡ଼ ସେଠ୍, ଆମର ଆସିଲେ ।"

ମହିପାଳର ମୁଣ୍ଡ ଯାହା ତଳକୁ ହୋଇଥିଲା ଆଉ ଉପରକୁ ଟେକି ପାରିଲା ନାହିଁ । ପରିସ୍ଥିତିର ଜଟିଳତା ଦେଖି ସଜ୍ଜନ ମହିପାଳକୁ କିଛି ନ କହି ରୁପରତନଠାରୁ ବିଦାୟ ନେଇ ଚାଲି ଆସିଲା । କର୍ଣ୍ଣେଲ ମଧ୍ୟ ତା ସହିତ ଉଠି ଆସିଲା ।

ମହିପାଳ ପାଇଁ ସାରା ପୃଥିବୀ ଅନ୍ଧାର ହୋଇଗଲା । ପ୍ରତ୍ୟେକ ଦିଗରୁ ପ୍ରତ୍ୟେକ ବ୍ୟକ୍ତି ଯେପରି ଆଙ୍ଗୁଠି ଦେଖାଇ ତାକୁ 'ଚୋର' କହୁଥିଲେ । ରୁପରତନ ରୁମ୍‌ରୁ ବାହାରି ସେ, ଆଉ ବରଯାତ୍ରୀ ବସିଥିବା ଜାଗାକୁ ଯାଇ ପାରିଲା ନାହିଁ । ସିଧା ଫାଟକ ଖୋଲି ବାହାରକୁ ଚାଲିଗଲା । ତାର ସମସ୍ତ ବିଦ୍ୟା, ଜ୍ଞାନ, ବୁଦ୍ଧି, ପ୍ରତିଭା, ଆଦର୍ଶ ଏବଂ ସିଦ୍ଧାନ୍ତ ସବୁ କିଛି ବ୍ୟର୍ଥ ହୋଇଗଲା । ଧନର ଲାଳସା କେତେ ସହଜରେ ତାକୁ ଚୋର କରିଦେଲା । ଯେଉଁ ରହସ୍ୟକୁ ସେ ସମସ୍ତଙ୍କର ଅଗୋଚର ବୋଲି ଜାଣିଥିଲା, ସେଇ ରହସ୍ୟ, ମହିପାଳର ସେଇ ପାପ—ସହଜରେ ଖୋଲିଗଲା । ସିନେମା ପରି ସେ ଦିନ ରାତିର ଦୃଶ୍ୟ ତା ମନଶ୍ ଚକ୍ଷୁରେ ଦେଖାଗଲା । ସେଦିନ ଅଜା ଘରେ ଡକାୟତି ହେଲା — କେତେ ନିର୍ଭିକ ଭାବରେ ସେ, ସେଦିନ ଡାକୁମାନଙ୍କ ସହିତ ଲଢ଼ିଥିଲା । ତା ଗୁଳିରୁ ଶିକାର ମୃତ ଡକାୟତକୁ ଉତ୍ତେଜନା ବଶତଃ ନିକଟରୁ ଦେଖିବା ନିମନ୍ତେ ଇଚ୍ଛା ନେଇ ସେ ପାଖକୁ ଗଲା । ତାର ପାଖରେ ବ୍ୟାଗ୍‌ରେ ଗହଣା ବାକ୍ସ ମିଳିଲା ଏବଂ ଦେଖୁଁ ଦେଖୁଁ ତାର ସତ୍ତା ସବୁ ଲୁପ୍ତ ହୋଇଗଲା । ସେ ଗହଣା ବାକ୍ସ ବ୍ୟାଗ୍‌ରେ ଲୁଚାଇ ଦେଲା । ତାକୁ କେହି ସନ୍ଦେହ କରିବା ସମ୍ଭବ ନଥିଲା । ଯେଉଁ ଦୁଇଜଣ ଡକାୟତ ପଳାଇ

ଯାଇଥିଲେ ତାଙ୍କୁ ହିଁ ଗହଣା ଷ୍ଟେସନର ଦୋଷୀ ସାବ୍ୟସ୍ତ କରିଥିଲେ । ଗୋଟିଏ ଡ଼କାୟତକୁ ଜୀବନରେ ମାରିଥିବାରୁ ମହିପାଳ ତ ହିରୋ ହୋଇଥିଲା । ସେଦିନର ହିରୋ ଆଜି ତାର ଅଭିନ୍ନ ବନ୍ଧୁ ଦ୍ୱୟଙ୍କ ସାମ୍ନାରେ ଷ୍ଟେର ସାବ୍ୟସ୍ତ ହେଲା । ଏବେ ଆଉ ସଜ୍ଜନ ସାମ୍ନାରେ ବିଦ୍ରୋହୀ ହୋଇ ମୁଣ୍ଡ ଉଚ୍ଚ କରି ଠିଆ ହୋଇ ପାରିବ ନାହିଁ । ସେ ରୂପ-ରତନକୁ ମଧ୍ୟ ସମାସ୍ପଦ ଦୃଷ୍ଟିରେ ଦେଖି ପାରିବ ନାହିଁ । କର୍ଣ୍ଣେଲ ପରି ବ୍ୟକ୍ତି, କଲ୍ୟାଣୀ, ପିଲାଏ ଯେତେବେଳେ ସବୁ ଶୁଣିବେ ତେବେ ସେ ଘରେ ରହିବା ଯୋଗ୍ୟ ମଧ୍ୟ ହୋଇ ପାରିବ ନାହିଁ ।

ମୁଣ୍ଡ ତଳକୁ ହୋଇଥିଲା, ପାଦ କିନ୍ତୁ ଆଗକୁ ଆଗକୁ ଚାଲୁଥିଲା । ମହିପାଳର ଅନ୍ତର ଯନ୍ତ୍ରଣାରେ କାତର ହୋଇ ଉଠୁଥିଲା । ଏଁ, ମୁଁ କଣ କଲି— କଣ ସବୁ କଲି ।" ଏ କଥା ଠିକ୍ ଯେ ମହିପାଳ କେବେ ହେଲେ ଧନକୁ ଧନ ବୋଲି ଭାବିନ, ସର୍ବଦା ଅଭାବ ସହିତ ସଂଗ୍ରାମ କରିଛି, ପଇସା ପାଇବାର ଇଚ୍ଛା ରହିଥିଲା, ତେବେ ସୁଦ୍ଧା ପଇସା ଆଗରେ ପ୍ରତ୍ୟକ୍ଷ ଭାବରେ କେବେହେଲେ ମୁଣ୍ଡ ନୁଆଁଇ ନଥିଲା । ଯଦ୍ୟପି ଧନ ଭାବରେ ତାର ଜର୍ଜରିତ ଅଚେତନ ମନ ଧନ ଆଗରେ ପରାସ୍ତ ହୋଇ ସାରିଥିଲା । ସେଇପାଇଁ ତ ସେ ଚୋରି କରି ପାରିଲା । ପଇସା ତାର ସମସ୍ତ ବିବେକକୁ ବିକଳ କରି ଦେଇଥିଲା । ବିବାହ, ବ୍ରତ ଘର, ପିଲାଙ୍କ ଶିକ୍ଷା, ନିଜ ବଂଶର ବଡ଼େଇ, କଲ୍ୟାଣୀର ଜିଦ୍ ସବୁ କିଛି ମିଶି ତାଙ୍କୁ ଆଦର୍ଶଚ୍ୟୁତ କରିଦେଲେ । କେତେ ମନଯୋଗ ଦେଇ ସେ ନିଜ ଦେଶର ସାମାଜିକ, ସାଂସ୍କୃତିକ ଇତିହାସ ଅଧ୍ୟୟନ କରୁଥିଲା । ସେ ତାର ଜୀବନର ସମସ୍ତ ସାଧନା ଏକ ମୁହୂର୍ତ୍ତ ପ୍ରଲୋଭନରେ ପଡ଼ି ଧୂଳିସାତ୍ କରିଦେଲା ।" ଶୋଭା, ଏବେ ତ ତୋ ନାଁ ଧରିବାକୁ ମଧ୍ୟ ବିରକ୍ତ ଆସୁଛି । ମୁ ଏକଣ କଲି ? ମୁଁ ବଡ଼ୁଡ ଖରାପ ।"

ଜନ ବସତିରୁ ଦୂରରେ ମହିପାଳ ନିଘୁଞ୍ଚିଆ ସଡ଼କରେ ଚାଲୁଥିଲା । ପ୍ରିନ୍ସ ଦର୍ବାର୍ ପାରି ହୋଇ, କାଠ ପୋଲ ଦେଇ ନିଶାତ୍ଗଞ୍ଜ୍ ବସ୍ତିକୁ ଏଡ଼େଇ ମହିପାଳ ଗୋମତୀକୂଳ ଆଡ଼କୁ ଆଗେଇ ଗଲା – ଆଗକୁ ଚାଲିଲା ।

ଦିନଗଲା, ରାତି ହେଲା । ଦ୍ୱିତୀୟ ଦିନ ଘର ଲୋକେ ଚିନ୍ତିତ ହୋଇ ଉଠିଲେ । କଲ୍ୟାଣୀ ପ୍ରତି ମୁହୂର୍ତ୍ତ ସ୍ୱାମୀର ପଦ ଶବ୍ଦ ଶୁଣିବା ପାଇଁ ଉତ୍କଣ୍ଠିତ ହୋଇଗଲା । ତା ମନ କେବଳ ସ୍ୱାମୀର ପଦ ଶବ୍ଦ ଶୁଣିବା ପାଇଁ ବ୍ୟାକୁଳ ହେଉଥିଲା, ଅନ୍ୟ କାମରେ ମନ ଦେଇପାରୁ ନଥିଲା । ମହିପାଳର ନିରୁଦ୍ଦେଶ୍ୟର କାରଣ କାହାକୁ ଜଣା ନ ଥିଲା । ବିଭାଘରର କୋଳାହଳ ଭିତରେ । ତୃତୀୟ କାରଣ ହେଲା, ଅନୁସଙ୍ଗିକ ବିବାହ କିମ୍ବା ସରିଲା । ବରଯାତ୍ରୀ ବିଦାକା ସମୟରେ ମହିପାଳଙ୍କୁ ଖୋଜା ହେଲା । ବିଦା ହେବା ସମୟରେ ଶକୁନ୍ତଳା ସମସ୍ତଙ୍କଠାରୁ କାନ୍ଦି କାନ୍ଦି ବିଦାୟ ନେଲା । ଘର ସାରା କାନ୍ଦୁଥିବା ସମୟରେ କଲ୍ୟାଣୀ ଆଖି ଶୁଖିଲା ଥିଲା ଓ ସେ ବାଟଆଡ଼କୁ ଅନାଉଥିଲା । ସାରାଦିନ ସ୍ୱାମୀ ପଦ ଶବ୍ଦ ପାଇବା ପାଇଁ ଉନ୍ମୁଖ ଥିଲେହେଁ, ସେ ଯନ୍ତ୍ର ଚାଳିତ ପରି ସବୁ କାମ କରି

ଯାଉଥିଲା । ସବୁ କାମ ପରେ କଲ୍ୟାଣୀ ପୂରାପୂରି ଶୂନ୍ୟ ହୋଇଯାଇଥିଲା । ଘର ଲୋକେ ଓ ବରଯାତ୍ରୀ ଦଳ ମହୀପାଳର ଅନ୍ତର୍ଦ୍ଧାନ ବିଷୟରେ ନାନା ପ୍ରକାର ଆଶଙ୍କା କଲେ ।

ଶକୁନ୍ତଳା ବିଦା ହେବା ସମୟରେ କନ୍ୟା ହଠାତ୍ ଆସି ସେଠାରେ ପହଞ୍ଚିଲା । ତାର ଅତି ଗମ୍ଭୀର ଚେହେରା ଦେଖି କଲ୍ୟାଣୀ ତାକୁ କିଛି ସମୟ ଅନାଇଲା ପରେ ତା ହାତଧରି ଏକାନ୍ତକୁ ନେଇ ଉନ୍ମୁକ୍ତ କିନ୍ତୁ ଦୃଢ଼ ସ୍ୱରରେ ପଚାରିଲା "କିଛି ଖବର ଆଣିଛ ।"

"ପ୍ରଥମେ ତ ଝିଅ ପାଇଁ ଉପହାର ଆଣିଛୁ" କହି, କନ୍ୟା କଲ୍ୟାଣୀକୁ ଏଡ଼ାଇ ଶକୁନ୍ତଳା ପାଖରେ ପହଞ୍ଚିଗଲା । ଶକୁନ୍ତଳା, କନ୍ୟା ମାଇଁକୁ ଦେଖି ଖୁବ୍ କାନ୍ଦିଲା । କନ୍ୟା ସଜ୍ଜନ, କର୍ଣ୍ଣେଲ, କର୍ଣ୍ଣେଲର ସ୍ତ୍ରୀ ଓ ନିଜ ତରଫରୁ ବର ବନ୍ଧୁଙ୍କ ପାଇଁ ଉପହାର ସାମଗ୍ରୀ ନେଇ ଆସିଥିଲା । ଯଦିଓ ଉପହାର ଦେବା ସମୟ ଏ ନୁହେଁ ତେବେ ମଧ୍ୟ ଏହି ସମୟକୁ ଉପଯୁକ୍ତ ସମୟ ବିଚାରି ଦୁଇ ମାମୁଁ ସେମାନଙ୍କ ମୃତ ବନ୍ଧୁ ତରଫରୁ ବର ବନ୍ଧୁଙ୍କ ପାଇଁ ରାଜସିକ ଉପହାର ପଠାଇଥିଲେ । ଏପରି ଯୌତୁକ ଯାହା ଦବାକୁ ଯାଇ ମହୀପାଳ ନିଜକୁ ଶେଷ କରିଦେଲା । ଶେଷରେ ମରିଗଲା ମଧ୍ୟ । ଦାମୀ ଫିର୍ନିଚର, ସିଲ୍‌କର ଥାନ, ଜଡ଼ଉ ଗହଣା, ନୂଆ ମଟର ଗାଡ଼ି, ଦରକାରୀ, ଅଦରକାରୀ ଯାହାକିଛି ଶୋକାକୁଳ ଦୁଇ ମିତ୍ର ନିଜ ଅନ୍ତରଙ୍ଗ ମିତ୍ରର ଅଭାବରେ କିଣି ପାରିଲେ ସବୁ କିଣି ଚାରିଟି ଟ୍ରକ୍‌ରେ ଭରି ଦେଇଥିଲେ । ସବୁ ମିଶି ଚାଳିଶ ପଚାଶ ହଜାର ଟଙ୍କାର ଜିନିଷ ଥିଲା । କର୍ଣ୍ଣେଲ ଡ୍ରାଇଭର ନୂଆ ଗାଡ଼ିଧରି ବସିଗଲା, ଗାଡ଼ି ଫୁଲ ଦେଇ ସଜା ଯାଇଥିଲା । ବର ନିଜ ଗାଡ଼ିରେ ବସିଗଲେ । ମହୀପାଳର ମିତ୍ରଙ୍କ ଦ୍ୱାରା ଦିଆ ହୋଇଥିବା ଏଭଳି ଯୌତୁକ ସାଧାରଣରେ ଚର୍ଚ୍ଚାର ବିଷୟବସ୍ତୁ ହୋଇଉଠିଲା ।

ବରଯାତ୍ରୀ ଦଳ ବିଦା ହେବା ପରେ ଘର ଲୋକଙ୍କ ଗହଳି ରହିଥିଲେ ମଧ୍ୟ ସବୁ କାମରୁ ଉତ୍ସାହ କମିଯାଇଥିଲା । କନ୍ୟା କଲ୍ୟାଣୀ ସହିତ ଦୁଆର କିଳି କଥା ହେଉଥିଲା । ପିଲାମାନେ ଚୁପ୍‌ଚାପ୍ ରହିଥିଲେ । ଗତକାଲି ଦ୍ୱିପହରୁ ଯେଉଁ ପିଲାଙ୍କ ବାପ ଯେ ରହସ୍ୟମୟ ଭାବରେ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି ସେ ପିଲାଙ୍କ ମାନସିକ ସ୍ଥିତି ଆଉ କିଭଳି ହୋଇଥାନ୍ତା । ଏହି ସମୟରେ ଡା : ଜୟପାଳ ବାହାରୁ ଆସି ନିଜ ପତ୍ନୀକୁ ଡାକି ଟିକିଏ ଦୂରରେ ଧୀରେ ଧୀରେ କଣ କହୁଥିଲେ । ପିଲାମାନଙ୍କ ଚେହେରାରେ ଏକ ଅବ୍ୟକ୍ତ ଭାବର ଯନ୍ତ୍ରଣା ଫୁଟି ଉଠି ଦୟନୀୟ କରି ଦେଇଥାଏ । ପତ୍ନୀ ସହିତ କଥାବାର୍ତ୍ତା ସାରି ଡା: ଜୟପାଳ ପିଲାଙ୍କ ପାଖକୁ ଆସି ତପ୍‌ନୁକୁ ପଚାରିଲେ "ତୁମ ମା କାହାନ୍ତି ?" ତପ୍‌ନୁ ଶଙ୍କି ଯାଇ ବନ୍ଦ ହୋଇଥିବା ଘରକୁ ଦେଖାଇଲା । ଡାକ୍ତର କବାଟ ଠକ୍ ଠକ୍ କଲେ, କନ୍ୟା ଦୁଆର ଫିଟାଇଲା, କଲ୍ୟାଣୀ ଉପରକୁ ଦେଖି କଣକୁ ଆଉଜିଗଲା । କଲ୍ୟାଣୀ ତଳେ ବସି ଡାହାଣ ହାତରେ ବାଁ ହାତର ଚୁଡ଼ି ଗୁଡ଼ିକ ଜୋର ଦବେଇ ଭାଙ୍ଗୁଥାଏ, ଆଖି ତାର ଲକ୍ଷ୍ୟଶୂନ୍ୟ । ଜୟପାଳ

କାନ୍ଦୁ କାନ୍ଦୁ କହିଲା "ଭାଉଜ, ଭାଇ ଏ କଣ କଲେ ? ତଳେ ବସିପଡ଼ି କହିଁ କହିଁ ହୋଇ କାନ୍ଦିଲା, କନ୍ୟା ଆଖିରୁ ମଧ୍ୟ ଲୁହର ଧାର ବୋହୁଥାଏ, ବଡ଼ପୁଅ ଓ ଝିଅ ଏହା ଦେଖି ଘର ଭିତରକୁ ପଶି ଆସିଲେ । କନ୍ୟା ରାଜଶ୍ରୀକୁ ଜାବୁଡ଼ି ଧରିଲା, ବଡ଼ ପୁଅ କକାକୁ ପଚାରିଲା" ବାପାଙ୍କର କଣ ହେଲା ? ଜୟପାଳ ପ୍ରଶ୍ନର ଉତ୍ତରରେ ଆହୁରି ଜୋରରେ କାନ୍ଦି ଉଠିଲା । ପିଲାଙ୍କ ପ୍ରଶ୍ନ ଆହୁରି ଉକ୍ତ ହେଲା । ସେତେବେଳେ ସମସ୍ତଙ୍କୁ, ସାରାଘରେ ସମସ୍ତଙ୍କୁ ଜଣା ହେଲା ଯେ ମହୀପାଳ, କାହାର ପିତା, କାହାର ସ୍ୱାମୀ, କାହାର ଭାଇ ଏବଂ କାହାର ଭଣଜା ଥିଲା ସମସ୍ତଙ୍କୁ ଛାଡ଼ି ଏବେ ଚାଲିଯାଇଛି ।

ଆଜି ସକାଳୁ କର୍ଣ୍ଣେଲ ସବୁ ଦିନ ପରି ବସାଘରକୁ ନ ଆସି ସଜ୍ଜନ ଘରେ ପହଞ୍ଚିଲା । ଦୁଇ ମିତ୍ର କଥାବାର୍ତ୍ତା ହେଉଥିଲେ । ମହୀପାଳର ମଢ ଦେଖି ଦୁଃଖିତ ହେଉ-ଥିଲେ । ସଜ୍ଜନ ଅବଶ୍ୟ ଆଶଙ୍କା କରିଥିଲା ଯେ ଲଜ୍ୟାରେ ମହୀପାଳ କ'ଣ କିଛି କରିପାରେ କିନ୍ତୁ କର୍ଣ୍ଣେଲର ବିଶ୍ୱାସ ଥିଲା ଯେ ବିବାହ କାର୍ଯ୍ୟ ସମ୍ପୂର୍ଣ୍ଣ ନ ହେବାଯାଏ ମହୀପାଳ କିଛି କରିବ ନାହିଁ ଏବଂ ମହୀପାଳକୁ ଲଜ୍ଜିତ ନ କରିବା ଉଦ୍ଦେଶ୍ୟରେ ସେ ଆଜି ସକାଳୁ ସେଠାକୁ ଜାଣିଜାଣି ଗଲାନାହିଁ । ହଁ, ଅବଶ୍ୟ ଏ ଧାରଣା ଉଭୟଙ୍କର ଥିଲା । ସେ ବିବାହ କାର୍ଯ୍ୟ ସମାପ୍ତ ହେବାକ୍ଷଣି ମହୀପାଳ ଆତ୍ମହତ୍ୟା କରିବାର ଚେଷ୍ଟା କରିପାରେ । ସେ ସନ୍ଧ୍ୟାରେ ବରଯାତ୍ରୀ ବିଦା ହେବା ପରେ ମହୀପାଳ ଉପରେ ପୂରା ନଜର ରଖିବାର କଥା ଚିନ୍ତା କରୁଥିଲା ।

ବନକନ୍ୟା, କର୍ଣ୍ଣେଲ ଆସିବାର କିଛି ସମୟ ପୂର୍ବରୁ ନିୟମାନୁସାରେ ନିଜ କାମକୁ ଚାଲିଗଲା । ପ୍ରାୟ ଏଗାରଟା ସାଢ଼େ ଏଗାରଟା ବେଳେ ସଜ୍ଜନ ଜଣେ ଦୈନିକ ଖବର କାଗଜର ସମ୍ପାଦକଙ୍କର ଫୋନ୍ ପାଇଲା । ସେ ତାକୁ ଶୀଘ୍ର ତାଙ୍କ ଅଫିସକୁ ଆସିବା ପାଇଁ ଅନୁରୋଧ କରିଥିଲେ ।

ସଜ୍ଜନ ପହଞ୍ଚିବା ପରେ ସମ୍ପାଦକ ମହାଶୟ ତାକୁ ଗୋଟିଏ ଚିଠି ଦେଲେ । ହସ୍ତାକ୍ଷର ମହୀପାଳର ଥିଲା । କୌଣସି ସ୍କୁଲ୍ ପିଲାର ଗଣିତ ଖାତାର ଏକ ରଢି କାଗଜ ଉପରେ ପେନ୍‌ସିଲ୍‌ରେ ସେ ଚିଠି ଲେଖା ହୋଇଥିଲା ।

ସମ୍ପାଦକ ମହାଶୟ,

ଏଇଟା ମୋର ସର୍ବଶେଷ ଲେଖା, ଯଦିଓ ଚିଠି ରୂପରେ । ଏହା ପ୍ରକାଶିତ ରୂପରେ ଦେଖିବା ପାଇଁ ମୁଁ ନ ଥିବି । ମୁଁ ହାତଯୋଡ଼ି ସବିନୟ ନିବେଦନ କରୁଛି ଯେ ଆପଣ ଏହାକୁ ଯଥା ସମ୍ଭବ ଶୀଘ୍ର ପ୍ରକାଶିତ କରି ଜଣେ ମୃତ ବ୍ୟକ୍ତିର ଅନ୍ତିମ ଇଚ୍ଛା ପୂରଣ କରିବେ । ମୁଁ ସମସ୍ତଙ୍କ ସମ୍ମୁଖରେ ଏକ ଅପରାଧ ସ୍ୱୀକାର କରୁଛି । ପ୍ରଲୋଭନର ଗୋଟିଏ ମୁହୂର୍ତ୍ତ ମତେ ଚୋର କରିଦେଲା । ମୁଁ ମୋର ମାମୁଁ ପୁଅ ଭାଇ ଘରେ ଯେଉଁଠି ମୁଁ ପାଳିତ ହୋଇଥିଲି, ଡକାୟତି ହେବା ସମୟରେ ଉପସ୍ଥିତ ଥିଲି । ଜଣେ ଡକାୟତକୁ ମାରି ତାର ଡକାୟତି ମୁଁ ଲୁଟ କଲି । ସେ ସମସ୍ତ ଗହଣା ମୋ ପଜା

ଘରେ ମୁଁ ସେଇ ଟ୍ରେଙ୍କ ମାଲ ନିକଟରେ ଥିବା ଗୋଟିଏ ଚୂନ ଗଦା ଉପରେ ଲୁଚିଗଲି । ଦୁଇଜଣ ଡକାୟତ ପଳାଇ ଯାଉଥିଲେ, ସେମାନେ କିଛି ଗହଣା ଓ ଟଙ୍କା ନେଇ ଯାଇଥିଲେ ତେଣୁ ମୋ ଦ୍ୱାରା ଲୁଟ ଯାଇଥିବା ଟ୍ରେଙ୍କ ମାଲ ସେଇ ଡକାୟତମାନେ ନେଇଥିବା କଥା ସହଜରେ ଅନୁମାନ କରାଗଲା । ଏହି ଚୋରି କରିବା ସମୟରେ ମୋର ଆତ୍ମା କମ୍ପିଉଠିଥିଲା । କିନ୍ତୁ ଅଭାବରେ ମୋର ସମସ୍ତ ଚେତନ ବିବେକ ଲୁପ୍ତ ହୋଇଯାଇଥିଲା । ସେ ସମୟରେ ଭଉଣୀଙ୍କର ବିବାହ ଚିନ୍ତା ଅହରହ ମୋ ମନରେ ବସା ବାନ୍ଧିଥିଲା । ମୋର ସ୍ତ୍ରୀ, ଜାତି, ସମାଜ ପରମ୍ପରା ଅନୁଯାୟୀ ବିବାହ କରିବା ପାଇଁ ଜିଦ୍ ଧରିଥିଲା । ତାର ଜିଦ୍‌ରେ ସମାଜର ପ୍ରକୃତ ରୂପ ଯେପରି କହୁଥିଲା, ମୁଁ ନିଜେ ମୋର ବାପ, ମା ଛେଉଣ୍ଡ ଭଉଣୀର ବିଭାଘର ଖୁବ୍ ଜାକଜମକରେ କରିବା ପାଇଁ ଚାହୁଁଥିଲି । ଜମିଦାରୀ ବାତାବରଣରେ ବଢ଼ି ମୋର ମନୋଭାବ ମଧ୍ୟ ରାଜସିକ ହୋଇଯାଇଥିଲା । ଏ ସମସ୍ତ କାରଣ ଯୋଗୁଁ ଯେତେବେଳେ ଗତ କିଛି ବର୍ଷ ହେବ ମୋର ଆର୍ଥିକ ଜୀବନ ଘୋର ସଙ୍କଟ ପୂର୍ଣ୍ଣ ହୋଇଥିଲା ସେତେବେଳେ ମୋର ମନରେ ଏକ ଅହେତୁକ ଅତୃପ୍ତି ବଢ଼ି ଉଠିଥିଲା । ମୋର ଏଇ ହୀନ ଚିନ୍ତା, ମୋର ସମସ୍ତ ସତ୍ ଚିନ୍ତାକୁ ଜବରଦସ୍ତି କରି ହତ୍ୟା କରିଥିଲା । ମୁଁ ମନେକଲି ଏ ଧନ ମତେ ଭଗବାନଙ୍କଠାରୁ ମିଳିଛି । ଯାହାଙ୍କ ପାଖରେ ଏତେ ବଡ଼ ମହଜୁଦ୍ ରହିଛି ଯେ ଏ ସାମାନ୍ୟ ଅଳଙ୍କାର ଚାଲିଗଲେ ମଧ୍ୟ ପୂର୍ବ ଅବସ୍ଥା ବଜାୟ ରଖିପାରିବେ । କିନ୍ତୁ ଏତକ ଅଳଙ୍କାର ମୋର ଭଉଣୀଙ୍କର ବିବାହ ପାଇଁ ଧନ ସଂଗ୍ରହର ବିରାଟ ସମସ୍ୟାକୁ ସହଜ କରିଦେବ ।

"ଆଜି ଏ ଯୁକ୍ତିକୁ ମୁଁ ଏକ ବିରାଟ ଭୁଲ ଅନୁଭବ କରୁଛି । ଚୋରି କରିବା ପରେ ପରେ ମୁଁ କା ପୁରୁଷ ହୋଇଗଲି । ସାଧାରଣତଃ କାପୁରୁଷଙ୍କ ବୁଦ୍ଧି ବହୁତ କଳ୍ପନାପ୍ରବଣ ମନେହେଲେ ବି ତା କାର୍ଯ୍ୟତଃ ଶକ୍ତି ହୀନ ହୋଇଥାଏ । ମୁଁ ନିଜ ମନକୁ ଏଇ ମିଥ୍ୟା ତର୍କ ଦେଇ ସାନ୍ତ୍ୱନା ଦେଉଥିଲି ।

ଯେଉଁ ସମାଜ ବ୍ୟବସ୍ଥା ମୋ ଭଳି ଯାଗ୍ରତ ଚେତନଶୀଳ ବ୍ୟକ୍ତିକୁ ଅଭାବଗ୍ରସ୍ତ କରି ବଞ୍ଚିବା ଅବସ୍ଥାରେ ମଧ୍ୟ ଜୀବନ୍ମୃତ କରି ପାରିଛି ସେ ସାଧାରଣତଃ ଅଚେତନ, ମୂଲ୍ୟହୀନ ସଂସ୍କାରରେ ବଢ଼ିଥିବା ସମାଜକୁ ପତନର ସେଇ ଗର୍ତ୍ତରେ ପକାଇ ଦେବା ସ୍ୱାଭାବିକ ଯାହାର ଭୟଙ୍କରତା ସମ୍ପର୍କରେ ନାନା ପ୍ରକାର ଖବର ଆପଣ ଆପଣଙ୍କ ଖବର କାଗଜରେ ଛାପୁଛନ୍ତି ।

"ନିଜର କାପୁରୁଷତାରୁ ନିଜକୁ ମୁକ୍ତି ଦେବାପାଇଁ ମୁଁ ସ୍ୱେଚ୍ଛାରେ ନଦୀରେ ବୁଡ଼ି ଆତ୍ମହତ୍ୟା କରୁଛି । "

"ଦ୍ୱିତୀୟ ଅପରାଧ ମୋର ହେଲା—ମୁଁ ମୋର ପରମ ମିତ୍ର ସୁପ୍ରସିଦ୍ଧ ଓ ସୁଯୋଗ୍ୟ ଚିତ୍ରକାର ଶ୍ରୀଯୁକ୍ତ ସନ୍ତନ ବାବୁଙ୍କ ସମ୍ପତ୍ତି ଧାନରେ ଈର୍ଷାନ୍ୱିତ ହୋଇ ତାଙ୍କର ସମସ୍ତ ଭଲ କାମର ବିରୋଧ କରିଛି ଯେଉଁ କାମ ଗୁଡ଼ିକ ମୋର ସମସ୍ତ ଜୀବନର ଆଦର୍ଶ

ସ୍ୱପ୍ନ ହୋଇ ରହିଛି । ମୋର ବ୍ୟକ୍ତିତ୍ୱର ଏଇ ସଂକୀର୍ଣ୍ଣତା ସର୍ବଦା ସମାଜରେ ଏକ କଳଙ୍କ ରୂପରେ ମନେରଖାଯିବ । ଏହାକୁ ମୁଁ ମୋର ଦୁର୍ବଳତାରୁ ମଧ୍ୟ ବଡ଼ ଅପରାଧ ମନେ କରୁଛି ।

ଅଧମ

ମହିପାଳ ଶୁକ୍ଳ

ଚିଠି ତଳେ ଚିଠିରୁ ଅସମ୍ବନ୍ଧ କିଛି ବାକ୍ୟ ଲେଖା ହୋଇଥିଲା—"ବ୍ୟକ୍ତି ବ୍ୟକ୍ତି ହିଁ ରହିବ । ତଥାପି ତାର ବ୍ୟକ୍ତିବାଦୀ ଚିନ୍ତନରେ ମଧ୍ୟ ସାମାଜିକ ଦୃଷ୍ଟି କୋଣ ରହିବା ଅନିବାର୍ଯ୍ୟ ଅଟେ । ମୁଁ ଏକଦମ୍ ଏକୁଟିଆ ରହି ମଧ୍ୟ ବହୁଜନଙ୍କ ସହିତ ରହିଛି । ଓଃ ଦୁଃଖ ସୁଖ, ଶାନ୍ତି ଅଶାନ୍ତି ଆଦି ବ୍ୟକ୍ତିଗତ ଅନୁଭବ ହୋଇଥିଲେ ମଧ୍ୟ ସମାଜରେ ପ୍ରତ୍ୟେକ ବ୍ୟକ୍ତିର ମଧ୍ୟ ଅଟନ୍ତି ଅତଏବ ଆମକୁ ଏକଥା ମାନିବାକୁ ପଡ଼ିବ ଯେ ସମାଜ ଗୋଟିଏ, ବ୍ୟକ୍ତି ତ ଅନେକ । ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ ଏମାନେ ସବୁ ଗୋଟିଏ ଗୋଟିଏ ଯଦିଓ ଅନେକ ତତ୍ତ୍ୱ ଦ୍ୱାରା ଏମାନଙ୍କ ନିର୍ମାଣ ହୋଇଛି ।"

ସଜ୍ଜନ ଥରେ ଚିଠି ପଢ଼ିଲା, ସେ ସ୍ତମ୍ଭିତ ହୋଇଗଲା । ଆଉ ଥରେ ପଢ଼ିଲା, ପଢ଼ୁ ପଢ଼ୁ ଚିଠି ହାତରୁ ଖସି ପଡ଼ିଲା ଏବଂ ସେ ଟେବୁଲରେ ମୁଣ୍ଡ ରଖି କହିଁ କହିଁ ହୋଇ କାନ୍ଦି ଉଠିଲା ।

କର୍ଣ୍ଣେଲ ପାଖକୁ ଖବର ଗଲା । ଡାଃ ଜୟପାଳଙ୍କୁ ମଧ୍ୟ ଡକାଇ ଆଣି ଖବର ଦିଆଗଲା । ପୁଲିସରେ ମଧ୍ୟ ଏତଲା ଦିଆଗଲା । ଗୋମତୀ ନଦୀର କୂଳେକୂଳେ କୁଡ଼ି-ଆଘାଟଠାରୁ ଆରମ୍ଭକରି ବନ୍ଧ ପର୍ଯ୍ୟନ୍ତ ଖୋଜାଗଲା କିନ୍ତୁ କେଉଁଠି ମହିପାଳର କିଛି ଚିହ୍ନ ମିଳିଲା ନାହିଁ । କେଉଁଠୁ ମହିପାଳ କାଗଜ ଓ ପେନ୍‌ସିଲ୍ ସଂଗ୍ରହ କରିଥିଲା, କେତେବେଳେ ବା ଆସି ସଂପାଦକଙ୍କ ଅଫିସ ସାମ୍ନାରେ ଝୁଲୁଥିବା ଚିଠିବାକ୍‌ସରେ ଏଚିଠି ପକାଇଲା । କେତେବେଳେ ଓ କେଉଁଠି ତାର ମୃତ୍ୟୁ ହେଲା ଏ ସମସ୍ତ ରହସ୍ୟ ମହିପାଳ ତା ନିଜ ସହିତ ନେଇଯାଇଥିଲା ।



# ବାଉନ

ମହିପାଳର ମୃତ୍ୟୁର ଆଘାତ କର୍ଣ୍ଣେଲ, ସଜ୍ଜନ, କଲ୍ୟାଣୀ, ଶୀଳା ଓ (ଏମାନେ ସମସ୍ତଙ୍କର ଅନ୍ତରଙ୍ଗ ହୋଇଥିବାରୁ) କନ୍ୟା ଉପରେ ଏକ ସ୍ଥାୟୀ ଛାପ ରଖିଗଲା । ଜୀବନ ପର୍ଯ୍ୟନ୍ତ ସମସ୍ତେ ଏ ମୃତ୍ୟୁକୁ ଠିକ୍ ଭାବେ ମାନି ନେଇ ପାରୁ ନଥିଲେ ଯେପରି ମହିପାଳ ମରିଛି, ଏଇଠି କୁଆଡ଼େ ଯାଇଛି ଆସିଯିବ । କେବେକେବେ ମନେ ହେଉଥିଲା ଯେପରି ମହିପାଳ ଆସି ତାଙ୍କ ସାମ୍ନାରେ ଠିଆ ହୋଇଛି । କଥା କହୁଛି, ନୀରବତାରେ ଯେପରି କାହାର ଦୀର୍ଘଶ୍ୱାସ ଶବ୍ଦରେ ଏମାନେ ଚମକି ଉଠି ନିଜର ଭ୍ରମ ବୋଲି ଜାଣି ଲୁହ ପୋଛୁଥିଲେ । ସମସ୍ତ ନିଜକୁ ଲକ୍ଷେ ପ୍ରଶ୍ନ କରୁଥିଲେ । ଏମାନେ ସମସ୍ତଙ୍କ ଜୀବନରୁ ଖାଲି ମହିପାଳ ଯେ ଅନ୍ତର୍ଦ୍ଧାନ ହେଲା ତା ନୁହେଁ, ଜୀବନର ଏକ ସ୍ଥାୟୀ ଜମି ଭାଙ୍ଗିଗଲା ଗୋଟିଏ ସ୍ୱର୍ଣ୍ଣ, ଗୋଟିଏ ସ୍ୱର, ରୂପବର୍ଣ୍ଣ, ଗୁଣ, ଦୁର୍ଗୁଣ ପୂର୍ଣ୍ଣ ଗୋଟିଏ ବ୍ୟକ୍ତି, ବନ୍ଧୁ ଆତ୍ମୀୟ ଅଳ୍ପ ସମୟ ଭିତରେ "ଅଛି "ରୁ "ଥିଲା "ହୋଇଗଲା ।"

ଜନ୍ମ ମୃତ୍ୟୁ ପ୍ରକୃତିର ନିୟମ । ଜନ୍ମ ସମୟର ଆନନ୍ଦ ଓ ମୃତ୍ୟୁର ଶୋକ ସର୍ବଦା ସମାଜରେ ବ୍ୟକ୍ତିଗତ ବ୍ୟାପାର ହୋଇ ରହିଛି ଏବଂ ରହିବ ମଧ୍ୟ । ସମୟ ଶୋକକୁ କମାଇ ଦେଇଥାଏ । ମହିପାଳ ଯଦି କଠିନ ରୋଗଗ୍ରସ୍ତ ହୋଇ ସମସ୍ତ ଚିକିତ୍ସା କରିବା ପରେ ମରିଥାନ୍ତା ଅଥବା ବୃଦ୍ଧ ବୟସ ପର୍ଯ୍ୟନ୍ତ ବଞ୍ଚି ତା ପରେ ମରିଥାନ୍ତା କାହାରି ମନରେ ଏଭଳି ବାରମ୍ବାର ଧକ୍‌କା ଲାଗି ନ ଥାନ୍ତା । ମହିପାଳ ପରି ଶିକ୍ଷିତ ଚିନ୍ତାଶୀଳ ବ୍ୟକ୍ତି ଏକ ଭୁଲ ମୋହର ଶିକାର ହୋଇ ପରିଣାମରେ ଆତ୍ମହତ୍ୟା କରିବା ଏଭଳି ଏକ ନିଷ୍ଠୁର ସତ୍ୟଥିଲା ଯାହାକୁ ସ୍ୱୀକାର କରିବା ପାଇଁ ସଜ୍ଜନ ବାଧ୍ୟ ହେଉଥିଲା । ମହିପାଳ ପରି ପରିବେଶରେ ଯଦି ସଜ୍ଜନର ଜୀବନ କାଟିଥାନ୍ତା ତେବେ ହୁଏତ ତାର ମଧ୍ୟ ପରିଣାମ ଏହା ହୋଇଥାନ୍ତା । ସଜ୍ଜନ ଚିନ୍ତା କରିବାକୁ ଲାଗିଲା ଯେ ଏପରିକି ଉପାୟ ଅଛି ଯାହା ଦ୍ୱାରା ଆତ୍ମବିଶ୍ୱାସ ଓ ଆତ୍ମବଳ ହରାଇଥିବା ବ୍ୟକ୍ତିକୁ ଏ ନିଷ୍ଠୁର ପରିଣାମ ଭୋଗିବାରୁ ଉଦ୍ଧାର କରାଯାଇ ପାରିବ ।

ସଜ୍ଜନ ଆଗରେ ପୁଣି ପୁରୁଣା ପ୍ରଶ୍ନ ଆସି ଠିଆ ହେଲେ । ଯେଉଁ ଦେଶରେ କର୍ମଯୋଗର ସିଦ୍ଧାନ୍ତ ରହିଛି ବେଦ, ଉପନିଷଦ, ସାହିତ୍ୟ, ଶାସ୍ତ୍ର, ରହିଛି, ବ୍ୟାସ ବାଲ୍ମୀକିଙ୍କ ପରି ଯୁଗ ପ୍ରବର୍ତ୍ତକ ମହର୍ଷି ରହିଛନ୍ତି ଏଭଳି ରସଜ୍ଞାନ ଅଛି, ଅଜନ୍ତା, ଏଲୋରା, କୋଣାର୍କ, ଦକ୍ଷିଣ ଭାରତ ସାରା ଦେଶ ବ୍ୟାପୀ ଅନୁପମ ଶିଳ୍ପ, ଭାସ୍କର୍ଯ୍ୟ ରହିଛି, ଯେଉଁ ଦେଶର ଇତିହାସ ଏଭଳି ମହିମା ମଣ୍ଡିତ ଅଟେ, ସେ ଦେଶ ଜଡ଼ତା ଓ କଦର୍ଯ୍ୟତା ଭିତରେ ରହି ଆଜି ଭୟଙ୍କର ରୂପରେ ଆତ୍ମହତ୍ୟା କାହିଁକି କରୁଛି । ମହିପାଳ ଓ ଏ ଦେଶ ନିଜର ଜ୍ଞାନ ଓ ଅଜ୍ଞାନକୁ ନେଇ ଉଭୟ ସମାନ ।

ମହିପାଳକୁ ଭୁଲିବା ପାଇଁ ସଜ୍ଜନ ନୀରବରେ ବହୁତ ଚେଷ୍ଟାକଲା । ସେ ଓ ଜନୀ ଘର ଘର ବୁଲି ଲୋକଙ୍କର ସମସ୍ୟା ସଂପର୍କରେ ପ୍ରତ୍ୟକ୍ଷ ଖବର ନେଲେ ଦାରିଦ୍ର୍ୟ ରୂପୀ ମହାମାରୀ ସବୁ ସ୍ଥାନରେ ବ୍ୟାପି ରହିଥିଲା । ତା ଛଡ଼ା ଆମ ଦେଶ ମଧ୍ୟ ସମସ୍ୟାନୁଯାୟୀ ଆଗେଇ ଯିବାରେ ନିତାନ୍ତ ଅଶକ୍ତ । ସମସ୍ତ ସହିତ ପାଦ ମିଳାଇ ଚାଲିବା ପାଇଁ ଯେଉଁ ସଂସ୍କାରର ଶକ୍ତି ଦରକାର ସେ ଶକ୍ତି ଏ ପର୍ଯ୍ୟନ୍ତ ଜାଗରୁକ ହୋଇନାହିଁ ।

"ଏହା'ର କାରଣ କଣ ?"

ଆମ ଦେଶ ଚିନ୍ତା ତଥା ଶିକ୍ଷା ନୀତିର ଏକ ବିଚିତ୍ର ଚିଡ଼ିଆଖାନା ଅଟେ । ସହସ୍ର ବର୍ଷର ରହିବା, ଚଳିବା ପଦ୍ଧତି ଏବଂ ମାନ୍ୟତାକୁ ଯାହାକି ଆଜିର ବିଜ୍ଞାନ ଯୁଗରେ ଏକାବେଳେ ଅନୁପଯୁକ୍ତ ସିଦ୍ଧ ହୋଇଛି ତାକୁ ଆମର ସମାଜ ଅନ୍ଧ ଭାବରେ ଜାବୁଡ଼ି ଧରିଛି । ପ୍ରତ୍ୟେକ ଯୁଗରେ ଯାହା ପରିବର୍ତ୍ତନ ଆସିଛି, ଯେତେ ଐତିହାସିକ ପ୍ରଭାବ ପଡ଼ିଛି ତନ୍ ମଧ୍ୟରୁ ବେଶୀ ଅଂଶ ଆମେ ମୁଣ୍ଡେଇଛୁ । ଆମର ଘର, ଗଳିରେ ବୁଲୁଥିବା ଫକୀର, ବୈରାଗୀ, ସାଧୁ, ଚଣ୍ଡୀ ପାଠ କରୁଥିବା ପଣ୍ଡିତ, ବିବାହ ବ୍ରତଠାରୁ ଆରମ୍ଭ କରି ଶ୍ରାଦ୍ଧ କରିବା ପଣ୍ଡିତ, ଭାଗବତ ପାରାୟଣ କରିବା ପଣ୍ଡିତ, ଶାସ୍ତ୍ର ଜାଣିଥିବା ପଣ୍ଡିତ, ଭୂତ ପ୍ରେତ ଝାଡ଼ିବା ପାଇଁ ଗୁଣିଆ, ଦାନୁଆ ବ୍ରାହ୍ମଣ, ଗୁଣି ଗାରେଡ଼ି, ଯୌଗିକ ଉଚ୍ଚନୀଚ ତେତିଶ କୋଟି ଦେବତା, ଏହିପରି ବିନା ମତଲବରେ ଅଯଥା ମୁଣ୍ଡ ଗୋଳମାଳ କରିବା ନାନା ଉଦ୍ଭଟ କଥାରେ ପୂରି ରହିଛି । ଏଥିରେ ଅନ୍ଧ ବିଶ୍ୱାସ ଭରି ରହିଥିବାରୁ ଆମ ସମାଜରେ ଆତ୍ମବିଶ୍ୱାସ ନାହିଁ । ଭୌତିକ ବିଜ୍ଞାନର ଏଭଳି ତେଜସ୍ୱୀ ପ୍ରଗତିଶୀଳ ଯୁଗରେ ଏ ସବୁ ପୁରୁଣା କାଳିଆ ବ୍ୟବସ୍ଥା ଅର୍ଥହୀନ ହୋଇଗଲାଣି । ଏସବୁ ଦେବ, ଦେବୀଙ୍କ ନିକଟରେ ଆତ୍ମ ସମର୍ପିତ ମଣିଷର ଚେତନା ଶୀଘ୍ର ମୁକ୍ତ ହେବା ଆବଶ୍ୟକ । ଶ୍ରଦ୍ଧାର ପ୍ରତୀକ ରହିବା ଦରକାର କିନ୍ତୁ ଅନ୍ଧ ବିଶ୍ୱାସ ଉପରେ ନୁହେଁ । ସର୍ବଦା ଏ ଦେଶରେ ସର୍ବଶ୍ରେଷ୍ଠ ଦେବୀ ଥିବା ମାତା ଧରଣୀହିଁ ରହିଆସିଛି । ପରମେଶ୍ୱର ଶୂନ୍ୟ ଆକାଶରେ ରହନ୍ତି ନାହିଁ । ଏ ସତ୍ୟ, ଏ ଦେଶ ବହୁ ପୂର୍ବରୁ ଜାଣିଛି ପ୍ରତ୍ୟେକ ଜୀବର ପରମାତ୍ମାଙ୍କୁ ଦେଖିବା, ମଣିଷ ଭିତରେ ସେହି ପରମ ଶକ୍ତିକୁ ଚିହ୍ନିବା । ଏଇ ଦେଶ ଜ୍ଞାନ ଓ କର୍ମକୁହିଁ ନିଜର ଦର୍ଶନର ମୂଳାଧାର କରିଛି । ଏଭଳି ଭାବରେ ତାର ଦୃଷ୍ଟି କୋଣ ସୃଜନାତ୍ମକ ମୂକ ରହିଛି । ଏ ସମସ୍ତ କଥା ମଣିଷର ଆତ୍ମ ବିଶ୍ୱାସକୁ ଦୃଢ଼ କରିଛି । ଆଜିର ଯୁଗରେ ଆମକୁ ଆମର ପରମ୍ପରାର ଏଇ ଶକ୍ତି ନେଇ ଆଗେଇବାକୁ ହେବ । ମୃତ୍ୟୁର ଭୟ ଚକ୍ରରେ ପଡ଼ି ପାରଲୌକିକ ଚିନ୍ତାରେ ବାନ୍ଧି ରଖିବା ଦର୍ଶନ ଅତ୍ୟନ୍ତ ଜଡ଼ ଏବଂ ଆତ୍ମଘାତକ ଅଟେ । ଏଇ ପାରଲୌକିକ ଦର୍ଶନ ଏବଂ ଏହି ଧର୍ମକୁ ମଣିଷ ଜୀବନରୁ କାଢ଼ିନେଇ ପୁଟୁଳା କରି ବାନ୍ଧି ମ୍ୟୁଜିୟମରେ ରଖିଦେବା ଉଚିତ ଏବଂ ସମୟାନୁକୂଳ ହେବ । ସ୍ୱାମୀ ବିବେକାନନ୍ଦ କହିଛନ୍ତି ଯେ ଆତ୍ମ ବିଶ୍ୱାସ ହରାଇ ଭଗବାନ କିମ୍ବା ତେତିଶ କୋଟି ପୌରାଣିକ ଦେବ ଦେବୀଙ୍କ ଉପରେ ବିଶ୍ୱାସ ରଖିବା ଭୁଲ । ଆତ୍ମ ବିଶ୍ୱାସହିଁ ନୂଆ ଯୁଗର ଧର୍ମ ।

ଆମର ଆଜିର ଲୋକ ଜୀବନରେ ଯେଉଁ ଅବିଶ୍ୱାସ ସଂକ୍ରମିତ ହୋଇଛି ତାର ଆଉ ଏକ କାରଣ ହେଲେ ରାଜନୈତିକ ଦଳ । ଏମାନଙ୍କର ସଂଚାଳକ ପଣ୍ଡିତ, ଗୁଣିଆ ପଣ୍ଡା ଅଟନ୍ତି । ଆଜିର ରାଜନୀତି ଯେଉଁଭଳି ଭାବରେ ପ୍ରଚଳିତ ହେଉଛି ସେଥିରେ ତିଳେମାତ୍ର ପ୍ରଗତିଶୀଳ ଶକ୍ତି ନାହିଁ । ରାଜନୀତି କେବଳ ବଳ କଷାକଷିର ଆଖଡ଼ାରେ ପରିଣତ ହୋଇଛି । ମାନବ ହିତପାଇଁ ଆଦର୍ଶଶୂନ୍ୟ, ବ୍ୟକ୍ତିଗତ ଅହଂକାର କାରଣରୁ ରାଜନୀତିର ନେତାମାନଙ୍କ ବୁଦ୍ଧି, କୌଶଳ ଏବଂ କାର୍ଯ୍ୟ କୁଶଳତା ଅବାଧରେ ଚାଲିଛି । ବର୍ତ୍ତମାନ ରାଜନୀତିର ଜନ୍ମ ସାମ୍ରାଜ୍ୟବାଦରୁ ହୋଇଛି । ଏଇ ସାମ୍ରାଜ୍ୟବାଦୀ ନୀତିରୁହିଁ ଶିଳ୍ପ ତଥା ପୁଞ୍ଜିବାଦକୁ ଶକ୍ତି ମିଳିଛି । ଏଇ ଶକ୍ତି ଏବଂ ମାନବର ହିତ ଉଭୟେ ଉଭୟଙ୍କର ଶତ୍ରୁ । ସାମ୍ରାଜ୍ୟଶାହୀ ପୁଞ୍ଜିବାଦର ହେଉଛି ଦେଶବାଦ, ଜାତିବାଦ, ଧର୍ମବାଦର ହେତୁ, ସର୍ବଦା ଭୁଲ ଅଟେ । ଦେଶର ପୁରୁଣା, ନୂଆ ଇତିହାସର ଅନେକ ଉଦାହରଣ ଏକଥାକୁ ସିଦ୍ଧ କରୁଛନ୍ତି ।

ଆଜି ଏ ଦେଶରେ କଂଗ୍ରେସ କୁହ, ସୋସିଆଲିଷ୍ଟ ପାର୍ଟି କୁହ, କମ୍ୟୁନିଷ୍ଟ ପାର୍ଟି କୁହ, ଜନସଂଘ କୁହ, ହିନ୍ଦୁ ମହାସଭା ଆଦି ଯେତେ ରାଜନୈତିକ ଦଳ ସବୁ ଅଛି, ସମସ୍ତେ ପ୍ରାୟ ଗୋଟିଏ ଅନ୍ୟଠାରୁ ବଳିକରି ବେଇମାନ, କ୍ଷୁଦ୍ର କ୍ଷମତାର ମୋହରେ ଅନ୍ଧ, ଅହଂକାର ଓ ସ୍ୱାର୍ଥଦ୍ୱାରା ପରିଚାଳିତ । ଆଦର୍ଶ ଓ ନୀତି ତ କେବଳ ଲୋକଙ୍କୁ ଭଣ୍ଡାଇବା ପାଇଁ ଏମାନଙ୍କ ନିଜ ନିଜ ଭିତରେ ହେଉଥିବା ସଂଘର୍ଷ କେବଳ ବ୍ୟକ୍ତିଗତ କାରଣ ନିମିତ୍ତ । ଏ ଦେଶର ପ୍ରତିକ୍ରିୟାଶୀଳ ରାଜନୈତିକ ଶକ୍ତି ଭାରତୀୟ ପରମ୍ପରାକୁ କେବଳ ଆଦର୍ଶ ରୂପରେ ଦେଖନ୍ତି । ତଥା କଥିତ ପ୍ରଗତିଶୀଳ ଶକ୍ତି ମଧ୍ୟ ଅନ୍ୟ ଦେଶକୁ ଆଦର୍ଶ ଦ୍ୱାରା ଚଳନ୍ତି । ତାର ପ୍ରଗତିଶୀଳ ପରମ୍ପରାକୁ ସେମାନେ ହୁଏତ ଜାଣନ୍ତି ନାହିଁ କିମ୍ବା ସାମାନ୍ୟ ଜାଣନ୍ତି । ସେମାନେ ସମସ୍ତେ ପ୍ରଗତିଶୀଳ ପରମ୍ପରାକୁ କେବଳ ବିଦେଶରେହିଁ ଦେଖନ୍ତି । ବିଦେଶୀ ପରଂପରାକୁ ସେମାନେ ଏ ଦେଶର ଅବସ୍ଥା ଉପରେ ଜବରଦସ୍ତି ଲଦି ଦେବାକୁ ଚାହାନ୍ତି ।

ସାଧାରଣ ଭାବରେ ଜନ ଜୀବନ ଅନ୍ଧ ବିଶ୍ୱାସ ଏବଂ ଭ୍ରାନ୍ତି ଦ୍ୱାରା ବାନ୍ଧି ହୋଇ ରହିଛି । ଏଭଳି ଅବସ୍ଥାରେ ବୁଦ୍ଧିଜୀବୀମାନେ କଣ ଚୁପ ହୋଇ ରହିବେ ? ଆଜି ମଧ୍ୟ କଣ ସେମାନେ ଫକ୍କିବାଦୀ ତଥା ବ୍ୟକ୍ତି ସତ୍ତ୍ୱବାଦୀ ବାତାବରଣରେ ପ୍ରଭାବିତ ହୋଇ ଜନତାକୁ ବିଭ୍ରାନ୍ତ କରିବାରେ ଅଂଶ ଗ୍ରହଣ କରିବେ ? କାହାକୁ କଣ ନିଜ ଦେଶ ପ୍ରିୟ ନୁହେଁ ? ଦେଶରୁ ପରଂପରାଗତ ବହୁ ସର୍ଜନୀ ଶକ୍ତି ନିମିତ୍ତ ଗର୍ବ ମଧ୍ୟ ନାହିଁ ?

ମହୀପାଳ କହୁଥିଲା ଯେ ବଙ୍ଗଳାର ଦୁର୍ଭିକ୍ଷ ଦାଉରେ ମଣିଷ ଉପରେ ଏଭଳି ସଂକଟ ପଡ଼ିଲା ଯେ ତାକୁ ସହି ସହି ତାର ଚେତନା ଲୁପ୍ତ ହୋଇଗଲା । ସେ ନିଜର ନାଁ, ଏମିତିକି ନିଜକୁ ସୁଦ୍ଧା ଭୁଲି ଯାଇଥିଲା । ଏବେ ଆମ ଦେଶର ସମସ୍ତଙ୍କର ଏହି ଦଶା ହୋଇଛି । ଭାରତ ବାସୀ ଏକଥା ଆଜି ଭୁଲି ଯାଇଛି ଯେ ସେ ଭାରତୀୟ, ସେ

କଂଗ୍ରେସ, ସୋସାଲିଷ୍ଟ, କମ୍ୟୁନିଷ୍ଟ, ଜନସଙ୍ଘୀ, ଅକାଲୀ ଅଟେ । ସେ ଯଣ ପ୍ରାପ୍ତ କବି କଳାକାର, ନେତା, ଡାକ୍ତର, ବାରିଷ୍ଟର, ଅଫିସର କମ୍ବା ସମାଜରେ କିଛି ଗୋଟାଏ ଅଟେ । କିନ୍ତୁ ଅଧିକାଂଶଙ୍କ ଭିତରେ ଭାରତୀୟତା ବୋଧ ନାହିଁ । ମଣିଷ ଆଉ ମଣିଷ ହୋଇ ଯେଉଁ ଲୋକେ ପ୍ରାୟ ସବୁ ବେଳେ ଦେଶ ଓ ଲୋକଙ୍କ କଥା କହୁଛନ୍ତି କିନ୍ତୁ ଏକଥା ଜାଣନ୍ତି ନାହିଁ ଯେ ସେମାନଙ୍କ ଦେଶ କଣ ? ଏଇ ଦେଶ ମାନବତାର ମର୍ମକୁ କେଉଁ ଉପାୟରେ ଚିହ୍ନିଥିଲା । ଏବେ ତ ଏପରି ଲାଗୁଛି ଏ ଦେଶ, ଏ ପୃଥିବୀରେ କେବଳ ବ୍ୟକ୍ତି ସମାଜ ନାହିଁ । ବ୍ୟକ୍ତି କେବଳ ନିଜ ପାଇଁ ରହୁଛି, ଚିନ୍ତା କରୁଛି ଓ କାମ କରୁଛି । ଏଭଳି ମନେ ହେଉଛି ଯେପରି ପ୍ରତ୍ୟେକ ବ୍ୟକ୍ତି ଗୋଟିଏ ଗୋଟିଏ ଦ୍ୱୀପରେ ଅଲଗା ଅଲଗା ରହୁଛନ୍ତି ।

ଏଇଆ କଣ ମଣିଷର ପ୍ରାକୃତିକ ସ୍ଥିତି ?

ଆଜିର ମଣିଷ ନିଜ ମନରେ କୌଣସି ସମୟରେ ବି ଅନୁଭବ କରେନା ଯେ ସେ ଭୁଲ ବାଟରେ ଯାଉଛି । ସେଇଥିପାଇଁ ପ୍ରତ୍ୟେକେ ନିଜ ଭୁଲ ଲୁଚାଇ ଅନ୍ୟର ଭୁଲ ଦେଖାଇ ଦିଏ । ଏଥିରେ ଗୋଳମାଳ ବଢ଼ିଯାଏ, ଆତଙ୍କ ବ୍ୟାପି ଯାଏ, ମଣିଷର ଏଇ ସ୍ଥିତି ଅପ୍ରାକୃତିକ ଅଟେ ।

ମଣିଷର ଆତ୍ମ ବିଶ୍ୱାସ ଜାଗରୁକ ହେବା ଦରକାର । ତା ଜୀବନରେ ଆସ୍ଥା ରହିବା ଉଚିତ । ମଣିଷ ଅନ୍ୟର ଦୁଃଖ ସୁଖକୁ ତାର ଦୁଃଖ ସୁଖ ବୋଲି ମାନି ନେବା ଉଚିତ । ବିଶ୍ୱର ଶକ୍ତିରେ ପ୍ରଭେଦ ଥାଇପାରେ, ବିଶ୍ୱର ବିଭେଦ ଫଳରେ ସୃଷ୍ଟି ତର୍କ ହୋଇପାରେ ଏବଂ ତା ଫଳରେ ଉତ୍ତରୋତ୍ତର ତାର ସମନ୍ୱୟାତ୍ମକ ବିକାଶ ମଧ୍ୟ ଘଟିଥାଏ । ତେବେ ଶର୍ତ୍ତ ହେଲା ସୁଖ ଦୁଃଖରେ ବ୍ୟକ୍ତି ସହିତ ବ୍ୟକ୍ତିର ଅତୁଟ ସମ୍ବନ୍ଧ ରହିଛି ଯେଭଳି ବିନ୍ଦୁ ସହିତ ବିନ୍ଦୁ, ଲହଡ଼ି ସହିତ ଲହଡ଼ି । ଲହଡ଼ିରୁ ସମୁଦ୍ର ହୁଏ, ଏହିଭଳି ବିନ୍ଦୁରେ ମଧ୍ୟ ସମୁଦ୍ରର ଅସ୍ତିତ୍ୱ ରହିଛି ।

ସଜ୍ଜନ ଓ କନ୍ୟା ମନପ୍ରାଣ ଦେଇ ନିଜର ଗ୍ରେଷ୍ଟିଆ କର୍ମ କ୍ଷେତ୍ରରେ ମାନବିକତାର ଦର୍ଶନ କରିବା ପାଇଁ କର୍ମରତ ହୋଇଗଲେ । ପୁରୁଣା ସଂସ୍କାର ନିଜକୁ ସଂହାରରୁ ବଞ୍ଚାଇବା ପୂର୍ବରୁ କଠିନ ପ୍ରହାର କଥ ଆଘାତ କରେ । ଆକ୍ରଶ ମଧ୍ୟ କରିବ କିନ୍ତୁ ସେମାନେ ସ୍ୱାମୀ, ସ୍ତ୍ରୀ ଦୁହେଁ ଆସ୍ଥା ଓ ବିଶ୍ୱାସ ନେଇ କାମ କରିବେ । ତେବେ ବ୍ୟକ୍ତିର ସାମାଜିକ ଚେତନା ଜାଗ୍ରତ ହେବ ହିଁ ହେବ ।